କନ୍ଦୁରିଚରଣଦାସ
# ଗୁଂଜନ

ପ୍ରକାଶକ :



କଲ୍ୟାଣୀନଗର, କଟକ-୭୫୪୦୧୩

ପ୍ରଥମ ସଂସ୍କରଣ : ୨୦୧୧

ମୁଦ୍ରଣ : ଟେକ୍‌ନୋ ଆର୍ଟ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ

ମୂଲ୍ୟ : ₹ ୩୫୦/- ମାତ୍ର

Kanduri Charan Das
# GUNJAN

Published by :




Kalyani Nagar, Cuttack-754013

First Edition : **2011**

Printed at :
Techno Arts Offset
Kalyani Nagar, Cuttack

Price : ₹ **350/-** Only

ISBN -978-93-81756-02-7

# ସୂଚୀପତ୍ର

ହଁ ଅନ୍ଧକାରେ ଏକା ନୁହେଁ ତ ଆଉ କ'ଣ ! ଆଜିକୁ ପ୍ରାୟ ସାତଦିନ ହୋଇଯିବ, ଜୟନ୍ତ ଚାରିକାନ୍ଥର ଏଇ ଘର ଭିତରେ ଏକା କଟାଉଛି । ଯଦିଓ ଘରଟି ବିଳାସ ବ୍ୟସନରେ ପୂର୍ଣ୍ଣ, ଘରର ଆସବାସପତ୍ର ବହୁ ପ୍ରାଚୀନ ଓ ମୂଲ୍ୟବାନ । ସେଥିରେ ଜୟନ୍ତର କିଛି ଲାଭ ନାହିଁ । ଗୋଟିଏ ବିରାଟ କକ୍ଷ । ନେପାଳ ରାଜାଙ୍କର ପ୍ରାଚୀନ ଅତିଥିଶାଳା; ଯଦିଓ ଏବେ ନୂତନ ରାଜପ୍ରାସାଦ ନିର୍ମାଣ ପରେ ନୂତନ ଅତିଥିଶାଳା ନିର୍ମାଣ ହୋଇଛି, କିନ୍ତୁ ପ୍ରାଚୀନ ଅତିଥିଶାଳାର ମହତ୍ତ୍ୱ ଟିକିଏ ବି ମ୍ଳାନ ହୋଇ ନାହିଁ । ଅବଶ୍ୟ ଏବେ କୌଣସି ରାଜ ଅତିଥି ପ୍ରାଚୀନ ଅତିଥିଶାଳାରେ ରୁହନ୍ତି ନାହିଁ । ସେ କିନ୍ତୁ ରାଜ ଅତିଥି ନୁହେଁ; ତାକୁ କୁହାହୋଇଛି କିନ୍ତୁ ସେ ନେପାଳରେ ଏକ ବିଶିଷ୍ଟ ଲୋକଙ୍କର ଅତିଥି । ଏ କେତେଦିନ ଭିତରେ ଜୟନ୍ତ ମନରୁ ସେ ଭାବନା ଘୁଞ୍ଚିଯାଇଛି । ତା'ର ମନେ ହୋଇଛି ସେ ଏହି ଅତିଥିଶାଳାରେ ବନ୍ଦୀ ।

ଏ କେତେଦିନ ହେବ ଜୟନ୍ତ ଘରର ସମସ୍ତ ଆଲୋକ ନିର୍ବାପିତ କରି ଚୁପ୍‌ଚାପ୍ ବସି ରହୁଛି । ଆଲୋକ ଆଉ ସେ ସହିପାରୁନାହିଁ । ବିଶେଷତଃ ଏହି ଘର ଭିତରେ ଯେଉଁ ଭୈରବୀ ମୂର୍ତ୍ତିଟି ଅଛି, ତାକୁ ସେ ଆଦୌ ସହ୍ୟ କରି ପାରୁ ନାହିଁ । ଘରେ ଆଲୋକ ଜଳାଇବା ମାତ୍ରକେ ପ୍ରଥମେ ଆଲୋକ ଜଳି ଉଠୁଛି ସେହି ଭୈରବୀ ମୂର୍ତ୍ତିର ଦୁଇ ଆଖିରେ ତା'ପରେ କେତେଗୁଡ଼ାଏ ଶିଖା ବିଚ୍ଛୁରିତ ହୋଇପଡୁଛି ଘରର ଚତୁପାର୍ଶ୍ୱରେ । ସେହି ଶିଖାରେ ଘର ଆଲୋକିତ ହୋଇ ଉଠୁଛି । ଘରର ଅନ୍ୟ କୌଣସି ସ୍ୱତନ୍ତ୍ର ଭାବରେ ଆଲୋକର ବ୍ୟବସ୍ଥା ନାହିଁ ।

ପ୍ରଥମେ ଦୁଇ ତିନିଦିନ ଜୟନ୍ତ ମନରେ ଖୁବ୍ କୌତୂହଳ ଜନ୍ମିଥିଲା ଏବଂ ସେ ପ୍ରାୟ ରାତି ଭରି ସେଇ ଆଲୋକ ଜଳାଇ ଘରର ଶୋଭା ଉପଲବ୍ଧି କରୁଥିଲା ।

ଆଲୋକର ଶିଖାଗୁଡ଼ିକ ଏପରି ଭାବରେ ଖଞ୍ଜାହୋଇଛି ଯେ, ପ୍ରତିଟି ଶିଖା ଘରଟିର ବିଶିଷ୍ଟ ପଦାର୍ଥମାନ ଉପରେ ପ୍ରତିଫଳିତ ହେଉଛି । ବିଶେଷ କରି ଦିଆଲରେ ଟଙ୍ଗାହୋଇଥିବା ବିରାଟ ତୈଳଚିତ୍ରଗୁଡ଼ିକ ଉପରେ । ତୈଳଚିତ୍ରଗୁଡ଼ିକ ରାଜବଂଶର ରାଜାମାନଙ୍କର । ରାଜା ପୃଥିବୀ ନାରାୟଣ ସାହା (ଯିଏ ସପ୍ତଦଶ ଶତାବ୍ଦୀଠାରୁ ନେପାଳର ଭିତ୍ତି ପତ୍ତନ କରିଥିଲେ)ଙ୍କଠାରୁ ଆରମ୍ଭ କରି ରାଜା ମହେନ୍ଦ୍ରଙ୍କ ପର୍ଯ୍ୟନ୍ତ । ବୋଧହୁଏ ସମସ୍ତଙ୍କର ତୈଳଚିତ୍ର ସେ ଘରେ ଟଙ୍ଗା ହୋଇଥିଲା । ଦୁଇ ତିନିଦିନ ଖୁବ୍ ଆଗ୍ରହରେ ଦେଖିଥିଲା ଜୟନ୍ତ । ତା'ପରେ ସେ ପ୍ରାୟ ଆଲୋକ ନିର୍ବାପିତ କରି ଘରେ ଅନ୍ଧକାରେ ବସି ରହୁଥିଲା । ସେ ଆଦୌ ଘର ଭିତରେ ଥିବା ସେହି ଭୈରବୀ ମୂର୍ତ୍ତିଆଡ଼େ ଚାହିଁପାରୁ ନଥିଲା ।

ଆଉ କେତେଦିନ ସେ ସାଙ୍ଗସାଥୀହୀନ ହୋଇ ଅନ୍ଧକାରେ ଏକା ଏକା ବସି ରହିବ, କାହିଁକି ତାକୁ ଏ ଶାସ୍ତି !! କ'ଣ ବା ତା'ର ଅପରାଧ ? ସେ ତ ଅନୁରାଧାକୁ ହତ୍ୟା କରି ନାହିଁ । ସେ ଯାଇଥିଲା ଅନୁରାଧାର ନିମନ୍ତ୍ରଣ ରକ୍ଷା କରିବା ପାଇଁ, ଅନୁରାଧା ତାକୁ ଡାକିଥିଲା । ଜୟନ୍ତ ଯାଇ ନଥିଲା କେବଳ ଅନୁରାଧାର ନିମନ୍ତ୍ରଣ ରକ୍ଷା କରିବା ପାଇଁ, ସେ ଯାଇଥିଲା ତା' ସହିତ ଏକାନ୍ତ ଭାବରେ ମିଶିବା ପାଇଁ । କିନ୍ତୁ...

ଜୟନ୍ତ ଭାବନାରେ ବାଧାଦେଇ ହଠାତ୍ ଘରକୋଣରେ ଟେଲିଫୋନ୍‌ଟା ବାଜି ଉଠିଲା । ଜୟନ୍ତ ଚମକି ପଡ଼ିଲା । ସେ ଏଇ ଘରକୋଣରେ ଟେଲିଫୋନ୍‌ଟାକୁ ଆସିଲା ଦିନରୁ ଲକ୍ଷ୍ୟ କରିଥିଲେ ମଧ, ଆଜି ହଠାତ୍ ଅତର୍କିତ ଭାବରେ ବାଜି ଉଠିବାରୁ ଜୟନ୍ତ ଶିହରୀ ଉଠିଥିଲା ।

ଏଇଟା ସଚଳ, ଏହାର ଯେ ଜୀବନ ଅଛି, ଏତେବେଳଯାଏ ଜୟନ୍ତ ବିଶ୍ୱାସ କରି ପାରୁ ନ ଥିଲା । ଜୟନ୍ତ ରିସିଭରଟା ଉଠାଇ ନେଇ କାନରେ ଦେଲା, ହ୍ୟାଲୋ ?

: ମୁଁ ରୋଜି କହୁଛି । ଅପର ପ୍ରାନ୍ତରୁ ଏକ ସୁମଧୁର ନାରୀକଣ୍ଠର ଗୁଞ୍ଜରଣ ଭାସି ଆସିଲା ।

ଜୟନ୍ତ 'ରଙ୍ଗ୍ ନମ୍ବର' କହି ରିସିଭରଟା କ୍ରେଡ଼େଲ ଉପରେ ରଖିଦେବାକୁ ଯାଉଥିଲା; ମାତ୍ର ଅପର ପ୍ରାନ୍ତରୁ ସେଇ ନାରୀ କଣ୍ଠର ହାସ୍ୟଧ୍ୱନି ସହିତ ଶୁଣିଲା : ଆପଣ ଜୟନ୍ତ ମହାପାତ୍ର ନା ?

ଜୟନ୍ତ ତା' ନାଁ ଏଇ ବିଦେଶ ଭୂଇଁରେ ଗୋଟିଏ ନାରୀ କଣ୍ଠରୁ ଉଚ୍ଚାରିତ ହେଉଥିବାର ଶୁଣି ସ୍ତବ୍ଧ ହୋଇଯାଇଥିଲା ।

: ହଁ, ମୋ ନାଁ ଜୟନ୍ତ, କିନ୍ତୁ ଆପଣ ?

ଖାଲି ତରଙ୍ଗାୟିତ ହାସ୍ୟଧ୍ୱନି ଜୟନ୍ତର କର୍ଣ୍ଣକୁହରରେ ପ୍ରବେଶ କରୁଥିଲା । ଜୟନ୍ତର ମନେହେଉଥିଲା, ଯେପରି ଅନୁରାଧା ତାକୁ ପରିହାସ କରି ହସି ହସି ଲୋଟିଯାଉଛି ।

ଜୟନ୍ତ ଆଉ ସହ୍ୟ କରି ପାରିଲା ନାହିଁ । ଚିତ୍କାର କରି ଉଠିଲା, : କିଏ ତୁମେ ? କ'ଣ ଚାହଁ ମୋ'ଠାରୁ ?

: ମୁଁ ରୋଜି, ତମଠୁଁ ପାର୍ଥିବ କିଛି ଚାହେଁ ନାହିଁ; ଚାହେଁ ତମର ବନ୍ଧୁତ୍ୱ ।

: ମାନେ ?

ଜୟନ୍ତ ପୁଣି ରୋଜିର ହାସ୍ୟଧ୍ୱନି ଶୁଣିଲା ।

ବିରକ୍ତିରେ ରିସିଭରଟା ରଖିଦେଲା ଜୟନ୍ତ ।

ସେ ଚିନ୍ତା କରି ପାରୁ ନଥିଲା ରୋଜି ନାମକ ଝିଅଟି କିଏ ଏବଂ ସେ କିପରି ତା'ର ନାମ ଜାଣିଲା । ଜୟନ୍ତର ତା' ସମ୍ବନ୍ଧରେ ସବୁ କଥା ଜାଣିବା ହୁଏତ ଉଚିତ ଥିଲା । ଏଇ ନିଃସଙ୍ଗ ଜୀବନରେ ରୋଜି ହୁଏତ...

ପୁଣି ଟେଲିଫୋନଟା ବାଜିଉଠିଲା ।

ଏଥର ଜୟନ୍ତ ଆଉ ଦ୍ୱିଧା ନ କରି ରିସିଭରଟା ଉଠାଇ କାନରେ ଦେଲା ହ୍ୟାଲୋ ?

: ମୁଁ ରୋଜି କହୁଛି । ଅପର ପ୍ରାନ୍ତରୁ ରୋଜି କିନ୍ତୁ ଏଥର ସହଜ ସ୍ୱରରେ ଉତ୍ତର ଦେଲା ।

: କୁହ । ଜୟନ୍ତର ବି ସଂକ୍ଷିପ୍ତ ଉତ୍ତର ।

: କହିବାର କିଛି ନାହିଁ । ତମ ସହିତ ବସି ବସି ଅନେକ ଗପିବି । ଯାଇଥିଲି ବି; କିନ୍ତୁ ତମ ପ୍ରହରୀମାନେ ମୋତେ ଛାଡ଼ିଲେ ନାହିଁ । ତାଙ୍କ ମୁହଁରୁ ଶୁଣିଲି ତମେ କୁଆଡ଼େ ସେଠି ନଜର ବନ୍ଦୀ !

ଜୟନ୍ତ ଚମକି ଉଠିଲା । କହିଲା : ଭୁଲ କଥା । ତମ୍ଭକୁ ସେମାନେ ମିଛ କହିଛନ୍ତି ।

: ନା । ମିଛ ନୁହେଁ ଜୟନ୍ତ । ତମେ ଥରେ ବାହାରକୁ ବାହାରିବାର ଚେଷ୍ଟା କର, ବଳେ ବୁଝିପାରିବ । ମୁଁ ଜାଣେ ତମେ ସେଠି ଏକା ଏକା ଅଭିଶପ୍ତ ଜୀବନ ଯାପନ କରୁଛ । ସାଙ୍ଗ-ସାଥୀ କେହି ନାହିଁ । ଏଠି ମୁଁ ବି ଏକା । ଭାବିଲି ତୁମ ସହିତ ଗପି ଗପି ସମୟଗୁଡ଼ାକ ସ୍ୱପ୍ନିଳ କରି ପାରିବି; କିନ୍ତୁ ଦୁର୍ଭାଗ୍ୟ । ରୋଜି ନୀରବ ହୋଇଗଲା ।

: ତମେ କ'ଣ ମୋତେ ଚିହ୍ନିଛ ରୋଜି ?

: ଚିହ୍ନିଛି ମାନେ ? ଅନୁରାଧା ସହିତ ତମ୍ଭକୁ ମୁଁ ଅନେକଥର ଦେଖିଚି ।

: ଅନୁରାଧା ସହିତ ତମେ ମୋତେ ଦେଖିଚ ରୋଜି ?

: ଆରେ ! ଅନୁରାଧା ମୋର ଅନ୍ତରଙ୍ଗ ବନ୍ଧୁ ଥିଲା । ତା'ଠାରୁ ତମର ସବୁ ଖବର ମୁଁ ଜାଣିଚି । ତମ ନାଁ ଜୟନ୍ତ ମହାପାତ୍ର । ତମେ 'ଭାରତ ଇଲେକ୍‌ଟ୍ରୋନିକ୍‌ସ ଇନ୍‌ଷ୍ଟିଚିଉଟ୍'ର ପାର୍ଟନର ଏବଂ ତମେ ତମ କମ୍ପାନୀର ନୂତନ ଇଲେକ୍‌ଟ୍ରୋନିକ୍ ମେସିନ ତିଆରି କରିବା ପାଇଁ ଉଦ୍ୟମ କରୁଚ, ସେ ସବୁ ଖବର ମୁଁ ଅନୁରାଧାଠାରୁ ଶୁଣିଥିଲି; କିନ୍ତୁ ଶେଷରେ ତମେ ଅନୁରାଧାକୁ ହତ୍ୟାକରି....

: ନା, ନା ରୋଜି; ଅନୁରାଧାକୁ ମୁଁ ହତ୍ୟା କରି ନାହିଁ । ତମେ ବିଶ୍ୱାସ କର ରୋଜି, ଅନୁରାଧାକୁ ମୁଁ ଭଲପାଉଥିଲି, ଅନୁରାଧାକୁ ମୁଁ ପ୍ରାଣଠାରୁ ବଳି ଭଲପାଉଥିଲି ।

: ଜୟନ୍ତ, ମୁଁ ଜାଣେ ସେ କଥା ଏବଂ ଆହୁରି ବି ଜାଣେ, ତମେ ଅନୁରାଧାର ଜନ୍ମଦିନରେ ଏକାନ୍ତ ଭାବେ ନିମନ୍ତ୍ରିତ ହୋଇଥିଲ ଏବଂ ସେଇ ଦିନ ରାତିରେ ଅନୁରାଧାକୁ ହତ୍ୟାକରି ଲୁଚି ଲୁଚି ପଳାଇ ଆସିଥିଲ; ଆଉ ଅନୁରାଧା ଘରେ ଛାଡ଼ିଆସିଥିଲ ତମ ନାମାଙ୍କିତ ସୁନାର ସିଗାରେଟ୍ କେସ୍‌ଟି, ବହୁ ଉପହାର ସାମଗ୍ରୀ ଏବଂ କିଛି ଫୁଟ୍‌ପ୍ରିଣ୍ଟ ଓ ଫିଙ୍ଗର ପ୍ରିଣ୍ଟ୍ । ପୋଲିସ୍ ଆଖିରେ ତମେ ଯେ ଅନୁରାଧାର ଏକମାତ୍ର ହତ୍ୟାକାରୀ ସେ

କଥା ଅସ୍ୱୀକାର କରିବାର କୌଣସି ଉପାୟ ନଦେଖି, ତମକୁ ତମ ପାର୍ଟନର ମଳୟ ଚଉଧୁରୀ ଏକଦମ ଦେଶ ବାହାରକୁ ପଠାଇ ଦେଇଛନ୍ତି । ନେପାଳରେ ମଳୟ ଚଉଧୁରୀଙ୍କର ଯେଉଁ ଅନ୍ତରଙ୍ଗ ବନ୍ଧୁଙ୍କ ହାତରେ ସେ ତୁମକୁ ସମର୍ପଣ କରିଛନ୍ତି; ତାଙ୍କୁ ମଧ ମୁଁ ଚିହ୍ନେ । ତମେ ଭାରତବର୍ଷରୁ ନିଶ୍ଚିତ ଜେଲଦଣ୍ଡକୁ ଉପେକ୍ଷା କରି ଆସି ଏଠି କିନ୍ତୁ ନଜର ବନ୍ଦୀ ହୋଇ ପଡ଼ିଛ ।

: କିନ୍ତୁ ରୋଜି, ତମେ ବିଶ୍ୱାସ କର; ମୁଁ ଅନୁରାଧାକୁ ହତ୍ୟା କରି ନାହିଁ । ମୁଁ ତା'ର ଜନ୍ମଦିନର ନିମନ୍ତ୍ରଣ ରକ୍ଷାକରିବାକୁ ଯାଇଥିଲି ଏହା ସତ୍ୟ, କିନ୍ତୁ ଅନୁରାଧାକୁ...

: ସେ କଥା ମଧ ମୁଁ ଜାଣେ । ମୁଁ ଜାଣେ ତମେ ଅନୁରାଧାର ହତ୍ୟାକାରୀ ନୁହଁ ।

: ତମେ ଜାଣ ରୋଜି, ଠିକ୍ କହୁଛ ତମେ ଜାଣ । ଏ ପୃଥିବୀର ହେଲେ ଗୋଟିଏ ଲୋକ ଜାଣି ଥାଉ ମୁଁ ଅନୁରାଧାକୁ ହତ୍ୟାକରି ନାହିଁ, ମୁଁ ମୋର ପ୍ରିୟ ବାନ୍ଧବୀକୁ....

: କିନ୍ତୁ ତମେ ପ୍ରମାଣ କରି ପାରିବ ନାହିଁ ଜୟନ୍ତ । ଅନୁରାଧାର ପ୍ରକୃତ ହତ୍ୟାକାରୀ ସେଠାରେ କୌଣସି ପ୍ରମାଣ ଛାଡ଼ି ଆସି ନାହିଁ; ହେଲେ ମୁଁ ତା'କୁ ମଧ ଜାଣେ ।

: କାହାକୁ ?

: ଅନୁରାଧାର ହତ୍ୟାକାରୀକୁ ।

: ତମେ ଅନୁରାଧାର ହତ୍ୟାକାରୀକୁ ଜାଣ ରୋଜି ! ତମେ ମୋତେ ତା' ନାଁ କହି ପାରିବ, ତା'ର ପରିଚୟ ଦେଇପାରିବ ?

ଅପର ପ୍ରାନ୍ତରୁ ପୁଣି ସେହି ହାସ୍ୟଧ୍ୱନି ଶୁଣାଗଲା । ଜୟନ୍ତ ବିଚଳିତ ହୋଇଉଠିଲା । ଅନୁନୟ କରି କହିଲା : ତମେ ମୋତେ ଆଉ ପରିହାସ କର ନାହିଁ ରୋଜି । ମୋତେ ଅନୁରାଧାର ହତ୍ୟାକାରୀର ପରିଚୟ ଦିଅ । ତମେ ଯାହା କହିବ ମୁଁ ଶୁଣିବି । ରୋଜି, ମୁଁ ଚାହେଁ ପ୍ରତିଶୋଧ - ମୁଁ ଚାହେଁ ମୋର ପ୍ରିୟ ବାନ୍ଧବୀର ହତ୍ୟାକାରୀ ଉପରେ ଭୀଷଣ ପ୍ରତିଶୋଧ ।

ଅପର ପ୍ରାନ୍ତରୁ ଆଉ କିଛି ଉତ୍ତର ଆସିଲା ନାହିଁ । ହାସ୍ୟଧ୍ୱନି ପରେ ଟେଲିଫୋନ୍ ଲାଇନ୍‌ଟା କଟିଯିବାର ଶବ୍ଦ ହେଲା ।

ଜୟନ୍ତର ସମଗ୍ର ଦେହରେ ବିଦ୍ୟୁତ୍ ପ୍ରବାହ ଖେଳିଯାଇଥିଲା । ରକ୍ତ ତାତି ଉଠିଥିଲା । ତା'ର ମନେ ହୋଇଥିଲା ଅନୁରାଧାର ହତ୍ୟାକାରୀକୁ ସେ ହାତମୁଠାରେ ପାଇ ବି ଛାଡ଼ିଦେଇଛି । ତା'ଠାରୁ ପ୍ରତିଶୋଧ ନେଇ ପାରି ନାହିଁ ।

ଶେଷରେ ରିସିଭରଟା ଆଡ଼େ ସେ ରୋଷକଷାୟିତ ନୟନରେ କିଛି ସମୟ ଅନାଇ ରହି କ୍ରେଡ଼େଲ ଉପରେ ସେଇଟାକୁ କଚାଡ଼ିଦେଲା ।

ରୋଜି, କିଏ ସେଇ ଝିଅଟା !

ଯିଏ ତା' ସମ୍ବନ୍ଧରେ, ଅନୁରାଧା ସମ୍ବନ୍ଧରେ ଅନେକ ଜାଣେ ଏବଂ ଆହୁରି ସେ ଜାଣେ ଅନୁରାଧାର ହତ୍ୟାକାରୀକୁ ! କିଏ ସେହି ରୋଜି, କ'ଣ ତା'ର ଉଦ୍ଦେଶ୍ୟ?

ଭାରତବର୍ଷରୁ ଛୁଟି ଆସି ନେପାଳରେ ଠାବ କରିଛି ସେ ଜୟନ୍ତକୁ । ନିଶ୍ଚୟ କିଛି ଉଦ୍ଦେଶ୍ୟପ୍ରଣୋଦିତ ହୋଇ ଧାଇଁଛି ତା' ପଛରେ ! ଅନୁରାଧାର ସେ ବାନ୍ଧବୀ ହୋଇପାରେ, କିନ୍ତୁ ତା' ପଛରେ । ତା'ପଛରେ ସେ ଏତେବାଟ ଛୁଟିଆସିଛି କାହିଁକି ?....

ଜୟନ୍ତ ଠିଆହୋଇ ଅନେକ ସମୟ ଚିନ୍ତା କଲା । ରୋଜି ସହିତ ତାକୁ ବନ୍ଧୁତ୍ୱ କରିବାକୁ ହେବ । ତା'ର ଉଦ୍ଦେଶ୍ୟ ଯାହା ଥାଉ, ସେ ଯଦି ଅନୁରାଧାର ହତ୍ୟାକାରୀକୁ ଚିହ୍ନିଥାଏ, ସେତିକି ଆଦାୟ କରି ପାରିଲେ ଜୟନ୍ତ ପରମ କୃତଜ୍ଞ ହେବ ରୋଜି ପାଖରେ ।

ସେ ଯାଇ ଚେଆରରେ ବସିଲା ।

ଅନୁ !

ଅନୁରାଧା !

ମଳୟ ତା'ର ପରିଚୟ କରାଇ ଦେଇଥିଲା ଅନୁରାଧା ସହିତ । ଭାରି ସୁନ୍ଦରୀ, ମିଠା ଝିଅଟିଏ । ହସିଲେ ତା' ମୁହଁରେ ଗୋଲାପ ଫୁଟେ, ରକ୍ତିମ ଆଭା ବିଛୁଡ଼ି ହୋଇ ପଡ଼େ ସମଗ୍ର ମୁଖମଣ୍ଡଳରେ । କେତେ ଶାନ୍ତ, ଧୀର ଆଉ ସରଳ ଥିଲା ଅନୁରାଧା ।

ଜୟନ୍ତ ଯେତେବେଳେ କାମ କରି କରି କ୍ଲାନ୍ତ ହୋଇପଡ଼େ, ସେ ଖୋଜେ ଟିକିଏ ବିଶ୍ରାମ । ମନ ବହଲେଇବା ପାଇଁ ଜଣେ ପ୍ରିୟ ସାଥୀ । ମଳୟ ଚଉଧୁରୀ ଜୟନ୍ତ ମହାପାତ୍ରର ମନ କଥା ବୁଝିପାରି ଥିଲା । ସେ ପରିଚୟ କରାଇ ଦେଇଥିଲା ଅନୁରାଧା ସହିତ ।

ଅନୁରାଧା କିଏ, କ'ଣ, କାହିଁକି ? ଜୟନ୍ତ ଅନୁରାଧା ମୁହଁକୁ ଚାହିଁ ସେ ସବୁ ପ୍ରଶ୍ନ କରି ନଥିଲା । ତାକୁ ଭଲଲାଗିଥିଲା ଅନୁରାଧାର ମୁହଁ, ଅନୁରାଧାର ହସ, ଅନୁରାଧାର ଆଚରଣ ।

ସତରେ ଜୟନ୍ତର ଅବସର ବିନୋଦନରେ ସେ ହୋଇଉଠୁଥିଲା ଏକ ବିଶ୍ୱସ୍ତ ସଙ୍ଗୀ ।

ସିନେମା, ଥିଏଟର, ହୋଟେଲ, ପିକ୍‌ନିକ୍ ଅନେକ ସ୍ଥାନରେ ଅନୁରାଧା ସଙ୍ଗୀ ହୋଇଛି ଜୟନ୍ତର; କିନ୍ତୁ ଅନୁରାଧା କେବେ ଜୟନ୍ତକୁ ନିମନ୍ତ୍ରଣ କରି ପାରି ନାହିଁ ନିଜ ଘରକୁ । ହୁଏତ ସୁଯୋଗ ପାଇନାହିଁ । କିମ୍ବା ଜୟନ୍ତ ସମୟ କରି ପାରି ନାହିଁ ।

ସେଦିନ କିନ୍ତୁ ଅନୁରାଧା ବାଧ୍ୟକରିଥିଲା ଜୟନ୍ତକୁ । ଅନୁରାଧାର ଜନ୍ମଦିନ । ଜୟନ୍ତ ହେବ ତା'ର ଏକମାତ୍ର ଅତିଥି । ଅନୁରାଧା ନିଜେ ରାନ୍ଧିବ, ଖୋଇବ ଏବଂ ଆନନ୍ଦ କରିବେ ଦୁହେଁ ।

ଜୟନ୍ତ ଅନୁରାଧାର ଏହି ପ୍ରସ୍ତାବରେ ରାଜି ହୋଇଥିଲା । ଶିହରି ଉଠିଥିଲା । ସେ ଅନୁରାଧା ଘରକୁ ଯାଇଥିଲା ନିର୍ଦ୍ଧାରିତ ସମୟର ଏକ ଘଣ୍ଟା ପରେ । ଉପହାର ସାମଗ୍ରୀ କିଣିଥିଲା ପ୍ରଚୁର । ନିଶ୍ଚୟ ଆଜି ଅନୁରାଧା ଖୁସି ହେବ । ଆଶାତୀତ ଉପହାର ପାଇ ଅନୁରାଧା ନିବିଡ଼ ବନ୍ଧନରେ ଛନ୍ଦିଦେବ ଜୟନ୍ତକୁ ।

ଦରଜା ଖୋଲାଥିଲା । ଜୟନ୍ତ ଦରଜା ଠେଲି ପଶିଗଲା ଭିତରକୁ । ସୁନ୍ଦର ସଜ୍ଜିତ ଘର । ମଧୁର ଗନ୍ଧରେ ଜୟନ୍ତର ନାକ ଭରିଉଠିଥିଲା । ପ୍ରଥମ ଘରଟା ଡ୍ରଂଇ ରୁମ୍, ଆର ଘରଟା ବେଡ ରୁମ୍ । ପାଖ ଘରଟା ରୋଷେଇ ଘର । ସବୁ ପରିଷ୍କାର । ସୁସଜ୍ଜିତ; କିନ୍ତୁ ଅନୁରାଧା କାହିଁ ? ଡ୍ରଇଂ ରୁମ୍‌ରେ ଧୂପ ଜଳୁଛି । ରୋଷେଇ ଘରେ ଚୁଲି ଉପରେ ହାଣ୍ଡି ବସିଛି । ଆହୁରି ଛୋଟ ଘରଟିରେ ଶାଢ଼ି , ସାୟା, ବ୍ଲାଉଜ୍ ବିକ୍ଷିପ୍ତ ହୋଇ ପଡ଼ିଛି ଏଣେ ତେଣେ । ସେଇଟା ବୋଧହୁଏ ଡ୍ରେସିଂ ରୁମ୍ । କିନ୍ତୁ ଅନୁରାଧା ?

ଆର ଘରଟା ବାଥ୍‌ରୁମ୍ ବୋଧହୁଏ । ସାୱାରରୁ ପାଣି ଝରୁଛି । ନିଶ୍ଚୟ ଅନୁରାଧା ବାଥ୍‌ରୁମ୍‌ରେ ।

ଜୟନ୍ତ ଡ୍ରଇଂ ରୁମ୍‌ର ଟେବୁଲ ଉପରେ ଫୁଲତୋଡ଼ା ଏବଂ ଉପହାର ସାମଗ୍ରୀ ସବୁ ରଖିଲା । ସଜାଡ଼ି ହୋଇ ବସିଲା ସୋଫା ଉପରେ । ପକେଟ୍‌ରୁ ସୁନାର ସିଗାରେଟ୍ କେସ୍‌ଟା ବାହାର କରି ସିଗାରେଟ ଲଗାଇଲା । ଡ୍ରଇଂ ରୁମ୍‌ର ଚାରିଆଡ଼େ ଆଖି ବୁଲେଇ ନେଲା । ଅନୁରାଧାର ରୁମ୍‌କୁ ପ୍ରଶଂସା କରିବାକୁ ହେବ । ଫୁଲଦାନିରେ ସଦ୍ୟ ଗୋଲାପ । ଗୋଲାପ ଫୁଲକୁ ଭଲପାଏ ଜୟନ୍ତ । ଉଠିଯାଇ ଫୁଲଦାନି ସମେତ ଉଠାଇ ଜୟନ୍ତ ଫୁଲଗୁଡ଼ିକର ଆଘ୍ରାଣ ନେଲା । ଡ୍ରଇଂ ରୁମ୍‌ର ଲ୍ୟାଣ୍ଡସ୍କେପ୍‌ଗୁଡ଼ିକୁ ଟିକିନିଖି କରି ଦେଖିଲା । ହାତର ସିଗାରେଟ୍ ଶେଷହୋଇଗଲା; କିନ୍ତୁ ଅନୁରାଧା ବାହାରୁ ନାହିଁ କାହିଁକି ବାଥ୍‌ରୁମ୍‌ରୁ ?

ହଠାତ୍ ଜୟନ୍ତ ମନରେ ଏକ ଦୁଷ୍ଟ ବୁଦ୍ଧି ଖେଳିଗଲା । ସେ ଭାବିଲା ଅନୁରାଧାକୁ ଡକାହକା କିଛି କରିବ ନାହିଁ । ଯଦି ବାଥ୍‌ରୁମ୍‌ର ଦରଜା ଭିତରୁ ବନ୍ଦ ନଥାଏ । ସେ ଧକ୍କାମାରି ଭିତରକୁ ପଶିଯିବ । ସେତେବେଳେ ଅନୁରାଧାର ଅସହାୟ ଅବସ୍ଥା ନିଶ୍ଚୟ ଖୁବ୍ ଦର୍ଶନୀୟ ହେବ ।

ଜୟନ୍ତ ସଙ୍ଗେ ସଙ୍ଗେ ଭାବନା କାର୍ଯ୍ୟକାରୀ କରିବାକୁ ବାହାରି ପଡ଼ିଲା । ପ୍ରଥମେ ବାଥ୍‌ରୁମ୍ ଦରଜାରେ କାନପାତି ଶୁଣିଲା । ହଁ, ସ୍ୱାୱାରରୁ ପାଣି ଝର୍‌ଝର୍ ହୋଇ ଝରୁଛି । ଧୀରେ ଦରଜା ଠେଲିଲା, ତା' ଅନୁମାନ ସତ୍ୟ । ଦରଜା ଭିତରୁ ବନ୍ଦ କରିବାକୁ ଅନୁରାଧା ଭୁଲିଯାଇଛି ।

ଜୟନ୍ତର ମନେପଡ଼ିଲା, ବାହାରେ ଡ୍ରଇଂ ରୁମ୍‌ର ଦରଜାଟା ଖୋଲାରହିଛି । ସେ ଛୁଟିଯାଇ ବନ୍ଦ କଲା । ତା'ପରେ ଫେରି ଆସିଲା ବାଥ୍‌ରୁମ୍ ଦୁଆରକୁ । ଖୋଲିବ ନା ନାହିଁ ? ଅନୁରାଧା ଯଦି... ଜୟନ୍ତର ଭାବନା ପୂର୍ଣ୍ଣତା ଲାଭକରିବା ପୂର୍ବରୁ ସେ ଦରଜାଟା ଠେଲି ଖୋଲିଦେଇଥିଲା ।

ସେ ଦେଖିଥିଲା ଏକ ଉଲଙ୍ଗ ମର୍ମର ମୂର୍ତ୍ତି ମୁହଁମାଡ଼ି ଶୋଇ ରହିଛି ବାଥ୍ ଟବ୍ ଉପରେ ।

ଜୟନ୍ତର ସମଗ୍ର ଦେହରେ ଶିହରଣ ଖେଳିଯାଇଥିଲା ।

ସେ ଛୁଟିଯାଇ ଦୁଇ ହାତରେ ତୋଳିଧରିଥିଲା ଅନୁରାଧାର ଉଲଙ୍ଗ ଦେହଟାକୁ । କିନ୍ତୁ....କିନ୍ତୁ....

ଅନୁରାଧା ମୂକ, ଶାନ୍ତ, ସ୍ଥିର ।

ଜୟନ୍ତ ବିଚଳିତ ହୋଇପଡ଼ିଥିଲା ।

ତେବେ କ'ଣ ଅନୁରାଧା ମୃତ !

ହଁ । ଅନୁରାଧା ମୃତ, ଅନୁରାଧାର ଦେହ ଅଛି, ପ୍ରାଣ ନାହିଁ । ଜୟନ୍ତ ବ୍ୟସ୍ତ ହୋଇ ପରୀକ୍ଷା କରିଥିଲା ଶ୍ୱାସ-ପ୍ରଶ୍ୱାସ । ସବୁ ସ୍ଥିର । ସବୁ ନିସ୍ତବ୍ଧ ।

ଜୟନ୍ତ କିନ୍ତୁ ବିଶ୍ୱାସ କରି ପାରୁ ନଥିଲା । ସେ ଅନୁରାଧାର ଉଲଙ୍ଗ ନିଟୋଳ ଦେହଟା ଆଡ଼େ ଚାହିଁ ସ୍ତବ୍ଧ ହୋଇଯାଇଥିଲା । ଏଇ ସେହି ଅନୁରାଧା; ଯାହାକୁ ଜୟନ୍ତ ଦେଖି ଆସିଛି ଆଜକୁ ଛଅ ସାତ ମାସ ହେବ । କେବଳ ସେ ବାହାରଟା ଦେଖି ଆସିଥିଲା ଆଜି ଯାଏ; କିନ୍ତୁ ଭିତରେ ଯେ ଅନୁରାଧାଠାରେ ଆହୁରି ଏକ ସୁନ୍ଦର ମୃଣ୍ମୟ ପ୍ରତିମା ଲୁଚି ରହିଛି, ଜୟନ୍ତ ତା'ର ସନ୍ଧାନ ପାଇ ନଥିଲା ।

: ଅନୁ, ଅନୁରାଧା । ଜୟନ୍ତ ଅନୁରାଧାର ସେଇ ନିଶ୍ଚଳ ଅବୟବ ଉପରେ ହାତ ବୁଲାଇ ଅତି ଅନ୍ତରଙ୍ଗ ଭାବରେ ଡାକିଲା ।

ଜୟନ୍ତ ଅନୁରାଧା ଦେହଟାକୁ ତଳୁ ଉଠାଇ ଶୋଇବା ଘରକୁ ନେବାକୁ ସ୍ଥିର କଲା । ତା'ପରେ ଡାକ୍ତର ଡାକିବା, କାଳେ ଯଦି....

କିନ୍ତୁ ସେଇ ମୁହୂର୍ତ୍ତରେ ବାହାରୁ କେହି କବାଟ ବାଡ଼େଇବାର ଶବ୍ଦ ହେଲା ।

ଜୟନ୍ତ ଚମକି ପଡ଼ିଲା । କିଏ, କିଏ ବାହାରେ ?

ବାହାରୁ କର୍କଶ ଏକ କଣ୍ଠସ୍ୱର ଶୁଣିଲା ଜୟନ୍ତ ! କବାଟ ଖୋଲ, ଯିଏ ଭିତରେ ଥାଅନା କାହିଁକି କବାଟ ଖୋଲିଦିଅ । ମୁଁ ପୋଲିସ ଅଫିସର କହୁଛି, କବାଟ ନ ଖୋଲିଲେ କବାଟ ଭାଙ୍ଗିବାକୁ ବାଧ ହେବି ।

ଜୟନ୍ତ ଏଥର ଯେପରି ପ୍ରକୃତିସ୍ଥ ହେଲା । କିଏ ? ପୋଲିସ ! ବାହାରେ ପୋଲିସ, ଭିତରେ ମୃତଦେହ । ମଝିରେ ଜୟନ୍ତ ।

ବର୍ତ୍ତମାନ ଉପାୟ ! ଜୟନ୍ତ ବିଚଳିତ ହୋଇ ଉଠିଲା । ପୋଲିସ ଭିତରେ ପଶିଲେ ନିଶ୍ଚୟ ସେ ଜୟନ୍ତକୁ ଅନୁରାଧାର ହତ୍ୟାକାରୀ ଭାବରେ ଗିରଫ କରିବ ।

ଘନ ଘନ କବାଟ ବାଡ଼େଇବାର ଶବ୍ଦ ଶୁଣୁଥିଲା ଜୟନ୍ତ, ଆଉ ପୋଲିସ୍ ଅଫିସରଙ୍କର ସେହି କର୍କଶ କଣ୍ଠସ୍ୱର କବାଟ ଖୋଲ, କବାଟ ଖୋଲ ।

ଜୟନ୍ତ ଦେଖିଲା ବାଥ୍‌ରୁମ୍ ଭିତରେ ଆଉ ଗୋଟିଏ ଛୋଟ ଦରଜା ଅଛି । ସେଇଟା ଅବଶ୍ୟ ଭିତରୁ ବନ୍ଦଥିଲା । ଜୟନ୍ତ ସଙ୍ଗେ ସଙ୍ଗେ ଦରଜାଟା ଖୋଲିଲା । ଦେଖିଲା ବାହାରକୁ ବାହାରି ଯିବା ପାଇଁ ଗୋଟିଏ କ୍ଷୁଦ୍ର ପଥ । ସେଇ ପଥ ଦେଇ ବୋଧହୁଏ ବାଥ୍‌ରୁମ୍ ପରିଷ୍କାର କରିବା ପାଇଁ ମେହେନ୍ତର ଆସେ । ଜୟନ୍ତର ଆଉ ପଛକୁ ଚାହିଁବାର ବେଳ ନଥିଲା । ସେ ସେଇ କ୍ଷୁଦ୍ର ଅପ୍ରଶସ୍ତ ବାଟଦେଇ ବାହାରକୁ ବାହାରିଗଲା । ସେ ଭୁଲିଯାଇଥିଲା ଡ୍ରଇଂ ରୁମ୍‌ରେ ପଡ଼ିରହିଥିବା ତା' ସିଗାରେଟ୍ କେସ୍ କଥା ଏବଂ ଅନୁରାଧା ପାଇଁ ଆଣିଥିବା ଉପହାର ସାମଗ୍ରୀ କଥା ।

ଜୟନ୍ତ ପଛବାଟେ, ଗୋଟାଏ ଲୁହା ଗୋଳେଇ ଶିଡ଼ିରେ ଓହ୍ଲେଇ ଜଳେ ପହଞ୍ଚି ଯାଇଥିଲା । ତା' ଦେହ ମନରେ କୌଣସି ଚେତନା ନଥିଲା । ତା'ର ଏକମାତ୍ର ଧ୍ୟାନ ଧାରଣା ଥିଲା ଏ ସ୍ଥାନ ତ୍ୟାଗ କରି କିପରି ପଳାଇଯାଇପାରିବ । ଶେଷ ପର୍ଯ୍ୟନ୍ତ ସେ ପାରିଥିଲା, ସେତେବେଳକୁ ଘଡ଼ିରେ ବାଜୁଥିଲା ରାତି ଏଗାର । ଘର ଭିତରୁ କବାଟ ବନ୍ଦ କରି ସ୍ତବ୍ଧ ହୋଇ ବସିଯାଇଥିଲା ଅନେକ ସମୟ । ଘଟଣାକୁ ସେ ଥରେ ମନେ ପକେଇବାକୁ ଚେଷ୍ଟା କରି ଥିଲା ।

ଅନୁରାଧାର ନିମନ୍ତ୍ରଣ ରକ୍ଷା କରିବାକୁ ସେ ଯାଇଥିଲା ତା' ଘରକୁ । କିନ୍ତୁ ଏ କ'ଣ ଘଟିଗଲା ତା' ଜୀବନରେ ! ଅନୁରାଧାକୁ ସେ ତ ହତ୍ୟା କରି ନାହିଁ । ତା'ହେଲେ ଅନୁରାଧା କ'ଣ ଆତ୍ମହତ୍ୟା କରିଛି ? ସେ ଯଦି ଆତ୍ମହତ୍ୟା କରିଥାଏ, ତେବେ ପୋଲିସ କିପରି ଜାଣିଲା ସେ ସଂବାଦ ? ତା'ହେଲେ ? ଅନୁରାଧାକୁ ନିଶ୍ଚୟ କେହି ହତ୍ୟାକରି ଯାଇ ପୋଲିସକୁ ସଂବାଦ ଦେଇଛି । ଆଉ ଯେତେବେଳେ ପୋଲିସ ଆସିଛି ଅନୁରାଧା ଘରକୁ, ସେତେବେଳେ ଜୟନ୍ତ ଘର ଭିତରେ ।

ସେ ଚିନ୍ତା କରି ପାରୁ ନଥିଲା ବର୍ତ୍ତମାନ ତା'ର ଉପାୟ କ'ଣ ! ସେ ଅନୁରାଧା ଘରୁ ଲୁଚି ପଳାଇ ଆସିଲେ ବି ପୋଲିସ ନିଶ୍ଚୟ ଖୋଜି ଖୋଜି ଆସି ତା' ପାଖରେ ପହଞ୍ଚିବ, ସେତେବେଳେ କି କୈଫିୟତ ଦେବ ସେ ପୋଲିସକୁ ? ତେବେ ସେ କ'ଣ ନିଜେ ଯାଇ ଥାନାରେ ଆତ୍ମ ସମର୍ପଣ କରିବ ?

ଜୟନ୍ତ ଆଧୁନିକ ଯୁଗର ଜଣେ କୃତୀ ଇଞ୍ଜିନିଅର । 'ଭାରତ ଇଲେକ୍‌ଟ୍ରୋନିକ୍ ଇନ୍‌ଷ୍ଟିଚିଉଟ୍'ର ସେ ଜଣେ ପାର୍ଟନର । ସେ ନିଜେ ଏକ ଇଲେକ୍‌ଟ୍ରୋନିକ୍ ମେସିନ୍ ପ୍ରସ୍ତୁତ କରିବା ପାଇଁ ବ୍ଲୁ ପ୍ରିଣ୍ଟ ପଠାଇଛି ଭାରତ ସରକାରଙ୍କ ଅନୁମୋଦନ ପାଇଁ ଏବଂ ଖୁବ୍ ଶୀଘ୍ର ତା'ର ସେହି ମେସିନ୍‌ଟି ପ୍ରସ୍ତୁତ କରିବାପାଇଁ ଭାରତ ସରକାର ଅନୁମୋଦନ କରିବା ସଂବାଦ ମଧ୍ୟ ସେ ପାଇଛି । ସେଇ ମେସିନ୍ ଉଦ୍ଭାବନ ହୋଇପାରିଲେ ଦେଶର ଲକ୍ଷ ଲକ୍ଷ ରୋଗୀ ଅତି ସହଜରେ ନିରାମୟ ହେବେ, କ୍ୟାନ୍‌ସର ସଂକ୍ରମଣର ପ୍ରଥମ ଅବସ୍ଥାରୁ ଡିଟେକ୍‌ଟ୍ ହୋଇପାରିବ; ଅଥଚ, ଅଥଚ ସେ ଆଜି ଏପରି ଗୋଟାଏ ସମସ୍ୟାର ସମ୍ମୁଖୀନ ହୋଇପଡ଼ିଲା ଯେ.....

ହଠାତ୍ ଘରକୋଣର ଟେଲିଫୋନ୍‌ଟା ବାଜିଉଠିଲା ।

ଜୟନ୍ତ ଚମକି ଉଠିଲା ।

କିଏ ? କାହାର ଏ ଫୋନ୍ ? ପୋଲିସ ଷ୍ଟେସନରେ କ'ଣ ତା' ନା ଜାଣିଯାଇଛନ୍ତି ? ଟେଲିଫୋନ୍ ବାଜି ଯାଉଥିଲା । ଜୟନ୍ତ ରିସିଭର ଉଠାଇବାକୁ ଭରସା କରି ପାରୁ ନଥିଲା; ଯଦି ଫୋନ୍‌ଟା ପୋଲିସ ଷ୍ଟେସନ୍‌ରୁ ଆସିଥାଏ ! ତା'ହେଲେ......ହଁ, ତା'ହେଲେ ତ ଆଉ ଘଣ୍ଟାକ ପରେ ହୁଏତ ସ୍ୱୟଂ ପୋଲିସ ଅଫିସର ଆସି ପହଞ୍ଚିଯିବେ ତା' ରୁମ୍‌ରେ ।

ଉପାୟ, ବର୍ତ୍ତମାନ ପରିସ୍ଥିତିରେ ତା'ର କର୍ତ୍ତବ୍ୟ କ'ଣ !

ଡରି ଡରି ଜୟନ୍ତ ଟେଲିଫୋନ୍ ରିସିଭର୍‌ଟା ଉଠାଇଲା ।

: ମୁଁ ମଳୟ କହୁଛି । ଅପର ପ୍ରାନ୍ତରୁ ଶୁଣାଗଲା ।

: ମଳୟ, ଓଃ ! ତୁ ବଞ୍ଚାଇଲୁ ଭାଇ । ମୁଁ ବଡ଼ ବିପଦରେ ପଡ଼ିଛି । ତୁ ଏହି ମୁହୂର୍ତ୍ତରେ.....

: ମୁଁ ସବୁ ଜାଣେ ଜୟନ୍ତ । ଥାନାର ଜଣେ ପୋଲିସ୍ ଅଫିସର ମୋର ବନ୍ଧୁ । ସେ ମୋତେ ଫୋନ୍ କରିଥିଲେ । ତୁ କୁଆଡ଼େ ଅନୁରାଧାକୁ.....

: ନା ନା ମଳୟ ମୁଁ ଅନୁରାଧାକୁ ଖୁନ୍ କରି ନାହିଁ । ମୁଁ ଯାଇ ଦେଖେ ତ ଅନୁରାଧା ତା' ବାଥ୍‌ରୁମ୍‌ରେ ବାଥ୍‌ଟବ୍ ଉପରେ ମୁହଁମାଡ଼ି ଶୋଇ ରହିଛି । ମୁଁ ତାକୁ ମୃତ ଅବସ୍ଥାରେ ଆବିଷ୍କାର କଲି ।

: ମୁଁ ବିଶ୍ୱାସ କରୁଛି, କିନ୍ତୁ ପୋଲିସବାଲା ତାହା ବିଶ୍ୱାସ କରିବେ ନାହିଁ । ସେ ଅନୁରାଧା ଘରୁ ତୋ ନାମାଙ୍କିତ ସିଗାରେଟ୍ କେସ୍ ଉଦ୍ଧାର କରିଛନ୍ତି । ସମ୍ଭବତଃ ଖୁବ୍ ଶୀଘ୍ର ସେମାନେ ତୋତେ ଆରେଷ୍ଟ କରିବା ପାଇଁ ତୋ ଘରକୁ ଯାଇପାରନ୍ତି ।

: ତା'ହେଲେ....

: ବର୍ତ୍ତମାନ ପରିସ୍ଥିତିରେ ତୋର ଧରା ନ ପଡ଼ିବା ହିଁ ଭଲ । ତୁ ଯଥାସମ୍ଭବ ଶୀଘ୍ର ମୋ' ଘରକୁ ଚାଲିଆ । ତା'ପରେ ଚିନ୍ତା କରି ଦେଖିବା ଆମର କର୍ତ୍ତବ୍ୟ କ'ଣ ? ଆଉ ଡେରି କର ନାହିଁ, ହୁଏତ, ହୁଏତ ସେମାନେ....

ଜୟନ୍ତ ଆଉ କିଛି ଶୁଣିଲା ନାହିଁ । ଶୁଣିବା ପାଇଁ ତା'ର ଧୈର୍ଯ୍ୟ ନଥିଲା । ରିସିଭରଟା କ୍ରେଡ଼େଲ ଉପରେ ରଖି ଦେଇ ସଙ୍ଗେ ସଙ୍ଗେ ସେ ଘରୁ ବାହାରି ଚାଲିଗଲା ।

ମଳୟ ଚଉଧୁରୀ ଜୟନ୍ତର ବାଲ୍ୟ ବଂଧୁ । ଦୁହେଁ ଏକା ସଙ୍ଗରେ ପଢ଼ିଥିଲେ ଏକ କଲେଜରେ, ଏକା ସଙ୍ଗରେ ପାସ୍ କରିଥିଲେ ବିଶ୍ୱ ବିଦ୍ୟାଳୟରୁ । ଜୟନ୍ତ ହୋଇଥିଲା ଫାଷ୍ଟକ୍ଲାସ ଫାଷ୍ଟ ଆଉ ମଳୟ ଚଉଧୁରୀ ଖାଲି ପାସ । କିନ୍ତୁ ମଳୟ ଚଉଧୁରୀ ଟଙ୍କା ଓ ଜୟନ୍ତର ଅଧ୍ୟବସାୟରେ ଭାରତ ଇଲେକ୍‌ଟ୍ରୋନିକ୍ ଇନିଷ୍ଟିଟିଉଟ୍ ଦିନକୁ ଦିନ ବଢ଼ି ଉଠିଥିଲା । ହଠାତ୍ ଏପରି ଏକ ବିପର୍ଯ୍ୟୟର ସମ୍ମୁଖୀନ ସେମାନେ ହେବେ, କେହି ଆଶା କରି ନଥିଲେ ।

ମଳୟ ଚଉଧୁରୀ ତାଙ୍କ ଘର ସାମ୍‌ନାରେ କାର୍ ଠିଆ କରି ଅପେକ୍ଷା କରି ଥିଲା । ଜୟନ୍ତ ସେଠାରେ ପହଞ୍ଚିବା ମାତ୍ରକେ ମଳୟ ଗାଡ଼ି ଷ୍ଟାର୍ଟ କରିଦେଲା । ଜୟନ୍ତ ବସିଲା ମଳୟର ବାଁ ପାଖରେ । ତା'ର ସମଗ୍ର ଦେହ ଘର୍ମାକ୍ତ ହୋଇ ଉଠିଥିଲା । ପ୍ରଥମେ ସେ ମଳୟକୁ କିଛି କହିପାରିଲା ନାହିଁ ।

କିଛି ସମୟ ପରେ ମଳୟ ପ୍ରଥମେ ଆରମ୍ଭ କଲା : ମୋର ସେ ପୋଲିସ ଅଫିସର ବନ୍ଧୁଟି ତୋ' ନା ଜାଣିଥିଲା, ସୌଭାଗ୍ୟବଶତଃ ମୋତେ ଟେଲିଫୋନ୍‌ରେ ପାଇଲା । ତା' ନ ହୋଇଥିଲେ ଅବସ୍ଥା କ'ଣ ଯେ ହୋଇ ଥାଆନ୍ତା....

ଜୟନ୍ତ ମଳୟର ହାତଟାକୁ ଜାବୁଡ଼ି ଧରି ବ୍ୟଥିତ କଣ୍ଠରେ କହିଲା : ତୁ ବିଶ୍ୱାସ କର ମଳୟ ମୁଁ ଯାଇ ଅନୁରାଧାକୁ ମୃତ ଅବସ୍ଥାରେ ଦେଖିଲି ।

: ମୁଁ ବିଶ୍ୱାସ କରୁଛି ଜୟନ୍ତ । ତୋତେ ମୋର ଅବିଶ୍ୱାସ କରିବାର କ'ଣ ଅଛି ! କିନ୍ତୁ ପୋଲିସ୍ ଲୋକେ ମୋ' କଥା ବା ତୋ' କଥା ବିଶ୍ୱାସ କରିବେ ନାହିଁ । ବିଶେଷତଃ ତୁ ସେଠାରେ ଫିଙ୍ଗିଦେଇ ଆସିଥିବା ତୋର ନାମାଙ୍କିତ ସିଗାରେଟ୍ କେସ୍‌ଟି କାଳ ହୋଇ ଠିଆହୋଇଛି । ତା'ଛଡ଼ା ତୋ ଫିଙ୍ଗର ପ୍ରିଣ୍ଟ ଏବଂ ଫୁଟ୍ ପ୍ରିଣ୍ଟ ସେମାନେ ସଂଗ୍ରହ କରିଛନ୍ତି । ଫଳରେ....

ଜୟନ୍ତ ମୁହଁ ବନ୍ଦ ହୋଇଗଲା । ସେ ମଳୟ କଥାର ଉତ୍ତର ଖୋଜି ପାଉ ନଥିଲା ।

ମଳୟ କହିଲା : ମୁଁ ଗୋଟାଏ ଉପାୟ ସ୍ଥିର କରିଛି ଜୟନ୍ତ, ଜାଣେନି ପରାମର୍ଶଟା ତୋ ମନକୁ ଯିବ କି ନାହିଁ; କିନ୍ତୁ ଏହାଛଡ଼ା ଯେ ଅନ୍ୟ ଉପାୟ ନାହିଁ ।

ଜୟନ୍ତ ମଳୟର କଥା ଏଡ଼େଇ ଯାଇ କହିଲା  ଆମେ ବର୍ତ୍ତମାନ କୁଆଡ଼େ ଯାଉଛେ ?

: ସେଇ ଆଡ଼େ ।

: ସେଇଆଡ଼େ ମାନେ ?

: ରୁଦ୍ରପ୍ରସାଦକୁ ମୁଁ ଟେଲିଫୋନ୍‌ରେ କଣ୍ଟାକ୍ଟ କରିଥିଲି । ସେ ଏଠାରେ ଅଛି ।

: ରୁଦ୍ର ପ୍ରସାଦ, କୋଉ ରୁଦ୍ରପ୍ରସାଦ କଥା ତୁ କହୁଛୁ ?

: ସେଇ ମୋର ବନ୍ଧୁ । ନେପାଳ ରାଜାଙ୍କର ଡାହାଣ ହାତ । ନେପାଳ ପାଇଁ ଆମ ଇଲେକ୍‌ଟ୍ରୋନିକ୍ ଏଜେନ୍‌ସୀ ଦେବା ଲାଗି ଯାହା କଥା ମୁଁ ତତେ କହୁଥିଲି ।

: ବୁଝିଲି; କିନ୍ତୁ ତା' ପାଖକୁ ଯାଇ ଲାଭ ?

: ଲାଭ ନିଶ୍ଚୟ ଅଛି । ତୁ ଆଗ ମୋ କଥାଟା ମନଦେଇ ଶୁଣ । ମୁଁ ଭାବୁଛି, ତୋ'ର ଆପାତତଃ କିଛି ଦିନ ପାଇଁ ଏଠାରେ ରହିବା ଉଚିତ ହେବ ନାହିଁ । ସେମାନେ ଯେତେବେଳେ ନିଶ୍ଚିତ ଭାବରେ ତୋତେ ଅନୁରାଧାର ହତ୍ୟାକାରୀ ବୋଲି ଧରି ନେଇଛନ୍ତି, ନିଶ୍ଚୟ ତୋତେ ଲକ୍‌ଅପ୍‌ରେ ଭରିଦେବେ । ବିଚାର ଶେଷ ନ ହେବାଯାଏ ଯାମିନ୍ ଦେବେ ନାହିଁ । ଖବର କାଗଜରେ ନାନା ଉଦ୍ଭଟ ଲେଖାମାନ ପ୍ରକାଶ ପାଇବ - ଏଇସବୁ ଅପ୍ରୀତିକର ସମସ୍ୟାକୁ ଏଡ଼େଇ ଯିବା ପାଇଁ ତୋର ଭାରତ ବାହାରକୁ ଚାଲିଯିବା ଭଲ । ତେଣୁ ନେପାଳ ଆମ ପାଖରେ । ଦୁଇଘଣ୍ଟାର ରାସ୍ତା । ତା'ଛଡ଼ା ମୁଁ ଭାବିଛି ପ୍ରମାଣ କରାଇବାକୁ ଆମେ ଚେଷ୍ଟା କରିବା ଯେ, ଅନୁରାଧାର ମୃତ୍ୟୁର ଦିନକ ଆଗରୁ ତୁ ନେପାଳ ଚାଲିଯାଇଥିଲୁ । ଆଉ ତୋ'ର ସେହି ନାମାଙ୍କିତ ସିଗାରେଟ କେସ୍ ଯେଉଁଟା ଅନୁରାଧା ଘରୁ ମିଳିଛି, ସେଇଟା ଚୋରି ହୋଇପାରେ; ଆଉ ରହିଲା ଫିଙ୍ଗର ପ୍ରିଣ୍ଟ, ଫୁଟ୍ ପ୍ରିଣ୍ଟର ସମସ୍ୟା । ହଠାତ୍ ସେମାନେ ତୋତେ ନ ପାଇଲେ, ସେଇ ସମସ୍ୟାଟା ବି କାଳ କ୍ରମେ ଧୂଆଁବାଣରେ ପରିଣତ ହୋଇପାରେ ।

ସେମାନେ ଆସି ରୁଦ୍ରପ୍ରସାଦ ଥିବା ହୋଟେଲ ଦୁଆରେ ପହଞ୍ଚିଯାଇଥିଲେ । ରୁଦ୍ରପ୍ରସାଦ ସେମାନଙ୍କ ପାଇଁ ଅପେକ୍ଷା କରି ବସିଥିଲେ । ଜୟନ୍ତକୁ ଦେଖିବା ମାତ୍ରେ କୋଳକୁ ଭିଡ଼ି ନେଇ ପିଠି ଥାପୁଡ଼େଇ କହିଲେ : ତମେ କିଛି ଚିନ୍ତା କର ନାହିଁ ୟଙ୍ଗମ୍ୟାନ୍, ମୁଁ ସବୁ ଠିକ୍ କରିଦେବି ।

ମଳୟ ଚଉଧୁରୀ ଦୁଆର ବନ୍ଦ କରି ସେମାନଙ୍କ ସହିତ ଭିତରକୁ ପଶିଲା ।

ଜୟନ୍ତର ସମଗ୍ର ଦେହରେ ଯେପରି ଅବଶତା ଘୋଟିଯାଇଥିଲା । ସେ ରୁଦ୍ରପ୍ରସାଦ କୋଳରୁ ନିଜକୁ ମୁକ୍ତକରି ଗୋଟାଏ ସୋଫା ଉପରେ ବସିପଡ଼ିଲା ।

ରୁଦ୍ରପ୍ରସାଦ ଯଦିଓ ନେପାଳର ସ୍ଥାୟୀବାସିନ୍ଦା ସେ କିନ୍ତୁ ଜାତିରେ ନେପାଳୀ ନୁହନ୍ତି । ରୁଦ୍ରପ୍ରସାଦଙ୍କ ସାଆନ୍ତବାପା ନେପାଳ ରାଜାଙ୍କ ଦରବାରରେ ଚାକିରି ପାଇ ସେଠାରେ ଘରଦ୍ୱାର କରି ସ୍ଥାୟୀବାସିନ୍ଦା ହୋଇଯାଇଥିଲେ । ତା'ପରେ ରୁଦ୍ରପ୍ରସାଦଙ୍କ ବାପା ଏବଂ ଏବେ ସ୍ୱୟଂ ରୁଦ୍ରପ୍ରସାଦ ରାଜାଙ୍କ କରୁଣାଧନ୍ୟ ହୋଇ ରହିଛନ୍ତି । ରୁଦ୍ରପ୍ରସାଦ ଯଦିଓ ରାଜ କର୍ମଚାରୀ ନୁହନ୍ତି; କିନ୍ତୁ ବର୍ତ୍ତମାନ ରାଜାଙ୍କର ସେ ବିଶେଷ ବନ୍ଧୁ । ଏପରିକି ରାଜାଙ୍କର ଅନ୍ୟତମ ରାଜନୈତିକ ପରାମର୍ଶଦାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେଇଥି ପାଇଁ ରୁଦ୍ରପ୍ରସାଦଙ୍କର ନେପାଳରେ ପ୍ରତିପତ୍ତି ଯଥେଷ୍ଟ ।

ରୁଦ୍ରପ୍ରସାଦ ଜୟନ୍ତର ସାମନା ସୋଫାରେ ବସିପଡ଼ି କହିବାକୁ ଆରମ୍ଭ କରିଦେଲେ : ମଳୟଠାରୁ ମୁଁ ସବୁ ଶୁଣିଛି । ଘଟଣାଟା ଦୁର୍ଭାଗ୍ୟଜନକ। ସେଥିପାଇଁ ଚିନ୍ତା ବା ଅନୁଶୋଚନା କରିବାର କିଛି ନାହିଁ । ତମର ଲମ୍ବା ଜୀବନ ପଡ଼ିରହିଛି ୟଙ୍ଗମ୍ୟାନ୍ । ଏହାଠାରୁ ଆହୁରି ବଡ଼ ବଡ଼ ଘଟଣା-ଦୁର୍ଘଟଣା ଅନେକ ଘଟିବ; ତା'ବୋଲି ତମେ ଭାଙ୍ଗିପଡ଼ି ତମ ପ୍ରତିଭାକୁ ନଷ୍ଟ କରିଦେବ ! କିଛି ଚିନ୍ତା କର ନାହିଁ । ଘଟଣାଟା ସହସା ଘଟିଛି ଯେତେବେଳେ କେଇଦିନ ଟିକିଏ ଘମାଘୋଟ ତଦନ୍ତ ଚାଲିବ । ତା'ପରେ ଧୀରେ ଧୀରେ ସବୁ ଶିଥିଳ ହୋଇଯିବ । ତେଣୁ ସେଇ କେତୋଟି ଦିନ ତମେ ନେପାଳରେ ମୋର ଅତିଥି ହୋଇ ରହିବ, କେହି କିଛି ଜାଣିପାରିବେ ନାହିଁ, ବୁଝିପାରିବେ ନାହିଁ । ତା'ପରେ

ଆକାଶ ଯେତେବେଳେ ମେଘମୁକ୍ତ ହୋଇଯିବ, ତମେ ପୁଣି ଫେରିଆସିବ ଏବଂ କାମରେ ମନୋନିବେଶ କରିବ । ବର୍ତ୍ତମାନ କେତୋଟି ଦିନ ତମର ବିଶ୍ରାମ ଏକାନ୍ତ ଆବଶ୍ୟକ ।

ସତରେ ରୁଦ୍ରପ୍ରସାଦ କଥା ଶୁଣି ଜୟନ୍ତ ମନେ ମନେ କୃତଜ୍ଞ ହୋଇ ଉଠିଥିଲା । ସେ ଯାହା କହୁଛନ୍ତି, ତହିଁରୁ ପ୍ରତିଟି ଅକ୍ଷର ସତ୍ୟ । ଜୟନ୍ତ ଅସହାୟ ଦୃଷ୍ଟିରେ ମଳୟ ମୁହଁକୁ ଚାହିଁଲା ।

ମଳୟ କହିଲା : କାଲି ତାଙ୍କର ନେପାଳ ଫେରିଯିବାର ଅଛି । ମୁଁ ଭାବୁଛି ତୁ ମିଷ୍ଟର ରୁଦ୍ରପ୍ରସାଦଙ୍କ ସହିତ ଚାଲିଯା' । ଏଣେ ପରିସ୍ଥିତିଟା ଟିକିଏ ଶାନ୍ତ ହେଉ, ମୁଁ ଚେଷ୍ଟା କରିବି କେସ୍‌ଟାକୁ ଚାପିଦେବା ପାଇଁ ତା'ପରେ ଦେଖାଯିବ ।

ରୁଦ୍ରପ୍ରସାଦ କହିଲେ : ହଁ, କାଲି ରଏଲ ନେପାଳ ଏୟାର ଲାଇନ୍‌ସରେ ମୋର ଦୁଇଖଣ୍ଡ ଟିକେଟ୍ କଟା ଅଛି । ମୋ' ସଙ୍ଗରେ ଅନ୍ୟ ଯେଉଁ ବନ୍ଧୁଙ୍କର ଯିବାର କଥା, ଆପତତଃ ତାଙ୍କର ଯିବାଟା ବନ୍ଦ ରଖି ମୁଁ ତମକୁ ସଙ୍ଗରେ ନେଇଯିବି ।

ମଳୟ କହିଲା : ହଁ ଏହାଠାରୁ ନିରାପଦ ପ୍ରସ୍ତାବ ଆଉ କିଛି ନାହିଁ ଜୟନ୍ତ । ତୁ କାଲି ଚାଲିଯା' । ଦୁଇ ଚାରିଦିନ ପରେ ମୁଁ ନିଜେ ଯାଇ ତୋ ସଙ୍ଗରେ ଦେଖାକରି ପରବର୍ତ୍ତୀ ପରିସ୍ଥିତି ସମ୍ବନ୍ଧରେ ସବୁକଥା କହିବି ।

ପରଦିନ ଜୟନ୍ତ ଚାଲିଆସିଥିଲା ରୁଦ୍ରପ୍ରସାଦଙ୍କ ସହିତ । ସେ ଆସି ଏହି ଅତିଥିଶାଳାରେ ତାକୁ ଛାଡ଼ିଦେଇ ଯାଇଛନ୍ତି । ଖାଇବା, ପିଇବା, ସ୍ୱାଚ୍ଛନ୍ଦ୍ୟ କେଉଁଥିରେ ହେଲେ ଟିକିଏ ଅବହେଳା ନାହିଁ; କିନ୍ତୁ ରୁଦ୍ରପ୍ରସାଦ ଗଲେ କୁଆଡ଼େ ? ମଳୟ ବା ଆସିଲା ନାହିଁ କାହିଁକି ?-

ଅବଶ୍ୟ ଜୟନ୍ତ ଏ ଘରେ ରହିବା ଦିନଠାରୁ କେବେ ସେ ବାହାରକୁ ବାହାରିବାକୁ ଚେଷ୍ଟା କରି ନାହିଁ । ସେ କେବଳ ଅପେକ୍ଷା କରୁଛି ଗୋଟାଏ ସମ୍ବାଦକୁ । ତା' କେସ୍‌ଟା କ'ଣ ହେଲା ! ଅନୁରାଧାର ପ୍ରକୃତ ହତ୍ୟାକାରୀକୁ ଖୋଜି ବାହାର କରା ହେଲା କି ନାହିଁ ? ଏ ସଂବାଦ ମଳୟଠାରୁ ସେ ଆଶାକରୁଥିଲା । ଭାବିଥିଲା ମଳୟ ଆସି ତାକୁ ସବୁକଥା କହିଯିବ; କିନ୍ତୁ କିଏ କାହିଁ ? ବରଂ ଆଜି ହଠାତ୍ ରୋଜିଠାରୁ ଜାଣିବାକୁ ପାଇଲା ଯେ, ସେ ଏଠାରେ ବନ୍ଦୀ । ତାକୁ ନଜର ବନ୍ଦୀ କରି ରଖାହୋଇଛି ।

ଅସମ୍ଭବ, ସେ ନଜରବନ୍ଦୀ ହେବ କାହିଁକି ? ରୋଜି ହୁଏତ ତା' ସମ୍ବନ୍ଧରେ କିଛି ଜାଣି ନାହିଁ । ଅନୁରାଧା ରୋଜିର ବନ୍ଧୁ ହୋଇପାରେ । ରୋଜିକୁ କିନ୍ତୁ ଅନୁରାଧା ଜୟନ୍ତର ଅସଲ ପରିଚୟଟା ଦେଇ ନାହିଁ; କିନ୍ତୁ ରୋଜି ଯେତିକି ଜାଣିଛି, ସେତିକି ତ ତା' ପକ୍ଷରେ କମ୍ ନୁହେଁ । ତା'ଛଡ଼ା ରୋଜି ବା ତା' ପଛେ ପଛେ ଛୁଟିଛି କାହିଁକି ? ସେ କିଏ ? କ'ଣ ତା' ଉଦ୍ଦେଶ୍ୟ ?

ତଥାପି ଜୟନ୍ତ ରୋଜିର ଆଳାପ ଭଲଲାଗିଥିଲା । ସେ ଯଦି ପାଖରେ ଥାଆନ୍ତା, ଜୟନ୍ତ ଆଦୌ କ୍ଲାନ୍ତ ହୋଇ ପଡ଼ିନଥାନ୍ତା । ବରଂ ରୋଜି ସହିତ ଆଳାପ ହେବା ପରଠାରୁ ସେ କିପରି ବିବ୍ରତ ହୋଇ ଉଠିଛି । ଆଉ ଏଠି ବସି ରହିବାକୁ ଭଲ ଲାଗୁ ନାହିଁ । ସେ ଟିକିଏ ବାହାରୁ ବୁଲି ଆସିଲେ ହୁଅନ୍ତା ନାହିଁ ! ଏଇ ବିଦେଶ ଭୂଇଁରେ କିଏ ବା ତା'କୁ ଚିହ୍ନିବ !

ଜୟନ୍ତର ମନ ଆଉ ସ୍ଥିର ହୋଇ ରହିଲା ନାହିଁ । ହଁ, ସେ ବାହାରକୁ ଯିବ । ବାହାରକୁ ବାହାରିଲେ ବୁଝିପାରିବ ସେ ନଜରବନ୍ଦୀ ହୋଇଛି କି ମୁକ୍ତ ବିହଙ୍ଗ ।

କିନ୍ତୁ ସତରେ ଯେତେବେଳେ ବାହାରକୁ ବାହାରିବା ପାଇଁ ଅତିଥିଶାଳାର ପ୍ରହରୀ ଜୟନ୍ତକୁ ବାରଣ କଲେ, ସେତେବେଳେ ଜୟନ୍ତ ମନରେ ଖଟ୍‌କା ଲାଗିଲା । ପ୍ରହରୀ ଅବଶ୍ୟ ଅନୁନୟ ହୋଇ ଜୟନ୍ତକୁ କହିଲା : ଆପଣ ତ ଏଠି ନୂଆ ଲୋକ, ଆପଣ କୁଆଡ଼େ ବାହାରିବେ କହିଲେ ? ମୁଁ ଆପଣଙ୍କ ସହିତ ଜଣେ ଲୋକ ପଠାଇବି । ସେ ଆପଣଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ନେଇ ବୁଲାଇ ଆଣିବ ।

ପ୍ରହରୀର ଏଇ କଥା ଯେ ଉଦ୍ଦେଶ୍ୟମୂଳକ, ଜୟନ୍ତର କାହିଁକି ସେପରି ମନେ ହେଲା ଏବଂ ଆହୁରି ମନେହେଲା, ରୋଜି ହୁଏତ ସତ କଥା କହିଛି । ସେ ଏହି ଅତିଥିଶାଳାରେ ନଜର ବନ୍ଦୀ; କିନ୍ତୁ କାହିଁକି ?

ରାତି ଅନେକ ବେଳରୁ ପାହିସାରିଥିଲା । ଜୟନ୍ତର ବ୍ରେକ୍‌ଫାଷ୍ଟ ଖିଆ ଶେଷ ହୋଇଥିଲା । ସେ ବସି ବସି ଚିନ୍ତା କରୁଥିଲା, ଆଜି ଏହାର ଗୋଟାଏ ସମାଧାନ କରିବାକୁ ହେବ । ସେ ନିଶ୍ଚିତ ହେବାକୁ ଚାହେଁ; ପ୍ରକୃତରେ ସେ ଅତିଥି ନା ବନ୍ଦୀ ? କାହାଠାରୁ ଜାଣିବ ସେ ଅସଲ ରହସ୍ୟ ?

ଜୟନ୍ତ ଉଠି ଠିଆହେଲା । ତା'ର ମନେ ହେଉଥିଲା ରୋଜି ଆଜି ଆଉଥରେ ତାକୁ ଟେଲିଫୋନ୍ କରିବ । ମନ ବି ଚାହୁଁଥିଲା ରୋଜି ସଙ୍ଗରେ କଥା କହି ତା' ସମ୍ବନ୍ଧରେ ଆଉ କିଛି ତଥ୍ୟ ଜାଣିବା ପାଇଁ । ଉଠିଯାଇ ଟେଲିଫୋନ୍ ରିସିଭରଟା ଉଠାଇଲା ଜୟନ୍ତ । ଡାଏଲ ଟୋନ୍ ଭାସିଆସିଲା ଟେଲିଫୋନ୍ ଭିତରୁ । କାହାକୁ ଗୋଟାଏ ଫୋନ୍ କଲେ ହୁଅନ୍ତା ନାହିଁ ? କିନ୍ତୁ କାହାରି ନମ୍ବର ତ ଜଣାନାହିଁ ତାକୁ । ରିସିଭରଟା କ୍ରେଡ଼େଲ ଉପରେ ରଖିଦେଲା ଜୟନ୍ତ ।

ବାହାରୁ କେହି ଘରର ଦରଜା ଖୋଲିବାର ଶବ୍ଦ ହେଲା । ଜୟନ୍ତ ବୁଲି ଅନେଇଲା । ଭିତରକୁ ପ୍ରବେଶ କରୁଛି ପ୍ରହରୀ । ତା'ପଛରେ, ଗୋଟିଏ ସୁନ୍ଦରୀ ଝିଅ । ବସନ ବ୍ୟସନରେ ଆଧୁନିକା । ଜୟନ୍ତର ଆଖି ଲାଗିଗଲା ଝିଅଟି ଉପରେ ।

ପ୍ରହରୀ ଅଭିବାଦନ ଜଣାଇ କହିଲା : ମିସ୍ ମାଳବିକା କାନନ୍ । ଆପଣଙ୍କ ସେବାରେ ନିଯୁକ୍ତି ପାଇଛନ୍ତି । ଆପଣ ଏହାଙ୍କ ସଙ୍ଗରେ ସମଗ୍ର ନେପାଳ ବୁଲି ଦେଖିପାରିବେ ।

ମାଳବିକା କାନନ୍ !

ଜୟନ୍ତର ଆଖି ଦୁଇଟା ସ୍ଥିର ହୋଇଗଲା । ଛବି ଭଳି ଝିଅଟିଏ । ଅନେକଟା ଅନୁରାଧା ପରି ଦେଖିବାକୁ ।

ମାଳବିକା ଯୋଡ଼ହାତରେ ନମସ୍କାର କରିଥିଲା । ଜୟନ୍ତ କିନ୍ତୁ ପ୍ରତି ନମସ୍କାର କରିବାକୁ ଭୁଲିଯାଇଥିଲା । ସେ ମନେ ମନେ ତୁଳନା କରୁଥିଲା ଅନୁରାଧା ସହିତ

ମାଳବିକାକୁ । ଆଖି, ନାକ, କପାଳ ସବୁଠି ଯେପରି ଅନୁରାଧାର ପ୍ରତିବିମ୍ବ ଫୁଟି ଉଠିଛି । କିନ୍ତୁ ମାଳବିକାର ଓଠଟା ଆହୁରି ରସାଳ, ହସଟା ଆହୁରି ମଧୁର ।

: ମୁଁ ଆସୁଛି ସାର୍ । ପ୍ରହରୀର କଥାରେ ଜୟନ୍ତର ଚେତା ଫେରିଲା । ସେ ବ୍ୟସ୍ତ ହୋଇ ଉଠିଲା : ତମେ ବସ ମାଳବିକା, ଠିଆ ହୋଇ ରହିଲ ଯେ...... । ହଁ ହଁ, ତମେ ଯାଇପାର ପ୍ରହରୀ । କିନ୍ତୁ ମୁଁ ଯେ ଆଜି ଟିକିଏ ବାହାରିବାକୁ ଚାହେଁ । ରୁଦ୍ରପ୍ରସାଦଙ୍କ ସହିତ କେଉଁଠି ଦେଖାହେବ?

ପ୍ରହରୀ ବିନୀତ କଣ୍ଠରେ କହିଲା : ମାଳବିକା କାନନ୍ ଆପଣଙ୍କ ସବୁ ପ୍ରଶ୍ନର ଉତ୍ତର ଦେବେ ।

ପ୍ରହରୀ ଅଭିବାଦନ ଜଣାଇ ଚାଲିଗଲା ।

ଜୟନ୍ତ ସେ ଆଡୁ ଆଖି ଫେରାଇ ଆଣି ଚାହିଁଲା ମାଳବିକା ମୁହଁକୁ ।

: ତମେ ମାଳବିକା କାନନ୍ ?

ମାଳବିକା ସ୍ମିତ ହସି କେବଳ ମୁଣ୍ଡ ହଲାଇଲା ।

: ତମୁକୁ ଏଠାକୁ କିଏ ପଠାଇଛି ?

: ରୁଦ୍ରପ୍ରସାଦ । ସେ ପଠାଇଛନ୍ତି ଆପଣଙ୍କ ସେବା କରିବା ପାଇଁ । ଆପଣଙ୍କୁ ନେପାଳ ଦେଖାଇବା ପାଇଁ । ଆପଣ ମୋ' ଉପରେ ଭରସା କରି ପାରନ୍ତି ।

: ରୁଦ୍ରପ୍ରସାଦ ତମର କ'ଣ ହୁଅନ୍ତି ?

: ବସ୍ ।

: ହୁଁ । ମୁଁ ଯଦି ତମ ସେବା ଗ୍ରହଣ ନ କରେ ?

: ସେପରି କହିବେନି ସାର୍ । ଆପଣଙ୍କ ସେବା କରି ନପାରିଲେ ମୋର ଚାକିରି ଚାଲିଯିବ ।

: ହୁଁ, ଜୟନ୍ତ ସୋଫା ଉପରେ ବସିଲା । ମାଳବିକା ତା'ହେଲେ ନିଯୁକ୍ତି ପାଇଛି ଜୟନ୍ତର ସେବା କରିବା ପାଇଁ । ଭଲହେଲା, ତା'ର ଜଣେ ସାଥୀ ଆବଶ୍ୟକ ଥିଲା । ଏକା ଏକା ଏହି ଘରେ ବସି ବସି ତା'ର ଆଉ ସମୟ କଟୁ ନଥିଲା; କିନ୍ତୁ ମଳୟ ଗଲା କୁଆଡ଼େ ! ଏହା ଭିତରେ ସାତ ଆଠଦିନ ଅତିବାହିତ ହୋଇଗଲାଣି । ଅନୁରାଧା ମୃତ୍ୟୁ ସମ୍ବନ୍ଧରେ ସେ କୌଣସି ସମ୍ବାଦ ପାଇଲା ନାହିଁ ।

ଜୟନ୍ତ ମାଳବିକା ମୁହଁକୁ ଚାହିଁଲା । ବାରମ୍ବାର ତା' ମୁହଁକୁ ଆଖି ଚାଲିଯାଇଥିଲା ଅନୁରାଧାର ପ୍ରତିବିମ୍ବ ଦେଖିବା ପାଇଁ । ଯାହାକୁ ସେ ଭଲ ପାଇଥିଲା, ତା'ରି ହତ୍ୟାକଳଙ୍କ ଜୟନ୍ତକୁ ବହନ କରିବାକୁ ହେଉଛି ।

କିନ୍ତୁ ମାଳବିକା ! ପୁଣି ଥରେ ଚାହିଁଲା ମାଳବିକା ମୁହଁକୁ । ସେ ତାକୁ ଚିହ୍ନେ ନାହିଁ; ତଥାପି ମାଳବିକା ଆସିଚି ତା' ପାଖକୁ । ତା' ସେବା କରିବାପାଇଁ । ଜୟନ୍ତ ମନେ ମନେ ହସିଉଠିଲା ।

ମାଳବିକା ଏଥର ମୁହଁ ଖୋଲିଲା : ଆପଣ କ'ଣ କୁଆଡ଼େ ବାହାରିବେ ଆଜି ? ତଳେ ଆପଣଙ୍କ ପାଇଁ ଗାଡ଼ି ଅପେକ୍ଷା କରିଛି ।

: ମୁଁ, ମାନେ ମୋ' ବାହାରିବା କଥା କହୁଛ ? ହଁ ହଁ, ବାହାରିବା । ମୋତେ ତମେ ରୁଦ୍ରପ୍ରସାଦଙ୍କ ପାଖକୁ ନେଇଚାଲ । ତାଙ୍କ ସହିତ ମୋର କେତୋଟି ଜରୁରୀ କାମ ଅଛି । ଜୟନ୍ତ କହିଲା ।

: କିନ୍ତୁ ସେ ତ ନାହାନ୍ତି ସାର୍ ! ଗତକାଲି ସେ ବାହାରକୁ ଚାଲି ଯାଇଛନ୍ତି ।

: କ'ଣ ଇଣ୍ଡିଆକୁ ?

: ମୁଁ ଜାଣି ନାହିଁ ।

: ହୁଁ, ଆଚ୍ଛା ମାଳବିକା, ତମେ କହିପାରିବ ମୁଁ ଯେଉଁଠି ବର୍ତ୍ତମାନ ଅଛି ସେ କାହା ଘର । କିଏ ମୋତେ ଏଠି ରଖିଛି, କାହିଁକି ରଖିଛି ?..... ଇତ୍ୟାଦି ଇତ୍ୟାଦି ।

ମାଳବିକା ହସିଲା । କହିଲା : ଆପଣ ଯେଉଁଠି ଅଛନ୍ତି, ସେ ଜାଗାଟାର ନାମ ହେଉଛି ଦରବାର ସ୍କୋୟାର । ଏଇ ଘରକୁ ଲାଗି ପୁରୁଣା ରାଜବାଟୀ । ଏଇ ଘରଟା ପୁରୁଣା ରାଜବାଟୀର ଅତିଥିଶାଳା । ଆପଣ ସେଇଠି ଅଛନ୍ତି; କିନ୍ତୁ ଏଠାରେ ଆପଣ କାହିଁକି ଅଛନ୍ତି, କିଏ ଆପଣଙ୍କୁ ରଖିଛି ଇତ୍ୟାଦି ଇତ୍ୟାଦି ସମ୍ବନ୍ଧରେ ମୋତେ କିଛି ଜଣା ନାହିଁ ।

ଜୟନ୍ତ କିଛି ସମୟ ମାଳବିକା ମୁହଁକୁ ଅନାଇ ରହି କରୁଣ ସ୍ୱରରେ କହିଲା : ତମେ ମିଛ କହୁଛ ମାଳବିକା । ତମେ ସବୁ ଜାଣିଛ, ତମକୁ ଯେତେବେଳେ ରୁଦ୍ରପ୍ରସାଦ ମୋର ସେବା ପାଇଁ ନିଯୁକ୍ତି କରିଛନ୍ତି ସେ ତମକୁ ନିଶ୍ଚୟ ମୋ ସମ୍ବନ୍ଧରେ ସବୁକଥା କହିଛନ୍ତି । ହଁ ମାଳବିକା ! ତମେ ମୋ' ସମ୍ବନ୍ଧରେ, ମୋର ଅବସ୍ଥିତି ସମ୍ବନ୍ଧରେ ଏବଂ ମୋର ପରିଣତି ସମ୍ବନ୍ଧରେ, ସବୁ କଥା ଜାଣିଛ; କିନ୍ତୁ ମୁହଁବୁଜି ରହିଛ ।

: ନା ନା, ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର । ମୁଁ କେବଳ ଆପଣଙ୍କ ନାମ ଛଡ଼ା ଆଉ କିଛି ଜାଣି ନାହିଁ । ଆପଣ ଆମର ଅତିଥି । ଅତିଥି ସତ୍କାରର ଦାୟିତ୍ୱ ମୋତେ ଦେଇଛନ୍ତି ରୁଦ୍ରପ୍ରସାଦ । ଆପଣଙ୍କର ଯେପରି କିଛି ଅସୁବିଧା ନହୁଏ, ସବୁ ଆଡ଼କୁ ଦୃଷ୍ଟି ରଖି ଆପଣଙ୍କୁ ସ୍ୱଚ୍ଛନ୍ଦରେ ରଖିବା ପାଇଁ ମୋର ନିଯୁକ୍ତି ।

: ବେଶ୍ ଭଲ; କିନ୍ତୁ ତମେ କ'ଣ ମୋତେ ସ୍ୱଚ୍ଛନ୍ଦରେ ରଖି ପାରିବ ?

ମୁଁ ଚେଷ୍ଟା କରିବି, ମୋର ବିଶ୍ୱାସ ସଫଳ ହେବ । ଆପଣଙ୍କୁ ମୁଁ କ'ଣ ଭଲଲାଗୁନାହିଁ ? ମୁଁ କ'ଣ ଅସୁନ୍ଦର, ମୁଁ କ'ଣ ଆପଣଙ୍କ ସେବାର ଅଯୋଗ୍ୟ ?

: ସେବା, ମୋର ତମେ କି ସେବା କରିବ ମାଳବିକା ? ମୁଁ ରୋଗୀ ନୁହେଁ, ମୁଁ ଜରାଗ୍ରସ୍ତ ନୁହେଁ; ତଥାପି ମାଳବିକା, ତମେ ଚେଷ୍ଟା କଲେ ପାରିବ ସେବା ପରିବର୍ତ୍ତେ ମୋତେ ତମେ ସାହାଯ୍ୟ କଲେ ଖୁସି ହେବି ।

: ସାହାଯ୍ୟ, କି ସାହାଯ୍ୟ ମୁଁ କରିବି ଆପଣଙ୍କୁ ?

: ପ୍ରଥମ କଥା ହେଉଛି, ମୋତେ ତୁମେ ଏଘରୁ ଅନ୍ୟତ୍ର କେଉଁଠାକୁ ନେଇଚାଲ । ଏ ଘରେ ମୋତେ ଆଦୌ ଭଲ ଲାଗୁ ନାହିଁ । ଏ ଘରେ ଏହି ଭୈରବୀ ମୂର୍ତ୍ତିକୁ ମୁଁ ମୋଟେ ସହ୍ୟ କରି ପାରୁ ନାହିଁ । ତା'ଛଡ଼ା କାନ୍ଥର ଏହି ରାଜ ପରିବାରର ଧାଡ଼ିବନ୍ଧା ଛବିଗୁଡ଼ାକ ମୋତେ ଯମଦୂତ ପରି ମନେ ହେଉଛି । ସେମାନେ ଯେପରି ଜଣକ ପରେ ଜଣେ ରୂପ ପରିଗ୍ରହ କରି ମୋତେ ଶୂଳି କାଠିରେ ଚଢ଼ାଇବା ପାଇଁ ଟାଣି ଟାଣି ନେଉଛନ୍ତି । ମୁଁ ସହ୍ୟ

କରିପାରୁ ନାହିଁ ମାଳବିକା । ଏ ଘର ଏ ପରିବେଶ ମୋ' ମନଟାକୁ କଳୁଷିତ କରି ସାରିଲାଣି । ଏ ଘରେ ଆଲୋକ ଲିଭେଇ ଅନ୍ଧକାରେ ଏକା ଏକା ଆଜିଯାଏ ବସି ଆସିଲି; ଆଉ ପାରୁ ନାହିଁ; ପାରିବି ନାହିଁ । ତମେ ମୋତେ ସ୍ଥାନାନ୍ତର କରିବାପାଇଁ ସାହାଯ୍ୟ କରିପାରିବ ମାଳବିକା ? ଜୟନ୍ତର ସ୍ୱର କରୁଣ ହୋଇ ଉଠିଥିଲା ।

ମାଳବିକା କହିଲା : ମୁଁ ଆପଣଙ୍କୁ ଏ ଦିଗରୁ ସାହାଯ୍ୟ କରିବାକୁ ଅକ୍ଷମ ସାର୍ । ତେବେ ମୁଁ ଆପଣଙ୍କ ପାଇଁ ଏତିକି କରିପାରେ, ଆପଣଙ୍କୁ ବାହାରେ ବାହାରେ ନେଇ ବହୁତ ସମୟ ବୁଲାଇପାରେ । ଦିନ ରାତି ଚବିଶ ଘଣ୍ଟା ଭିତରୁ ବାର ଚଉଦ ଘଣ୍ଟା ଆପଣ ମୋ ସହିତ ବାହାରେ କଟାଇ ପାରନ୍ତି; କିନ୍ତୁ ରାତ୍ରିଯାପନ ପାଇଁ ଆପଣଙ୍କୁ ଏହି ଘରକୁ ଫେରି ଆସିବାକୁ ହେବ । ମୁଁ ବୁଝିପାରୁ ନାହିଁ ଆପଣ ଏ ଘର ପ୍ରତି ଏପରି ବୀତସ୍ପୃହ କାହିଁକି ହୋଇ ଉଠିଛନ୍ତି ! ଲୋକେ ଏହି ଘରେ ରହିବାକୁ ସୌଭାଗ୍ୟ ମଣନ୍ତି, ଅଥଚ ଆପଣ....

: ନା ମାଳବିକା ମୋ'ର ସେ ସୌଭାଗ୍ୟର ଆବଶ୍ୟକ ନାହିଁ । ତମେ ମୋତେ ଐଶ୍ୱର୍ଯ୍ୟ ବଦଳରେ ଦାରିଦ୍ର୍ୟ ଦିଅ । ସେଇଥିରେ ମୁଁ ଖୁସି ହେବି ।

ମାଳବିକା ଉଠି ଠିଆହେଲା । ଧୀରେ ଧୀରେ ଆଗେଇ ଆସିଲା ଜୟନ୍ତ ପାଖକୁ । ହାତଧରି ଉଠାଇଲା । କହିଲା: ଆସନ୍ତୁ । ଆପଣ ଏଠାରେ ଏକା ଏକା ରହି ମନପ୍ରାଣରେ ଅସୁସ୍ଥ ହୋଇଉଠିଛନ୍ତି । କିଛି ସମୟ ମୁକ୍ତ ଆକାଶ ତଳେ ବୁଲି ମୁକ୍ତବାୟୁ ସେବନ କରି ଆସିଲେ ମନପ୍ରାଣରେ ସତେଜତା ଫେରିଆସିବ ।

ଜୟନ୍ତ ମାଳବିକା କଥାର ଉତ୍ତର ଦେଲା ନାହିଁ ।

ଉଠି ଠିଆହେଲା । ହଁ, ସେ ବାହାରକୁ ବାହାରିବ । ମାଳବିକା ଠିକ୍ କହିଛି । ବାହାରର ମୁକ୍ତ ବାୟୁ ସେବନ କରିବା ଛଡ଼ା ତା'ର ଅନ୍ୟ ଗତି ନାହିଁ । କିନ୍ତୁ ମଳୟ ! ତା'ଠାରୁ କିଛି ଖବର ସେ ପାଉନାହିଁ କାହିଁକି ! କେସ୍‌ଟା ତେବେ କ'ଣ ଜଟିଳ ହୋଇ ଉଠିଛି ! ଅନୁରାଧାର ହତ୍ୟା ଅପରାଧରେ ପୋଲିସ କ'ଣ ପୂର୍ଣ୍ଣମାତ୍ରାରେ ଦାୟୀ କରୁଛି ଜୟନ୍ତକୁ ?

ଆସନ୍ତୁ । ମାଳବିକା ଜୟନ୍ତର ହାତଧରି ଟାଣିଲା । ଏତେ କ'ଣ ଭାବୁଛନ୍ତି ଆପଣ ! ମୁଁ ତ ଆପଣଙ୍କ ପାଖକୁ ଆସି ଯାଇଛି। ମୋତେ ଭାବନାରୁ କିଛି କିଛି ଭାଗଦେଲେ ଚଳନ୍ତା ନାହିଁ ? ଧୀରେ ଧୀରେ ମାଳବିକା ସହଜ ହୋଇ ଆସୁଥିଲା ।

ଜୟନ୍ତ ମାଳବିକା ମୁହଁକୁ ଆଉ ଥରେ ଚାହିଁଲା ।

ଅନୁରାଧା ପରି ମାଳବିକା ମୁହଁରେ ନିର୍ମଳ ହସ, ଅନୁରାଧା ପରି ମାଳବିକାର ଅଲ୍ୟଳ ଭଙ୍ଗୀ, ଚାଲିଚଳନ କଥାବାର୍ତ୍ତା ଅନେକ ମିଶିଯାଉଛି ଅନୁରାଧା ସହିତ ।

ଜୟନ୍ତ ଉଠି ଠିଆହେଲା । ଧୀରେ ଧୀରେ ତା' ମନରେ ପ୍ରତ୍ୟୟ ଫେରି ଆସୁଥିଲା । ଏ କେତେଦିନ ଭିତରେ ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପପରି, ଜୟନ୍ତ ଧୈର୍ଯ୍ୟ ହରାଇ ବସିଥିଲା । ଦେଖାଯାଉ, କୋଉ ପାଣି କୁଆଡ଼େ ଗଡୁଛି ।

ଆଗରେ ମାଳବିକା, ପଛରେ ଜୟନ୍ତ ।

କାଠ ଶିଡ଼ିରେ ଧୀରେ ଧୀରେ ତଳକୁ ଓହ୍ଲଉଥିଲେ ସେମାନେ । ଜୟନ୍ତର ମନେ ହେଉଥିଲା ମାଳବିକାର ପଦପାତରେ କିପରି ଏକ ମଧୁର ଛନ୍ଦ ଫୁଟିଉଠୁଛି । ମାଳବିକା ହୁଏତ ଜଣେ ନର୍ତ୍ତକୀ, ଶିଳ୍ପୀ !

ଜୟନ୍ତ ରାସ୍ତାକୁ ଓହ୍ଲାଇ ମୁକ୍ତଆକାଶକୁ ଚାହିଁଲା । ଆଃ, କି ସୁନ୍ଦର ମେଘମୁକ୍ତ, ଫାଙ୍କା, ବିସ୍ତୃତ; ସେ ଯେପରି ସ୍ୱସ୍ତିର ନିଶ୍ୱାସ ପକାଇଲା ।

ଦୁଆରମୁହଁରେ ଠିଆହୋଇଥିଲା ଗୋଟିଏ ଛୋଟ ଆକାଶୀ ରଙ୍ଗର ଟୟଟା ଗାଡ଼ି । ମାଳବିକା ଇଙ୍ଗିତ କଲା ଜୟନ୍ତକୁ; କିନ୍ତୁ ଜୟନ୍ତ ମୁକ୍ତ ଆକାଶ ତଳେ ଚାରିପାଖରେ କାଷ୍ଠ ନିର୍ମିତ ଗୃହଗୁଡ଼ିକର ମୋହ ଏଡ଼େଇ ପାରି ନଥିଲା ।

ଆଖି ସାମ୍ନାରେ ବାଁ ପାଖରେ ଗୋଟିଏ ଦ୍ୱିତଳ ଗୃହ । ତହିଁରେ ଅପୂର୍ବ କାଠ ଖୋଦେଇ କାମ । ସେଇ ବିରାଟ ଗୃହଟିର ଗବାକ୍ଷ ଏକ ଏକ କଳାକୃତି ନିଦର୍ଶନ । କାଠ ଉପରେ ନିହଣର ସୂକ୍ଷ୍ମ କାମ ଆଖିକୁ ବାନ୍ଧିରଖେ । ଜୟନ୍ତ ଚାହିଁଥିଲା ପଲକହୀନ ଦୃଷ୍ଟିରେ ।

ମାଳବିକା କହିଲା : ଏଇଟା କୁମାରୀ ମନ୍ଦିର ।

: କୁମାରୀ ମନ୍ଦିର ?

: ହଁ, ଏଠାରେ କୁମାରୀମାନେ ରୁହନ୍ତି । ଏ କୁମାରୀଙ୍କୁ ସ୍ଥାନୀୟ ଲୋକେ ଦେବୀ ବୋଲି ସମ୍ବୋଧନ କରନ୍ତି । ରାଜା ବର୍ଷରେ ଦିନେ ଆସନ୍ତି ଏଠାକୁ-ଦଶହରା ଦିନ । ସେଇଦିନ ଏ ମନ୍ଦିର ସମସ୍ତଙ୍କ ପାଇଁ ଖୋଲାରୁହେ । ଆବାଳ-ବୃଦ୍ଧ-ବନିତା ସେଦିନ ଯାଇ କୁମାରୀଙ୍କୁ ଦର୍ଶନ କରି ଥାଆନ୍ତି । କିନ୍ତୁ ବର୍ଷର ଅନ୍ୟ କୌଣସି ଦିନ କାହାରି ଏ ଘର ଭିତରେ ପ୍ରବେଶ ଅଧିକାର ନାହିଁ । ସେମାନେ ତଳୁ ଥାଇ କୁମାରୀ ଦେବୀଙ୍କ ଦର୍ଶନ କରି ପାରନ୍ତି । ଏଇ ଦେଖନ୍ତୁ । ଦେଖନ୍ତୁ ମିଷ୍ଟର ମହାପାତ୍ର, ଆପଣଙ୍କ ଭାଗ୍ୟ ଭଲ । କୁମାରୀ ଦେବୀ ଝରକାରେ ଠିଆହୋଇଛନ୍ତି ।

ଜୟନ୍ତ ଦେଖିଲା ଗୋଟିଏ ଆଠ ନଅବର୍ଷର ଝିଅ ବାରଣ୍ଡାରେ ଠିଆହୋଇଛି । କିପରି ଅସ୍ୱାଭାବିକ ମନେହେଉଛି ଝିଅଟାକୁ । ମନେ ହେଉଛି ସେ ଯେପରି ନିଶାଗ୍ରସ୍ତ । ଆଖିର ଚାହାଣି ଅସ୍ୱାଭାବିକ । ଜୟନ୍ତ ବେଶି ବେଳଯାଏ ଚାହିଁପାରିଲା ନାହିଁ ଝିଅଟାକୁ ।

: ଏହିପରି କେତୋଟି କୁମାରୀ ଦେବୀ ଅଛନ୍ତି ଏ ମନ୍ଦିରରେ ? ଜୟନ୍ତ ପଚାରିଲା ।

ମାଳବିକା ହସିଲା : ଦେବୀ ଏଇ ଜଣକ;। କିନ୍ତୁ ଏ ଘରେ ଅଛନ୍ତି ଅନେକ କୁମାରୀ । ସାଧାରଣତଃ ଏମାନେ ବାରବର୍ଷ ହେବାଯାଏ କୁମାରୀ ଦେବୀରୂପେ ପୂଜାପାଆନ୍ତି । ତା'ପରେ ଆଉ ନୁହେଁ । ଏଇଟା ଅନେକାଂଶରେ ଆପଣଙ୍କ ଦେବଦାସୀମାନଙ୍କଭଳି । ଏମାନେ ଗୋଟାଏ ଜାତି ଅଛନ୍ତି, ସେଇ ଜାତି ଭିତରୁ କୁମାରୀ ଦେବୀ ନିର୍ବାଚିତ ହୁଅନ୍ତି । ଏମାନଙ୍କୁ ପିଲା ଦିନରୁ ନାନା ପ୍ରକାର ଭୟଭ୍ରାନ୍ତି ଦେଖାଇ, ଶ୍ମଶାନରେ ଏକା ଛାଡ଼ି, ବିଭିନ୍ନପ୍ରକାର ଭୟଙ୍କର ପରୀକ୍ଷା ଭିତର ଦେଇ ଉତ୍ତୀର୍ଣ୍ଣ ହେବାକୁ ହୋଇଥାଏ ।

: ହୁଁ, ଜୟନ୍ତ କୁମାରୀ ଦେବୀର ଅଲୌକିକ ମୁହଁ ଉପରୁ ଜୋର୍ କରି ଆଖି ଫେରାଇ ଆଣିଲା । ସେ ଆଗେଇଲା ଆଗକୁ, ଆଗକୁ ।

ମାଳବିକା କହିଲା : ଆପଣଙ୍କ ସାମ୍ନାରେ ଏ ଯେଉଁ ତିନୋଟି କାଠ ଗମ୍ବୁଜ ଦେଖୁଛନ୍ତି, ଏହାର ନାମ କାଷ୍ଠମଣ୍ଡପ । ଏହି କାଷ୍ଠମଣ୍ଡପ ୧୫୯୬ ମସିହାରେ ରାଜା ଲକ୍ଷ୍ମୀନାରାୟଣ ମଲ୍ଲ ନିର୍ମାଣ କରାଇଥିଲେ । କଥିତ ଅଛି, ଏହି ପ୍ରତିଟି ମଣ୍ଡପ ଗୋଟିଏ

ଗୋଟିଏ କାଠଖଣ୍ଡରେ ତିଆରି ଏବଂ ଏହି କାଠମଣ୍ଡପରୁ ଏହି ସ୍ଥାନର ନାମ କାଠମାଣ୍ଡୁ ହୋଇଛି ।

ଜୟନ୍ତର ଆଖି ପାଉ ନଥିଲା ସେଇ କାଷ୍ଠମଣ୍ଡପଗୁଡ଼ିକ ଉପରକୁ । ତିନି ତାଲାରୁ ଅଧିକ ଉଚ୍ଚ ହେବ ସେହି ମଣ୍ଡପଗୁଡ଼ିକରେ ଅପୂର୍ବ ଖୋଦେଇ କାର୍ଯ୍ୟ । ଜୟନ୍ତ ପଥର ଗାତ୍ରରେ ଶିଳା ଶିଳ୍ପୀର ନିହାଣର କାର୍ଯ୍ୟ ଦେଖିଥିଲା; କିନ୍ତୁ କାଠଉପରେ ଏତେ ସୁନ୍ଦର ସୂକ୍ଷ୍ମ ଖୋଦେଇ କାମ ଏହା ପୂର୍ବରୁ ସେ କେବେ ଦେଖି ନଥିଲା । ଆଖି ଯେମିତି ଲାଖି ଯାଇଥିଲା ଜୟନ୍ତର ।

ଜୟନ୍ତକୁ ମନ୍ଦ ଲାଗୁ ନଥିଲା । ସେ ଦୋକାନ ପରେ ଦୋକାନ ଏବଂ ନାନା କିସମର ଯାତ୍ରୀମାନଙ୍କ ମଝିରେ ସହଜ ଭାବରେ ଚଲାବୁଲା କରି ପାରୁଥିଲା । ସେମାନେ ସେହିପରି ଚାଲୁ ଚାଲୁ ଯାଇ ନିଉ ରୋଡ଼ରେ ପହଞ୍ଚିଲେ । ନିଉ ରୋଡ଼ କାଠମାଣ୍ଡୁର ଏକ ସମ୍ଭ୍ରାନ୍ତ ଅଞ୍ଚଳ । କଲିକତାର ଚୌରଙ୍ଗୀ ରୋଡ଼ ପରି । ବଡ଼ ବଡ଼ ଦୋକାନ, ହୋଟେଲ ବ୍ୟାଙ୍କ, ଅଫିସ୍, ବଡ଼ ବଡ଼ କୋଠା । ଜନ ଗହଳି ବି । ନିଉ ରୋଡ଼ର ଦୋକାନଗୁଡ଼ିକରେ ଜୟନ୍ତ ଏକ ସ୍ୱାତନ୍ତ୍ର୍ୟ ଅନୁଭବ କଲା । ଏଠାରେ ପ୍ରତିଟି ଦୋକାନ ଯେପରି ଗୋଟିଏ ଗୋଟିଏ ଭେରାଇଟି ଷ୍ଟୋର । ଜାମା, ଲୁଗାଠାରୁ ଆରମ୍ଭ କରି, ମନୋହାରୀ ଦ୍ରବ୍ୟ, ଘଣ୍ଟା, କଲମ, ପାନୀୟ ପର୍ଯ୍ୟନ୍ତ; ସବୁ କିନ୍ତୁ ବିଦେଶୀ ଜିନିଷ । ଚୀନ, ଜାପାନ, ଇଂଲଣ୍ଡ ଚାରିଆଡ଼ର ଆକର୍ଷକ ପଦାର୍ଥମାନ ସେଠା ଦୋକାନଗୁଡ଼ିକରେ ଶୋଭା ପାଉଛି ।

ମାଳବିକା ହସି ହସି ଜୟନ୍ତର ହାତ ଧରି ଆଗେଇ ନେଉଥିଲା । ପୁଣି ସେମାନେ ଗୋଟିଏ ସରୁ ଗଳିପଥ ଦେଇ ଦରବାର ସ୍କୋୟାରକୁ ଚାଲିଗଲେ । ଏଥର କିନ୍ତୁ ମାଳବିକା ସେଇ ଛୋଟ ଟୟଟା ଗାଡ଼ି ପାଖରେ ଠିଆ ହୋଇପଡ଼ି କହିଲା : ଆଉ ମୁଁ ଆପଣଙ୍କୁ ଗୋଟିଏ ଭଲ ଜାଗାକୁ ନେଇଯିବି ।

ଜୟନ୍ତ ଅଟକି ଯାଇଥିଲା । ମାଳବିକା ଗାଡ଼ିର ଦରଜା ଖୋଲି ଦେଇ ହସ ହସ ମୁହଁରେ କହିଲା : ଆପଣ ଭିତରେ ବସନ୍ତୁ ।

ଜୟନ୍ତ ସେଇଠି ସେହିପରି ଠିଆ ହୋଇ ପଚାରିଲା : କୁଆଡ଼େ ଯିବା ?

: ଆପଣ କୁହନ୍ତୁ । ମାଳବିକା କହିଲା ।

: ନା, ମୁଁ ଆଜି କିଛି କହିବି ନାହିଁ । ତମ ଇଚ୍ଛା ଯୁଆଡ଼େ ହେଉଛି ମୋତେ ନେଇ ଚାଲ । ଜୟନ୍ତ ଗାଡ଼ି ଭିତରେ ଯାଇ ବସିଲା ।

ମାଳବିକା ଜୟନ୍ତ ପାଖରେ ବସି ଦରଜା ବନ୍ଦ କଲା ।

ଗାଡ଼ି ଷ୍ଟାର୍ଟ ହେଲା । ଡ୍ରାଇଭର ଚାହିଁଲା ମାଳବିକା ମୁହଁକୁ । ମାଳବିକା ଇଙ୍ଗିତରେ କ'ଣ କହିଲା । ଗାଡ଼ି ଆଗେଇ ଚାଲିଲା ।

କିଛି ସମୟ ନୀରବରେ କଟିଯିବା ପରେ ଜୟନ୍ତ ମାଳବିକା ମୁହଁକୁ କିପରି ସତୃଷ୍ଣ ନୟନରେ ଚାହିଁ ପଚାରିଲା : ଆଚ୍ଛା ମାଳବିକା, ତମେ ଏଇ ନେପାଳରେ କେତେଦିନ ହେବ ଅଛ ?

ମାଳବିକା ସ୍ମିତ ହସି କହିଲା : ଆପଣଙ୍କର କ'ଣ ମନେ ହେଉଛି?

: ମୋର କ'ଣ ମନେ ହେବ ! ମୁଁ ତ ତମୁକୁ ପଚାରୁଛି ।

: ମୁଁ ଯଦି କୁହେ ମୋର ଜନ୍ମ ଏଇଠି, ମୁଁ ବଡ଼ ହୋଇଛି ଏଇଠି, ମୋର ଶିକ୍ଷାଦୀକ୍ଷା ସବୁ ଏଇଠି...... ।

: ମୋର ଅବଶ୍ୟ ତମ କଥାରେ ଆପତ୍ତି କରିବାର କିଛି ନାହିଁ । ମୁଁ ଖାଲି ଜାଣିବାକୁ ଚାହୁଁଥିଲି ତମେ କେତେ ବର୍ଷ ହେବ ଏଠାରେ ଅଛ ।

: ଆପଣ ଧରି ନିଅନ୍ତୁ ମୋର ତେଇଶଟି ବର୍ଷ ଏଇ ନେପାଳର ପାଣି ପବନରେ କଟିଚି।

: ହେଉ ମୁଁ ଧରିନେଲି । ଆଚ୍ଛା ତମେ କହି ପାରିବ ଏଠି କେଉଁଠି ଭାରତୀୟମାନେ ଅଧିକ ସଂଖ୍ୟାରେ ଅଛନ୍ତି ?

: ମାନେ? ଭାରତୀୟମାନେ ତ ଏଇ କାଠମାଣ୍ଡୁରେ ସର୍ବତ୍ର ବସବାସ କରୁଛନ୍ତି । ଏଇ ଯେଉଁ ଦୋକାନପତ୍ର ଦେଖୁଲେ ସେସବୁର ଅଧିକାଂଶ ମାଲିକ ଭାରତୀୟ ।

: ନା, ନା ମୁଁ କ'ଣ କହୁଥିଲି କି ସେମାନଙ୍କର କୌଣସି ସଂଘ, ସମିତି କିମ୍ବା ସଙ୍ଗଠନ ଏପରି ଅଛି, ଯେଉଁଠି ସାଂସ୍କୃତିକ ବ୍ୟାପାର ଆଲୋଚନା ହୁଏ । ଲାଇବ୍ରେରୀ, ନାଟ୍ୟାନୁଷ୍ଠାନ ବା ନୃତ୍ୟ ସଂଗୀତ ଇତ୍ୟାଦିର ଚର୍ଚ୍ଚା ହୁଏ ।

ମାଳବିକା ବୋଧହୁଏ ଜୟନ୍ତ କଥାରୁ କିଛି ବୁଝିପାରୁ ନଥିଲା । ସେ କିଛି ସମୟ ସ୍ଥିର ଦୃଷ୍ଟିରେ ଅନାଇ ରହି କହିଲା : ଆପଣ କ'ଣ ଚାହାନ୍ତି ମୋତେ ସ୍ପଷ୍ଟ କୁହନ୍ତୁ । ମୁଁ ନିଶ୍ଚୟ ଆପଣଙ୍କୁ ସାହାଯ୍ୟ କରିବି ।

: ନା ନା, ସେପରି ନିର୍ଦ୍ଦିଷ୍ଟ କିଛି ଗୋଟାଏ, ଉଦ୍ଦେଶ୍ୟ ମୋର ନାହିଁ, ତେବେ ମୁଁ ଖୋଜୁଥିଲି ଏଠି କେଉଁଠି ଭାରତୀୟଙ୍କର ଏକ ସାଂସ୍କୃତିକ ଅନୁଷ୍ଠାନ ଥିଲେ ସେଠାରୁ ଭାରତୀୟ ସଂବାଦପତ୍ର ଇତ୍ୟାଦି ପଢ଼ିବାକୁ ମିଳନ୍ତା । ଅନେକ ଦିନ ହେବ ସେ ଆଡ଼ର ଖବର ଅନ୍ତର କିଛି ମୁଁ ପାଉ ନାହିଁ ।

: ଓଃ ଏଇ କଥା । ମାଳବିକା ଯେପରି ଉଲ୍ଲସିତ ହୋଇ ଉଠିଲା । ମୁଁ ଆପଣଙ୍କୁ ଭାରତୀୟ ସଂବାଦପତ୍ର ଯୋଗାଇ ଦେବି ।

କିନ୍ତୁ ଜୟନ୍ତର ମନର ଭାବ ତାହା ନଥିଲା । ସେ ମନେ ମନେ ଭାବୁଥିଲା ବିଗତଦିନଗୁଡ଼ିକର ସଂବାଦପତ୍ର ବିଶେଷ କରି କଲିକତାରୁ ପ୍ରକାଶିତ ହେଉଥିବା ସଂବାଦପତ୍ର ସେ ପଢ଼ିବାକୁ ପାଇଲେ, ହୁଏତ ତା' ସମ୍ବନ୍ଧରେ କିଛି ତଥ୍ୟ ସେ ସଂଗ୍ରହ କରି ପାରନ୍ତା । ନିଶ୍ଚୟ ଅନୁରାଧାର ହତ୍ୟା ସମ୍ବନ୍ଧରେ କିଛି ନା କିଛି ସଂବାଦ ସ୍ଥାନୀୟ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିବ; କିନ୍ତୁ ମାଳବିକା ଆଗରେ ଖୋଲା ଖୋଲି ଭାବେ ସେ ତା'ର ମନର କଥା ବ୍ୟକ୍ତ କରି ପାରୁ ନଥିଲା ।

ଜୟନ୍ତ ଅନୁଭବ କଲା ତାଙ୍କ ଗାଡ଼ିଟା ସମତଳ ଭୂମି ଉପରୁ ଧୀରେ ଧୀରେ ଉପରକୁ ଉଠୁଛି । ସେ ମାଳବିକା ମୁହଁକୁ ଚାହିଁଲା ।

ମାଳବିକା କହିଲା : ଆମେ ବର୍ତ୍ତମାନ ସ୍ୱୟମ୍ଭୁନାଥ ସ୍ତୁପ ଉପରକୁ ଉଠୁଛେ । ସମତଳ ଭୂମିଠାରୁ ଅଢ଼େଇଶହ ଫୁଟ ଉପରେ ଏହି ଐତିହାସିକ ସ୍ତୁପଟି ଅବସ୍ଥିତ । ଏହି ସ୍ତୁପର ବୟସ ପ୍ରାୟ ଦୁଇହଜାର ବର୍ଷ ହେବ ଏବଂ ଏହା ପୃଥିବୀର ଏକ ପ୍ରାଚୀନ ବୌଦ୍ଧକୀର୍ତ୍ତି ।

ଗାଡ଼ି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅଟକିଗଲା ।

ମାଳବିକା ଦରଜା ଖୋଲି ତଳକୁ ଓହ୍ଲେଇଲା । ପଛେ ପଛେ ଜୟନ୍ତ । ଏକ ପଥୁରିଆ ସ୍ଥାନରେ ତାଙ୍କର ଗାଡ଼ି ଅଟକିଛି । ପଥର, ପାହାଡ଼, ପଥୁରିଆ ରାସ୍ତା । ମାଳବିକା ପଛେ ପଛେ ଜୟନ୍ତ ଉପରକୁ ଉଠୁଥିଲା । ମୁକ୍ତ ଆକାଶ ତଳେ ଏଇ ସ୍ୱୟମ୍ଭୁନାଥ ସ୍ତୁପ ଏକ ଅପୂର୍ବ ଶୋଭା ଧାରଣ କରିଥିଲା । ଏମାନେ ପ୍ରଥମେ ଯାଇ ଯେଉଁଠି ପହଞ୍ଚିଲେ, ତାହା ଏକ ସଂଗ୍ରହ ଶାଳା । ବୌଦ୍ଧ କୀର୍ତ୍ତିର ବହୁ କୀର୍ତ୍ତି ରଖାହୋଇଛି କାଚ ଆଲମାରି ଭିତରେ । ଜୟନ୍ତ ବୁଲି ବୁଲି ସବୁ ଦେଖିଲା । ଛୋଟ ଛୋଟ ପ୍ରସ୍ତର ଖଣ୍ଡ, କେଉଁ ସ୍ତୁପରୁ କେବେ ସଂଗୃହୀତ ହୋଇ ରହିଛି । ତା'ର ଦିନ, ତାରିଖ, ପିତଳ ମୂର୍ତ୍ତି, ପୋଥିପତ୍ର ଇତ୍ୟାଦି ଇତ୍ୟାଦି ।

ସଂଗ୍ରହଶାଳାର ଦାୟିତ୍ୱରେ ଯିଏ ଥିଲେ ସିଏ ଜଣେ ବୌଦ୍ଧଭିକ୍ଷୁ, ଜନ୍ମ ତାଙ୍କର ଜାପାନରେ । ପ୍ରାୟ ସାତ ଆଠବର୍ଷ ହେବ ଭାରତରେ ଅଛନ୍ତି । ଭାରତରେ ବିଭିନ୍ନ ବୌଦ୍ଧ ସଂସ୍ଥାରେ ସେ କାର୍ଯ୍ୟ କରି ଏବେ ଆସି ନେପାଳରେ ପହଞ୍ଚିଛନ୍ତି ।

ସେହି ସଂଗ୍ରହଶାଳା ମଧ୍ୟରେ ଆହୁରି ମଧ୍ୟ କେତେ ଜଣ ବୁଲି ବୁଲି ପ୍ରାଚୀନ ବୌଦ୍ଧକୀର୍ତ୍ତି ଦେଖୁଥିଲେ ।

ଜୟନ୍ତ ଖାଲି ଆଲମାରିଗୁଡ଼ିକ ଭିତରେ ଆଖି ବୁଲେଇ ନେଉ ଥିଲା । ମନେ ହେଉଥିଲା ଏସବୁ ଦେଖିବାରେ ତା'ର ଆଗ୍ରହ ନାହିଁ । ମାଳବିକା ଗୋଟିଏ ଶୀଳାଲିପି ପାଖରେ ଅଟକି ଯାଇ ଧ୍ୟାନ ସହକାରେ କ'ଣ ଦେଖୁଥିଲା । ସେହି ଅବସରରେ ଜୟନ୍ତ ଚାଲି ଆସିଥିଲା ସଂଗ୍ରହଶାଳାର ଦାୟିତ୍ୱରେ ଥିବା ସେହି ବୌଦ୍ଧ ଭିକ୍ଷୁଙ୍କ ପାଖକୁ । ହୁଏତ କ'ଣ ପଚାରି ଥାଆନ୍ତା; କିନ୍ତୁ ମାଳବିକା ଛୁଟି ଆସି ଜୟନ୍ତର ହାତଧରି ପଛକୁ ଟାଣି ନେଇ କହିଲା : ଆପଣ ଏଠାରେ ଏକ ସୁନ୍ଦର ଜିନିଷ ମିସ୍ କରିଗଲେ । ଦେଖିବେ ଆସନ୍ତୁ ।

ଜୟନ୍ତ ଆଉ ପଛକୁ ଫେରିଲା ନାହିଁ । ମାଳବିକା ବୁଝିପାରିଲା, ସେମାନେ ସଂଗ୍ରହଶାଳାରୁ ବାହାରି ଉଠିଗଲେ ସ୍ୱୟମ୍ଭୁନାଥ ସ୍ତୁପ ଉପରକୁ । ଉପରେ ଗୋଟିଏ ଛୋଟ ବଜାର ଲାଗିଛି । ଅନେକ ଦୋକାନ, ଲୋକ ଭିଡ଼, ସ୍ତୁପ ଉପରେ ବୁଦ୍ଧଙ୍କର ବିରାଟ ପିତଳ ମୂର୍ତ୍ତି । ପୂଜା ଅର୍ଚ୍ଚନା, ଧୂପ, ଦୀପ, ଘଣ୍ଟା ଧ୍ୱନିରେ ସ୍ଥାନଟି ମଙ୍ଗଳମୟ ହୋଇ ଉଠିଛି । ଜୟନ୍ତ ଯାଇ ବୁଦ୍ଧଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା । ଅହିଂସା ପରମଧର୍ମର ପ୍ରତୀକ; କିନ୍ତୁ ଦିନ ପରେ ଦିନ ହିଂସାର ଦାବାନଳ ଯେପରି ଜଳିଉଠୁଛି ବିଶ୍ୱ ବ୍ରହ୍ମାଣ୍ଡରେ । ଜୟନ୍ତ ଫେରିଆସିଲା ସେହି ଛୋଟ ଛୋଟ ଦୋକାନଗୁଡ଼ିକ ପାଖକୁ । ପଥରମାଳି, ଭୁଜାଲି, ପଥର ମୂର୍ତ୍ତି, ଜପମନ୍ତ୍ର ନାନାପ୍ରକାର ଜିନିଷ ବିକ୍ରି ହେଉଛି ସେଠି । ଜୁଆଖେଳ ବି ଚାଲିଛି ସେଇ ସ୍ତୁପ ଉପରେ ।

ଜୟନ୍ତ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଚାହିଁ ରହିଲା ସେଇଆଡ଼େ । ସ୍ତ୍ରୀ-ପୁରୁଷ, ବାଳକ-ବାଳିକା ନିର୍ବିଶେଷରେ ଜୁଆର ଆଡ୍ଡା ବସିଛି ସ୍ୱୟମ୍ଭୁନାଥ ସ୍ତୁପ ଉପରେ ।

ମାଳବିକା କହିଲା : ଆପଣଙ୍କର ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜୁଆ ଆଉ ମଦ ଏଠାରେ ଫ୍ରି । କୌଣସି ବାଧା, ନିଷେଧ ନାହିଁ । ଆପଣ ଯେତେବେଳେ ଯେଉଁଠି ଇଚ୍ଛା ପିଇପାରନ୍ତି; ଆଉ ଜୁଆଖେଳର ଆଡ୍ଡା ତ ସର୍ବତ୍ର ରାସ୍ତା କଡ଼ରେ, ମନ୍ଦିର ପ୍ରାଙ୍ଗଣରେ, ଯିଏ ଯେଉଁଠି ପସରା ମେଲେଇ ପାରିଲା । ଏଠି ବଡ଼ ବଡ଼ ହୋଟେଲରେ ଜୁଆଖେଳର

ସ୍ୱତନ୍ତ୍ର ବନ୍ଦୋବସ୍ତ ଅଛି, କ୍ୟାସିନୋରେ ରାତିରେ ଜୁଆଖେଳ, ହୁଏତ ସେଠି ସମ୍ଭ୍ରାନ୍ତ ଲୋକମାନେ ଯାଇ ଜୁଆ ଖେଳନ୍ତି ।

ଜୟନ୍ତ କାନରେ ମାଳବିକାର କଥା ପଶୁଥିଲା କି ନାହିଁ କେଜାଣି; ଜୟନ୍ତର ଦୃଷ୍ଟି କିନ୍ତୁ ନିବଦ୍ଧ ଥିଲା ସେଇ ଜୁଆ ଆଡ୍ଡାଭିତରେ ଜଣକ ଉପରେ । ସେ ଲୋକଟି ବସିଥିଲା ଖଣ୍ଡିଏ ଖବର କାଗଜ ଉପରେ ଏବଂ ନିବିଷ୍ଟ ଚିତ୍ତରେ ବାଜି ଧରୁଥିଲା । ଖବର କାଗଜ ଖଣ୍ଡିକ ପୁରୁଣା, ଛିଣ୍ଡା ମଇଳା । କିନ୍ତୁ ସେଇଟା ଖଣ୍ଡିଏ ଇଂଲିସି କାଗଜ, ନାମଟା ଦିଶୁଥିଲା ଷ୍ଟେଟସ୍‌ମ୍ୟାନ୍ । ଜୟନ୍ତର ଆଖି ଲାଖି ରହିଥିଲା ସେଇଠି । ସେ ଧୀରେ ଧୀରେ ଆଗେଇ ଯାଉଥିଲା ସେଇ ଜୁଆ ଆଡ୍ଡା ପାଖକୁ ।

ମାଳବିକା କହିଲା : ବେଳ ଅନେକ ହେଲାଣି । ଏଥର ଫେରିଯିବା ଚାଲନ୍ତୁ । ଆପଣ ଖିଆପିଆ କରିନାହାନ୍ତି, ଭୋକ ହେବଣି ।

ଜୟନ୍ତ କିନ୍ତୁ ସେଇ ଜୁଆଖେଳ ପାଖରେ ଯାଇ ଠିଆ ହୋଇ ଯାଇଥିଲା । ଆଗ୍ରହ ସହକାରେ ଲକ୍ଷ୍ୟ କରୁଥିଲା ଖେଳକୁ ।

ତଳେ ପ୍ଲାଷ୍ଟିକ୍ କନା ଉପରେ ନାଲିପାନ, କଳାପାନ, ଚିଡ଼ିଆ ଓ ଠିକିରି ଚିତ୍ର ହୋଇଛି, ଯାହାର ଯେଉଁଠି ଇଚ୍ଛା ପଇସା ଥୋଇବେ । ଖେଳ ପରିଚାଳକ ହାତରେ ଏ ଲୁଡୁ ଖେଳର ଗୋଟିଭଳି ଗୋଟିଏ ଚାରିକୋଣିଆ ବିରାଟ ଗୋଟି ଅଛି । ସେଥିରେ ନାଲିପାନ, କଳାପାନ, ଚିଡ଼ିଆ ଠିକିରି ଅଙ୍କା ହୋଇଛି । ସେଇ ଗୋଟିଟାକୁ ସେ ଗୋଟାଏ ସିଲ୍‌ଭର ଗ୍ଲାସ ଭିତରେ ପୂରାଇ ହଲାଇ ହଲାଇ ଓଲଟେଇ ଦେଉଛି । ଉପରେ ଯାହା ଉଠିବ ସେଇ ବାଜି ଜିତିବ ।

ଜୟନ୍ତ ଧୀରେ ଧୀରେ ସେମାନଙ୍କ ପାଖରେ ବସି ପଡ଼ିଲା । ଯେଉଁ ଲୋକଟି ଖବର କାଗଜ ଉପରେ ବସିଥିଲା, ଜୟନ୍ତ ସେହିଠାରେ ଲାଗି ବସିଲା । ମନେ ହେଉଥିଲା ଏଇ ଖେଳ ତାକୁ ଆକର୍ଷଣ କରି ପାରିଛି ଏବଂ ସେ ହୁଏତ ଖେଳିବାକୁ ଚାହେଁ ।

ମାଳବିକା କିନ୍ତୁ ଚାହୁଁ ନଥିଲା । ଜୟନ୍ତର ହାତଧରି ଟାଣି ଉଠାଇବାକୁ ସେ ଚେଷ୍ଟା କରୁଥିଲା । ଜୟନ୍ତ କହିଲା : ଖେଳଟା ମୁଁ ଟିକିଏ ଦେଖୁଛି । ତମେ ମୋତେ ବିରକ୍ତ କର ନାହିଁ ।

ମାଳବିକା କିଛି କହିଲା ନାହିଁ । ଜୟନ୍ତ ପକେଟରୁ ଗୋଟିଏ ଟଙ୍କା ବାହାର କରି ନାଲିପାନ ଉପରେ ରଖିଦେଲା । ଅନ୍ୟମାନେ କିନ୍ତୁ କେହି ନାଲିପାନ ଉପରେ ଦାନ ଧରି ନଥିଲେ । ଶେଷରେ ଦେଖାଗଲା ଜୟନ୍ତ ଜିତିଛି ।

ସେ ଆଉ ଟିକିଏ ଭିତରକୁ ପଶିବାକୁ ଚେଷ୍ଟା କଲା । ଯେଉଁ ଲୋକଟି ଖବରକାଗଜ ଉପରେ ବସିଥିଲା ଜୟନ୍ତ ତାକୁ ଠେଲି ଭିତରକୁ ପଶୁଥିଲା । ତେଣୁ ସେ ଦୂରକୁ ଘୁଞ୍ଚି ଯାଉଥିଲା, ଧୀରେ ଧୀରେ ଖବର କାଗଜଟି ଅଧିକାର କରି ବସିଲା ଜୟନ୍ତ । ଖେଳରେ ସେ କିନ୍ତୁ ବାରମ୍ବାର ଜିତୁଥିଲା; କିନ୍ତୁ ଏକ ଟଙ୍କାରୁ ସେ ଅଧିକ ଦାନ ଲଗାଉ ନଥିଲା ।

ଜୟନ୍ତ ପଛକୁ ଚାହିଁ ଦେଖିଲା ମାଳବିକା ଅନେକ ପଛରେ ଠିଆହୋଇଛି । ସେ ଭିଡ଼ ଭିତରେ ମଇଳା ଛିଣ୍ଡା କାଗଜ ଖଣ୍ଡିକ ଜୟନ୍ତ ତଳୁଉଠାଇ ଭାଙ୍ଗକରି ଧୀରେ ଧୀରେ

ପକେଟ୍‌ରେ ଭରିନେଲା । ତା'ର ଉଦ୍ଦେଶ୍ୟ ସିଦ୍ଧ ହୋଇ ଯାଇଥିଲା । ସେ ଭିଡ଼ ଠେଲି ବାହାରକୁ ବାହାରି ଆସିଥିଲା ।

ମାଳବିକା ଏଥର ଜୟନ୍ତର ହାତଧରି ଟାଣି ଟାଣି ଦୂରକୁ ନେଇ ଯାଇ କାନ ପାଖରେ କହିଲା : ଏମାନେ ସବୁ ଅତି ସାଧାରଣ ସ୍ତରର ଲୋକ । ଏମାନଙ୍କ ସହିତ ଆପଣଙ୍କର ମିଳାମିଶା ରୁଦ୍ରପ୍ରସାଦ ପସନ୍ଦ କରିବେ ନାହିଁ । ଯେତେହେଲେ ଆପଣ ତାଙ୍କର ଅତିଥି । କେହି ଦେଖିଥିଲେ ନିଶ୍ଚୟ ମୋତେ ଏହାର କୈଫିୟତ ଦେବାକୁ ପଡ଼ିଥାଆନ୍ତା ।

ଜୟନ୍ତ ହସିଲା । କହିଲା : ସାଧାରଣ ଅସାଧାରଣର ତାରତମ୍ୟ ବିଚାର ବିବେଚନା ମୋତେ କରି ଆସେ ନାହିଁ । ତମେ କିନ୍ତୁ ଭୁଲିଯାଅନି ମାଳବିକା ଦେଶର ନବେଜଣ ମଣିଷ ସାଧାରଣ ଲୋକ । ତମେ ବୋଧହୁଏ ଜାଣି ନାହଁ ମୁଁ ବି ଜଣେ ସାଧାରଣ ଲୋକ।

ମାଳବିକା ଜୟନ୍ତର ହାତଧରି ବୌଦ୍ଧମୂର୍ତ୍ତି ଆଡ଼େ ଟାଣି ଟାଣି ନେଇଗଲା କହିଲା: ଆପଣ ଏଥର ଦର୍ଶନ ଶେଷ କରନ୍ତୁ, ଆମେ ଫେରିଯିବା ।

ଜୟନ୍ତ ମନ କିନ୍ତୁ ପଡ଼ି ରହିଥିଲା ତା' ପକେଟ୍ ଭିତରେ ଥିବା ଖବର କାଗଜ ଉପରେ । ସେ ବି ଚାହୁଁଥିଲା ଶୀଘ୍ର ଶୀଘ୍ର ଫେରିଯିବା ପାଇଁ । ଫେରିଯାଇ ନିଭୃତରେ ଖବର କାଗଜ ଖଣ୍ଡିକ ଖୋଲେଇ ଦେଖିବ । କାଳେ ଯଦି ତା' ପାଇଁ କିଛି ସଂବାଦ ସେଥିରେ ଲୁଚି ରହିଥାଏ ।

ଜୟନ୍ତ ଯୋଡ଼ହାତରେ ବୁଦ୍ଧମୂର୍ତ୍ତିକୁ ପ୍ରଣାମ କରି ବାହାରି ଆସିଲା । ପଛେ ପଛେ ମାଳବିକା ।

ପୁଣି ସେଇ ଅତିଥିଶାଳା ।

ଏଥର କିନ୍ତୁ ଜୟନ୍ତ ଖୁବ୍ ଗୋଟାଏ ଅସ୍ୱସ୍ତି ଅନୁଭବ କରୁ ନଥିଲା । ସେ ଚାହୁଁଥିଲା କେତୋଟି ନିରୋଳା ମୁହୂର୍ତ୍ତ । ମାଳବିକା ଜୟନ୍ତକୁ ଘରେ ଛାଡ଼ି ଦେଇ କହିଲା, : ଆପଣ ଖିଆପିଆ ଶେଷ କରି ଟିକିଏ ବିଶ୍ରାମ୍ କରନ୍ତୁ । ମୁଁ ଘଣ୍ଟାକ ଭିତରେ ଫେରିଆସୁଛି । ପୁଣି ଆମେ ବାହାରିବା । ଏଥର ମୁଁ ଆପଣଙ୍କୁ ଆହୁରି ସୁନ୍ଦର ସୁନ୍ଦର ଦର୍ଶନୀୟ ସ୍ଥାନ ନେଇଯିବି ।

ଜୟନ୍ତ ସ୍ମିତ ହସି କହିଲା : ଡେରି କରିବନି କିନ୍ତୁ ।

ମାଳବିକା ହାତ ଘଡ଼ିକୁ ଚାହିଁ କହିଲା : ଠିକ୍ କଣ୍ଟାଏ କଣ୍ଟାଏ ତିନିଟାରେ ଆସି ପହଞ୍ଚିବି ।

ମାଳବିକା ଚାଲିଗଲା । ଜୟନ୍ତ ଭିତରୁ କବାଟ ବନ୍ଦ କରିବାକୁ ଯାଉଥିଲା; କିନ୍ତୁ ଖାଦ୍ୟ ସାମଗ୍ରୀ ଧରି ଭିତରେ ପ୍ରବେଶ କଲା ଜଣେ ପରିଚାରକ ।

ଜୟନ୍ତର ମନଟା ବିଗିଡ଼ି ଗଲା । ସେ ଚୁପ୍‌ଚାପ୍ କେତୋଟି ମୁହୂର୍ତ୍ତ ଠିଆ ହୋଇ ଚାଲିଗଲା ବାଥ୍‌ରୁମ୍ ଭିତରକୁ । ଦରଜା ବନ୍ଦ କରିଦେଲା । ଏହାଛଡ଼ା ଆଉ ପଥ ନାହିଁ ।

ବାଥ୍‌ରୁମ୍‌ର ଲାଇଟ ଜଳାଇ ପକେଟରୁ ଷ୍ଟେଟ୍‌ସମ୍ୟାନ କାଗଜଟି ବାହାର କଲା । ମାତ୍ର ଚାରିପୃଷ୍ଠା । ପ୍ରଥମ ଦ୍ୱିତୀୟ ଏବଂ ଏକାଦଶ, ଦ୍ୱାଦଶ ପତ୍ରିକାଟି କଲିକତା ସଂସ୍କରଣ । ସେ ଚାରିଟିଯାକ ପୃଷ୍ଠାରେ କ୍ଷିପ୍ର ଆଖି ବୁଲେଇ ନେଲା । ପ୍ରଥମ ପୃଷ୍ଠା

କେତୋଟି ବିଶେଷ ସମ୍ବାଦ । ଦ୍ୱିତୀୟ ପୃଷ୍ଠାଟିରେ ବିଜ୍ଞାପନ । ଏକାଦଶ ପୃଷ୍ଠାରେ ହସ୍ତ ତନ୍ତ ଶିଳ୍ପ ସମ୍ବନ୍ଧରେ ଗୋଟିଏ ଲେଖା ଏବଂ ବାକିଗୁଡ଼ିକ ବିଜ୍ଞାପନ । ଦ୍ୱାଦଶ ପୃଷ୍ଠାଟି କଲିକତାର ଡାଇରୀ ଏବଂ କେତୋଟି ବିଜ୍ଞାପନ । ଜୟନ୍ତ ହତାଶ ହୋଇ ପଡ଼ିଲା । ପୁଣି ସେ ଆଖି ଆଗରେ ମେଲି ଧରିଲା ପ୍ରଥମ ପୃଷ୍ଠାଟି । ଏଥର ତାରିଖ ଉପରେ ଆଖି ପକାଇଲା । କାଗଜଟା ଚାରିଦିନ ତଳର; କିନ୍ତୁ କାଗଜର ମୁଣ୍ଡ ଉପରକୁ ଡାହାଣ ପାଖରେ ଗୋଟିଏ ଗୋଲେଇ ରବର ଷ୍ଟାମ୍ପ ତା' ଆଖିରେ ପଡ଼ିଲା । 'ବିଜୟ ନିଉଜ୍ ଏଜେନ୍‌ସୀ', ଦରବାର ମାର୍ଗ

ତା'ହେଲେ ? ଦରବାର ମାର୍ଗରେ ବିଜୟ ନିଉଜ ଏଜେନ୍‌ସୀ ନିଶ୍ଚୟ କଲିକତାର ଖବର କାଗଜ ବିକ୍ରୟ କରେ । ଜୟନ୍ତ ଟିକିଏ ଆଲୋକ ପାଖକୁ ଯାଇ ଦେଖିଲା । ପୁଣି ଥରେ ସେ ଖବର କାଗଜଟାକୁ ଏ ମୁଣ୍ଡରୁ ସେମୁଣ୍ଡ ଯାଏ ନିରୀକ୍ଷଣ କରିଗଲା; କିନ୍ତୁ ସେ ଖୋଜୁଥିବା ଭଳି କୌଣସି ସମ୍ବାଦ ତା'ର ଦୃଷ୍ଟିଗୋଚର ହେଲାନାହିଁ ।

'ବିଜୟ ନିଉଜ୍ ଏଜେନ୍‌ସୀ ଦରବାର ମାର୍ଗ' ।

ନାଁ ଓ ଠିକଣାଟା ଆଠ ଦଶଥର ମନେ ମନେ ଉଚ୍ଚାରଣ କଲା । ତା'ପରେ କାଗଜଟାକୁ ମୋଡ଼ିମାଡ଼ି ଝରକା ବାଟେ ବାହାରକୁ ଫିଙ୍ଗିଦେଲା । ବେସିନ ଖୋଲି ମୁହଁ ହାତ ଧୋଇ ବାହାରି ଆସିଲା ବାହାରକୁ । ପରିଚାରକଟି ଡାଇନିଂ ଟେବୁଲ ଉପରେ ଖାଦ୍ୟ ସାମଗ୍ରୀ ସଜାଇ ରଖି ଅପେକ୍ଷା କରିଥିଲା ।

ଜୟନ୍ତ ଟାଓ୍ୱାଲରେ ହାତ ପୋଛୁ ପୋଛୁ ଆସି ଚେଆର ଉପରେ ବସିପଡ଼ିଲା ଏବଂ ଖାଇବାକୁ ଆରମ୍ଭ କରିଦେଲା । ସବୁଦିନଠାରୁ ସେ ଆଜି ଶୀଘ୍ର ଖାଇବା ଶେଷ କଲା । ତା' ମନ ଭିତରେ ବାରମ୍ବାର ଉଚ୍ଚାରିତ ହେଉଥିଲା ବିଜୟ ନିଉଜ୍ ଏଜେନ୍‌ସୀର ନାଁ, ଦରବାର ମାର୍ଗରେ କିପରି ସେ ବିଜୟ ନିଉଜ୍ ଏଜେନ୍‌ସୀ ସହିତ ଯୋଗାଯୋଗ କରିବ ! ମାଳବିକାକୁ ସେ କହିପାରେ; କିନ୍ତୁ ସେ ସଙ୍ଗରେ ଥିଲେ ତା'ର ଉଦ୍ଦେଶ୍ୟ ସାଧନ ହୋଇପାରିବ ନାହିଁ । ପୁରୁଣା ଦିନର କାଗଜ ଖେଳେଇ ସେ ଦେଖିପାରିବ ନାହିଁ । ତା'ଛଡ଼ା କାଗଜରେ ଯଦି ତା'ଛବି ଛପା ହୋଇଥାଏ ? ତାକୁ ଧରିଦେବା ପାଇଁ ପୁରସ୍କାର ଘୋଷଣା କରାହୋଇଥାଏ !

ଜୟନ୍ତ ଯଥାସମ୍ଭବ ଶୀଘ୍ର ଖାଇବା ଶେଷ କରି ଉଠିପଡ଼ିଲା । ପରିଚାରକଟି ବାସନପତ୍ର ଗୋଟେଇ ଘରୁ ବାହାରି ଚାଲିଗଲା । ଘଡ଼ିରେ ଦୁଇଟା ବାଜି ପଇଁତ୍ରିଶ ମିନିଟ୍ । ଆଉ ପଚିଶ ମିନିଟ୍ ପରେ ମାଳବିକା ଆସି ପହଞ୍ଚିବ । ଯାରି ଭିତରେ କିଛି ଗୋଟାଏ ଉପାୟ ସ୍ଥିର କରିବାକୁ ହେବ ।

ଜୟନ୍ତର ମନେ ପଡ଼ିଗଲା ଟେଲିଫୋନ୍‌ଟା କଥା । ବିଜୟ ନିଉଜ୍ ଏଜେନ୍‌ସୀର ଟେଲିଫୋନ୍ ଥାଇପାରେ; କିନ୍ତୁ ସେ ନମ୍ବର ପାଇବ କେଉଁଠୁ ? ଟେଲିଫୋନ୍ ଡିରେକ୍ଟରୀ......ଜୟନ୍ତ ଘରର ଦରଜା ଭିତରୁ ବନ୍ଦ କରି ଉଠିଗଲା ଟେଲିଫୋନ୍ ପାଖକୁ । ଟେଲିଫୋନ୍ ଅଛି ଯେତେବେଳେ ଡିରେକ୍ଟରୀ ନିଶ୍ଚୟ ଥିବ କେଉଁଠି; କିନ୍ତୁ କାହିଁ ? ଜୟନ୍ତ ଖୋଜିଲା ଚାରିଆଡ଼େ । ନା, ଟେଲିଫୋନ୍ ଡିରେକ୍ଟରୀର ଚିହ୍ନ ନାହିଁ ।

ଜୟନ୍ତ ଏହାପରେ କ'ଣ କରିବ ଚିନ୍ତା କରୁଛି, ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା । ସଙ୍ଗେ ସଙ୍ଗେ ରିସିଭରଟା ଉଠାଇ ନେଲା ଜୟନ୍ତ : ହ୍ୟାଲୋ, କିଏ ରୋଜି ?

ଅପର ପ୍ରାନ୍ତରୁ ଏକ ମଧୁର କଣ୍ଠସ୍ୱର ଭାସି ଆସିଲା : ମୋ ନାଁଟା ତା'ହେଲେ ତମର ମନେ ଅଛି ?

: ହଁ ରୋଜି । ମୋର ମନେହେଉଛି ତମେ ବୋଧହୁଏ ଠିକ୍ କହୁଥିଲ; କିନ୍ତୁ କାହିଁକି ? ମୋତେ ଏମାନେ କାହିଁକି ନଜରବନ୍ଦୀ କରି ରଖିଛନ୍ତି ?

: ସେ ଅନେକ କଥା ଜୟନ୍ତ । ଦିନେ ତମେ ସବୁ ବୁଝିପାରିବ ।

: କିନ୍ତୁ ବର୍ତ୍ତମାନ ମୁଁ କ'ଣ କରିବି ?

: ଆଉ କିଛି କରିବାର ନାହିଁ । ସମୟ ହେଲେ ମୁଁ ତମ୍ଭକୁ କହିବି । ସେମାନେ କିନ୍ତୁ ତମର କିଛି ଅନିଷ୍ଟ କରିବେ ନାହିଁ । କେବଳ ଅଟକେଇ ରଖିବେ ସେମାନଙ୍କର ଉଦ୍ଦେଶ୍ୟ ସାଧନ ହେବାଯାଏ ।

: କିନ୍ତୁ ରୋଜି । ମୁଁ ଯେ ଆଉ ପାରୁନାହିଁ । ମୁଁ ମୁକ୍ତି ଚାହେଁ ।

ବ୍ୟସ୍ତ ହୁଅ ନାହିଁ ଜୟନ୍ତ । ମୁକ୍ତି ତୁମେ ଦିନେ ନା ଦିନେ ପାଇବ; କିନ୍ତୁ ସେତେବେଳେ ହୁଏତ ସବୁ ଶେଷ ହୋଇ ଯାଇଥିବ ।

: ମାନେ ?

ଅପର ପ୍ରାନ୍ତରୁ କେବଳ ହାସ୍ୟଧ୍ୱନି ଭାସି ଆସିଲା ।

: ରୋଜି ! ରୋଜି !! ଜୟନ୍ତ ଚିତ୍କାର କରି ଉଠିଲା ।

ତଥାପି ଅପର ପ୍ରାନ୍ତରୁ ହାସ୍ୟଧ୍ୱନି ଭାସି ଆସୁଥିଲା ।

: ପ୍ଲିଜ୍ ରୋଜି । ତମେ ମୋତେ ଆଉ ପରିହାସ କର ନାହିଁ । ମୋତେ ସାହାଯ୍ୟ କର । ତମ ବାନ୍ଧବୀର ହତ୍ୟାକାରୀକୁ ଖୋଜି ବାହାର କରିବା ପାଇଁ ମୋତେ ସୁଯୋଗ ଦିଅ ।

: ତମେ ପାରିବ ନାହିଁ ଜୟନ୍ତ । ଅନୁରାଧାର ହତ୍ୟାକାରୀ ପୋଲିସ ଆଖିରେ ତମେ ନିଜେ । ଭାରତ ମାଟିରେ ପାଦ ଦେବାକ୍ଷଣି ପୋଲିସ ତମକୁ ଆରେଷ୍ଟ କରିବ । ତମେ ଖସି ଯାଇପାରିବ ନାହିଁ । ଖସିଯିବାର ତମର ଉପାୟ ନାହିଁ । ତମ ବିରୋଧରେ ଯେଉଁ ଚକ୍ରବ୍ୟୂହ ରଚନା ହୋଇଛି ତମେ ତାକୁ ଭେଦ କରି ପାରିବ ନାହିଁ ।

: ମୋ ବିରୋଧରେ ଚକ୍ରବ୍ୟୂହ? କ'ଣ କହୁଛ ତୁମେ ରୋଜି । କିଏ ସେହି ଚକ୍ରବ୍ୟୂହ ରଚନାକାରୀ ?

ସେ ତମର ପରମ ଆତ୍ମୀୟ, ହିତାକାଂକ୍ଷୀ ଏବଂ......ପୁଣି ରୋଜି ହସି ଉଠିଲା । ସେ ହସ ଯେପରି ଆଉ ଥମିବାର ନୁହେଁ । ଥମିଲା ବି ନାହିଁ ତା' ପୂର୍ବରୁ ରିସିଭରଟା କ୍ରେଡ଼େଲ ଉପରେ ଥୋଇ ଦେବାର ଶବ୍ଦ ହେଲା । ଲାଇନ୍ କଟିଗଲା । ଡାୟାଲଟୋନ୍ ଭାସି ଆସିଲା । ଜୟନ୍ତ ପାଗଳଙ୍କ ପରି ହ୍ୟାଲୋ କହି ଅନାବନା ଭାବରେ ନମ୍ବର ଡାଏଲ କରି ଚାଲିଥିଲା । ହଠାତ୍ ସେ ଶୁଣିଲା ଅପର ପ୍ରାନ୍ତରେ କେଉଁଠି କାହା ଟେଲିଫୋନ୍‌ରେ ରିଙ୍ଗ୍ ହେଉଛି । ସେ ସ୍ଥିର ହୋଇଗଲା । କାନ ଡେରିକରି ରିଙ୍ଗ୍ ବାଜୁଥିବାର ଶୁଣୁଥିଲା । ଭାବୁଥିଲା କେହି ଜଣେ ରିସିଭରଟା ଉଠାଇବ ଏବଂ.....

: ହ୍ୟାଲୋ, ହୋଟେଲ ୟାକ୍ ଆଣ୍ଡ ୟେଟି ରିସେପ୍‌ସନ ।

ଜୟନ୍ତ ହଠାତ୍ ମୁହୂର୍ତ୍ତେ ସ୍ଥିର ହୋଇଗଲା । କି ଉତ୍ତର ସେ ଦେବ ହୋଟେଲ ରିସେପ୍‌ସନିଷ୍ଟକୁ; କିନ୍ତୁ କିଛି ତ ଗୋଟାଏ କହିବାକୁ ହେବ । ସେ ଟିକିଏ ବି ଦ୍ୱିଧା ନ କରି ପଚାରିଲା : ମିଷ୍ଟର ଶର୍ମା ଆଜି ପହଞ୍ଚିଛନ୍ତି ? ତାଙ୍କର ଆଜି ଆସିବାର ଥିଲା ।

: ଆପଣ କୋଉ ଶର୍ମାଙ୍କୁ ଖୋଜୁଛନ୍ତି ? ଅଶୋକ ଶର୍ମା ନାମକ ଜଣେ ଭଦ୍ରଲୋକ ଆଜି ଇଣ୍ଡିଆରୁ ଆସିଛନ୍ତି । ସେ ରହୁଛନ୍ତି ୨୧୫ ନମ୍ବର ରୁମ୍‌ରେ ।

: ଇଏସ୍ ମାଡ଼ାମ୍ ଅଶୋକ ଶର୍ମା, ମୋ'ର ବନ୍ଧୁ । ଆପଣ ଟିକେ ତାଙ୍କ ସହିତ ମୋ'ର ଯୋଗାଯୋଗ କରାଇ ଦେଇ ପାରିବେ ?

: ପ୍ଲିଜ୍ ହୋଲ୍‌ଡ ଅନ ।

ଜୟନ୍ତ ରିସିଭରଟା କାନରେ ଦେଇ ସଂକୁଚିତ ହୋଇ ପଡ଼ିଥିଲା କିଏ ଅଶୋକ ଶର୍ମା ? କେଉଁଠୁ ସେ ଆସିଛନ୍ତି; କ'ଣ କଥା କହିବ ତାଙ୍କ ସଙ୍ଗରେ ଜୟନ୍ତ । ବରଂ ସେ ରିସିଭରଟା ରଖିଦେଲେ ବଞ୍ଚିଯିବ । କିନ୍ତୁ ଅପରପ୍ରାନ୍ତରୁ ଶୁଣିବାକୁ ପାଇଲା, ମି ଶର୍ମା ଏଇ ଅଳ୍ପ ସମୟ ପୂର୍ବରୁ ବାହାରକୁ ବାହାରି ଯାଇଛନ୍ତି । କିଛି ଇନ୍‌ଫର୍‌ମେସନ ଥିଲେ ମୋତେ ଦେଇପାରନ୍ତି ।

ଜୟନ୍ତ ହଠାତ୍ ଅନୁରୋଧ କଲା : ମାଡାମ୍ ମୁଁ ଆପଣଙ୍କୁ ଟିକିଏ ବିରକ୍ତ କରୁଛି । ଆପଣଙ୍କ ହାତ ପାଖରେ ନିଶ୍ଚୟ ଟେଲିଫୋନ୍ ଡିରେକ୍‌ଟିରୀ ଥିବ, ମୋତେ ଟିକିଏ ବିଜୟ ନିଉଜ୍ ଏଜେନ୍‌ସୀର ଟେଲିଫୋନ୍ ନମ୍ବରଟା ଦେଇପାରିବେ ?

: ଜଷ୍ଟ ଏ ମିନିଟ୍ ପ୍ଲିଜ୍ ।

ଜୟନ୍ତ ରୁଦ୍ଧଶ୍ୱାସରେ ଅପେକ୍ଷା କରିଥିଲା ।

: ହୁଁ, ବିଜୟ ନିଉଜ୍ ଏଜେନ୍‌ସୀ, ଦରବାର ମାର୍ଗ ?

: ଇଏସ୍ ମାଡାମ୍ ।

: ପ୍ଲିଜ୍ ନୋଟ୍ ୧୩୧୫୬ ।

ଜୟନ୍ତ ଟେଲିଫୋନ୍ ନମ୍ବରଟା ଟିପିନେଇ ରିସେପ୍‌ସନିଷ୍ଟକୁ ଧନ୍ୟବାଦ ଜଣାଇ ରିସିଭରଟା ସଂଗେ ସଂଗେ ରଖିଦେଲା; କିନ୍ତୁ ବିଜୟ ନିଉଜ୍ ଏଜେନ୍‌ସୀକୁ ଟେଲିଫୋନ୍ କରିବାକୁ ଆଉ ସମୟ ପାଇଲା ନାହିଁ । ଦରଜାର କଲିଂ ବେଲ୍‌ଟା ବାଜି ଉଠିଲା । ମାଳବିକା ଆସି ଗଲାଣି ବୋଧହୁଏ ।

ହଁ, ମାଳବିକା । କବାଟ ଖୋଲି ଜୟନ୍ତ ମାଳବିକାର ହସିଲା ମୁହଁ ଦେଖିଲା ।

: ଆସ ମାଳବିକା ।

ମାଳବିକା ବସିଲା ଆସି ସୋଫା ଉପରେ । ଜୟନ୍ତ ବସିଲା ସାମ୍‌ନାକୁ ।

: ଆପଣ ସବୁ କାମ ଶେଷ କରିଛନ୍ତି ତ ମି. ମହାପାତ୍ର । ଆମେ ବାହାରିବା ଯେ !

ମନେହେଲା ଜୟନ୍ତର ବାହାରକୁ ବାହାରିବାର ଆଉ ଆଗ୍ରହ ନାହିଁ । ସେ ନିରସ କଣ୍ଠରେ ପଚାରିଲା : ଏହାପରେ ଆମେ କୁଆଡ଼େ ଯିବା ?

: ଚାଲନ୍ତୁ, ବାହାରନ୍ତୁ । ଆପଣଙ୍କର ଯଦି କୌଣସି ବିଶେଷ ସ୍ଥାନକୁ ଯିବାର ଥାଏ, ତେବେ ମୁଁ ନେଇଯିବି ।

: ଯଦି କୁହେ ଏଇଠି ବସି ଆଜି ଗପ କରିବା, ତା'ହେଲେ ?

: ମୋର କୋଉଥିରେ ଆପତ୍ତି ନାହିଁ । ମୋର କାମ ହେଲା ଆପଣଙ୍କ ସେବା କରିବା । ଆପଣ ଯେଉଁଥିରେ ଖୁସି ହେବେ ମୁଁ ସେଇଆ କରିବି । ମାଳବିକା ମୁହଁରେ ଉଲ୍ଲାସ ଫୁଟିଉଠିଥିଲା ।

ଜୟନ୍ତ ହସିଲା, କହିଲା : ତମେ ଆସିଛ ମୋର ସେବା କରିବା ପାଇଁ, ମୁଁ କିନ୍ତୁ ଗ୍ରହଣ କରି ପାରୁ ନାହିଁ । ମୁଁ ଏକ ଅଯୋଗ୍ୟ, ଅପଦାର୍ଥ ।

ମାଳବିକା ମୁହଁରେ ମୁହୂର୍ତ୍ତକ ପାଇଁ ଚିନ୍ତାର ରେଖା ଫୁଟିଉଠିଲା । ସେ କଣ୍ଠସ୍ୱର ଆଉ ଟିକିଏ କୋମଳ କରି କହିଲା : ଆପଣ ସବୁବେଳେ ଜଣେ ଦାର୍ଶନିକଙ୍କ ପରି କଥାବାର୍ତ୍ତା କରୁଛନ୍ତି, ଆପଣଙ୍କ ପାଇଁ ମୋର ଚାକିରି ଯିବ ।

: ନା ମାଳବିକା, ମୋ ପାଇଁ ତମର ଚାକିରି ଯାଉ ଏହା ମୁଁ ଚାହେଁ ନାହିଁ । କିନ୍ତୁ କେଜାଣି କାହିଁକି ମୁଁ ମୋତେ ସରଳ ହୋଇ ପାରୁ ନାହିଁ । ମୋ ଉପରେ ଦେଇ ସବୁବେଳେ ଏପରି ଏକ ଝଞ୍ଜା ବହିଚାଲିଛି ଯାହାର ତାଡ଼ନାରେ ମୁଁ କେତେଦିନ ପରେ ଦାର୍ଶନିକ ତ ନୁହେଁ; ଏକ ଥୁଣ୍ଟା ପଥରରେ ପରିଣତ ହୋଇଯିବି ।

: କିନ୍ତୁ ମୁଁ ବୁଝିପାରୁନାହିଁ ମିଷ୍ଟର ମହାପାତ୍ର ଆପଣଙ୍କର ଥୁଣ୍ଟା ପଥର ପାଲଟିବାର ମୁଖ୍ୟ କାରଣ କ'ଣ ! ମୁଁ ଆପଣଙ୍କୁ ପ୍ରାଣବନ୍ତ କରି ତୋଳିବା ପାଇଁ କିଛି ସାହାଯ୍ୟ କରି ପାରିବି ନାହିଁ ?

: ମାଳବିକା ! ମୋର ଠିକ୍ ତମରି ବୟସର, ତମରି ପରି ଗୋଟିଏ ବାନ୍ଧବୀ ଥିଲା । ମୁଁ ତାକୁ ଖୁବ୍ ଭଲ ପାଉଥିଲି । ଇଚ୍ଛାଥିଲା ତା' ସହିତ ଘର ବାନ୍ଧିବି । କିନ୍ତୁ.... ଜୟନ୍ତର କଣ୍ଠସ୍ୱର ଧୀରେ କରୁଣ ହୋଇ ଉଠୁଥିଲା । ସେ ନୀରବ ହୋଇଗଲା ।

ମାଳବିକା ଉତ୍ସାହିତ ହୋଇ ପଚାରିଲା : ତା'ହେଲେ 'କିନ୍ତୁ' ରହିଲା କେଉଁଠି ?

ଜୟନ୍ତ ବୋଧହୁଏ ସଚେତନ ହୋଇ ଉଠିଲା । ମାଳବିକା ପାଖରେ ତା'ର ଦୁର୍ବଳତା କଥାର ମୋଡ଼ ବୁଲେଇ କହିଲା : 'କିନ୍ତୁ' ଗୋଟାଏ ବାହାରିଲା ଶେଷ ପର୍ଯ୍ୟନ୍ତ । ସେ ଆଉ ଜଣକ ହାତ ଧରି ଅନ୍ୟତ୍ର ଚାଲିଗଲା ।

ମାଳବିକା ବୋଧହୁଏ ସାନ୍ତ୍ୱନା ଖୋଜି ପାଉ ନଥିଲା । ସେ ପରିସ୍ଥିତିଟାକୁ ହାଲକା କରିବା ପାଇଁ କହିଲା : ଆପଣ ତା'ହେଲେ ତାକୁ ଧରି ରଖିପାରିଲେ ନାହିଁ ?

: ନା, ମୁଁ ପାରିଲି ନାହିଁ ମାଳବିକା, ଆଜିଯାଏ କାହାକୁ ବାନ୍ଧିରଖି ପାରି ନାହିଁ । ସେଇ ହେଉଛି ମୋ ଜୀବନର ଗୋଟାଏ ବଡ଼ ବ୍ୟର୍ଥତା ।

କେତୋଟି ମୁହୂର୍ତ୍ତ ଦୁହେଁ ଚୁପ୍‌ଚାପ୍ ବସି ରହିଲେ । କାହାରି ମୁହଁରେ ଭାଷା ନଥିଲା ।

ନୀରବତା ଭଙ୍ଗକଲା ମାଳବିକା : ତା'ହେଲେ ଆପଣ ଆଜି କୁଆଡ଼େ ବାହାରିବେ ନାହିଁ ?

ମୋର ରୁଦ୍ରପ୍ରସାଦଙ୍କ ସହିତ ଦେଖାହେବା ନିତାନ୍ତ ପ୍ରୟୋଜନ । ସେ ଫେରିଲେଣି ? ଆଉ କିଛି ଖବର ପାଇଛ?

: ନା, ଯେତେଦୂର ଜାଣେ ସେ ଫେରି ନାହାନ୍ତି ।

: ତା'ହେଲେ ତମେ ଆଜି ଫେରିଯାଅ ମାଳବିକା । ମୋର ଆଉ କୁଆଡ଼କୁ ବାହାରିବାକୁ ଇଚ୍ଛା ନାହିଁ ।

: ଆପଣଙ୍କୁ ଠିକ୍ ମୁଁ ବୁଝିପାରୁ ନାହିଁ ମିଷ୍ଟର ମହାପାତ୍ର । ଆପଣ ଜଣେ ଯୁବକ, ଆପଣଙ୍କ ଶିରା ପ୍ରଶିରାରେ ଉଷ୍ଣରକ୍ତ ପ୍ରବାହିତ ହେଉଛି । ଆପଣଙ୍କ ସାମ୍ନାରେ ବସି ରହିଛି ଜଣେ ସୁନ୍ଦରୀ ଯୁବତୀ; ତଥାପି ଆପଣ ଶୀତଳ ହୋଇ ବସି ରହିଛନ୍ତି ! ଆପଣଙ୍କର କାମନା, ବାସନା ସବୁ କ'ଣ ମରିଯାଇଛି ?

ଜୟନ୍ତ ହସିଲା । କହିଲା : ମାଳବିକା ତମେ ଖାଲି ଜଣେ ସୁନ୍ଦରୀ ନୁହଁ, ଅନିନ୍ଦ୍ୟ ସୁନ୍ଦରୀ ତମକୁ କୁହାଯାଇପାରେ । କିନ୍ତୁ ମୋ ଆଖିରେ ବର୍ତ୍ତମାନ ତମେ ଏକ ପାଷାଣ ପ୍ରତିମାଠାରୁ ଅଧିକ କିଛି ନୁହଁ ।

ହେଲେ ଆପଣଙ୍କର ଏହି ନୈରାଶ୍ୟରେ ମୁଁ କ'ଣ ଅଂଶ ଗ୍ରହଣ କରିପାରିବି ନାହିଁ ? ପାଷାଣ ପ୍ରତିମା ମୁହଁରେ କ'ଣ ଭାଷା ଫୁଟାଇପାରିବି ନାହିଁ ?

: ନା, ପାରିବ ନାହିଁ । ତମେ କିଏ, କାହିଁକି ଆସିଚ ଏଠାକୁ ? ରୁଦ୍ରପ୍ରସାଦ ସହିତ ତମର ସଂପର୍କ କ'ଣ ସବୁ କଥା ନ ଜାଣିଲେ ମୁଁ ତୁମକୁ ବିଶ୍ୱାସ କରି ପାରିବି ନାହିଁ । ତମର ମୋ ମନ ଉପରେ ପ୍ରଭାବ ବିସ୍ତାର କରିବାର ଶତଚେଷ୍ଟା ବ୍ୟର୍ଥ ହେବ; ବରଂ ତମେ ଫେରିଯାଅ ମାଳବିକା, ମୁଁ ଅନ୍ଧକାରରେ ଏକା ବସି ବସି ମୋର ବିଡ଼ମ୍ବିତ ଜୀବନ କଥା ଚିନ୍ତା କରେ ।

ଏଥର ମାଳବିକା ହସିଲା । କହିଲା : ମୁଁ ଜାଣେ ଆପଣଙ୍କ ବିଡ଼ମ୍ବିତ ଜୀବନ କଥା । ଆଗରୁ ଜାଣି ନଥିଲି । ଆଜି ଖବର କାଗଜରୁ... ସେ ତା'ର ଆଟାଚି କେସ୍‌ଟି ଖୋଲି ଖଣ୍ଡିଏ ଖବର କାଗଜ ବାହାର କଲା ।

ଜୟନ୍ତ ଏକପ୍ରକାର ମାଳବିକା ହାତରୁ ଖବର କାଗଜଟି ଟାଣିନେଇଗଲା । ଜୟନ୍ତର ଆଖି ପଡ଼ିଲା ତା'ରି ଫଟୋ ଉପରେ । ଷ୍ଟେଟସ୍‌ମ୍ୟାନର ଚତୁର୍ଥ ପୃଷ୍ଠାରେ ତା' ଫଟୋଟି ଛପା ହୋଇ କିଛି ସମ୍ବାଦ ପ୍ରକାଶିତ ହୋଇଛି । ଯାହାର ସାରାଂଶ ହେଉଛି 'ଇଞ୍ଜିନିୟର ଜୟନ୍ତ ମହାପାତ୍ର; ତାଙ୍କର ଅନୁରାଧା ନାମକ ବାନ୍ଧବୀକୁ ହତ୍ୟାକରି ଫେରାର ହୋଇଛନ୍ତି । ପୋଲିସ ଅନୁସନ୍ଧାନ କରି ଜାଣିପାରିଛନ୍ତି ଯେ, ଜୟନ୍ତ ମହାପାତ୍ର ନିଜ ହାତରେ ଗଳାଚିପି ଅନୁରାଧାକୁ ହତ୍ୟା କରିଛନ୍ତି । ଯଦି କେହି ଜୟନ୍ତ ମହାପାତ୍ରଙ୍କୁ ଧରାଇ ଦେଇପାରନ୍ତି ତେବେ ପୋଲିସ ପକ୍ଷରୁ ସେହି ବ୍ୟକ୍ତିଙ୍କୁ ପାଞ୍ଚହଜାର ଟଙ୍କା ପୁରସ୍କାର ଦିଆଯିବ ।

ଜୟନ୍ତ ଖବର କାଗଜଟି ଦୁଇ ହାତରେ ଟାଣି ଚିକି ଚିକି କରି ଛିଣ୍ଡାଇ ପକାଇଲା । ମାଳବିକା ମୁହଁକୁ ଚାହିଁ କରୁଣ ସ୍ୱରରେ କହିଲା, : ତମେ ବିଶ୍ୱାସକର ମାଳବିକା, ମୁଁ କିନ୍ତୁ ଅନୁରାଧାକୁ ହତ୍ୟା କରି ନାହିଁ । ତମେ ବିଶ୍ୱାସ କର ।

ମାଳବିକା ଶାନ୍ତ ସ୍ୱରରେ କହିଲା : ମୁଁ କିନ୍ତୁ ପାଞ୍ଚହଜାର ଟଙ୍କା ପୁରସ୍କାର ନେବାକୁ ଆସି ନାହିଁ ମିଷ୍ଟର ମହାପାତ୍ର । ସଂବାଦଟା ସତ୍ୟ ହେଉ କି ମିଥ୍ୟା ହେଉ, ଆମର ଏହି କାଠମାଣ୍ଡୁ ସହରରେ ଏ ଖବର କାହାରି ଆଖିରେ ପଡ଼ିବ ନାହିଁ ।

ମାଳବିକା କ'ଣ କହୁଥିଲା ଜୟନ୍ତ ବୋଧହୁଏ ବୁଝିପାରୁ ନଥିଲା । ସେ ସେହିପରି କରୁଣ ସ୍ୱରରେ ପଚାରିଲା, ମାନେ ?

: ଆଜି କାଠମାଣ୍ଡୁକୁ ଯେତେ ଷ୍ଟେଟସ୍‌ମ୍ୟାନ ଆସିଥିଲା, ଏଜେଣ୍ଟଠାରୁ ଆମ କମ୍ପାନୀ ସବୁଯାକ କିଣି ଆଣି ପୋଡ଼ି ଦେଇଛନ୍ତି, ମୁଁ ସେଉଠୁ ଏ ଖଣ୍ଡିକ ଆପଣଙ୍କ ପାଇଁ ଆଣିଥିଲି ।

: କିନ୍ତୁ ମାଳବିକା, ତମେ କ'ଣ ଭାବୁଛ ମୁଁ ଅନୁରାଧାକୁ ହତ୍ୟା କରଛି ? ଖବର କାଗଜରେ ଯେଉଁ ସଂବାଦ ବାହାରିଛି ତମେ ତାକୁ ବିଶ୍ୱାସ କରୁଛ ?

ଏଥର ମାଳବିକା ହସିଲା । ଉଠି ଠିଆହେଲା । କହିଲା : ଆପଣ ଆସନ୍ତୁ ମିଷ୍ଟର ମହାପାତ୍ର ବହାରୁ ଟିକିଏ ବୁଲି ଆସିବା ।

ଜୟନ୍ତ କିନ୍ତୁ ଉଠିଲା ନାହିଁ; ବରଂ ସେ ମାଳବିକାର ହାତଧରି ସେଇଠି ବସେଇଲା । କହିଲା : ତମ କମ୍ପାନୀ ସବୁ କାଗଜଯାକ କିଣି ପୋଡ଼ି ଦେଇଛନ୍ତି ? କିନ୍ତୁ କାହିଁକି ? ସେମାନଙ୍କର ସ୍ୱାର୍ଥ କ'ଣ ?

: ସେ କଥା ମୁଁ କାହାରିକୁ ପଚାରି ନାହିଁ ମିଷ୍ଟର ମହାପାତ୍ର । ତେବେ ମୋର ମନେ ହେଉଛି ଆପଣ ରୁଦ୍ରପ୍ରସାଦଙ୍କର ଗେଷ୍ଟ । ଆପଣଙ୍କ ସମ୍ବନ୍ଧରେ ଏପରି ଏକ ସମ୍ବାଦ କାଠମାଣ୍ଡୁରେ ପ୍ରଚାରିତ ହେଲେ, ବାଟଘାଟରେ କେହି ଆପଣଙ୍କୁ ଦେଖି ଚିହ୍ନି ପାରନ୍ତି । ଫଳରେ ରୁଦ୍ରପ୍ରସାଦଙ୍କ ଅସମ୍ମାନ ହେବ ।

ତମେ ତମର ବସ୍ ଏହି ରୁଦ୍ରପ୍ରସାଦଙ୍କ ସମ୍ବନ୍ଧରେ ମୋତେ କିଛି କହି ପାରିବ ?

ମାଳବିକା ବିସ୍ଫାରିତ ନେତ୍ରରେ ଜୟନ୍ତ ମୁହଁକୁ ଚାହିଁ ପଚାରିଲା ।

: ମାନେ ?

: ମୁଁ ଏହି ରୁଦ୍ରପ୍ରସାଦଙ୍କ ସମ୍ବନ୍ଧରେ ସବିଶେଷ ଜାଣିବାକୁ ଚାହେଁ । ସେ କିଏ, ଏଠାରେ କ'ଣ କରନ୍ତି ? ତାଙ୍କର ନାମୀ ବେନାମୀ କେତୋଟି କମ୍ପାନୀ ଚଳୁଛି, ତା'ଛଡ଼ା ତାଙ୍କର ମୋ ପ୍ରତି ଏତେ ଦରଦ କାହିଁକି ? ତମେ ମୋତେ ଏ ସମ୍ବନ୍ଧରେ କିଛି କହିପାରିବ?

: ତାଙ୍କ ସମ୍ବନ୍ଧରେ ମୋତେ ବିଶେଷ କିଛି ଜଣା ନାହିଁ । ତେବେ ଏତିକି ଜାଣିଛି ସେ ଜଣେ ସଦ୍ ଓ ମହତ୍ ଲୋକ, ପରୋପକାରୀ । ରାଜାଙ୍କର ବିଶ୍ୱସ୍ତ ବନ୍ଧୁ । ତାଙ୍କର ନାନାପ୍ରକାର ବ୍ୟବସାୟ ଅଛି । ବାସ୍ ଏଇ ପର୍ଯ୍ୟନ୍ତ । ଏହାଠାରୁ ମୋତେ ଆଉ ବିଶେଷ କିଛି ଜଣା ନାହିଁ । ମାତ୍ର ଆପଣ ତାଙ୍କର ଅତିଥି, ମୋ'ଠାରୁ ଆପଣ ତାଙ୍କ ସମ୍ବନ୍ଧରେ ବେଶି ଜାଣିବା କଥା ।

: ହୁଁ, ତମେ ତା'ହେଲେ ଗୋଟିଏ କାମ କର ମାଳବିକା । ମୁଁ ଏଠି ବଡ଼ ଅସୁବିଧାରେ ପଡ଼ିଯାଇଛି । ସାଙ୍ଗ-ସାଥୀ, ବନ୍ଧୁ-ବାନ୍ଧବ କେହି ନାହାନ୍ତି, ଯେଉଁମାନଙ୍କ ସଙ୍ଗରେ ମିଳିମିଶି ସମୟ କଟାଇଦେବି ! ତା'ଛଡ଼ା ମାଳବିକା ତମେ ତ ମୋ ସମ୍ବନ୍ଧରେ ଏହା ଭିତରେ ସବୁ କଥା ଜାଣିଯାଇଛ । ମୁଁ ଜଣେ ଖୁଣୀ, ଏଠାରେ ଆସି ଆତ୍ମଗୋପନ କରି ରହିଛି ।

: ନା ମିଷ୍ଟର ମହାପାତ୍ର । ଆପଣ ସେପରି ଭାବୁଛନ୍ତି କାହିଁକି ? ମୋର ଆପଣଙ୍କ ସମ୍ବନ୍ଧରେ କିଛି ଖରାପ ଧାରଣା ନାହିଁ । ତା'ଛଡ଼ା ମୁଁ କାହିଁକି ଭାବିବି ଯେ ଆପଣ ଜଣେ ଖୁଣୀ ! ବରଂ ଆପଣ ମାନସିକ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି ସେକଥା ମୁଁ ଅନୁଭବ କରୁଛି । ବ୍ୟସ୍ତ ହୁଅନ୍ତୁ ନାହିଁ । ସମୟ ସବୁ ଠିକ୍ କରିଦେବ ।

ଜୟନ୍ତ ଏକ ଦୃଷ୍ଟିରେ ଅନେକ ସମୟଯାଏ ଅନାଇ ରହିଲା ମାଳବିକାର ମୁହଁକୁ । ସେଠାରେ କୌଣସି ପ୍ରକାର ଛଳନାର ସୂଚନା ନଥିଲା । ଅନୁରାଧା ବେଳେ ବେଳେ ତାକୁ ଏହିପରି ସାନ୍ତ୍ୱନା ଦେଉଥିଲା । ସେ ଯେତେବଳେ କୌଣସି ଏକ ସନ୍ଧିକ୍ଷଣରେ ସମସ୍ୟାର ସମାଧାନ କରିବାକୁ ଅକ୍ଷମ ହୋଇପଡ଼େ, ଅନୁରାଧା ତାକୁ ସାନ୍ତ୍ୱନା ଦିଏ ଏବଂ ସେ ଅନୁଭବ କରିଛି, ଅନୁରାଧାର ସେହି ସାନ୍ତ୍ୱନା ଫଳପ୍ରଦ ହୁଏ । ଅଳ୍ପ ସମୟ ପରେ ସେ ସମାଧାନର ବାଟ ଖୋଜିପାଏ । ଆଜି ମାଳବିକାର ମୁହଁରେ ଅନୁରାଧାର ମୁହଁ ପ୍ରତିଫଳିତ ହୋଇ ଉଠୁଥିଲା । ସେ ଭାବୁଥିଲା, ତା'ର ଆଜି ଏଇ ଦିନରେ ସମସ୍ୟା କ'ଣ ! ସେ କ'ଣ ସତରେ ଆସି ରୁଦ୍ରପ୍ରସାଦଙ୍କ ପାଖରେ ନଜରବନ୍ଦୀ ହୋଇ ପଡ଼ିଛି ! ରୁଦ୍ରପ୍ରସାଦଙ୍କର ବା ସ୍ୱାର୍ଥ କ'ଣ, ସେ ଜୟନ୍ତକୁ ଅଟକାଇ ରଖି ତାଙ୍କର କି ଲାଭ ହେବ ? ଜୟନ୍ତ ଜଣେ ସାମାନ୍ୟ ଇଞ୍ଜିନିୟର । ତା'ଠାରୁ ବହୁ ବଡ଼ ବଡ଼ ଇଞ୍ଜିନିୟର ସାରାଦେଶରେ ଭରି ରହିଛନ୍ତି । ତା'ହେଲେ......।

ତା'ହେଲେ ରୋଜି ତା' ମନରେ ଏପରି ଧାରଣା ଜନ୍ମାଇଲା କାହିଁକି ? ପ୍ରକୃତରେ ରୋଜି କିଏ ?

ବହୁତ ବେଳଯାଏ ଜୟନ୍ତ ଏକ ଦୃଷ୍ଟିରେ ମାଳବିକା ମୁହଁକୁ ଚାହିଁ ଆକାଶ ପାତାଳ ଭାବୁଥିଲା । ସେ ପଚାରି ଉଠିଲା : ତମେ ରୋଜିକୁ ଚିହ୍ନିଚ ମାଳବିକା ?

: ରୋଜି, ରୋଜି କିଏ ?

: ସେ ଗୋଟିଏ ଝିଅ, ଏଇ କାଠମାଣ୍ଡୁରେ ଥାଏ । ମୋତେ ତା' ଠିକଣା ଜଣା ନାହିଁ ।

ରୋଜି, ରୋଜି କହି ମାଳବିକା ଆଖିବୁଜି ଅନେକ ସମୟ ଚିନ୍ତାକଲା । ଶେଷରେ କହିଲା, : ରୋଜି ଟଣ୍ଡନ ? ରୋଜି ଟଣ୍ଡନ ବୋଲି ଗୋଟିଏ ଝିଅର ନାଁ ମୁଁ ଶୁଣିଛି । ସେ ବିଭିନ୍ନ ହୋଟେଲ ବାର୍‌ରେ ନାଚେ । ଆପଣ ସେଇ ରୋଜି କଥା କହୁଛନ୍ତି ?

: ହୁଏତ ହୋଇପାରେ । ତମ ସହିତ ତା'ର ପରିଚୟ ନାହିଁ ?

: ନା, ମୁଁ ତା' ନାଁ ଶୁଣିଛି । ଥରେ ଦି'ଥର ତା' ନାଚ ବି ଦେଖିଛି; କିନ୍ତୁ ଆଳାପ ପରିଚୟ ନାହିଁ ।

ମୋତେ ଟିକିଏ ତା' ସହିତ ପରିଚୟ କରାଇ ଦେଇପାରିବ ମାଳବିକା ! ତା'ହେଲେ ମୁଁ ତମ ପାଖରେ କୃତଜ୍ଞ ହୋଇ ରହିବି । ଜୟନ୍ତର ସ୍ୱର କମ୍ପିଉଠୁଥିଲା ।

: କିନ୍ତୁ...ମୋତେ ତା'ହେଲେ ଅନୁମତି ନେବାକୁ ହେବ ।

: କାହାଠାରୁ ?

: ବସ୍‌ଙ୍କଠାରୁ । ଆପଣଙ୍କୁ କୌଣସି ହୋଟେଲ ବାର୍‌କୁ ସଂଗରେ ନେଇଯିବାର ଅନୁମତି ତ ମୁଁ ପାଇ ନାହିଁ । ମୁଁ ଠିକ୍ ଅନୁମତି ଆଣିପାରିବି । ତା'ଛଡ଼ା ରୋଜି ଟଣ୍ଡନ ଏବେ କେଉଁଠି ଅଛି ତା' ସମ୍ବନ୍ଧରେ ଟିକିଏ ଖୋଜ-ଖବର ନେବାକୁ ହେବ । ସେ ଆଦୌ କାଠମାଣ୍ଡୁରେ ଅଛି କି ନାହିଁ ! ଅନେକ ଦିନ ହେବ ତା'ର କିଛି ପ୍ରୋଗ୍ରାମ କେଉଁଠି ହେଉଥିବାର ମୋ ଆଖିରେ ପଡ଼ିନାହିଁ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ରୋଜିର ସଂଧାନ ନେଇ ଆପଣଙ୍କୁ ନିଶ୍ଚୟ ତା' ପାଖକୁ ନେଇଯିବି ।

: ନା, ନା ମାଳବିକା, ତମେ ଆଗ ରୋଜି ଟଣ୍ଡନର ଖବର ନିଅ । ସେ ଏଠାରେ ଅଛି କି ନାହିଁ । ତା'ପରେ ବସ୍‌ଙ୍କ ଅନୁମତି ନେବ ବା ଯାହା କରିବ ।

: କିନ୍ତୁ ହଠାତ୍ ରୋଜି ଟଣ୍ଡନ କଥା ଆପଣଙ୍କର କାହିଁକି ମନେ ପଡ଼ିଲା । ତା' ସହିତ ବା ଆପଣଙ୍କର ପ୍ରୟୋଜନ କ'ଣ ?

ଜୟନ୍ତ ଟିକିଏ ହସିବାକୁ ଚେଷ୍ଟାକଲା । କହିଲା : ନା ଏମିତି, ତା' ସହିତ ମୋର ଥରେ କଲିକତାରେ ଆଳାପ ହୋଇଥିଲା । ଅବଶ୍ୟ ଗୋଟାଏ ହୋଟେଲରେ । ସେ ନାଚେ କି ନାହିଁ ମୋତେ ଜଣା ନାହିଁ । ତଥାପି ଝିଅଟା ମୋତେ ବେଶ୍ ଭଲ ଲାଗିଥିଲା । ଆଜି କେଜାଣି ଯେ କାହିଁକି ତା' କଥାଟା ମୋର ମନେପଡ଼ିଲା ମୁଁ ନିଜେ ବି କହିପାରିବି ନାହିଁ ।

: ଠିକ୍‌ଅଛି, ମାଳବିକା କହିଲା, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ କାଲି ସକାଳେ ଆପଣଙ୍କୁ ରୋଜି କଥା କହିବି । ଆଜି ତା' ହେଲେ କ'ଣ କରିବା ଆମେ ? ପ୍ରାୟ ଚାରିଟା ବାଜିବାକୁ ଗଲା । ଚାଲନ୍ତୁ ବାହାରୁ କୁଆଡ଼େ ଟିକିଏ ବୁଲି ଆସିବା ।

ଜୟନ୍ତ କହିଲା : ମୋର ଆଜି ଉଠିବାକୁ ମୋଟେ ମନ ହେଉ ନାହିଁ । ଆଚ୍ଛା ମାଳବିକା ତମେ ବରଂ ମୋତେ ତମ ଜୀବନ କାହାଣୀ ଶୁଣାଅ । ମୁଁ ବସି ବସି ଶୁଣେ ।

ମାଳବିକା ଚମକି ଉଠିଲା : ମୋ ଜୀବନ କାହାଣୀ- ମାନେ ?

ଜୟନ୍ତ ହସିଲା । କହିଲା : ତମର ଏଇ ତେଇଶି ବର୍ଷର ଚଲାପଥରେ ନିଶ୍ଚୟ କିଛି ନା କିଛି କାହାଣୀ ଥିବ- ଦୁଃଖର, ସୁଖର କିମ୍ବା ବେଦନାର, କିଛି ନଥିଲେ ତମ ବାପା, ମା' ଭାଇ ଭଉଣୀ କାହାରି କଥା ହେଲେ ନିଶ୍ଚୟ ଥିବ । ତମେ କୁହ ମୁଁ ଏଇଠି ବସି ବସି ଶୁଣେ । ଆଜି ଦିନଟା କଟିଯାଉ ।

ମାଳବିକା ମୁହଁରେ ବେଦନାର ଛାଇ ଫୁଟିଉଠୁଥିଲା । ସେ କିନ୍ତୁ ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି କହିଲା : ପୃଥିବୀରେ ଏତେ ଲୋକ ଥାଉ ଥାଉ, ଆପଣ ଶେଷରେ ମୋ ଜୀବନ କାହାଣୀ ଶୁଣିବାକୁ ଚାହାନ୍ତି ! ଆପଣଙ୍କ କଥା ଶୁଣି ମୋତେ ହସ ମାଡୁଛି । ମୋର ତ ମନେ ହୁଏ ମୋର ଜୀବନଇ ନାହିଁ । ତେଣୁ ମୋ ଜୀବନର କାହାଣୀ ଥାଇ ନ ପାରେ; ବରଂ ଆପଣ ଆପଣଙ୍କ ଜୀବନ କାହାଣୀ ମୋତେ ଶୁଣାନ୍ତୁ । ଆପଣଙ୍କ କଥା, ଅନୁରାଧାର କଥା ଏବଂ ଆପଣଙ୍କ ଜୀବନ ପଥରେ ଆସିଥିବା ଅନ୍ୟାନ୍ୟ ବନ୍ଧୁ-ବାନ୍ଧବୀମାନଙ୍କ କଥା । ମୁଁ ଶୁଣେ; ଶୁଣୁ ଶୁଣୁ ସମୟ ଶେଷ ହୋଇଯାଉ ।

ଜୟନ୍ତ କହିଲା : ନା ମାଳବିକା, ମୋ ଜୀବନରେ ଶୁଣାଇଲା ଭଳି କାହାଣୀ କିଛି ନାହିଁ । ଅନୁରାଧା ଥିଲା ମୋ ପ୍ରିୟ ବାନ୍ଧବୀ । ତାକୁ ହରାଇ ମୁଁ ଖୁବ୍ ମର୍ମାହତ ହୋଇଛି । ଯାହାହେଉ, ତମର ମୋର ଜୀବନରେ କେହି କାହାରିକୁ ଶୁଣାଇଲା ଭଳି କାହାଣୀ କିଛି ନାହିଁ ଯେତେବେଳେ, ଚାଲ ଏଥର ବାହାରି ପଡ଼ିବା । ସମୟ କଟାଇବାକୁ ତ ହେବ !

ସଙ୍ଗେ ସଙ୍ଗେ ଜୟନ୍ତ ଉଠି ଠିଆହୋଇ ପଡ଼ିଲା ।

: କୁଆଡ଼େ ଯିବା ? ମାଳବିକା ପଚାରିଲା ।

: ତ୍ରିଭୁବନ ଏଆର ପୋର୍ଟ ।

ମାଳବିକା ଆପତ୍ତି କଲା ନାହିଁ । ସେମାନେ ଓହ୍ଲେଇ ଯାଇ ସେଇ ଆକାଶୀ ରଂଗର ଛୋଟ ଟୟଟା ଗାଡ଼ିଟି ପାଖରେ ପହଞ୍ଚିଲେ ।

ଡ୍ରାଇଭର ଦରଜା ଖୋଲିଦେଲା । ଦୁହେଁ ଭିତରେ ପଶିଲେ । ଗାଡ଼ି ଆଗେଇ ଚାଲିଲା

ପ୍ରଥମେ ମାଳବିକା ଆରମ୍ଭ କଲା : ମିଷ୍ଟର ମହାପାତ୍ର, ସତ କହିଲେ, ମୋତେ ଆପଣଙ୍କୁ କିପରି ଲାଗୁଛି ?

: ଫାଇନ୍ । କିନ୍ତୁ...

: ପୁଣି କିନ୍ତୁ କ'ଣ ?

: ତମେ କିନ୍ତୁ ଅନ୍ୟ ପାଞ୍ଚଟା ଭଲ ଝିଅଙ୍କ ପରି ସରଳ ନୁହଁ ।

: ମୋତେ ଦେଖି ଆପଣଙ୍କର ଏଇଆ ମନେହେଲା ?

: ହଁ ମାଳବିକା, ତମ ମୁହଁରେ ମୁଁ ଅନୁରାଧାର ପ୍ରତିଲିପି ଦେଖୁଛି । କିନ୍ତୁ ତମ ଅନ୍ତରରେ ତା'ର ସାରଲ୍ୟ ଉପଲବ୍ଧି କରିପାରୁ ନାହିଁ । ମୋର ମନେହେଉଛି ତମେ ଯେପରି ଅନ୍ୟ ଜଣକର ପ୍ରତିନିଧି ହୋଇ ଆସିଛ ମୋର ମନ କିଣିବା ପାଇଁ । ମୋତେ ସାନ୍ତ୍ୱନା ଦେବା ପାଇଁ । ଅବଶ୍ୟ ତମେ ତମର କର୍ତ୍ତବ୍ୟ ପାଳନ କରୁଛ । କରିବା ଉଚିତ ମଧ୍ୟ ।

ମାଳବିକା ହଠାତ୍ କିଛି ଉତ୍ତର ଦେଇପାରିଲା ନାହିଁ । ସେ ଆଉ ଟିକିଏ ଜୟନ୍ତ ପାଖକୁ ଲାଗିବସି କହିଲା : ଆପଣ ମୋ ସମ୍ବନ୍ଧରେ ଯାହା ଭାବୁଛନ୍ତି ତାହା କିନ୍ତୁ ଠିକ୍ ନୁହେଁ । ମୁଁ ଅନ୍ୟର ପ୍ରତିନିଧି ସତ; କିନ୍ତୁ ଅନ୍ୟ ପାଇଁ ମୁଁ ଆପଣଙ୍କ ମନ କିଣିବାକୁ ଚାହେଁ ନାହିଁ । ହୁଏତ ଅନେକ ନାରୀ ସହିତ ଆପଣ ମିଶିଛନ୍ତି କିନ୍ତୁ ସେମାନଙ୍କର ମନସ୍ତତ୍ତ୍ୱ ବୁଝିବାକୁ ଆପଣ କେବେ ଚେଷ୍ଟା କରି ନାହାନ୍ତି ।

: ତମେ କିପରି ଜାଣିଲ ?

: ମୋତେ ଦେଇ ମୁଁ ତୁଳନା କରୁଛି ।

: ତମେ ମାଳବିକା ସତ କହିଲ, ଅନ୍ୟର ପ୍ରତିନିଧିତ୍ୱ କରି ମୋତେ ଛଳେ ବଳେ କଉଶଳେ ଭୁଲେଇ ରଖିବାକୁ ଚେଷ୍ଟା କରୁନାହଁ ତ ? ଅନ୍ୟ ପାଇଁ ତମେ ମୋତେ ତମ ଆଡ଼କୁ ଆକୃଷ୍ଟ କରେଇବା ପାଇଁ ନିର୍ଦ୍ଦେଶ ପାଇ ନାହଁ ?

ମାଳବିକା ମୁହଁରେ ଖଣ୍ଡେ ଫିକାହସ ଦେଖାଗଲା । ସେ କହିଲା : ଭୁଲ୍, ଆପଣ ଭୁଲ୍ କହୁଛନ୍ତି ମିଷ୍ଟର ମହାପାତ୍ର । ମୁଁ ଅନ୍ୟ ପାଇଁ ଆପଣଙ୍କୁ ପ୍ରଲୁବ୍ଧ କରିବାକୁ ଚେଷ୍ଟା କରୁ ନାହିଁ । ମୋତେ ଆପଣଙ୍କୁ ଭଲ ଲାଗିଛି । ଯଦି ପଚାରନ୍ତି କାହିଁକି, ସେ ପ୍ରଶ୍ନର ଉତ୍ତର ମୁଁ ହୁଏତ ଦେଇ ପାରିବି ନାହିଁ; ତଥାପି କେଜାଣି କାହିଁକି ମୁଁ ମୋର କର୍ତ୍ତବ୍ୟର ବାହାରେ ବି ଆପଣଙ୍କ ସାନିଧ୍ୟ ପାଇବାକୁ ଚାହୁଁଛି । ଆପଣ ବିଶ୍ୱାସ କରନ୍ତୁ, ମୁଁ ଏକ ନାରୀ । ଆତ୍ମୀୟ-ସ୍ୱଜନ ବନ୍ଧୁ-ବାନ୍ଧବ ପରିବେଷ୍ଟିତ ହୋଇ ରହିଥିଲେ ବି ନାରୀ ଚାହେଁ ଆଉ ଏକ ସ୍ୱତନ୍ତ୍ର ସୂକ୍ଷ୍ମ ସତ୍ତା ସହିତ ଆତ୍ମୀୟତା । ଏଇଗୁଡ଼ିକ ନାରୀମନର ଗୋପନ ରହସ୍ୟ । ମୁଁ କିନ୍ତୁ ଖୋଲାଖୋଲି ଆପଣଙ୍କ ପାଖରେ ପ୍ରକାଶ କରିଦେଲି ।

ମାଳବିକା କଥା ଶେଷ କରି ଅନ୍ୟଆଡ଼େ ମୁହଁବୁଲେଇ ନେଲା ।

ସେ ଚାହିଁଥିଲା ଶୂନ୍ୟ ଆକାଶକୁ ।

ଜୟନ୍ତ ତା' ଚାହାଣି ସହିତ ଚାହାଣି ମିଶେଇବାକୁ ଚେଷ୍ଟା କରିଥିଲା; କିନ୍ତୁ ଶୂନ୍ୟ ଆକାଶରେ କେଇଖଣ୍ଡ ବଉଦ ଛଡ଼ା ଆଉ ତା'ର କିଛି ଦୃଷ୍ଟିଗୋଚର ହୋଇ ନଥିଲା। ତା'ର ମନେହୋଇଥିଲା ଅନୁରାଧା କିନ୍ତୁ ଏତେ ଅଳଙ୍କାର ଦେଇ କଥା କେବେ କହି ନଥିଲା। ବୋଧହୁଏ ତା' ନାରୀ ମନରେ ଏତେ ରଂଗିନ୍ ସ୍ୱପ୍ନ ନଥିଲା; କିନ୍ତୁ ମାଳବିକା ! ନିଶ୍ଚୟ ଏକ ବିଦଗ୍ଧ ପ୍ରାଣ। କିନ୍ତୁ ସେ ଯାହା କହୁଛି ସେଇଟା ତା'ର ନିଜ ମନ ଗହନର କଥା ନା ଯାହାର ହୋଇ ପ୍ରତିନିଧିତ୍ୱ କରୁଛି, ତା' ନିର୍ଦ୍ଦେଶିତ ପଥ!

ଜୟନ୍ତ ମାଳବିକା କାନ୍ଧରେ ହାତ ପକାଇଲା।

ମାଳବିକା ବୁଲି ଚାହିଁଲା ଜୟନ୍ତ ମୁହଁକୁ।

ଜୟନ୍ତ ଦେଖିଲା ମାଳବିକା ଆଖିରେ ଅଶ୍ରୁର ଜୁଆର। ହୁଏତ ମାଳବିକା ସେଇ ମୁହୂର୍ତ୍ତରେ ଜୟନ୍ତ କୋଳରେ ମୁହଁରଖି ଅଶ୍ରୁର ବନ୍ୟାରେ ଭିଜେଇ ଦେଇ ଥାଆନ୍ତା ଜୟନ୍ତର ଛାତି, କିନ୍ତୁ ତା'ର ମନେପଡ଼ିଲା ସାମ୍ନାରେ ଡ୍ରାଇଭର। ଭିଉଫାଇଣ୍ଡର ଗ୍ଲାସ ଉପରେ ତା'ର ସତର୍କ ଦୃଷ୍ଟି। ମାଳବିକା ନିଜକୁ ସଂଯତ କରିନେଇ, ଅନ୍ୟଆଡ଼େ ମୁହଁ ଫେରାଇ ନେଲା।

ସେମାନଙ୍କ ଆକାଶୀ ରଙ୍ଗର ଟାୟଟା ପ୍ରବେଶ କରୁଥିଲା ତ୍ରିଭୁବନ ଏଆର ପୋର୍ଟ ଭିତରେ।

ଗାଡ଼ିରୁ ଓହ୍ଲାଇ ଦୁହେଁ ଏଆରପୋର୍ଟ ଲଞ୍ଜରେ ପ୍ରବେଶ କଲେ।

ମାଳବିକା ମୁହଁଟା ଭାରି ଭାରି ଦିଶୁଥିଲା।

ଜୟନ୍ତ କହିଲା : ମୁଁ ତମ ମନରେ କଷ୍ଟ ଦେଇଛି। ମୋତେ କ୍ଷମା କର ମାଳବିକା।

ମାଳବିକା କ'ଣ କହିବାକୁ ଯାଉଥିଲା; କିନ୍ତୁ ହଠାତ୍ ତା'ର ଆଖି ପଡ଼ିଲା ସାମ୍ନାରେ ତା'ରି ଆଡ଼େ ଆଗେଇ ଆସୁଥିବା ଗୋଟିଏ ଏଆର ହୋଷ୍ଟେସ୍ ଉପରେ। ସେ ଛୁଟିଆସି ମାଳବିକାକୁ କୁଣ୍ଢାଇ ପକାଇ ଉଚ୍ଛ୍ୱସିତ ହୋଇ କହିଲା : ତୋର ଖବର କ'ଣ ମାଳା ? ତୋତେ ମୁଁ ମନେ ମନେ କେତେଦିନ ହେବ ଖୋଜୁଛି। ତୋ'ପାଇଁ ଗୋଟିଏ ଶୁଭ-ସଂବାଦ ସେଇଦିନୁ ସାଇତି ରଖିଛି। ତତେ ଶୁଣାଇପାରିଲେ ଛାତିର ଯନ୍ତ୍ରଣାଟା ଟିକିଏ କମେଇ ପାରିବି। ସେ ମାଳବିକାର ହାତ ଧରି ବିପରୀତ ଦିଗକୁ ଟାଣିନେଉଥିଲା।

ମାଳବିକା କିନ୍ତୁ ଅଟକି ଯାଇ ଜୟନ୍ତ ଆଡ଼େ ତା' ବାନ୍ଧବୀର ଦୃଷ୍ଟି ଆକର୍ଷଣ କରାଇ କହିଲା : ମୋର ବନ୍ଧୁ, ମିଷ୍ଟର ମହାପାତ୍ର। ଆଉ ଏ ମୋର ବାନ୍ଧବୀ ସୋନାଲି। ଆମେ ଖୁବ୍ ଅନ୍ତରଙ୍ଗ। ଏକା ସଂଗରେ ଆମର ହଷ୍ଟେଲ ଜୀବନ କଟିଛି।

ମାଳବିକା ଦେଖିଲା ହଠାତ୍ ଯେପରି ଦୁହେଁ ଦୁହିଁଙ୍କ ଆଡ଼କୁ ଚାହିଁ ସ୍ତବ୍ଧ ହୋଇ ଯାଇଛନ୍ତି। କାହାରି ମୁହଁରେ ଭାଷା ନାହିଁ। କାହାରି ଆଖିର ପଲକ ପଡୁନାହିଁ।

ମାଳବିକା ବାଧ ହୋଇ ସେମାନଙ୍କ ଧ୍ୟାନଭଙ୍ଗ କରେଇଲା। ସୋନାଲି ହାତଟାକୁ ଖୁବ୍ ଯୋର୍‌ରେ ହଲେଇ ଦେଇ କହିଲା : ତୁ କ'ଣ ମିଷ୍ଟର ମହାପାତ୍ରଙ୍କୁ ଆଗରୁ ଚିହ୍ନିଥିଲୁ ସୋନା ?

: ମିଷ୍ଟର ମହାପାତ୍ର : ହଁ. ମୋର ମନେ ହେଉଛି, ମୁଁ ଯେପରି ମିଷ୍ଟର ମହାପାତ୍ରଙ୍କୁ....ଏଇ ଦିନେ କି ଦୁଇଦନିନ ଆଗରୁ...ମାନେ ମୁଁ ଠିକ୍ ମନେ ପକାଇ ପାରୁନାହିଁ, ମିଷ୍ଟର ମହାପାତ୍ର: ମିଷ୍ଟର ମହାପାତ୍ର ଓଃ, ଆପଣ ମିଷ୍ଟର ଜୟନ୍ତ ମହାପାତ୍ର ?

ଜୟନ୍ତ ମୁଣ୍ଡ ହଲାଇ ସମ୍ମତି ଜଣାଇବା ଆଗରୁ ସୋନାଲି ଜୟନ୍ତର ଡାହାଣ ହାତଟାକୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରି ଟାଣି ଟାଣି ନେଇଗଲା ବିପରୀତ ଦିଗକୁ । ଏଆର ହୋଷ୍ଟେସ୍‌ମାନଙ୍କ ବିଶ୍ରାମାଳୟ ଭିତରକୁ ଠେଲିଦେଇ ବାହାରୁ ଦରଜାଟା ବନ୍ଦ କରିଦେଲା । ମାଳବିକା ସୋନାଲିର ପଛେ ପଛେ ଛୁଟିଥିଲା । ହଠାତ୍ ସେ ସୋନାଲିର ଏପରି ଆଚରଣରୁ କିଛି ବୁଝି ନ ପାରି ସ୍ତବ୍ଧ ହୋଇ ସୋନାଲୀ ମୁହଁକୁ ଅନାଇ ଠିଆହୋଇ ପଡ଼ିଲା ।

ସୋନାଲି ମାଳବିକା ମୁହଁକୁ ରୋଷକଷାୟିତ ନୟନରେ ଚାହିଁ କହିଲା : ଜୟନ୍ତ ମହାପାତ୍ର ତୋର ବନ୍ଧୁ, ମାନେ ? ସେ ତୋ'ର କିପରି ବନ୍ଧୁ ?

: କାହିଁକି । କ'ଣ ହେଲାକି ?

: ତୁ ଜାଣିନୁ ବୋଧହୁଏ ମାଳା । ମୁଁ ଏଇକ୍ଷିଣା ଏଇ ପ୍ଲେନ୍‌ରେ ଇଣ୍ଡିଆରୁ ଆସିଲି । ଜୟନ୍ତ ମହାପାତ୍ର ଜଣେ ଖୁଣୀ ଆସାମୀ । ସେ ଅନୁରାଧା ନାମକ ଗୋଟିଏ ଝିଅକୁ ଖୁଣ୍ କରି ଏଠାକୁ ପଳାଇ ଆସିଛି ।

: ମୁଁ ଜାଣେ । ମାଳବିକା ହସି ହସି କହିଲା ।

: ତୁ ଜାଣୁ ? ଜାଣୁ ଜାଣୁ ନିଆଁକୁ ଅଣ୍ଟିରେ ଧରି ବୁଲୁଚୁ ?

: ହଁ ସୋନା । ସେ ନିଆଁ ଅଣ୍ଟିପୋଡ଼ିବ ନାହିଁ ।

: କ'ଣ ପାଗଳ ହୋଇଗଲୁ ମାଳା ! ଏଇ ପ୍ଲେନ୍‌ରେ ଇଣ୍ଡିଆରୁ ଦୁଇଜଣ ଗୁଇନ୍ଦା ଅଫିସର ଆସିଛନ୍ତି । ଆଉ କେଇ ମିନିଟ୍ ପରେ ସେମାନେ ଜିନିଷପତ୍ର ଛାଡ଼ି କରି ଲଞ୍ଜରେ ଆସି ପହଞ୍ଚିବେ । ସେମାନେ କିପରି ଜାଣି ପାରିଛନ୍ତି ଜୟନ୍ତ ମହାପାତ୍ର ଅନୁରାଧାକୁ ଖୁନ୍ କରି କାଠମାଣ୍ଡୁରେ ଆତ୍ମଗୋପନ କରି ରହିଛି । ମୋରି ପ୍ଲେନ୍‌ରେ ସେମାନେ ଏଇ ଏଆର ପୋର୍ଟରେ ଧରାପଡ଼ିଯାଇ ଥାଆନ୍ତେ । ଅଥଚ ତୁ କହୁଛୁ....

ସୋନାଲି ଦେଖିଲା ମାଳବିକା ମୁହଁରେ କିପରି ଏକ ଆତଙ୍କର ଚିହ୍ନ ଫୁଟିଉଠିଛି । ସେ ବିଶ୍ରାମ ଗୃହର ଦରଜା ଖୋଲି ମାଳବିକାକୁ ସଂଗରେ ନେଇ ଘରେ ପଶିଲା । ଜୟନ୍ତ ଘର ଭିତରେ ଗୋଟିଏ ସୋଫା ଉପରେ ନିର୍ବିକାରରେ ବସି ରହି ବିଦେଶୀ ପତ୍ରିକା ଖଣ୍ଡେ ଓଲଟ ପାଲଟ କରୁଥିଲା ।

ସୋନାଲି ଓ ମାଳବିକା ଦୁହେଁ ଯାଇ ଜୟନ୍ତର ଦୁଇ ପାଖରେ ବସିଲେ । ଜୟନ୍ତ ଥରେ ସୋନାଲି ମୁହଁକୁ ଓ ଥରେ ମାଳବିକା ମୁହଁକୁ ଚାହିଁ କହିଲା : ଜାଣ ମାଳବିକା, ତମର ବାନ୍ଧବୀଙ୍କୁ ଦେଖିଲା ବେଳୁ ମୋର କ'ଣ ମନେ ହେଉଛି ? ସେ ଯେପରି ତାଙ୍କ ଈପ୍‌ସିତ ବସ୍ତୁ ଖୋଜି ପାଇଛନ୍ତି ।

: ମାନେ ? ମାଳବିକାର ସ୍ୱର ଚଞ୍ଚଳ ହୋଇ ଉଠିଥିଲା

: ମାନେର ଉତ୍ତର ମୋ ଅପେକ୍ଷା ତମ ବାନ୍ଧବୀ ଭଲ ଦେଇ ପାରିବେ ।

: ଆପଣ କ'ଣ ସୋନାକୁ ଆଗରୁ ଚିହ୍ନି ଥିଲେ ?

: ନା, ଆଗରୁ ନୁହେଁ । ଆଜି ଚିହ୍ନିଲି ଯେ, ତେବେ ତମ ବାନ୍ଧବୀ ଯେଉଁ ଶୁଭ ସଂବାଦ ତୁମକୁ ଦେବାପାଇଁ ବ୍ୟସ୍ତ ହୋଇ ଉଠିଥିଲେ, ସେ ସମ୍ବାଦଟା ମୋତେ ଜଣାଅଛି ।

: ସତେ ! ଆପଣ ତ ତା' ହେଲେ ଜଣେ ଜ୍ୟୋତିଷବିଶାରଦ । ଆପଣ ଖାଲି ମୋର ମନକଥା ବୁଝି ପାରନ୍ତି ନା ସମସ୍ତଙ୍କର ?

: ଶୁଣନ୍ତୁ ସୋନାଲି ଦେବୀ । ଜୟନ୍ତର ସ୍ୱର ଗମ୍ଭୀର ହୋଇ ଉଠିଥିଲା । ଆପଣ ନିଶ୍ଚୟ ବର୍ତ୍ତମାନ ପ୍ଲେନ୍‌ରେ ଇଣ୍ଡିଆରୁ ଫେରିଲେ ।

: ହଁ,

: ନିଶ୍ଚୟ କଲିକତାରୁ ।

: ଏଇ ତ ଆପଣ ବେଶ୍ ଭବିଷ୍ୟତ କଥା କହି ପାରୁଛନ୍ତି । କୁହନ୍ତୁ କୁହନ୍ତୁ, ତା'ପରେ କ'ଣ ହେଲା ?

: ଆପଣ ନିଶ୍ଚୟ ସେଠାକାର ଖବର କାଗଜରୁ ଜୟନ୍ତ ମହାପାତ୍ରର ଫଟୋ ଆଉ ପଳାୟନର ବୃତ୍ତାନ୍ତ ପଢ଼ିଛନ୍ତି ।

: ଆରେ ଆପଣ ଯେ ଟୁ ଦି ପଏଣ୍ଟ କରେକ୍ଟ ।

: ଏବଂ ଆପଣ ଆହୁରି ମଧ୍ୟ ପଢ଼ିଛନ୍ତି ଜୟନ୍ତ ମହାପାତ୍ରକୁ ଧରାଇ ଦେଇପାରିଲେ ପାଞ୍ଚ ହଜାର ଟଙ୍କା ପୁରସ୍କାର ପାଇବେ ।

: ନିଶ୍ଚୟ ପଢ଼ିଛି । ଏହି ଲୋଭନୀୟ ପଏଣ୍ଟଟି କେହି ଛାଡ଼ିପାରେ ?

ଜୟନ୍ତ ମୁହର୍ତ୍ତେ ସ୍ଥିର ହୋଇ ବସି ରହିଲା ।

ମାଳବିକା କହିଲା : ମୁଁ ଆପଣଙ୍କ କଥାବାର୍ତ୍ତାରୁ ବିନ୍ଦୁ ବିସର୍ଗ କିଛି ବୁଝିପାରୁନାହିଁ ।

ଜୟନ୍ତ ତାଚ୍ଛଲ୍ୟର ହସ ହସି କହିଲା : ତମ ବାନ୍ଧବୀ ଯେ ପାଞ୍ଚ ହଜାର ଟଙ୍କା ଜିତିଛନ୍ତି, ସେଇ ସମ୍ବାଦ ସେ ତୁମକୁ ନିଭୃତରେ ଦେବାକୁ ଚାହୁଁଥିଲେ; କାରଣ ସେ ମୋତେ ତୁମ ସହିତ ଦେଖି ସଙ୍ଗେ ସଙ୍ଗେ ଚିହ୍ନିପାରିଥିଲେ ।

ସୋନାଲ ଜୟନ୍ତର ଭବିଷ୍ୟତ ବାଣୀ ଶୁଣି ହୋ ହୋ ହୋଇ ହସିଉଠିଲା । ମାଳବିକା ଆଡ଼େ ଚାହିଁ କହିଲା: ଦେଖୁଛି ତୋ'ର ବନ୍ଧୁଟି ଏକ ଚତୁର ଗର୍ଦ୍ଦଭ । ଏହାଙ୍କୁ ଯଦି ତୋ ଜୀବନର ପରମ ବନ୍ଧୁ କରିବାକୁ ମନ ସ୍ଥିର କରିଥାଉ, ତେବେ ତୋ ଜୀବନରେ ଅଶେଷ ଦୁର୍ଭୋଗ ଅଛି ।

ମାଳବିକା କହିଲା : ମିଷ୍ଟର ମହାପାତ୍ର । ଆପଣ ଜାଣନ୍ତି ନାହିଁ, ମୋର ଏଇ ମୁହୂର୍ତ୍ତରେ ସୋନାଲି ସହିତ ଦେଖା ହୋଇ ନଥିଲେ, ଆପଣ ଏଇ ଏଆର ପୋର୍ଟରେ ଆରେଷ୍ଟ ହୋଇ ଥାଆନ୍ତେ?

: ମାନେ ?

: ମାନେ ହେଉଛି କ୍ରାଇମ୍ ବ୍ରାଞ୍ଚର ଦୁଇଜଣ ଅଫିସର ସୋନାଲି ସହିତ ଏଇ ପ୍ଲେନ୍‌ରେ ବର୍ତ୍ତମାନ ଆସି ଏଇଠି ଓହ୍ଲେଇଛନ୍ତି ଏବଂ ସେମାନେ ଜାଣିପାରିଛନ୍ତି ଜୟନ୍ତ ମହାପାତ୍ରଙ୍କ ଅନ୍ତର୍ଦ୍ଧାନର କାହାଣୀ ।

: ତମେ କ'ଣ କହୁଛ ମାଳବିକା! ମୁଁ ଯେ ରୁଦ୍ରପ୍ରସାଦଙ୍କ ଅତିଥି । ତେଣୁ.....

ସୋନାଲି ହସି ହସି କହିଲା : ଆପଣ ଜାଣିଲେ ଆହୁରି ଆଶ୍ଚର୍ଯ୍ୟ ହେବେ,

ରୁଦ୍ରପ୍ରସାଦ ମଧ୍ୟ ଏଇ ପ୍ଲେନ୍‌ରେ ଆସିଛନ୍ତି ଏବଂ କ୍ରାଇମ୍ ବ୍ରାଞ୍ଚର ସେହି ଅଫିସରମାନଙ୍କୁ ରୁଦ୍ରପ୍ରସାଦ ଆପ୍ରାଣ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଛନ୍ତି ।

ମୁହୂର୍ତ୍ତକ ପାଇଁ ସମସ୍ତେ ନୀରବ ହୋଇଗଲେ ।

ମାଳବିକା ଭାବୁଥିଲା ରୁଦ୍ର ପ୍ରସାଦ ଯଦି ଇଚ୍ଛା କରନ୍ତି ତେବେ ଜୟନ୍ତ ମହାପାତ୍ରଙ୍କୁ କେହି ବଞ୍ଚାଇପାରିବେ ନାହିଁ ।

ସୋନାଲି ଭାବୁଥିଲା ଏ ବିପଦରୁ ଉଦ୍ଧାର କରିବାକୁ ହେଲେ କି ଉପାୟ ଅବଲମ୍ବନ କରାଯାଇପାରେ ।

ଜୟନ୍ତ ମହାପାତ୍ର ଭାବୁଥିଲା, ପରିସ୍ଥିତିଟା ତ ମୋତେ ଅନୁକୂଳ ମନେ ହେଉନାହିଁ । ରୁଦ୍ରପ୍ରସାଦ ତା'ର ରକ୍ଷକ । ରକ୍ଷକ କ'ଣ କେବେ ଭକ୍ଷକ ହୋଇ ପାରେ ? ସୋନାଲୀ ମୁହଁକୁ ସେ ସନ୍ଦିଗ୍ଧ ନେତ୍ରରେ ଚାହିଁଥିଲା ।

ମାଳବିକା କହିଲା : ତା'ହେଲେ ସୋନା, ମିଷ୍ଟର ମହାପାତ୍ରଙ୍କୁ କ'ଣ ଏ ବିପଦରୁ ବଞ୍ଚାଇ ହେବ ନାହିଁ ?

: କିନ୍ତୁ ତୋ'ର ବନ୍ଧୁ ଯେ ମୋ କଥା ବିଶ୍ୱାସ କରି ପାରୁନାହାନ୍ତି ! ତାଙ୍କ ଆଖିରେ ଆଖି ମିଳେଇ ଦେଖିଲୁ !

ଜୟନ୍ତ କହିଲା : ଆପଣଙ୍କୁ ମୁଁ ଅବିଶ୍ୱାସ କରୁ ନାହିଁ ସୋନାଲ ଦେବୀ । ମୁଁ ଖାଲି ଭାବୁଛି ରକ୍ଷକ କିପରି ଭକ୍ଷକ ହେବ ? ନା, ନା ଆପଣଙ୍କର ସବୁ କଥା ମୁଁ ବିଶ୍ୱାସ କରୁଛି । କେବଳ ବିଶ୍ୱାସ କରିପାରୁନାହିଁ ରୁଦ୍ରପ୍ରସାଦଙ୍କ କଥା । ସେ ନିଶ୍ଚୟ କ୍ରାଇମ୍ ବ୍ରାଞ୍ଚର ଲୋକମାନଙ୍କ ଆଗରେ ମୋ କଥା କହି ନଥିବେ । ମୋତେ ସେ ନିଜେ ସଙ୍ଗରେ ଆଣି ଏଠାରେ ଆଶ୍ରୟ ଦେଇଛନ୍ତି । ତେଣୁ....

: ରୁଦ୍ରପ୍ରସାଦ ହୁଏତ ଆପଣଙ୍କ ସହିତ ବିଶ୍ୱାସଘାତକତା କରିବେ ନାହିଁ, କିନ୍ତୁ ମୋ ମତରେ ଆପଣ ଆଉ ରୁଦ୍ର ପ୍ରସାଦଙ୍କ ଖାପ୍‌ଚ ଭିତରକୁ ଫେରି ନ ଯିବା ଭଲ- ସୋନାଲୀ କହିଲା ।

: ମିଷ୍ଟର ମହାପାତ୍ର ଯଦି ଗେଷ୍ଟହାଉସକୁ ନ ଫେରନ୍ତି, ମୋ ଅବସ୍ଥା କ'ଣ ହେବ? ସମସ୍ତେ ଦେଖିଛନ୍ତି ମିଷ୍ଟର ମହାପାତ୍ର ମୋ ସହିତ ଗେଷ୍ଟହାଉସରୁ ବାହାରିଲେ । ତା'ପରେ ଆମେ କୁଆଡ଼େ ଗଲୁ, କ'ଣ କଲୁ ଡ୍ରାଇଭର ତା'ର ମୂକସାକ୍ଷୀ । ଏହା ପରେ ଯଦି ମିଷ୍ଟର ମହାପାତ୍ର ନ ଫେରନ୍ତି, ତେବେ ମୁଁ ଆତ୍ମରକ୍ଷା କରି ପାରିବି ନାହିଁ ।

ଜୟନ୍ତ ମନେ ମନେ ଟିକିଏ ଚିନ୍ତିତ ହୋଇ ପଡ଼ିଥିଲେ ବି ସାହସ ହରାଇ ନଥିଲା । କହିଲା: ମୋ ପାଇଁ କେହି ଦୋଷୀ ସାବ୍ୟସ୍ତ ହେଉ ସେ କଥା ମୁଁ ଚାହେଁ ନାହିଁ, ତା' ଛଡ଼ା ମୁଁ ବା ଲୁଚି ଲୁଚି ପଳାଇବି କାହିଁକି ?

: ଆପଣଙ୍କର ଲୁଚି ଲୁଚି ପଳାଇବା ଛଡ଼ା ଅନ୍ୟ ଉପାୟ ନାହିଁ ମିଷ୍ଟର ମହାପାତ୍ର । ତା' ନ ହେଲେ ଆପଣ କ୍ରାଇମ୍‌ବ୍ରାଞ୍ଚର ଲୋକମାନଙ୍କ ହାତରେ ଧରା ହୋଇ ଇଣ୍ଡିଆକୁ ଫେରିଯିବେ ଏବଂ ଅନୁରାଧାର ହତ୍ୟାକାରୀ ରୂପେ କଠିନ ଶାସ୍ତି ଭୋଗ କରିବେ-। ସୋନାଲି କହିଲା ।

ଜୟନ୍ତ ମହାପାତ୍ର ନୀରବରେ କିଛି ସମୟ ଚିନ୍ତା କରି କହିଲା, : ମୋର ଯାହା ହେବାର ହେଉ ମୁଁ ପଳାଇ ଯାଇ ମାଳବିକାଙ୍କୁ ବିପଦରେ ପକାଇ ପାରିବି ନାହିଁ। ସେ ବିଚାରୀ ମୋ ପାଇଁ ଦଣ୍ଡିତ ହେବ କାହିଁକି ?

: କିନ୍ତୁ ଆପଣ ବର୍ତ୍ତମାନ ଅନ୍ୟ କେଉଁଠି ଆତ୍ମଗୋପନ କଲେ ନିସ୍ତାର ପାଇବେ ନାହିଁ। ମୋ' ଶାସ୍ତି ଆଉ ଆପଣଙ୍କ ଶାସ୍ତି ଭିତରେ ତଫାତ୍‌ଟା ଅନେକ। ଯେପରି ହେଉ ମୁଁ ନିଜକୁ ସମ୍ଭାଳି ନେଇ ପାରିବି। କିନ୍ତୁ ଆପଣ ଜାଣୁ ଜାଣୁ ହାଣ ମୁହଁକୁ ଯିବେ କିପରି ?

ମାଳବିକା କହିଲା।

: ଆଉ ମଧ୍ୟ ବେଶି ଡେରି କରିବା ଉଚିତ ନୁହେଁ। କାରଣ ଆମେ ଯେଉଁଠି ଅଛନ୍ତି, ସେ ସ୍ଥାନଟା ଆତ୍ମଗୋପନ ପାଇଁ ଆଦୌ ନିରାପଦ ନୁହେଁ। ସୋନାଲି କହିଲା।

: ହଁ ଉପାୟ, ଉପାୟ ଗୋଟାଏ କିଛି ଖୋଜି ବାହାର କରିବାକୁ ହେବ। ସୋନାଲି ତା' ହାତ ଘଡ଼ିକୁ ଚାହିଁଲା। ଟିକିଏ ଚିନ୍ତାକରି କହିଲା, ବର୍ତ୍ତମାନ ସାମୟିକ ଆତ୍ମରକ୍ଷା ପାଇଁ ଉପାୟ ଗୋଟାଏ ଅଛି । ଆଉ ପନ୍ଦର ମିନିଟ୍ ପରେ ଏଠାରୁ ଗୋଟାଏ ପ୍ଲେନ୍ ଛାଡ଼ିବ, ଯିବ ପୋଖରା ଭାଲିକୁ। ଏଠୁ ଦୁଇଶହ କିଲୋମିଟର। ସେଠି ଗୋଟିଏ ସୁନ୍ଦର ଲେକ୍ ଅଛି। ପାହାଡ଼, ପର୍ବତ, ବଣଜଙ୍ଗଲଘେରା ଭାଲିର ସୌନ୍ଦର୍ଯ୍ୟ ଅତୁଳନୀୟ। ଏହି ଭାଲିରୁ ହିମାଳୟର ଅନ୍ନପୂର୍ଣ୍ଣା ରେଞ୍ଜର ଦୃଶ୍ୟ ଅଭୂତପୂର୍ବ। ସେସବୁ କଥା ବାଦ୍ ଦେଲେ ବି ପର୍ବତର ବିଭିନ୍ନ ସ୍ଥାନରେ କଟେଜ ଅଛି। ଲେକ୍‌ରେ ବୋର୍ଟିଂ କରିବାର ସୁବ୍ୟବସ୍ଥା ଅଛି। ବିଦେଶୀ ପର୍ଯ୍ୟଟକମାନେ ପୋଖରା ଭାଲିକୁ ବେଶି ପସନ୍ଦ କରନ୍ତି। ବିଶେଷ କରି ସେମାନେ ଗୋଟିଏ ଗୋଟିଏ କଟେଜ ଭଡ଼ା ନେଇ ତପସ୍ୱୀମାନଙ୍କ ଭଳି ନିର୍ଜନ-ବିଶ୍ରାମ କରନ୍ତି । ଆପଣଙ୍କ ପାଇଁ ଏହି ଭାଲି ହେବ ଆଦର୍ଶ ସ୍ଥାନ। ଯେତେଦିନ ଇଚ୍ଛା ଲୁଚି ରହିପାରିବେ। ସେଠାରୁ ଖୋଜି ବାହାର କରିବା ଆପଣଙ୍କୁ ସହଜରେ ସମ୍ଭବ ହେବ ନାହିଁ। ଆଉ ଡେରି କରନ୍ତୁ ନାହିଁ। ମୁଁ ଟିକେଟର ବ୍ୟବସ୍ଥା କରି ଦେଉଛି। ଆପଣ ଚାଲିଯାଆନ୍ତୁ।

କିନ୍ତୁ.........

ଯଦିଓ ପ୍ରସ୍ତାବଟା ଜୟନ୍ତ ପାଇଁ ଲୋଭନୀୟ; ତଥାପି କିନ୍ତୁର ଅବକାଶ ଯଥେଷ୍ଟ। ଏକ ଅଜଣା ଅଶୁଣା ସ୍ଥାନରେ ଯାଇ ନିଜ ଦାୟିତ୍ୱରେ ଆତ୍ମଗୋପନ କରି ରହିବ। ତା' ପକ୍ଷରେ କେତେଦୂର ସମୀଚୀନ ହେବ, ସେଇ କଥା ଚିନ୍ତା କରୁଥିଲା। ତା'ଛଡ଼ା ଆର୍ଥିକ ସଂଗତି, ଏବଂ ଆହୁରି ମଧ୍ୟ.......

ମାଇକ୍‌ର ଆନାଉନ୍‌ସମେଣ୍ଟ ଜୟନ୍ତର ଚିନ୍ତାଧାରାରେ ବାଧା ସୃଷ୍ଟିକଲା। ପୋଖରା ଭାଲିଗାମୀ ପ୍ଲେନ୍‌ର ଯାତ୍ରୀମାନଙ୍କୁ ପ୍ଲେନ୍ ପାଖକୁ ଆଗେଇ ଯିବା ପାଇଁ ଅନୁରୋଧ କରାହେଉଥିଲା।

ସୋନାଲି ତା' ହାତ ବ୍ୟାଗରୁ ଖଣ୍ଡିଏ କାଗଜ ବାହାର କରି ତରତର ହୋଇ କ'ଣ ଦୁଇଧାଡ଼ି ଲେଖି ପକାଇ କହିଲା : ଆପଣମାନେ ଏଇଠି ଥାଆନ୍ତୁ, ମୁଁ ବାହାରର ପରିସ୍ଥିତି ଦେଖି ଆସେ ଏବଂ ଆପଣଙ୍କ ପାଇଁ ଗୋଟାଏ ଟିକେଟର ବନ୍ଦୋବସ୍ତ କରି ଆସେ। ସୋନାଲି ଏକ ପ୍ରକାର ଛୁଟି ବାହାରି ପଳାଇଲା।

ଜୟନ୍ତ ମାଳବିକା ମୁହଁକୁ କିପରି ଅସହାୟ ଦୃଷ୍ଟିରେ ଚାହିଁ ରହିଥିଲା।

ମାଳବିକା କହିଲା : ସୋନାଲିର ପ୍ରସ୍ତାବଟା ଆପଣଙ୍କ ପାଇଁ ଖୁବ୍ ନିରାପଦ। ଆପଣ ମୋତେ ବିଶ୍ୱାସ କରନ୍ତୁ। ମୁଁ ଆପଣଙ୍କୁ ବିପଦରେ ପକାଇବି ନାହିଁ। ପରବର୍ତ୍ତୀ ସମସ୍ତ ସଂବାଦ ଯୋଗାଇ ଦେବି। ଦରକାର ହେଲେ ମଝିରେ ମଝିରେ ପୋଖରା ଯାଇ ଆପଣଙ୍କ ସହିତ ମିଶି ଆସିବି। ପୋଖରା କଥାଟା ମୋ ମନକୁ ଆସି ନଥିଲା। ସତରେ ଆପଣ ସେଠି ନିର୍ଭୟରେ ଦିନ କଟାଇ ପାରିବେ।

ଜୟନ୍ତ କ'ଣ କହିବାକୁ ଯାଉଥିଲା; କିନ୍ତୁ ସୋନାଲି ସେଠାରେ ଝଡ଼ ବେଗରେ ପ୍ରବେଶ କରି, ଜୟନ୍ତର ହାତ ଧରି ଟାଣି ଟାଣି ବାହାରକୁ ନେଉ ନେଉ କହିଲା : ସେମାନେ ସମସ୍ତେ ଏଆରପୋର୍ଟରୁ ଚାଲିଗଲେଣି। ହେଇ, ଏଇ କାଗଜ ଖଣ୍ଡିକ ଧରନ୍ତୁ। ଆପଣ ପୋଖରାରେ ପହଞ୍ଚି 'ଫିସ୍‌ଟେଲ ଲଜ୍' ନାମକ ଏକ ହୋଟେଲକୁ ଯିବେ। ସେଇ ହୋଟେଲର ରିସେପ୍‌ସନିଷ୍ଟ ମୋନାଲିସା ମୋର ବନ୍ଧୁ। ତାକୁ ଏଇ ଚିଠିଟା ଦେବେ। ସେ ଆପଣଙ୍କର ସବୁ ବନ୍ଦୋବସ୍ତ କରିଦେବ। ମୁଁ କାଲି ଯାଇ ଆପଣଙ୍କ ସଙ୍ଗରେ ଦେଖା କରିବି।

ସୋନାଲି ଜୟନ୍ତ ହାତରେ ଖଣ୍ଡିଏ ଟିକେଟ୍ ଏବଂ ସେଇ ଚିଠିଟା ଧରାଇ ଦେଇ ଏକ ପ୍ରକାର ସିକ୍ୟୁରିଟି ଚେକିଂ ଭିତରକୁ ଠେଲି ପଠାଇ ଦେଲା। ତା'ର ନିଜ ସମ୍ବନ୍ଧରେ ବା ପରିସ୍ଥିତି ସମ୍ବନ୍ଧରେ କିଛି ଚିନ୍ତା କରିବାର ଅବସର ନ ଥିଲା। ସଙ୍ଗେ ସଙ୍ଗେ ସେ ଯାଇ ପ୍ଲେନ୍‌ରେ ବସିଲା। କେଇ ମିନିଟ୍ ପରେ ପ୍ଲେନ୍ ଉଡ଼ିଚାଲିଲା ଆକାଶ ମାର୍ଗରେ।

ଜୟନ୍ତ ସେତେବେଳଯାଏ ପ୍ରକୃତିସ୍ଥ ହୋଇ ନଥିଲା। ତା'ର ମନେହେଉଥିଲା ମୁଣ୍ଡଟା ବାତ୍ୟାଚକ୍ର ପରି ଘୂରୁଛି, ଆଉ ସେ ସେଇ ଘୂର୍ଣ୍ଣନ ଭିତରେ ଦିଶାହରା ହୋଇ ପଡୁଛି। ଅସମ୍ଭାଳ ଅବସ୍ଥା। ହୁଏତ ପଡ଼ିଯିବ; କିନ୍ତୁ ପ୍ଲେନ୍‌ରେ ନରମ ଗଦିରେ ଆଉଜି ବସି ଆଖି ବୁଜି ଶୋଇ ପଡ଼ିବାକୁ ଚେଷ୍ଟା କଲା। ନିଦ ତ ଆସିଲା ନାହିଁ, ଧୀରେ ଧୀରେ ତା'ର ମନେପଡ଼ିଲା ମାଳବିକା ଆଉ ସୋନାଲିଙ୍କୁ। ସେମାନେ ଯେ ତା'ପାଇଁ ଏତେ କରିଗଲେ, ପୁଣି ଭବିଷ୍ୟତରେ ଆହୁରି କରିବାର ପ୍ରତିଶ୍ରୁତି ବି ଦେଇଗଲେ, କାହିଁକି ?

ଏଆର ହୋଷ୍ଟେସ୍‌ର କଣ୍ଠସ୍ୱରରେ ଜୟନ୍ତ ଆଖି ଖୋଲିଲା। ଏଆର ହୋଷ୍ଟେସ୍ ଗୋଟିଏ ଟ୍ରେ'ରେ ଲଜେନ୍‌ସ ଇତ୍ୟାଦି ଧରି ଠିଆହୋଇଛି। ଜୟନ୍ତ ତା'.ମୁହଁକୁ ଚାହିଁଲା। ସେଠାରେ ସ୍ମିତହାସ୍ୟ ଲାଗି ରହିଥିଲା। ଜୟନ୍ତ ହାତ ବଢ଼ାଇ ଦୁଇଟି ଲଜେନ୍‌ସ ନେଲା। ବାଁ ପାଖରେ ବସିଥିବା ସହଯାତ୍ରୀ ଜଣକଆଡ଼କୁ ଚାହିଁଲା। ଭଦ୍ରଲୋକ ଏତେବଡ଼ ଗୋଟାଏ କଳା ଗ୍ଲାସ ପିନ୍ଧିଥିଲେ ଯେ ତାଙ୍କ ମୁହଁର ଅଭିବ୍ୟକ୍ତି କିଛି ବୁଝି ହେଉ ନଥିଲା।

ପ୍ଲେନ୍‌ରେ ଅନ୍ୟାନ୍ୟ ଯାତ୍ରୀ ନୀରବରେ ବସି ରହିଥିଲେ। ଏକପ୍ରକାର ନୀରବତା ଭିତରେ ପ୍ଲେନ୍ ଆଗେଇ ଚାଲିଥିଲା ମେଘ ପାହାଡ଼ ଭିତର ଦେଇ। ଜୟନ୍ତ ଏଥର ଟିକିଏ ପ୍ରକୃତିସ୍ଥ ହୋଇଥିଲା। ହଠାତ୍ ତା' ଜୀବନରେ ଏପରି ଏକ ବିପର୍ଯ୍ୟୟ ଦେଖାଦେଲା କାହିଁକି ? ଜୟନ୍ତ ସେଇ କଥା ମନେପକେଇବାକୁ ଚେଷ୍ଟା କରୁଥିଲା। ଅନୁରାଧା ଥିଲା ତା'ର ପ୍ରିୟ ବାନ୍ଧବୀ। ଅନୁରାଧା ତାକୁ ଭଲ ପାଇଥିଲା, ସେ ବି ଆପଣାର କରି ନେଇଥିଲା ଅନୁରାଧାକୁ; କିନ୍ତୁ ହଠାତ୍ ତା'ର ମୃତ୍ୟୁକୁ ଜୟନ୍ତ ଚିନ୍ତା କରି ପାରୁ ନଥିଲା। ଅନୁରାଧାକୁ ଯେ କେହି ହତ୍ୟା କରିଛି ଏହା ଠିକ୍, କିନ୍ତୁ ହତ୍ୟା ଅପରାଧରେ ଜୟନ୍ତ ଅପରାଧୀ ହେବ

କାହିଁକି ? ସେଇଦିନ ରାତିରେ ଅନୁରାଧା ଘରୁ ସେ ପଳାଇ ଆସିବା ପରଠାରୁ ଜୟନ୍ତ ଏକ ପ୍ରକାର ନିଜର ସତ୍ତା ହରାଇ ବସିଛି । ତା'ର ଅନ୍ତରଙ୍ଗ ବନ୍ଧୁ ମଳୟ ଚଉଧୁରୀ, ସେ ବି କ'ଣ ତା'ର ଏହି ଦୁଃସମୟରେ ଦୂରେଇ ରହିଛି ? ମଳୟ ଖାଲି ତା'ର ବନ୍ଧୁ ନୁହେଁ, ବିଜ୍‌ନେସ୍ ପାର୍ଟନର୍ ମଧ୍ୟ । ଦୁହିଁଙ୍କର ସ୍ୱାର୍ଥ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଅଥଚ ମଳୟ ତାକୁ ଏକ ଅପରିଚିତର ହସ୍ତରେ ସମର୍ପଣ କରି ନୀରବ ହୋଇ ଯାଇଛି । କିଛି ତ ଖବର ନେଇ ନାହିଁ ସେ ଜୟନ୍ତ ମହାପାତ୍ରର ? ଆଉ ରୁଦ୍ର ପ୍ରସାଦ ! ସତରେ ସେ କ'ଣ ଜୟନ୍ତକୁ ଧରାଇ ଦେବାକୁ ଚାହେଁ ପୋଲିସ୍ ହାତରେ ? ମାଳବିକା, ସୋନାଲି ଏମାନେ ବା ଜୟନ୍ତ ପ୍ରତି ଏତେ ଦରଦୀ ହୋଇ ଉଠିଲେ କାହିଁକି ?

ସହଯାତ୍ରୀ ଜଣକ ଜୟନ୍ତର ଭାବନାରେ ବାଧା ଦେଲେ : କ୍ଷମା କରିବେ ମହାଶୟ! ଆପଣ ପୂର୍ବରୁ ଆଉ କେବେ ପୋଖରା ଭାଲି ଦେଖିଛନ୍ତି ?

ଜୟନ୍ତ ମୁଣ୍ଡ ହଲାଇ ମନାକଲା ।

: ପୋଖରା ଭାଲି ସମ୍ବନ୍ଧରେ କିଛି ଶୁଣିଛନ୍ତି ? ସହଯାତ୍ରୀ ଜଣକର ପରବର୍ତ୍ତୀ ପ୍ରଶ୍ନ ।

ଏଥର ଜୟନ୍ତ ଚାହିଁଲା ବାଁ ପାଖରେ ବସିଥିବା ସହଯାତ୍ରୀଟି ଆଡ଼େ । ସେହି ବିରାଟ ଗ୍ଲାସଟା ଖୋଲି ପକାଇଥିଲେ ଭଦ୍ରଲୋକ । ଜୟନ୍ତ ହଠାତ୍ ଚାହିଁଦେଇ ଶିହରୀ ଉଠିଥିଲା । ଭଦ୍ରଲୋକଙ୍କ ମୁହଁରେ ବିରାଟ ଗୋଟାଏ କଟା ଦାଗ, ଠିକ୍ ଆଖିପତା ତଳୁ ନାକ ପର୍ଯ୍ୟନ୍ତ । ସେଇ ଦାଗଟାରେ ଆଖି ପଡ଼ିବା ମାତ୍ରକେ ମୁହଁଟା କିପରି ଭୟଙ୍କର ମନେହେଉଛି । ଭଦ୍ରଲୋକ ବୋଧହୁଏ ଜୟନ୍ତର ମନୋଭାବ ବୁଝି ପାରିଲେ । ସଂଗେ ସଂଗେ ସେ ଗ୍ଲାସଟା ଲଗାଇ ଦେଲେ ମୁହଁରେ । କହିଲେ : ଆପଣ ତା'ହେଲେ ପ୍ରଥମ ଆସୁଛନ୍ତି ପୋଖରା ଭାଲିକୁ ?

: ହଁ ।

: ରହିବେ କେଉଁଠି ?

ଜୟନ୍ତର ଯଦିଓ ଲୋକଟି ସହିତ କଥା କହିବାକୁ ବିଶେଷ ଆଗ୍ରହ ନଥିଲା, ତଥାପି ଭଦ୍ରତା ଖାତିରରେ ଉତ୍ତର ଦେବାକୁ ସେ ବାଧ୍ୟ ହେଉଥିଲା ।

: କିଛି ଠିକ୍ କରି ନାହିଁ । ସେଠାରେ ପହଞ୍ଚି କୌଣସି ଗୋଟାଏ ହୋଟେଲରେ ରହିଯିବି ।

: ହୁଁ, ଆପଣ ଏକା ନା ସଂଗରେ କେହି ଅଛନ୍ତି ?

ଜୟନ୍ତ ଏଥର ସନ୍ଦିଗ୍ଧ ନୟନରେ ଚାହିଁଲା ଭଦ୍ରଲୋକଙ୍କ ମୁହଁକୁ । କିଛି ଉତ୍ତର ଦେବା ପୂର୍ବରୁ ସେ ଶୁଣିଲା ଏଆର ହୋଷ୍ଟେସ୍‌ଙ୍କର ଆନାଉନ୍‌ସମେଣ୍ଟ । ଆପଣଙ୍କର ସେହି ଈପ୍‌ସିତ ପୋଖରା ଭାଲିରେ ଆପଣମାନେ ପହଞ୍ଚି ଯାଇଛନ୍ତି । ବେଲ୍‌ଟ ସବୁ ବାନ୍ଧି ନିଅନ୍ତୁ ।

ପ୍ଲେନ୍‌ରେ ବସିଥିବା ସମସ୍ତ ଯାତ୍ରୀ ଚଞ୍ଚଳ ହୋଇ ଉଠିଲେ, ପ୍ଲେନ୍ ଧୀରେ ଧୀରେ ମାଟିଛୁଇଁଲା ।

ମୋନାଲିସା ଚିଠିଟି ପଢ଼ିସାରି ଆଖିଟେକି ଚାହିଁଲା ।

: ହୁଁ, ଆପଣ ମିଷ୍ଟର ଜୟନ୍ତ ମହାପାତ୍ର ?

ମୋନାଲିସା କଣ୍ଠରେ ଜୟନ୍ତ ତା' ନାଁଟା ଉଚ୍ଚାରିତ ହେବାର ଶୁଣି କିପରି ଶିହରୀ ହୋଇ ଉଠିଲା । ଏତେବେଳଯାଏ ସେ ମୋନାଲିସାକୁ ଏକ ଦୃଷ୍ଟିରେ ଠିଆ ହୋଇ ଦେଖୁଥିଲା । ରୂପର ଗନ୍ତାଘରଟିଏ । ଆଖି ଥରେ ପଡ଼ିଲେ ଲାଖି ରହିଯାଏ । ପଲକ ବି ପଡ଼େ ନାହିଁ । କିନ୍ତୁ ରୂପଠାରୁ କଣ୍ଠ ସ୍ୱରଟା ଯେ ଆହୁରି ମଧୁର !

ମୋନାଲିସାର ପ୍ରଶ୍ନର ଉତ୍ତର ଦେଇ ନଥିଲା ଜୟନ୍ତ । ସେ ମୁଗ୍ଧ ନୟନରେ ଚାହିଁଥିଲା ତା'ଆଡ଼େ । ମୋନାଲିସା ଆଶ୍ଚର୍ଯ୍ୟ ହୋଇ ନଥିଲା । ସେ ଜାଣେ ଲୋକମାନେ ତା' ମୁହଁକୁ ନିର୍ଲଜଙ୍କ ପରି ଘଣ୍ଟା ପରେ ଘଣ୍ଟା ଅନାଇରୁହନ୍ତି । ଜୟନ୍ତ ପକ୍ଷରେ ବ୍ୟତିକ୍ରମ ଘଟନ୍ତା କିପରି ?

ମୋନାଲିସା ହସିଲା । କଲିଂବେଲ୍ ଟିପି ବୟକୁ ଡାକିଲା । ବୟ ହାତକୁ ଗୋଟିଏ ଚାବି ବଢ଼ାଇ ଦେଇ କହିଲା : ସାବ୍‌କୋ ୨୦୩ ନମ୍ବର ମେ ଲେଯାଓ ।

୨୦୩ ନମ୍ବର ଶୁଣି ଜୟନ୍ତ ପ୍ରକୃତିସ୍ଥ ହେଲା ।

: ସାବ୍ ସାମାନ୍ ? ବୟ ପଚାରିଲା ।

: କୁଛ ନେହିଁ ।

ଜୟନ୍ତ ସ୍ଥାନ ତ୍ୟାଗ କରିବା ପୂର୍ବରୁ କିପରି ଅସହାୟ ଆଖିରେ ମୋନାଲିସା ଆଡ଼େ ଚାହିଁଲା ।

ମୋନାଲିସା ହାତ ଘଡ଼ିକୁ ଚାହିଁ କହିଲା: ମୋର ଆଉ ଅଧଘଣ୍ଟା ପରେ ଡ୍ୟୁଟି ଓଭର ହେବ। ମୁଁ ଆପଣଙ୍କ ରୁମ୍‌କୁ ଯିବି । ଆପଣ ଯାଇ ଗାଧୁଆ ପାଧୁଆ କରି ଟିକିଏ ଫ୍ରେସ୍ ହୁଅନ୍ତୁ ।

ଜୟନ୍ତ ବୟ ପଛେ ପଛେ ଆଗେଇଗଲା ।

୨୦୩ ନମ୍ବର ରୁମ୍‌ଟା ଦୋତାଲାରେ । ବୟ ଚାବି ଲଗାଇ ଦୁଆର ଖୋଲିଦେଲା । ପ୍ରଶସ୍ତ ଦୁଇ ବେଡ୍‌ର ରୁମ୍ । ସୁନ୍ଦର ସାଜସଜ୍ଜା । ରେଡ଼ିଓଗ୍ରାମ୍, ଟେଲିଫୋନ୍ ସବୁର ବ୍ୟବସ୍ଥା ଅଛି । ଜୟନ୍ତ ଆଡ଼େ ଥରେ ଆଖିବୁଲେଇ ନେଇ ବୟ ମୁହଁକୁ ଚାହିଁଲା । ବୟ କହିଲା : ଆପଣ ଟିକିଏ ଅପେକ୍ଷା କରନ୍ତୁ, ଟାଓ୍ୱେଲ, ସାବୁନ୍ ସବୁ ଦେଇ ଯାଉଛି । ଚା'ନା କଫି କ'ଣ ଆଣିବି ?

ଜୟନ୍ତ ଧୀରେ ଧୀରେ ଆଗେଇ ଯାଇ ଝର୍କାର ପର୍ଦା ଆଡ଼େଇ ଦେଲା । କାଚ ଝର୍କାର ଭିତର ଦେଇ ସେ ଦେଖିଲା ସୁନ୍ଦର ଏକ ଦୃଶ୍ୟ । ଯଦିଓ ଆକାଶରୁ ଆଲୋକ ମଳିନ ହୋଇ ଆସୁଥିଲା; କିନ୍ତୁ ଦୂର ପାହାଡ଼ ଫାଙ୍କରୁ ଏକ ଲୋଭନୀୟ ତୁଷାର ପ୍ରାଚୀର ତା'ର ଦୃଷ୍ଟିଗୋଚର ହେଲା । ସେ ପଛକୁ ଚାହିଁଲା, ବୟ ଘରୁ ବାହାରି ଯାଇଥିଲା । ଜୟନ୍ତ କାଚ ଝରକା ଖୋଲିଦେଲା । ଝଲକାଏ ଶୀତଳ ପବନ ପଶି ଆସିଲା ଭିତରକୁ । ଦୂରର ସେହି ତୁଷାର-ଧବଳ ପ୍ରାଚୀର ଆଡ଼େ ଚାହିଁ ଜୟନ୍ତ ଚିନ୍ତା କରୁଥିଲା, ବୋଧହୁଏ ଏଇଟା ହିମାଳୟର ଅନ୍ନପୂର୍ଣ୍ଣା ରେଞ୍ଜ୍ । ଯେଉଁଟା ପୋଖରା ଭାଲିରେ ସବୁଠାରୁ ଦର୍ଶନୀୟ ବସ୍ତୁ ।

ବାହାରେ ପ୍ରକୃତିର ଶୋଭା ଦେଖି ଜୟନ୍ତ ମୁଗ୍‌ଧ ହୋଇଯାଇଥିଲା । ସେ ଭୁଲି ଯାଇଥିଲା ତା' ପଳାତକ ଜୀବନର କଥା । ଏତେ ସୌନ୍ଦର୍ଯ୍ୟ ଏକା ସଂଗରେ ସେ କେବେ ଉପଲବ୍‌ଧି କରି ପାରି ନ ଥିଲା ।

ପଛଆଡୁ ବୟ ଆସି ଡାକିଲା : ସାବ୍, ଟାଓ୍ୱେଲ, ସାବୁନ୍ ସବ୍ ଦେଗୟା । ଆପ୍ ନାହାଲିଜିୟେ । ମୋନାଲିସା ମେମ୍‌ସାହେବ ବୋଲେ ହେଁ ଜଲ୍‌ଦି ଜଲ୍‌ଦି ରେଡ଼ି ହୋନେକେଲିୟେ ।

ଜୟନ୍ତ ଅନିଚ୍ଛାସତ୍ତ୍ୱେ ଝର୍କାର ଦରଜା ବନ୍ଦ କରି ଆଗେଇ ଆସିଲା । ମନେ ହେଲା, ପେଟରେ ଯେପରି କ୍ଷୁଧାର ଜ୍ୱାଳା ଆରମ୍ଭ ହୋଇଛି । ଧୀରେ ଧୀରେ ସେ ବାଥ୍‌ରୁମ୍‌ର ଦରଜା ଖୋଲି ଭିତରକୁ ପଶିଲା । ବୟ ସାବାନ୍ ଓ ଟାଓ୍ୱେଲ ବଢ଼ାଇ ଦେଲା ଜୟନ୍ତ ହାତକୁ ।

ବାଥ୍‌ରୁମ୍ ଭିତରେ ପ୍ରବେଶ କରି ପ୍ରଥମେ ତା'ର ଆଖି ପଡ଼ିଲା ଗୋଟାଏ ବିରାଟ ବାଥ୍‌ଟବ୍ । ମୁହୂର୍ତ୍ତକ ପାଇଁ ଶିହରୀ ଉଠିଲା ଜୟନ୍ତ । ତା'ର ମନେପଡ଼ିଗଲା ଅନୁରାଧା ଘରର ସେହି ଖୁଣୀ ବାଥ୍‌ଟବ୍‌ଟା କଥା । ଯାହା ପାଇଁ ତା'ର ଆଜି ଏତେ ଦୁର୍ଦ୍ଦଶା । ଧୀରେ ଧୀରେ ଜୟନ୍ତ ଆଗେଇଗଲା ଭିତରକୁ । ବାଥ୍‌ରୁମ୍‌ର ଲାଇଟ୍ ଜଳାଇଲା । ଲୁଗାପଟା ବଦଳାଇ ସାଓ୍ୱାର ତଳେ ଠିଆହେଲା, ତା'ର ମନେହେଲା ପେଟରେ ଅଶେଷ କ୍ଷୁଧା । ଏତେବେଳଯାଏ ସେ କ'ଣ କରୁଥିଲା, କେଉଁଠୁ, କେଉଁଠାକୁ ଆସିଲା ସେସବୁ କଥା ଭାବିବାର ଆଉ ଆଗ୍ରହ ନ ଥିଲା । ସେ ପୋଖରା ଏରୋଡ୍ରମ୍‌ରେ ଓହ୍ଲେଇବା ପରଠାରୁ ତା'ର ମନେହୋଇଥିଲା ସେ ଏକ ଆଡ୍‌ଭେନ୍‌ଚରିଷ୍ଟ; ନୁହେଁ ତ ଆଉ କ'ଣ ! ତା'ର ଜୀବନଯାତ୍ରା ଯେପରି ଗତିରେ ଛୁଟିଚାଲିଛି, ମନେହେଉଛି ରକେଟର ଗତି ହାର ମାନିଯିବ ।

ଆଖିବୁଜି ଜୟନ୍ତ ସାଓ୍ୱାର ତଳେ ବହୁତ ବେଳଯାଏ ଠିଆ ହୋଇ ରହିଲା । ନିରୋଳାରେ ନିଶ୍ଚିନ୍ତରେ ରହିବାର ଏକମାତ୍ର ସ୍ଥାନ ଏଇ ବାଥ୍‌ରୁମ୍ । ନା, ଦେହ ଆଉ ଥଣ୍ଡା ସହିପାରୁନାହିଁ ।

ଜୟନ୍ତ ସାଓ୍ୱାର ବନ୍ଦକଲା । ଟାଓ୍ୱାଲରେ ଦେହ ମୁହଁ ପୋଛିଲା । ଅଇନା ସାମ୍‌ନାରେ ଯାଇ ଯେତେବେଳେ ଠିଅ ହେଲା, ନିଜ ଚେହେରା ଦେଖି ଚମକି ଉଠିଲା । ଏଇ କେତେଦିନ ଭିତରେ ସେ ଯଥେଷ୍ଟ ଶୁଖିଯାଇଛି । କେହି ତା'ର ପରିଚିତ ଲୋକ ଦେଖିଲେ ହଠାତ୍ ଚିହ୍ନିପାରିବ ନାହିଁ ହୁଏତ !

ଧୀରେ ଧୀରେ ଜୟନ୍ତ ଲୁଗାପଟା ବଦଳେଇ ବାହାରକୁ ବାହାରିଲା । ଦେଖିଲା ବୟଟି ଖାଦ୍ୟ ସାମଗ୍ରୀ ଟେବୁଲ୍ ଉପରେ ଥୋଇ ତା'ରି ପାଇଁ ପ୍ରତୀକ୍ଷା କରି ଠିଆ ହୋଇଛି । ଏଥର ଜୟନ୍ତର କ୍ଷୁଧା ଆହୁରି ବଢ଼ିଗଲା । ସେ ସିଧା ଯାଇ ଖାଇବା ଟେବୁଲ୍ ଉପରେ ବସିପଡ଼ିଲା ।

ଖାଦ୍ୟ ସେତେ ସୁସ୍ୱାଦୁ ନ ହେଲେ ବି ଜୟନ୍ତର ଭୋକିଲା ପେଟକୁ ତାହା ଅକ୍ଳେଶରେ ଚାଲିଗଲା । ବୟ ପ୍ଲେଟ୍, ଚାମଚ ଗୋଟେଇ ନେଇ ଘରୁ ବାହାରି ଚାଲିଯିବା ବେଳକୁ ମୋନାଲିସା ପ୍ରବେଶ କଲା ।

ଜୟନ୍ତ ବ୍ୟସ୍ତ ହୋଇ ଠିଆ ମୋନାଲିସା ସାମ୍ନାରେ ବସିଲା । ଆଖିରୁ ଗ୍ଲାସ୍‌ଟା ଖୋଲି ଟେବୁଲ୍ ଉପରେ ରଖି କହିଲା : ଆମ ହୋଟେଲ୍‌ରେ ଆପଣଙ୍କର କିଛି ଅସୁବିଧା ହେଉଛି ?

: ନା ନା, ଅସୁବିଧା ଆଉ କ'ଣ ! ମୁଁ ଭଲ ଅଛି । ଆପଣ ମୋ ପାଇଁ ମୋଟେ ବ୍ୟସ୍ତ ହେବେ ନାହିଁ ।

: କିନ୍ତୁ ମିଷ୍ଟର ମହାପାତ୍ର । ଆପଣ ଏଠାରେ ଆସି ପହଞ୍ଚିବା ପୂର୍ବରୁ ସୋନାଲି ଫୋନ୍ କରିଥିଲା । ଆପଣଙ୍କ ସମ୍ବନ୍ଧରେ ସଂକ୍ଷେପରେ ସେ ମୋତେ ଗୋଟାଏ ଧାରଣା ଦେଇଛି । ଆପଣ ଖୁବ୍ ବିପଦରେ ପଡ଼ିଛନ୍ତି । ଏହା ନିଶ୍ଚିତ କଥା; କିନ୍ତୁ ଆମ ହୋଟେଲରେ ତ ଆପଣଙ୍କୁ ବେଶୀଦିନ ରଖି ହେବନାହିଁ ।

ଜୟନ୍ତ ମୋନାଲିସା ମୁହଁକୁ ଚାହିଁ ତା'ର ସୌନ୍ଦର୍ଯ୍ୟରେ ବିଭୋର ହୋଇ ଦେଖୁଥିଲା । ଅନୁରାଧା, ମାଳବିକା, ସୋନାଲି ସମସ୍ତେ ମୋନାଲିସା ରୂପ ପାଖରେ ମଳିନ ହୋଇଯିବେ । ଏତେଦିନ ପରେ ସେ ଏକ ଅତୁଳନୀୟ ସୁନ୍ଦରୀର ସନ୍ଧାନ ପାଇଛି ।

: ମିଷ୍ଟର ମହାପାତ୍ର ! ମୋନାଲିସାର ସ୍ୱର ଟିକିଏ କଠିନ ଶୁଣାଗଲା । ଜୟନ୍ତ ଚମକି ଉଠି ସଚେତନ ହେଲା ।

: ମୁଁ କ'ଣ କହିଲି ମୋ କଥା ଆପଣଙ୍କ କାନରେ ପଶିଲା ନା ନାହିଁ ? ମୋନାଲିସା ସ୍ୱରରେ ବିରକ୍ତି ଫୁଟିଉଠିଥିଲା ।

ଜୟନ୍ତ ଟିକିଏ ହସିବାକୁ ଚେଷ୍ଟାକରି କହିଲା : ମୋତେ ଆପଣ କିଛି କୁହନ୍ତୁ ନାହିଁ ମିସ୍ ମୋନାଲିସା । କେବଳ ଆପଣ ମୋ ସାମ୍ନାରେ ବସି ରୁହନ୍ତୁ, ଘଣ୍ଟା ଘଣ୍ଟା, ଦିନ ଦିନ, ମାସ ମାସ....

ମୋନାଲିସା ଏଥର ନ ହସି ରହିପାରିଲା ନାହିଁ । ଜୋର୍‌ରେ ହସି ଉଠି କହିଲା, ଆପଣ କ'ଣ ପୋଖରାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ କବି ପାଲଟିଗଲେ ନା କବିତ୍ୱ ଆପଣଙ୍କର ଜନ୍ମଗତ ଅଧିକାର ? ମୁଁ ତ ଶୁଣିଥିଲି ଆପଣ ଜଣେ ଇଞ୍ଜିନିୟର ।

ଜୟନ୍ତ ବୁଝିପାରିଲା ମୋନାଲିସା ତାକୁ ବିଦ୍ରୂପ କରୁଛି । ସେ ନିଜର ବୋକାମୀରେ ଲଜ୍ଜିତ ହୋଇ କହିଲା : ମୋତେ କ୍ଷମା କରିବେ ମିସ୍ ମୋନାଲିସା । ମୁଁ ଟକିଏ ଅନ୍ୟମନସ୍କ ହୋଇପଡ଼ିଥିଲି ।

: ଆଚ୍ଛା ଆପଣଙ୍କୁ କ୍ଷମା କରିଦେଲି । ଏଥର କୁହନ୍ତୁ ଆପଣଙ୍କ ପାଇଁ ମୁଁ କ'ଣ କରିବି । ମୋନାଲିସା ହାଲ୍‌କା ସ୍ୱରରେ କହିଲା ।

: ମୋ ପାଇଁ ମୋ ପାଇଁ ଆପଣ ଆଉ କ'ଣ କରିବେ ! ମୋ ଭାଗ୍ୟ ମୋତେ ଅନ୍ଧକାରଆଡ଼କୁ ଟାଣି ଟାଣି ନେଉଛି । ଅନୁରାଧା, ମାଳବିକା ପରେ ଭାଗ୍ୟ ମୋତେ ଆଣି ପହଞ୍ଚାଇଛି ଆପଣଙ୍କ ପାଖରେ । ତେଣୁ ମୋର ଇଚ୍ଛା ତ ଇଚ୍ଛା ନୁହେଁ; ଆପଣଙ୍କ ଇଚ୍ଛା ଉପରେ ମୋତେ ନିର୍ଭର କରିବାକୁ ହେବ ।

: ବାଃ ବାଃ, ଦ୍ୟାଟ୍‌ସ ଲାଇକ୍ ଏ ଗୁଡ୍ ବୟ । ଆପଣ ତା'ହେଲେ ମୋ ହାତଧରି ଆଗେଇ ଯିବାକୁ ପ୍ରସ୍ତୁତ ହୋଇ ରହିଛନ୍ତି ?

: ଅନ୍ୟ ଉପାୟ ନାହିଁ ଯେ ମିସ୍ ମୋନାଲିସା !

: ବେଶ୍ ତାହା ହିଁ ହେବ; କିନ୍ତୁ ମୋତେ ଟିକିଏ ସମୟ ଦିଅନ୍ତୁ । ଏଇମାତ୍ର ମୁଁ ଡିଉଟିରୁ ଫେରିଲି । ଟିକିଏ ଫ୍ରେସ୍ ହୋଇ ଆସେ । ତା'ପରେ ଆମେ ଆଗେଇଯିବା, ଆଗକୁ, ଆଗକୁ ଏବଂ ଆହୁରି ଆଗକୁ ।

ମୋନାଲିସା ଉଠି ଠିଆହେଲା ।

ଜୟନ୍ତ ବି ଉଠିପଡ଼ିଲା ।

ମୋନାଲିସା ଆଗେଇ ଯାଉ ଯାଉ କହିଲା: ଘଣ୍ଟାକ ଭିତରେ ମୁଁ ଫେରି ଆସୁଛି । ମାଳବିକା ଆପଣଙ୍କୁ ଫୋନ୍ କରିପାରେ । ରିସେପ୍‌ସନରେ ମୁଁ କହି ଆସିଛି ସିଧା ସେ ଆପଣଙ୍କ ଘରକୁ ଲାଇନ୍ ଦେଇଦେବ ।

ମୋନାଲିସା ଚାଲିଗଲା । ତା' ଚାଲିରେ ବି ଏକ ନୂତନ ଛନ୍ଦର ଗନ୍ଧ ପାଉଥିଲା ଜୟନ୍ତ । ଦରଜା ଖୋଲାକରି ଧରି ତା'ରି ଛନ୍ଦାୟିତ ପଦପାତ ଆଡ଼େ ମୁଗ୍‌ଧ ନେତ୍ରରେ ଚାହିଁଥିଲା ସେ ।

: ହ୍ୟାଲୋ ମିଷ୍ଟର....

କାହାର ଏକ କର୍କଶ କଣ୍ଠସ୍ୱରରେ ଜୟନ୍ତର ଧ୍ୟାନଭଙ୍ଗ ହେଲା । ସେ ଚାହିଁଦେଖିଲା ତା' ସାମ୍‌ନାରେ ଠିଆହୋଇଛନ୍ତି ଜଣେ ବଳିଷ୍ଠ ପୁରୁଷ । ବିରାଟ ଗ୍ଲାସଢଙ୍କା ମୁହଁକୁ ଚାହିଁ ଜୟନ୍ତର ମନେପଡ଼ିଲା ଲୋକଟିକୁ ସେ ଚିହ୍ନେ । ପ୍ଲେନ୍‌ରେ ଲୋକଟି ଜୟନ୍ତର ସହଯାତ୍ରୀ ଥିଲା ।

ଜୟନ୍ତ କିଛି ସମୟ ଲୋକଟି ମୁହଁକୁ ଚାହିଁ କରମର୍ଦ୍ଦନ କରିବାକୁ ହାତ ବଢ଼େଇ କହିଲା : ଆପଣ ମିଷ୍ଟର.....

: ତରଫ୍‌ଦାର । ଆମେ ଏକା ପ୍ଲେନ୍‌ରେ ଆସିଥିଲେ, ଆପଣ ତା'ହେଲେ ଏଇ ହୋଟେଲରେ ଉଠିଛନ୍ତି ? ମୁଁ ବି । ଭଲ ହେଲା । ବଂଧୁତ୍ୱ ସୁଦୃଢ଼ ହେବା ତରଫଦାର ଜୟନ୍ତର କରମର୍ଦ୍ଦନ କରି କହିଲେ ।

ଜୟନ୍ତ ବୋଧହୁଏ କିଛି ଉତ୍ତର ଖୋଜି ପାଉ ନଥିଲା । ହଠାତ୍ ସେ କହି ଉଠିଲା : ମୋ ନାଁ ଜୟନ୍ତ ମହାପାତ୍ର, ଆପଣଙ୍କ ସହିତ ପରିଚିତ ହୋଇ ସୁଖୀ ହେଲି । ଆପଣ କେତେ ନମ୍ବରରେ ଅଛନ୍ତି ?

୨୦୭ରେ । ଆପଣ ଆସନ୍ତୁ ମୋ ରୁମ୍‌କୁ । ବସି ବସି ଗଳ୍ପ କରିବା ।

ଜୟନ୍ତ ହଠାତ୍ ସ୍ଥିର କରି ପାରିଲା ନାହିଁ । ମୋନାଲିସା ଆସିବ ଘଣ୍ଟାକ ପରେ । ମିଷ୍ଟର ତରଫଦାରଙ୍କ ରୁମ୍‌କୁ ଯାଇ କିଛି ସମୟ ଗଳ୍ପ କରି ଆସିଲେ ମନ୍ଦ କ'ଣ !

ଜୟନ୍ତର ଦ୍ୱିଧା ଜଡ଼ିତ ପାଦ ଦୁଇଟା ଆଗକୁ ବଢୁ ନଥିଲା । ତରଫଦାର କିନ୍ତୁ ଜୟନ୍ତର ହାତଧରି ଏକ ପ୍ରକାର ଜୋର୍ କରି ଟାଣି ଟାଣି ନେଇଗଲେ । ଆରେ, ୟଙ୍ଗ୍ ମ୍ୟାନ ! ବାହାରକୁ ଆସିଛ ଫୂର୍ତ୍ତି କରିବା ପାଇଁ । ଏପରି ଜଡ଼ ପୁରୁଷ ପରି ଠିଆ ହୋଇ ରହିଲେ ଜୀବନକୁ ଉପଭୋଗ କରିହେବ ? ତରଫଦାର ଜୟନ୍ତକୁ ଟାଣି ଟାଣି ନେଇଗଲେ ତାଙ୍କ ରୁମ୍‌କୁ । ଦରଜା ଦୁଆରେ ଠିଆ ହୋଇ ନକ୍ କଲେ । ତା'ହେଲେ ଭିତରେ ଆହୁରି କେହି ଜଣେ ରହିଛି ।

ଜୟନ୍ତର ଭାବନା ଶେଷ ହେବା ଆଗରୁ ଧୀରେ ଧୀରେ ଦରଜା ଖୋଲିଗଲା ଏବଂ ଜୟନ୍ତ ସାମ୍ନାରେ ଭାସିଉଠିଲା ଘୁମନ୍ତ ଏକ ନାରୀ ମୂର୍ତ୍ତି । ଯେପରି ଏକ ପାଷାଣ ପ୍ରତିମା ଠିଆ ହୋଇ ଅଳସ ଭାଙ୍ଗୁଛି । ଆଖିରେ ଆଖିଏ ନିଦ । କେଶ ବସନ ଅସମ୍ଭାଳ । ଚାରି ଆଖି ମିଶି ଯାଇଥିଲା ମୁହୂର୍ତ୍ତକ ପାଇଁ ।

ତରଫଦାର ଜୋର୍‌ରେ ହସିଉଠି କହିଲେ : ମୋର ପ୍ରିୟ ରୋଜି । ରୋଜି ଆଡ଼େ ଚାହିଁ କହିଲେ, ମୋର ନୂତନ ବନ୍ଧୁ ଜୟନ୍ତ ମହାପାତ୍ର ।

ରୋଜି ହାତଯୋଡ଼ି ନମସ୍କାର କଲା ।

ସତେ ଯେପରି ଅଳସୀ-କନ୍ୟାର ଘୁମ ଭାଙ୍ଗିଲା । ପାଷାଣ ମୂର୍ତ୍ତି ଜୀବନ୍ୟାସ ପାଇଲା !!

କିନ୍ତୁ ରୋଜି ନାମ ଶୁଣିବା ପରଠାରୁ ଜୟନ୍ତ ସର୍ବାଙ୍ଗରେ କିପରି ଏକ ତଡ଼ିତ୍ ପ୍ରବାହ ଖେଳି ଯାଇଥିଲା । ରୋଜି ! ରୋଜି ! ଯେ ତା'ର ଅତି ପରିଚିତ ନାମ । ଏ କ'ଣ ସେଇ ରୋଜି, ଯେ ତାକୁ ଟେଲିଫୋନ୍‌ରେ ଅନେକ ଥର ଡାକିଚି, ଅନେକ କଥା କହିଛି ଏବଂ ଜୟନ୍ତ ଚଲାପଥରେ ହଠାତ୍ କେଉଁ ରୋଜିର ଦେଖାପାଇଯିବ, ସେହିପରି ପ୍ରତୀକ୍ଷା କରି ରହିଛି ।

କେବଳ ଦୁହେଁ ପରସ୍ପରକୁ ଚାହିଁଥିଲେ ।

କାହାରି ମୁହଁରେ ଭାଷା ନଥିଲା ।

ତରଫଦାର ହସି ଉଠିଲେ । କହିଲେ : ମନେହେଉଛି, ଦୁହେଁ ଦୁହିଁଙ୍କର ଅନେକ ଦିନର ପରିଚିତ । ରୋଜି, ତମେ ଚିହ୍ନ ମିଷ୍ଟର ମହାପାତ୍ରଙ୍କୁ ?

ରୋଜି ମୁହଁରୁ କୌଣସି ଉତ୍ତର ବାହାରିଲା ନାହିଁ । ଆଖି ଟେକି ସେ ଥରେ ଚାହିଁଲା ତରଫଦାରଙ୍କ ଆଡ଼େ । ତା'ପରେ ଧୀରେ ଧୀରେ ଚାଲିଗଲା ଅନ୍ୟ ଘରକୁ ।

ତରଫଦାର ଜୟନ୍ତ ପିଠିରେ ହାତ ପକାଇ ହସି ହସି ଭିତରକୁ ଭିଡ଼ିନେଇଗଲେ । କହିଲେ, : ରୋଜି ମୋର ପ୍ରିୟ ବାନ୍ଧବୀ । ଆପଣଙ୍କୁ କେମିତି ଲାଗିଲା ?

: ଅପୂର୍ବ ସୁନ୍ଦରୀ । ଆପଣ ଭାଗ୍ୟବାନ୍ ମିଷ୍ଟର ତରଫଦାର । ରୋଜି ପରି ସୁନ୍ଦରୀ; ଝିଅ ମୁଁ ଜୀବନ କାଳ ଭିତରେ ଆଉ ଗୋଟିଏ ଦେଖି ନାହିଁ । କିନ୍ତୁ ରୋଜିକୁ ତ ମୁଁ ଆପଣଙ୍କ ସହିତ ପ୍ଲେନ୍‌ରେ ଦେଖି ନଥିଲି- ଜୟନ୍ତ ପଚାରିଲା ।

: ନା, ରୋଜି ମୋ ସଂଗରେ ନଥିଲା । ମୁଁ ଏକା ଆସିଲି କାଠମାଣ୍ଡୁକୁ । ଆମେ ଏଇ ହୋଟେଲରେ ଅନେକ ଦିନରୁ ଅଛୁ ।

ତରଫଦାର ଓ ଜୟନ୍ତ ଦୁଇଜଣ ସୋଫା ଉପରେ ବସିଲେ ।

ଜୟନ୍ତ ଘରର ଚାରିଆଡ଼େ ଥରେ ଆଖି ବୁଲେଇ ନେଲା । ମିଷ୍ଟର ତରଫଦାରଙ୍କ ସମ୍ବନ୍ଧରେ ତା' ମନରେ ଯେଉଁ ଏକ କୁତ୍ସିତ ଧାରଣା ଜନ୍ମିଥିଲା, ଧୀରେ ଧୀରେ ତାହା ଅପସରି ଯାଉଥିଲା । ତରଫଦା କଥାବାର୍ତ୍ତାରେ ଖୁବ୍ ଭଦ୍ର, ଆଚାର ଆଚରଣ ବେଶ୍ ରୁଚିସମ୍ପନ୍ନ; କିନ୍ତୁ ରୋଜି ! ସେ କ'ଣ ତା'ର ଇପ୍‌ସିତ ରୋଜି ପାଖରେ ଆସି ପହଞ୍ଚି ଯାଇଛି ?'

ଜୟନ୍ତ ଦେଖିଲା, ରୋଜି ଗୋଟିଏ ଟ୍ରେ'ରେ କଫି ପଟ୍ ଓ ଦୁଇସେଟ୍ କପ୍ ଡିସ୍ ଆଣି ରଖିଦେଲା । ଠିଆହୋଇ ତରଫଦାରଙ୍କ ମୁହଁକୁ ଚାହିଁଲା । ତରଫଦାର ଆଖିର ଇଂଗିତରେ କ'ଣ ତାକୁ କହିଲେ । ରୋଜି ଦୁଇଟି କପ୍‌ରେ ଦୁଧ ଢାଳି କଫି ପ୍ରସ୍ତୁତ କରିବାକୁ ଲାଗିଲା ।

ଜୟନ୍ତ ନିର୍ଲଜଙ୍କ ପରି ଚାହିଁଥିଲା ରୋଜି ଆଡ଼େ । ଦେଖୁଥିଲା ତା'ର କାର୍ଯ୍ୟ କଳାପ । ମନେ ମନେ ତୁଳନା କରୁଥିଲା ଅନୁରାଧା, ସୋନାଲି ଏବଂ ମୋନାଲିସା ସହିତ । କେହି ହୁଏତ ରୋଜି ସଂଗରେ ତୁଳନୀୟ ନୁହନ୍ତି । ରୋଜି, ରୋଜି; କିନ୍ତୁ ରୋଜି କିପରି ଚିହ୍ନିଲା ଜୟନ୍ତକୁ ! ସତରେ କ'ଣ ରୋଜି ଅନୁରାଧାର ବାନ୍ଧବୀ ! ଟେଲିଫୋନ୍‌ରେ ତ ସେଇ କଥା ତାକୁ କହିଥିଲା ରୋଜି । ହେଲେ ତରଫଦାର କିଏ ? ସେ କହୁଛନ୍ତି ରୋଜି ତାଙ୍କର ପ୍ରିୟବାନ୍ଧବୀ । ରୋଜି ଯେତେବେଳେ ଜୟନ୍ତ ସମ୍ବନ୍ଧରେ ସବୁକଥା ଜାଣେ, ସେ ନିଶ୍ଚୟ କହିଥିବ ତରଫଦାରଙ୍କୁ । ଜୟନ୍ତ ଗୋଟାଏ ଖୁଣୀ, ପଳାତକ, ସବୁ ଜାଣି ବି ତରଫଦାର ତାକୁ ନିଜ ଘରକୁ ଡାକିଛନ୍ତି ?

କେଜାଣି କ'ଣ ଚିନ୍ତାକରି ତରଫଦାର ସେଇ ମୁହୂର୍ତ୍ତରେ ସେଠାରୁ ଉଠି ଅନ୍ୟ ଘରଆଡ଼େ ଚାଲିଗଲେ ।

ରୋଜି କଫି କପ୍‌ରେ ଚାମଚ ଗୋଳାଉଥିଲା ।

ତରଫଦାର ଉଠିଯିବା ମାତ୍ରକେ ସେ ଜୟନ୍ତର ଚାହାଣି ସହିତ ଚାହାଣି ମିଳେଇ ସ୍ମିତ ହସିଲା ।

ଜୟନ୍ତ ଚଞ୍ଚଳ ହୋଇଉଠିଲା ।

ସେ ଭାବିଲା ଏତିକିବେଳେ ଗୋଟିଏ ଦୁଇଟି ପ୍ରଶ୍ନ ପଚାରି ରୋଜିକୁ ଚିହ୍ନିବାକୁ ଚାହେଁ । ହେଲେ କ'ଣ ପଚାରିବ ? କମ୍ପିତ କଣ୍ଠରେ ଡାକିଲା : ରୋଜି !

ରୋଜି ଖାଲି ହସିଲା । କିଛି ଉତ୍ତର ଦେଲା ନାହିଁ ।

ଜୟନ୍ତ ପୁଣି ପଚାରିଲା : ତମେ ମୋତେ ଚିହ୍ନିଚ ରୋଜି ?

ରୋଜି ସେହିପରି ହସି ହସି ମୁଣ୍ଡ ହଲାଇଲା : ତମେ ତା'ହେଲେ......

ଜୟନ୍ତର କଥା ଶେଷ ହେଲା ନାହିଁ । ତରଫଦାର ପୁଣି ଆସି ତାଙ୍କ ଆସନ ଦଖଲ କରି ବସିଲେ । ରୋଜି ପ୍ରଥମେ ଜୟନ୍ତକୁ ଓ ପରେ ତରପଦାରଙ୍କ ହାତକୁ କଫି କପ୍ ଦୁଇଟି ବଢ଼ାଇ ଦେଇ ଧୀରେ ଧୀରେ ଉଠି ଚାଲିଗଲା ।

ତରଫଦାର କଫି କପ୍‌ରେ ମୁହଁଲଗାଇ ଟେବୁଲ୍ ଉପରେ ରଖିଲେ । ଛାତି ପକେଟ୍‌ରୁ ସିଗାରେଟ୍ କେସ୍‌ଟି ବାହାର କରି ଖୋଲି ଦେଖାଇଲେ ଜୟନ୍ତ ଆଡ଼େ । ଜୟନ୍ତ ଗୋଟିଏ ସିଗାରେଟ୍ ବାହାର କରି ନେଲା । ତରଫଦାର ଲାଇଟର ଜଳାଉ ଜଳାଉ କହିଲେ : ଆପଣ ପୋଖରାରେ କେତେଦିନ ରହିବେ ମିଷ୍ଟର ମହାପାତ୍ର ?

: ମୁଁ କିଛି ଠିକ୍ କରି ନାହିଁ । ତେବେ ଭଲଲାଗିଲେ ଦୁଇ ଚାରିଦିନ ବା ଏକ ସପ୍ତାହ ରହିପାରେ । ଆପଣ ? ଜୟନ୍ତ ପଚାରିଲା ।

ତରଫଦାର ହସିଲେ । କହିଲେ : ମୋର ତ ଏଇଠି ଘର ଦୁଆର ।

: ମାନେ ?

: ମାନେ ଆଉ କ'ଣ ? ଏଇ ଜାଗାଟା ମୋତେ ଖୁବ୍ ଭଲ ଲାଗିଛି । ସେଇଥି ପାଇଁ ଏଇଠି ଅଛି ଅନେକ ଦିନରୁ । ଆହୁରି ଅନେକ ଦିନ ରହିବାର ଆଶା ଅଛି । ଆପଣ ବି ରହିପାରନ୍ତି । କିଛି ଅସୁବିଧା ହେବନାହିଁ । ଟଙ୍କା-ପଇସା, ସୁଖ-ସୁବିଧା କିଛିର ଅଭାବ ରହିବ ନାହିଁ ।

: ତମେ ତା'ହେଲେ......

: କିପରି ?

: ଆପଣ ଆଗ ମନ ସ୍ଥିର କରନ୍ତୁ, ଧୀରେ ଧୀରେ ସବୁ ଜାଣି ପାରିବେ । ମୋତେ ଯେତେବେଳେ ବନ୍ଧୁ ହିସାବରେ ପାଇଛନ୍ତି, ମୁଁ ଆପଣଙ୍କୁ ସବୁ ଶିଖେଇଦେବି । ତରଫଦାର କହିଲେ ।

କିନ୍ତୁ.......ଜୟନ୍ତ କ'ଣ କହିବାକୁ ଯାଇ ଅଟକିଗଲା ।

: କୁହନ୍ତୁ ମିଷ୍ଟର ମହାପାତ୍ର, ଲାଜ, ସଙ୍କୋଚ ଏସବୁ ମୁଁ ପସନ୍ଦ କରେ ନାହିଁ । ଆପଣ ଯାହା ଜାଣିବାକୁ ଚାହାନ୍ତି, ଖୋଲାଖୋଲି ଭାବରେ ପଚାରନ୍ତୁ ।

ଜୟନ୍ତ ମୁହୂର୍ତ୍ତେ ତରଫଦାରଙ୍କ ମୁହଁକୁ ଚାହିଁଲା । ଧୀରେ ଧୀରେ କହିଲା ଆପଣଙ୍କର ଏଇ ପ୍ରିୟ ବାନ୍ଧବୀ, ମାନେ ରୋଜି, ଏ ଝିଅଟି କେଉଁଠାକାର ?

: କଲିକତାରେ ରୋଜି ସହିତ ମୋର ପରିଚୟ ହୋଇଥିଲା । ଧୀରେ ଧୀରେ ଆମେ ଘନିଷ୍ଠ ହେଲୁ । ମୁଁ ତାକୁ ମୋର ବିଜିନେସ୍ ପାର୍ଟନର କରି ନେଇଥିଲି । ବର୍ତ୍ତମାନ ସେ ମୋ ଜୀବନର ପାର୍ଟନର ହେବାକୁ ଯାଉଛି । ଆପଣ ରୋଜିକୁ ପୂର୍ବରୁ ଚିହ୍ନିଥିଲେ ବୋଧେ?

: ନା, ତେବେ ଚିହ୍ନା ଚିହ୍ନା ମନେହେଉଛି ।

ମାନେ ? ରୋଜିକୁ ଆପଣ ଚିହ୍ନି ନାହାନ୍ତି, ଅଥଚ...ମିଷ୍ଟର ତରଫଦାରଙ୍କ କଥା ଶେଷ ହେଲା ନାହିଁ । ହଠାତ୍ ଟେଲିଫୋନ୍‌ଟା ବାଜିଉଠିଲା । ତରଫଦାର କାନରେ ଦେଲେ, ହ୍ୟାଲେ, ହଁ ହଁ, ସେ ଏଇଠି ଅଛନ୍ତି । ମିଷ୍ଟର ମହାପାତ୍ର, ଆପଣଙ୍କ ଫୋନ୍ । ରିସିଭରଟା ସେ ଜୟନ୍ତ ହାତକୁ ବଢ଼ାଇଦେଲେ ।

ଜୟନ୍ତ ଚଞ୍ଚଳ ହୋଇଉଠିଲା । ତା'ର ଫୋନ୍, କିଏ ତାକୁ ଫୋନ୍ କରିଛି ? ହ୍ୟାଲୋ! କିଏ ? ମାଳବିକା !

ଅପରପ୍ରାନ୍ତରୁ ମାଳବିକାର କଣ୍ଠ ଶୁଣି ସେ କିପରି ଏକ ଅସହାୟ ଚାହାଣିରେ ତରଫଦାରଙ୍କ ମୁହଁକୁ ଚାହିଁଲା । ତରଫଦାର ବୋଧହୁଏ ଜୟନ୍ତର ଉଦ୍ଦେଶ୍ୟ ବୁଝିପାରିଲେ । ସେ ଉଠି ଚାଲି ଗଲେ ଅନ୍ୟ ଘରକୁ ।

ଜୟନ୍ତ ମାଳବିକାର କଥା ମନଦେଇ ଶୁଣୁଥିଲା । ମାଳବିକା କହୁଥିଲା : ଇଣ୍ଡିଆରୁ ଦୁଇଜଣ ଗୁଇନ୍ଦା ଅଫିସର ଆସିଥିବା କଥା ସତ୍ୟ । ଏବଂ ଆହୁରି ସତ୍ୟ ହେଉଛି ସେମାନେ ଆପଣଙ୍କ ସନ୍ଧାନରେ ଆସିଛନ୍ତି । ଅବଶ୍ୟ ରୁଦ୍ରପ୍ରସାଦଙ୍କର ସେଥିରେ କିଛି ଭୂମିକା ନାହିଁ । ସବୁକଥା ଫୋନ୍‌ରେ ହେବା ଉଚିତ୍ ନୁହେଁ । ମୁଁ ଦିନେ ଦୁଇଦିନ ଭିତରେ ପୋଖରା ଯାଉଛି, ଆପଣଙ୍କ ସହିତ ଦେଖା କରିବି ।

: କିନ୍ତୁ ମାଳା, ମୋତେ କିଛି ଭଲଲାଗୁ ନାହିଁ । କେତେଦିନ ଆଉ ମୁଁ ଅନ୍ଧକାରେ ଲୁଚିବୁଲୁଥିବି । ତମେ ବରଂ ଗୋଟାଏ କଥା କରିବ । ଆସିଲା ଦିନ ତମ ବାନ୍ଧବୀ ସୋନାଲିକୁ ସଙ୍ଗରେ ଆଣିବ ।

: ଆଚ୍ଛା, ସୋନାଲି ଏବେ ବୋଧହୁଏ ତମ ମନ ଦଖଲ କରି ବସିଛି ।

: ନା, ନା ମାଳା । ତମେ ମୋତେ ଭୁଲ ବୁଝ ନାହିଁ । ସୋନାଲି ସହିତ ମୋର ଖୁବ୍ ପ୍ରୟୋଜନ, ତମେ ତାକୁ ସଂଗରେ ଆଣିବ ।

ଆଉ ଆପଣଙ୍କ ଖବର କ'ଣ ? କେମିତି ଅଛନ୍ତି ? ମୋନାଲିସା ଆଦର ଆପ୍ୟାୟନ କଲା ତ ?

: ମୁଁ ଏଠି ନିରାପଦରେ ପହଞ୍ଚିଛି ଏବଂ ଭଲରେ ଅଛି । କିନ୍ତୁ ମାନସିକ ଦ୍ୱନ୍ଦ୍ୱ ଭିତରେ ମୁଁ ଅତିଷ୍ଠ ହୋଇ ଉଠିଲିଣି । ତମେ ଯେତେ ଶୀଘ୍ରପାରୁଛ ସୋନାଲିକୁ ସଙ୍ଗରେ ଧରି ଏଠାକୁ ଚାଲିଆସ ।

: ହେଉ, ମୁଁ ଚେଷ୍ଟା କରୁଛି । ଆପଣଙ୍କ ନିର୍ଦ୍ଦୋଷତାର କଥା ମୁଁ ସୋନାଲିକୁ ସବୁ କହିଛି । ସେ ମୋତେ ଆଶ୍ୱାସନା ଦେଇଛି, ଆପଣଙ୍କ ସମ୍ବନ୍ଧରେ ସେ....

ମାଳବିକାର କଥା ଅପର ପ୍ରାନ୍ତରୁ ଶେଷ ହେଲା ନାହିଁ । ଲାଇନ୍‌ଟା କଟିଗଲା । ଜୟନ୍ତ ଦୁଇ ଚାରିଥର ହ୍ୟାଲୋ ହ୍ୟାଲୋ କହି ରିସିଭରଟା ରଖି ଦେଉଥିଲା, କିନ୍ତୁ ଜଣେ ନାରୀ କଣ୍ଠର ସ୍ୱର ଶୁଣିଲା : ସରି ମିଷ୍ଟର ମହାପାତ୍ର, କାଠମାଣ୍ଡୁ ଲାଇନ୍‌ଟା ଅକସ୍ମାତ୍ କଟିଗଲା ।

ଜୟନ୍ତ ବୁଝିଲା, ହୋଟେଲର ରିସେପ୍‌ସନିଷ୍ଟ କହୁଛି । ସେ ରିସିଭରଟା ରଖିଦେଲା । ହାତ ଘଡ଼ିକୁ ଚାହିଁ ଦେଖିଲା, ଏହା ଭିତରେ ପ୍ରାୟ ପଇଁଚାଳିଶ ମିନିଟ୍ ଅତିବାହିତ ହୋଇ ଯାଇଛି । ଏଥର ଉଠିବାକୁ ହେବ । ମୋନାଲିସା ଘଣ୍ଟାକ ଭିତରେ ଫେରିବା କଥା । ହୁଏତ ସେ ଫେରି ଆସିଥିବ ।

କିନ୍ତୁ ରୋଜି ଯେ ଏଠି ରହିଗଲା ।

ବିଦେଶଭୂଇଁରେ ତା'ର ପ୍ରଥମ ସଂଗିନୀ । ସେଇ ତାକୁ ତା'ର ପ୍ରକୃତ ଅବସ୍ଥା ସମ୍ବନ୍ଧରେ ସଚେତନ କରାଇ ଦେଇଥିଲା । ସେ ପ୍ରତିଶ୍ରୁତି ଦେଇଥିଲା ଜୟନ୍ତକୁ ସାହାଯ୍ୟ କରିବ । ସାହାଯ୍ୟ ଅର୍ଥରେ ଜୟନ୍ତର ମୁକ୍ତି ପାଇଁ ରୋଜି ଚେଷ୍ଟା କରିବ ଏବଂ ଅନୁରାଧାର ହତ୍ୟାକାରୀକୁ ଧରାଇ ଦେବ । ଜୟନ୍ତ ରୋଜିଠାରୁ ଏତିକି ଅନ୍ତତଃ ଆଶା କରିଥିଲା ।

କିନ୍ତୁ ରୋଜିକୁ ଦେଖିବା ପରେ ଜୟନ୍ତର ଚିନ୍ତା ଭାବନା ସବୁ ଗଣ୍ଡଗୋଳ ହୋଇ ଯାଉଛି । ରୋଜି ଆଉ ଜଣକର ପ୍ରିୟ ବାନ୍ଧବୀ । ବିଜ୍‌ନେସ୍ ପାର୍ଟନର । ହୁଏତ ଜୀବନ ସଂଗିନୀ ହୋଇପାରେ ! ଏହା ପରେ ରୋଜି କ'ଣ ଜୟନ୍ତକୁ ସାହାଯ୍ୟ କରିବ ?

ଜୟନ୍ତ ଆଉଥରେ ହାତଘଡ଼ିକୁ ଚାହିଁ ଚଞ୍ଚଳ ହୋଇଉଠିଲା । ବର୍ତ୍ତମାନର ଆଶ୍ରୟଦାତ୍ରୀ ମୋନାଲିସା ସହିତ ତା'ର ଦେଖାହେବା ଏକାନ୍ତ ପ୍ରୟୋଜନ ।

ସେ ଉଠି ଠିଆହେଲା । ଘରର ଚାରିଆଡ଼କୁ ଚାହିଁଲା । ତରଫଦାର ବା ରୋଜି କେହି ତା'ର ଦୃଷ୍ଟିଗୋଚର ହେଲେ ନାହିଁ । ସେ କାହାରିକୁ କିଛି ନ ଜଣାଇ ଘର ଛାଡ଼ି ଚାଲିଯିବ କି ନାହିଁ ଚିନ୍ତା କରୁଥିଲା, କିନ୍ତୁ ଦେଖିଲା ମିଷ୍ଟର ତରଫଦାର ଦୁଇ ହାତରେ ଗୋଟାଏ

ଓଜନିଆ ଜିନିଷ ଧରି ଆଗେଇ ଆସୁଛନ୍ତି । ସେ ଆଣି ପଦାର୍ଥଟି ଫ୍ଲୋର ଉପରେ ଥୋଇଲେ । କଭର ଖୋଲିଲେ । ଭିତରେ ଗୋଟିଏ ମେସିନ୍ ।

ଜୟନ୍ତ ପଦାର୍ଥଟିକୁ ଦେଖି ନ ଦେଖିଲା ପରି ଚାହିଁ କହିଲା : ଆଜି ମୋତେ ଟିକେ ଛୁଟି ଦିଅନ୍ତୁ ମିଃ ତରଫଦାର, ମୋର ଜଣେ ବିଶିଷ୍ଟ ବଂଧୁ ଆସିବେ ଏଇ ମୁହୂର୍ତ୍ତରେ। ମୋତେ ରୁମ୍‌ରେ ନ ପାଇଲେ ଫେରିଯିବେ ହୁଏତ ।

କିନ୍ତୁ ମୁଁ ଯେ ଆପଣଙ୍କୁ ଏଇ ମେସିନ୍‌ଟା ଦେଖାଇବାକୁ ଆଣିଲି । ଆପଣ ଜଣେ ଇଞ୍ଜିନିଅର ଲୋକ । ଏ ମେସିନ୍‌ଟାର କାର୍ଯ୍ୟକାରିତା ଆପଣଙ୍କୁ ନିଶ୍ଚୟ ମୁଗ୍ଧ କରିବ । ମିଷ୍ଟର ତରଫଦାର ମେସିନ୍‌ର ଇଲେକ୍‌ଟ୍ରିକ୍ ପ୍ଲଗ୍‌ଟା ସୁଇଚ ବୋର୍ଡରେ ଗୁଞ୍ଜିଦେଲେ । ସଂଗେ ସଂଗେ ମେସିନ୍ ଭିତରେ ଲାଲ, ନୀଳ ଓ ହଳଦୀ ରଂଗର ବିଭିନ୍ନ ଆଲୋକ ଜଳି ଉଠିଲା ।

ଜୟନ୍ତର ଇଞ୍ଜିନିଅର ମନ ହଠାତ୍ ଆକୃଷ୍ଟ ହୋଇଉଠିଲା । ସେ ନିର୍ନିମେଷ ନୟନରେ ଅନାଇ ରହିଲା ସେଇ ମେସିନ୍‌ଟି ଆଡ଼େ । କି ମେସିନ୍ ଏଇଟା ? ଜୟନ୍ତ ପାଦେ ପାଦେ କରି ଆଗେଇଗଲା ପାଖକୁ । ଆକାରରେ ଛୋଟ । ଗୋଟିଏ ବଡ଼ ସାଇଜ୍‌ର ଭି: ଆଇ: ପି: ସୁଟ୍‌କେସ ଭଳି । କିନ୍ତୁ.....

ମିଷ୍ଟର ତରଫଦାର ଜୟନ୍ତ ମୁହଁକୁ ଚାହିଁ ସ୍ମିତ ହସିଲେ । କହିଲେ : ଏଇ ମେସିନ୍‌ଟି ଦେଖି ଆପଣଙ୍କ ମନରେ ନିଶ୍ଚୟ କୌତୂହଳ ସୃଷ୍ଟି ହୋଇଛି । ଏହା ଗୋଟିଏ "ମାଇଣ୍ଡ ରିଡ଼ିଂ" ମେସିନ । ଯେକୌଣସି ମଣିଷର ବର୍ତ୍ତମାନର ଚିନ୍ତାଧାରା ଏ ମେସିନ୍ ସଂଗେ ସଂଗେ କହିଦେବ । ଆପଣ ଆସନ୍ତୁ ବର୍ତ୍ତମାନ ମୁଁ ଆପଣଙ୍କ ମନର ଅବସ୍ଥା କଥା କହିଦେବି ।

ମିଷ୍ଟର ତରଫଦାର ଗୋଟିଏ ରବର ବେଲ୍‌ଟ୍ ନେଇ ଜୟନ୍ତ ମହାପାତ୍ରଙ୍କ ହାତରେ ବାନ୍ଧିଲେ । ସଂଗେ ସଂଗେ ମେସିନ୍ ଭିତରେ ଆକ୍‌ସନ ଆରମ୍ଭ ହୋଇଗଲା ।

ସରୁସରୁ କେତେଗୁଡ଼ିଏ ରେଖା ତରଙ୍ଗାୟିତ ହୋଇ ଭାସିଉଠିଲେ । ବୁଦ୍‌ବୁଦ୍ ପରି କେତେଗୁଡ଼ିଏ ବିନ୍ଦୁ ଧାଁ ଦଉଡ଼ ଆରମ୍ଭ କରି ଦେଲେ । ମିଷ୍ଟର ତରଫଦାର ନିବିଷ୍ଟ ଚିତ୍ତରେ ଚାହିଁଥିଲେ ସେମାନଙ୍କର ଗତିବିଧି ଆଡ଼େ । କିଛି ସମୟ ପରେ ମେସିନ୍‌ର ସୁଇଚ୍ ଅଫ୍‌କରି, ରବର ବେଲଟ୍‌ଟା ଜୟନ୍ତ ହାତରୁ ଖୋଲି କହିଲେ: ଆପଣଙ୍କ ମନରେ ଭୀଷଣ ଝଡ଼ ବହୁଛି । ଆପଣଙ୍କ ଚିନ୍ତାଧାର ସୁସ୍ଥ ନୁହେଁ, ଏପରି ଅବସ୍ଥାରେ ଏଇ ମେସିନ୍‌ର ମତାମତ ହେଉଛି ଆପଣ ଘରୁ କେଉଁ ଆଡ଼େ ନ ବାହାରି ଚୁପ୍‌ଚାପ୍ ଗୋଟିଏ ଜାଗାରେ ଶୋଇ ରୁହନ୍ତୁ ।

ଜୟନ୍ତ ମେସିନ୍‌କୁ ଦେଖିଲା । ମେସିନ୍‌ର କାର୍ଯ୍ୟକାରିତା ସମ୍ବନ୍ଧରେ ସମ୍ୟକ ଧାରଣା ହେଲା ଏବଂ ତରଫଦାରଙ୍କ ଭବିଷ୍ୟତ ବାଣୀ ମଧ୍ୟ । କିନ୍ତୁ ତା; କଥା ତ ମିଷ୍ଟର ତରଫଦାର ଜାଣନ୍ତି ନାହିଁ । ତା'ର ମେସିନ୍ ଉଦ୍ଭାବନ ହେଲେ ଦେଶର ଲକ୍ଷ ଲକ୍ଷ କାନ୍‌ସର ରୋଗୀ ଜୀବନ୍ୟାସ ପାଇବେ । ଯେଉଁ ରୋଗୀର ମୂଳସୂତ୍ର ଉଦ୍ଭାବନ ପାଇଁ ସମଗ୍ର ପୃଥିବୀରେ ପ୍ରତିଯୋଗିତା ଚାଲିଛି । ସେଇ ରୋଗର ନିଦାନ ନିର୍ଦ୍ଧାରଣ ହୋଇପାରିବ ଅତି ସହଜରେ ।

ସେତେବେଳେ ସମଗ୍ର ପୃଥିବୀରେ ଜୟନ୍ତ ହେବ ଅଦ୍ୱିତୀୟ ପ୍ରତିଭା । ତା' ଉଦ୍ଭାବନ ପାଖରେ ଏଇ କ୍ଷୁଦ୍ର 'ମାଇଣ୍ଡରିଡ଼ିଂ' ମେସିନ୍ ତ ଅତି ତୁଚ୍ଛ ।

ମିଷ୍ଟର ତରଫଦାର ଜୟନ୍ତର ଭାବନାରେ ବାଧାଦେଇ କହିଲେ : ଆଚ୍ଛା ମିଷ୍ଟର ମହାପାତ୍ର ! ଆପଣତ ଏହି ମେସିନ୍‌ର କାର୍ଯ୍ୟକାରିତା ଦେଖିଲେ । ଏଇ ମେସିନ୍ କେବଳ ମଣିଷର ବର୍ତ୍ତମାନ ଚିନ୍ତାଧାରା ସମ୍ବନ୍ଧରେ ମତପ୍ରକାଶ କରି ପାରୁଛି । ମୁଁ କିନ୍ତୁ ଚାହେଁ, ଏ ମେସିନ୍ ମଣିଷର ମନ କଥା କହୁ । ସେ ଅତୀତରେ କ'ଣ କରିଛି, ଭବିଷ୍ୟତରେ କ'ଣ କରିବାକୁ ତା'ର ଇଚ୍ଛା, ମଣିଷ ମନର ସମସ୍ତ ଗୋପନ କଥା ଏହି ମେସିନ୍‌ରେ ପ୍ରତିଫଳିତ ହେଉ । ଏହା କ'ଣ ସମ୍ଭବ ନୁହେଁ ?

: ସବୁ ସମ୍ଭବ ମିଷ୍ଟର ତରଫଦାର । ବିଜ୍ଞାନ ବର୍ତ୍ତମାନ ଯେପରି ଆଗେଇ ଚାଲିଛି, ଦିନେ ନା ଦିନେ ସବୁ ଅସମ୍ଭବ ସମ୍ଭବ ହେବ। ଆପଣ ଜଣେ ଭଲ ଡାକ୍ତର ଏବଂ ଜଣେ ଭଲ ବୈଜ୍ଞାନିକ ସହିତ ପରାମର୍ଶ କରନ୍ତୁ । ସେମାନେ ଆପଣଙ୍କ ସମସ୍ୟା ସମାଧାନ କରି ପାରିବେ । ଜୟନ୍ତ ଶାନ୍ତ ସ୍ୱରରେ କହିଲା ।

ମିଷ୍ଟର ତରଫଦାର ହସିଲେ । କହିଲେ : ଆପଣ ମୋ'ପାଖରେ ଆତ୍ମଗୋପନ କରି କିଛି ଲାଭ ହେବ ନାହିଁ ମିଷ୍ଟର ମହାପାତ୍ର । ମୁଁ ଠିକ୍ ଲୋକ ପାଖରେ ମୋର ପ୍ରସ୍ତାବ ରଖିଛି ।

: ମାନେ ? ଜୟନ୍ତ ବିଚଳିତ କଣ୍ଠରେ ପ୍ରଶ୍ନକଲା ।

: ମାନେ, ମୋତେ ଆହୁରି ବୁଝେଇବାକୁ ହେବ ? ଆପଣ ପ୍ରଥମେ ଡାକ୍ତର, ତା'ପରେ ଇଞ୍ଜିନିୟର- ମୁଁ ଆପଣଙ୍କ ସମ୍ବନ୍ଧରେ ସବୁ ତଥ୍ୟ ପାଇ ସାରିଛି ।

: ନା, ନା ମିଷ୍ଟର ମହାପାତ୍ର । ଆପଣ ମୋ ସମ୍ବନ୍ଧରେ କେଉଁଠୁ ଭୁଲ ତଥ୍ୟ ପାଇଛନ୍ତି । ମୁଁ ଆଦୌ ଡାକ୍ତର ନୁହେଁ, ଜଣେ ସାମାନ୍ୟ ଇଞ୍ଜିନିୟର ମାତ୍ର । ମୋତେ କ୍ଷମା କରନ୍ତୁ ମିଷ୍ଟର ତରଫଦାର, ମୋତେ ଛୁଟି ଦିଅନ୍ତୁ । ମୋ' ରୁମ୍‌ରେ ମୋର ବଂଧୁ, ମାନେ......

ଜୟନ୍ତର କଥା ଶେଷ ହେଲା ନାହିଁ । ଦରଜା ଖୋଲି ଭିତରେ ପ୍ରବେଶ କଲା ମୋନାଲିସା । କହିଲା : ଆପଣ ଏଇଠି ଆସି ଜମି ଯାଇଛନ୍ତି, ମୁଁ ଅନେକବେଳୁ ଅପେକ୍ଷା କରିଛି ।

ଜୟନ୍ତ ମୋନାଲିସାକୁ ଦେଖି ଯେପରି ଅଥଳ ସମୁଦ୍ରରେ ଥଳପାଇଲା । ମିଷ୍ଟରେ ତରଫଦାର ମୁହଁରେ ହସ ଫୁଟାଇ କହିଲେ, : ମାଫ୍‌କରିବେ ମିସ୍ ମୋନାଲିସା । ଆପଣଙ୍କ ବନ୍ଧୁଟି କିନ୍ତୁ ଖୁବ୍ ଅସୁସ୍ଥ । ଅବଶ୍ୟ ମନ ପ୍ରାଣରେ । ଟିକିଏ ସାବଧାନରେ ନେବା ଆଣିବା କରିବେ ।

ମୋନାଲିସା ହସିଲା । କହିଲା : ଆପଣ ନିଶ୍ଚିନ୍ତ ରୁହନ୍ତୁ ଡକ୍‌ଟର ତରଫଦାର । ଜୟନ୍ତ ମହାପାତ୍ରଙ୍କ ଦାୟିତ୍ୱ ମୁଁ ବହନ କରି ପାରିବି ।

: ଡକ୍‌ଟର ତରଫଦାର ? ଜୟନ୍ତ ସ୍ୱଗତୋକ୍ତି କରି ତରଫଦାରଙ୍କ ମୁହଁକୁ ଚାହିଁଲା ।

ମୋନାଲିସା କହିଲା : ହଁ ଡକ୍‌ଟର ତରଫଦାର । ତରଫଦାର ଜଣେ ଭଲ ଡାକ୍ତର । ପୋଖରାରେ ତାଙ୍କର ପ୍ରଚୁର ସୁଖ୍ୟାତି । ଏପରିକି କାଠମାଣ୍ଡୁ ପର୍ଯ୍ୟନ୍ତ ତାଙ୍କର ବିସ୍ତୃତି । ଆପଣଙ୍କୁ ସେ ପରିଚୟ ଦେଇ ନାହାନ୍ତି ?

ଜୟନ୍ତ ମହାପାତ୍ର କିପରି କଠିନ ଦୃଷ୍ଟିରେ ତରଫଦାରଙ୍କ ମୁହଁକୁ ଚାହିଁ ଘରୁ ବାହାରି ଯାଉଥିଲା ।

ପଛରୁ ଶୁଣିଲା : ଗୁଡ଼ବାଇ ମିଷ୍ଟର ମହାପାତ୍ର । ଆଶା କରୁଛି ପୁଣି ଦେଖାଦେବ ।

: ବାଏ ବାଏ କହି ଜୟନ୍ତ ଘରୁ ବାହାରିଗଲା । ଆଉ ପଛକୁ ଫେରିଚାହିଁଲା ନାହିଁ ।

ମୋନାଲିସା କହିଲା : ରାତି ଅନେକ ହେଲାଣି । ଆଜି ଆଉ କୁଆଡ଼େ ବାହାରକୁ ବାହାରିବା ନାହିଁ । ଆମ ହୋଟେଲରେ ବୁଲି ବୁଲି ଏନ୍‌ଜୟ କରିବା । ଏଠି ନାଚ ହୁଏ, ଜୁଆଖେଳ ହୁଏ । ସବୁ ଫ୍ରି । ଆପଣଙ୍କ ଇଣ୍ଡିଆ ଭଳି ରୁଦ୍ଧ କକ୍ଷରେ ପୋଲିସ୍ ଅଗୋଚରରେ କିଛି ହୁଏ ନାହିଁ । ଆପଣ ତ କାଠମାଣ୍ଡୁରେ ଥିଲେ । 'କାସିନୋକୁ' କେବେ ଯାଇଛନ୍ତି ?

: କାସିନୋ ?

: ଓଃ ଆପଣ କାସିନୋ ଯାଇ ନାହାନ୍ତି ? ନିଶାର୍ଦ୍ଧରେ ସେଠାରେ ନାନା ପ୍ରକାର ଜୁଆ ଖେଳ ହୁଏ । ଆମୋଦ ପ୍ରମୋଦ ପାଇଁ କାସିନୋ ବିଖ୍ୟାତ । ଆପଣ କାଠମାଣ୍ଡୁରେ ଯେଉଁ ହୋଟେଲରେ ରହୁଥିଲେ, ସେମାନଙ୍କୁ କହିଥିଲେ ସେମାନେ ଆପଣଙ୍କୁ କାସିନୋକୁ ପଠାଇବାର ବ୍ୟବସ୍ଥା କରିଥାଆନ୍ତେ । ଗାଡ଼ି ଆସି ଆପଣଙ୍କୁ ନେଇ ଯାଇଥାଆନ୍ତା; ପୁଣି ଆଣି ହୋଟେଲରେ ଛାଡ଼ି ଦେଇ ଯାଇଥାଆନ୍ତା । ସେ ଯା'ହେଉ, ଆମ ଏଇ 'ଫିସ୍ ଟେଲ ଲଜ୍'ରେ ଗୋଟିଏ ମିନି କାସିନୋ ଅଛି, ଆମେ ଆଜି ସେଇଠାକୁ ଯିବା ଏବଂ ଗୋଟାଏ ସ୍ପେଶାଲ ନାଚ ପ୍ରୋଗ୍ରାମ ଅଛି । ଏଇ ଦୁଇଟା ମିଶାଇ ସମୟ କଟିଯିବ । ଆଶା କରୁଛି ଆପଣ ଆପତ୍ତି କରିବେ ନାହିଁ ।

ଜୟନ୍ତ କିଛି କହିଲା ନାହିଁ । ସେ ତ କାଠମାଣ୍ଡୁରେ ଆସି ରୋଜିର ନଜରବନ୍ଦୀ ହୋଇ ରହିଯାଇଛି । ତେଣୁ ଆମୋଦ ପ୍ରମୋଦ କରିବାର ସୁଯୋଗ ପାଇଲା କେତେବେଳେ ?

ଜୟନ୍ତ କେବଳ ଗମ୍ଭୀର ହୋଇ ଚିନ୍ତା କରୁଥିଲା ।

ମୋନାଲିସା ଜୟନ୍ତର ଏପରି ଆଚରଣରେ ଅସ୍ୱସ୍ତି ଅନୁଭବ କରୁଥିଲା । ସେ ପରିସ୍ଥିତିକୁ ସହଜ କରିବା ପାଇଁ କହିଲା : ଆଚ୍ଛା ମିଷ୍ଟର ମହାପାତ୍ର ! ଆପଣ ଜୀବନରେ କେବେ ଜୁଆ ଖେଳିଛନ୍ତି ?

ଜୟନ୍ତ ମୋନାଲିସା ମୁହଁକୁ ଅନେକ ବେଳଯାଏ ଏକ ଦୃଷ୍ଟିରେ ଅନାଇରହି ଟିକିଏ ହସିଲା । ଶାନ୍ତ ସ୍ୱରରେ କହିଲା : ହଁ ଖେଳିଥିଲି; କିନ୍ତୁ ହାରିଯାଇଛି ।

ମୋନାଲିସା ଜୟନ୍ତ ପାଖକୁ ଲାଗି ଯାଇ, ତା' ହାତ ଦୁଇଟା ଧରି ହଲାଇ ଦେଇ କହିଲା: ଆସନ୍ତୁ, ମୁଁ ଆପଣଙ୍କୁ ଆଜି ଜିତେଇ ଦେଉଛି ।

ମୋନାଲିସା ଲକ୍ଷ୍ୟକଲା ଜୟନ୍ତର ମୁହଁ ପୁଣି ଗମ୍ଭୀର ହୋଇ ଉଠିଛି । ସେ ସୋଫା ଉପରୁ ଉଠିପଡ଼ି କହିଲା: ମୁଁ କିନ୍ତୁ କାହାରି ସାହାଯ୍ୟ ନ ନେଇ ନିଜେ ଜିତିବାକୁ ଚେଷ୍ଟା କରୁଥିଲି ।

: ଭଲକଥା । ଥରେ ହୁଏତ ହାରିଯାଇଛନ୍ତି । ଆହୁରି ଆହୁରି ଚେଷ୍ଟା କରନ୍ତୁ । ଦିନେ ନା ଦିନେ ନିଶ୍ଚୟ ଜିତିବେ ।

ଜୟନ୍ତ ଠିଆହୋଇପଡ଼ିଲା । ପୁଣି କଠିନ ଦୃଷ୍ଟିରେ ଚାହିଁଲା ମୋନାଲିସା ମୁହଁକୁ, ଅନେକ ବେଳଯାଏ । ମୋନାଲିସା ଲକ୍ଷ୍ୟକରୁଥିଲା ଜୟନ୍ତର ଆଖିରୁ ଦୁଇ ବିନ୍ଦୁ ଲୁହ ଝରିପଡ଼ିଲା । ସେ ମୋନାଲିସା ଆଡ଼କୁ ହାତ ବଢ଼ାଇ ଦେଇ କହିଲା ସତ କହୁଛ ମୋନାଲିସା, ମୁଁ ଚେଷ୍ଟାକଲେ ବାଜିମାତ୍ କରି ପାରିବି ?

ମୋନାଲିସା ଜୟନ୍ତ ହାତ ସହିତ ହାତ ମିଳେଇଲା । କହିଲା, : ନିଶ୍ଚୟ ଆପଣ ବାଜିମାତ୍ କରିବେ ମିଷ୍ଟର ମହାପାତ୍ର । ଆସନ୍ତୁ ଆଜି ଆମର ଏହି 'ମିନି କାସିନୋ'ରେ ଆପଣଙ୍କ ଭାଗ୍ୟ ପରୀକ୍ଷା କରିବା ।

ଜୟନ୍ତ ପକେଟ୍ ଅଣ୍ଡାଳି ଗୋଟିଏ ଶହେଟଙ୍କାର ନୋଟ୍ ଓ ଆଉ କିଛି ଖୁଚୁରା ପଇସା ବାହାର କଲା । କହିଲା : ମୂଳଧନ ମାତ୍ର ଏତିକି । ଏତକ ଚାଲିଗଲେ ?

ମୋନାଲିସା ତା' ହାତବ୍ୟାଗଟି ବଢ଼ାଇ ଦେଇ କହିଲା, : ଏହା ଭିତରେ ଅନେକ ଟଙ୍କା ଅଛି । ଆପଣଙ୍କର ଯେତେ ଲାଗିବ ନେଇ ନେବେ ।

: କିନ୍ତୁ ସେ ତ ମୋର ନୁହେଁ । ନିଜର ଭାଗ୍ୟ ନିଜେ ମୁଁ ପରୀକ୍ଷା କରିବାକୁ ଚାହେଁ ।

: ଠିକ୍ ଅଛି । ଆପଣଙ୍କ ପାଖରେ ଯେତିକି ଅଛି, ଭାଗ୍ୟ ପ୍ରସନ୍ନ ହେଲେ ସେତିକିରେ ଆପଣ ବାଜିମାତ୍ କରି ପାରିବେ ।

ଜୟନ୍ତ ଆଉ କିଛି କହିଲା ନାହିଁ । ମୋନାଲିସା ପଛେ ପଛେ ଚାଲିବାକୁ ଲାଗିଲା । ସେମାନେ କାର୍ପେଟ୍ ବିଛା ଶିଡ଼ିର ପାହାଚ ପରେ ପାହାଚ ଅତିକ୍ରମ କରି ଉପରକୁ ଉଠୁଥିଲେ । ଧୀର ଆଲୋକରେ 'ଫିସ୍ ଟେଲ ଲଜ୍'ର ପ୍ରତ୍ୟେକ ସ୍ଥାନ ରହସ୍ୟଘନ ମନେ ହେଉଥିଲା । ସେମାନେ ପ୍ରଥମେ ଯାଇ ଯେଉଁ ହଲ୍‌ରେ ପହଞ୍ଚିଲେ, ସେଇ ହଲ୍‌ରେ ଗୋଟାଏ ବିରାଟ ଟେବୁଲ୍‌ରେ ବିଲିଆଡ଼ ଖେଳହେଉଥିଲା । ସେଠି ବି ଆଲୋକ ଧୀର ଓ ସଂକ୍ଷେପ। ଯେଉଁମାନେ ବିଲିଆଡ଼ ଖେଳୁଥିଲେ ସେମାନଙ୍କର ଶ୍ୟେନ ଦୃଷ୍ଟି ବଲ୍ ଉପରେ, କିଏ ଗଲା, କିଏ ଆସିଲା କାହାରିକୁ ଚାହିଁବାର ଅବକାଶ ନାହିଁ । ଲକ୍ଷ୍ୟ କେବଳ ଗୋଟିଏ 'ଜିତ୍' । ସମସ୍ତେ ଚାହାନ୍ତି ଜିତିବାକୁ । ଜୀବନ ଯୁଦ୍ଧଠାରୁ ଆରମ୍ଭ କରି ବିଲିଆଡ଼ ଟେବୁଲ୍ ପର୍ଯ୍ୟନ୍ତ ।

ଜୟନ୍ତ ଚାହିଁ ଚାହିଁ ଆଗଉଥିଲା । ଧୀରେ ଧୀରେ ତା' ମୁଣ୍ଡରୁ ଦୁଶ୍ଚିନ୍ତାଗୁଡ଼ାକ ଟିକିଏ ହାଲ୍‌କା ହୋଇ ଆସୁଥିଲା । ସେ ଯାହାକୁ ଦେଖୁଥିଲା, ତା'ର ମନେ ହେଉଥିଲା ଲୋକଟା କେତେ ପ୍ରାଣବନ୍ତ । ଚାଲି, ଚଳନ କଥାବାର୍ତ୍ତାରେ ସେ କେତେ ସଜୀବ । ଝିଅ, ପୁଅ ସମସ୍ତେ ଯେପରି ଏଠାରେ ଚଳ ଚଞ୍ଚଳ । ପ୍ରାଣପ୍ରାଚୁର୍ଯ୍ୟରେ ଭରା । ଆଉ ସେ କାହିଁକି ଦୁଶ୍ଚିନ୍ତା ଗ୍ରସ୍ତ; ବିକାର ଗ୍ରସ୍ତ । ତା'ର ବି ଜୀବନ ଅଛି, ସେ ବି କର୍ତ୍ତବ୍ୟନିଷ୍ଠ । ସେ ଇଚ୍ଛା କଲେ.....

ହଠାତ୍ ସେମାନେ ଏକ ବନ୍ଦ ଦରଜା ପାଖରେ ଅଟକି ଗଲେ । ସେଇ ଦରଜାରେ ଗୋଟିଏ ବିରାଟ ନାଲିପାନ ବିବିର ଚିତ୍ର । ମୋନାଲିସା ଜୟନ୍ତ ଆଡ଼େ ଚାହିଁ ହସିଲା । କହିଲା : ଏଇ ଘରଟା ହେଉଛି 'ମିନି କାସିନୋ' । ଆପଣ ଦରଜା ଠେଲନ୍ତୁ ।

ଜୟନ୍ତ ମୋନାଲିସାର ଇଂଗିତ ବୁଝି ପାରିଲା ନାହିଁ ।

ମୋନାଲିସା ପୁଣି କହିଲା : ଆପଣ ଦରଜା ଠେଲନ୍ତୁ ଏବଂ ଭିତରକୁ ପଶନ୍ତୁ ।

ଜୟନ୍ତ ଆଖିରେ ମୁହୂର୍ତ୍ତକ ପାଇଁ କିପରି ଏକ ଅସହାୟ ଚାହାଣି ଫୁଟି ଉଠିଲା ।

ମୋନାଲିସା ଲକ୍ଷ୍ୟକଲା, କହିଲା : ନା, ମୁଁ ନୁହେଁ; ଆପଣ ଏଠାକୁ ଏକା ଯିବେ ଏବଂ ନିଜର ଭାଗ୍ୟ ନିଜେ ନିର୍ଣ୍ଣୟ କରିବେ ।

ଜୟନ୍ତ ମୋନାଲିସାର ଇଂଗିତ ବୁଝିପାରିଲା । କିଛି ସମୟ ପୂର୍ବରୁ ସେ କହିଥିଲା, ନିଜ ଭାଗ୍ୟ ସହିତ ନିଜେ ସେ ଲଢ଼ିବାକୁ ଚାହେଁ । କାହାରି ସାହାଯ୍ୟ ସହିତ ତା'ର ପ୍ରୟୋଜନ ନାହିଁ । ମୋନାଲିସା ବୋଧହୁଏ ସେଇ କଥା ସ୍ମରଣ କରେଇ ଦେଉଛି । ଠିକ୍ ଅଛି । ହଁ ନିଜେ ତ ସେ ନିଜ ପଥରେ ଆଗେଇ ଯିବ ।

ଜୟନ୍ତ ଆଉ ପଛକୁ ଚାହିଁଲା ନାହିଁ । କବାଟ ଠେଲି ଭିତରକୁ ପଶିଲା । କିନ୍ତୁ.... କିନ୍ତୁ ଏ ଯେ ଅନ୍ୟ ଏକ ଭୁବନ । ସେ ଘରେ ପଶି ସ୍ତବ୍ଧ ହୋଇ ଠିଆ ହୋଇଗଲା ଅନେକ ସମୟ । ଭିତରେ ବହୁତ ଲୋକ- ନାନା ରଙ୍ଗର, ନାନା ଢଙ୍ଗର ।

ଜୟନ୍ତ ପାଦେ ପାଦେ କରି ଭିତରକୁ ଆଗେଇଲା । ସେ ଯେପରି ଏକ ନୂତନ ଜଗତରେ ପ୍ରବେଶ କରୁଛି । ଅଜଣା ଅଶୁଣା ଏକ ଜନ ଅରଣ୍ୟରେ ।

ଭିତରେ ନାନା ଦେଶର, ନାନା ଚରିତ୍ରର ସ୍ତ୍ରୀ ପୁରୁଷମାନଙ୍କର ଭିଡ଼ । ଧାଡ଼ି ଧାଡ଼ି ହୋଇ କେତେଟା ମେସିନ୍ ବସିଛି । ଲୋକେ ସେଇ ମେସିନ୍ ପାଖରେ ଠିଆ ହୋଇ....

: ହ୍ୟାଲୋ ମିଷ୍ଟର...। କାହାର ମଧୁର କଣ୍ଠ ସ୍ୱରରେ ଜୟନ୍ତର ଧ୍ୟାନ ଭଙ୍ଗହେଲା । ସେ ଦେଖିଲା ଗୋଟିଏ ସୁନ୍ଦରୀ ତରୁଣୀ । ତାକୁ ଚାହିଁ ସ୍ମିତହସି ଠିଆହୋଇଛି ।

ଜୟନ୍ତ ଚାହିଁଲା ।

ତରୁଣୀଟି କହିଲା : ଆଇ ଆମ୍ ହିଅର ଟୁ ହେଲ୍ପ ଇଉ । ଆପଣ ନୂଆ ଆସିଛନ୍ତି ଆମ ଏଠାକୁ । ମୋ' ସଙ୍ଗରେ ଆସନ୍ତୁ । ମୁଁ ସବୁ ବୁଝେଇ ଦେଉଛି । ଦେଖନ୍ତୁ ଏଇଟା ହେଲା ଆମର କ୍ୟାସ କାଉଣ୍ଟର । ଏଠାରୁ ଆପଣ ଟଙ୍କା ଭଙ୍ଗାଇ ନେବେ ।

ଜୟନ୍ତ ତା' ପକେଟରେ ଶେଷ ସମ୍ବଳ ଶହେ ଟଙ୍କାର ନୋଟ୍‌ଟି କାଢ଼ି କାଉଣ୍ଟରରେ ବଢ଼ାଇଦେଲା । କ୍ୟାସିଅର ନେପାଳୀ ଖୁଚୁରା ଟଙ୍କା ଶହେ ପଇଁଚାଳିଶଟି ଫେରାଇ ଦେଲେ ।

ତରୁଣୀଟି ଜୟନ୍ତକୁ ଗୋଟିଏ ମେସିନ୍ ପାଖକୁ ଆଗେଇ ନେଲା । କହିଲା : ୟା ନାଁ ଜାକ୍‌ପଟ । ମେସିନ୍‌ଟି ଗୋଟିଏ ଓଜନ ମେସିନ୍‌ପରି, ଠିଆ ହୋଇ ଦଶ ପଇସା ଗଳେଇ ଦେଲେ, ଯେପରି ଖଣ୍ଡିଏ ଟିକେଟ ବାହାରି ଆସେ, ଏ ଠିକ୍ ସେହିପରି । ତରୁଣୀଟି ଜୟନ୍ତକୁ ବୁଝାଇଲା । ଏଥିରେ ଆପଣ ଗୋଟିଏ ଟଙ୍କା ଗଳେଇଲେ: ଦୁଇଟଙ୍କା ପାଇପାରନ୍ତି, ଶହେଟଙ୍କା ପାଇ ପାରନ୍ତି, କିଛି ବି ନ ପାଇ ପାରନ୍ତି ।

: ମାନେ ?

: ମାନେ ଆଉ କ'ଣ । ଆପଣ ଜିତିଲେ ମେସିନ୍‌ରୁ ଟଙ୍କା ବାହାରି ଏଇ ପାତ୍ରଟାରେ ପଡ଼ିବ, ହାରିଲେ ଶୂନ୍ୟ ।

: ବୁଝିଲି ।

: ଆପଣ ଗୋଟାଏ ଟଙ୍କା ଗଳେଇ ପରୀକ୍ଷା କରି ପାରନ୍ତି ।

: ଜୟନ୍ତ ପକେଟ୍‌ରୁ ଗୋଟିଏ ଟଙ୍କା ବାହାର କରି ନିର୍ଦ୍ଦିଷ୍ଟ ସ୍ଥାନରେ ଗଳାଇଦେଲା ।

ମୁହୂର୍ତ୍ତକ ମଧ୍ୟରେ ମେସିନ୍ ଭିତରୁ କିପରି ଗୋଟାଏ ଘର ଘର ଶବ୍ଦ ଶୁଣାଗଲା ଏବଂ ଆଲୋକ ଜଳିଉଠିଲା । ସେଇ ଆଲୋକ ଭିତରୁ ଫୁଟି ଉଠିଲା, ଏକ ଲାଇନ୍ ଲେଖା 'କଏନ୍ ଆକ୍‌ସେପ୍‌ଟେଡ୍'।

: ଏଥର ଏଇ ରଡ୍‌ଟା ଟାଣନ୍ତୁ । ତରୁଣୀଟି ଦେଖାଇଦେଲା ।

ଜୟନ୍ତ ଖୁବ୍ ଜୋର୍‌ରେ ରଡ଼ଟାକୁ ଟାଣିଲା । ମେସିନ୍ ଭିତରେ ଗୋଟାଏ ଚକ୍ ଘର୍ ଘର୍ ହୋଇ ବୁଲିବାକୁ ଲାଗିଲା । ମେସିନ୍ ଭିତରେ ଦେଖାଗଲା ଗୋଟାଏ ହଳଦିଆ ଫୁଲ, ଲାଲ ଫଳ ଏବଂ ଘଣ୍ଟା । ସେଇ ଛବିଗୁଡ଼ିକ କାଚ ବାକ୍‌ସ ଭିତରେ ଧାଁଦଉଡ଼ କରିବାକୁ ଲାଗିଲେ । ଚାରି ପାଞ୍ଚ ସେକେଣ୍ଡ ପରେ ଏକ ଅପୂର୍ବ ଖଟ୍ ଖଟ୍ ଶବ୍ଦ ହେଲା, ଆଖି ସାମ୍‌ନାରେ ଭାସି ଉଠିଲା ଲାଲ ଫୁଲ, ନୀଳ ଫୁଲ ଏବଂ.....

ପର ମୁହୂର୍ତ୍ତରେ ଏକ ଝଣ ଝଣ ଶବ୍ଦ ଶୁଣାଗଲା ଏବଂ ତିନିଟି ଟଙ୍କା ଖସି ପଡ଼ିଲା ଗୋଟାଏ ପାତ୍ର ମଧ୍ୟରେ ।

ଜୟନ୍ତ ଉଲ୍ଲସିତ ହୋଇ ଚାହିଁଲା ତରୁଣୀଟି ଆଡ଼େ ।

: ଆପଣ ଭାଗ୍ୟବାନ । ଜିତିଛନ୍ତି ତରୁଣୀଟି କହିଲା ।

ଜୟନ୍ତ ହାତବଢ଼ାଇ ଟଙ୍କାତକ ନେଲା ।

ତରୁଣୀଟି କହିଲା : ଆସନ୍ତୁ ମୁଁ ଆପଣଙ୍କୁ ଅନ୍ୟାନ୍ୟ ଖେଳ ସବୁ ଦେଖେଇ ଦେଉଛି ।

ଜୟନ୍ତ ଏଥର ଯାଇ ଯେଉଁଠି ଠିଆହେଲା, ସେଠାରେ ଗୋଟାଏ ଚକ୍ର ଦିଆଲରେ ଘୁରୁଛି । ସେହି ଚକ୍ରରେ ୧୦ାରୁ ୭ ନମ୍ବର ପର୍ଯ୍ୟନ୍ତ ଲେଖା ହୋଇଛି । ପ୍ରଥମେ ଯେ କୌଣସି ଗୋଟିଏ ନମ୍ବରରେ ଟଙ୍କା ଲଗାଇବାକୁ ହେବ । ତା'ପରେ ଚକ୍ର ଘୂରିବ ତୀବ୍ର ଗତିରେ । ଚକ୍ରର ଘୂରନ୍ତ ଅବସ୍ଥାରେ ଗୋଟାଏ ତୀର ଫିଙ୍ଗିବାକୁ ହେବ । ସେ ତୀର ଯଦି ନିଜେ ଟଙ୍କା ଲଗାଇଥିବା ନମ୍ବରକୁ ବିଦ୍ଧକରେ ତା'ହେଲେ ଜିତ୍ । ନହେଲେ ହାର୍ ।

ଜୟନ୍ତ ସେଠାରେ ଠିଆହୋଇ ଖେଳିବ କି ନାହିଁ ଚିନ୍ତା କରୁଥିଲା । କିନ୍ତୁ ତରୁଣୀଟି ତା' ହାତଧରି ଆଗକୁ ଟାଣିଲା : ଆସନ୍ତୁ ମୁଁ ଆପଣଙ୍କୁ ସବୁ ଖେଳଗୁଡ଼ିକ ଦେଖାଇଦିଏ । ତା'ପରେ ଆପଣ ମନଇଚ୍ଛା ଖେଳିବେ । ଏଇ ଖେଳଟା ନାମ 'ବ୍ଲାକ୍ ଜ୍ୟାକ୍' ଯା ନା 'ପନ୍‌ଟୁନ୍', ଏ ହେଉଛି ଗୁଣିଆନ ରୁଲେଟ୍ ଆଉ ଏ ଘରେ.... ତରୁଣୀଟି ଆଉ ଗୋଟିଏ ଧୂମାୟିତ ଛୋଟ ଘରର ଦରଜା ଠେଲିଲା ।

ଫ୍ଲାଶ୍ !!

ଜୟନ୍ତ ଦେଖିଲା, ସେ ଘରେ ତିନି ଚାରିଟି ଟେବୁଲକୁ ଘେରି ଅନେକ ସ୍ତ୍ରୀ ପୁରୁଷ ଜମା ହୋଇଛନ୍ତି । ସବୁ ଟେବୁଲ୍ ଉପରେ ଟଙ୍କାର ପାହାଡ଼ । ସେ ଅନେକ ଟଙ୍କାର ଖେଳ ।

ଜୟନ୍ତ ଘର ଭିତରକୁ ପଶିବା ପାଇଁ ସାହସ କଲା ନାହିଁ । ପଛକୁ ଫେରି ଚାହିଁଲା ସେ ତରୁଣୀଟି ମଧ୍ୟ ନାହିଁ । ସେ ବୋଧହୁଏ ଚାଲି ଯାଇଛି । ତା' କାମ ଶେଷ ହୋଇଛି । ଏଥର ଜୟନ୍ତ ଏକା । ହଁ ଏକା, ଏକା ସେ ତା'ର ଭାଗ୍ୟ ନିର୍ଦ୍ଧାରଣ କରିବା ସେ ପଛକୁ ପାଦ ଫେରାଇଲା । ତା'ପାଇଁ ସେଇ ଜ୍ୟାକ୍‌ପଟ୍ ମେସିନ୍ ହିଁ ଭଲ ।

ଜୟନ୍ତ ଯେତେଥର ମେସିନ୍‌ରେ ଟଙ୍କା ଗଳେଇଲା ସେତେଥର ସେ ବାଜି ଜିତିଲା । ଡବଲ, ଟ୍ରିପଲ, ଏପରିକି ଏକ ଟଙ୍କାରେ ଶହେ ଟଙ୍କା ବି ସେ ଜିତିଲା । ନିଶା ଲାଗିଗଲା ଜୟନ୍ତର । ତା' ପକେଟ୍ ଟଙ୍କାରେ ଭରିଗଲା । ଯେଉଁଠି ସେ ଯାଇ ଠିଆହେଲା, ଯେଉଁ ଖେଳରେ ସେ ହାତ ଲଗେଇଲା, ସେଠାରେ ତା'ର ଜିତ୍ । ଏପରି ଏକ ସମୟ ଆସିଲା, ଶେଷରେ କେତେଜଣ ଲୋକ ଜୟନ୍ତର ପଛେ ପଛେ ଘୂରିଲେ । ଜୟନ୍ତ ସହିତ ଭାଗ୍ୟ ମିଶାଇ ସେମାନେ ଖେଳିଲେ । ଅବଶେଷରେ ଜୟନ୍ତ କ୍ଲାନ୍ତ ହୋଇପଡ଼ିଲା । ଆଉ ସେ ପାରୁନାହିଁ, ଏଥର କେଉଁଠି ଯାଇ ଟିକିଏ ବସିବାକୁ ପଡ଼ିବ ।

ଜୟନ୍ତ ସେଇ ଘର ଆଡ଼େ ମୁହାଁଇଲା । ତା'ପଛେ ପଛେ ଆହୁରି କେତେଜଣ ସେଇ ଫ୍ଲାଶ୍ ଘର ଆଡ଼େ ଆଗେଇଲେ । ବର୍ତ୍ତମାନ ତା' ପକେଟରେ ଅନେକ ଟଙ୍କା । କେତେ ଟଙ୍କା ସେ ନିଜେ ବି ଜାଣେ ନାହିଁ । ଏଥର ଫ୍ଲାଶ୍ ଟେବୁଲ୍‌ରେ ବସିବାକୁ ତା' ମନରେ କୌଣସି ଦ୍ୱିଧା ନାହିଁ ।

ସେ ପକ୍‌କା ଖେଳୁଆଡ଼ ପରି ଯାଇ ଗୋଟାଏ ଟେବୁଲ୍ ପାଖରେ ବସିଲା । ଟେବୁଲ୍‌ରେ ଅନ୍ୟାନ୍ୟ ଖେଳୁଆଡ଼ମାନଙ୍କୁ ଚାହିଁଲା । ଦୁଇଜଣ ପୁରୁଷ, ଜଣେ ସ୍ତ୍ରୀ ଏବଂ ସେ ନିଜେ, କିନ୍ତୁ ଟେବୁଲ ଚାରିପାଖରେ ଭିଡ଼ ଜମିଯାଇଥିଲା । ଏହା ଭିତରେ ଅଳ୍ପ ବିସ୍ତର ପ୍ରଚାର ହୋଇ ଯାଇଥିଲା ଯେ ଜୟନ୍ତ ଏକ 'ଲକି' ଖେଳୁଆଡ଼ ।

ତାସ୍ ବଣ୍ଟାହେଲା ।

ଜୟନ୍ତ ଗମ୍ଭୀର ହୋଇ ବସିଥିଲା । ପ୍ରଥମେ ଭଦ୍ରମହିଳା ଜଣକ ଶହେ ଟଙ୍କାର ନୋଟ୍ ଟେବୁଲ୍ ଉପରେ ଥୋଇଲେ । ତା'ପରେ ଅନ୍ୟ ଦୁଇଜଣ । ଶେଷରେ ଜୟନ୍ତ ଥୋଇଲା ଦୁଇଶହ ଟଙ୍କା ।

ଅନ୍ୟମାନେ ତାସ୍ ଉଠାଇଲେ । ଅନେକ ବେଳଯାଏ ନିରୀକ୍ଷଣ କଲେ । ତା'ପରେ ପକେଟରୁ ଟଙ୍କା ବାହାର କରି ଥୋଇଲେ ଟେବୁଲ୍ ଉପରେ, ପ୍ରାୟ ପାଞ୍ଚ ସାତ ହଜାର ।

ଜୟନ୍ତ କିନ୍ତୁ ନିର୍ବିକାର । ତା' ତାସ୍ ତିନିପଟ ସେହିପରି ଟେବୁଲ୍ ଉପରେ ମୁହଁମାଡ଼ି ପଡ଼ି ରହିଥିଲା । ସେ କେବଳ ପକେଟ୍‌ରୁ ଟଙ୍କା ବାହାର କରି ଜମା କରି ଯାଉଥିଲା ଟେବୁଲ ଉପରେ, ଏପରି ସମୟ ଆସିଲା ଯେତେବେଳେ ସେ ପକେଟ୍‌ରୁ ସମସ୍ତ ଟଙ୍କା ଥୋଇଦେଲା ଟେବୁଲ୍ ଉପରେ ।

ଧୀରେ ଧୀରେ ଦର୍ଶକମାନଙ୍କ ଭିଡ଼ ବଢ଼ିଯାଇଥିଲା । ଅନ୍ୟ ଟେବୁଲ୍‌ରେ ଖେଳୁଆଡ଼ମାନେ ବି ଆସି ଜମି ଯାଇଥିଲେ । ଜୟନ୍ତ ସାମ୍‌ନାରେ ଟଙ୍କା ଟଙ୍କାର ପାହାଡ଼ । କିନ୍ତୁ ତା'ପାଇଁ ମୁହଁମାଡ଼ି ପଡ଼ିଥିବା ତାସ୍ ତିନିପଟ ଯେ କିପରି ଭାବରେ ଜୟନ୍ତର ଭାଗ୍ୟ ନିର୍ଣ୍ଣୟ କରିବେ ସେଇ କଥା ଦର୍ଶକମାନେ ସନ୍ଦିଗ୍ଧ ହୃଦୟରେ ଚିନ୍ତା କରୁଥିଲେ । ସେହି ବହୁ ପ୍ରତୀକ୍ଷିତ ମୁହୂର୍ତ୍ତଟି ଆସିଲା ଏକ ସମୟରେ । ଜୟନ୍ତ ତିନିପଟଯାକ ତାସ୍ ଓଲଟେଇଲା । ତିନିଟିଯାକ ଟିକା ।

ଜୟନ୍ତର ଜୟଜୟକାର । ବୋର୍ଡର ସବୁଟଙ୍କାଯାକ ସେ ଗୋଟାଏ ଆଡ଼କୁ ଟାଣି ଆଣି ନିଜେ ତାସ୍ ବାଣ୍ଟିବାକୁ ଯାଉଥିଲା; କିନ୍ତୁ ମୋନାଲିସା ଭିଡ଼ ଠେଲି ଆଗେଇ ଆସି

ତା'ହାତରୁ ତାସ୍ ଛଡ଼ାଇ ନେଇ କହିଲା : ଆଉ ନୁହେଁ । ଆପଣ ମୋ ସହିତ ରୁମ୍କୁ ଫେରି ଚାଲନ୍ତୁ । ରାତି ଅନେକ ହେଲାଣି ।

ଗୋଟାଏ ପ୍ରତିବାଦର ସ୍ୱର ଉତ୍ତୋଳିତ ହୋଇଥିଲା ହଲ୍ ଭିତରେ; କିନ୍ତୁ ମିଷ୍ଟର ତରଫଦାର କେଉଁଠି ଥିଲେ ଛୁଟିଆସି ସବୁ ଶାନ୍ତ କରାଇଦେଲେ ।

ମୋନାଲିସା ଟଙ୍କାତକ ଟେବୁଲ୍ରୁ ଗୋଟାଇ ବ୍ୟାଗରେ ଭରିଲା । ମିଷ୍ଟର ତରଫଦାର ଜୟନ୍ତକୁ ଦୁଇ ହାତରେ ଧରି ଘରୁ ବାହାରିଲେ । ଜୟନ୍ତ ଟଳୁଥିଲା । ତା' ଗୋଡ଼ ଦୁଇଟା ଠିକ୍ଭାବରେ ପଡୁ ନଥିଲା । ସେ ବୋଧହୁଏ ଧୀରେ ଧୀରେ ଆତ୍ମସତ୍ତା ହରାଉଥିଲା ।

ମିଷ୍ଟର ତରଫଦାର ଓ ମୋନାଲିସା ଜୟନ୍ତକୁ ନେଇ ତା' ରୁମ୍ରେ ଶୁଆଇ ଦେଇଥିଲେ । ଜୟନ୍ତର ଆଉ କିଛି ମନେ ନଥିଲା ।

କେତେ ରାତି ହେବ କେଜାଣି, ଜୟନ୍ତର ମନେହେଲା ତା'ମୁଣ୍ଡ ପାଖରେ ଥିବା ଫୋନ୍ଟା ଯେପରି ଅନେକ ବେଳୁ ବାଜିଚାଲିଛି । ସେ ସୁସ୍ଥ ଥିଲେ ହୁଏତ ଉଠିବସି ଫୋନ୍ଟା କାନରେ ଦେଇଥାଆନ୍ତା, କିନ୍ତୁ ଦେହ ହାତ ସବୁ ଯେ ତା'ର ଅବଶ । ଟେଲିଫୋନର କ୍ଳାନ୍ତି ନାହିଁ, ସେ ବାଜି ଚାଲିଛି । ବହୁ କଷ୍ଟରେ ଜୟନ୍ତ ହାତ ବଢ଼ାଇ ରିସିଭରଟା ଉଠାଇ ଆଣି କାନରେ ଦେଲା । ନିଦମିଶା କଣ୍ଠରେ କହିଲା: ହ୍ୟାଲୋ

ଅପର ପ୍ରାନ୍ତରୁ ଏକ ଉଚ୍ଛ୍ୱସିତ ହାସ୍ୟ ଧ୍ୱନି ଭାସି ଆସିଲା ।

ଜୟନ୍ତ ସ୍ତବ୍ଧ ହୋଇ ଶୁଣିଲା ।

ଅପର ପ୍ରାନ୍ତରୁ ସେହିପରି ତରଙ୍ଗାୟିତ ହାସ୍ୟରୋଳ ଜୟନ୍ତ କାନରେ ଯେପରି ଚେତାବନୀ ଶୁଣାଉଥିଲା ।

ଜୟନ୍ତ ଉଠିବସିଲା : ହ୍ୟାଲୋ, ହ୍ୟାଲୋ.....

: ମୋତେ ଚିହ୍ନିପାରୁନ ଜୟନ୍ତ, ମୁଁ ରୋଜି କହୁଛି ।

: କିଏ ରୋଜି, ତମେ...

: ହଁ ଜୟନ୍ତ, ମୁଁ ତମ ପଛରେ ଛାୟାପରି ଘୁରୁଛି । କେଜାଣି କାହିଁକି ତମର ଏଇ ଦୁର୍ଦ୍ଦିନରେ ତମକୁ ଛାଡ଼ି ଚାଲିଯିବାକୁ ଇଚ୍ଛା ହେଉ ନାହିଁ ।

: କିନ୍ତୁ ରୋଜି ତମେ ଯେ ଅନ୍ୟ ଜଣକର ହୋଇ ସାରିଛ । ମୁଁ ତୁମଠାରୁ ଅନେକ କିଛି ଆଶା କରିଥିଲି । ବର୍ତ୍ତମାନ ତମେ ସେଦିନ କହିଥିବାର ସତ୍ୟତା ଉପଲବ୍ଧି କରୁଛି । ମୁଁ ଆଜି ଅନୁଭବ କରୁଛି, ନଜର ବନ୍ଦୀ ନୁହେଁ, ବନ୍ଦୀ । ଆଜି ବନ୍ଦୀରୁ ପଳାତକ, ତା'ପରେ ଭାଗ୍ୟରେ କ'ଣ ଅଛି....

ଅପରପ୍ରାନ୍ତରୁ ପୁଣି ସେହି ତରଙ୍ଗାୟିତ ହାସ୍ୟଧ୍ୱନି ।

: ତମେ ହସୁଛ ରୋଜି ! ମୋର ଦୁର୍ଦ୍ଦିନରେ ତମେ ହସୁଛ ! ଜୟନ୍ତ କଣ୍ଠରେ କାରୁଣ୍ୟ ।

: ମୋତେ ହସମାଡୁଛି ଜୟନ୍ତ । ତମେ ବୋକା, ତମେ କାପୁରୁଷ, ତମେ......

: ମୋତେ ଯାହା ଇଚ୍ଛା ତାହା ଗାଳିଦିଅ ରୋଜି, ମୁଁ ସବୁ ସହିନେବି; କିନ୍ତୁ ତମକୁ ମୋର ଗୋଟିଏ ଅନୁରୋଧ । ମୋତେ ମୁକ୍ତିର ବାଟ ଦେଖାଇ ଦିଅ । ମୁଁ ମୁକ୍ତି ଚାହେଁ, ମୁକ୍ତି ।

: ତା'ହେଲେ ମୋ ସହିତ ହାତ ମିଳାଇବାକୁ ପଡ଼ିବ । ଅପରପ୍ରାନ୍ତରୁ ରୋଜି କହିଲା ।

: ମୁଁ ରାଜି ।

: ମୋର ନିର୍ଦ୍ଦେଶ ମାନି ଚଳିବାକୁ ହେବ ।

: ସେଥିରେ ବି ରାଜି ।

: ଠିକ୍ ଅଛି । ତମର ମୁକ୍ତି କଥା ମୁଁ ଚିନ୍ତା କରୁଛି । ତମେ ଯେପରି ଅଛ ଥାଅ, ହସି ଖେଳି ସମୟ କଟାଅ । ଯଥା ସମୟରେ....

: କିନ୍ତୁ ରୋଜି, ଅନୁରାଧାର ହତ୍ୟାକାରୀ କିଏ ମୋତେ ତ କିଛି କହିଲ ନାହିଁ ?

: ତମର ଜାଣି କିଛି ଲାଭ ନାହିଁ । ଯେଉଁମାନେ ଲାଭ ଉଠାଇବାକୁ ଅନୁରାଧାକୁ ହତ୍ୟା କରିଛନ୍ତି, ଅନୁରାଧାର ହତ୍ୟାକାରୀଠାରୁ ମୁଁ ପ୍ରଚଣ୍ଡ ପ୍ରତିଶୋଧ ନେବି ।

: କିନ୍ତୁ ରୋଜି, ତମେ କିଏ ? ଅନୁରାଧା ତମର.....

ଅପର ପ୍ରାନ୍ତରୁ ସେହିପରି ତରଙ୍ଗାୟିତ ହାସ୍ୟରୋଳ ଭାସି ଉଠିଲା ମୁଁ ଅନ୍ୟ କେହି ନୁହେଁ, ମୁଁ ରୋଜି, ମୁଁ ରୋଜି, ମୁଁ....

ତା'ପରେ ସବୁ ନୀରବ, ନିସ୍ତବ୍ଧ ।

ଜୟନ୍ତ ଦୁଇ ଚାରିଥର ହ୍ୟାଲୋ ହ୍ୟାଲୋ କରି ରିସିଭରଟା ରଖିଦେଲା । ତା' ନିଦ ଭାଙ୍ଗିଯାଇଥିଲା । ଆମ୍ବସତ୍ତା ଫେରିପାଇଥିଲା, ବୁଝି ପାରିଥିଲା କେଉଁଠି ଅଛି ।

ବେଡ ସୁଇଚଟା ଟିପିଦେଇ, ଆଲୋକର ବନ୍ୟାରେ ସେ ଶିହରୀ ଉଠିଥିଲା । ତା'ଶେଯ ଉପରେ ଅନେକ ଟଙ୍କା, ଅନେକ ନୋଟ୍ । ଏତେ ଟଙ୍କା, ଏତେ ଟଙ୍କା, ଏତେ ପଇସା....

ଧୀରେ ଧୀରେ ଜୟନ୍ତର ମନେ ପଡ଼ିଲା, ମିନି କ୍ୟାସିନୋ, ଜ୍ୟାକ୍ ପଟ୍, ବ୍ଲାକ୍‌ଜ୍ୟାକ୍, ପନ୍‌ଟୁନ୍ ଏବଂ ଫ୍ଲାଶ୍....

ଫ୍ଲାଶ୍! ଫ୍ଲାଶ୍!! ଫ୍ଲାଶ୍!!!

ଜୟନ୍ତ ମନରେ ପୁଣି କ୍ଲାନ୍ତି ଘୋଟିଆସିଲା । ସେ ବେଡ୍ ସୁଇଚ୍ ଅଫ୍ କରିଦେଇ, କମ୍ବଳ ତଳେ ମୁହଁଗୁଞ୍ଜି ଶୋଇପଡ଼ିଲା ।

ଜୟନ୍ତ ଦେହରେ କାହାର ସ୍ପର୍ଶ ପାଇ କଡ଼ ଲେଉଟାଇଲା; କିନ୍ତୁ ଆଖି ଖୋଲି ଚାହିଁ ପାରୁ ନଥିଲା । ନିଦଘୋରରେ ସେ ଯେପରି ପଙ୍ଗୁ ହୋଇଯାଇଥିଲା । ଚାହିଁବାକୁ ଚେଷ୍ଟା କରି ବି ଆଖି ଖୋଲି ପାରୁ ନଥିଲା ।

: ମିଷ୍ଟର ମହାପାତ୍ର, ଏଥର ଉଠନ୍ତୁ । ଦିନ ଅନେକ ହେଲାଣି । ମୁଁ ଆସିଚି । ମୁଁ ମାଳବିକା ।

ଜୟନ୍ତ ସବୁ ଶୁଣୁଥିଲା । ତା' କାନରେ ମାଳବିକାର କଥା ପ୍ରବେଶ କରୁଥିଲା; ତଥାପି ସେ ନିଶ୍ଚୁପ ।

ଏଥର ମାଳବିକା ଜୟନ୍ତକୁ କୁତୁ କୁତୁ କଲା । ଉଠାଇବା ପାଇଁ ଆହୁରି ଜୋର୍‌ରେ ଧକ୍‌କାମାରିଲା ।

ଫଳରେ ମାଳବିକା ବନ୍ଦୀ ହେଲା ଜୟନ୍ତର ବାହୁ ଫାଶରେ । ନିଦ ଜର୍ଜରିତ ଆଖିରେ ସେ ମାଳବିକାକୁ ଭିଡ଼ିନେଲା ଶେଯଉପରକୁ । ମାଳବିକା ପ୍ରତିବାଦ କରିଥିଲେ ବି ତା'ର କୌଣସି ପ୍ରଭାବ ପଡ଼ି ନଥିଲା ଜୟନ୍ତ ଉପରେ । ସେ ମାଳବିକାକୁ ଭିଡ଼ିନେଇ ଶେଯ ଉପରେ ଶୁଆଇ ଦେଇ ଯେତେବେଳେ ଧୀରେ ଧୀରେ ଆଖି ଖୋଲିଲା, ସେତେବେଳେ ସେ ନିଜ କୃତକର୍ମରେ ଲଜ୍ଜିତ ହୋଇ ବିଛଣା ଉପରୁ ଉଠିପଡ଼ିଥିଲା । ମାଳବିକା ଦେହ ମୁହଁରେ କିନ୍ତୁ କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇ ନଥିଲା; ବରଂ ସେ ସ୍ମିତ ହସି କହିଲା, : ମୁଁ ଅନେକ ବେଳୁ ଆସିଲିଣି । ଘଡ଼ିରେ ଦଶଟା ବାଜୁଛି । ଆପଣ କ'ଣ ଉଠିବେ ନାହିଁ ?

ଜୟନ୍ତ ଅଳସ ଭାଙ୍ଗି ପ୍ରକୃତିସ୍ଥ ହେବାକୁ ଚେଷ୍ଟା କରୁଥିଲା । ବିଛଣାର ଚାରିଆଡ଼େ କେତେ ଗୁଡ଼ାଏ ନୋଟ୍ ପଡ଼ିରହିଥିବାର ଦେଖି ଧୀରେ ଧୀରେ ତା'ର ଗତ ରାତିର କଥା ମନେପଡ଼ିଲା ।

ମାଳବିକା କହିଲା : ମୋନାଲିସା ମୋତେ ସବୁ କହିଛି । ଗତ ରାତିର ଆପଣଙ୍କ ସଫଳତାର ସେ ଥିଲା ମୂକସାକ୍ଷୀ । ଏଥର ଆପଣ ଉଠି ପଡ଼ନ୍ତୁ । ଆପଣଙ୍କ ପାଇଁ ଅନେକ ସଂବାଦ ଧରି ମୁଁ ଆସିଛି ।

ଜୟନ୍ତ ବିଛଣାରୁ ଉଠି ଠିଆ ହେଲା । ମାଳବିକା କିନ୍ତୁ ସେହିପରି ଶୋଇ ରହିଥିଲା । ତା' ମନରେ କିଛି ବିକାର ନାହିଁ କିଛି ଦ୍ୱନ୍ଦ୍ୱ ନାହିଁ । ସେ ନିର୍ବିକାର, ସ୍ୱଚ୍ଛ, ସହଜ ।

ଜୟନ୍ତ କହିଲା : ସୋନାଲି ଆସିନାହିଁ ?

: ନା, ସେ ଆସିବ ଆଜି ଚାରିଟା ବେଳକୁ ।

: ବେଶ୍, ତା'ପରେ ? ଆଉ ଖବର କ'ଣ କୁହ । ଯେଉଁ ଗୁପ୍ତଚର ବାହିନୀ ଧରି ରୁଦ୍ରପ୍ରସାଦ ଆସିଥିଲେ, ସେମାନେ ମୋତେ ଆରେଷ୍ଟ କରିବାକୁ କେବେ ଆସୁଛନ୍ତି ?

ଏଥର ମାଳବିକା ବିଛଣା ଉପରେ ଉଠିବସିଲା । ସେ ବ୍ୟସ୍ତ ହୋଇ କହିଲା : ନା ମିଷ୍ଟର ମହାପାତ୍ର । ଇଣ୍ଡିଆ କ୍ରାଇମବ୍ରାଞ୍ଚର ଯେଉଁ ଦୁଇଜଣ ଅଫିସର ଆସିଛନ୍ତି, ସେମାନଙ୍କ ସହିତ ରୁଦ୍ରପ୍ରସାଦଙ୍କର କୌଣସି ସଂପର୍କ ନାହିଁ । ସଂପର୍କ ଥିଲେ, ମୋତେ ଆଜି ଆପଣ ଏଠାରେ ଏହିପରି ହସି ହସି କଥା କହିବାର ଦେଖୁ ନ ଥାନ୍ତେ ।

: ମାନେ ?

: ରୁଦ୍ରପ୍ରସାଦ ତା'ହେଲେ ମୋତେ ଶେଷ କରି ଦେଇ ଥାଆନ୍ତେ ?

ଜୟନ୍ତ ଆହୁରି ଚମକି ଉଠି କହିଲା: ତମୁକୁ ରୁଦ୍ରପ୍ରସାଦ ଶେଷ କରି ଦେଇ ଥାଆନ୍ତେ ମାନେ ?

ମାଳବିକା ଅଳ୍ପ ହସି ଶାନ୍ତ ସ୍ୱରରେ କହିଲା : ନୁହେଁ ତ ଆଉ କ'ଣ ! ଆପଣ ଥିଲେ ମୋ ଦାୟିତ୍ୱରେ । ମୁଁ ରୁଦ୍ରପ୍ରସାଦଙ୍କୁ ନ ପଚାରି ଆପଣଙ୍କୁ ଗୋପନରେ ପୋଖରା ପଠାଇ ଦେଇଥିଲି । ଏହାଠାରୁ ବଡ଼ ଅପରାଧ ମୋର ଆଉ କ'ଣ ହୋଇପାରେ ? ସେ ମୋତେ ନିଶ୍ଚୟ ଚାକିରିରୁ ବିଦାକରି ଦେଇଥାଆନ୍ତେ ।

: ଓଃ ତମୁକୁ ସେମାନେ ଚାକିରିରୁ ବିଦାୟ କରି ଦେଇ ଥାଆନ୍ତେ । ଏଥର ବୁଝିଲି । ତା'ପରେ ମୋ ପାଇଁ କ'ଣ ସମ୍ବାଦ ଆଣିଛ କହୁଥିଲ ।

: ଧୀରେ ଧୀରେ ସବୁକଥା କହିବି ମିଷ୍ଟର ମହାପାତ୍ର । ଆପଣ ଜାଣିଲେ ଖୁସି ହେବେ ଯେ, ଆପଣଙ୍କୁ ମୁଁ ପୋଖରା ପଠାଇ ଦେଇଥିବା ହେତୁ ରୁଦ୍ରପ୍ରସାଦଙ୍କଦ୍ୱାରା ପୁରସ୍କୃତ ହୋଇଛି । ମାଳବିକା ହସି ହସି କହିଲା ।

: ସତେ ?

: ହଁ, ସେ ଖୁବ୍ ଖୁସି ହୋଇଛନ୍ତି । ଆପଣ ଯଦି ଗେଷ୍ଟ ହାଉସ୍‌ରେ ଥାଆନ୍ତେ, ନିଶ୍ଚୟ ଧରାପଡ଼ି ଯାଇଥାଆନ୍ତେ । ସେମାନେ କେଉଁଠୁ ଖବର ପାଇ ଯାଇଥିଲେ ।

: କିନ୍ତୁ ମୁଁ ବୁଝିପାରୁନାହିଁ ମାଳବିକା ତମର ବସ୍, ମାନେ ରୁଦ୍ରପ୍ରସାଦ ମୋତେ ବଞ୍ଚାଇବା ପାଇଁ କାହିଁକି ଏତେ ଚେଷ୍ଟା କରୁଛନ୍ତି ? ତମେ ମୋତେ ସେ ସମ୍ବନ୍ଧରେ କିଛି କହି ପାରିବ ?

: ନା, ମିଷ୍ଟର ମହାପାତ୍ର । ରୁଦ୍ରପ୍ରସାଦଙ୍କର ମନର କଥା ମୋତେ ଜଣାନାହିଁ । କିନ୍ତୁ....ମାଳବିକା କଥା ଅସମାପ୍ତ ରଖି ଚାହାଣି ନତ କଲା ।

: ପୁଣି କିନ୍ତୁ କାହିଁକି ?

: ନା ମିଷ୍ଟର ମହାପାତ୍ର, ମୋତେ କିନ୍ତୁ ଆପଣଙ୍କୁ ଖୁବ୍ ଭଲ ଲାଗିଛି । ମାଳବିକା କଥାତକ ଏକନିଶ୍ୱାସରେ କହି ପକାଇ ବୋଧହୁଏ ଲଜ୍ଜିତ ହୋଇପଡ଼ିଥିଲା । ସେ ମୁହଁ ମାଡ଼ି ବିଛଣାରେ ଶୋଇପଡ଼ିଲା ।

ଜୟନ୍ତ କେତୋଟି ମୁହୂର୍ତ୍ତ ମାଳବିକା ଆଡ଼େ ଏକ ଦୃଷ୍ଟିରେ ଅନାଇ ରହି, ଧୀରେ ଧୀରେ ବିଛଣା ପାଖକୁ ଆଗେଇ ଗଲା । ବିଛଣା ଉପରେ ବସିଲା । ମାଳବିକା ଦେହରେ ହାତ ମାରି ଡାକିଲା ।

: ମାଳା !

: ଉଁ ।

: ମୋତେ ତମକୁ ଭଲ ଲାଗେ ?

: ହଁ ।

: କାହିଁକି ?

: କହି ପାରିବିନି ।

: ମାଳା ।

: ଉଁ ।

: ଉଠ, ଚାହିଁଲ ମୋ ଆଡ଼େ ।

ଜୟନ୍ତ ମାଳବିକାକୁ ଉଠାଇବାକୁ ଚେଷ୍ଟା କଲା । ମାଳବିକା କିନ୍ତୁ ମୁହଁ ଉଠାଇଲା ନାହିଁ ।

: ହୁଁ, ବୁଝିଲି । ଜୟନ୍ତ କହିଲା ।

: କ'ଣ ବୁଝିଲେ? ମାଳବିକା ସେହିପରି ଶୋଇ ରହି ଶାନ୍ତ ସ୍ୱରରେ ପଚାରିଲା ।

: ବୁଝିଲି ତମର ଦୁର୍ଦ୍ଦିନ ପାଖେଇ ଆସିଲାଣି ।

: ମାନେ ? ମାଳବିକା ଚମକି ଉଠି ଜୟନ୍ତକୁ ଜାବୁଡ଼ି ଧରିଲା । ସେତିକିବେଳେ ଘରର କବାଟ ଖୋଲି ବୟ ଭିତରକୁ ପଶୁଥିଲା, ହାତରେ ଟ୍ରେ ।

ବୟ ଚା'ପଟ୍ ଓ ବ୍ରେକ୍‌ଫାଷ୍ଟ ଟେବୁଲ୍ ଉପରେ ଥୋଇଲା । ମାଳବିକା ଇଂଗିତରେ ବୟକୁ ଚାଲିଯିବା ପାଇଁ କହିଲା । ଆଜି ମାଳବିକା ହୃଦୟ ଭିତରେ କିପରି ଏକ ଦୁର୍ବଳ ଶୈତ୍ୟପ୍ରବାହ ଖେଳି ଯାଉଥିଲା । ତା' ନାରୀ ଜୀବନରେ ଏତେ ଦୁର୍ବଳତା ଏହି ବୋଧହୁଏ ପ୍ରଥମ । ଜୟନ୍ତର ତତ୍ତ୍ୱାବଧାରକ ରୂପେ ସେ ନିଯୁକ୍ତି ପାଇଛି । ତା'ର ଭଲ, ମନ୍ଦ, ସୁଖ ସୁବିଧା ଦେଖିବା ତା'ର କର୍ତ୍ତବ୍ୟ । ଜୟନ୍ତକୁ ବିପଦ-ଆପଦରୁ ବଞ୍ଚାଇ, ତା' ମନରୁ ଦୁର୍ଭାବନା ଦୂର କରେଇ, ତାକୁ ସୁସ୍ଥ ସବଳ ରଖିବା ପାଇଁ ସେ ଆସିଛି । କିନ୍ତୁ ମନେହେଉଛି ସେ ନିଜେ ଯେପରି ଆତ୍ମସତ୍ତା ହରେଇ ବସୁଛି । ଜୟନ୍ତକୁ ଦେଖିଲା ଦିନଠାରୁ ତା' ନାରୀ ମନର ସୂକ୍ଷ୍ମ କୋଣରେ କିପରି ଏକ ଦଂଶନ ସୃଷ୍ଟି ହୋଇଛି; କିନ୍ତୁ କାହିଁକି ? ଏହା ପୂର୍ବରୁ ତ ସେ ଏହିପରି ଆଉ କେତୋଟି ପୁରୁଷଙ୍କ ତତ୍ତ୍ୱାବଧାନରେ ରହିଥିଲା । କେବେ କାହାରି ପାଇଁ ତ ତା'ମନରେ ସାମାନ୍ୟତମ କରୁଣା ସୃଷ୍ଟି ହୋଇ ନଥିଲା । ଆଜି କିନ୍ତୁ ଜୟନ୍ତପାଇଁ ତା'ମନରେ କରୁଣା ଭରିଯାଇଛି କାହିଁକି ? ଏପରି ହେଲେ ତ ରୁଦ୍ରପ୍ରସାଦଙ୍କର ଉଦ୍ଦେଶ୍ୟ ସଫଳ ହେବ ନାହିଁ । ରୁଦ୍ରପ୍ରସାଦ ଯେଉଁଥି ପାଇଁ ତାକୁ ନିଯୁକ୍ତି ଦେଇଛନ୍ତି, ସେ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରି ପାରିବ ନାହିଁ । ତା'ହେଲେ? ତା'ହେଲେ ଶେଷ ପରିଣତି କ'ଣ ହେବ ମାଳବିକାର ?

ଜୟନ୍ତ ବାଥ୍‌ରୁମ୍‌ରୁ ବାହାରିଲା । ସେ ଦେଖିଲା ମାଳବିକା ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିବା ଟଙ୍କାପଇସାଗୁଡ଼ାକୁ ସଜାଡ଼ି ଟେବୁଲ୍ ଉପରେ ରଖୁଛି । ବାଥ୍‌ରୁମ୍‌ର ଦରଜା ଖୋଲିବା ଶବ୍ଦ ଶୁଣି ଶାନ୍ତ ଆଖିରେ ଚାହିଁଲା ତା' ଆଡ଼େ ।

ମାଳବିକାର ଚାହାଣି ହୃଦୟସ୍ପର୍ଶୀ ମନେହେଲା ଜୟନ୍ତକୁ । ସେ ଧୀରେ ଧୀରେ ପାଦ ଗଣିଲା ପରି ମାଳବିକା ଚାହାଣି ସହିତ ଚାହାଣି ମିଶେଇ ଆଗେଇ ଆସି ବସିଲା ସୋଫା ଉପରେ । ମାଳବିକା ନୀରବରେ ପ୍ଲେଟ୍‌ରେ ବ୍ରେକ୍‌ଫାଷ୍ଟ ସଜାଡ଼ି ବଢ଼ାଇଦେଲା ଜୟନ୍ତ ଆଡ଼କୁ । ସେ ବି ନୀରବରେ ଖାଇଗଲା ସବୁ । ଘରେ ଗମ୍ଭୀର ନୀରବତା ।

ଟି' ପଟ୍‌ରୁ ଚା' ଢାଳି ତିଆରି କରିଦେଲା ।

ନିଃଶବ୍ଦରେ ଚା' ପିଆଲା ଖାଲି କରିଦେଲା ଜୟନ୍ତ ।

କାହାରି ମୁହଁରେ ଭାଷା ନଥିଲା; କିନ୍ତୁ ଦୁଇଜଣଙ୍କ ଚାହାଣିରେ ଭରି ରହିଥିଲା ଅନେକ ଅନେକ ଆନ୍ତରିକତା । ମନେ ହେଉଥିଲା, ମୁହଁ ନ ଖୋଲିବି ଆଖିର ଭାଷାରେ ସେମାନେ ପରସ୍ପରକୁ ବୁଝିବାକୁ ଚେଷ୍ଟା କରୁଛନ୍ତି । ସେହି ନୀରବ ନିସ୍ତବ୍ଧତା ଭିତରେ ଆହୁରି କେତେ ସମୟ କଟିଥାଆନ୍ତା କେଜାଣି, ଘରର ଦରଜା ଠେଲି ବୟଟା ଆଉ ଥରେ ଭିତରକୁ ପଶିଆସିଲା । ମାଳବିକାକୁ ଲକ୍ଷ୍ୟ କରି କହିଲା : ମୋନାଲିସା ମେମ୍‌ସାବ ଡାକୁଛନ୍ତି । ଟିକିଏ ଶୁଣି ଆସିବେ ।

ମାଳବିକା ସେହିପରି ନୀରବରେ ଉଠି ଚାଲିଗଲା ।

ବୟ କପ୍ ଡିସ୍‌ଗୁଡ଼ିକ ଗୋଟେଇ ଟ୍ରେ' ଉପରେ ଥୋଇ ଘରୁ ବାହାରି ଚାଲିଗଲା ।

ଗଭୀର ନିସ୍ତବ୍ଧତା ଭିତରେ ଏକା ବସି ରହିଲା ଜୟନ୍ତ । ଚାହାଣିଟା ତା'ର ଧୀରେ ଧୀରେ ଲମ୍ବି ଯାଉଥିଲା କାଚବାଡ଼ ଅତିକ୍ରମ କରି ଦୂରର ସେହି ଶୁଭ୍ର ପ୍ରାଚୀରମାଳା ଆଡ଼େ ହିମାଳୟର ସେହି ବରଫ ବନ୍ଧ ଯେପରି ଅପୂର୍ବ ଶୋଭା ଧାରଣ କରିଛି । ମେଘ ନାହିଁ ।

ଆକାଶ ନିର୍ମଳ । ସୂର୍ଯ୍ୟ କିରଣରେ ହିମାଳୟର ଅନ୍ନପୂର୍ଣ୍ଣା ରେଞ୍ଜଟା ସତେ ଯେପରି ଜୀବନ୍ତ ହୋଇ ଉଠିଛି । ଜୟନ୍ତ ଠିଆହୋଇପଡ଼ିଲା । ଆଗେଇ ଯାଉଥିଲା ପ୍ରକୃତିର ଜୀବନ୍ତ ଅବଦାନ ପ୍ରାଣଭରି ଅନୁଭବ କରିବା ପାଇଁ ।

କିନ୍ତୁ ସେଇ ମୁହୂର୍ତ୍ତରେ ତା'ର ଧ୍ୟାନଭଙ୍ଗ ହେଲା । ଘରର ଦରଜା ଖୋଲିବାର ଶବ୍ଦ ତା' କାନରେ ବାଜିଲା ଏବଂ ପର ମୁହୂର୍ତ୍ତରେ ତା' ଆଖି ଆଗରେ ଭାସିଉଠିଲା ଯେଉଁ ମୁହଁଟି, ସେ ମୁହଁ । ହଁ, ସେ ମୁହଁର ଦର୍ଶନ ପାଇଁ ଜୟନ୍ତ ବହୁ ପ୍ରତୀକ୍ଷିତ ।

: ରୋଜି ! ରୋଜି !! ତମେ ଆସିଛ ?

ଜୟନ୍ତ ଆଗେଇ ଯାଉଥିଲା ରୋଜିକୁ ସ୍ୱାଗତ ଜଣାଇବାକୁ । କିନ୍ତୁ ବିଜୁଳି ଝଟକ ପରି ପର ମୁହୂର୍ତ୍ତରେ ଲୁଚିଗଲା ରୋଜିର ମୁହଁ । ଜୟନ୍ତ କିନ୍ତୁ ଛାଡ଼ିବାର ପାତ୍ର ନୁହେଁ । ଦରଜା ଖୋଲି ସେ ଛୁଟିଗଲା ବାହାରକୁ । ଦେଖିଲା ରୋଜି ଛନ୍ଦାୟିତ ଭଙ୍ଗୀରେ ଆଗେଇ ଯାଉଛି ତା' ଘରଆଡ଼େ । ଜୟନ୍ତ ପଛେ ପଛେ ଚାଲିଲା । ରୋଜି ସହିତ ଖୋଲାଖୋଲି ଭାବରେ ଦୁଇପଦ କଥାହେବାକୁ ସେ ଚାହେଁ । ଏଇ ବିଦେଶ ଭୂଇଁରେ ଯେଉଁ କେତେଜଣ ତା' ଚାରି ପାଖରେ ଘେରିରହିଛନ୍ତି, କାହାରିକୁ ଜୟନ୍ତ ବିଶ୍ୱାସ କରିପାରୁନାହିଁ । ସମସ୍ତେ ତା'ର ଅନ୍ତରଙ୍ଗ ହେବାକୁ ଚେଷ୍ଟା କରୁଛନ୍ତି ସତ, ମାତ୍ର ସେହି ଅନ୍ତରଙ୍ଗତା ଭିତରେ କେତେ ଯେ ଆନ୍ତରିକତା ଅଛି ଜୟନ୍ତ ତାହା ମାପିପାରୁନାହିଁ; କିନ୍ତୁ ରୋଜି ! ସେ ଯିଏ ହେଉ, ପ୍ରଥମରୁ ସେ ତାକୁ ଚେତାବନୀ ଶୁଣାଇଛି, ଛାଇ ପରି ସେ ତା' ପଛରେ ଲାଗିରହିଛି, ତେଣୁ....

୨୦୭ ନମ୍ବର ରୁମ୍‌ର ଦରଜା ଭିତରୁ ବନ୍ଦହୋଇଗଲା ।

ଜୟନ୍ତ କ୍ଷିପ୍ର ପାଦରେ ଆଗେଇ ଯାଇ ଦରଜା ଠେଲିଲା । ଭିତରୁ ବନ୍ଦ ହୋଇ ଯାଇଛି । ରୋଜି ତା'ହେଲେ ତାକୁ ଡାକି ନାହିଁ । ତା' ସହିତ ନିଭୃତ ଆଳାପ ରୋଜି ଚାହେଁ ନାହିଁ ? ତା' ଘରକୁ ମୁହଁଦେଖାଇବାକୁ କାହିଁକି ଯାଇଥିଲା ? ଇଂଗିତରେ ଜୟନ୍ତକୁ ଅନୁସରଣ କରିବା ପାଇଁ କହି ହଠାତ୍ ଦରଜା ବନ୍ଦ କରିଦେଲା କାହିଁକି ରୋଜି ?

ଜୟନ୍ତ ବିଫଳ ମନୋରଥ ହୋଇ ଧୀରେ ଧୀରେ ଫେରିଆସିଲା ନିଜ ରୁମ୍‌କୁ । ନା' ଆଉ ସେ ସ୍ୱପ୍ନ ପଛରେ ଧାଇଁବ ନାହିଁ । କାହିଁ ଏଠାରେ ତ ତା'ର କିଛି ଅସୁବିଧା ହେଉ ନାହିଁ । କେତେଦିନ ମଉଜରେ କଟାଇପାରିଲେ କ୍ଷତି କ'ଣ । ମାଳବିକା ଏକମାତ୍ର ତା' ସୁଖଦୁଃଖରେ ସମାନ ଭାଗ ନେବା ପାଇଁ ଆଗେଇ ଆସିଛି । ଆସୁ କ୍ଷତି କ'ଣ !

ସେତିକିବେଳେ ମାଳବିକା ହସି ହସି ଘର ଭିତରେ ପ୍ରବେଶ କଲା । କହିଲା, ଜାଣନ୍ତି ମିଷ୍ଟର ମହାପାତ୍ର, ମୋନାଲିସା ଆଜି ରାତିରେ ଆପଣଙ୍କ ପାଇଁ ଗୋଟାଏ ଗ୍ରାଣ୍ଡ ପ୍ରୋଗ୍ରାମର ଆୟୋଜନ କରିଛି । ସୋନାଲି, ଆପଣ, ମୁଁ ଆଉ ମୋନାଲିସା । ଆମେ ହେଲେ ଚାରି । ଆଜି ରାତିରେ ଆମେ ପୋଖରା ଲେକ୍‌ରେ ନୌକା ବିହାର କରିବା । ପୂର୍ଣ୍ଣିମା ରାତ୍ରିର ପୋଖରା ଲେକ୍‌ର ସୌନ୍ଦର୍ଯ୍ୟ ଆପଣ ଜୀବନରେ ଭୁଲି ପାରିବେ ନାହିଁ । କି ଯେ ମଜା ହେବ ସେଠାରେ ! ପ୍ରକୃତରେ ଆପଣଙ୍କର ଆଜିର ସ୍ମୃତି ଜୀବନର ଗଚ୍ଛିତଧନ ହୋଇ ରହିବ ।

ମାଳବିକା ଉଚ୍ଛ୍ୱସିତ ଆନନ୍ଦରେ ଏତେ କଥା କହି ସାରିବା ପରେ ମଧ୍ୟ ଜୟନ୍ତର ଗାମ୍ଭୀର୍ଯ୍ୟ କଟି ନଥିଲା । ମାଳବିକାର ପ୍ରସ୍ତାବଟା ଯେପରି ତା' ପ୍ରାଣରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରି ପାରି ନଥିଲା । ମାଳବିକାର ମନଟା ଯେପରି ଗୋଟାଏ ଶକ୍ତ ଆଘାତ ପାଇଲା ।

: ମିଷ୍ଟର ମହାପାତ୍ର ! ମାଳବିକାର ସ୍ୱର କର୍କଶ ହୋଇ ଉଠିଥିଲା ।

: ଉଁ ହୁଁ, ମିଷ୍ଟର ମହାପାତ୍ର ନୁହେଁ; ଜୟନ୍ତ, ମୋତେ ତୁମେ ଏଇ ମୁହୂର୍ତ୍ତରୁ ଜୟନ୍ତ ବୋଲି ଡାକିବ, ଜୟନ୍ତ ଶାନ୍ତ ସ୍ୱରରେ କହିଲା ।

ମାଳବିକା ଚକିତ ନୟନରେ ଅନେକ ବେଳଯାଏ ଅନାଇ ରହିଲା ଜୟନ୍ତ ମୁହଁକୁ । ତା'ପରେ ଧୀରେ ଧୀରେ ଆଗେଇ ଯାଇ ବସିପଡ଼ିଲା ସୋଫା ଉପରେ ଜୟନ୍ତକୁ ଲାଗି । ଅସଂଲଗ୍ନ ସ୍ୱରରେ କହିଲା : ତମେ ସତ କହୁଛ ଜୟନ୍ତ, ମୁଁ ତୁମକୁ ଜୟନ୍ତ ବୋଲି ଡାକିବି ! ତମେ ଜୟନ୍ତ ମୋ ମନର କଥା ବୁଝିପାରିଛ ?

ଜୟନ୍ତ ମାଳବିକାକୁ ନିଜ କୋଳଉପରକୁ ଟାଣି ନେଇ କହିଲା, ହଁ ମାଳା, ମୁଁ ତୁମକୁ ଭଲପାଇ ବସିଛି । ମୁଁ ଚାହେଁନି ଅନ୍ୟ କାହାରି ସହିତ ମିଶି ପୋଖରା ଲେକ୍‌ରେ ନୌକା ବିହାର କରିବା ପାଇଁ । ମୁଁ ଚାହେଁ ତୁମକୁ । ତୁମେ ଆଉ ମୁଁ । ମୁକ୍ତ ଆକାଶ ତଳେ, ଆମେ ଡେଣାମେଲି ଉଡ଼ି ବୁଲିବା । ବନ୍ଦ ଘରର ଚାରିକାନ୍ଥ ଭିତରେ ଆମେ ଆମର ଏହି ପ୍ରାଣ ପ୍ରାଚୁର୍ଯ୍ୟକୁ ଛିନ୍‌ଭିନ୍ କରି ନଷ୍ଟ କରି ପାରିବା ନାହିଁ । ଆସ ମାଳା, ସମସ୍ତଙ୍କ ସାମ୍‌ନାରେ ଆମେ ଆଗେଇ ଯିବା ଦୂରକୁ । ଯେଉଁଠି.....

ମାଳବିକା ଜୟନ୍ତକୁ ଆଉ କୁହାଇ ଦେଲା ନାହିଁ । ତା' ପାଟିରେ ହାତ ଚାପି କଥା ବନ୍ଦ କରାଇ ଦେଲା । ଜୟନ୍ତ ସହିତ ଆହୁରି ନିବିଡ଼ ହେବାକୁ ଚେଷ୍ଟାକରି ବ୍ୟଥିତ କଣ୍ଠରେ କହିଲା, : ମୋତେ ଏତେ ବଡ଼ ଆଶା ଦିଅ ନାହିଁ ଜୟନ୍ତ, ସୁଖ ମୋ' ଜୀବନର ଶତ୍ରୁ । ସୁଖ ମୋତେ ସହିପାରେନାହିଁ । ମୁଁ ଚାହେଁ କେବଳ ତମର ସେବାରେ ନିୟୋଜିତ ହୋଇ ରହିବାପାଇଁ । ଏହାଠାରୁ ବେଶି କିଛି ମୁଁ ଆଶା କରେ ନାହିଁ ଜୟନ୍ତ । ମୋତେ ଏହାଠାରୁ ଆଉ ଅଧିକ ପ୍ରତିଶ୍ରୁତି କିଛି ଦିଅ ନାହିଁ ।

: କିନ୍ତୁ ମାଳା....

: ଜୟନ୍ତର କଥା ଶେଷ ହେଲା ନାହିଁ । ଘରର ଟେଲିଫୋନ୍‌ଟା ବାଜିଉଠିଲା । ଜୟନ୍ତ ଚାହିଁଲା ମାଳବିକା ମୁହଁକୁ । ମାଳବିକା ଚାହିଁଲା ଜୟନ୍ତ ମୁହଁକୁ । ଶେଷରେ ଜୟନ୍ତ ଉଠିଯାଇ ରିସିଭର ଉଠାଇ କାନରେ ଦେଲା, ହ୍ୟା..................ଲୋ ।

ଅପର ପ୍ରାନ୍ତରୁ ଏକ ଉଚ୍ଛ୍ୱସିତ ହାସ୍ୟଧ୍ୱନି ଶୁଣାଗଲା । ଜୟନ୍ତର ଅତି ପରିଚିତ ସେ କଣ୍ଠ; କେବଳ ହାସ୍ୟ ଆଉ ହାସ୍ୟର ତରଙ୍ଗ ।

: ହ୍ୟାଲୋ, ହ୍ୟାଲୋ, ରୋଜି ! ଜୟନ୍ତ କଣ୍ଠସ୍ୱର ଚଞ୍ଚଳ ହୋଇଉଠିଥିଲା ।

: ମୋତେ ତା'ହେଲେ ଚିହ୍ନି ପାରିଛ ବନ୍ଧୁ । ବେଶ୍ । ମୁଁ କେବଳ ତୁମକୁ ମନେ କରେଇ ଦେଉଛି ଯେ, ମୁଁ ତମ ପଛେ ପଛେ ରହିଛି ।

: କିନ୍ତୁ ରୋଜି....

ଅପର ପ୍ରାନ୍ତରୁ ଟେଲିଫୋନ୍ ଲାଇନ୍‌ଟା ହଠାତ୍ କଟିଯିବାର ଶବ୍ଦ ହେଲା । ମାଳବିକା ଉଠିଆସିଥିଲା ଜୟନ୍ତ ପାଖକୁ । ରିସିଭରଟା ଜୟନ୍ତ ହାତରୁ କାଢ଼ିନେଇ କ୍ରେଡ଼େଲ ଉପରେ ରଖୁ ରଖୁ ମାଳବିକା କହିଲା, ରୋଜି, ରୋଜି କିଏ ?

: ରୋଜି । ରୋଜିକୁ ତମେ ଚିହ୍ନି ନାହଁ ମାଳା ? ସେ ପଣ୍ଡା... ଜୟନ୍ତ କହି ଦେବାକୁ ଯାଉଥିଲା ରୋଜି ମିଷ୍ଟର ତରଫଦାରଙ୍କ ବାଗ୍‌ଦତ୍ତା, ତାକୁ ତମେ ଚିହ୍ନି ନାହଁ? କିନ୍ତୁ କ'ଣ ଭାବି ସେ ପ୍ରସଙ୍ଗ ବଦଳାଇ କହିଲା, ସେଇ ରୋଜି, ଯେଉଁ ରୋଜି କଥା ତମୁକୁ ମୁଁ ପଚାରିଥିଲି କାଠମାଣ୍ଡୁରେ । ତମେ କହିଥିଲ, ରୋଜି ବୋଲି ଜଣେ ନର୍ତ୍ତକୀ ନାଁ ତମେ ଶୁଣିଛ ।

: ଏ ରୋଜି କ'ଣ ସେଇ ରୋଜି ଜୟନ୍ତ ?

: ଏ କିନ୍ତୁ ନର୍ତ୍ତକୀ ରୋଜି ନୁହେଁ । ଏ ରୋଜି ସହିତ ପରିଚୟ ମୋର କାଠମାଣ୍ଡୁରେ ।

: କାଠମାଣ୍ଡୁରେ ରୋଜି ସହିତ ତମର ପରିଚୟ ହେଲା ? ମାଳବିକା ହସିଉଠିଲା ଜୋର୍‌ରେ । ହେଉ ବୁଝିଲି ଏଥର । ଆଜି କ'ଣ ଏଇଠି ବସି ରହିବା ନା ବାହାରିବା କୁଆଡ଼େ ?

: ସେ କଥା ତ ତମେ କହିବ ।

: ମୁଁ କହିବି ? ମୋ କଥା ତମେ ଶୁଣିବ ଜୟନ୍ତ !

: ଅଲବତ୍ । ସେମାନଙ୍କ ତରଫରୁ ତମେ ମୋର ଗାଇଡ୍, ଆଉ ମୋ ତରଫରୁ ତମେ ମୋରି ପ୍ରିୟବାନ୍ଧବୀ । ଜୟନ୍ତ ସ୍ମିତହସି କହିଲା ।

: ମୋତେ ତମେ ପରିହାସ କରୁଛ ଜୟନ୍ତ । ମାଳବିକାର ସ୍ୱର କାରୁଣ୍ୟରେ ଭରି ଉଠିଥିଲା ।

: ନା, ପରିହାସ ନୁହେଁ ମାଳା । ଜୟନ୍ତ ମାଳବିକାର ହାତଧରି ଦରଜା ଆଡ଼କୁ ଟାଣି ନେଉ ନେଉ କହିଲା, ପରିହାସ ମୁଁ ଜୀବନରେ କେବେ କାହାରିକୁ କରି ନାହିଁ । ଆଜି ତମକୁ ବି ନୁହେଁ । ଚାଲ କୁଆଡ଼ୁ ଟିକିଏ ବୁଲି ଆସିବା । ଏଇ ଚାରିକାନ୍ଥ ଆଉ ଭଲଲାଗୁ ନାହିଁ ।

ମାଳବିକା କିଛି ପ୍ରତିବାଦ କଲା ନାହିଁ । ଘରୁ ବାହାରି, କହିଲା, କୁଆଡ଼େ ଯିବା ।

: ପୋଖରା ଲେକ୍ ।

: ପୋଖରା ଲେକ୍‌ର ସୌନ୍ଦର୍ଯ୍ୟ ବାସ୍ତବିକ ମନୋରମ । ଚାରି ପାଖରେ ପାହାଡ଼-ପର୍ବତମାଳା । ଦୂରରେ ହିମାଳୟର ତୁଷାର ଶୃଙ୍ଗ । ମନଲୋଭା, ହୃଦୟ ସ୍ପର୍ଶୀ ।

ଲେକ୍ ଭିତରେ ଅସଂଖ୍ୟ ନୌକା । ଜାତିଜାତିକା ଆରୋହୀ । ମାଳବିକା ଗୋଟିଏ ନୌକା ଆଡ଼କୁ ହାତ ବଢ଼ାଇ କହିଲା, ଦେଖୁଛ, ଜୟନ୍ତ ସେଇ ନୌକା ଭିତରକୁ ଚାହିଁଲା ।

ଜୟନ୍ତ ଦେଖିଲା, ନୌକାଟି ଚାଳକ ବିହୀନ । ନୌକା ଭିତରେ ଦୁଇଟି ତରୁଣ ତରୁଣୀ ବିବସ୍ତ୍ର ହୋଇ ଶୋଇ ରହିଛନ୍ତି । ଉପରେ ନୀଳ ଆକାଶ, ତଳେ ନୀଳ ଜଳ, ଚାରି ପାଖରେ ସବୁଜ ପାହାଡ଼ । ତରୁଣ ତରୁଣୀ ଦୁଇଟି ନିର୍ବିକାର । ନୌକା ନଙ୍ଗର ବିହୀନ ।

ଅକସ୍ମାତ୍ ଜୟନ୍ତ ପ୍ରାଣରେ କିପରି ଏକ ଶିହରଣ ସୃଷ୍ଟି ହୋଇ ତରଙ୍ଗାୟିତ ହୋଇ ଉଠିଲା । ସେ ଚାହିଁଲା ମାଳବିକା ମୁହଁକୁ । ଆହୁରି ସୁନ୍ଦର, ଆହୁରି ମନୋହର ଦିଶିଲା ମାଳବିକା । ଜୟନ୍ତ କ'ଣ କହିବାକୁ ଯାଉଥିଲା ।

ମାଳବିକା ହଠାତ୍ ଦୂର ପାହାଡ଼ ଉପରକୁ ହାତ ଦେଖାଇ କହିଲା, ସେଇ ପାହାଡ଼ ଉପରେ ବହୁତ ଛୋଟ ଛୋଟ କଟେଜ୍ ଅଛି । ସେଇଠି ଗୋଟିଏ କଟେଜ୍‌ରେ ବାସ କରନ୍ତି ତରୁଣ-ତରୁଣୀ । ଅନେକ ଦିନ ଧରି ସେମାନେ ରହିଛନ୍ତି ସେଇ ନିଛାଟିଆ କଟେଜ୍‌ରେ । ସେମାନଙ୍କର ନିଶା ହେଲା, କଟେଜ୍‌ରୁ ବାହାରି ନୌକାରେ ଉଠିବା । ବିବସ୍ତ୍ର ହୋଇ ଦୁହେଁ ଆଲିଙ୍ଗନବଦ୍ଧ ହୋଇ ନଙ୍ଗରହୀନ ନୌକାରେ ଭାସିଯାଆନ୍ତି ଦିଶାହରା ହୋଇ । ସେଇ ଦୁଇ ତରୁଣ ତରୁଣୀ ସତରେ କେଡ଼େ ସୁଖୀ ସେମାନେ !

ଜୟନ୍ତ ହଠାତ୍ କିଛି ଉତ୍ତର ଦେଇପାରିଲା ନାହିଁ । ସେ ଅଦୂରର ଆଉ ଏକ ନୌକା ଆଡ଼େ ଚାହିଁ ଦେଖୁଥିଲା ଗୋଟିଏ ହିପିଣୀର ଅର୍ଦ୍ଧନଗ୍ନ ଶରୀର । ନୌକା ଉପରେ ବସି ହ୍ରଦର ନୀଳଜଳ ଟୋକି ସେ ଦେହରେ ଢାଳୁଛି । ପ୍ରକୃତି କୋଳରେ ଏଠି ସମସ୍ତେ ଯେପରି ମୁକ୍ତ ବିହଙ୍ଗ । ଆବରଣ ଏଠି ଶୃଙ୍ଖଳ । ହିପିଣୀଟି ପ୍ରକୃତି ସହିତ ମିଶିଯାଇ ଆଦିମଳଗ୍ନକୁ ଫେରିଯାଇଛି ।

ଜୟନ୍ତ ଦେଖୁଥିଲା ଲେକ୍‌ର ଚାରିଆଡ଼େ କିପରି ଏକ ଆନନ୍ଦମୁଖର କଳରୋଳ । ସେ ମୁଗ୍ଧ ହୋଇ ଯାଉଥିଲା, ପ୍ରଲୁବ୍ଧ ହୋଇ ପଡ଼ିଥିଲା । ମାଳବିକାର ଆଉ ଟିକିଏ ପାଖକୁ ଲାଗିବସି କହିଲା, ପାହାଡ଼ ଉପରର ଏହିସବୁ କଟେଜ୍ କ'ଣ ଭଡ଼ାରେ ମିଳେ?

: ହଁ ଜୟନ୍ତ, ଏଗୁଡ଼ିକ ଭଡ଼ା ଦେବା ପାଇଁ ତିଆରି ହୋଇଛି ।

: ମୋ ପାଇଁ ଗୋଟିଏ ବନ୍ଦୋବସ୍ତ କରି ଦେଇପାରିବ ମାଳା ? ମୋର ଏଇ ଜାଗା ଛାଡ଼ି ଆଉ କୁଆଡ଼େ ଯିବାକୁ ଇଚ୍ଛା ହେଉ ନାହିଁ ।

ମାଳା କିନ୍ତୁ ଜୟନ୍ତ କଥାରେ ଉତ୍ସାହ ପ୍ରକାଶ କରି ପାରିଲା ନାହିଁ । ସେ ପ୍ରସଙ୍ଗ ବଦଳାଇବାକୁ ଯାଇ କହିଲା, ଜାଣ ଜୟନ୍ତ, ଲେକ୍‌ର ଏହି ନୀଳଜଳ କୌଣସି ଦିନ ବଢ଼େ ନାହିଁ କିମ୍ବା କମେ ନାହିଁ । ପୋଖରୀ ଲେକ୍‌ର ଏହା ଗୋଟିଏ ବିଶେଷତ୍ୱ ।

ଜୟନ୍ତ କହିଲା, ମୋ ପ୍ରଶ୍ନର ଉତ୍ତର ତମ୍ଭେ କିନ୍ତୁ ଏଡ଼େଇ ଯାଉଛ ମାଳା ।

ମାଳବିକା ମୁହଁରେ କିପରି ଏକ କଠିନ ହସ ଫୁଟିଉଠିଲା କହିଲା, ସବୁ ପ୍ରଶ୍ନର ଉତ୍ତର କ'ଣ ସବୁବେଳେ ମିଳେ ଜୟନ୍ତ ?

: ହୁଏତ ମିଳେ ନାହିଁ । କିନ୍ତୁ ମୋ ପ୍ରଶ୍ନର ଉତ୍ତର ମୁଁ ତମଠାରୁ ଆଶା କରୁଛି ।

: ଆଜି କିନ୍ତୁ କର ନାହିଁ ଜୟନ୍ତ । ଯଦି କେବେ ଜୀବନରେ ସ୍ୱାଧୀନତା ପାଏ, ତା'ହେଲେ ସବୁ ପ୍ରଶ୍ନର ଉତ୍ତର ମୁଁ ତୁମକୁ ଦେଇ ପାରିବି ।

: ହୁଁ, ବୁଝିଲି । ଆଜି ତା'ହେଲେ ଫେରିଯିବା ଚାଲ ।

: ନା' ଜୟନ୍ତ, ଆଜି ଏତେ ଶୀଘ୍ର ଫେରିଯିବା ନାହିଁ । କୂଳରେ ନୌକା ଭିଡ଼େଇ ଆମେ ପାହାଡ଼ ଉପରକୁ ଉଠିବା । ସେଠାରେ ନିରୋଳାରେ ମଣିଷର ଅଲକ୍ଷରେ ବସି ରହିବା ଅନେକ ବେଳ । କେହି କାହାରି ସହିତ କଥା କହିବା ନାହିଁ । କେବଳ ନିଶ୍ୱାସ

ପ୍ରଶ୍ୱାସର ଶବ୍ଦ ବାରି ପ୍ରକୃତିର ସୌନ୍ଦର୍ଯ୍ୟ ଉପଲବ୍ଧି କରିବା । ତମେ କାହିଁକି ଯେ ଦେଖାଦେଲ ମୋ ଚଲାପଥରେ....

ମାଳବିକା ଆଖିରେ ଲୁହ ଜମିଆସିଲା । କଣ୍ଠରୁଦ୍ଧ ହୋଇ ଉଠିଲା । ଜୟନ୍ତ କୋଳରେ ମୁଣ୍ଡରଖି ସେ ଆଖି ବୁଜିଦେଲା ।

ନୀରବତା ଭିତରେ ନୌକା ଭାସି ଚାଲିଥିଲା । ଧୀର ତରଙ୍ଗ ମାଳା ନୌକାରେ ମୁଣ୍ଡପିଟୁଥିଲେ । ଜୟନ୍ତ ଆକାଶକୁ ଚାହିଁ ଭାବୁଥିଲା ତା'ର ଅତୀତ ଆଉ ବର୍ତ୍ତମାନ । କିନ୍ତୁ ଭବିଷ୍ୟତ ? ମାଝି ଡାକିଲା, ସାବ୍, ତରୀ କୂଳରେ ଭିଡ଼ିଛି ।

ଜୟନ୍ତ ପ୍ରକୃତିସ୍ଥ ହୋଇ ଦେଖିଲା, ମାଳବିକା ତା'ରି କୋଳରେ ମୁଣ୍ଡରଖି ଶୋଇଛି ।

ମାଳବିକା ମୁଣ୍ଡରେ ହାତବୁଲେଇ ଶାନ୍ତ ସ୍ୱରରେ ଡାକିଲା, ମାଳା, ଉଠ । ଆମେ କୂଳରେ ପହଞ୍ଚିଛେ ।

ମାଳା ମୁଣ୍ଡଟେକି ଚାହିଁଲା ।

ଜୟନ୍ତ ଦେଖିଲା ମାଳାର ଆଖି ଅଶ୍ରୁସିକ୍ତ ।



ଠିକ୍ ଚାରିଟା ବାଜି ପନ୍ଦର ମିନିଟ୍‌ରେ ସୋନାଲ ଆସି ପହଞ୍ଚିଲା । ଜୟନ୍ତ ମନେ ମନେ ପ୍ରତିକ୍ଷା କରି ବସି ରହିଥିଲା । ସୋନାଲ ପଛେ ପଛେ ମୋନାଲିସା । ଦୁହେଁ ଆସି ଦେଖିଲେ ଜୟନ୍ତ କାଚଝରକା ଖୋଲି ବାହାରକୁ ଚାହିଁ ଠିଆହୋଇଛି । ମାଳବିକା ଘରେ ନାହିଁ । ଜୟନ୍ତ ଫେରି ଆସି ସୋଫାରେ ବସିଲା । ମୋନାଲିସା ପଚାରିଲା, ପୋଖରା ଲେକ୍ କିପରି ଲାଗିଲା ?

: ଚମତ୍କାର । ସେଇ ଶୋଭା ଗନ୍ତାଘରର ବର୍ଣ୍ଣନା ପରେ ଦେଲେ ଚଳିବ । ବର୍ତ୍ତମାନ ମୋ ସମ୍ବନ୍ଧରେ ମୁଁ କିଛି ଜାଣିବାକୁ ଚାହେଁ । ଆଶା କରୁଛି ମିସ୍ ସୋନାଲି ମୋତେ ଆଶାର ବାଣୀ ଶୁଣାଇବେ ।

: ନିଶ୍ଚୟ ମିଷ୍ଟର ମହାପାତ୍ର । ଆପଣଙ୍କ ସମ୍ବନ୍ଧରେ ମୋ କଥା ଆଶାର ହେବ କି ଯନ୍ତ୍ରଣାର ହେବ ମୋତେ ଜଣାନାହିଁ । ଆପଣଙ୍କ ଭାରତବର୍ଷରୁ ଯେଉଁ ଦୁଇଜଣ କ୍ରାଇମବ୍ରାଞ୍ଚର ଅଫିସର ଆସିଥିଲେ, ସେମାନେ ବର୍ତ୍ତମାନ ସୁଦ୍ଧା କାଠମାଣ୍ଡୁରେ ଅଛନ୍ତି । ସେମାନଙ୍କର ବିଶ୍ୱାସ ଆପଣଙ୍କୁ ସଙ୍ଗରେ ଧରି ସେମାନେ ଭାରତବର୍ଷକୁ ଫେରିଯିବେ । ସୋନାଲି ସହଜ ସ୍ୱରରେ କହିଲା ।

: ବୁଝିଲି, ତେବେ ଏତିକି ବୁଝାଇ ଦେଲେ ମୁଁ କୃତାର୍ଥ ହୁଅନ୍ତି ଆପଣମାନେ ସମସ୍ତେ ମିଶି ମୋତେ କାହିଁକି ଘଣ୍ଟଘୋଡ଼େଇ ରଖିଛନ୍ତି । ମୋର ଉପକାର କରିବା ପାଇଁ ନା ନିଜେ ଉପକୃତ ହେବା ପାଇଁ ।

: ଆପଣଙ୍କର ଏପରି ପ୍ରଶ୍ନ କିନ୍ତୁ ବଡ଼ ଜଟିଳ ମିଷ୍ଟର ମହାପାତ୍ର । ଆପଣ ମାଳବିକାର ଅନ୍ତରଙ୍ଗ ବନ୍ଧୁ, ସେଇ ଦୃଷ୍ଟିରୁ ଯେତେଟା ସମ୍ଭବ ଆମେ ଆପଣଙ୍କ ପାଇଁ....

: ମିଥ୍ୟା! ମିଥ୍ୟା!! ସବୁ ଯେପରି ମିଥ୍ୟାର ଆବରଣ ଭିତରେ ଲୁଚିରହିଛି । ମୁଁ ବୁଝିପାରୁଛି ମୋ ବିରୋଧରେ ରୀତିମତ ଗୋଟାଏ ଷଡ଼ଯନ୍ତ୍ର ଚାଲିଛି । ଆପଣମାନେ ମୋତେ କଣ୍ଢେଇ ପରି ନଚାଉଛନ୍ତି । ମୋର ଭବିଷ୍ୟତ ପୋଡ଼ି ଜାଳି ଛାରଖାର କରି ଦେବାପାଇଁ ସମସ୍ତେ ଯେପରି ଶପଥ ବାକ୍ୟ ପାଠ କରିଛନ୍ତି । ଜୟନ୍ତର ସ୍ୱର କଠିନ ହୋଇ ଉଠିଥିଲା ।

: ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର, ଆମେ ନିମିତ୍ତମାତ୍ର । ଆପଣଙ୍କଠାରେ ଆମର କାହାରି ସ୍ୱାର୍ଥ ନାହିଁ; କେବଳ ମାଳବିକା ପାଇଁ...

ସେତିକିବେଳେ ମାଳବିକା ଘରେ ପଶିଲା । ମୋନାଲିସାର କଥା ଅଧା ରହିଗଲା । ସୋନାଲି ମାଳବିକାର ଗମ୍ଭୀର ମୁହଁଆଡ଼େ ଚାହିଁ ହାଲ୍କା ସ୍ୱରରେ କହିଲା, ତୁ ଠିକ୍ ସମୟରେ ଆସି ପହଞ୍ଚିଯାଇଛୁ ମାଳା । ତୋ' ମନର ମଣିଷକୁ ସମ୍ଭାଳେ । ସେ ଆମକୁ ସହ୍ୟ କରି ପାରୁ ନାହାନ୍ତି ।

ମାଳବିକା ସୋନାଲି କଥା ଆଡ଼େ କାନ ନ ଦେଇ ବିଚଳିତ କଣ୍ଠରେ କହିଲା ! ଆଜି ଏଠାକୁ ରୁଦ୍ରପ୍ରସାଦ ଆସିଛନ୍ତି ।

ସୋନାଲି କହିଲା : ହଁ । ଆମେ ଏକା ପ୍ଲେନ୍‌ରେ ଆସିଲୁ ।

: ସେ ମୋତେ ଜୟନ୍ତ କଥା ପଚାରୁଥିଲେ ।

: ତୋତେ ନ ପଚାରି ଆଉ କ'ଣ ମୋତେ ପଚାରି ଥାଆନ୍ତେ ? ମୋନାଲିସା ପରିହାସ କଣ୍ଠରେ କହିଲା ।

: ତମେ କ'ଣ ଉତ୍ତର ଦେଲ ? ଜୟନ୍ତ ଗମ୍ଭୀର ହୋଇ ପଚାରିଲା ।

: ସେ ଆପଣଙ୍କ ସହିତ ଦେଖା କରିବାକୁ ଆସିଛନ୍ତି । କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରିବେ, ମାଳବିକା ଉତ୍ତରଦେଲା ।

: ବେଶ୍, ମୋତେ ତାଙ୍କ ପାଖକୁ ନେଇଚାଲ ।

: ସେ ଆପଣଙ୍କୁ ଡାକି ପଠାଇବେ ।

: ନା ମାଳ୍‌ବିକା ମୋତେ ଏଇକ୍ଷିଣା ତୁମେ ନେଇଚାଲ । ମୁଁ ଆଉ ଡେରି ସହି ପାରୁ ନାହିଁ । ମନେ୍‌ହେଉଛି ମୁଁ ପାଗଳ ହୋଇଯିବି ।

ସୋନାଲି ହସିଲା । କହିଲା, ଆପଣଙ୍କୁ ପାଗଳ ହେବାକୁ ଆମେ ଦେବୁ ନାହିଁ ମିଷ୍ଟର ମହାପାତ୍ର; କାରଣ ଆପଣଙ୍କ ସହିତ ଆମର ସ୍ୱାର୍ଥ ଜଡ଼ିତ ହୋଇ ରହିଛି ।

: ମାନେ ?

: ଆମର ବାନ୍ଧବୀ ମାଳବିକା । ତା'ର ସ୍ୱାର୍ଥ ଯେ ଆମର ସ୍ୱାର୍ଥ । ଏତିକି ଆପଣ ବୁଝିପାରୁ ନାହାନ୍ତି ?

: ପରିହାସର ଏ ବେଳ ନୁହେଁ ମିସ୍ ମୋନାଲିସା । ମୁଁ କିନ୍ତୁ ଆପଣଙ୍କଠାରୁ ଅନେକ କିଛି ଆଶା କରିଥିଲି । ଭାବିଥିଲି ଆପଣ କଲିକତାରୁ ମୋ ପାଇଁ କିଛି ସଂବାଦ ଧରି ଆସିବେ; କିନ୍ତୁ ଆପଣ ଆସି ମୋତେ କାଠମାଣ୍ଡୁର ଗଳ୍ପ ଶୁଣାଉଛନ୍ତି । ସୋନାଲି ଅଳ୍ପ ହସି ଶାନ୍ତ ସ୍ୱରରେ କହିଲା, ମାଳବିକା ଆପଣଙ୍କ ସମ୍ବନ୍ଧରେ ମୋତେ ସବୁକଥା କହିଥିଲା,

ମୁଁ ବି କଲିକତାରେ ଆପଣଙ୍କ ପାଇଁ ଚେଷ୍ଟା କରିଥିଲି; କିନ୍ତୁ ମଳୟ ଚଉଧୁରୀ ମୋ ପ୍ରଶ୍ନକୁ ଏଡ଼େଇ ଗଲେ ।

: କିଏ ମଳୟ ଚୌଧୁରୀ ! ମଳୟ ସହିତ ଆପଣଙ୍କର ଦେଖାହୋଇଥିଲା ?

: ନା, ଟେଲିଫୋନ୍‌ରେ ତାଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲି । ସେ କିନ୍ତୁ ମୋତେ ଏଡ଼େଇଗଲେ । କହିଲେ ଜଣେ ଅପରିଚିତ ମହିଳା ସହିତ ବିଶେଷ କରି ଟେଲିଫୋନ୍‌ରେ ଏ ସବୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିବା ପାଇଁ ମୁଁ ପ୍ରସ୍ତୁତ ନୁହେଁ ।

: ତା'ପରେ......।

: ସେ ଟେଲିଫୋନ୍ ଛାଡ଼ି ଦେଇଥିଲେ । ମୁଁ କିନ୍ତୁ ଛାଡ଼ିବାର ପାତ୍ରୀ ନୁହେଁ । ନିଜେ ମୁଁ ଟ୍ୟାକ୍‌ସି ଚଢ଼ି ଛୁଟିଯାଇଥିଲି ତାଙ୍କ ଅଫିସ୍‌କୁ ।

: ସତ କହୁଛ ମିସ୍ ସୋନାଲି, ମୋ ପାଇଁ....

: ହଁ ଆପଣଙ୍କ ପାଇଁ, ଖାଲି ଆପଣଙ୍କ ପାଇଁ ନୁହେଁ; ଆମ ସମସ୍ତଙ୍କ ପାଇଁ ମୁଁ ଛୁଟି ଯାଇଥିଲି ମଳୟ ଚଉଧୁରୀଙ୍କ ଅଫିସ୍‌କୁ; କିନ୍ତୁ ଫଳ କ'ଣ ହେଲା ଜାଣନ୍ତି ? ମୋ ପହଞ୍ଚିବା ପୂର୍ବରୁ ସେ ଅଫିସ୍ ଛାଡ଼ି ଚାଲିଯାଇଥିଲେ । ବୋଧହୁଏ ସେ ବୁଝି ପାରିଥିଲେ ମୁଁ ଯେକୌଣସି ମୁହୂର୍ତ୍ତରେ ପହଞ୍ଚି ଯାଇପାରେ ।

ଜୟନ୍ତ ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗକରି ଉଠି ଠିଆହେଲା । ସୋନାଲି ମୁହଁକୁ କରୁଣ ଦୃଷ୍ଟିରେ କିଛି ସମୟ ଅନାଇ ରହି ଶାନ୍ତ ସ୍ୱରରେ କହିଲା, ବେଶ୍ ଗୁରୁତ୍ୱପୂର୍ଣ୍ଣ ସଂବାଦ ଆପଣ ମୋ ପାଇଁ ଆଣିଛନ୍ତି । ମଳୟ ଚଉଧୁରୀର ମନୋଭାବ ମୁଁ ବୁଝିପାରିଛି; ଆଉ ମୋ ସମ୍ବନ୍ଧରେ ମୋର କୌଣସି ପ୍ରଶ୍ନ ନାହିଁ । ଏଥର ଆପଣମାନେ କୁହନ୍ତୁ ଏହାପରେ.....

ଘରର ଟେଲିଫୋନ୍‌ଟା ବାଜିଉଠିଲା, ମୋନାଲିସା ରିସିଭର ଉଠାଇଲା । କ'ଣ କଥା ହେଲା । ଫେରି ଆସି କହିଲା......।

: ମୋତେ ଡକରା ଆସିଗଲାଣି । ଗୋଟାଏ ଗୁରତ୍ୱପୂର୍ଣ୍ଣ ମିଟିଂର ବ୍ୟବସ୍ଥା କରିବାକୁ ହେବ । ମୋନାଲିସା ଚାଲିଗଲା ।

ଇଂଗିତରେ ମାଳବିକାକୁ ମଧ ବାହାରି ଯିବାକୁ କହିଲା ସୋନାଲି । ମାଳବିକା ଚାଲିଯିବା ପରେ ସୋନାଲୀ ଧୀରେ ଧୀରେ ଆଗେଇ ଯାଇ ଠିଆହେଲା ଜୟନ୍ତ ସାମ୍‌ନାରେ । ହାତଧରି ବସାଇଦେଲା ସୋଫା ଉପରେ। କହିଲା, ଏସବୁ ପରେ ବି ଗୋଟାଏ ସଂବାଦ ଆଣିଛି ଆପଣଙ୍କ ପାଇଁ । ଏଇ ନିଅନ୍ତୁ ।

ସୋନାଲି ତା' ଭ୍ୟାନିଟି ବ୍ୟାଗ୍ ଖୋଲି ଗୋଟିଏ ଖାମ୍ ବଢ଼ାଇ ଦେଲା ଜୟନ୍ତ ହାତକୁ ।

ଜୟନ୍ତ ଖାମ୍‌ଟିକୁ ଓଲଟ ପାଲଟ କରି ଦେଖିଲା । ମୁହଁ ବନ୍ଦ ହୋଇଛି । ଉପରେ ତା'ରି ନାଁ ଲେଖାହୋଇଛି ।

ସୋନାଲି କିନ୍ତୁ ଆଉ ଠିଆହେଲା ନାହିଁ । କହିଲା, ପରେ ମୁଁ ଆପଣଙ୍କ ସହିତ ଦେଖା କରିବି ।

ଜୟନ୍ତ କିନ୍ତୁ ଖାମ୍‌ର ସେହି ଅପରିଚିତ ହସ୍ତାକ୍ଷର ଆଡ଼େ ଚାହିଁ କିଛି ବୁଝିପାରୁ ନଥିଲା । ତା' ମନ ଭିତରେ ଉତ୍ସାହର ତରଙ୍ଗ ଉଠି ନଥିଲା, ତଥାପି ସେ ଆନମନା ହୋଇ ଖାମ୍‌ଟି ଖୋଲିଲା । ଖଣ୍ଡିଏ ଚିଠି ।

ମହାଶୟ,

" ଏ ଚିଠି ପଢ଼ି ଆପଣ ଆଶ୍ଚର୍ଯ୍ୟ ହେବେ ନାହିଁ ବରଂ ସତର୍କ ହେବେ । ଆପଣଙ୍କ ବିରୋଧରେ ପ୍ରଚଣ୍ଡ ଷଡ଼ଯନ୍ତ୍ର ଚାଲିଛି । ଆପଣଙ୍କୁ ଅନୁରାଧାର ହତ୍ୟାକାରୀ କହି ଯେଉଁମାନେ ଅନ୍ୟତ୍ର ପଠାଇ ଦେଇଛନ୍ତି ସେମାନେ ଆପଣଙ୍କର ଶତ୍ରୁ । ସେମାନେ ଚାହୁଁଛନ୍ତି ଆପଣଙ୍କ ଆବିଷ୍କାରକୁ ନିଜର କରି ନେବା ପାଇଁ ।

ଅନୁରାଧାର ହତ୍ୟାକାରୀ ରୂପେ ଆପଣଙ୍କୁ ଅଭିଯୁକ୍ତ କରାହୋଇଛି ସତ; ମାତ୍ର ପୋଲିସ୍ ମହଲରେ ଏ ସମ୍ବନ୍ଧରେ ଦ୍ୱିମତ ପ୍ରକାଶିତ ହୋଇଛି ।

ମଳୟ ଚଉଧୁରୀ ଆପଣଙ୍କ ବନ୍ଧୁ । ସେ କିନ୍ତୁ ଚାହୁଁନାହାନ୍ତି ଆପଣଙ୍କୁ କଳଙ୍କ ମୁକ୍ତ କରିବା ପାଇଁ । ଏ ସମ୍ବନ୍ଧରେ ଆପଣ ଟିକିଏ ସଜାଗ ରୁହନ୍ତୁ । ଯେଉଁମାନେ ଆପଣଙ୍କୁ ଦେଶଛଡ଼ା କରିଛନ୍ତି, ସେମାନେ ସ୍ୱାର୍ଥ ପାଇଁ ଟିକିଏ ବି ଦ୍ୱିଧା ବୋଧ କରି ନ ପାରନ୍ତି । ଆଉ ସମୟ ନାହିଁ । ପରବର୍ତ୍ତି ଘଟଣା ମୁଁ ଆପଣଙ୍କୁ ଠିକ୍ ସମୟରେ ଜାଣାଇବି ।

ଆପଣଙ୍କର

ଜଣେ ଶୁଭାକାଂକ୍ଷୀ ।

ଜୟନ୍ତ ଚିଠିଟି ପଢ଼ିସାରି ମନେ ମନେ ହସିଲା । ଖଣ୍ଡିଏ ମାମୁଲି ଚିଠି । କୌଣସି ଗୁରୁତ୍ୱ ଥିଲାପରି ମନେ ହେଲା ନାହିଁ । ତେବେ ଏ ଚିଠିଟି ସୋନାଲୀ ପାଇଲା କେଉଁଠୁ?

କିଏ ତାକୁ ଦେଲା ଏ ଚିଠିଟି ?

ସେଠାରେ ସୋନାଲି, ମୋନାଲିସା କେହି ନ ଥିଲେ । ସେ ଏକା ଏକା ବସି ଚିଠିଟି ପଢୁଥିଲା । ଏପରି ଏକ ଅନ୍ତଃସାରଶୂନ୍ୟ ଚିଠି ତା' ଜୀବନର ଗତିପଥ ବଦଳାଇବାରେ ଆଦୌ ସହାୟ ହେବ ନାହିଁ; ବରଂ ଚିଠିର ଲେଖକ ସମ୍ବନ୍ଧରେ ତା'ର କିଛି ଜାଣିବା ଆବଶ୍ୟକ ।

ଜୟନ୍ତ ଉଠି ଠିଆ ହେଲା । ସେ ସୋନାଲିକୁ ଏ ସମ୍ବନ୍ଧରେ ପଚାରି ବୁଝିବାକୁ ଚାହେଁ ।

କିନ୍ତୁ ସୋନାଲି କାହିଁ ? ସେ ଦେଖିଲା ମିଷ୍ଟର ତରଫଦାର ହସି ହସି ଭିତରକୁ ପଶୁଛନ୍ତି ।

: ହାଉ ଆର୍ ଇଉ ମିଷ୍ଟର ମହାପାତ୍ର ? ମୁଁ ଟିକିଏ ସକାଳୁ ବ୍ୟସ୍ତ ଥିଲି । ଆପଣଙ୍କ ସହିତ ଦେଖା କରି ପାରି ନାହିଁ । ଆପଣ କାଲି ଯେପରି ବାଜିମାତ୍ କଲେ ନା ରିଅଲି ଇଣ୍ଟରେଷ୍ଟିଂ । ଆଜିଯାଏ ଏଇ ମିନି କ୍ୟାସିନୋରେ ଆପଣଙ୍କ ପରି....

ମିଷ୍ଟର ତରଫଦାର କଥା ଅସମାପ୍ତ ରଖି ଦରଜା ଆଡ଼କୁ ଚାହିଁଲେ । ଦେଖିଲେ କବାଟ ଫାଙ୍କରେ ରୋଜିର ମୁହଁ ଦିଶୁଚି । ଜୟନ୍ତ ବି ଦେଖିଲା ରୋଜିକୁ । ସେ ଦରଜା ଦରମୁକୁଳା କରି ଗୋଟିଏ ପାଷାଣ ପ୍ରତିମା ପରି ଠିଆହୋଇଥିଲା ।

ଜୟନ୍ତ ସୋଫା ଉପରୁ ଉଠିପଡ଼ି ଆଗେଇ ଗଲା । ଅଭ୍ୟର୍ଥନା ଭଙ୍ଗୀରେ କହିଲା : ଆସନ୍ତୁ ଆସନ୍ତୁ, ବାହାରେ ଠିଆ ହୋଇ ରହିଲେ କାହିଁକି ?

ରୋଜି ତରଫଦାରଙ୍କ ମୁହଁକୁ ଚାହିଁଲା । ମିଷ୍ଟର ଦରଫଦାର କହିଲେ, ଆମେ ଗୋଟାଏ ପ୍ଲେଜାରଟ୍ରିପ୍‌ରେ ବାହାରୁଛୁ । ରୋଜି କହିଲା, ଆପଣ ଆମ ସଙ୍ଗରେ ଯାଇପାରିବେ କି ନାହିଁ ପଚାରିବାକୁ । ଆପଣ ଗଲେ ସତରେ ଆମେ ଖୁସି ହୁଅନ୍ତୁ ।

ଜୟନ୍ତ ଚାହିଁଲା ରୋଜି ମୁହଁକୁ । ସତରେ ରୋଜି ଆଖିର ଚାହାଣିରେ ସେ ଅନୁଭବ କଲା, ରୋଜି ଚାହେଁ ତା'ର ସାନିଧ । ଆପତ୍ତି କାହିଁକି ? ଯଦି ପଥଘାଟରେ କେଉଁଠି ସୁଯୋଗ ଆସେ, ଆଉ ରୋଜି ଯଦି ଚାହୁଁଥାଏ, ତା'ହେଲେ ତ ଜୟନ୍ତ ଆଗେଇ ଯିବା ଉଚିତ । ଜୟନ୍ତ ମନର ଆବେଗକୁ ଚାପିରଖି ପଚାରିଲା, ଆପଣମାନେ ଫେରିବେ କେତେବେଳେ ?

ମିଷ୍ଟର ତରଫଦାର ଘଡ଼ି ଦେଖିଲେ ବର୍ତ୍ତମାନ ଚାରିଟା ପଚିଶ, ବେଶୀ ଡେରି ହେବନାହିଁ । ରାତି ଦଶଟା ସାଢ଼େ ଦଶଟା ବେଳେ ଆମେ ଆସି ପହଞ୍ଚିବା । ଆପଣଙ୍କୁ ଠିକ୍ ସମୟରେ ମୁଁ ଆଣି ପହଞ୍ଚାଇଦେବି ।

: ଠିକ୍ ସମୟରେ ମାନେ ? ଜୟନ୍ତ ପ୍ରଶ୍ନବାଚୀ ନୟନରେ ଚାହିଁଲା ।

ତରଫଦାର ହାଲ୍‌କା ସ୍ୱରରେ କହିଲେ, ଆପଣ ମିନି କାସିନୋ କଥା ଭାବୁଛନ୍ତି ତ ! ରାତି ଏଗାରଟା ଆଗରୁ ସେ ଜମେ ନାହିଁ । ମୁଁ ମଧ୍ୟ ଆଜି ଆପଣଙ୍କ ସହିତ ପାର୍ଟିସିପେଟ୍ କରିବି । ବାସ୍ତବିକ୍ ଆପଣଙ୍କ ଧୈର୍ଯ୍ୟର ତୁଳନା ନାହିଁ ।

ରୋଜି କିନ୍ତୁ କବାଟ ମୁକୁଳା କରି ସେଇଠି ସେହିପରି ଚାହିଁ ଠିଆହୋଇଥିଲା । ସେ ଯେପରି ପ୍ରତୀକ୍ଷମାଣା । ଜୟନ୍ତର ଆଖି ରୋଜିର ଚାହାଣି ସହିତ ମିଶିଲା, ଜୟନ୍ତ ଶିହରୀ ଉଠିଲା ।

: ଆପଣ ମିଷ୍ଟର ମହାପାତ୍ର.....

: ହଁ, ଚାଲନ୍ତୁ । ମୁଁ ଟିକିଏ ଖବରଟା ଦେଇଯାଏ । ଜୟନ୍ତ ଫୋନ୍ ପାଖକୁ ଆଗେଇ ଯାଇ ରିସିଭରଟା ଉଠାଇଲା ।

: ମୁଁ ଜୟନ୍ତ ମହାପାତ୍ର । ମିଷ୍ଟର ତରଫଦାରଙ୍କ ସହିତ ମୁଁ ଟିକିଏ ବାହାରକୁ ଯାଉଛି । ଦଶଟା ପୂର୍ବରୁ ଫେରିଆସିବି ।

ଜୟନ୍ତ ରିସିଭରଟା ରଖି ଦେଇ, ସୋଫା ଉପରୁ କୋଟ୍‌ଟା ଉଠାଇ ଆଣି କହିଲା, ଚାଲନ୍ତୁ ମିଷ୍ଟର ତରଫଦାର । ଜୀବନଟା ଚାରିକାନ୍ଥ ଭିତରେ ବୋର୍ ହୋଇ ଉଠିଲାଣି ।

ଆଗରେ ରୋଜି, ତା' ପଛକୁ ତରଫଦାର ଏବଂ ଶେଷରେ ଜୟନ୍ତ । ସେମାନେ ଆଗେଇ ଚାଲିଥିଲେ । ଫିସ୍‌ଟେଲ୍ ଲଜ୍‌ର ତଳ ଲନ୍‌ରେ ଯାଇ ପହଞ୍ଚିଲେ । ଲନ୍‌ର ସବୁଜ ଆସ୍ତରଣ ଭିତରେ ଠିଆହୋଇଛି ଏକ ଶୁଭ୍ର, ସ୍ୱଚ୍ଛ ଟୟଟା ଗାଡ଼ି । ଡ୍ରାଇଭର ଦରଜା ଖୋଲିଦେଲା । ପଛ ସିଟ୍‌ରେ ଉଠିଲେ ମିଷ୍ଟର ତରଫଦାର ଏବଂ ରୋଜି । ସାମ୍‌ନାରେ ବସିଲା ଜୟନ୍ତ ।

ଗାଡ଼ି ଛାଡ଼ିଦେଲା ।

ମିଷ୍ଟର ତରଫଦାର ଗୋଟାଏ ସୁନେଲି ସିଗାରେଟ୍ କେସ୍ ଜୟନ୍ତ ଆଡ଼କୁ ବଢ଼ାଇ ଦେଲେ । ଜୟନ୍ତ ବୁଲିପଡ଼ି ଚାହିଁଲା । ରୋଜିକୁ ଆଖି ପୂରେଇ ଦେଖିବା ପାଇଁ ତା' ମନରେ ପ୍ରବଳ ବାସନା ଜାଗି ଉଠିଥିଲା । ଇତ୍ୟବସରରେ ଜୟନ୍ତ ସିଗାରେଟ୍ କେସ୍‌ରୁ ସିଗାରେଟ୍ ନେଉ ନେଉ ରୋଜି ଆଖି ସହିତ ଆଖି ମିଶାଇଲା । କିନ୍ତୁ ଲକ୍ଷ୍ୟକଲା ରୋଜି ଚାହାଣିରେ ଯେପରି କୌଣସି ପରିବର୍ତ୍ତନ ନାହିଁ । ସେହିପରି ଧୀର, ସ୍ଥିର, ଅଚଞ୍ଚଳ । ଚାହାଣିରେ ତା'ର ପ୍ରାଣର କଥା ଫୁଟୁ ନାହିଁ । ମନର ଉତ୍‌କଣ୍ଠା ଆତ୍ମପ୍ରକାଶ କରୁନାହିଁ । କିନ୍ତୁ ରୋଜି ଯେ ତା'ର ଏକମାତ୍ର ସାହା ଭରସା ।

ମିଷ୍ଟର ତରଫଦାର ଲାଇଟର ଜଳାଇ ଜୟନ୍ତର ଧ୍ୟାନଭଙ୍ଗ କରାଇଲେ । ଜୟନ୍ତ ସିଗାରେଟ୍ ଲଗାଇ ମୁହଁ ବୁଲାଇଲା । ଗାଡ଼ି ଆଗେଇ ଚାଲିଥିଲା ଦ୍ରୁତଗତିରେ । ଦୁଇ ପାଖରେ ପାହାଡ଼ ପର୍ବତର ମେଳା । ପଥପ୍ରାନ୍ତରେ ଛୋଟ ଛୋଟ ଲୋକ ବସତି । ଗାଡ଼ିଟା ଯେତେ ଆଗକୁ ଆଗକୁ ଗଡ଼ିଚାଲିଥିଲା, ଜୟନ୍ତର ମନେହେଉଥିଲା ସେ ଯେପରି ପ୍ରକୃତିର ଗନ୍ତାଘର ଭିତରକୁ ଧୀରେ ପ୍ରବେଶ କରୁଛି । ଛୋଟ ଛୋଟ କାଠ ଘର । ନେପାଳୀ ତରୁଣ-ତରୁଣୀ । ପାହାଡ଼ ଉପରେ ମକା, ସୋରିଷର ଚାଷ । ଜୟନ୍ତ ବିଭୋର ହୋଇ ଦେଖୁଥିଲା ।

: ମିଷ୍ଟର ମହାପାତ୍ର । ପଛରୁ ତରଫଦାର ଡାକିଲେ ।

: ଜୟନ୍ତ ବୁଲି ଅନେଇଲା । ଦେଖିଲା ରୋଜି ତରଫଦାରଙ୍କ ଛାତିରେ ମୁଣ୍ଡ ରଖି ଶୋଇପଡ଼ିଛି । ଆଖି ଦୁଇଟି ମୁଦ୍ରିତ । ଚୂନା ଚୂନା କେଶଗୁଡ଼ିକ ତରଫଦାରଙ୍କ ମୁହଁ ଉପରେ ନୃତ୍ୟ ରଚନା କରୁଛି । ତରଫଦାର ସେଗୁଡ଼ିକୁ ଗୋଟାଏ ଆଡ଼କୁ ଘୁଞ୍ଚାଇ ଦେଇ କହିଲେ, ଆପଣଙ୍କୁ ସ୍ଥାନଟା କିପରି ଲାଗୁଛି ?

: ଅତୁଳନୀୟ ମିଷ୍ଟର ତରଫଦାର । ପ୍ରକୃତିର ଏପରି ଅକୃତ୍ରିମ ଦାନ ଇତି ପୂର୍ବରୁ ମୋର ଦୃଷ୍ଟିଗୋଚର ହୋଇ ନଥିଲା । ଆପଣ ମୋତେ ସାର୍ଥକ କଲେ ।

: ମିଷ୍ଟର ମହାପାତ୍ର ! ଆପଣ ଠିକ୍ କହିଛନ୍ତି । ପ୍ରକୃତିର ଏପରି ଅକୃତ୍ରିମ ଦାନ ଖୁବ୍ କମ୍ ସ୍ଥାନରେ ଦେଖିବାକୁ ମିଳେ । ନେପାଳ ହୁଏତ ପ୍ରାକୃତିକ ସଂପଦରେ ପୃଥିବୀର ଅଦ୍ୱିତୀୟ ଦେଶ; କିନ୍ତୁ ଏଠାକାର ଅଧିବାସୀମାନେ ଖୁବ୍ ଦରିଦ୍ର । ସେମାନଙ୍କର ଜୀବନ ଧାରଣର ମାନ ଅତି ନିମ୍ନରେ । ହଁ, ମୁଁ କ'ଣ କହୁଥିଲି କି, ରୋଜି କଥା । ଦେଖୁଛନ୍ତି ଝିଅଟା କେଡ଼େ ସହଜ ଆଉ ସରଳ । ମୋ ଛାତି ଉପରେ କିପରି ନିର୍ବିକାର ଚିତ୍ତରେ ମୁଣ୍ଡ ରଖି ଶୋଇପଡ଼ିଛି ।

: ଆପଣ ଭାଗ୍ୟବାନ ମିଷ୍ଟର ତରଫଦାର । ପ୍ରକୃତି ଯେପରି ମୁକ୍ତହସ୍ତରେ ନେପାଳଟାକୁ ଶୋଭା ସଂପଦରେ ଭରି ଦେଇଛି, ବିଧାତା ପୁରୁଷ ସେହିପରି ରୋଜିକୁ ରଙ୍ଗ-ତୂଳୀରେ ଆଙ୍କି ଆପଣଙ୍କ ପାଖକୁ ପଠାଇଛନ୍ତି ।

ଜୟନ୍ତ ଦେଖିଲା, ରୋଜିର ଆଖି ଧୀରେ ଧୀରେ ଖୋଲି ପୁଣି ବନ୍ଦ ହୋଇଯାଇଛି । ସେ ଯେପରି ଜୟନ୍ତର ସବୁ କଥା ଶୁଣିଛି, ଶାନ୍ତ ସମାହିତ ଆଖିଯୋଡ଼ିକ ତା'ର ସ୍ୱୀକୃତି ଜଣାଇଲା ।

: ତରଫଦାର ରୋଜି ମୁହଁକୁ ଚାହିଁଲେ । ସେ ଯେପରି ନିଶ୍ଚିତ ଆଶ୍ରୟ ପାଇଛି । ମୁଣ୍ଡର ବାଳ ସଜାଡ଼ି ଦେଲେ । କପାଳରେ ହାତବୁଲାଇ ଦେଲେ । କହିଲେ, ଜାଣିଲେ

ମିଷ୍ଟର ମହାପାତ୍ର, ରୋଜି ଗୋଟିଏ ଲକି ଝିଅ । ସେ ଆସିଲା ଦିନଠାରୁ ମୋର ଭାଗ୍ୟ ପ୍ରସନ୍ନ ହୋଇଛି ।

: ମୁଁ ତ ସେଇକଥା କହୁଛି ମିଷ୍ଟର ତରଫଦାର । ରୋଜିପରି ଝିଅ ଯାହାକୁ ଆଶ୍ରୟ କରିବ, ତା'କପାଳ ତ ଖୋଲିବନାହିଁ । କିନ୍ତୁ ଆପଣ ମୋତେ ରୋଜି କଥା ତ କିଛି କହିଲେ ନାହିଁ ।

: ରୋଜି ! ତରଫଦାର ହସି ଉଠିଲେ । ରୋଜି କିଏ, କେଉଁଠି ଥିଲା, କେଉଁଠୁ ଆସିଲା ସେ କଥା ଆଜି ବଡ଼ ନୁହେଁ; ରୋଜି କେଉଁଠି ଅଛି ଏବଂ କାହାର ହୋଇ ରହିବ ସେଇଟା ଅସଲ କଥା । ତେବେ ଆପଣ ଏତିକି ଜାଣି ରଖନ୍ତୁ, ରୋଜିର ତା' ବାପା ମାଆଙ୍କ କଥା ମନେ ନାହିଁ । ଆଜି ଆଉ ରୋଜିର ଅତୀତ ଘାଣ୍ଟି ତା' ମନରେ ଦୁଃଖ ଦେବାକୁ ମୁଁ ଚାହେଁ ନାହିଁ । ରୋଜି, ସେ ମିଷ୍ଟର ତରଫଦାରଙ୍କ ଭାଗ୍ୟ ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର । ତରଫଦାର ଆଉ ଥରେ ରୋଜି ମୁହଁରେ ହାତ ବୁଲାଇଲେ ।

ଗାଡ଼ି ଚାଲିଥିଲା । ଏହା ଭିତରେ ଦିନର ଆଲୋକ ଲିଭି ଲିଭି ଆସୁଥିଲା । ଅନ୍ଧକାରର ଏକ ଶାନ୍ତ ଆସ୍ତରଣ ଜମି ଆସୁଥିଲା ପୃଥିବୀ ଉପରେ ।

ଜୟନ୍ତ କହିଲା, ଆମ ଲକ୍ଷ୍ୟ ସ୍ଥଳ ଆଉ କେତେ ଦୂରରେ ?

ଆମେ ପାଖେଇ ଆସିଲେଣି ମିଷ୍ଟର ମହାପାତ୍ର; ଖୁବ୍ ଡେରି ହେଲେ ଆଉ ଅଧଘଣ୍ଟାଏ ଲାଗିବ ।

ଅନ୍ଧକାର କ୍ରମଶଃ ଜମାଟ ବାନ୍ଧୁଥିଲା । ଜୟନ୍ତ ପଛକୁ ଚାହିଁ ରୋଜି ମୁହଁ ଦେଖି ପାରୁ ନଥିଲା । ସାମ୍ନାରେ ଗାଡ଼ିର ହେଡ୍ ଲାଇଟ୍‌ରେ ସେ ଦେଖୁଥିଲା ପାହାଡ଼ ଚିରି ଚିରି ଲମ୍ବିଯାଇଛି ଗୋଟାଏ ସର୍ପିଳ ପଥ ।

ଜୟନ୍ତ ଆଖି ବୁଜିଲା । ସେ କୁଆଡ଼େ ଯାଉଛି ତାକୁ ଜଣା ନାହିଁ । ତରଫଦାର ତା'ର ବିଶେଷ ପରିଚିତ ନୁହନ୍ତି । କେବଳ ରୋଜିର ଆକର୍ଷଣ ତାକୁ ଟାଣି ଆଣିଛି ଏହି ଦୁର୍ଗମ ଦୁର୍ବାର ପଥରେ । ରୋଜି ମୁହଁରୁ ସେ ତ ପଦେ କଥା ଶୁଣିଲା ନାହିଁ ! ରୋଜି ଗାଡ଼ିରେ ଉଠି ଶୋଇପଡ଼ିଲା । ଆଜିକୁ ଲଗାଇ ରୋଜି ସହିତ ତା'ର ତିନିଥର ଭେଟହେଲା । କେବେ ତ ସେ ରୋଜି ସହିତ ପଦେହେଲେ କଥା କହିପାରିଲା ନାହିଁ । ସେ କ'ଣ ଜାଣି ଜାଣି ତାକୁ ଅଡ଼େଇ ଯାଉଛି ? ତରଫଦାର ସାମ୍ନାରେ ଧରାପଡ଼ିଯିବ ବୋଲି ଛଳନା କରୁଛି ? ଆଶ୍ଚର୍ଯ୍ୟ ! ସମସ୍ତେ ଯେପରି ତା' ସାମ୍ନାରେ ରହସ୍ୟର ଜାଲ ବୁଣି ବୁଣି ଚାଲିଛନ୍ତି । ସତରେ କ'ଣ ସେ ଏକ ନିଃସହାୟ ଶିଶୁ !

ଏକ ସମୟରେ ଗାଡ଼ି ଅଟକିଲା ।

: ମିଃ ମହାପାତ୍ର ! ତରଫଦାର ଡାକିଲେ । କହିଲେ, ଆମେ ଆସି ଲକ୍ଷ୍ୟ ସ୍ଥଳରେ ପହଞ୍ଚି ଯାଇଛୁ । ଏଥର ଉଠନ୍ତୁ ।

ଜୟନ୍ତ ଆଖି ମେଲି ଚାହିଁଲା । ସାମ୍ନାରେ ଛୋଟ ଛୋଟ କେଇଟା କୋଠାଘର । କେଇଟା ଘରେ ନାଲିନେଳି ଆଲୋକମାଳା ଦିଶୁଛି । ଉତ୍ସବ ଉତ୍ସବ ମନେ ହେଉଛି । କେଇଜଣଙ୍କର କଳରୋଳ ଶୁଭୁଛି । ଦରଜା ଖୋଲି ବାହାରକୁ ଓହ୍ଲାଇଲା ।

ରୋଜି ବି ଓହ୍ଲେଇଚି । ତା' ମୁହଁରେ ସ୍ମିତ ହସ । ଚାହାଣି ଶାନ୍ତ ସ୍ନିଗ୍ଧ । ଜୟନ୍ତ ଆଖିରେ ଆଖି ମିଶିବା ସଂଗେ ସଂଗେ ଆଉ ଥରେ ହସିଉଠିଲା । କେଇଜଣ ଗାଡ଼ିପାଖକୁ ଛୁଟି ଆସିଲେ- ପୁରୁଷ ଏବଂ ନାରୀ । ସମସ୍ତେ ସଂଭ୍ରାନ୍ତ ମନେହେଉଥିଲେ । ହାତ ଯୋଡ଼ି ନମସ୍କାର କଲେ, ତରଫଦାର ଏବଂ ଜୟନ୍ତ ଉଭୟଙ୍କୁ ।

ଜୟନ୍ତ ପ୍ରତି ନମସ୍କାର ଜଣାଇ ସେମାନଙ୍କ ପଛେ ପଛେ ଆଗେଇ ଚାଲିଥିଲା । ସେ ଯେତିକି ଯେତିକି ଭିତରକୁ ପଶୁଥିଲା, ତା'ର ମନେହେଉଥିଲା ସେ ଯେପରି...

: ବୁଝିଲେ ମିଷ୍ଟର ମହାପାତ୍ର, ଆମେ ଆଜି ଯେଉଁଠାକୁ ଆସିଛେ, ଏକ ଉତ୍ସବ-ସଭା । ବର୍ଷରେ ଥରେ ଏଠାରେ ଏହି ଉତ୍ସବ ଅନୁଷ୍ଠିତ ହୁଏ । ରାଜ୍ୟର ସବୁ କୋଣରୁ ବିଶିଷ୍ଟ ଲୋକମାନେ ଆସନ୍ତି । ଆନନ୍ଦ କଳରୋଳ ଭିତରେ ଦୁଇ ତିନିଟି ରାତ୍ରି ଅତିବାହିତ କରି ଯେ ଯାହା ଘରକୁ ଫେରିଯାଆନ୍ତି ।

ଜୟନ୍ତ ଯେତିକି ଭିତରକୁ ଭିତରକୁ ଆଗଉଥିଲା, ସେ ଦେଖୁଥିଲା ବହୁ ଗାଡ଼ି, ଘୋଡ଼ା ଜମା ହୋଇଛି ଗୋଟାଏ ବିଶାଳ ପଡ଼ିଆରେ । ଜନଗହଳି ବଢ଼ିଉଠୁଛି ଆହୁରି । ଯନ୍ତ୍ର ସଂଗୀତ କ୍ରମଶଃ କର୍ଣ୍ଣକୁହରରେ ପ୍ରବେଶ କରୁଛି ।

: ତା'ହେଲେ ଆପଣ ମୋତେ କିଛି ନ କହି, ନଜଣାଇ...

ମିଷ୍ଟର ତରଫଦାର ହସିଲେ । କହିଲେ, ସବୁକଥା କହିଥିଲେ ଆପଣ ହୁଏତ ଆସି ନ ଥା'ନ୍ତେ । ଏହି ଉତ୍ସବ ଆଉ କିଛି ଉତ୍ସବ ନୁହେଁ, କେବଳ ଜୁଆଖେଳର ଉତ୍ସବ । ପ୍ରତି ବର୍ଷ ଶିବ ରାତ୍ରିରେ ଏହା ଆରମ୍ଭ ହୁଏ ଏବଂ ପ୍ରାୟ ଏକ ସପ୍ତାହଯାଏ ଏହି ଉତ୍ସବ ଚାଲେ ।

ଜୟନ୍ତ ତରଫଦାରଙ୍କ କଥା ଶୁଣି ଅବାକ୍ ହୋଇଯାଇଥିଲା । ତରଫଦାର ତାକୁ ଏତେବାଟ ସଂଗରେ ଧରି ଆଣିଛନ୍ତି କ'ଣ କେବଳ ଜୁଆ ଖେଳିବା ପାଇଁ ?

ତରଫଦାର ଜୟନ୍ତର ମନର କଥା ବୁଝିପାରି କହିଲେ, ହଁ ମିଷ୍ଟର ମହାପାତ୍ର, ଆପଣଙ୍କଠାରୁ କ୍ଷମା ମାଗିନେଉଛି । ଆପଣଙ୍କୁ ସଙ୍ଗରେ ଆଣିବାର ମୋର ଗୋଟାଏ ଉଦ୍ଦେଶ୍ୟ ଅଛି । ଆପଣ ଜାଣନ୍ତି ନେପାଳରେ ଜୁଆଖେଳ ଗୋଟାଏ କିଛି ବଡ଼ କଥା ନୁହେଁ । ସେଇଟା ଯତ୍ର ତତ୍ର ସର୍ବତ୍ର ଚାଲିଛି କିନ୍ତୁ ଆଜିର ଏଇ ଖେଳ, ଆପଣ ବୁଝିପାରିବେ ନାହିଁ ମିଷ୍ଟର ମହାପାତ୍ର ଅନେକଙ୍କର ଏହା ବର୍ଷକର ଅନ୍ନ ସଂସ୍ଥାନର ବ୍ୟବସ୍ଥା କରିଥାଏ । ଅତି ସହଜ କଥାରେ କହିବାକୁ ଗଲେ, ବହୁତ ବେଶୀ ବେଶୀ ଟଙ୍କାର ଖେଳ ହୁଏ ।

: କିନ୍ତୁ ମୁଁ କ'ଣ କରିବି ଏଠାରେ ? ଜୟନ୍ତ ପଚାରିଲା ।

: ଆପଣ, ହଁ, ଆପଣ ମୋ ପାଇଁ ବାଜି ଧରିବେ । ଆଜି ରାତିଟା ମାତ୍ର । ତା'ପରେ ମୁଁ ଆଉ ଆପଣଙ୍କୁ ଏପରି ଅପ୍ରୀତିକର ଅନୁରୋଧ କିଛି କରିବି ନାହିଁ ।

ଏଥର ଜୟନ୍ତ ଚାହିଁଲା ରୋଜି ମୁହଁକୁ । ରୋଜିର ମୁହଁ ଉଜ୍ଜ୍ୱଳ ଦିଶୁଛି ଏବଂ ସେ ହସି ହସି ଇଂଗିତରେ ସମ୍ମତି ଜଣାଇବା ପାଇଁ ଜୟନ୍ତକୁ କହୁଛି ।

ପ୍ରଥମେ ସେମାନେ ଯେଉଁ ଘରେ ଯାଇ ପ୍ରବେଶ କଲେ ସେ ଘରେ ଖିଆପିଆର ଧୁମ୍ ଚାଲିଛି । ଗୋଟାଏ ପାଖରେ ନୃତ୍ୟଗୀତର ବି ଆସର ବସିଛି । ଏମାନେ ଯାଇ ତିନିଟି ଚେଆର ଦଖଲ କଲେ । ତରଫଦାର ମେନୁ କାର୍ଡ ପଢୁଥିଲେ । ରୋଜି ସେଠାରୁ ଉଠିଯାଇଥିଲା ଘରର ଗୋଟାଏ କୋଣକୁ । ଅର୍ଦ୍ଧ ଅନ୍ଧକାର ଅର୍ଦ୍ଧ ଆଲୋକ ଭିତରେ ସେ

ଯେଉଁ ଲୋକଟି ସହିତ ଠିଆହୋଇ କଥା କହୁଥିଲା, ଜୟନ୍ତ କିଛି ଦେଖି ପାରୁ ନଥିଲା । ରୋଜି ତା' ଆଡ଼କୁ ପିଠି କରି ଠିଆହୋଇଥିଲା ।

ମିଷ୍ଟର ତରଫଦାର ଖାଇବା ଅର୍ଡ଼ର ଦେଇଦେଲେ ।

ବୟ ଦୁଇଜଣଙ୍କ ପାଇଁ ଖାଦ୍ୟ ସାମଗ୍ରୀ ଧରି ପହଞ୍ଚିଲା; ଆଉ ରୋଜି ?

ତରଫଦାର କହିଲେ, ରୋଜି ତା' ବନ୍ଧୁ ବାନ୍ଧବଙ୍କ ସଙ୍ଗରେ ଆମୋଦ ପ୍ରମୋଦ କରିବାକୁ ଚାଲିଯାଇଛି ।

: ଆଉ ଫେରିବ ନାହିଁ ?

: ନିଶ୍ଚୟ ଫେରିବ । ଆପଣଙ୍କୁ ବାଜି ଜିତିବାରେ ସାହାଯ୍ୟ କରିବ । ଖେଳିବା ପାଇଁ ପ୍ରେରଣା ଯୋଗାଇବ ଏବଂ....

ତରଫଦାରଙ୍କ ପାଟିର କଥା ଅସମାପ୍ତ ରହିଗଲା । ଦୂରରୁ କିପରି ଗୁଡ଼ାଏ ଆର୍ତ୍ତ କଣ୍ଠର ଚିତ୍କାର ଶୁଣାଗଲା । ଘରର ନୃତ୍ୟ ଏବଂ ମିଉଜିକ୍ କ୍ଷଣକ ପାଇଁ ସ୍ତବ୍ଧ ହୋଇଗଲା । ଆର୍ତ୍ତଚିତ୍କାରଟା ଆହୁରି ପାଖେଇ ଆସିଲା । ଲୋକେ ଦଉଡ଼ା ଦଉଡ଼ି କରି ପ୍ରାଣବିକଳରେ ଚିତ୍କାର କରି ଡାଇନିଂ ରୁମ୍ ଭିତରକୁ ପଶିଆସୁଥିଲେ । ତରଫଦାର ଦରଖିଆ ହୋଇ ଜୟନ୍ତର ହାତ ଧରି ଟାଣି ଟାଣି ବାହାରକୁ ବାହାରି ଯିବା ପାଇଁ ଚେଷ୍ଟା କରୁଥିଲେ ।

ଶେଷରେ ଜଣାଗଲା ଯେଉଁ ଘରେ ଜୁଆ ଖେଳର ଆଡ୍‌ଡା ବସିଥିଲା ସେ ଘରେ ନିଆଁ ଲାଗିଯାଇଛି ଏବଂ ଲେଲିହାନ ଶିଖା ବିସ୍ତାରକରି ସବୁ ଧ୍ୱଂସ କରି ଚାଲିଛି ।

ସେଦିନ ଫେରୁ ଫେରୁ ଅନେକ ରାତି ହୋଇ ଯାଇଥିଲା ।

ଜୟନ୍ତ ଗାଡ଼ିରେ ବସି କିଛିକ୍ଷଣ ପରେ ଶୋଇପଡ଼ିଥିଲା । ଆଜିର ଏହି ଆଚରଣ ସମ୍ବନ୍ଧରେ ସେ କିଛି ଚିନ୍ତା କରିପାରୁ ନଥିଲା । ମିଷ୍ଟର ତରଫଦାର ଜଣେ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି, ତାଙ୍କ ପକ୍ଷରେ ଏପରି ଏକ ଲଘୁ ପ୍ରସ୍ତାବ ନିଶ୍ଚୟ ନିନ୍ଦନୀୟ ।

ଜୟନ୍ତ ଆଉ କିଛି ଚିନ୍ତା କରିବା ଆଗରୁ ଆଖିରେ ତା'ର ନିଦ ଘାରିଯାଇଥିଲା । ସେ ଶୋଇପଡ଼ିଥିଲା । ଗାଡ଼ି କେତେବେଳ ଆସି ଫିସ୍‌ଟେଲ ଲଜଦୁଆରେ ପହଞ୍ଚିଥିଲା, ଆଉ ସେ କିପରି ଗାଡ଼ିରୁ ଯାଇ ତା' ଘରେ ଶୋଇଥିଲା, ବିଶେଷ କିଛି ମନେ ନ ଥିଲା ଜୟନ୍ତର ।

ଯେତେବେଳେ ନିଦ ଭାଙ୍ଗିଲା ସେ ଦେଖିଲା ମାଳବିକା ତା'ଘରେ ଗୋଟିଏ ସୋଫା ଉପରେ ବସି ସେଦିନର ସଂବାଦ ପତ୍ର ପଢୁଛି । ସେ ଧୀରେ ଧୀରେ ଡାକିଲା, ମାଳା !

ମାଳବିକା ସଂବାଦ ପତ୍ରଟା ଛାଡ଼ି ଦେଇ ଜୟନ୍ତ ଶେଯ ପାଖକୁ ଆଗେଇ ଯାଇ କହିଲା, ନଅଟା ବାଜିଲାଣି । କେତେବେଳେ ଆଉ ଉଠିବେ ? କାଲି ମିଃ ତରଫଦାରଙ୍କ ସଙ୍ଗରେ କୁଆଡ଼େ ଗଲେ ଯେ, ମୁଁ ବାରଟାଯାଏ ଆପଣଙ୍କୁ ଅପେକ୍ଷା କରିଥିଲି । ରୁଦ୍ରପ୍ରସାଦ ମଧ୍ୟ ଆପଣଙ୍କ ସହିତ କଥା କହିବା ପାଇଁ ଖବର ଦେଇଥିଲେ । ଶେଷରେ ସେ ମୋତେ ଡାକି ଗାଳିମନ୍ଦ କଲେ । ମୁଁ କୁଆଡ଼େ ଆପଣଙ୍କୁ ଯେପରି ଭାବରେ ସହଯୋଗ କରିବା କଥା କରୁ ନାହିଁ । ଇତ୍ୟାଦି ଇତ୍ୟାଦି ।

ଜୟନ୍ତ ତକିଆ ଉପରୁ ମୁହଁଉଠାଇ ମାଳବିକା ଆଡ଼କୁ ଚାହିଁ ଟିକିଏ ହସିଲା । କହିଲା, ଆଚ୍ଛା, ମୁଁ ଆଜି ରୁଦ୍ରପ୍ରସାଦଙ୍କଠାରୁ ତମ ପାଇଁ କ୍ଷମା ମାଗିନେବି । କହିବି, ତମେ ମୋତେ ଆନ୍ତରିକ ଭାବେ ସହଯୋଗ କରୁଛ । କ'ଣ ଖୁସି ତ ?

ମାଳବିକା ଦରଜା ଆଡ଼କୁ ଚାହିଁଲା ।

ନିଜେ ଯାଇ ଦରଜାର ଚାବିଟା ଭିତର ପଟରୁ ବନ୍ଦ କରି ଆସିଲା । ଆଖିର ଚାହାଣିରୁ ବୁଝିଲା, ଗୋଟାଏ କିଛି ଅଘଟଣ ଘଟିଛି ।

ମାଳବିକା ଫେରି ଆସି ଜୟନ୍ତର ବିଛଣା ଉପରେ ବସିଲା । ମୁହଁକୁ କିଛି ସମୟ ଅପଲକ ଦୃଷ୍ଟିରେ ଚାହିଁଲା । ତା'ପରେ ଧୀରେ ଧୀରେ କହିଲା : ଜୟନ୍ତ, ତମକୁ ଗୋଟିଏ କଥା ପଚାରିବି, ସତ କହିବ ?

: ପଚାର ।

: ମୁଁ ଜାଣିଛି ଅନୁରାଧାର ତମେ ହତ୍ୟାକାରୀ ନୁହଁ; ସେ କଥା ତମ ବଂଧୁ ମଳୟ ଚଉଧୁରୀ ମଧ ଜାଣିଛନ୍ତି, ତା' ସତ୍ତ୍ୱେ ସେ ତମ୍ଭକୁ କାହିଁକି ରୁଦ୍ରପ୍ରସାଦଙ୍କ ସହିତ ଏଠାକୁ ପଠାଇ ଦେଇଛନ୍ତି ?

ଜୟନ୍ତ ମାଳବିକା ମୁହଁରୁ ଏପରି ଏକ ପ୍ରଶ୍ନ ଆଶା କରି ନଥିଲା । ପ୍ରଥମେ ସେ ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ । କେବଳ ଅନାଇ ରହିଲା ମାଳବିକା ମୁହଁକୁ ।

: ହଁ ଜୟନ୍ତ, ମୋ ପ୍ରଶ୍ନର ଉତ୍ତର ତମ୍ଭକୁ ଦେବାକୁ ପଡ଼ିବ, ମାଳବିକା ଦୃଢ଼ କଣ୍ଠରେ କହିଲା ।

: ତମ ପ୍ରଶ୍ନର ଉତ୍ତର ମୋତେ ଜଣାନାହିଁ ମାଳା । ମୁଁ ଯେ ଅନୁରାଧାକୁ ହତ୍ୟା କରି ନାହିଁ, ସେ କଥା ତମେ ବିଶ୍ୱାସ କରିଥିବାରୁ ଖୁସିହେଲି; କିନ୍ତୁ ମୁଁ କାହିଁକି ରୁଦ୍ରପ୍ରସାଦଙ୍କର ଶରଣାପନ୍ନ ହେଲି ସେ କଥା ମଧ ମୁଁ ଜାଣି ନାହିଁ । ଜୟନ୍ତ କହିଲା ।

: ମୁଁ ଗୋଟାଏ କଥା କହିବି, ମୋ କଥା ରଖିବ ?

: କୁହ ।

: ତମେ ଏଠୁ ପଳାଇ ଯାଅ ।

: ମାନେ ?

: ମାନେ ଫାନେ ମୁଁ କିଛି ବୁଝେ ନାହିଁ ଜୟନ୍ତ, ମୁଁ କେବଳ ସମସ୍ତ ବନ୍ଦୋବସ୍ତ କରିଦେବି ।

: କିନ୍ତୁ ମାଳା । ମୁଁ ଚାଲିଗଲେ ତମର ଲାଭ କ'ଣ ହେବ । ମୁଁ ବା ଯିବି କୁଆଡ଼େ? ମୋ ପଛେ ପଛେ ଯେ ପୋଲିସ୍ ବାହିନୀ ଘୂରିବୁଲୁଛନ୍ତି ।

: ସେସବୁ ସତ୍ତ୍ୱେ ମୋ ମତରେ ତମେ ଏଠୁ ଚାଲିଯିବା ଭଲ । ତା' ନହେଲେ ତମର ପ୍ରତିଷ୍ଠା, ତମର ପ୍ରତିପତ୍ତି ସବୁ ମାଟିରେ ମିଶିଯିବ ।

: କିନ୍ତୁ ମାଳା...

ଜୟନ୍ତ ମୁହଁର କଥା ଶେଷ ହେଲା ନାହିଁ । ଦରଜାରେ ବାହାରୁ ନକ୍ ହେବାର ଶବ୍ଦ ହେଲା । ମାଳବିକା ଜୟନ୍ତକୁ ଚୁପ୍‌ହେବାକୁ କହି ଦରଜା ଖୋଲିଦେଲା । ସାମ୍‌ନାରେ ବୟ ବ୍ରେକ୍‌ଫାଷ୍ଟର ଟ୍ରେ ଧରି ଠିଆହୋଇଛି ।

ବୟ ଭିତରକୁ ଆସିଲା ।

ପଛେ ପଛେ ମୋନାଲିସା । ହସି ହସି କହିଲା, ମିଷ୍ଟର ତରଫଦାର୍‌ଙ୍କ ମୁହଁରୁ କାଲି ରାତିର ଦୁର୍ଘଟଣା କଥା ଶୁଣିଲି । ମୁଁ ଅତ୍ୟନ୍ତ ଦୁଃଖିତ ମିଷ୍ଟର ମହାପାତ୍ର । ମୋନାଲିସା ଗୋଟାଏ ସୋଫା ଅଧିକାର କରି ବସିଲା ।

ଜୟନ୍ତ କିଛି କହିଲା ନାହିଁ । ସିଧା ଉଠି ଚାଲିଗଲା ବାଥ୍‌ରମ୍‌କୁ ।

ମାଳବିକା କହିଲା, ଲୋକଟି ଭୀଷଣ ସରଳ । ତାଙ୍କ ବିରୋଧରେ କ'ଣ ସବୁ ଘଟି ଯାଉଛି, ସେ କିଛି ଜାଣିପାରୁ ନାହାନ୍ତି ।

ମୋନାଲିସା ଆଖି ଟିପି ମାଳବିକାକୁ ନୀରବ ରହିବା ପାଇଁ କହିଲା । ଇଂଗିତରେ ବୟକୁ ଦେଖାଇଦେଲା ।

ମାଳବିକା ପ୍ରସଙ୍ଗ ବଦଳାଇବାକୁ ଯାଇ କହିଲା, ସୋନାଲି ଚାଲିଯାଇଛି ବୋଧେ ।

: ହଁ ସେ ଏଇକ୍ଷିଣା ଚାଲିଗଲା । ପୁଣି ଦୁଇ ତିନି ଦିନ ପରେ ଆସିବ କହି ଯାଇଛି ।

ବୟଟି ଖାଦ୍ୟ ସାମଗ୍ରୀ ସଜାଡ଼ି ଦେଇ ଘରୁ ବାହାରି ଚାଲିଯାଇଥିଲା । ଦରଜା ବନ୍ଦ ହୋଇଯିବା ଦେଖି ମାଳବିକା କହିଲା, ସୋନାଲିକୁ ଟିକିଏ ବୁଝାଇ କହିଛ ! କଲିକତାରେ ଯାଇ ଆଉ ଟିକିଏ ଭଲ କରି ଖବର ନେଇ ଆସିବାକୁ ।

: ମୁଁ ତାକୁ କହିଛି । ତେବେ ବସ୍‌ଙ୍କ କଥାବାର୍ତ୍ତାରୁ ମନେହେଉଛି, ଜୟନ୍ତକୁ ସେ ନିରାପଦରେ ଲୁଚେଇ ରଖିବାକୁ ଚାହାନ୍ତି । କାରଣଟା କ'ଣ ଜାଣି ହେଉ ନାହିଁ । ସେଥିରେ ଆମର ଯାଏ ଆସେନା କିଛି । ଆମେ ତ କର୍ତ୍ତବ୍ୟ ପାଳନ ପାଇଁ ନିଯୁକ୍ତି ପାଇଛେ । ମୋନାଲିସା କହିଲା ।

: ସତ ଯେ, ମାଳବିକା ଟିକିଏ ଢୋକ ଗିଳିଲା । ତଥାପି ଜୟନ୍ତ ପାଇଁ ମନଟା କିମିତି ହେଉଛି । ଲୋକଟା ଭୋଳା ମହେଶ, ତମେ ଟିକିଏ ଚେଷ୍ଟାକର ଭଉଣୀ । ତମ ଋଣ ମୁଁ ଜୀବନରେ ଶୁଝିପାରିବି ନାହିଁ ।

: ଚେଷ୍ଟା ତ ସମସ୍ତେ କରୁଛନ୍ତି । ତୁ ବ୍ୟସ୍ତ ହେଉଛୁ କାହିଁକି, ଶେଷ ପର୍ଯ୍ୟନ୍ତ ଗୋଟାଏ କିଛି କରିହେବ ।

: କାଲି ସେମାନଙ୍କ ମିଟିଂରେ କ'ଣ ସ୍ଥିର ହେଲା ?

: ସ୍ଥିର କିଛି ହୋଇ ନାହିଁ । ଆଜି ସେମାନେ ଜୟନ୍ତକୁ ଡାକିବେ । ତା' ସହିତ କ'ଣ କଥାବାର୍ତ୍ତା କରିବେ । ମୋର ଯେତେଦୂର ମନେ ହେଉଛି, ସେମାନେ ଜୟନ୍ତକୁ ଏଠାରେ ମଧ୍ୟ ଆଉ ବେଶିଦିନ ରଖିବେ ନାହିଁ; କାରଣ ଇଣ୍ଡିଆରୁ କ୍ରାଇମ୍‌ବ୍ରାଞ୍ଚରୁ ଯେଉଁ ଦୁଇଜଣ ଅଫିସର ଆସିଛନ୍ତି, ସେମାନେ ଏଠାକୁ ବି ଛୁଟି ଆସି ପାରନ୍ତି । ମୋନାଲିସା କହିଲା ।

: ତା'ହେଲେ ଉପାୟ ? ଜୟନ୍ତକୁ ଯଦି ଏଠାରୁ ନେଇ ଆହୁରି ନିକାଞ୍ଚନକୁ କେଉଁଠିକୁ ପଠାଇ ଦିଅନ୍ତି, ସଙ୍ଗରେ ମୋତେ ନ ପଠାଇ ପାରନ୍ତି ।

ମାଳବିକା କଥାର କିଛି ଉତ୍ତର ମିଳିବା ପୂର୍ବରୁ ଜୟନ୍ତ ବାଥ୍‌ରୁମ୍‌ରୁ ବାହାରି ଆସିଲା । ସିଧା ବ୍ରେକ୍‌ଫାଷ୍ଟ ଟେବୁଲ୍‌କୁ ।

ମୋନାଲିସା ଓ ମାଳବିକା ଦୁହେଁ ଉଠିଗଲେ । ଖାଦ୍ୟ ସାମଗ୍ରୀ ଆଗେଇ ଦେଲେ ଜୟନ୍ତ ଆଡ଼କୁ ।

ମୋନାଲିସା କହିଲା, ମୁଁ ଆପଣଙ୍କ ପାଖକୁ ଆସିଥିଲି ଦୁଇଟି ଖବର ଦେବା ପାଇଁ । ପ୍ରଥମଟି ହେଉଛି, ସୋନାଲି ତା' ଡିଉଟି କରିବା ପାଇଁ ଚାଲିଯାଇଛି । ଆଉ ଦ୍ୱିତୀୟ ସଂବାଦ ହେଉଛି, ରୁଦ୍ରପ୍ରସାଦ ଆପଣଙ୍କ ପାଇଁ କାଲି ରାତି ଦଶଟାରୁ ଅପେକ୍ଷା କରିଛନ୍ତି ।

ଜୟନ୍ତ ଖାଦ୍ୟ ସାମଗ୍ରୀରୁ ଅଳ୍ପ ପାଟିରେ ପୂରାଇ ଚୋବାଉଥିଲା । ସେତକ ଗଳାଧଃକରଣ କରିସାରି କହିଲା, ସୋନାଲି କିନ୍ତୁ ମୋ ସଂଗରେ ଦେଖାକରି ଗଲା ନାହିଁ । ତା' ସହିତ ମୋର ଅନେକ କାମ ଥିଲା ।

: ଆପଣଙ୍କ ସମସ୍ତ କାମ ସେ କରି ଫେରିବା ପାଇଁ ମୁଁ ତାକୁ ଅନୁରୋଧ କରିଛି ।

: ମୋର ସମସ୍ତ କାମ ମାନେ ? ଜୟନ୍ତ ହାତର ଚାମଚଟା ସ୍ଥିର ହୋଇଗଲା ।

: ଆପଣଙ୍କ କାମ ମାନେ, ସେ କଲିକତାକୁ ଯାଇ ଘଟଣା ସ୍ଥଳରୁ ଆପଣଙ୍କର ନିର୍ଦ୍ଦୋଷତାର ପ୍ରମାଣ ସଂଗ୍ରହ କରି ଆଣିବ । ଆପଣଙ୍କୁ ଦେଶଛଡ଼ା କରାଇବା ପାଇଁ କେଉଁମାନଙ୍କର ପ୍ରବଳ ଆଗ୍ରହ ସେତକ ବୁଝି ଆସିବ । ଏଇସବୁ କାମ ଆଉ କ'ଣ !

ଜୟନ୍ତ ମୋନାଲିସା ମୁହଁରୁ ଏପରି ଉତ୍ତର ଆଶା କରି ନଥିଲା । କିଛି ଉତ୍ତର ନ ଦେଇ ଖାଦ୍ୟ ପଦାର୍ଥତକ ନୀରବରେ ଶେଷ କରିବାକୁ ଚେଷ୍ଟା କଲା ।

ମୋନାଲିସା କହିଲା, ମୋ ଦ୍ୱିତୀୟ ସଂବାଦର କିନ୍ତୁ ଉତ୍ତର ପାଇଲି ନାହିଁ । ରୁଦ୍ରପ୍ରସାଦଙ୍କ ପାଖକୁ ଆପଣ କେତେବେଳେ ଯିବେ ?

: ରୁଦ୍ରପ୍ରସାଦ ? ଓଃ ହଁ, କେହିଦେବ ଘଣ୍ଟାକ ଭିତରେ ମୁଁ ଯାଉଛି; କିନ୍ତୁ ତାଙ୍କୁ କେଉଁଠି ଦେଖାକରିବି ?

: ମୋତେ ବି ଠିକଣା ଜଣା ନାହିଁ । ସେ ଖାଲି ମଝିରେ ମଝିରେ ଫୋନ୍ କରୁଛନ୍ତି । ଏଠାକୁ ସେ ଗାଡ଼ି ପଠାଇବେ ଆପଣଙ୍କୁ ନେଇଯିବା ପାଇଁ ।

: ହୁଁ, ରୁଦ୍ରପ୍ରସାଦ ତା'ହେଲେ ଏ ହୋଟେଲରେ ପୂରା ମାଲିକ ନୁହନ୍ତି, ଜଣେ ପାର୍ଟନର । ବେଳେବେଳେ ଆସନ୍ତି । କିନ୍ତୁ ଏଠାରେ କେବେ ରୁହନ୍ତି ନାହିଁ । ସେ ଆମ ସମସ୍ତଙ୍କର ବସ୍ । ମୋନାଲିସା ଅତି ସହଜ ସ୍ୱରରେ କହିଲା ।

ଜୟନ୍ତ ମୁହୂର୍ତ୍ତକ ପାଇଁ ଜଡ଼ ପାଲଟିଗଲା । ରୁଦ୍ରପ୍ରସାଦ ତା'ହେଲେ ଚାରିଆଡ଼େ ପସରା ମେଲିଛନ୍ତି । ଲୋକଟିର ଅସଲ ପରିଚୟ କ'ଣ ? ସେ କ'ଣ ପ୍ରକୃତରେ ଜୟନ୍ତର ମଙ୍ଗଳ ଚାହାନ୍ତି ନା ଜୟନ୍ତ ସାହାଯ୍ୟରେ କିଛି ଫାଇଦା ଉଠାଇବାକୁ ଚାହାନ୍ତି ? ଏ ପ୍ରଶ୍ନର ଉତ୍ତର ସେ ପାଇବ କେଉଁଠୁ ?

ମାଳବିକା ଦେଇପାରିବ ?

ସୋନାଲି ଦେଇପାରିବ ?

ମୋନାଲିସା ?

ନା, ନା, ଏମାନେ କେହି ଦେଇ ପାରିବେ ନାହିଁ । ପାରିଲେ ପାରିବ ଏକା ରୋଜି । ହଁ ରୋଜିକୁ ତା'ର ପ୍ରୟୋଜନ । ରୋଜି ସହିତ ସେ ନିରୋଳାରେ କିଛି ସମୟ କଟାଇବାକୁ ଚାହେଁ । ରୋଜି ହୁଏତ ତାକୁ ସବୁ କଥା କହିବାକୁ ବାରମ୍ବାର ଆସୁଛି, ସୁଯୋଗ ଖୋଜୁଛି, କିନ୍ତୁ ସୁବିଧା କରି କହିପାରୁ ନାହିଁ ।

ଜୟନ୍ତର ଖିଆ ଶେଷ ହୋଇଯାଇଥିଲା ।

ମାଳବିକା କଫି ପଟରୁ କଫି ଢାଳୁଥିଲା ।

ମୋନାଲିସା ଏକ ଦୃଷ୍ଟିରେ ଅନାଇ ରହିଥିଲା ଜୟନ୍ତ ମୁହଁକୁ, ବୋଧହୁଏ ତା' ପ୍ରଶ୍ନର ଉତ୍ତର ପାଇଁ ।

ମାଳବିକା କହିଲା : ଆପଣ କେତେବେଳେ ରୁଦ୍ରପ୍ରସାଦଙ୍କ ସଙ୍ଗରେ ଦେଖାକରିବେ, ମୋନାଲିସାକୁ କହି ଦିଅନ୍ତୁ ।

: ହଁ, ମୁଁ ପ୍ରସ୍ତୁତ, ଆପଣ କହି ଦିଅନ୍ତୁ, ସେ ଚାହିଁଲେ ବର୍ତ୍ତମାନ ମୁଁ ଯାଇପାରେ । ଜୟନ୍ତ ଟାଓ୍ୱେଲରେ ହାତ ପୋଛୁ ପୋଛୁ ଉଠି ଠିଆହେଲା ।

ମୋନାଲିସା ହାତଘଡ଼ିକୁ ଚାହିଁଲା । କହିଲା, ଠିକ୍ ୧୧ଟା ବେଳକୁ ଗାଡ଼ି ଆସିବ । ଆପଣ ପ୍ରସ୍ତୁତ ଥିବେ ।

ମୋନାଲିସା ଚାଲିଗଲା । ଘରେ ରହିଲେ ମାଳବିକା ଆଉ ଜୟନ୍ତ ।

ମାଳବିକା ଉଠିଯାଇ ଭିତରୁ ଦରଜାଟା ବନ୍ଦ କରି ଆସି ଜୟନ୍ତ ସାମ୍ନାରେ ବସି କହିଲା, ତମେ କ'ଣ ସ୍ଥିର କଲ ଜୟନ୍ତ ?

: କୋଉ କଥା ?

: ଏମାନଙ୍କ ଆଚାର ଆଚରଣ ମୋତେ କିଛି ଭଲ ଦିଶୁ ନାହିଁ । ହୁଏତ ରୁଦ୍ରପ୍ରସାଦ ତମକୁ ଅନ୍ୟତ୍ର କେଉଁଠିକି ପଠାଇ ଦେବାର ପ୍ରସ୍ତାବ ବାଢ଼ିପାରନ୍ତି । ତମେ କିନ୍ତୁ ରାଜି ହେବ ନାହିଁ କହିବ, ନେପାଳ ଛାଡ଼ି ମୁଁ ଅନ୍ୟ କୁଆଡ଼େ ଯିବି ନାହିଁ ।

: ସେଥିରେ ତମର ଲାଭ ?

ଲାଭ ତ୍ରୁଟିର ହିସାବ ମୁଁ କରିବାକୁ ବସି ନାହିଁ ଜୟନ୍ତ, ମୁଁ କେବଳ ଚାହେଁ ତମର ସାନିଧ୍ୟ । ତମ ପାଖେ ପାଖେ ରହି ପାରିଲେ ମୁଁ ନିଜକୁ ଧନ୍ୟ ମନେକରିବି ।

ଜୟନ୍ତ ହସିଲା । କହିଲା, ସମସ୍ତେ ନିଜ ନିଜ ସ୍ୱାର୍ଥ ସାଧନ ପାଇଁ ପାଗଳ । ତା'ହେଲେ ରୁଦ୍ରପ୍ରସାଦ କ'ଣ ଦୋଷ କଲେ ?

ମାଳବିକା ଅନୁନୟ ସ୍ୱରରେ କହିଲା, ତମେ ଜାଣି ନାହଁ ଜୟନ୍ତ, ରୁଦ୍ରପ୍ରସାଦଙ୍କୁ ତମେ ଚିହ୍ନି ନାହଁ । କେବେ ସେ କାହାରି ମଙ୍ଗଳ ପାଇଁ କିଛି କରି ନାହାନ୍ତି । ତମ ପାଇଁ ଯେ ସେ ଉଦାର ମହତ୍‌ହେବେ, ସେ ଭାବନା ମୋଟେ ମୁଁ ଭାବିପାରୁନାହିଁ ।

ଜୟନ୍ତ ମାଳବିକାର ହାତ ଦୁଇଟା ନିଜ ହାତରେ ଧରି ସ୍ନିଗ୍ଧ ଦୃଷ୍ଟିରେ ଚାହିଁଲା । କହିଲା, ଅନୁରାଧା ସହିତ ତମର ଅନେକ ମେଳ ମାଳା । ବେଳେ ବେଳେ ଅନୁରାଧା ମୋ ପାଖରେ ଠିକ୍ ଏମିତି ଅଳି କରୁଥିଲା । ଯେତେବେଳେ ମୁଁ କୌଣସି କଠିନ କାର୍ଯ୍ୟରେ ବାହାରୁଥିଲି, ସେ ତମରି ପରି ମୋତେ ନିବର୍ତ୍ତାଉଥିଲା; କିନ୍ତୁ ସେଠି ଥିଲି ମୁଁ ସ୍ୱାଧୀନ । ଏଠି ପରାଧୀନ । ତମ କଥା କେତେଟା ରଖିପାରିବି ନ ପାରିବି ତୁମକୁ ପ୍ରତିଶ୍ରୁତି ଦେବାଭଳି ସୁଯୋଗ ମୋର ନାହିଁ । ତେବେ ମାଳା, ଏତିକି ମୋର ମନେ ହୋଇଛି, ତମେ ମୋର ଏହି ଦୁଃସମୟର ବନ୍ଧୁ । ତମ କଥା ମୁଁ ଜୀବନରେ ଭୁଲିପାରିବି ନାହିଁ ।

ମାଳବିକା ଆଉ କିଛି କହିଲା ନାହିଁ । ଆଖି ଦୁଇଟା ତା'ର ଛଳଛଳ ହୋଇ ଉଠିଲା ।

ଜୟନ୍ତ ତା' ଆଖିରୁ ଲୁହ ପୋଛିଦେଲା, ସାନ୍ତ୍ୱନା ଦେଇ କହିଲା, ତମେ ମୋ ପାଇଁ କାନ୍ଦ ନାହିଁ ମାଳା । ମୁଁ ପାଖକୁ ନେଇଯିବି ।

ଘରର ଟେଲିଫୋନ୍‌ଟା ବାଜିଉଠିଲା ।

ଜୟନ୍ତ ଉଠିଗଲା ସଂଗେ ସଂଗେ ମୋନାଲିସା କହୁଛି, ବସ୍ ବର୍ତ୍ତମାନ ଫୋନ୍ କରିଥିଲେ । ଏଗାରଟା ବେଳେ ସେ ଗାଡ଼ି ପଠାଇବେ । ଆପଣ ପ୍ରସ୍ତୁତ ହୋଇ ଥାଆନ୍ତୁ । ମୁଁ ଡାକି ପଠାଇବି । ମନେ ରଖନ୍ତୁ ଏଗାରଟା ବାଜିବାକୁ ଆଉ ପନ୍ଦର ମିନିଟ୍ ବାକି ଅଛି ।

ଜୟନ୍ତ କିଛି କହିଲା ନାହିଁ । ରିସିଭରଟାକୁ କ୍ରେଡ଼େଲ ଉପରେ ଥୋଇଦେଲା । ଟେବୁଲ୍ ଡ୍ରୟାର ଟାଣି କିଛି ଟଙ୍କା ପକେଟ୍‌ରେ ଭରି କହିଲା, ମୋ ସଙ୍ଗରେ ଟିକିଏ ବାହାରକୁ ଯାଇ ପାରିବ ମାଳା ?

କୁଆଡ଼େ ?

: ଏଇ ବଜାରକୁ । ମୁଁ କିଛି ଜିନିଷପତ୍ର କିଣିବାକୁ ଚାହେଁ । ଲୁଗାପଟା ମୋର ଯେ କିଛି ନାହିଁ ।

: ଫୋନ୍ କିଏ କରିଥିଲା ?

: ମୋନାଲିସା । କହିଲା ଏଗାରଟା ବେଳକୁ ପ୍ରସ୍ତୁତ ହୋଇ ରହିବା ପାଇଁ, କିନ୍ତୁ ମୁଁ ଏଗାରଟା ବେଳେ ରୁଦ୍ରପ୍ରସାଦଙ୍କ ପାଖକୁ ଯିବି ନାହିଁ ।

ମାଳବିକା ଉଠିଆସିଲା । ଜୟନ୍ତର ହାତ ଧରି କହିଲା, ନା, ତମେ ପୁଣି ଆଉ ଗୋଟାଏ ଭୁଲ କର ନାହିଁ । ରୁଦ୍ରପ୍ରସାଦଙ୍କ ସହିତ ଯାଇ ଦେଖା କର । ସେ କ'ଣ କହୁଛନ୍ତି ଶୁଣ । ତମେ ବର୍ତ୍ତମାନ ତାଙ୍କ ଖାପ୍‌ଚରେ । ତାଙ୍କୁ ଏଡ଼େଇ ଯାଇ ତମର ମଙ୍ଗଳ ହେବ ନାହିଁ ।

: କିନ୍ତୁ ମୁଁ ଯାଇ ସେଠାରେ କ'ଣ କରିବି ମାଳା ! ମୋତେ ସେ ଯଦି ମୋ ମତ ବିରୋଧରେ ଗୋଟାଏ କିଛି କରିବା ପାଇଁ ପ୍ରସ୍ତାବ ଦିଅନ୍ତି, ମୁଁ କ'ଣ ପାରିବି ?

: ସେ କଥା ପରେ ଦେଖାଯିବ । ତମେ ଯାଇ ଫେରି ଆସ । ସୋନାଲି କଲିକତାରୁ ଫେରୁ । ତା'ପରେ ଗୋଟାଏ କିଛି ସିଦ୍ଧାନ୍ତ ନେବାକୁ ପଡ଼ିବ । କିଛି ନହେଲେ ମୁଁ ତୁମକୁ ସଙ୍ଗରେ ନେଇ କୌଣସି ଏକ ନିରାପଦ ସ୍ଥାନକୁ ଚାଲିଯିବି ।

ଜୟନ୍ତ କିଛି ସମୟ ମାଳା ମୁହଁକୁ ଅନାଇ ରହି ସୋଫା ଉପରେ ବସି ପଡ଼ିଲା ।

ରୁଦ୍ରପ୍ରସାଦ ଜୟନ୍ତକୁ ଦେଖି ସ୍ୱାଗତ ଜଣାଇଲେ ।

ଜୟନ୍ତ ଦେଖିଲା ରୁଦ୍ରପ୍ରସାଦ ଘରେ ଜଣେ ଚୀନା ଭଦ୍ରଲୋକ ବସିଛନ୍ତି ।

ରୁଦ୍ରପ୍ରସାଦ କହିଲେ, ଏ ମୋର ବନ୍ଧୁ ମିଷ୍ଟର ଚୁଙ୍ଗ୍ । ତମ ସହିତ ପରିଚୟ କରାଇ ଦିଏ । ଭଦ୍ରଲୋକ ଜଣେ ବୈଜ୍ଞାନିକ ।

ଜୟନ୍ତ ଚୀନା ଭଦ୍ରଲୋକଙ୍କୁ ନମସ୍କାର କଲା ।

ସେ ପ୍ରତିନମସ୍କାର କରି ହସିଲେ ।

ରୁଦ୍ରପ୍ରସାଦ କହିଲେ, ତା'ପରେ ଜୟନ୍ତ, ତମ ଖବର କ'ଣ କୁହ । ଏ କେଇଦିନ ଭିତରେ କିଛି ଅସୁବିଧା ହୋଇ ନାହିଁ ତ ! ମୁଁ ଟିକିଏ ବ୍ୟସ୍ତ ଲୋକ । ତମ ଖବର ଅନ୍ତର ବୁଝିବାକୁ ସମର୍ଥ ହୋଇ ପାରିନାହିଁ ।

: ନା, ନା ମୋର କିଛି ଅସୁବିଧା ହୋଇ ନାହିଁ । ଆପଣ ମୋତେ ଯେପରି ରଖିଛନ୍ତି, ମୁଁ ଖୁବ୍ ଭଲରେ ଅଛି; କିନ୍ତୁ ମୋର ପ୍ରଶ୍ନ ହେଉଛି, ମୋତେ ଏହିପରି ଆଉ କେତେଦିନ ଲୁଚି ଲୁଚି ବୁଲିବାକୁ ପଡ଼ିବ ?

: କିଛି ଉପାୟ ନାହିଁ ଜୟନ୍ତ । ଆମେ ତମର ନିର୍ଦ୍ଦୋଷତା ପ୍ରମାଣ ପାଇଁ ସବୁରକମ ଉଦ୍ୟମ କରୁଛୁ । ଏପରିକି ତମ କେସ୍ ତଦନ୍ତ କରିବା ପାଇଁ ଆମେ ଜଣେ ପ୍ରାଇଭେଟ୍ ଡିଟେକ୍‌ଟିଭ୍ ନିୟୋଗ କରିଛୁ । ଅନୁରାଧାର ହତ୍ୟାକାରୀ ଏତେ ଚତୁର ଲୋକେ ଯେ, ସେ ଟିକିଏ ହେଲେ କ୍ଲୁ ଛାଡ଼ି ଯାଇ ନାହିଁ । ତଥାପି ଆମେ ଅଳ୍ପ ବିସ୍ତର ତଥ୍ୟ ସଂଗ୍ରହ କରି ସାରିଲୁଣି । ଅନୁରାଧାର ହତ୍ୟାକାରୀ ଆଉ ବେଶିଦିନ ଆତ୍ମଗୋପନ କରି ରହିପାରିବ ନାହିଁ ।

ଜୟନ୍ତ ସବୁ ଶୁଣୁଥିଲା । ତା'ର ମନେହେଉଥିଲା ଏସବୁ ଯେପରି ଛଳନା । ରୁଦ୍ରପ୍ରସାଦଙ୍କ କଥାରେ କିଛି ଆନ୍ତରିକତା ଥିବା ପରି ମନେ ହେଉ ନଥିଲା ।

ସେ ପଚାରିଲା, ଏତେ ଦିନ ଭିତରେ ମଳୟ ଚଉଧୁରୀ ଦିନେ ହେଲେ ମୋତେ ଦେଖାକରିବାକୁ ଆସିଲେ ନାହିଁ କାହିଁକି ?

: ମଳୟର ଆସିବା ସମ୍ଭବ ହୋଇ ନାହିଁ । ସେ ଅନୁରାଧାର ହତ୍ୟା ତଦନ୍ତ ବ୍ୟାପାରରେ ଏତେ ବ୍ୟସ୍ତ ହୋଇପଡ଼ିଛି ଯେ, ତାକୁ ମୁହୂର୍ତ୍ତେ ସମୟ ମିଳୁ ନାହିଁ । ଯେଉଁମାନଙ୍କୁ ଧରି ସେ ତଦନ୍ତ କରାଉଛି, ସେମାନଙ୍କର ନାନାପ୍ରଶ୍ନର ଉତ୍ତର ଦେଉ ଦେଉ ଏବଂ ଅନୁରାଧାର ଗତିବିଧି ସମ୍ବନ୍ଧରେ ସବୁ ପ୍ରକାର ବ୍ୟବସ୍ଥା କରୁ କରୁ ତା'ର ସମୟ ଶେଷ ହୋଇଯାଉଛି- ଯେପରି, ଅନୁରାଧା କିଏ, ତା'ର ଜନ୍ମ କେଉଁଠି, ପିତାମାତାଙ୍କ ଠିକଣା, ଅନୁରାଧାର ବନ୍ଧୁ ବାନ୍ଧବ, ସମ୍ଭାବ୍ୟ କାର୍ଯ୍ୟକ୍ରମ, ଏମାନଙ୍କ ତଥ୍ୟ ଖୋଜୁ ଖୋଜୁ ସକାଳୁ ରାତି ହୋଇଯାଉଛି । ଯାହାହେଉ, ଏହାଦ୍ୱାରା ଲାଭ ହୋଇଛି । ଏପର୍ଯ୍ୟନ୍ତ ତିନିଜଣଙ୍କୁ ଅନୁରାଧାର ହତ୍ୟାକାରୀ ରୂପେ ସନ୍ଦେହ କରାହୋଇଛି । ପ୍ରଥମ ଜଣକ ଅନୁରାଧାର ପ୍ରତିବେଶୀ ସ୍ୱରୂପ କିଷନା ତା' ଫ୍ଲାଟ୍‌ରୁ ଅନୁରାଧାର ହାତଲେଖା ଚିଠି ତିନି ଚାରିଖଣ୍ଡ ବାହାରିଛି । ଗୋଟିଏ ଚିଠିରୁ ସାମାନ୍ୟ ସୂଚନା ମିଳୁଛି ଯେ, ଅନୁରାଧା ସ୍ୱରୂପ କିଷନ୍‌କୁ ଲେଖିଛି, "ଆପଣ ଆଉ ମୋ ପଛରେ ଲାଗନ୍ତୁ ନାହିଁ । ମୋତେ ବିରକ୍ତ କରନ୍ତୁ ନାହିଁ । ପ୍ରତ୍ୟେକ ମଣିଷର ଗୋଟାଏ ସ୍ୱତନ୍ତ୍ର ମତ ଅଛି, ସ୍ୱତନ୍ତ୍ର ଇଚ୍ଛା ଅଛି, ବାଧ୍ୟ କରି କେହି କାହାକୁ ଭଲ ପାଇବା ପାଇଁ ଆକୃଷ୍ଟ କରିପାରେ ନାହିଁ । ଆପଣ ଭଦ୍ର ଲୋକ । ସଂଭ୍ରାନ୍ତ ବଂଶଜ; ତେଣୁ ମୋ ଆଡୁ ଆଖି ଫେରାଇ ନିଅନ୍ତୁ । ଆପଣ ମୋତେ ଯେଉଁ ଧମକ ଦେଇଛନ୍ତି, ସେ ଧମକରେ ମୋର କିଛି କ୍ଷତି ହେବ ନାହିଁ । ବରଂ କଥାଟା ପ୍ରକାଶ ପାଇଲେ, ପୋଲିସ୍‌ରେ ଜଣାଜଣି ହେଲେ, ଆପଣ ଅପଦସ୍ଥ ହେବେ । ଦୟାକରି ମୋ କଥାଟା ଗଭୀର ଭାବରେ ଚିନ୍ତା କରି, ମୋ ପ୍ରତି ସୁବିଚାର କରନ୍ତୁ ।"

ବୁଝିଲ ଜୟନ୍ତ, ଅନୁରାଧାର ହତ୍ୟାକାରୀ ହିସାବରେ ସ୍ୱରୂପ କିଷନ୍‌କୁ ପ୍ରଥମ ଆସାମୀ ରୂପେ ସନ୍ଦେହ କରାହୋଇଛି ।

ଦ୍ୱିତୀୟ ଆସାମୀ ହେଉଛି ହୋଟେଲ ଆମ୍ବାସାଡାର ମ୍ୟାନେଜର ମିଷ୍ଟର ଫେଡ୍ରିକ୍ ।

ତମେ ଜାଣିଛ କି ନାହିଁ, ଅନୁରାଧା ଆମ୍ବାସାଡାର ହୋଟେଲର କିଛିଦିନ ନର୍ତ୍ତକୀ ଥିଲା । ଅନୁସନ୍ଧାନରୁ ଜଣାଯାଇଛି ମିଷ୍ଟର ଫେଡ୍ରିକ୍ ଅନୁରାଧାକୁ ପ୍ରଥମେ ତାଙ୍କ

ହୋଟେଲରେ ନର୍ତ୍ତକୀ ରୂପେ ସୁଯୋଗ ଦେଇଥିଲେ । ମିଷ୍ଟର ଫ୍ରେଡ୍ରିକ୍ ଯଦିଓ ବିବାହିତ ଏବଂ ଦୁଇଟି ସନ୍ତାନର ଜନକ ତଥାପି ସେ ଅନୁରାଧାର ରୂପରେ ମୁଗ୍ଧ ହୋଇ ତା'ପ୍ରତି ଆସକ୍ତ ହୋଇ ପଡ଼ିଥିଲେ । ସେଇ ଆସକ୍ତିଟା ହିଁ ଅନୁରାଧାକୁ ହୋଟେଲ ଆମ୍ବାସାଡାରରେ ନିଯୁକ୍ତିର କାର୍ଯ୍ୟ କରିଥିଲା । ଅନୁରାଧା ସେ କଥା ବୁଝିପାରିଥିଲା । କିନ୍ତୁ ତା'ର କିଛି ଉପାୟ ନଥିଲା । ଦି'ଟା ଖାଇପିଇ ଟିକିଏ ଭଦ୍ର ଭାବରେ ବଞ୍ଚି ରହିବା ପାଇଁ ଅନ୍ନ ସଂସ୍ଥାନର ଆବଶ୍ୟକ । ଅନୁରାଧା ସବୁ ଜାଣି ବି ନ ଜାଣିଲା ପରି ତା' ହୋଟେଲ ଜୀବନ ଆରମ୍ଭ କରିଥିଲା । ମିଷ୍ଟର ଫେଡ୍ରିକ୍ କିନ୍ତୁ ଉତ୍ସାହ ପାଇଥିଲେ । ସେ ମନେ ମନେ ଧରି ନେଇଥିଲେ ଅନୁରାଧା ତାଙ୍କୁ ପ୍ରଶ୍ରୟ ଦେଉଛି । ସେହି ଆଶା ଏବଂ ସେଇ ସମ୍ଭାବନା ମିଷ୍ଟର ଫେଡ୍ରିକ୍‌ଙ୍କ ଜୀବନରେ ଝଡ଼ ସୃଷ୍ଟି କରିଥିଲା । ତାଙ୍କ ଦାମ୍ପତ୍ୟ ଜୀବନରେ ଘୁଣ ଧରିଥିଲା । ମିସେସ୍ ଫେଡ୍ରିକ୍ ଯେତେବେଳେ ସ୍ୱାମୀଙ୍କର ମନୋଭାବ ଜାଣିପାରିଲେ, ସେତେବେଳେ ସେ ସ୍ୱାମୀଙ୍କୁ ବୁଝାଇସୁଝାଇ ଚେଷ୍ଟା କରିଥିଲେ ପଥକୁ ଫେରାଇ ଆଣିବା ପାଇଁ; ହେଲେ କିଏ କାହାର କଥା ଶୁଣେ ? ଦିନ ଆସିଲା, ମିଷ୍ଟର ଫେଡ୍ରିକ୍ ଅନୁରାଧାର ପଛେ ପଛେ ଘୂରିଲେ । ଶେଷରେ ସ୍ଥିରକଲେ ଅନୁରାଧାକୁ ସେ ବିବାହ କରିବେ । ସେଥିପାଇଁ ମିଷ୍ଟର ଫେଡ୍ରିକ୍ ମିସେସ୍ ଫେଡ୍ରିକ୍‌ଙ୍କୁ ଡାଇଭୋର୍ସ କଲେ । ଚରମ ମୁହୂର୍ତ୍ତରେ ଅନୁରାଧା ହୋଟେଲ ଆମ୍ବାସାଡାରରୁ ଖସି ଅନ୍ୟତ୍ର ପଳାଇଲା । ସେତିକିରେ ଏ ସମସ୍ୟାର ସମାଧାନ ହେଲା ନାହିଁ । ମିସେସ୍ ଫେଡ୍ରିକ୍ ହୋଟେଲ ଆମ୍ବାସାଡ଼ାରର ମାଲିକଙ୍କ ପାଖରେ ଅଶ୍ରୁସିକ୍ତ ନୟନରେ ସବୁ କଥା ଜଣାଇଲା । ଫଳରେ ମିଷ୍ଟର ଫେଡ୍ରିକ୍ କର୍ମଚ୍ୟୁତ ହେଲେ ।

ଏତକ କହିସାରି ରୁଦ୍ରପ୍ରସାଦ ଟିକିଏ ନୀରବ ହେଲେ । ସେ ଚାହିଁଲେ ଜୟନ୍ତ ମୁହଁକୁ । ଜୟନ୍ତ ନିର୍ବିକାର ଚିତ୍ତରେ ରୁଦ୍ରପ୍ରସାଦଙ୍କ କଥା ଶୁଣୁଥିଲା । ନୀରବତା ଭଙ୍ଗକରି ଉତ୍ସାହିତ ହେଲାପରି ପ୍ରଶ୍ନ କଲା, ତା'ପରେ ?

ରୁଦ୍ରପ୍ରସାଦ ଗୋଟିଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରୁ କରୁ କହିଲେ, ହଁ ତା'ପରେ ମି: ଫେଡ୍ରିକ୍ ଅନୁରାଧା ଉପରେ ଖୁବ୍ କ୍ଷିପ୍ତ ହୋଇ ପ୍ରତିଶୋଧ ନେବାକୁ ଚେଷ୍ଟା କରିଥିଲେ । ସେଇ ପ୍ରତିଶୋଧର ପରିଣାମ ଅନୁରାଧାର ମୃତ୍ୟୁ ବୋଲି ଆମେ ଅନୁମାନ କରୁଛୁ । ଯାହାହେଉ ଏପର୍ଯ୍ୟନ୍ତ ମିଷ୍ଟର ଫେଡ୍ରିକ୍ ଆମର ଦୁଇ ନମ୍ବର ସଂଦେହୀ ତାଲିକାରେ ଅଛନ୍ତି ।

ଆଉ ତିନି ନମ୍ବର ! ତିନି ନମ୍ବର ହେଉଛନ୍ତି ମିସ୍ ଜେକବ୍ । ଇହୁଦୀ ଭଦ୍ରମହିଳା । ବୟସ ତାଙ୍କର ଚାଳିଶରୁ ଊର୍ଦ୍ଧ୍ୱ ହେବ । ସେ ଅନୁରାଧାକୁ ନେଇ କିଛିଦିନ ଘରେ ରଖିଥିଲେ, ନିଜର ଝିଅପରି । ଏହା ମୂଳରେ ତାଙ୍କର ଗୋଟାଏ ଉଦ୍ଦେଶ୍ୟ ଥିଲା । ଭଦ୍ର ମହିଳା ବହୁ ଚେଷ୍ଟାକରି ଜୀବନରେ ବିବାହ କରି ପାରି ନଥିଲେ । ବାପାଙ୍କର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇ ବସି ରହିଛନ୍ତି; କିନ୍ତୁ ଭଦ୍ର ମହିଳାଙ୍କର ଗୋଟାଏ ହବିଥିଲା ତରୁଣମାନଙ୍କୁ ଆକୃଷ୍ଟ କରି ଘରକୁ ଆଣି ସେମାନଙ୍କ ଦ୍ୱାରା ଯୌନ କାମନା ଚରିତାର୍ଥ କରିବା ।

ହୁଏତ ପ୍ରଥମ ଯୌବନରେ ସେ ତାଙ୍କର କାମନା ପୂରଣ କରି ଚାଲିଥିଲେ; କିନ୍ତୁ ଯେତେବେଳେ ବୟସ ବଢ଼ିଲା ଓ ରୂପର ଝଲକ କମିଲା ତରୁଣମାନେ ମିସ୍ ଜେକବ୍‌ଙ୍କ ପ୍ରତି ଆଉ ଆକୃଷ୍ଟ ହେଲେ ନାହିଁ । ଫଳରେ ମିସ୍ ଜେକବ୍ ଏକ ନୂତନ ଫନ୍ଦି ଉଦ୍‌ଭାବନ

କଲେ । ସେ ଅନୁରାଧାକୁ ହାତ କରି ନିଜ ପାଖରେ ରଖିଲେ । ବିଭିନ୍ନ କ୍ଳବ, ସୋସାଇଟି, ପାର୍ଟିରେ ଯାଇ ଅନୁରାଧାକୁ ନିଜର ପାଳିତା କନ୍ୟାରୂପେ ପରିଚିତ କରାଇଲେ । ଅନୁରାଧା ସାହାଯ୍ୟରେ ତରୁଣମାନଙ୍କୁ ଆକୃଷ୍ଟ କରାଇ ନିଜ ଘରକୁ ଅଣାଇଲେ । ତା'ପରର ଘଟଣା ତ ତମେ ଅନୁମାନ କରି ପାରୁଥିବ ଜୟନ୍ତ; କିନ୍ତୁ ଅନୁରାଧା ଯେତେବେଳେ ମିସ୍ ଜେକବ୍‌ଙ୍କର ଅସଲ ସ୍ୱରୂପ ଦେଖିପାରିଲା, ସେ ପ୍ରତିବାଦ କଲା । ଚାରିଆଡ଼େ ଗାଇ ବୁଲିଲା ମିସ୍ ଜେକବ୍‌ଙ୍କ କୀର୍ତ୍ତିକାହାଣୀ । ମିସ୍ ଜେକବ୍ ଅନୁରାଧାକୁ ନାଲିଆଖି ଦେଖାଇଲେ । ଶାସନ କରିବା ପାଇଁ ଚେଷ୍ଟା କଲେ । ମିସ୍ ଜେକବ୍‌ଙ୍କର ଏହି ଘୃଣ୍ୟ ଆଚରଣ ଅନୁରାଧାକୁ କ୍ଷୁବ୍‌ଧ କରି ପକାଇଥିଲା । ଯେଉଁସବୁ କ୍ଳବ, ସୋସାଇଟିରେ ମିସ୍ ଜେକବ୍ ଅନୁରାଧାକୁ ନେଇ ପରିଚିତ କରାଇଥିଲେ, ସେଇସବୁ ସ୍ଥାନରେ ଅନୁରାଧା ତାଙ୍କର ଘୃଣ୍ୟ ଆଚରଣର ବୃତ୍ତାନ୍ତ କହି ବୁଲିଥିଲା । ଫଳରେ ମିସ୍ ଜେକବ୍ ସମସ୍ତଙ୍କ ଆଖିରେ ଛୋଟ ହୋଇ ଯାଇଥିଲେ । କେହି ତାଙ୍କ ସଙ୍ଗରେ କଥା କହୁ ନଥିଲେ, ତାଙ୍କୁ ଦେଖିଲେ ମୁହଁବୁଲେଇ ଅନ୍ୟତ୍ର ଚାଲିଯାଉଥିଲେ ।

ମିସ୍ ଜେକବ୍ ସବୁଆଡ଼ୁ ବ୍ୟର୍ଥ ହୋଇ ଅନୁରାଧା ଉପରେ ଅଗ୍ନିବର୍ଷଣ କରିଥିଲେ । ଦିନେ ନିଶାର୍ଦ୍ଧରେ ଅନୁରାଧାର ଗଳା ଟିପି ମାରି ଦେବାକୁ ଚେଷ୍ଟା କରିଥିଲେ । ସେ ଯାତ୍ରାରେ ଅନୁରାଧା ବଞ୍ଚିଯାଇଥିଲା । କିନ୍ତୁ ଏ ଯାତ୍ରାରେ ଆଉ ବଞ୍ଚିପାରିଲା ନାହିଁ । ତେଣୁ ଆମ ତାଲିକାର ତିନିନମ୍ବର ଆସାମୀ ମିସ୍ ଜେକବ୍ । ରୁଦ୍ରପ୍ରସାଦ ନୀରବ ହୋଇ ଜଳନ୍ତା ସିଗାରେଟ୍‌ଟାକୁ ଆଷ୍ଟ୍ରେରେ ଚାପି ଧରିଲେ ।

: ହୁଁ, ବୁଝିଲି । ଜୟନ୍ତ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ କହିଲା ।

: ତମେ ଯାହା ଭାବ ଜୟନ୍ତ, ମଳୟ ଚଉଧୁରୀ କିନ୍ତୁ ଚୁପ୍ ହୋଇ ବସିନାହିଁ । ସେ ତା' ପ୍ରାଣପଣେ ଚେଷ୍ଟା କରୁଛି ତମ୍ଭୁକୁ ନିର୍ଦ୍ଦୋଷ ପ୍ରମାଣ କରାଇବା ପାଇଁ । ମୁଁ ବି ଦେଖୁଛି ସେ ଆହାର ନିଦ୍ରା ପରିତ୍ୟାଗ କରି କାମରେ ଲାଗିଛି । ଆଇନ୍ ଏପରି ଏକ ପାଠ, ହତ୍ୟାକାରୀକୁ ତମେ ସ୍ୱଚକ୍ଷୁରେ ଦେଖିଥିଲେ ମଧ୍ୟ ପ୍ରମାଣ କରାଇ ନ ପାରିଲେ, ସେ ମୁକ୍ତଆକାଶର ବିହଙ୍ଗ ହୋଇ ଉଡ଼ିବୁଲୁଥିବ ।

ତମ କ୍ଷେତ୍ରରେ କେସ୍‌ଟା ଆହୁରି ଜଟିଳ । ପୋଲିସ୍ ଅଫିସରମାନେ ବି କେହି ଟିକିଏ ସହଯୋଗ କରିବାକୁ ଚାହାନ୍ତି ନାହିଁ । ସହଜ ସରଳ ପଥ ଛଡ଼ା ସେମାନେ ବି ବଙ୍କା ପଥରେ ଯିବାକୁ ପ୍ରସ୍ତୁତ ନୁହନ୍ତି । ଯେହେତୁ ତମେ ଆତ୍ମଗୋପନ କରି ରହିଛ, ସେମାନଙ୍କର ଧାରଣା ତମେ ହିଁ ହତ୍ୟାକାରୀ । ହେଲେ ସେମାନଙ୍କର ଏହି ଧାରଣା ବେଶି ଦିନ ରହିବ ନାହିଁ । ତମେ ଆଉ ଟିକିଏ ଧୈର୍ଯ୍ୟଧର ଜୟନ୍ତ । ସବୁ ଠିକ୍‌ହୋଇଯିବ ।

ଜୟନ୍ତ ରୁଦ୍ରପ୍ରସାଦଙ୍କର ସବୁ କଥା କପୋଳ କଳ୍ପିତ ବୋଲି ଧରି ନେଇଥିଲା । ତେଣୁ ତା'ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇ ନଥିଲା । ଅବଶେଷରେ ସେ ପ୍ରଶ୍ନକଲା : ଆପଣ ମୋତେ କାହିଁକି ଡକାଇଛନ୍ତି ?

: ହଁ ସେ କଥା ମୁଁ ତୁମକୁ କହିବି ଜୟନ୍ତ । ରୁଦ୍ରପ୍ରସାଦ ସେଇ ଚୀନା ଭଦ୍ରଲୋକଙ୍କ ଆଡ଼କୁ ଚାହିଁ ଟିକିଏ ନୀରବ ହେଲେ । ତା'ପରେ ଉଠି ଠିଆହୋଇ କହିଲେ, ମିଷ୍ଟର ଚୁଙ୍ଗ୍ କ୍ଷମା କରିବେ । ଆମେ ଟିକେ....

: ନିଶ୍ଚୟ, ନିଶ୍ଚୟ । ଆପଣ କାମ ସାରି ଆସନ୍ତୁ । ଚୀନା ଭଦ୍ରଲୋକ ହସି ହସି କହିଲେ ।

ରୁଦ୍ରପ୍ରସାଦ ଜୟନ୍ତକୁ ସଂଗରେ ଡାକି ଆଉ ଗୋଟିଏ ଘରକୁ ଆଗେଇ ଗଲେ । ଦୁହେଁ ସାମ୍ନାସାମ୍ନି ସୋଫା ଉପରେ ବସିଲେ । ରୁଦ୍ରପ୍ରସାଦ କେତୋଟି ମୁହୂର୍ତ୍ତ ଜୟନ୍ତ ମୁହଁକୁ ଏକ ଦୃଷ୍ଟିରେ ଅନାଇ ରହି କହିଲେ : ତମେ ବିଶ୍ୱାସ କରିବ କି ନାହିଁ ଜୟନ୍ତ, ମୁଁ ବର୍ତ୍ତମାନ ବଡ଼ ବିପଦରେ ପଡ଼ିଯାଇଛି । ତମେ ହୁଏତ ଜାଣି ନାହଁ, ଇଣ୍ଡିଆରୁ କ୍ରାଇମ୍‌ବ୍ରାଞ୍ଚର ଦୁଇଜଣ ଅଫିସର ଆସିଛନ୍ତି । ସେମାନେ ରାଜା ବୀରେନ୍ଦ୍ରଙ୍କ ସହିତ ସାକ୍ଷାତ କରି ନେପାଳରେ ଆପଣଙ୍କୁ ଖୋଜି ବାହାର କରିବାର ଅନୁମତି ପାଇଛନ୍ତି । ଏଠାକାର ପୋଲିସ୍ ମଧ୍ୟ ସେମାନଙ୍କୁ ସାହାଯ୍ୟ କରୁଛନ୍ତି । ତେଣୁ ମୁଁ ବଡ଼ ବିପଦରେ ପଡ଼ିଯାଇଛି ।

: ଏଥିରେ ଆପଣଙ୍କର ପୁଣି କି ବିପଦ ? ଜୟନ୍ତ ପଚାରିଲା ।

: ବିପଦମାନେ ମୁଁ ଆପଣଙ୍କୁ ଲୁଚାଇ ରଖିଛି । ଏ କଥା ରାଜା ବୀରେନ୍ଦ୍ର ଜାଣନ୍ତି ନାହିଁ । ରାଜା ବୀରେନ୍ଦ୍ର ମୋର ହିତାକାଂକ୍ଷୀ ଏହା ଠିକ୍ । କିନ୍ତୁ ମୁଁ ନ କହି ନ ବିଚାରି ଗୋଟାଏ ଅନ୍ୟାୟକୁ ପ୍ରଶ୍ରୟ ଦେଇଛି, ବିଶେଷ କରି ଇଣ୍ଡିଆ ପରି ମିତ୍ର ଦେଶର ଜଣେ ଅପରାଧୀକୁ ଲୁଚାଇ ରଖିଛି, ଏ କଥା ଜଣାଶୁଣା ହୋଇଗଲେ ରାଜା ବୀରେନ୍ଦ୍ର ମୋ ଉପରେ କ୍ଷୁବ୍ଧ ହେବେ ।

: ତା'ହେଲେ ମୋତେ ଆପଣ ସେମାନଙ୍କ ହାତରେ ଅର୍ପଣ କରି ଦିଅନ୍ତୁ; ନ ହେଲେ ଇଣ୍ଡିଆ ପଠାଇ ଦିଅନ୍ତୁ । ମୁଁ ମୋ କପାଳ ଲିଖନ ଭୋଗ କରିବି । ଆପଣ ମୋ ପାଇଁ ରାଜା ବୀରେନ୍ଦ୍ରଙ୍କ ପାଖରେ ବିଶ୍ୱାସ ହରାଇବେ କାହିଁକି ? ଜୟନ୍ତ କହିଲା ।

: ନା ନା, ତା' ହୁଏ ନାହିଁ ଜୟନ୍ତ । ଜଣେ ଶରଣାପନ୍ନ ବ୍ୟକ୍ତିକୁ ଏପରି ଭାବରେ ବାସଚ୍ୟୁତ କରାଇବା ମୋ ଧର୍ମ ନୁହେଁ । ମୁଁ ଚାହେଁ, ତମର ନିରାପତ୍ତା ଏବଂ ନିର୍ଦ୍ଦୋଷତା ପ୍ରମାଣ କରାଇବାକୁ । ତମେ ତ ରୁଦ୍ରପ୍ରସାଦକୁ ଚିହ୍ନି ନାହିଁ ଜୟନ୍ତ, କେବେ ତା' ସଂସ୍ପର୍ଶରେ ଆସି ନାହଁ । ମୋ ସିଦ୍ଧାନ୍ତରୁ ମୋତେ ଟଳେଇ ପାରିଲା ଭଳି ଶକ୍ତି ଏ ପୃଥିବୀରେ ବିରଳ ।

: ବୁଝିଲି, ଆପଣ ମୋର ହିତାକାଂକ୍ଷୀ, ଆପଣ ମୋତେ ସ୍ୱାଧୀନ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଛନ୍ତି; କିନ୍ତୁ ବର୍ତ୍ତମାନ ଆପଣଙ୍କ ମୁଣ୍ଡ ଉପରେ ବିପଦର କଳାଛାଇ ପ୍ରତିବିମ୍ବିତ ହୋଇଛି, ଆପଣ କ'ଣ କରିବେ ? ମୋ ପାଇଁ ଆପଣ କାହିଁକି ବିପଦ ବରଣ କରିବେ ?

ରୁଦ୍ରପ୍ରସାଦ ହସିଲେ । କହିଲେ, ଜୟନ୍ତ ତମେ ପିଲା ଲୋକ, ତମେ ଜାଣି ନାହଁ ବିପଦ ବେଳେ ଧୈର୍ଯ୍ୟ ସହକାରେ କାମ ହାସିଲ୍ କରିବାକୁ ହୋଇଥାଏ । ମୁଁ କିନ୍ତୁ ମୋ ସିଦ୍ଧାନ୍ତରେ ଅଟଳ ।

: ତା' ହେଲେ ବର୍ତ୍ତମାନ ଉପାୟ ?

: ଉପାୟ ଗୋଟାଏ ମୁଁ ଚିନ୍ତା କରିଛି । ତମୁକୁ ମୋତେ ଟିକିଏ ସହଯୋଗ କରିବାକୁ ହେବ ।

: ମୁଁ ଆପଣଙ୍କୁ ସହଯୋଗ କରିବି, ମାନେ ?

: ଶୁଣ ଜୟନ୍ତ, ମନ ଦେଇ ଶୁଣ । କ୍ରାଇମ୍‌ବ୍ରାଞ୍ଚର ସେଇ ଲୋକ ଦି'ଜଣ ଏବଂ ନେପାଳର ଜଣେ ଗୁଇନ୍ଦା ପୋଲିସ୍ ଅଫିସର ଆପଣଙ୍କୁ କାଠମାଣ୍ଡୁର ଚାରିଆଡ଼େ ଖୋଜା

ଲଗାଇଛନ୍ତି । ସେମାନେ ସେଠାରେ ଯେତେବେଳେ ବ୍ୟର୍ଥ ହେବେ, ଦିନେ ଦୁଇଦିନ ପରେ ଏଠାକୁ ଆସିପାରନ୍ତି । ସେଇଥିପାଇଁ ମୁଁ ଛୁଟି ଆସିଛି ତମ ପାଖକୁ ।

: ମୋତେ ଆଦେଶ ଦିଅନ୍ତୁ !

: ନା ଜୟନ୍ତ, ଆଦେଶ ନୁହେଁ; ମୋର ଏଇଟା ଅନୁରୋଧ । ତମକୁ ଏ ରାଜ୍ୟ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ହେବ । ମୁଁ ତମ ଯିବାର ସମସ୍ତ ବନ୍ଦୋବସ୍ତ କରିଦେବି । ତମେ ଏହାଠାରୁ ଆହୁରି ସୁଖରେ, ଆହୁରି ଆରାମରେ ରହିବ । ମାତ୍ର କେତୋଟି ମାସ । ତା'ପରେ ତମେ ବିପଦ ମୁକ୍ତ ହୋଇ ତମର କର୍ମକ୍ଷେତ୍ରକୁ ଫେରିଯିବ । ସ୍ୱାଧୀନ ଭାବରେ ତମେ ତମର ଗବେଷଣା ଆରମ୍ଭ କରିଦେବ । ସେତେବେଳେ ତମ ମନରେ ଦ୍ୱନ୍ଦ୍ୱ ନଥିବ । ତମେ ହେବ ମୁକ୍ତ ଆକାଶର ବିହଙ୍ଗ ।

ହଠାତ୍ ଜୟନ୍ତର ମୁଖ ଗମ୍ଭୀର ହୋଇଉଠିଲା । ସେ କିଛି ସମୟ ପାଇଁ ସ୍ତବ୍ଧ ହୋଇଗଲା । ମାଳବିକା କଥା ତା'ର ମନେ ପଡ଼ିଲା । ମାଳା ଠିକ୍ କହୁଥିଲା । ସେମାନେ ତାକୁ ଏଠାରୁ ଦୂରକୁ ଆହୁରି ଦୂରକୁ ପଠାଇ ଦେବାକୁ ଚାହାନ୍ତି । କିନ୍ତୁ କାହିଁକି?

କିଛି ସମୟ ପରେ ଜୟନ୍ତ ଉଠି ଠିଆହେଲା । ରୁଦ୍ରପ୍ରସାଦଙ୍କ ମୁହଁକୁ ରୋଷ କଷାୟିତ ନୟନରେ ଚାହିଁ କହିଲା : ଆପଣଙ୍କ କଥା ଶେଷ ହୋଇଛି ?

: ହଁ, ରୁଦ୍ରପ୍ରସାଦଙ୍କ ସ୍ୱର ଗମ୍ଭୀର ।

: ମୁଁ ଇଣ୍ଡିଆ ଫେରିଯିବି । ମୋତେ ଇଣ୍ଡିଆ ଫେରିଯିବାର ସବୁ ବନ୍ଦୋବସ୍ତ କରି ଦିଅନ୍ତୁ ।

: ତା' ହେବନାହିଁ ଜୟନ୍ତ । ରୁଦ୍ରପ୍ରସାଦ କଥା ଏପାଖ ସେପାଖ ହୁଏ ନାହିଁ ।

: ତା'ହେଲେ ଆପଣ ବି ଜାଣି ରଖନ୍ତୁ ମୁଁ ନେପାଳ ଛାଡ଼ି ଅନ୍ୟ କୁଆଡ଼େ ଯିବିନାହିଁ । ଜୟନ୍ତ କଥାରେ ଦୃଢ଼ତା ଫୁଟି ଉଠିଥିଲା ।

: ଏଇ ତମର କ'ଣ ଶେଷ କଥା ? ରୁଦ୍ରପ୍ରସାଦ ପଚାରିଲେ ।

: ହଁ ।

: ବେଶ୍, ତାହା ହିଁ ହେବ । ତମେ ବର୍ତ୍ତମାନ ଫିସ୍‌ଟେଲ ଲଜ୍‌କୁ ଫେରିଯାଅ । ମୋ କଥା ନ ଶୁଣି ତମେ ଯଦି ବିପଦ ବରଣ କରିବାକୁ ଚାହଁ, ମୋର କଛି ଅପରାଧ ହେବନାହିଁ ।

ଜୟନ୍ତ ଆଉ କିଛି କହିଲା ନାହିଁ । ସେମାନେ ସେ ଘରୁ ବାହାରି ଆସିଲେ । ଚୀନା ଭଦ୍ରଲୋକ ଜଣକ ସେଦିନର ସଂବାଦ ପତ୍ରଟା ମନଯୋଗ ଦେଇ ପଢୁଥିଲେ । ସଂବାଦପତ୍ର ଉପରୁ ଥରେ କେବଳ ଦୃଷ୍ଟିଫେରାଇ ନେଲେ ଅନ୍ୟ ସଂବାଦ ଉପରକୁ ।

ଜୟନ୍ତ ଯେଉଁ ଶିଡ଼ି ଦେଇ ଉପରକୁ ଉଠିଥିଲା, ସେଇ ଶିଡ଼ି ଦେଇ ଧୀରେ ଧୀରେ ତଳକୁ ଓହ୍ଲାଇଗଲା ।

ଯେଉଁଗାଡ଼ିରେ ସେ ଏଠାକୁ ଆସିଥିଲା, ତଳେ ସେଇ ଗାଡ଼ି ଓ ସେଇ ଡ୍ରାଇଭର ଅପେକ୍ଷା କରିଥିଲା ।

ଫିସ୍‌ଟେଲ ଲଜ୍‌ର ରୁଦ୍ଧକକ୍ଷରେ ବସିଥିଲେ ଜୟନ୍ତ ଆଉ ମାଳବିକା । କାହାରି ମନରେ ସୁଖ ନଥିଲା ।

ଜୟନ୍ତ କହିଲା, ତମେ ମୋ ପାଇଁ ଅନେକ କରିଛ ମାଳା, ମୋର ନିରାପତ୍ତା ପାଇଁ ତମର ଆଗ୍ରହ ମୁଁ ଭୁଲିପାରିବି ନାହିଁ । କିନ୍ତୁ ମୁଁ ତମ ପ୍ରସ୍ତାବରେ ରାଜି ହୋଇ ପାରୁନାହିଁ । ଚୋରଙ୍କ ପରି ଆଉ ଥରେ ଲୁଚି ଲୁଚି ପଳାଇବାକୁ ଚାହେଁ ନାହିଁ । ମୁଁ ଚାହେଁ ଜୀବନର ଶେଷ ପରିଣତି କ'ଣ ହୁଏ, ସେଇଆକୁ ଲକ୍ଷ୍ୟ କରିବା । ତମେ ମାଳା ମୋର ମନେ ରହିବ । ଅନୁରାଧା ପରେ ମୋ ହୃଦୟରେ ଦ୍ୱିତୀୟସ୍ଥାନ ତୁମର । କେବେ ଯଦି ସୁଯୋଗ ଆସେ, ସେତେବେଳେ ମୁଁ ତମୁକୁ ନିଶ୍ଚୟ ମୋ ପାଖକୁ ଟାଣିନେବି । ଦେଖାଯାଉ ଘଟଣାର ସ୍ରୋତ କୁଆଡ଼େ ବହି ଚାଲୁଛି !

ମାଳବିକା କିନ୍ତୁ ଜୟନ୍ତ କଥାରୁ ଉତ୍ସାହ ପାଉ ନଥିଲା । ତା'ର ସେଇ ଗୋଟଏ ପ୍ରସ୍ତାବ ତମେ ଏଠାରୁ ପଳାଇ ଚାଲ ଜୟନ୍ତ, ମୁଁ ତୁମକୁ ଏପରି ନିରାପଦ ସ୍ଥାନରେ ଲୁଚାଇ ରଖିବି, ଯେଉଁଠି ଗୁଇନ୍ଦା ତ ଗୁଇନ୍ଦା ସ୍ୱୟଂ ଭଗବାନ ବି ସନ୍ଧାନ ପାଇବେ ନାହିଁ । ତମେ ଜାଣି ଜାଣି ଜୀବନଟାକୁ ନଷ୍ଟ କରି ଦିଅ ନାହିଁ ଜୟନ୍ତ । ତମର ଦୀର୍ଘ ଜୀବନ ପଡ଼ି ରହିଛି ।

ଜୟନ୍ତର କିନ୍ତୁ ସେଇ ଏକା ଜିଦ୍ । ସେ ଏହାଠାରୁ ଆହୁରି ବିପଦ ସଂକୁଳ ପଥରେ ପାଦ ବଢ଼ାଇବ ପଛକେ, ଅନ୍ଧକାରେ ଆଉ ଲୁଚି ବସି ପାରିବ ନାହିଁ । ସେ ଏଇ ସବୁର ଗୋଟାଏ ସମାଧାନ ଚାହେଁ ।

ଦୀର୍ଘ ନୀରବତା ଭିତରେ ଦୁଇଜଣଯାକ ବସି ଚିନ୍ତା କରୁଥିଲେ । ମାଳବିକା ଭାବୁଥିଲା, ଜୟନ୍ତ ଚାଲିଯିବ, କୁଆଡ଼େ ଯିବ, ତାକୁ ଜଣାନାହିଁ । ବହୁ ପ୍ରତୀକ୍ଷା ପରେ ସେ ଗୋଟିଏ ମନର ମଣିଷ ଖୋଜି ପାଇଥିଲା; କିନ୍ତୁ ବିଜୁଳି ପରି ନିମିଷେ ଝଲକି ଲୁଚି ଯିବା କଥା ସେ ମୋଟେ ଭାବିପାରୁ ନଥିଲା । ଜୟନ୍ତକୁ ଅଟକେଇ ରଖିବାର ଅନ୍ୟ ଉପାୟ କିଛି ବି ନାହିଁ ।

ଜୟନ୍ତ ଭାବୁଥିଲା ତା'ର ପରିଣତି କଥା । ରୁଦ୍ରପ୍ରସାଦ ତା' ପଛରେ ଅଠା ପରି ଲାଗିଛନ୍ତି କାହିଁକି ? ସେ ଜାଣିଥିଲା ଯେ ତା'ର ମଙ୍ଗଳ ପାଇଁ ରୁଦ୍ରପ୍ରସାଦ ଆନ୍ତରିକ ଭାବରେ କିଛି କରୁନାହାନ୍ତି; କିନ୍ତୁ ଜୟନ୍ତ ବୁଝି ପାରୁ ନଥିଲା ତା'ଦ୍ୱାରା ରୁଦ୍ରପ୍ରସାଦଙ୍କର କେଉଁ ସ୍ୱାର୍ଥ ସାଧନ ହେବ । ଏହିପରି ଏକ କ୍ରିଟିକାଲ ମୋମେଣ୍ଟରେ ରୋଜି ବା ନୀରବ ହୋଇଗଲା କାହିଁକି ? ସେ କ'ଣ ଥରେ ଯାଇ ତା' ସହିତ ଦେଖା କରିବ ? ନିରୋଳାରେ ସବୁ କଥା ତାକୁ କହିବ ? କିନ୍ତୁ ତରଫଦାର ! ସେ ଯେ ରୋଜିକୁ ଘେରି ରହିଛନ୍ତି । ସେଇଥିପାଇଁ ରୋଜି ପାଟି ଫିଟାଇପାରୁନାହିଁ । ମନର କଥା ସାମ୍‌ନା ସାମ୍‌ନି ବ୍ୟକ୍ତ କରିପାରୁନାହିଁ ।

ଜୟନ୍ତ ଉଠି ଠିଆହେଲା । ତା' ମନକୁ ଘେରିରହିଥିଲା ରୋଜି । ସେ କହିଲା, ଆଚ୍ଛା ମାଳା, ମୋ ପାଇଁ ତମେ ଗୋଟିଏ କାମ କିଛି ପାରିବ ?

: କୁହ ।

: ତମେ ଏଇ ମୁହୂର୍ତ୍ତରେ ୨୦୭ ନମ୍ବର ରୁମ୍‌କୁ ଯାଅ । ଦେଖିଆସ ମିଷ୍ଟର ତରଫଦାର ଅଛନ୍ତି କି ନାହିଁ ସେ ଯଦି ନ ଥାନ୍ତି, ତମେ ରୋଜିକୁ ମୋ କଥା କହିବ;

ଆଉ ପାର ଯଦି ସଂଗରେ ମୋ ରୁମ୍‌କୁ ଧରି ଆସିବ । ରୋଜି ସହିତ ମୋର ବିଶେଷ ଦରକାର ।

ମାଳବିକା କିପରି ଏକ ତୀକ୍ଷଣ୍ ଦୃଷ୍ଟିରେ ଚାହିଁ କହିଲା, ତମେ ଅନେକ ଦିନରୁ ରୋଜି ରୋଜି ହେଉଛ । କିନ୍ତୁ ପ୍ରକୃତରେ ଘଟଣାଟା କ'ଣ କହିଲ ? ରୋଜି ସମ୍ବନ୍ଧରେ ମୋନାଲିସାଠାରୁ ଯାହା ଶୁଣିଲି, ସେ ଝିଅଟା ଆଦୌ କଥା କହି ପାରେନାହିଁ । ସେ ମୂକ । ତା' ସହିତ ତମେ କି କଥା କହିବ ?

: କ'ଣ ? ରୋଜି ମୂକ ! ତମେ ତା'ହେଲେ କିଛି ଜାଣି ନାହଁ ମାଳା । ସେ ହୁଏତ ତମ ମୋ ପାଖରେ ମୂକର ଅଭିନୟ କରୁଛି । ରୋଜିକୁ ମୁଁ ଚିହ୍ନେ । ରୋଜି ମୋର ମଙ୍ଗଳ ଚାହେଁ । ରୋଜି ସହିତ...

ଜୟନ୍ତର କଥା ଶେଷ ହେଲା ନାହିଁ । ଘରର ଟେଲିଫୋନ୍‌ଟା ବାଜି ଉଠିଲା । ଜୟନ୍ତ ଛୁଟିଯାଇ ରିସିଭର ଉଠାଇଲା ।

ଅପର ପ୍ରାନ୍ତରୁ ଏକ ତରଙ୍ଗାୟିତ ହାସ୍ୟଧ୍ୱନିରୁ ଜୟନ୍ତ ବୁଝିପାରିଲା ଫୋନ୍ କିଏ କରିଛି । ସେ ଆନନ୍ଦ ଆବେଗରେ ଚିତ୍କାର କରି ଉଠିଲା, କିଏ ରୋଜି ! ମୁଁ ତମର ପ୍ରତୀକ୍ଷା କରିଥିଲି ।

ମାଳବିକା ଜୟନ୍ତ ମୁହଁରୁ ରୋଜିର ନାମ ଉଚ୍ଚାରଣ ଶୁଣି ଦ୍ରୁତ ବେଗରେ ଘରୁ ବାହାରି ଚାଲିଗଲା । ତା' ମନର ସଂଦେହ ମୋଚନ ପାଇଁ ୨୦୭ ନମ୍ବର ରୁମ୍‌ରେ ପ୍ରବେଶ କରି ପାରିଲେ, ରୋଜି ରହସ୍ୟର ସମ୍ୟକ ସମାଧାନ ହୋଇପାରିବ ।

ଅପର ପ୍ରାନ୍ତରୁ ହସର ଫୁଆରା ଶେଷହେଲା । ଶାନ୍ତ ସ୍ୱରରେ ରୋଜି କହିଲା, ମୁଁ ତମର କିଛି କରି ପାରିଲି ନାହିଁ ଜୟନ୍ତ, କେବଳ ତମୁକୁ ଅନୁସରଣ କରିଯିବା ମୋର ସାର୍ ହେଲା ।

: କିନ୍ତୁ ରୋଜି, ତମେ ମୋର ବର୍ତ୍ତମାନର ପରିସ୍ଥିତି କଥା ଜାଣ ? ରୁଦ୍ରପ୍ରସାଦ ମୋ ଉପରେ କ୍ଷୁବ୍‌ଧ ହୋଇଛନ୍ତି । ସେ ନେପାଳରୁ ଅନ୍ୟତ୍ର ପଠାଇ ଦେବାକୁ ଚାହାନ୍ତି ।

: ମୁଁ ଜାଣେ, ସବୁଜାଣେ ଜୟନ୍ତ । ଆଜି କିନ୍ତୁ ମୁଁ ନିଜେ ଗୋଲକଧନ୍ଦାରେ ପଡ଼ି ଯାଇଛି । ତମ ପାଇଁ ଗୋଟାଏ ଦୁଃସମ୍ବାଦ ଅଛି ମୋ ପାଖରେ । ଶୁଣିଲେ ସହ୍ୟକରି ପାରିବ ?

: ଆହୁରି ଦୁଃସମ୍ବାଦ ରୋଜି ! ପୁଣି କାହାର ମୃତ୍ୟୁ ?

: କାହାରି ମୃତ୍ୟୁ ନୁହେଁ ଜୟନ୍ତ । କିନ୍ତୁ ମୃତ୍ୟୁଠାରୁ ଆହୁରି ଶୋକାବହ ପରିଣତି । ସରକାରଙ୍କ ଘରୁ ତମ ବ୍ଲୁପ୍ରିଣ୍ଟିଟି ଚୋରି ହୋଇ ଯାଇଛି ।

: ବ୍ଲୁପ୍ରିଣ୍ଟ୍ ? କାହାର ବ୍ଲୁପ୍ରିଣ୍ଟ୍ ?

: ତମରି । ବିଶ୍ୱର କାନ୍‌ସର ରୋଗର ପ୍ରତିରୋଧ ପାଇଁ ତମେ ଯେଉଁ ଯନ୍ତ୍ରଟି ଉଦ୍ଭାବନ କରିବାକୁ ଯାଉଥିଲ, ସେଇ ବ୍ଲୁପ୍ରିଣ୍ଟ୍ ଚୋରି ହୋଇଯାଇଛି ।

ଜୟନ୍ତ ଜୀବନରେ ହୁଏତ ଏପରି ଏକ ଦୁଃସମ୍ବାଦ ଆଶା କରି ନ ଥିଲା । ସେ ବୋଧହୁଏ ସେଇ ମୁହୂର୍ତ୍ତରେ ମୂକ ଆଉ ବଧୀର ହୋଇ ଯାଇଥିଲା । ତା'ପରେ ରୋଜି କ'ଣ କହିଥିଲା, ସେ ରୋଜିକୁ କ'ଣ ଶୁଣାଇଥିଲା ତା'ର ଆଉ କିଛି ମନେ ନଥିଲା । ସେ ରିସିଭରଟା ଧରି ପାଷାଣ ପ୍ରତିମା ପରି ଠିଆହୋଇଯାଇଥିଲା ।

ମାଳବିକା ଉପରେ ଦେହ ଭାର ଦେଇ ଜୟନ୍ତ ଧୀରେ ଧୀରେ ବସି ପଡ଼ିଲା । ଜୟନ୍ତ ହାତରୁ ଟେଲିଫୋନ୍ ରିସିଭରଟା ନେଇ ସେ କାନରେଦେଲା ।

: ହ୍ୟାଲୋ, ହ୍ୟାଲୋ ତିନି ଚାରିଥର ଡାକିବା ପରେ ମାଳବିକା ଅପର ପ୍ରାନ୍ତରୁ କୌଣସି ଉତ୍ତର ପାଇଲା ନାହିଁ । ରୋଜି ବୋଧହୁଏ ଟେଲିଫୋନ୍ ଛାଡ଼ିଦେଇଥିଲା ।

ଜୟନ୍ତକୁ ଧୀରେ ଧୀରେ ଉଠାଇ ନେଇ ମାଳବିକା ବିଛଣା ଉପରେ ଶୁଆଇଦେଲା । ସେତେବେଳେ ଯାଏ ଜୟନ୍ତ ନିଜକୁ ଫେରି ପାଇନଥିଲା । ସେ କେବଳ ମାଳବିକା ମୁହଁକୁ ଅନାଇ ରହିଥିଲା କିପରି ଏକ ହତାଶ ଦୃଷ୍ଟିରେ ।

ମାଳବିକା ମୁଣ୍ଡ ଆଉଁସି ଦେଲା । ଦେହରେ ହାତ ବୁଲାଇନେଲା । ଶାନ୍ତ ଓ ସ୍ନିଗ୍ଧ ସ୍ୱରରେ କହିଲା, ତମର ହଠାତ୍ କ'ଣ ହେଲା ଜୟନ୍ତ ? ତମେ ଏପରି....

: ତମେ ଟିକେ ପାଣି ପିଆଇପାରିବ ମାଳା । ମୁଁ ଭୀଷଣ ତୃଷାର୍ତ୍ତ;

ମାଳା ଉଠିଯାଇ ଜାର୍‌ରୁ ପାଣି ଢାଳି ଜୟନ୍ତ ହାତକୁ ବଢ଼ାଇଦେଲା ।

ଜୟନ୍ତ ଏକା ନିଶ୍ୱାସରେ ପାଣିତକ ଶେଷ କରିଦେଇ ଆକୁଳ ସ୍ୱରରେ କହିଲା, ମୋର ସର୍ବନାଶ ହୋଇଯାଇଛି ମାଳା, ମୁଁ ସର୍ବସ୍ୱାନ୍ତ ହୋଇ ଯାଇଛି । ମୁଁ ଯେଉଁ ବ୍ଲୁପ୍ରିଣ୍ଟ୍ ଆପ୍ରୁଭ୍ ପାଇଁ ସରକାରଙ୍କୁ ଦେଇଥିଲି, ସେଇଟି ଚୋରି ହୋଇଯାଇଛି ।

: ଚୋରି ହୋଇ ଯାଇଛି ମାନେ ? ଏ ଖବର ତମୁକୁ କିଏ ଦେଲା ? ରୋଜି ନିଶ୍ଚୟ । କିନ୍ତୁ ତମେ ଯାହାକୁ ତମର ହିତାକାଂକ୍ଷୀ ବୋଲି ଭାବୁଛ, ସେ ଆଦୌ କଥା କହି ପାରେନାହିଁ । ସେ ମୂକା। ମୋନାଲିସା ଯାହା କହିଥିଲା ଠିକ୍ ।

: କ'ଣ କହିଲ ? ରୋଜି ମୂକ ! ତା'ହେଲେ ଏ କାହା ସଂଗରେ କଥା କହୁଛି କିଏ ? ମୋର ଭଲ ମନ୍ଦକୁ ସତର୍କ ଦୃଷ୍ଟିରେ ଅନୁସରଣ କରି ଚାଲିଛି କିଏ ? ତମେ ମିଛ କହୁଛ ମାଳା । ସେ ନାରୀ ବୋଲି ତମେ ତାକୁ ସହ୍ୟକରି ପାରୁନାହଁ

ମାଳବିକା ଅଳ୍ପ ଟିକିଏ ହସିଲା । କହିଲା, ମୁଁ ଏଇକ୍ଷିଣା ୨୦୭ ନମ୍ବରକୁ ଯାଇଥିଲି । ରୋଜି ମୋତେ ଦରଜା ଖୋଲିଦେଇଥିଲା । ମୁଁ ତା ସହିତ କଥା କହିବାକୁ ଚେଷ୍ଟା କରିଥିଲି । ସେ ଇଂଗିତରେ ମୋତେ କହିଥିଲା ସେ ମୂକ ।

ଜୟନ୍ତ ବିଛଣାରୁ ଉଠିପଡ଼ିଲା । କହିଲା, ସେ ତା'ହେଲେ ତମ ସହିତ ଛଳନା କରିଛି । ଇଚ୍ଛାକରି ତମ ସହିତ ଅଭିନୟ କରିଛି । ରୋଜି ଯେ ମୋ ସହିତ ଏଇକ୍ଷିଣା ଫୋନ୍‌ରେ କଥା କହୁଥିଲା । ରୋଜି କହୁଥିଲା...

: ସେ ତା'ହେଲେ ଅନ୍ୟ କେହି ଜୟନ୍ତ । ମୁଁ ଯାଇ ଦେଖିଲି ରୋଜି ଘରେ ଆରାମ ଚେଆର ଉପରେ ବସି ଗୋଟିଏ ନାଲି ସୁଇଟର ବୁଣୁଛି । ତା' ହାତ ପାଖରେ କିମ୍ବା ସେ ଘରେ କୌଣସି ଫୋନ୍ ନାହିଁ ।

ଜୟନ୍ତ ବିଛଣା ଉପରୁ ଗୋଟାଏ ତକିଆ ଉଠେଇ କୋଳରେ ଥୋଇଲା । ତକିଆ ଉପରେ ଭରାଦେଇ ବିଚଳିତ ସ୍ୱରରେ କହିଲା, ମୋତେ ତମେ ବଡ଼ ଚିନ୍ତାରେ ପକାଇଲ ମାଳା । ରୋଜି ତା'ହେଲେ ରକ୍ତମାଂସ ଶରୀର ଧାରିଣୀ କେହି ନାହିଁ ?

: ସେ କଥା ମୁଁ କହୁ ନାହିଁ । ହୁଏତ ରୋଜି ନାଁରେ ଆଉ ଜଣେ କିଏ ଅଛି । ଯିଏ ଆପଣଙ୍କୁ ଭଲପାଏ ଏବଂ ଆପଣଙ୍କର ମଙ୍ଗଳ କାମନା କରେ । କିନ୍ତୁ ମିଷ୍ଟର ତରଫଦାରଙ୍କ ର ଭାବୀପତ୍ନୀ ରୋଜି ଆପଣଙ୍କ କଳ୍ପିତ ରୋଜି ନୁହେଁ ।

: କିନ୍ତୁ....

: ଆଉ କିନ୍ତୁ ଫିନ୍ତୁ ନୁହେଁ, ତମେ ବିଶ୍ରାମ କର । ମୁଁ ବୟକୁ ଡାକୁଛି । ସେ କଫି ଦେଇଯାଉ । ଖାଇ ସାରିଲେ ଆମେ ବାହାରିପଡ଼ିବା ।

: କୁଆଡ଼େ ଯିବା ?

: ଲେକ୍ । ନୌକା ବିହାର କରିବା । ମୁକ୍ତ ଆକାଶ ତଳେ କିଛି ସମୟ ବୁଲି ଆସିଲେ ଆପଣ ଟିକିଏ ସୁସ୍ଥ ହେବେ, ମୋ କଥା ଶୁଣନ୍ତୁ; ଆଉ କିଛି ଚିନ୍ତା ଭାବନା କରନ୍ତୁ ନାହିଁ ।

ଜୟନ୍ତର ଆଖି ଦୁଇଟାରେ ସଂଦେହର ଚିହ୍ନ ଫୁଟିଉଠିଲା । ହଠାତ୍ ତା'ର ମନେ ହେଲା ମାଳବିକା ଯେପରି ତାକୁ ମିଛ କଥା କହି ଭୁଲାଇ ଅନ୍ୟ କେଉଁଠିକୁ ନେଇଯିବାକୁ ଚାହେଁ । ସମସ୍ତେ ତା' ପଛରେ ଲାଗିଛନ୍ତି । ତାକୁ ଯେ ଯାହାର ସୁବିଧା ଅନୁସାରେ ପରିଚାଳନା କରିବାକୁ ଚାହୁଁଛନ୍ତି, କିନ୍ତୁ ଲାଭ କ'ଣ ସେମାନଙ୍କର ?

ମାଳବିକା ଉଠି ଯାଇ କଲିଂବେଲ ଟିପି ଆସିଲା । ଘର ଭିତରର ରେଡ଼ିଓଗ୍ରାମ୍‌ଟା ଖୋଲିଦେଲା ।

ଏକ ସୁନ୍ଦର ମିଠା କଣ୍ଠର ସଂଗୀତ ଭାସିଆସିଲା ରେଡ଼ିଓଗ୍ରାମ୍ ଭିତରୁ ।

ଘଡ଼ିରେ ନଅଟା ବାଜିଲାଣି । ବେଡ୍-ଟି' ଥଣ୍ଡାହୋଇ ଗଲାଣି । ବ୍ରେକ୍‌ଫାଷ୍ଟ ଟେବୁଲ୍ ଉପରେ ଥୁଆ ହୋଇଛି; ତଥାପି ଜୟନ୍ତର ନିଦ ଭାଙ୍ଗୁ ନାହିଁ । କାଲି ରାତିରେ ସେ ଅନେକ ଡେରିରେ ଶୋଇଛି । ମାଳବିକା ସହିତ ଗତକାଲି ଚାରିଟାଠାରୁ ରାତି ବାରଟା ଯାଏ ବହୁତ ବୁଲିଛି । ପୋଖରା ଲେକ୍‌ରେ ନୌକା ବିହାରଠାରୁ ଫିସ୍ ଟେଲ ଲଜ୍‌ର ମିନି କାସିନୋ ପର୍ଯ୍ୟନ୍ତ । ମାଳବିକାକୁ ସେ ଆହୁରି ଅନ୍ତରଙ୍ଗ ଭାବରେ ପାଇଛି । ସେଇଥି ପାଇଁ ହୁଏତ ନିଶ୍ଚିନ୍ତରେ ଶୋଇଛି ଜୟନ୍ତ । ବୟ ଦୁଇଥର ଆସି ଦୁଇଥର ଯାକ ଡାକିବାକୁ ଚେଷ୍ଟାକରି ମଧ ବ୍ୟର୍ଥ ହୋଇଛି । ଜୟନ୍ତର ନିଦ ଭାଙ୍ଗି ନାହିଁ; ବରଂ ମୁହଁରେ ପ୍ରସନ୍ନତା ଲାଗିରହିଛି । ମନେହେଉଛି ସେ ଯେପରି ସୁଖ ନିଦ୍ରା ଯାଇଛି ।

ଘଡ଼ିରେ ଦଶଟା ବାଜିଲା । ମନେହେଲା ଜୟନ୍ତ କାନରେ ଦିଆଲ ଘଡ଼ିର ସେହି ମଧୁର ଟୁଂ ଟାଂ ଶବ୍ଦ ପ୍ରତିକ୍ରିୟା ସୃଷ୍ଟିକଲା । ବିଛଣା ଉପରେ ଉଠି ବସିଲା । ଆଖି ମଳି ଘଡ଼ିକୁ ଚାହିଁଲା । ଆରେ, ଦଶଟା ବାଜି ଗଲାଣି ଯେ ! ମାଳବିକା କହିଥିଲା ଦଶଟା ବେଳେ ସେ ଆସି ପହଞ୍ଚିବ । ସେମାନେ ବୁଲି ବାହାରିବେ । ଆଜି ମାଳବିକା ଜୟନ୍ତକୁ ପୋଖରାର ବହୁ ଦର୍ଶନୀୟ ସ୍ଥାନ ଦେଖାଇବ । ଜୟନ୍ତ ଯେଉଁ କେତେଦିନ ଏଠାରେ ଅଛି, ପ୍ରାଣଭରି ଆନନ୍ଦ କରିବାକୁ ଚାହେଁ । ମାଳବିକା ହୁଏତ ଆସି ପହଞ୍ଚିବ । କିନ୍ତୁ ସେ ଯେ ଏତେବେଳ ଯାଏ ସକାଳର ନିତ୍ୟକର୍ମ ଶେଷ କରି ନାହିଁ ।

ଜୟନ୍ତ ଉଠିପଡ଼ିଲା । ନା ଆଉ ନୁହେଁ । ଆଳସ୍ୟରେ ଆଉ ସମୟ ନଷ୍ଟ କରି ହେବ ନାହିଁ । ବିଛଣାରୁ ଓହ୍ଲାଇ ସିଧା ସେ ବାଥ୍‌ରୁମ୍ ଭିତରକୁ ଚାଲିଗଲା ।

କିନ୍ତୁ ବାଥ୍‌ରୁମ୍‌ର ଦରଜା ଖୋଲିଦେବା ମାତ୍ରକେ ସେ ପୁଣି ଦୁଇ ପାହୁଣ୍ଡ ପଛକୁ ଘୁଞ୍ଚିଆସିଲା । ହଁ ମାଳବିକା ନିଶ୍ଚୟ । ମାଳବିକା କେତେବେଳେ ଆସି, ନଗ୍ନ ଦେହରେ..... ବାଥ୍‌ଟବ୍ ପାଖରେ .... କାଲି ରାତିରେ ଅବଶ୍ୟ ଖୁବ୍ ସାନିଧ୍ୟକୁ ଆସିଥିଲା ସେ ମାଳବିକାର । ତା'ବୋଲି ମାଳବିକା ଏହିପରି ଲଜ୍ଜା ସଂକୋଚ ସଂହାର କରି....କିନ୍ତୁ ଅପୂର୍ବ ଅପରୂପ ଶୋଭାର ଗୋଟିଏ ପ୍ରତୀକ ଜୟନ୍ତର ମନେହେଲା ଆଉଥରେ ସନ୍ଦର୍ଶନ କରିବା ପାଇଁ । ସେ ପୁଣି ଦୁଇପାଦ ଆଗେଇଗଲା । ହଠାତ୍ ତା'ର ମନେପଡ଼ିଲା ଅନୁରାଧା କଥା, ସେ ତ ଏହିପରି ଉଲଗ୍ଙ ହୋଇ ବାଥ୍‌ଟବ୍‌ରେ ମୁଣ୍ଡଟେକି ନିଶ୍ଚିନ୍ତ ପ୍ରତୀକ୍ଷା କରିଥିଲା ଜୟନ୍ତକୁ । ତେବେ କ'ଣ....ତେବେ କ'ଣ....ଜୟନ୍ତ ଛୁଟିଯାଇ ମାଳବିକା ଦେହରେ ହାତ ଦେଲା । ତାକୁ ଉଠାଇବାକୁ ଚେଷ୍ଟାଗଲା । କିନ୍ତୁ...କିନ୍ତୁ....

ମାଳବିକା ମୂକ, ଶାନ୍ତ, ସ୍ଥିର ।

ଜୟନ୍ତ ବିଚଳିତ ହୋଇପଡ଼ିଲା ।

ତେବେ କ'ଣ ମାଳବିକା ଅନୁରାଧା ପରି ମୃତ । ହଁ ମାଳବିକା ମୃତ, ତା'ର ଦେହ ଅଛି, ପ୍ରାଣ ନାହିଁ । ସେ ଶୋଇଯାଇଛି ଚିର ନିଦ୍ରାରେ । ଦୁନିଆର ସମସ୍ତ କାମନା, ବାସନା ତା'ର ଶେଷ ହୋଇଯାଇଛି । କିନ୍ତୁ ଏ କ'ଣ ! ତା' କପାଳରେ ଏକି ଦୁର୍ବିପାକ ।

ଜୟନ୍ତର ମୁଣ୍ଡ ଗୋଳମାଳ ହୋଇଗଲା । ସତରେ କ'ଣ ମାଳବିକା ମରି ଯାଇଛି? ଏଇ ମୁହୂର୍ତ୍ତରେ ତା'ର କର୍ତ୍ତବ୍ୟ କ'ଣ? କିନ୍ତୁ...କିନ୍ତୁ... ଆହୁରି କେତୋଟି ମୁହୂର୍ତ୍ତ ଚାହିଁଲା ସେ ମାଳବିକାର ଉଲଗ୍ଙ ଦେହକୁ । ଅନୁରାଧା ପରି ସୂତାଖିଏ ବି ନାହିଁ ତା' ଦେହରେ । ଜୟନ୍ତ ନଇଁପଡ଼ି ହାତ ବୁଲାଇଲା ମାଳବିକାର ସ୍ପନ୍ଦନହୀନ ଦେହରେ । ଉତ୍ତେଜିତ ହୋଇ ଉଠିଲା ଜୟନ୍ତର ପ୍ରତିଟି ତନ୍ତ୍ରୀ । ଜୟନ୍ତ ବସିପଡ଼ିଲା । ମାଳବିକାର ଜଡ଼ଦେହଟାକୁ ଉଠାଇ ମୁହଁରେ ଚୁମ୍ବନଦେବାକୁ ଚେଷ୍ଟା କରୁଥିଲା । କିନ୍ତୁ ମାଳବିକାର ମସୃଣ ଦେହଟା ଖସିଗଲା ତା' ହାତରୁ । ମୁଣ୍ଡଟା ପିଟି ହୋଇଗଲା ଚଟାଣ ଉପରେ ।

ଜୟନ୍ତର ଚେତାହେଲା । ସେ କରୁଛି କ'ଣ ? ଗୋଟାଏ ମୃତ ଶରୀର ପାଖରେ...କିନ୍ତୁ ମାଳବିକୁ ମାରିଲା କିଏ ? ଜୟନ୍ତର ପ୍ରାଣରେ ଚାଞ୍ଚଲ୍ୟ ଖେଳିଗଲା । ସେ ଯେପରି ଚେତା ଫେରି ପାଇଲା । ତା' ଜୀବନରେ କ'ଣ ଆଉ ଏକ ବିପର୍ଯ୍ୟୟ...

ଏଥର ତା' ପ୍ରାଣରେ ଭୀତି ସଞ୍ଚାର ହେଲା । ହୁଏତ ଆଉ କିଛି କ୍ଷଣ ପରେ ସବୁ ଜଣାଜଣି ହୋଇଯିବ । ପୋଲିସ୍ ଆସିବ । ତା'ପରେ?

ତା'ପରର ପରିସ୍ଥିତି କଥା ଜୟନ୍ତ ଭାବିପାରିଲା ନାହିଁ । ଧୀରେ ପଦଚାଳି ବାଥ୍‌ରୁମ୍‌ର ଦରଜା ଖୋଲି ବାହାରକୁ ଚାହିଁଲା । ସେ ଯେପରି ଗୋଟିଏ ବଡ଼ ଅପରାଧୀ । ନା, କେହି ତା'ହେଲେ ତାକୁ ଦେଖି ନାହିଁ । ଅତି ସନ୍ତର୍ପଣରେ ବାହାରକୁ ବାହାରି ଆସିଲା, କିନ୍ତୁ ଏ ଲୋକଟି କିଏ ? ଖବର କାଗଜରେ ନିଜର ମୁହଁଢାଙ୍କି ବସି ରହିଛି । ଜୟନ୍ତ ଭୟରେ ଶିହରୀ ଉଠିଲା । ପାଦ ଆଉ ଆଗକୁ ପଡ଼ିଲା ନାହିଁ । ସେ ପୁଣି ଛୁଟିଯାଉଥିଲା ବାଥ୍‌ରୁମ୍ ଭିତରେ ଆତ୍ମଗୋପନ କରିବା ପାଇଁ ।

କିନ୍ତୁ ସେଇ ଭଦ୍ରଲୋକ ଖବରକାଗଜଟା ମୁହଁ ଉପରୁ କାଢ଼ି ଦେଇ ସ୍ମିତ ହସିଲେ । ଶାନ୍ତ ସ୍ୱରରେ କହିଲେ, କିଛି ଭୟ କରନ୍ତୁ ନାହିଁ ମିଷ୍ଟର ମହାପାତ୍ର । ଦୁର୍ଘଟଣା ମୋ'ଛଡ଼ା ଆଉ କେହି ଦେଖି ନାହିଁ ।

ଜୟନ୍ତର ସମଗ୍ର ଶରୀର ଭିତରେ କିପରି ଏକ ଶୈତ ପ୍ରବାହ ଖେଳିଗଲା । ମିଷ୍ଟର ଚୁଙ୍ଗଙ୍କ ମୁହଁକୁ ଚାହିଁ ତା'ର ମନେ ହେଲା, ତାଙ୍କ ଏକ୍ସ-ରେ ଆଖି ଯୋଡ଼ାକୁ ଯେପରି ଇଟାର ଦିଆଲ ଭେଦକରି ଭିତରର ସମସ୍ତ ଛବି ତୋଳିନେଇଛି ।

ମିଷ୍ଟର ଚୁଙ୍ଗ୍ ଉଠି ଆସିଲେ । ଜୟନ୍ତ କାନ୍ଧରେ ହାତ ପକାଇ କହିଲେ, ଏହି ସାମାନ୍ୟ ଘଟଣାରେ ଆପଣ ଡରି ଯାଉଛନ୍ତି ମିଷ୍ଟର ମହାପାତ୍ର । ଏଗୁଡ଼ାକୁ କୌଣସି ଗୁରତ୍ୱ ଦେବାର ପ୍ରଶ୍ନ ଉଠୁନାହିଁ । ଆପଣ ଗୋଟାଏ ଝିଅକୁ ସମ୍ଭୋଗ କରିବାକୁ ଯାଇଥିଲେ । ସେ ଯଦି ମୃତବରଣ କଲା, ଆପଣ କ'ଣ କରିବେ ।

: ନା, ନା, ମାଳବିକାକୁ ମୁଁ ସମ୍ଭୋଗ କରିବାକୁ ଯାଇ ନଥିଲି । ମାଳବିକା ମୋ ପାଇଁ ମୃତ୍ୟୁବରଣ କରିନାହିଁ । ଜୟନ୍ତର ବାକ୍‌ରୁଦ୍ଧ ହୋଇ ଆସୁଥିଲା ।

ମିଷ୍ଟର ଚୁଙ୍ଗ୍ ଜୟନ୍ତ ପିଠି ଥାପୁଡ଼େଇ ଦେଇ ସାନ୍ତ୍ୱନା ଦେଲେ । କହିଲେ, ଆପଣ ଆଦୌ ଭୟ କରନ୍ତୁ ନାହିଁ । ଅବଶ୍ୟ ଏଇ ଘଟଣାଟାକୁ ପୋଲିସ୍ ଭଲ ଆଖିରେ ଦେଖିବ ନାହିଁ । ସେ କହିବ ଆପଣ ମାଳବିକାକୁ ହତ୍ୟା କରିଛନ୍ତି । କିନ୍ତୁ...

: କ'ଣ କହିଲେ, ମୁଁ ମାଳବିକାକୁ ହତ୍ୟା କରିଛି ? ନା, ନା, ନା, ଜୟନ୍ତ ଆର୍ତ୍ତ ଚିତ୍କାର କରି ଉଠିଲା ।

ମିଷ୍ଟର ଚୁଙ୍ଗ୍ ଜୟନ୍ତକୁ ଧରି ସୋଫା ଉପରେ ବସାଇଲେ । କହିଲେ, ଆପଣ ମାଳବିକାର ହତ୍ୟାକାରୀ ନ ହୋଇଥିଲେ ବି ପୋଲିସ୍ ସେ କଥା ଶୁଣିବ ନାହିଁ । ଆପଣଙ୍କ ଘରେ, ପୁଣି ଆପଣଙ୍କ ବାଥ୍‌ରୁମ୍‌ରେ ମାଳବିକା ମରିଶୋଇଛି । ପୋଲିସ୍ ଆସି କାହାକୁ ଧରିବ ? ମିଷ୍ଟର ଚୁଙ୍ଗଙ୍କ ସ୍ୱର ଟିକିଏ ଅସ୍ୱାଭାବିକ ଶୁଣାଗଲା ।

ଜୟନ୍ତ କହିଲା, ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ଚୁଙ୍ଗ୍, ମୁଁ, ମାନେ ମୁଁ ବାଥ୍‌ରୁମ୍‌ରେ ପଶି ଦେଖିଲି ମାଳବିକା 'ବାଥ୍‌ଟବ୍' ଉପରେ ମୁଣ୍ଡ ରଖି ଶୋଇପଡ଼ିଛି । ମୁଁ ତା' ଦେହରେ ହାତ ଦେଇ ଜାଣିଲି ସେ ମୃତ । ଆପଣ ମୋ କଥା ବିଶ୍ୱାସ କରନ୍ତୁ ।

ମିଷ୍ଟର ଚୁଙ୍ଗ୍ ହସିଲେ । କହିଲେ, ମୁଁ ବିଶ୍ୱାସ କଲେ ତ ହେବ ନାହିଁ । ମାତ୍ର ପୋଲିସ୍ ଆପଣଙ୍କ କଥା ଆଦୌ ବିଶ୍ୱାସ କରିବେ ନାହିଁ ।

: ତା'ହେଲେ ଉପାୟ ?

: ମୁଁ କହିଲି ପରା ! ଆପଣ ସେଥିପାଇଁ କିଛି ଚିନ୍ତା କରନ୍ତୁ ନାହିଁ । ମୁଁ ଠିକ୍ ସମୟରେ ଆସି ପହଞ୍ଚିଯାଇଛି ଯେତେବେଳେ ପୋଲିସ୍ ଆପଣଙ୍କର କେଶାଗ୍ର ପର୍ଯ୍ୟନ୍ତ ସ୍ପର୍ଶ କରି ପାରିବନାହିଁ । କିନ୍ତୁ ଆପଣ ଆଉ ଡେରି କରନ୍ତୁ ନାହିଁ ଯେତିକି ସମୟ ଅତିବାହିତ ହେବ, ବିପଦର ପେଣ୍ଡୁଲମ୍ ସେତିକି ଦ୍ରୁତ ଗତିରେ ଦୋହଲିବାରେ ଲାଗିବ ।

: ତା'ହେଲେ ?

: ଆପଣ ବାହାରି ପଡ଼ନ୍ତୁ ।

: କୁଆଡ଼େ ?

: ମୋ ସହିତ । ମୁଁ ଆପଣଙ୍କୁ ନିରାପଦ ସ୍ଥାନକୁ ନେଇଯିବି । ତଳେ ମୋ ଗାଡ଼ି ଠିଆହୋଇଛି । ନେପାଳ ବର୍ଡର ସିକୁରିଟି ଫୋର୍ସ ମୋର ଜଣାଶୁଣା । ଚାଇନାରୁ ନେପାଳ ଏବଂ ନେପାଳରୁ ଚାଇନା ଯିବା ଆସିବାରେ ମୋତେ କେହି ବାଧା ଦେବେନାହିଁ । ଆପଣ ନେପାଳ ମାଟି ଛାଡ଼ି ଚାଇନା ମାଟିରେ ପାଦଦେଲେ କିଏ ଆପଣଙ୍କୁ ଦୋଷୀ ସାବ୍ୟସ୍ତ କରିବ? କିଏ କହିବ ଆପଣ ମାଳବିକାର ହତ୍ୟାକାରୀ ? ମିଷ୍ଟର ଚୁଙ୍ଗ୍ ମୁହୂର୍ତ୍ତରେ ନୀରବ ରହି କିପରି ଏକ କୁଟୀଳ ହସ ହସିଲେ । ଜୟନ୍ତ ତାଙ୍କର ସୁନା ଛାଉଣୀ ଦାନ୍ତଟି ଆଡ଼େ ଚାହିଁ ଶିହରୀ ଉଠିଲା ।

ମିଷ୍ଟର ଚୁଙ୍ଗ୍ କହିଲେ, ଆଉ ଡେରି କରନ୍ତୁ ନାହିଁ । ମିଷ୍ଟର ମହାପାତ୍ର । ଆପଣଙ୍କ ବିପଦକୁ ମୁଁ ମୋର ବିପଦ ମନେ କରୁଛି, ଏଠାକାର ପୋଲିସ୍ ବାହିନୀ ଅତ୍ୟନ୍ତ କ୍ରୁର । ସେମାନେ ସଂବାଦ ପାଇଗଲେ ଆପଣଙ୍କର ଆଉ ରକ୍ଷା ନାହିଁ ।

: କିନ୍ତୁ ଆପଣଙ୍କ ସହିତ....

: ହଁ, ମୋ ସହିତ ଆପଣ ନିଶ୍ଚିନ୍ତରେ ଯାଇ ପାରନ୍ତି । ରୁଦ୍ରପ୍ରସାଦ ମୋର ଅନ୍ତରଙ୍ଗ ବନ୍ଧୁ । ରୁଦ୍ରପ୍ରସାଦଙ୍କର ହୋଇ ମୁଁ ଆସିଥିଲି ଆପଣଙ୍କୁ ଏକ ନୂତନ ଯୋଜନା କଥା ଶୁଣାଇବା ପାଇଁ; କିନ୍ତୁ ଆସି ଦେଖିଲି, ଆପଣ ଅଠାକାଠିରେ ଲାଗି ଯାଇଛନ୍ତି । ନା, ଆଉ ଡେରି କରନ୍ତୁ ନାହିଁ ।

ଜୟନ୍ତ ତା' ଦୁର୍ଭାଗ୍ୟର କଥା ଚିନ୍ତା କରି ପାରୁ ନଥିଲା । ଅନୁରାଧାର ହତ୍ୟା ଅପରାଧରେ ସେ ଅପରାଧୀ ନହୋଇ ବି ଦେଶ ଛାଡ଼ିଛି । ଆଜି ପୁଣି ମାଳବିକାର ହତ୍ୟାକାରୀ ରୂପେ ତାକୁ ଏଠାକାର ପୋଲିସ୍ ସନ୍ଦେହ କରିବ ! ତା' ଭାଗ୍ୟର ଏ କି ବିଡ଼ମ୍ବନା ? ତେବେ କ'ଣ ସତରେ ମିଷ୍ଟର ଚୁଙ୍ଗ୍‌ଙ୍କ ହାତ ଧରି ଗୋଟିଏ ମିତ୍ର ଦେଶର ମାଟି ଛାଡ଼ି ତାକୁ ପାଦଦେବାକୁ ହେବ ଅଜଣା ଅଶୁଣା ଅନ୍ୟ ଏକ ଦେଶର ମାଟିରେ ।

ମିଷ୍ଟର ଚୁଙ୍ଗ୍ ଜୟନ୍ତର ହାତ ଧରି ଉଠାଇଲେ । କହିଲେ, ମୁଁ ଆପଣଙ୍କ ସହିତ ମିତ୍ରତାର ହାତ ମିଳାଉଛି ମିଷ୍ଟର ମହାପାତ୍ର । ଆପଣ ମୋତେ ବିଶ୍ୱାସ କରନ୍ତୁ ।

ଜୟନ୍ତ କିଛି ଚିନ୍ତା କରିବା ଆଗରୁ ଦରଜାରେ କିଏ ନକ୍‌କଲା । ମିଷ୍ଟର ଚୁଙ୍ଗ୍ ଘର ଭିତରେ ପଶିଲା ପରେ ଭିତରୁ ଦରଜା ବନ୍ଦକରି ଦେଇଥିଲେ । ଜୟନ୍ତ ଚଞ୍ଚଳ ହୋଇ ଉଠିଲା । ଦୁଆରେ କିଏ ନକ୍ କରୁଛି, ପୋଲିସ୍ ନୁହେଁ ତ?

ଜୟନ୍ତ ମିଷ୍ଟର ଚୁଙ୍ଗ୍‌ଙ୍କ ହାତ ଦୁଇଟାକୁ ଖୁବ୍ ଯୋର୍‌ରେ ଜାବୁଡ଼ି ଧରିଥିଲା । ମିଷ୍ଟର ଚୁଙ୍ଗ୍ ତାଙ୍କ ଡ୍ରାଇଭରକୁ କହି ଆସିଥିଲେ କିଛି ସମୟ ପରେ ୨୦୩ ନମ୍ବର ରୁମ୍‌ରେ ନକ୍ କରିବା ପାଇଁ । ମିଷ୍ଟର ଚୁଙ୍ଗ୍ ଉଠିଗଲେ ଦରଜା ଖୋଲି ଦେବାପାଇଁ ।

ଦରଜା ଖୋଲିଗଲା ।

କିନ୍ତୁ !

ଅବିଶ୍ୱାସ୍ୟ ଯେ !

ତାଙ୍କ ସାମ୍ନାରେ ଦୁଇଜଣ ଅତ୍ୟନ୍ତ ଅପରିଚିତ ଭାରତୀୟ ।

ସେମାନେ କାହାରିକୁ କିଛି ନ କହି ଘର ଭିତରକୁ ପଶିଆସିଲେ । ମିଷ୍ଟର ଚୁଙ୍ଗ୍ ଦେଖିଲେ ସେମାନଙ୍କ ପଛେ ପଛେ ନେପାଳର ଜଣେ ପୋଲିସ୍ ଅଫିସର ଏବଂ ଚାରି ପାଞ୍ଚଜଣ ପ୍ରହରୀ ଆଗେଇ ଆସୁଛନ୍ତି ।

ମିଷ୍ଟର ଚୁଙ୍ଗ୍ ଶାନ୍ତ ସରଳ ଶିଶୁପରି କାହାରିକୁ କିଛି ନ କହି ଘରୁ ବାହାରି ଚାଲି ଯାଉଥିଲେ; କିନ୍ତୁ ପୋଲିସ୍ ଅଫିସର ଜଣକ ଗର୍ଜିଉଠିଲେ, ହ୍ୟାଣ୍ଡସ୍ ଅପ୍ ମିଷ୍ଟର ଚୁଙ୍ଗ୍ ।

ମିଷ୍ଟର ଚୁଙ୍ଗ୍ ଚମକି ଉଠି ଦୁଇଟିଯାକ ହାତ ଉପରକୁ ଉଠାଇଲେ । ପ୍ରହରୀମାନେ ମିଷ୍ଟର ଚୁଙ୍ଗ୍‌କୁ ସାର୍ଚ୍ଚ କରି ଗୋଟିଏ ଆଗ୍ନେୟାସ୍ତ୍ର ଉଦ୍ଧାର କଲେ । ତା'ପରେ ତାଙ୍କ ହାତରେ କଡ଼ି ପିନ୍ଧାଇ ନେଇଗଲେ ପୋଲିସ୍ ଭ୍ୟାନ୍‌କୁ ।

ଜୟନ୍ତକୁ ମଧ୍ୟ ସେହି ଭ୍ୟାନ୍‌ରେ ଥାନାକୁ ନିଆହେଲା । ପ୍ରଥମେ ଯେଉଁ ଦୁଇଜଣ ଲୋକ ଘରେ ଭିତରେ ପ୍ରବେଶ କରିଥିଲେ। ସେ ଦୁଇଜଣ କ୍ରାଇମବ୍ରାଞ୍ଚର ଲୋକ । କଲିକତାରୁ ଆସିଥିଲେ । ଜଣକ ନାମ ମିଷ୍ଟ ଭାର୍ଗବ ଏବଂ ଅନ୍ୟଜଣେ ମିଷ୍ଟର ସେନଗୁପ୍ତା । ସେମାନେ ଜୟନ୍ତକୁ ହସି ହସି କହିଲେ, ଆପଣ ଥାନାରେ ଯାଇ ଅପେକ୍ଷା କରନ୍ତୁ । ଆମେ ମାଳବିକାର ଶବ ପରୀକ୍ଷା କରି ସାରି ଆପଣଙ୍କ ସହିତ ଦେଖା କରିବୁ । ମାଳବିକା ହତ୍ୟା ସଂବାଦ ଆମେ ପାଇଛୁ ।

ଜୟନ୍ତ ମୁହଁରୁ କିନ୍ତୁ ରକ୍ତ ଶୁଖିଯାଇଥିଲା ।

ସେ ଅନିଚ୍ଛାସତ୍ତ୍ୱେ ପଛକୁ ଚାହିଁ ଚାହିଁ ଯାଇ ପୋଲିସ୍ ଭ୍ୟାନ୍‌ରେ ବସିଲା ।

ଆରଦିନ ରାତି ନଅଟା ।

କାଠମାଣ୍ଡୁରେ ପୋଲିସ୍ ପ୍ରଧାନଙ୍କ କାର୍ଯ୍ୟାଳୟରେ ପୋଲିସ୍‌ର ଅଧିକର୍ତ୍ତା ଏବଂ ଅନ୍ୟାନ୍ୟ ଛୋଟବଡ଼ ଅଫିସରମାନେ ମିଟିଂ ହଲ୍‌ରେ ବସି ରହିଥିଲେ । ମିଷ୍ଟର ଚୁଙ୍ଗ୍ ହାତକଡ଼ି ପଡ଼ିଥିବା ଅବସ୍ଥାରେ ଗୋଟିଏ ଚେଆରରେ ବସିଥିଲେ । ଜୟନ୍ତ ମଧ୍ୟ ବସିଥିଲା ସେହି ହଲ୍‌ରେ । ଦିନକ ଭିତରେ ତା' ଚେହେରା ଏତେ ଶୁଖି ଯାଇଥିଲା ଯେ, ହଠାତ୍ ଦେଖିଲେ ତାକୁ ଚିହ୍ନି ହେଉ ନଥିଲା ।

ଏକ ସମୟରେ ମିଷ୍ଟର ଭାର୍ଗବ ଉଠି ଠିଆହେଲେ ।

ସେ ପୋଲିସ୍ ଅଧିକର୍ତ୍ତା ଏବଂ ହଲ୍‌ର ଅନ୍ୟାନ୍ୟ ନାରୀ ପୁରୁଷମାନଙ୍କ ଆଡ଼କୁ ଥରେ ଚାହିଁ ଆରମ୍ଭ କଲେ ।

ଆଜି ଏଠାରେ ଆମେ ଯେଉଁମାନେ ଏକତ୍ର ହୋଇଛେ, ଆମ ସମସ୍ତଙ୍କ ମନରେ କିନ୍ତୁ ଗୋଟିଏ ଜିଜ୍ଞାସା ଲୁଚି ରହିଛି । ସମସ୍ତେ ଅଳ୍ପ ବହୁତ ଜାଣନ୍ତି ଯେ, ଆଜି ଏଠାରେ

ଦୁଇଟି ହତ୍ୟାକାଣ୍ଡର ରହସ୍ୟ ଉଦ୍‌ଘାଟନ ହେବ । ସୁଦୂର କଲିକତାରେ ଅନୁରାଧା ନାମ୍ନୀ ଗୋଟିଏ ନର୍ତ୍ତକୀର ହତ୍ୟା ରହସ୍ୟ ସୁଦୂର ନେପାଳରେ ଉନ୍ମୋଚିତ ହେବ । ଅବଶ୍ୟ ଏହା ଏକ ଅବିଶ୍ୱସ୍ୟ ଘଟଣା । ତଥାପି ଏହା ସତ୍ୟ । ପ୍ରଥମେ ମୁଁ ରାଜା ସାହେବ ଓ ଏଠାକାର ପୋଲିସ୍ ଅଧିକର୍ତ୍ତାଙ୍କୁ କୃତଜ୍ଞତା ଜଣାଇ ଏହି ହତ୍ୟା ରହସ୍ୟର ସୂତ୍ର ପ୍ରକାଶ କରୁଛି । ସେମାନେ ଆମକୁ ସଦୟ ସହଯୋଗ ଦେଇ ନ ଥିଲେ ଆମେ ଏ କାର୍ଯ୍ୟରେ ଆଦୌ କୃତକାର୍ଯ୍ୟ ହୋଇ ପାରି ନ ଥାନ୍ତୁ ।

ଏ ରହସ୍ୟ ନାଟକର ନାୟକ ହେଉଛନ୍ତି ଜୟନ୍ତ ମହାପାତ୍ର । ସେ ଏହି ସଭାରେ ଉପସ୍ଥିତ ଅଛନ୍ତି ।

ଜୟନ୍ତ ମହାପାତ୍ର ଏବଂ ମଳୟ ଚଉଧୁରୀ ଦୁଇବଂଧୁ ।

ଦୁଇଜଣ ଉଚ୍ଚ ଶିକ୍ଷିତ । ସେମାନେ ଦୁଇଜଣ ମିଶି "ଭାରତ ଇଲେକ୍‌ଟ୍ରୋନିକ୍ ଇନ୍‌ଷ୍ଟିଚ୍ୟୁଟ୍" ନାମକ ଏକ ଅନୁଷ୍ଠାନ ପରିଚାଳନା କରୁଥିଲେ । ଜୟନ୍ତ ମହାପାତ୍ର ଏକ ଇଲେକ୍‌ଟ୍ରୋନିକ୍ ମେସିନ୍ ପ୍ରସ୍ତୁତ କରିବା ପାଇଁ ଏକ ବ୍ଲୁପ୍ରିଣ୍ଟ୍ କରିଥିଲେ ଏବଂ ଭାରତ ସରକାରଙ୍କ ଅନୁମୋଦନ ପାଇଁ ସେଇଟି ପଠାଇଥିଲେ । ସେଇ ମେସିନ୍ ଉଦ୍ଭାବନ ହୋଇ ପାରିଲେ ଦେଶର ଲକ୍ଷ ଲକ୍ଷ କାନ୍‌ସର ରୋଗୀ ଅତି ସହଜରେ ନିରାମୟ ହୋଇ ପାରିବେ । ଏଇ ମେସିନ୍ କ୍ୟାନ୍‌ସର ରୋଗର ସଂକ୍ରମଣ ପ୍ରଥମ ଅବସ୍ଥାରୁ ଡିଟେକ୍‌ଟ କରି ପାରିବ ।

ଏଇଟା ନିଶ୍ଚୟ ଏକ ଗୋପନ ତଥ୍ୟ । ଜୟନ୍ତ ମହାପାତ୍ର, ମଳୟ ଚଉଧୁରୀ ଏବଂ ତାଙ୍କର ଆଉ କେତେଜଣ ବିଶ୍ୱସ୍ତ ବଂଧୁବାନ୍ଧବଙ୍କ ଛଡ଼ା ଅନ୍ୟ କାହାରି ଜାଣିବାର କଥା ନୁହେ । ରୁଦ୍ରପ୍ରସାଦ "ଭାରତ ଇଲେକ୍‌ଟ୍ରୋନିକ୍ ପ୍ରତିଷ୍ଠାନ" ସହିତ ସଂପୃକ୍ତ ଥିବାରୁ ସେ ଏ ସଂବାଦ ଜାଣି ଥିଲେ ଏବଂ ମେସିନ୍ ପ୍ରସ୍ତୁତ ହୋଇ ବଜାରକୁ ବାହାରିଲେ ସେ ନେପାଳ ପାଇଁ ସୋଲ୍ ଏଜେନ୍‌ସୀ ନେବେ ଏ କଥା ମଳୟ ଚଉଧୁରୀଙ୍କ ସହିତ ତାଙ୍କର ଆଲୋଚନା ହୋଇଥିଲା ।

ସେଇ ବ୍ଲୁପ୍ରିଣ୍ଟଟା ଯେତେବେଳେ ଭାରତ ସରକାରଙ୍କ ନିର୍ଦ୍ଦିଷ୍ଟ ଦପ୍ତରରେ ପରୀକ୍ଷା ନିରୀକ୍ଷା କରାହେଉଥିଲା, ରୁଦ୍ରପ୍ରସାଦ ସେଠାରେ ଯାଇଁ ଖବର ନେଉଥିଲେ । ବିଶେଷଜ୍ଞମାନେ ଯେତେବେଳେ ମତଦେଲେ ଯେ, ବାସ୍ତବିକ୍ ଏହି ମେସିନ୍ ଉଦ୍ଭାବିତ ହୋଇପାରିଲେ ପୃଥିବୀର ଅଶେଷ କଲ୍ୟାଣ ସାଧନ ହୋଇପାରିବ । ସେତେବେଳେ ରୁଦ୍ରପ୍ରସାଦଙ୍କ ଭାବନାଟା ହଠାତ୍ ବଦଳିଗଲା । ସେ ମଳୟ ଚଉଧୁରୀକୁ ହାତକଲେ । ଦୁଇଜଣଙ୍କ ମତ ହେଲା ଏ ମେସିନ୍ ନିଶ୍ଚୟ ଏକ ପ୍ରଚୁର ଲାଭଜନକ ବ୍ୟବସାୟ ହେବ । ଏହା ଭିତରକୁ ଜୟନ୍ତ ମହାପାତ୍ରକୁ ବାଦ୍‌ଦେଇ ପାରିଲେ ସେମାନେ ଅନ୍ୟ ଦେଶରେ ନେଇ ଅନ୍ୟ ନାମରେ ଏହାକୁ ପ୍ରସ୍ତୁତ କରିବେ ଏବଂ କୋଟି କୋଟି ଟଙ୍କା ଉପାର୍ଜନ କରିବାକୁ ସକ୍ଷମ ହେବେ । ମଳୟ ଚଉଧୁରୀ ଓ ରୁଦ୍ରପ୍ରସାଦ ହାତ ମିଳେଇଲେ ।

ଏହି ସିଦ୍ଧାନ୍ତ ପରେ ସେମାନଙ୍କର ଚକ୍ରାନ୍ତ ଆରମ୍ଭ ହେଲା । ସେମାନେ କିପରି ଜୟନ୍ତ ମହାପାତ୍ରକୁ ବାଟରୁ ଘୁଞ୍ଚେଇବେ । କିନ୍ତୁ ପ୍ରାଣରେ ମାରିଦେଲେ ଚଳିବ ନାହିଁ । ତାକୁ ସଙ୍ଗେ ସଙ୍ଗେ ରଖି ତାରି ହାତରେ ଯନ୍ତ୍ର ଆବିଷ୍କାର କରାଇ, ତା'ପରେ ତାକୁ ଏ ପୃଥିବୀରୁ ବିଦାୟ ଦିଆଇବେ ।

ଏହି ପରିକଳ୍ପନା ପରେ କାମ ଆରମ୍ଭ ହୋଇଥିଲା । ସେମାନେ ଜୟନ୍ତର ବାନ୍ଧବୀ ଅନୁରାଧାକୁ ହତ୍ୟାକରି, ହତ୍ୟା ଅପରାଧୀ ରୂପେ ଜୟନ୍ତକୁ ପୋଲିସ୍‌ର ଭୟ ଦେଖାଇ ଇଣ୍ଡିଆରୁ ନେପାଳକୁ ଘେନି ଆସିଲେ । ସେମାନଙ୍କ ପରିକଳ୍ପନା ସଫଳତା ଦିଗରେ ଆଗେଇ ଚାଲିଥିଲା: କିନ୍ତୁ ବାଧା ଉପୁଜିଲା ଗୋଟାଏ ଜାଗାରେ ।

ଅନୁରାଧାର ମୃତ୍ୟୁ ପରେ ତା'ଶବକୁ ପୋଷ୍ଟମର୍ଟମ ପାଇଁ ନିଆହେଲା । ପୋଲିସ୍ ବିଭାଗ ଅନୁରାଧା ଘରୁ ଜୟନ୍ତର ନାମାଙ୍କିତ ସିଗାରେଟ କେସ୍ ପାଇଲେ । ଯାହାହେଉ, ପୋଲିସର ଦୃଢ଼ଧାରଣା ଯେ ଜୟନ୍ତ ଏ ହତ୍ୟାକାଣ୍ଡ ସହିତ ସଂପୃକ୍ତ ।

ଯେଉଁଦିନ ଅନୁରାଧାକୁ ପୋଷ୍ଟମର୍ଟମ ଟେବୁଲ୍‌ରେ ଶୁଆଇ ଦେଇ ପରୀକ୍ଷା ପାଇଁ ବିଶେଷଜ୍ଞମାନେ ପ୍ରସ୍ତୁତ ହେଉଥିଲେ, ସେଇଦିନ ସେଇ ମୁହୂର୍ତ୍ତରେ ଜାପାନର ଜଣେ ଡାକ୍ତର ଆସି ପହଞ୍ଚିଲେ ସେଠାରେ । ସେମାନେ ଆସିଥିଲେ ଭାରତବର୍ଷର ଚିକିତ୍ସା ପଦ୍ଧତି ଅନୁଧ୍ୟାନ କରିବା ପାଇଁ ।

ଅନୁରାଧାର ଶବ ବ୍ୟବଚ୍ଛେଦ ସେମାନେ ଦେଖିଲେ କିନ୍ତୁ ଅନୁରାଧା ଦେହରୁ ଯେଉଁ ବିଷର ସଂଧାନ ମିଳିଲା, ସେମାନେ ଆଶ୍ଚର୍ଯ୍ୟ ହେଲେ । ଆମ ବିଶେଷଜ୍ଞମାନେ ହୋଇଥିଲେ ଅନୁରାଧା ଦେହରେ ଯେ ଆଦୌ ବିଷ ଅଛି ସେ କଥା ଜାଣିପାରି ନଥାନ୍ତେ । କିନ୍ତୁ ଜାପାନର ସେହି ଡାକ୍ତରମାନେ ତାହା ଆବିଷ୍କାର କରି ପାରିଥିଲେ । ସେମାନେ କହିଲେ

ଅନୁରାଧାକୁ ହତ୍ୟା ପାଇଁ ଯେଉଁ ଔଷଧ ପ୍ରୟୋଗ କରାହୋଇଛି ସେହି ଔଷଧଟାର ନାମ 'ଫୁରା' । ଜାପାନ ଦେଶର ଲୋକେ ଆତ୍ମହତ୍ୟା ପାଇଁ ଏହି ବିଷ ବ୍ୟବହାର କରନ୍ତି । ଜାପାନରେ 'ଗ୍ଲୋବ' ନାମକ ଏକ ମାଛ ମିଳନ୍ତି । ସେହି ମାଛର ଯୌନାଙ୍ଗରୁ ଏହା ମିଳେ ।

ଏହି ବିଷ ସ୍ନାୟୁ କେନ୍ଦ୍ରକୁ ଧୀରେ ଧୀରେ ଶିଥିଳ କରିଦିଏ । 'ଫୁରା'ର ବୈଜ୍ଞାନିକ ନାମ 'ଟ୍ରେଟ୍ରୋଡଟୋକ୍ସିନ'। ଏହା ଏକ ସାଂଘାତିକ ପଦାର୍ଥ । ଆଉ ଖୁବ୍ ଶୀଘ୍ର ମଧ୍ୟ କାମ କରେ । ତେବେ ପ୍ରୟୋଗ ଭେଦରେ ଏହାର ତାରତମ୍ୟ ଦେଖାଯାଏ। ଅନୁରାଧା ଦେହରେ ଯେଉଁ ପରିମାଣରେ ବିଷ ପ୍ରୟୋଗ କରାହୋଇଛି, ତାହା ଧୀରେ ଧୀରେ ଶ୍ୱାସ ପ୍ରଶ୍ୱାସର ପେଶିଗୁଡ଼ିକୁ ଅବଶ କରି ପକାଇଥିବ । ପ୍ରଥମେ ସେ ଆଖି ଆଗରେ ସବୁ ପଦାର୍ଥ ଦୁଇଟି କରି ଦେଖିଥିବ, ତା'ପରେ ଆଉ ଆଖି ଖୋଲିପାରି ନଥିବ । ଏବଂ ଢୋକ ଗିଳି ପାରି ନଥିବ । ମୁଣ୍ଡ ସାମ୍ନାକୁ ଝୁଙ୍କିପଡ଼ିଥିବ, ଆଉ ସେ ମୁଣ୍ଡ ଉଠାଇପାରି ନଥିବ;

ଏବଂ ଶ୍ୱାସ-ଯନ୍ତ୍ର କ୍ରିୟା ବନ୍ଦ ହୋଇଯାଇଥିବ । ଅନୁରାଧା ଦେହ, ମୁହଁରେ ସେଇ ସବୁ ଲକ୍ଷଣ ପରିସ୍ଫୁଟ।

ଜାପାନୀ ବିଶେଷଜ୍ଞମାନଙ୍କଠାରୁ ଏହି ମନ୍ତବ୍ୟ ଶୁଣିବା ପରେ ଅନୁରାଧାର ସେଇ ପୋଷ୍ଟମର୍ଟମ ରିପୋର୍ଟ ଖୁବ୍ ଗୋପନରେ ରଖାଗଲା ଏବଂ ଅନୁସନ୍ଧାନ କାର୍ଯ୍ୟ ମଧ୍ୟ ଗୋପନରେ ଆରମ୍ଭ ହୋଇଗଲା ।

କିଛିଦିନ ପରେ ଜଣାଗଲା ଯେ, ଜୟନ୍ତ ମହାପାତ୍ର ଭାରତ ସରକାରଙ୍କୁ ଅନୁମୋଦନ ପାଇଁ ପଠାଇଥିବା ବ୍ଲୁପ୍ରିଣ୍ଟିଟି ଚୋରି ହୋଇଯାଇଛି । ଏହିପରି ଅବସ୍ଥାରେ କ୍ରାଇମ୍ ବ୍ରାଞ୍ଚ ଉପରେ ଏହି କେସ୍‌ର ତଦନ୍ତ ଭାର ଛାଡ଼ି ଦିଆହେଲା ।

ଆମେ କାମରେ ଲାଗିଗଲୁ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଜାଣିପାରିଲୁ ଯେ, ଜୟନ୍ତ ମହାପାତ୍ରଙ୍କୁ ଭାରତରୁ ନେପାଳକୁ ପଠାଇ ଦିଆହୋଇଛି । ସଙ୍ଗେ ସଙ୍ଗେ ନେପାଳ ସରାକରଙ୍କ ଅନୁମତି କ୍ରମେ ଆମେ ନେପାଳରେ ଅନୁସନ୍ଧାନ ଆରମ୍ଭ କରିଦେଲୁ । ଜୟନ୍ତ ନେପାଳକୁ ଆସିବା ଚାରି ପାଞ୍ଚଦିନ ପରେ ଆମେ ତାକୁ ଠାବ କରି ଏବଂ ତା'ର ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଲୁ ।

ଆମର ଯେଉଁ ଅଫିସର ଜଣକ ନେପାଳରେ ଆସି କାର୍ଯ୍ୟ ଆରମ୍ଭ କରି ଦେଇଥିଲେ, ସେ ଜଣେ ମହିଳା ଏବଂ ତାଙ୍କର ପରିଚୟ ମୁଁ ପରେ ଆପଣମାନଙ୍କୁ କରାଇବି । ଆମର ସେହି ମହିଳା ଅଫିସର ଜଣଙ୍କ ଆମକୁ ଜୟନ୍ତର ଗତିବିଧି ସମ୍ବନ୍ଧରେ ସମସ୍ତ ସଂବାଦ ପରିବେଷଣ କରୁଥିଲେ ଏବଂ ଜୟନ୍ତ ସହିତ ମଧ୍ୟ ଯୋଗାଯୋଗ ରଖିଥିଲେ ।

ତା'ପରେ ଆମେ ଦୁଇଜଣ ଆସି ନେପାଳରେ ପହଞ୍ଚିଲୁ । କିନ୍ତୁ ଏତେ ସାବଧାନତା ସତ୍ତ୍ୱେ ଆମେ ମାଳବିକାର ଜୀବନ ବଞ୍ଚାଇପାରିଲୁ ନାହିଁ । ଆମେ ଇଚ୍ଛା କରିଥିଲେ ଆହୁରି ତିନି ଚାରିଦିନ ଆଗରୁ ଜୟନ୍ତ ମହାପାତ୍ରଙ୍କ ସହିତ ଯୋଗାଯୋଗ ସ୍ଥାପନ କରିପାରି ଥାଆନ୍ତୁ । ତା'ହେଲେ ଆମେ ଅନୁରାଧାର ପ୍ରକୃତ ହତ୍ୟାକାରୀକୁ ଆବିଷ୍କାର କରିପାରି ନଥାନ୍ତୁ ।

ରୁଦ୍ରପ୍ରସାଦଙ୍କର ପରିକଳ୍ପନା ଥିଲା, ସେମାନେ ମାଳବିକାକୁ ହତ୍ୟାକରି, ଏଠାକାର ପୋଲିସ ଭୟ ଦେଖାଇ ଜୟନ୍ତ ମହାପାତ୍ରଙ୍କୁ ଚାଇନା ପଠାଇ ଦେବେ ଏବଂ ସେଇଠାରେ ସେମାନେ ଘାଟି କରି 'କ୍ୟାନ୍‌ସର ଡିଟେକ୍‌ଟର' ମେସିନ୍ ତିଆରି କରିବେ । ପରିକଳ୍ପନା ଅନୁସାରେ କାମ ଠିକ୍ ଆଗେଇ ଚାଲିଥିଲା । ଜୟନ୍ତକୁ ସେମାନେ ହାତମୁଠାରେ ପାଇଥିଲେ । ଅନୁରାଧା ଦେହରେ ସେଇ ''ଫୁରା'' ବିଷ ପ୍ରୟୋଗ କରି ତାକୁ ହତ୍ୟା କରିଥିଲେ ଏବଂ ଜୟନ୍ତ ମହାପାତ୍ରଙ୍କ ବାଥ୍‌ରୁମ୍‌ରେ ଶୁଆଇ ଦେଇ ଆସିଥିଲେ ।

ତେବେ ଏହାଦ୍ୱାରା ଗୋଟାଏ ଲାଭ ହେଲା । ଆମେ ମିଷ୍ଟର ଚୁଙ୍ଗଙ୍କ ଗାଡ଼ିରୁ ସମସ୍ତ ପ୍ରମାଣ ଅକ୍ଲେଶରେ ସଂଗ୍ରହ କରିନେଲୁ । ସେ ପ୍ରସ୍ତୁତ ହୋଇ ଆସିଥିଲେ ଜୟନ୍ତ ମହାପାତ୍ରଙ୍କୁ ସଂଗରେ ଧରି ସିଧା ଚାଇନା ପଳାଇ ଯିବା ପାଇଁ । ସେଇଥି ପାଇଁ ଗାଡ଼ି ଭିତରେ ତାଙ୍କ ଆଟାଚି କେସ୍ ଭିତରେ ସବୁ ପ୍ରମାଣଯାକ ସଜାଡ଼ି ରଖିଥିଲେ ।

ମିଷ୍ଟର ଭାର୍ଗବ ଟିକିଏ ଅଟକି ଯାଇ ଥରେ ସମସ୍ତଙ୍କ ମୁହଁକୁ ଚାହିଁଲେ । ତା'ପରେ ମିଷ୍ଟର ସେନ୍‌ଗୁପ୍ତଙ୍କ ଆଡ଼କୁ ହାତ ବଢ଼ାଇଲେ । ସେ ଗୋଟିଏ ଆଟାଚି କେସ୍ ବଢ଼ାଇ ଦେଲେ । ମି: ଭାର୍ଗବ ଆଟାଚି କେସ୍‌ଟି ଟେବୁଲ୍ ଉପରେ ଖୋଲି ଗୋଟିଏ ଶିଶି ବାହାର କରି ଦେଖାଇ କହିଲେ, ଏଇ ହେଉଚି ସେଇ 'ଫୁରା' ବିଷ ଯାହା ଅନୁରାଧା ଓ ମାଳବିକା ପରି ଦୁଇଟି ନିରୀହ ଯୁବତୀଙ୍କର ଅମୂଲ୍ୟ ଜୀବନ ନଷ୍ଟ କରିଛି । ଆଉ ଏଇ ହେଉଛି ସେ 'ବ୍ଲୁପ୍ରିଣ୍ଟ୍', ଯେଉଁ ବ୍ଲୁପ୍ରିଣ୍ଟ୍ ଦିଲ୍ଲୀରୁ ଚୋରି ହୋଇଥିଲା । ଆଉ ଏଇ ଚିଠି କେତେଖଣ୍ଡ ରୁଦ୍ରପ୍ରସାଦଙ୍କର । ନିଜ ହାତରେ ସେ ମିଷ୍ଟର ଚୁଙ୍ଗ୍‌କୁ ଲେଖିଥିଲେ । ଏହି ଚିଠି ଭିତରୁ ସେମାନଙ୍କର ପରିକଳ୍ପନାର ସମସ୍ତ ତଥ୍ୟ ଆମେ ଆବିଷ୍କାର କରିଛୁ; କିନ୍ତୁ ଆଜି ସବୁଠାରୁ ଦୁଃଖର କଥା ହେଉଛି ରୁଦ୍ରପ୍ରସାଦ ଆମ ଆଖିରେ ଧୂଳିଫିଙ୍ଗି ଖସିଯାଇଛନ୍ତି । ତେବେ ସେ ବେଶିଦିନ ଆତ୍ମଗୋପନ କରି ରହିପାରିବେ ନାହିଁ ।

ମିଷ୍ଟର ଭାର୍ଗବ ମୁହୂର୍ତ୍ତେ ନୀରବ ରହି ପୁଣି କହିଲେ, ଏଇ କେସ୍‌ର ତଦନ୍ତରେ ସଫଳତା ଅର୍ଜନ ପାଇଁ ସବୁଠାରୁ ଯାହାର କୃତିତ୍ୱ ସେ ହେଉଛନ୍ତି...

ମିଷ୍ଟର ଭାର୍ଗବଙ୍କ ଇଙ୍ଗିତରେ ଜଣେ ଭଦ୍ର ମହିଳା ଉଠି ଠିଆହେଲେ ଏବଂ ପର ମୁହୂର୍ତ୍ତରେ ଏକ ତରଙ୍ଗାୟିତ ହାସ୍ୟଧ୍ୱନିରେ ସ୍ଥାନଟି ମୁଖର ହୋଇ ଉଠିଲା ।

ଜୟନ୍ତ ମହାପାତ୍ର ସେହି ହାସ୍ୟଧ୍ୱନି ସହିତ ଅତ୍ୟନ୍ତ ପରିଚିତ । ସେ ସଂଗେ ସଂଗେ ଚିତ୍କାର କରି ଉଠିଲା, କିଏ ରୋଜି ! ତମେ....

ମିଷ୍ଟର ଭାର୍ଗବ କହିଲେ, ହଁ ରୋଜି, ତାଙ୍କ ନାଁ ମିସ୍ ରୋଜି ମାଲହୋତ୍ରା ।

ରୋଜି ମାଲହୋତ୍ରା ସମସ୍ତଙ୍କୁ ହାତଯୋଡି ନମସ୍କାର କଲେ ।



ଚୌରଙ୍ଗୀର 'ଜୀବନ ଦୀପ' ଭବନରେ ନୂତନ ଅଫିସ୍‌ର ଉଦ୍‌ଘାଟନ ଉତ୍ସବ ଗତକାଲି ଶେଷ ହୋଇଛି । କଲିକତାରେ ଏହି ନୂତନ ଅଫିସ୍ ଉଦ୍‌ଘାଟନ ଉତ୍ସବରେ ସତ୍ୟବ୍ରତ ମହାପାତ୍ର ସ୍ଥାନୀୟ ବହୁ ସରକାରୀ ଓ ବେସରକାରୀ ମାନ୍ୟଗଣ୍ୟ ଲୋକମାନଙ୍କୁ ନିମନ୍ତ୍ରଣ କରିଥିଲେ। ସେହି ଉଦ୍‌ଘାଟନ ଉତ୍ସବର ସବିଶେଷ ବିବରଣୀ ପ୍ରକାଶ ପାଇଛି ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକରେ ।

ଜୀବନ ଦୀପ ଭବନର ତେର ତାଲାର ଏକ କକ୍ଷରେ ବସି ସେହି ବିବରଣୀ ନିବିଷ୍ଟ ଚିତ୍ତରେ ପାଠ ପାଉଥିଲେ ସତ୍ୟବ୍ରତ ମହାପାତ୍ର । ସାମ୍‌ନାରେ ଇଜି ଚେଆର ଉପରେ ଗୋଡ଼ ଉଠେଇ ବସିଥଲା ସବ୍ୟସାଚୀ ଦାସ । ଆଖି ବୁଜି ସେ ସତେ କି ଧ୍ୟାନମଗ୍ନ ।

ହଠାତ୍ କଲିଂ ବେଲ୍‌ଟା ଝଣ୍ ଝଣ୍ ହୋଇ ବାଜି ଉଠିଲା ।

ଧ୍ୟାନ ଭଙ୍ଗହେଲା ଦୁଇ ଜଣଙ୍କର ।

ସବ୍ୟସାଚୀ ଉଠିଯାଇ ଦରଜା ଖୋଲିଦେଲା ।

ସାମ୍‌ନାରେ ଛିଡ଼ା ହୋଇଛନ୍ତି ଜଣେ ପ୍ରୌଢ଼ ଭଦ୍ରଲୋକ । ସୁଦୀର୍ଘ ଚେହେରା । ପିନ୍ଧିଛନ୍ତି ଗୋଟିଏ ଲଙ୍ଗ୍ କୋଟ୍ । ବୁଦ୍ଧିଦୀପ୍ତ ମୁଖମଣ୍ଡଳ ।

ଚାରି ଆଖିର ମିଳନ ପରେ ଆଗନ୍ତୁକ କହିଲେ : ମୋ ନାଁ ଧନଞ୍ଜୟ ବୈରାଗୀ ।

: ଆସନ୍ତୁ । ସବ୍ୟସାଚୀ ଭଦ୍ରଲୋକଙ୍କୁ ଭିତରକୁ ଡାକିଲା ।

ସତ୍ୟବ୍ରତ କାଗଜ ଉପରୁ ମୁହଁଉଠାଇ ଚାହିଁଥିଲେ । ଦରଜାଆଡ଼େ ଆଗନ୍ତୁକଙ୍କୁ ଦେଖି ଠିଆ ହୋଇ ପଡ଼ିଲେ ।

: ମୋ ନାଁ ଧନଞ୍ଜୟ ବୈରାଗୀ । ଭଦ୍ରଲୋକ ଆଉଥରେ ନିଜର ନାମ ଉଚ୍ଚାରଣ କଲେ ।

ଧନଞ୍ଜୟ ବୈରାଗୀ ଚେଆର ଉପରେ ବସୁ ବସୁ କହିଲେ : ଆପଣଙ୍କର ଏହି ନୂତନ ସଂସ୍ଥାର ଉଦ୍‌ଘାଟନ ଉତ୍ସବ ବାର୍ତ୍ତା ଆଜି ସମ୍ବାଦପତ୍ରରୁ ପଢ଼ିଲି; ଆଉ ସଙ୍ଗେ ସଙ୍ଗେ ଚାଲି ଆସିଲି ଆପଣଙ୍କର ମହକିଲ ତାଲିକାରେ ପ୍ରଥମେ ନାମ ଲେଖାଇବା ପାଇଁ ।

: ଆମର ସୌଭାଗ୍ୟ । ସତ୍ୟବ୍ରତ ହସି ହସି କହିଲେ ।

: କିନ୍ତୁ ମୋ କେସ୍‌ଟା ଚୋରୀ, ଡକାୟତି ବା ଖୁଣ୍‌ଖରାବିର ନୁହେଁ ।

: ମୁଁ ଜାଣିଛି ।

: ଆପଣ ଜାଣିଛନ୍ତି ? ଭଦ୍ରଲୋକ ସତ୍ୟବ୍ରତଙ୍କ ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ।

: ହଁ, ସତ୍ୟବ୍ରତ ସ୍ମିତ ହସି କହିଲେ, ଆପଣଙ୍କ କେସ୍‌ଟା ହେଉଛି ଏକ ସୁନ୍ଦରୀ ପାତ୍ରୀର ସମ୍ବାଦ ।

: ଆପଣମାନେ ଆପଣ... ଭଦ୍ରଲୋକ ଯେପରି ବିଚଳିତ ହୋଇ ଉଠିଲେ । ସେ ବିଶ୍ୱାସ କରିପାରିଲେ ନାହିଁ ତାଙ୍କ ମନର କଥା ଆଉ ଜଣେ ଜାଣିଲା କିପରି । ବିସ୍ମୟରେ ଧନଞ୍ଜୟ ବୈରାଗୀଙ୍କର ମୁହଁ ବନ୍ଦ ହୋଇଯାଇଥିଲା ।

ସତ୍ୟବ୍ରତ ହସି ହସି କହିଲେ : ମୁଁ ଦେବଦୂତ ନୁହେଁ ଧନଞ୍ଜୟ ବାବୁ । ଆପଣଙ୍କ ହାତରେ ଥିବା ସମ୍ବାଦ ପତ୍ରଟିରୁ ମୁଁ ଆପଣଙ୍କର ଆଗମନର ଉଦ୍ଦେଶ୍ୟ ବୁଝିପାରିଛି ।

ଧନଞ୍ଜୟ ବୈରାଗୀ ଚାହିଁ ଦେଖିଲେ ସେ ହାତରେ ଧରିଥିବା ସମ୍ବାଦ ପତ୍ରଟିର ଯେଉଁ ବିଜ୍ଞାପନଟିକୁ ନାଲି ପେନ୍‌ସିଲର ଛକ କାଟି ବନ୍ଦୀ କରିଛନ୍ତି, ବଡ଼ ବଡ଼ ଅକ୍ଷରର ସେହି ବିଜ୍ଞାପନ ଅଂଶଟି ସତ୍ୟବ୍ରତ ସ୍ପଷ୍ଟ ପଢ଼ିପାରୁଛନ୍ତି ।

ସମସ୍ତେ ଏକା ସଙ୍ଗରେ ହସିଉଠିଲେ ।

ଯେପରି ଏକ ଜଟିଳ ସମସ୍ୟାର ବାଟ ମୁହୂର୍ତ୍ତକରେ ଖୋଲିଗଲା ।

ଭଦ୍ରଲୋକ ହାତରୁ ସତ୍ୟବ୍ରତ କାଗଜଟି ଟାଣି ଆଣି ବିଜ୍ଞାପନଟି ଆଉଥରେ ଭଲ ଭାବରେ ପଢ଼ି କହିଲେ : ହୁଁ, ଭଦ୍ରମହିଳାଙ୍କର ବୟସ ୩୨ ବର୍ଷ, ବିତ୍ତଶାଳୀ, ସ୍ୱାସ୍ଥ୍ୟବତୀ, ସୁଗୃହିଣୀ ହେବେ ଆଶାପୋଷଣ କରିଛନ୍ତି । ବେଶ୍ ତା ସେ ପୁଣି ଲେଖିଛନ୍ତି ସ୍ୱାମୀ ନିର୍ବାଚନରେ ବୟସକୁ ସେ ପ୍ରାଧାନ୍ୟ ଦେବେ ନାହିଁ । ତେଣୁ ଆପଣ ନିଃସଙ୍କୋଚରେ ଏହି ବକ୍‌ସ ନମ୍ବରରେ ଆପ୍ଲାଇ କରି ପାରନ୍ତି ।

ଧନଞ୍ଜୟ ବୈରାଗୀ ସିଧାହୋଇ ବସିଲେ । ଗମ୍ଭୀର ସ୍ୱରରେ କହିଲେ : ଏହି ବିଜ୍ଞାପନଟି ଦଶଦିନ ପୂର୍ବର । ମୁଁ ସେହି ବକ୍‌ସ ନମ୍ବରରେ ଆପ୍ଲାଇ କରିଥିଲି ଏବଂ ରିପ୍ଲାଇ ମଧ୍ୟ ପାଇଛି ।

: ତା'ହେଲେ ଅପେକ୍ଷା କାହିଁକି ?

: ଅପେକ୍ଷାର ଯଥେଷ୍ଟ କାରଣ ଅଛି ମିଷ୍ଟର ମହାପାତ୍ର । ଆପଣ ଏହି ରିପ୍ଲାଇଟି ଦେଖିଲେ ସହଜରେ ସବୁ ବୁଝିପାରିବେ ।

ଭଦ୍ରଲୋକ ପକେଟରୁ ଗୋଟିଏ ଖାମ୍ ବାହାର କରି ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଲେ ।

ସତ୍ୟବ୍ରତ ଖାମ୍‌ଟି ଖୋଲି ଦେଖିଲେ, ଖଣ୍ଡିଏ ଟାଇପ୍ ହୋଇଥିବା ଚିଠି ଏବଂ ବିରାଟ ଏକ ଛପା ଫର୍ମ ।

ସତ୍ୟବ୍ରତ ଚିଠିଟି ପଢ଼ିଲେ ।

ପ୍ରିୟ ମହାଶୟ,

ଆପଣଙ୍କ ଚିଠି ପଢ଼ି ଆମେ ଖୁସି ହେଲୁ । ଆପଣ ଯୋଗ୍ୟତାସମ୍ପନ୍ନ ହୋଇଥିଲେ ଏ ବିବାହରେ କୌଣସି ବାଧା ସୃଷ୍ଟି ହେବାର ସମ୍ଭାବନା ନାହିଁ । ଏଥି ସହିତ ଯେଉଁ ଛପା ଫର୍ମଟି ପଠାହୋଇଛି, ଆପଣ ଫର୍ମର ପ୍ରତିଟି ଘର ପୂରା କରି ପଠାଇବେ । ତା'ପରେ ଆପଣ ଏ ବିବାହ ପାଇଁ ଯୋଗ୍ୟ କି ନୁହନ୍ତି, ଯଥା ସମୟରେ ଆପଣଙ୍କୁ ଜଣାଇଦିଆଯିବ ।

ଧନ୍ୟବାଦସହ, ଆପଣଙ୍କର
ସୁଧା ଆରୋରା
ପ୍ରାଇଭେଟ୍ ସେକ୍ରେଟାରୀ ।

ବି: ଦ୍ର: ଏହି ଫର୍ମଟି ଆଜିଠାରୁ ଦଶଦିନ ମଧ୍ୟରେ ଫେରି ନ ଆସିଲେ ଏହା ବିଚାର ଯୋଗ୍ୟ ବିବେଚିତ ହେବ ନାହିଁ ।

ସତ୍ୟବ୍ରତ ଚିଠିଟି ପଢ଼ି ସାରି ମୁହଁଟେକି ଥରେ ଭଦ୍ରଲୋକଙ୍କ ଆଡ଼କୁ ଚାହିଁଲେ । ପୁଣି ଫର୍ମଟି ପଢ଼ିବାରେ ମନୋନିବେଶ କଲେ ।

ଫର୍ମଟି ଦୁଇ ଭାଗରେ ବିଭକ୍ତ ।

ପ୍ରଥମ ଭାଗରେ ପାତ୍ରୀଙ୍କର ବୟସ, ଉଚ୍ଚତା, ସ୍ୱାସ୍ଥ୍ୟ ଓ ହବି ଆଦି ସମ୍ବନ୍ଧରେ ଏବଂ ତାଙ୍କର ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତି ସମ୍ବନ୍ଧରେ ଏକ ଦୀର୍ଘ ବିବରଣୀ ଏବଂ ଦ୍ୱିତୀୟ ଭାଗରେ ପାତ୍ରଙ୍କ ସମ୍ବନ୍ଧରେ କେତେକ ପ୍ରଶ୍ନ ।

ଟେଲିଫୋନ୍‌ଟା ବାଜି ଉଠିଲା ।

ସବ୍ୟସାଚୀ ଫୋନ୍ ଉଠାଇଲା : ହ୍ୟାଲୋ? ହଁ ହଁ । କିନ୍ତୁ ମିଷ୍ଟର ମହାପାତ୍ର ଟିକିଏ ବିଜି ଅଛନ୍ତି, ମୁଁ ? ମୁଁ ତାଙ୍କ ସହକାରୀ । କ'ଣ ନାମଟା କହିଲେ, ଦ୍ୱାରିକାନାଥ ଗୋଏଙ୍କା ? ହଁ...ହଁ... ଗ୍ରାଣ୍ଡ୍‌ରେ ? ଆଚ୍ଛା, ଓଃ, ଆପଣ ତାଙ୍କ.....ବୁଝିଲି । ମୁଁ କହିବି, ନିଶ୍ଚୟ କହିବି । ଆଠଟା ବେଳକୁ ତ ? ଆଚ୍ଛା, ଆଚ୍ଛା ।

ସବ୍ୟସାଚୀ ରିସିଭରଟା ରଖିଦେଲା ।

ଧନଞ୍ଜୟବାବୁ ଟେଲିଫୋନ୍‌ରୁ ଦ୍ୱାରିକାନାଥ ଗୋଏଙ୍କାଙ୍କ ନାମ ଶୁଣି କିପରି ଚଞ୍ଚଳ ହୋଇ ଉଠିଲେ ।

ସବ୍ୟସାଚୀ ରିସିଭରଟା ରଖିଦେବା ମାତ୍ରକେ ସତ୍ୟବ୍ରତ ପଚାରିଲେ, : ଦ୍ୱାରିକାନାଥ ଗୋଏଙ୍କା କାହିଁକି ଫୋନ୍ କରିଥିଲେ ?

: ତାଙ୍କ ସେକ୍ରେଟାରୀ କରିଥିଲେ । ସେ ଆଜି ଗ୍ରାଣ୍ଡ ହୋଟେଲରେ ଗୋଟାଏ ପାର୍ଟି ଦେଉଛନ୍ତି, ସେଠାକୁ ଆମକୁ ନିମନ୍ତ୍ରଣ କରିଛନ୍ତି ।

ସତ୍ୟବ୍ରତ ଏଥର ଫର୍ମଟା ଉପରୁ ଆଖି ଉଠାଇ କହିଲେ : ଆପଣ ବଡ଼ ସୌଭାଗ୍ୟବାନ ଧନଞ୍ଜୟ ବାବୁ, ଭଦ୍ରମହିଳାଙ୍କର ଏହି ଫର୍ମର ବିବରଣୀରୁ ଯାହା ଜଣାଯାଉଛି ସେ ପ୍ରାୟ ଲକ୍ଷ ଲକ୍ଷ ଟଙ୍କାର ମାଲିକ । ଏ ସୁଯୋଗ ଛାଡ଼ିବାର ନୁହେଁ । ଆପଣ ଫର୍ମଟା ଫିଲଅପ୍ କରି ଶୀଘ୍ର ପଠାଇ ଦିଅନ୍ତୁ ।

: ଦେବି ଯେ, କିନ୍ତୁ...

: ଆଉ କିନ୍ତୁ କ'ଣ ?

: ଆପଣ ଫର୍ମର ୭ ନମ୍ବର, ୧୩ ନମ୍ବର, ୧୪ ନମ୍ବର, ୨୧ ନମ୍ବର, ୨୨ ନମ୍ବର ଆଉ ୨୩ ନମ୍ବର କ୍ଲଜ୍‌ଗୁଡ଼ିକ ପଢ଼ିଛନ୍ତି ?

ସତ୍ୟବ୍ରତ ଫର୍ମ ଉପରେ ଆଉଥରେ ଆଖି ବୁଲେଇ କହିଲେ, : ୭ ନମ୍ବର କ୍ଲଜ୍ ହେଉଛି-ଆପଣଙ୍କର ବୟସ, ଉଚ୍ଚତା, ଓଜନ ଓ ହବି ସମ୍ବନ୍ଧରେ ବିବରଣୀ ଦିଅନ୍ତୁ ।

୧୩ ନମ୍ବର ହେଉଛି- ଆପଣଙ୍କର ରୋଗର ବିବରଣୀ ଦିଅନ୍ତୁ, (ଜନ୍ମଠାରୁ ଆଜିଯାଏ ଯେଉଁ ସବୁ ରୋଗ ଭୋଗିଛନ୍ତି) ତିନି ପୁରୁଷର ରୋଗର ବିବରଣୀ ଦିଅନ୍ତୁ (ଆପଣଙ୍କ ବାପା, ଯଦି ମରି ଥାଆନ୍ତି ବଡ଼ ବାପା ଓ ଗୋସିଁବାପା କେଉଁ କେଉଁ ରୋଗରେ ମରିଥିଲେ)

୧୪ ନମ୍ବର ହେଉଛି- ଆପଣ ଚାକିରି କରନ୍ତି କି ବ୍ୟବସାୟ କରନ୍ତି ? ଯଦି ଚାକିରୀ କରନ୍ତି ତେବେ କେଉଁ ଧରଣର ଚାକିରି, ( ଯାହା କରନ୍ତୁ ପଛକେ ଆପଣଙ୍କର ସରକାରୀ ସ୍ତରରେ କେଉଁ କେଉଁ ଷ୍ଟାଟସର ଲୋକମାନଙ୍କ ସହିତ ପରିଚୟ ଅଛି)

୨୧ ନମ୍ବର ହେଉଛି- ଆପଣ ପୂର୍ବରୁ ବିବାହ କରିଥିଲେ କି ? ଯଦି କରିଥାନ୍ତି ତେବେ ଆପଣଙ୍କ ସ୍ତ୍ରୀ ମୃତ ନା ଜୀବିତ ? ସନ୍ତାନ ସନ୍ତତି ଥିଲେ ସେମାନଙ୍କର ବିବରଣୀ ଦିଅନ୍ତୁ ।

୨୨ ନମ୍ବର ହେଉଛି- ଆପଣଙ୍କର ସମ୍ପତ୍ତିର ବିବରଣୀ, (ସ୍ଥାବର ଅସ୍ଥାବର ସମ୍ପତ୍ତି ଯଦି କିଛି ଥାଏ, ନଗଦ ଟଙ୍କା, ଯଦି କିଛି ଥାଏ, ସେଆର ପେପର, ଯଦି କିଛି ଥାଏ, ଇନ୍‌ସୁରେନସ ପଲିସ୍ ଯଦି କିଛି ଥାଏ, ଏ ସବୁର ସଂପୂର୍ଣ୍ଣ ବିରବଣୀ)

୨୩ ନମ୍ବର ହେଉଛି- ଆପଣ ଏହି ୩୨ ବର୍ଷିୟା ଭଦ୍ରମହିଳାଙ୍କୁ କାହିଁକି ବିବାହ କରିବାକୁ ଚାହାନ୍ତି ? ସବିଶେଷ ବିବରଣୀ ଦିଅନ୍ତୁ ।

: ଏହି କ୍ଲଜ୍ କେତୋଟି ଆପଣଙ୍କୁ ଟିକିଏ ଖଟ୍‌କା ଲାଗୁଛି ତ ! ସେ କିଛି ନୁହେଁ; ଆପଣ ଯାହା ପାରୁଛନ୍ତି ଫିଲ୍‌ଅପ୍ କରି ପଠାଇ ଦିଅନ୍ତୁ । କିନ୍ତୁ ୧୩ ନମ୍ବର ଆଉ ୨୨ ନମ୍ବର କ୍ଲଜ୍‌ଟା ମୁଁ ପୂରଣ କରି ଦେଉଛି ।

ସତ୍ୟବ୍ରତ ଟେବୁଲ୍ ଉପରୁ କଲମଟା ଉଠାଇ ସଙ୍ଗେ ସଙ୍ଗେ ଚଳାଇଲେ ।

: କିନ୍ତୁ ଆପଣ ମୋର ବଂଶ ଇତିହାସ, ମୋର ସମ୍ପତ୍ତିର ପରିମାଣ ସମ୍ବନ୍ଧରେ.....

: ଜାଣିବାର କିଛି ଆବଶ୍ୟକ ନାହିଁ ଧନଞ୍ଜୟ ବାବୁ, ଜାଣିଲେ ହୁଏତ ଆପଣଙ୍କ ପ୍ରାର୍ଥିପତ୍ର ନିର୍ଦ୍ଦିଷ୍ଟ ସ୍ଥାନରେ ମଞ୍ଜୁରୀ ପାଇବ ନାହିଁ ।

: ମୋତେ କିନ୍ତୁ ଭୟ ହେଉଛି ମିଷ୍ଟର ମହାପାତ୍ର । ମୁଁ ବହୁତ ଭାବିଚିନ୍ତି ଆପଣଙ୍କ ପାଖକୁ ଆସିଛି । ଆପଣଙ୍କ ପରାମର୍ଶ ପାଇଁ ।

: ମୁଁ ଆପଣଙ୍କୁ ଉତ୍ସାହିତ କରୁଛି ଧନଞ୍ଜୟବାବୁ । ଆପଣ ଆଗେଇ ଯାଆନ୍ତୁ । ଆପଣଙ୍କର ଜୟ ଅବଶ୍ୟମ୍ଭାବୀ ।

: କିନ୍ତୁ ମୋ ସମ୍ବନ୍ଧରେ ଆପଣ ତ କିଛି ପ୍ରଶ୍ନ କଲେ ନାହିଁ ?

: ଅନାବଶ୍ୟକ । ଆମର ଦେଖିବା କଥା କ୍ଲାଏଣ୍ଟ ଆମକୁ ଆମ ପାରିଶ୍ରମିକ ଗଣ୍ଡାକ ଦେଇପାରିବ କି ନାହିଁ, ତା'ଠାରୁ ଅଧିକ ପ୍ରୟୋଜନ ବ୍ୟତିରେକେ ଆମେ ଜାଣିବାକୁ ଚାହୁଁ ନାହିଁ ।

ସତ୍ୟବ୍ରତ କଥା କହିବା ଭିତରେ ଫର୍ମରୁ ୧୩ ନମ୍ବର ଆଉ ୨୨ ନମ୍ବର କ୍ଲଜ୍‌ଟା ଫିଲ୍‌ଅପ କରି ଧନଞ୍ଜୟ ବୈରାଗୀଙ୍କ ହାତକୁ ବଢ଼ାଇଦେଲେ ।

ଧନଞ୍ଜୟବାବୁ ଦୁଇଟି କ୍ଲଜ୍‌ର ବିବରଣୀ ପଢ଼ିସାରି ସ୍ମିତ ହସି କହିଲେ : ମୁଁ ବର୍ତ୍ତମାନ ବୁଝିପାରୁଛି ଠିକ୍ ଜାଗାରେ ଆସି ପହଞ୍ଚିଛି । ପକେଟରୁ ସେ ତାଙ୍କର ଚେକ୍ ବହିଟି ବାହାର କରି ଦଶହଜାର ଏକଶହ ଟଙ୍କାର ଖଣ୍ଡିଏ ଚେକ୍ କାଟି ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଇ ଉଠି ଠିଆହେଲେ ।

ସତ୍ୟବ୍ରତ କହିଲେ : ଆଜି ହେଲା ୩ ତାରିଖ, ଆଗାମୀ ୧୩ ତାରିଖ ଏହି ସମୟରେ ଆମେ ଆପଣଙ୍କର ପ୍ରତୀକ୍ଷା କରିଥିବୁ ।

ଧନଞ୍ଜୟ ବୈରାଗୀ ଚାଲିଗଲେ ।

ସବ୍ୟସାଚୀ କହିଲା : ଇଏ ପୁଣି କେଉଁ ଧରଣର କେସ୍ ମୁଁ ତ କିଛି ବୁଝିପାରିଲି ନାହିଁ ।

: ମୁଁ ବି କ'ଣ କିଛି ବୁଝିଛି, ଖାଲି ଅନ୍ଧାରରେ ବାଡ଼ି ବୁଲେଇବା କଥା । ପରିଣତିକୁ ଅପେକ୍ଷା କରିବା ଛଡ଼ା ବର୍ତ୍ତମାନ କିଛି କହିବା ସମ୍ଭବ ନୁହେଁ ।

: କିନ୍ତୁ ମୋର ମନେ ହେଉଛି, ଏହା କୌଣସି ଏକ ନାରୀର ଉଦ୍ଭଟ ଚିନ୍ତା । ସୁସ୍ଥ ମସ୍ତିଷ୍କରେ କୌଣସି ନାରୀ ନିଜର ବିବାହ ପାଇଁ କେବେ ଏପରି ଏକ ବିଜ୍ଞାପନ ଦେଇପାରେ ? ବିଶେଷ ଭାବରେ ଆମ ଭାରତବର୍ଷରେ ?

: ସବୁ ସମ୍ଭବ ସବ୍ୟ, ସତ୍ୟବ୍ରତ ସ୍ମିତ ହସି କହିଲେ । ଅପେକ୍ଷା କର, ଜୀବନରେ ତ ଅନେକ କିଛି ଦେଖିଲେ, ଏପରି ଏକ ଉଦ୍ଭଟ ଚିନ୍ତାର ପରିଣତିକୁ ଅପେକ୍ଷା କରାଯାଉ ! ହଁ, ଫୋନ୍ କିଏ କରିଥିଲା ?

ଦ୍ୱାରିକାନାଥ ଗୋଏଙ୍କାଙ୍କ ସେକ୍ରେଟାରୀ । ରାତି ଆଠଟା ବେଳକୁ ଗ୍ରାଣ୍ଡ ହୋଟେଲରେ ତାଙ୍କର ପାର୍ଟି ଅଛି । ସେଥିରେ ଯୋଗଦେବାକୁ କହିଛନ୍ତି ।

: ଦ୍ୱାରିକାନାଥ ଗୋଏଙ୍କା ? ନାଁଟା ତ ମୋର କାହିଁକି ସ୍ମରଣ ହେଉନାହିଁ ।

: ଆରେ କେହି ତୋ'ର ଗୁଣଗ୍ରାହୀ ହୋଇଥିବେ, ଯେପରି ଆଜି ଖବର କାଗଜରୁ ପଢ଼ି ସକାଳୁ କେତେ ଅଭିନନ୍ଦନ ବାର୍ତ୍ତା ଟେଲିଫୋନ୍‌ରେ ପାଇଲୁଣି, ସେହିପରି ଦ୍ୱାରିକାନାଥ ଗୋଏଙ୍କା ବି ହୋଇଥିବେ । ଆଜି ହୁଏତ ତାଙ୍କର ବିଶେଷ କୌଣସି ପାର୍ଟିର ପ୍ରୋଗ୍ରାମରେ ସକାଳୁ ଖବର କାଗଜ ପଢ଼ି ତୋ ନାଁଟା ନିମନ୍ତ୍ରିତ ଲିଷ୍ଟରେ ଯୁକ୍ତ କରି ଦେଇଥିବେ । ରାତି ଆଠଟା ବେଳକୁ ବଳେ ସବୁ ଜଣାଯିବ । ବ୍ୟସ୍ତ ହେଉଛୁ କାହିଁକି ?

: କିନ୍ତୁ ସେ ତ ଯାହା ହେବାରେ ହେବ । ଆମେ ଯେ କଲିକତାରେ 'ଜୀବନ ଦୀପ' ଭବନରେ ଏହି ଅଫିସ୍‌ଟି ଖୋଲିଲେ, ମାସକୁ ତିରିଶ ହଜାର ଟଙ୍କା ଘରଭଡ଼ା, ପ୍ରତିମାସର ଘରଭଡ଼ା ଉଠିବ ତ ?

: ଆରେ ସେ ଦାୟିତ୍ୱ ତ ମୋର, ମୁଁ ତ କହିଛି କଲିକତା ଅଫିସ୍ ସମ୍ବନ୍ଧରେ ତୋତେ ଭାବିବାକୁ ହେବ ନାହିଁ, ଖାଲି ତୋ ନାଁଟା ଏଠି ବୋର୍ଡରେ ରହିବ । ତୁ ତୋ'ର ଯାଇ କଟକରେ ବସ୍, ଏଠିକା ଖବର ମୁଁ ବୁଝିବି ।

: କିନ୍ତୁ ବଡ଼ ଚିନ୍ତାର ବିଷୟ ସବ୍ୟ । ଏତେ ବଡ଼ ବିରାଟ ସହରରେ ବହୁ ପ୍ରାଇଭେଟ୍ ଡିଟେକ୍ଟିଭ ସଂସ୍ଥା ଅଛି । ବଡ଼ ବଡ଼ ଫାର୍ମଗୁଡ଼ିକୁ ସେସବୁ ଧରି ନେଇଛନ୍ତି, ତା' ଛଡ଼ା...

: ତୁ ଚୁପ୍ କର ତ ! କେବଳ କେସ୍‌ଛଡ଼ା ଅନ୍ୟକୌଣସି ବିଷୟରେ ତୋର ଚିନ୍ତା କରିବା ଦରକାର ନାହିଁ ଫୋନ ବାଜିଉଠିଲା । ରିସିଭର ଉଠାଇ ମୁଁ ସତ୍ୟବ୍ରତ ମହାପାତ୍ର କହୁଛି । ଓଃ, ମିଷ୍ଟର ଗୋଏଙ୍କା ! ହଁ ହଁ ଅଳ୍ପ ସମୟ ପୂର୍ବରୁ ଆପଣଙ୍କ ସେକ୍ରେଟାରୀ ଫୋନ୍ କରିଥିଲେ, ନା, ନା ମୁଁ ମୋଟେ ବିସ୍ମିତ ହେଉ ନାହିଁ, ଆଜି ସଂବାଦପତ୍ରରୁ ଆପଣ ମୋ ନାଁ ପାଇଥିବେ । ଆଚ୍ଛା, ତାହେଲେ ପୋଲିସ୍ କମିଶନର ସାହେବଙ୍କର ମୋ ପ୍ରତି ଅଶେଷ ଦୟା । ହଁ, ହଁ । ଓଃ...ବୁଝିଲି ବୁଝିଲି । ପେପରରେ ମୁଁ କିଛି ଦିନ ପୂର୍ବରୁ ପଢ଼ିଥିଲି, କ'ଣ କହିଲେ ? ନା, ନା ଛି, ଏଗୁଡ଼ା ଆପଣ କ'ଣ କହୁଛନ୍ତି ସେଇଟା ମୋର ତ ସୌଭାଗ୍ୟ । ହଁ, ହଁ, ନିଶ୍ଚୟ ଯିବି । ନମସ୍କାର ।

ସତ୍ୟବ୍ରତ ରିସିଭରଟା ରଖିଦେଇ ସବ୍ୟସାଚୀ ମୁହଁକୁ ସ୍ମିତ ହସି ଅନାଇଲେ ।

ସବ୍ୟସାଚୀ କହିଲା : ମୁଁ ତମ ଦୁଇଜଣଙ୍କ କଥାବାର୍ତ୍ତା ସବୁ ଶୁଣିପାରିଛି । କାଲି ପୋଲିସ୍ କମିଶନର ଆମ ଅଫିସର ଉଦ୍‌ଘାଟନ କରିଥିଲେ ବୋଲି ସିନା ସେ ତୋ ନାଁଟା ସୁପାରିଶ୍ କଲେ ।

ଦେଖାଯାଉ କ'ଣ ହେଉଛି !

: ହେବ ଆଉ କ'ଣ, ସୌଭାଗ୍ୟ ରବି ତୋ' ଭାଗ୍ୟ ଆକାଶରେ ଉଠିଲେ ବୋଲି ଜାଣ୍ ।

ଦ୍ୱାରିକାନାଥ ଗୋଏଙ୍କା ବୟସ୍କ, ଭଦ୍ରଲୋକ ।

କିପରି କେଜାଣି ସତ୍ୟବ୍ରତ ମହାପାତ୍ରଙ୍କୁ ସେ ଚିହ୍ନିପାରି ହାତ ବଢ଼ାଇ କରମର୍ଦ୍ଦନ ପାଇଁ ଆଗେଇ ଆସିଲେ ।

କହିଲେ : ଅନେକ ଦିନ ପରେ କଲିକତା ଗୋଟାଏ ଟାଲେଣ୍ଟ ପାଇଲା ।

ସତ୍ୟବ୍ରତ ବିନୟ ସହକାରେ କହିଲେ : ଆପଣ ମୋର ଅତିରିକ୍ତ ପ୍ରଶଂସା କରୁଛନ୍ତି ଗୋଏଙ୍କା ସାହେବ । କମିଶନର ସାହେବ ହୁଏତ ମୋ ସମ୍ବନ୍ଧରେ ଆପଣଙ୍କୁ ଅତିରିକ୍ତ କିଛି କହିଛନ୍ତି ।

ଗୋଏଙ୍କା ସାହେବ ହସିଲେ । କହିଲେ : ଦ୍ୱାରିକାନାଥ ଗୋଏଙ୍କା ଗୋଟିଏ ଜହୁରୀ, ଏକଥା ସବୁବେଳେ ମନେ ରଖିବେ । ତା'ଛଡ଼ା ଏବର୍ଷ 'କ୍ରାଇମ୍ ଆନୁଆଲ'ରେ ଆପଣଙ୍କର ଫଟୋ ଓ ଆପଣଙ୍କ ଇଣ୍ଟେଲିଜେନ୍‌ସୀ ଟାଲେଣ୍ଟ ସମ୍ବନ୍ଧରେ ଅନେକ କଥା ପଢ଼ିଥିଲି । ଛାଡ଼ନ୍ତୁ ସେ ସମ୍ବନ୍ଧରେ ପରେ ଆଲୋଚନା କରିବା । ଆପଣ ଚାଲନ୍ତୁ, ବସନ୍ତୁ ଯାଇ ହଲ୍‌ରେ ।

ଦ୍ୱାରିକାନାଥ ଗୋଏଙ୍କା ପୁଣି ଚାଲିଗଲେ ଗେଟ୍‌କୁ । ବର୍ତ୍ତମାନ ତାଙ୍କର ଆହୁରି ଅନେକ ଗେଷ୍ଟ ବାକି ଅଛନ୍ତି ।

ଠିକ୍ କଣ୍ଟାଏ କଣ୍ଟାଏ ଆଠଟାରେ ଅନୁଷ୍ଠାନ ଆରମ୍ଭ ହେଲା ।

ଦ୍ୱାରିକାନାଥ ଗୋଏଙ୍କା ନିଜେ ଠିଆହୋଇ କହିଲେ : ଆଜିର ଏହି ଅନୁଷ୍ଠାନ ସମ୍ବନ୍ଧରେ ମୋର ବିଶେଷ କିଛି କହିବାର ନାହିଁ । ଆପଣମାନେ, ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି ସେମାନଙ୍କ ଭିତରୁ ପ୍ରାୟ ସମସ୍ତେ ଗୋଏଙ୍କା ଇଷ୍ଟେଟ୍‌ର ବିଭିନ୍ନ ବିଭାଗୀୟ କର୍ମକର୍ତ୍ତା । ବାହାରର ନିମନ୍ତ୍ରିତ ବ୍ୟକ୍ତି ଅଛନ୍ତି ଖୁବ୍ କମ୍ । ଆଜି ଆମର ଏହି ପାର୍ଟିର ମୁଖ୍ୟ ଉଦ୍ଦେଶ୍ୟ ଟିକିଏ ରିକ୍ରିଏସନ ଏବଂ ତା'ପରେ ପାନ ଭୋଜନ । ପ୍ରତିବର୍ଷ ଗୋଏଙ୍କା ଇଷ୍ଟେଟ୍‌ର ଏହି ଉତ୍ସବ ଏହିପରି ଏକ ବର୍ଣ୍ଣାଢ଼୍ୟ ପରିବେଶ ମଧ୍ୟରେ ହୋଇଥାଏ ।

ତେଣୁ ଯେଉଁମାନେ ଆମର ଘରର ଲୋକ ସେମାନେ ସବୁ କଥା ଜାଣନ୍ତି; ଆଉ ଯେଉଁମାନେ ଆମର ବିଶେଷ ନିମନ୍ତ୍ରିତ ଅତିଥି, ସେମାନେ ଯଥେଷ୍ଟ ଶ୍ରମ ସ୍ୱୀକାର କରି, ସେମାନଙ୍କର ଅମୂଲ୍ୟ ସମୟ ନଷ୍ଟ କରି ଆମର ଏହି ନିମନ୍ତ୍ରଣ ରକ୍ଷାକରିଥିବାରୁ ମୁଁ ସେମାନଙ୍କୁ ଗୋଏଙ୍କା ଇଷ୍ଟେଟ୍ ତରଫରୁ ତଥା ମୋ' ତରଫରୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଏଥର ରିକ୍ରିଏସନ ପ୍ରୋଗ୍ରାମ ଆରମ୍ଭ କରାଯାଉ ।

ସଙ୍ଗେ ସଙ୍ଗେ ହଲ୍‌ର ଆଲୋକ ମଳିନ ହୋଇ ଆସିଲା ।

ଧୀରେ ହଲ୍‌ର ଗୋଟିଏ କୋଣରୁ ଅର୍କେଷ୍ଟ୍ରା ପାର୍ଟିର ତାଳ ଭାସିଆସିଲା ।

ଆଉ ଅଳ୍ପ ସମୟ ପରେ ମଞ୍ଚ ଉପରେ ଉଭାହେଲା ରଙ୍ଗନଟୀ ।

ସତ୍ୟବ୍ରତର ଧ୍ୟାନଭଙ୍ଗ କଲେ ସ୍ୱୟଂ ଗୋଏଙ୍କା ସାହେବ ।

ସେ ଆସି ସତ୍ୟବ୍ରତ ପାଖରେ ପଡ଼ିଥିବା ଗୋଟିଏ ଖାଲି ଚେଆର ଉପରେ ବସୁ ବସୁ କହିଲେ : ବାସ୍ତବିକ ଆପଣଙ୍କୁ ଆଜି ଆମର ଏହି ବାର୍ଷିକ ଉତ୍ସବରେ ପାଇ ମୁଁ ଭାରି ଖୁସି । ଆପଣ ଆସନ୍ତୁ, ମୁଁ ଆପଣଙ୍କୁ ଆମ ଇଷ୍ଟେଟ୍‌ର କେତେକ ଦାୟିତ୍ୱସମ୍ପନ୍ନ ଲୋକଙ୍କ ସହିତ ପରିଚୟ କରାଇ ଦେବି ।

ଦ୍ୱାରିକାନାଥ ଗୋଏଙ୍କା ଉଠି ଠିଆହେଲେ ।

ସତ୍ୟବ୍ରତ ଉଠିବାକୁ ବାଧ୍ୟ ହେଲେ । ଚାଲିଲେ ସେ ଗୋଏଙ୍କା ସାହେବଙ୍କ ପଛେ ପଛେ ।

ନୃତ୍ୟର ଆସରରୁ ଦୂରେଇ ଯିବାକୁ ସତ୍ୟବ୍ରତଙ୍କର ଖୁବ୍ ଗୋଟାଏ ଇଚ୍ଛା ନଥିଲା ।

ତଥାପି ସେ ଗୋଏଙ୍କା ସାହେବଙ୍କ ଅନୁରୋଧ ଏଡ଼େଇ ଦେଇ ପାରିଲେ ନାହିଁ ।

ଗୋଏଙ୍କା ସାହେବ ସତ୍ୟବ୍ରତ ମହାପାତ୍ରଙ୍କୁ ଗୋଟିଏ ବନ୍ଦ ଘର ଭିତରକୁ ଡାକିନେଲେ ।

ଏକ ବୃହତ୍ ଶୂନ୍ୟଘର । ଅପୂର୍ବ ସାଜସଜ୍ଜା ।

ଗୋଏଙ୍କା ସାହେବ ଏକ ବିରାଟ ସେକ୍ରେଟାରୀଏଟ୍ ଟେବୁଲ୍ ପାଖରେ ବସୁ ବସୁ କହିଲେ : ବସନ୍ତୁ ମିଷ୍ଟର ମହାପାତ୍ର । ଏ ରୁମ୍‌ଟା ମୋର । ଗ୍ରାଣ୍ଡ ହୋଟେଲରେ ଏହି ରୁମ୍‌ଟା ସବୁଦିନ ମୋ' ପାଇଁ ରିଜର୍ଭ ଥାଏ ।

ଯାହାହେଉ, ସେ କଥା ପରେ କହିଲେ ଚଳିବ । ଆପଣ ନିଶ୍ଚୟ ଏହା ଭିତରେ ବୁଝି ସାରିବେଣି ଯେ ଦ୍ୱାରିକାନାଥ ଗୋଏଙ୍କା ପୂରା ବ୍ୟବସାୟୀ ଲୋକ । ବିନା ସ୍ୱାର୍ଥରେ ସେ କାହାରି ସହିତ ସଂପର୍କ ସ୍ଥାପନ କରେ ନାହିଁ ।

ସତ୍ୟବ୍ରତ ବାଧା ଦେଇ କହିଲେ : ସେପରି କିଛି ମୁଁ ମୋଟେ ଭାବି ନାହିଁ ଗୋଏଙ୍କା ସାହେବ । ଆପଣଙ୍କର ହଠାତ୍ ମୋ ପ୍ରତି ଏପରି ଧାରଣା ଜନ୍ମିଲା କାହିଁକି ?

: ନା, ନା ମିଷ୍ଟର ମହାପାତ୍ର । ମୋର ଆପଣଙ୍କ ପ୍ରତି ମୋଟେ କିଛି ଖରାପ ଧାରଣା ଜନ୍ମି ନାହିଁ । ବରଂ ଆପଣ ଆଉ ମୁହୂର୍ତ୍ତକ ପରେ ଜାଣିପାରିବେ ଯେ ମୁଁ କେଡ଼େ ସ୍ୱାର୍ଥପର । ଆପଣଙ୍କୁ ଆଜି ଏହି ଉତ୍ସବକୁ ନିମନ୍ତ୍ରଣ କରିବା ମୂଳରେ ମୋର କେତେ ବଡ଼ ସ୍ୱାର୍ଥ ଜଡ଼ିତ ରହିଛି ।

: ଆପଣ ଯାହାକୁ ସ୍ୱାର୍ଥ ବୋଲି ମନେ କରୁଛନ୍ତି, ତାହା ଆପଣଙ୍କର ହୁଏତ ପ୍ରୟୋଜନ ହୋଇପାରେ । ଦୁନିଆରେ ପ୍ରତ୍ୟେକ ମଣିଷର ଅନ୍ୟ ଜଣକ ସହିତ ପ୍ରୟୋଜନ ଥିବ; କିନ୍ତୁ ଆପଣ ସେଟାକୁ ସ୍ୱାର୍ଥ ଆଖ୍ୟା ଦେଉଛନ୍ତି କାହିଁକି ?

ମିଷ୍ଟର ଗୋଏଙ୍କା ହସିଲେ । କହିଲେ: ଆପଣ ଖାଲି ରହସ୍ୟଭେଦୀ ନୁହନ୍ତି ମିଷ୍ଟର ମହାପାତ୍ର, ବର୍ତ୍ତମାନ ମୁଁ ବୁଝି ପାରୁଛି ଆପଣ ଜଣେ ବଡ଼ ଶବ୍ଦଭେଦୀ ମଧ୍ୟ । ସେ ଯାହା ହେଉ, ଏଥର ଅସଲ କଥାଟା ଆପଣଙ୍କୁ ମୁଁ କୁହେ ।

ଦ୍ୱାରିକାନାଥ ଗୋଏଙ୍କା ଡ୍ରୟାର ଟାଣି ଖଣ୍ଡିଏ ଖବର କାଗଜ ବାହାର କଲେ ।

ଖବର କାଗଜ ଟେବୁଲ୍ ଉପରେ ରଖିବା ପୂର୍ବରୁ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ । ମୁହଁରେ ତାଙ୍କର ସ୍ୱଚ୍ଛ ହସ ଖଣ୍ଡେ ଫୁଟିଉଠିଲା । ପରିଷ୍କାର କଣ୍ଠରେ ସେ କହିଲେ : ମୁଁ ଖାଲି ବିବାହିତ ନୁହେଁ ମିଷ୍ଟର ମହାପାତ୍ର, ଚାରିଟି ସନ୍ତାନର ଜନକ ମଧ୍ୟ ।

: ତା' ହେଲେ, ତା' ହେଲେ...

ସତ୍ୟବ୍ରତ କ'ଣ କହିବାକୁ ଯାଇ ଅଟକି ଗଲେ ।

ମିଷ୍ଟର ଗୋଏଙ୍କା କହିଲେ : କୁହନ୍ତୁ କୁହନ୍ତୁ, ମୁଁ ମୋଟେ କିଛି ଭାବିବି ନାହିଁ ।

ସତ୍ୟବ୍ରତ କହିଲେ : ଆପଣ ଖବର କାଗଜରୁ ଯେଉଁ ରହସ୍ୟମୟ ବିଜ୍ଞାପନଟି ସମ୍ବନ୍ଧରେ ମୋ' ସହିତ ଆଲୋଚନା କରିବାକୁ ଚାହାନ୍ତି, ମୁଁ ଭାବୁଥିଲି.....।

ସତ୍ୟବ୍ରତଙ୍କ କଥା ଅସମାପ୍ତ ରହିଗଲା । ଦ୍ୱାରିକାନାଥ ଗୋଏଙ୍କା ହୋ ହୋ ହୋଇ ହସି ଉଠିଲେ । କହିଲେ : ଏହି ବିଜ୍ଞାପନଟି ତା' ହେଲେ ଆପଣଙ୍କର ଦୃଷ୍ଟି ଆକର୍ଷଣ କରିଛି; କିନ୍ତୁ ଏଠାରେ ମୋର ବକ୍ତବ୍ୟ ଭିନ୍ନ, ପ୍ରାର୍ଥୀ ମୁଁ ନୁହେଁ ।

: ମାନେ ?

: ମାନେ ହେଉଛି ଏହି ବିଜ୍ଞାପନରେ ଯେଉଁ ଭଦ୍ର ମହିଳା ନିଜର ବିବାହ ପାଇଁ ସ୍ୱାମୀ ଖୋଜୁଛନ୍ତି, ସେ ଭଦ୍ରମହିଳାଙ୍କର ସତ୍ତା ଅଛି ମିଷ୍ଟର ମହାପାତ୍ର । ଆଜକୁ ପ୍ରାୟ ତିନି ଚାରି ବର୍ଷ ତଳର କଥା ସେଇଟା...

ଦ୍ୱାରିକାନାଥ ଗୋଏଙ୍କାଙ୍କ କଣ୍ଠସ୍ୱର ଗମ୍ଭୀର ହୋଇ ଉଠିଲା ।

: ମୋର ଠିକ୍ ମନେପଡୁନାହିଁ ଏଇଭଳି ଗୋଟାଏ ବିଜ୍ଞାପନରେ ମୋର ଜଣେ ପରମ ଆତ୍ମୀୟ ଆକୃଷ୍ଟ ହୋଇଥିଲେ ଏବଂ ଶେଷରେ ସେ ବିବାହ କରିଥିଲେ ଜନୈକା ସୁନ୍ଦରୀ

ମହିଳାଙ୍କୁ । ଅନେକଦିନଯାଏ ମୋର ସେହି ଆତ୍ମୀୟଙ୍କଠାରୁ ମୁଁ ଚିଠିପତ୍ର ପାଉଥିଲି । ସ୍ୱର୍ଗରୁ ସେମାନେ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛନ୍ତି ବୋଲି ମୋତେ ସେ ଚିଠି ଲେଖୁଥିଲେ । ତା'ପରେ ସେମାନେ କୁଆଡ଼େ ଯେ ଉଭେଇ ଗଲେ, ବହୁତ ଦିନରୁ ଆଉ ତାଙ୍କର ଖବର ମୁଁ ପାଉନାହିଁ । ଏକ ବିଶେଷ କାରଣରୁ ମୁଁ ତାଙ୍କୁ ବହୁତ ଖୋଜିଲି । ଶେଷରେ ଜାଣିପାରିଲି ଯେ ସେ ତାଙ୍କର ଚାରି ପାଞ୍ଚ କୋଟି ଟଙ୍କାର ପୈତୃକ ସମ୍ପତ୍ତି ସମସ୍ତ ବିକ୍ରୟ କରି ସ୍ତ୍ରୀଙ୍କ ସହିତ ଭାରତ ଛାଡ଼ି ଚାଲିଯାଇଛନ୍ତି । ସଂବାଦଟା ମୋର ମନଃପୂତ ହୋଇ ନ ଥିଲା । ମୁଁ ପୋଲିସ୍ ସାହାଯ୍ୟରେ ଆହୁରି ଇନ୍‌କ୍ୱାରୀ କରାଇ ଥିଲି; କିନ୍ତୁ କିଛି ଲାଭ ହୋଇ ନ ଥିଲା । ଦ୍ୱାରିକାନାଥ ଗୋଏଙ୍କା ନୀରବ ହେଲେ ।

: ତାହେଲେ, ଆପଣ ଭାବୁଛନ୍ତି...

: ହଁ ମିଷ୍ଟର ମହାପାତ୍ର, ମୁଁ ପେପରରେ ଏହି ବିଜ୍ଞାପନଟି ଦେଖିବା ଦିନଠାରୁ ଅନେକ କଥା ଭାବୁଛି, ନିଜେ ବି ପ୍ରାର୍ଥୀରୂପେ ଗୋଟାଏ ଆପ୍ଲାଇ କରିଥିଲି, ରିପ୍ଲାଇ ବି ପାଇଛି; କିନ୍ତୁ ଘଟଣାଟା ସଂପୂର୍ଣ୍ଣ ରହସ୍ୟଜନକ ମନେହେଉଛି । ମୋର ଧାରଣା ଏ ରହସ୍ୟର ସମାଧାନ ପୋଲିସ୍ କରି ପାରିବ ନାହିଁ । ସେମାନଙ୍କର ନାନା ପ୍ରକାର ଫର୍ମାଲିଟିଜ୍ ରହିଛି । ହଠାତ୍ ଆଜି ପେପରରେ ଆପଣଙ୍କ ନାଁଟା ଦେଖି ମୋ ମନରେ କାହିଁକି ଏକ ଆଶାର ଆଲୋକ ଜଳିଉଠିଲା ।

: ହୁଁ, ସତ୍ୟବ୍ରତ ଗମ୍ଭୀର ହୋଇ କହିଲେ, ଆପଣ ତା'ହେଲେ କ'ଣ ଚାହାନ୍ତି ଗୋଏଙ୍କା ସାହେବ ? ଏଇ କେସ୍‌ଟିର ଥରେ ଇନ୍‌କ୍ୱାରୀ ଚାହାନ୍ତି ।

: ନା ମିଷ୍ଟର ମହାପାତ୍ର । ମୁଁ ଜାଣିବାକୁ ଚାହେଁ ଏହି ଘଟଣା ସହିତ ମୋର ସେହି ପରମ ଆତ୍ମୀୟଙ୍କର କୌଣସି ଯୋଗସୂତ୍ର ଅଛି କି ନାହିଁ । ଏହି କେସ୍‌କୁ ଇନ୍‌କ୍ୱାରୀ କରିବାକୁ ଯାଇ ମୋର ସେହି ଆତ୍ମୀୟଙ୍କର କିଛି ସନ୍ଧାନ ମିଳିବ କି ନାହିଁ । ଗୋଏଙ୍କା ଇଷ୍ଟେଟର କିନ୍ତୁ ସେହି ଆତ୍ମୀୟଙ୍କ ସହିତ ଏକ ବିଶେଷ ସ୍ୱାର୍ଥ ନିହିତ ଅଛି । ଆଜି ବି ଗୋଏଙ୍କା ଇଷ୍ଟେଟ୍‌ର ସେ ଜଣେ ମେମ୍ବର । ତାଙ୍କର ଗୋଏଙ୍କା ଇଷ୍ଟେଟ୍‌ରୁ କିଛି ପ୍ରାପ୍ୟ ନ ଥିଲେ ବି, ଗୋଏଙ୍କା ଇଷ୍ଟେଟ୍‌ର ତାଙ୍କ ପାଖରେ ଏକ ବିରାଟ ସ୍ୱାର୍ଥ ଜଡ଼ିତ ଅଛି, ଧୀରେ ଧୀରେ ସେ କଥା ସବୁ ଆପଣଙ୍କୁ ମୁଁ ପରେ କହିବି ।

: ବୁଝିଲି, ଆପଣଙ୍କର ସେହି ପରମ ଆତ୍ମୀୟଙ୍କୁ ଆପଣ ଖୋଜି ବାହାର କରିବାକୁ ଚାହାନ୍ତି ଏଇଆ ତ ?

: ହୁଁ ମିଷ୍ଟର ମହାପାତ୍ର, ସେଥିପାଇଁ ପ୍ରୟୋଜନ ହେଲେ ଇଷ୍ଟେଟ୍ ଗୋଟାଏ ମୋଟା ଅଙ୍କର ବ୍ୟୟ ବହନ ପାଇଁ ପ୍ରସ୍ତୁତ ଅଛି ।

: ହଁ, ସତ୍ୟବ୍ରତ ପକେଟରୁ ଗୋଟାଏ ଟିପା ଖାତା ବାହାର କରି କହିଲେ, ମୋତେ ଏ ସମ୍ବନ୍ଧରେ କେତେକ ବିବରଣୀ ଦେବାକୁ ହେବ ।

ଦ୍ୱାରିକାନାଥ ଗୋଏଙ୍କା କହିଲେ : ମୁଁ ସବୁ ଦେବି ମିଷ୍ଟର ମହାପାତ୍ର, କିନ୍ତୁ ଆଜି ନୁହେଁ । ଆପଣ ଖାଲି ଆଜି ମୋତେ ପ୍ରତିଶ୍ରୁତି ଦିଅନ୍ତୁ ଏହି କେସ୍‌ଟି ଆପଣ ଟେକ୍ ଅପ୍ କରୁଛନ୍ତି ବୋଲି ।

: ଠିକ୍‌ଅଛି, ମୁଁ ଯଥାସାଧ୍ୟ ଚେଷ୍ଟା କରିବି ।



ଦ୍ୱାରିକାନାଥ ହାତ ବଢ଼ାଇଲେ । ସତ୍ୟବ୍ରତ ହାତ ମିଳାଇଲେ ।

ସଙ୍ଗେ ସଙ୍ଗେ ସେମାନେ ଉଠିପଡ଼ିଲେ ସେହି ରୁଦ୍ଧ କୋଠରୀରୁ । ମିଷ୍ଟର ଗୋଏଙ୍କା କହିଲେ : ବାହାରେ ଏ ସମ୍ବନ୍ଧରେ ଆଉ କୌଣସି ଆଲୋଚନା ନୁହେଁ । କାଲି ସଂଧ୍ୟା ଛ'ଟା ବେଳେ ପୁଣି ଆପଣଙ୍କ ସହିତ ଏହି ଘରେ ଦେଖା ହେବ ।

ନୃତ୍ୟ ଗୀତର ଆସର ଚାଲିଥିଲା ।

ଦୁହେଁ ଯାଇ ପୁଣି ପୂର୍ବ ନିର୍ଦ୍ଧାରିତ ଚେଆର ଉପରେ ବସିଲେ ।

ଆଉ କିଛି ସମୟ ପରେ ପ୍ରୋଗ୍ରାମ ଶେଷ ହେଲା ।

ତା'ପରେ ଖିଆପିଆର ମହୋତ୍ସବ ।

ସେତିକିବେଳେ ଦ୍ୱାରିକାନାଥ ଗୋଏଙ୍କା ଅନେକଙ୍କ ସହିତ ସତ୍ୟବ୍ରତଙ୍କର ପରିଚୟ କରାଇ ଦେଲେ । ସମସ୍ତେ ଗୋଏଙ୍କା ଇଷ୍ଟେଟର ବିଭିନ୍ନ ଉଚ୍ଚ ପଦାଧିକାରୀ ।

ସେମାନଙ୍କ ଭିତରୁ ସବୁଠାରୁ ଭଲ ଲାଗିଲା ରୋମି ଚୌହାନଙ୍କୁ । ସେ ସ୍ୱୟଂ ଦ୍ୱାରିକାନାଥ ଗୋଏଙ୍କାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ।

ଉତ୍ସବ ଶେଷ ହେଉ ହେଉ ରାତି ଏଗାରଟା ବାଜିଯାଇଥିଲା ।

ସବ୍ୟସାଚୀ ସତ୍ୟବ୍ରତ ମୁହଁରୁ ସବୁକଥା ଶୁଣି ସାରି ଟେବୁଲ୍ ଉପରେ ଗୋଟାଏ ବିଧା ମାରି କହିଲା: ଦେଖିଲୁ ତ ଭାଗ୍ୟ ଲକ୍ଷ୍ମୀ କିପରି ଆମର ପଛେ ପଛେ ଧାଇଁଛନ୍ତି ।

: କେଜାଣି ଭାଇ, ମୁଁ କିନ୍ତୁ ଏତେଟା ଆଶା କରି ପାରି ନଥିଲି । ପ୍ରଦେଶ ବାହାରେ ଯେ ଲୋକେ ମୋତେ ଏତେଟା ଗୁରୁତ୍ୱ ଦେବେ, ସେ ଧାରଣା ମୋର ନଥିଲା ।

: ତୋର ସିନା ନ ଥିଲା, ମୋର ଥିଲା ବୋଲି ତ 'ଜୀବନ ଦୀପ' ଭବନରେ ଏଇ ଅଫିସ୍ । ଶୀଘ୍ର ଜଣେ ଲେଡ଼ି ପିଏ ଆବଶ୍ୟକ, କାଗଜରେ ବିଜ୍ଞାପନ ଦେଇଦିଏ । ତା'ପରେ ଯାହା କରିବାର କଥା ମୁଁ କରିବି ।

: କିନ୍ତୁ ଆମର ଏଇ କେସ୍‌ଟା ମନେ ହେଉଛି ଖୁବ୍ ରହସ୍ୟମୟ । ଧନଞ୍ଜୟ ବୈରାଗୀ ଆଉ ଦ୍ୱାରିକାନାଥ ଗୋଏଙ୍କା ଗୋଟିଏ ପଥର ଯାତ୍ରୀ । ଉଦ୍ଦେଶ୍ୟ ଖାଲି ଟିକିଏ ଭିନ୍ନ, ଦେଖାଯାଉ କ'ଣ ହେଉଛି !

: ହେବ ଆଉ କ'ଣ ! ପରିଣତି ତ ନିଶ୍ଚୟ ଗୋଟାଏ କିଛି ହେବ । ତେବେ....

ଫୋନ୍‌ଟା ବାଜିଉଠିବାରୁ ସତ୍ୟବ୍ରତ ଉଠାଇ ନେଲେ ।

: ହ୍ୟାଲୋ ? କିଏ, ମିସ୍ ଚୌହାନ ? ହଁ ହଁ ସମୟ ସଂଧ୍ୟା ଛ'ଟା ବେଳକୁ ଠିକ୍ ହୋଇଛି । ମୁଁ, ମାନେ...ଗୋଏଙ୍କା ସାହେବ ବର୍ତ୍ତମାନ ଅଛନ୍ତି ?

: ବାହାରି ଯାଇଛନ୍ତି ? ତେବେ ?... ଆଚ୍ଛା, ଆଚ୍ଛା,... ଆମ ଅଫିସ୍ ? 'ଜୀବନ ଦୀପ' ଭବନରେ ଥାର୍ଡ଼ିନ୍ଥ ଫ୍ଲୋର । ହଁ, ମନେ ଅଛି । ନିଶ୍ଚୟ ଦେଖାହେବ ।

ସତ୍ୟବ୍ରତ ରିସିଭରଟା ଯଥା ସ୍ଥାନରେ ରଖିଦେଇ ହସ ହସ ମୁହଁରେ କହିଲେ : ରୋମି ପୁଣି ଥରେ ମନେ ପକାଇଦେଲା । ସେ କହୁଥିଲା ସମୟ ଥିଲେ ଦୁଇଟା ତିନିଟା ବେଳକୁ ଆସି ପାରନ୍ତି । ଗୋଏଙ୍କା ସାହେବ ସେତେବେଳେ ଫ୍ରି ଥିବେ ।

: ନା ନା, ଆମେ ଏତେ ଶସ୍ତା ହେବା କାହିଁକି ? ପୂର୍ବ ଆପଏଣ୍ଟମେଣ୍ଟ ଅନୁସାରେ ସେଇ ସଂଧ୍ୟା ଛ'ଟା ।

: ରୋମିଟା କିନ୍ତୁ...

ସତ୍ୟବ୍ରତ କଥା ଅସମାପ୍ତ କରି ରହିଗଲେ ।

: ହୁଁ, ସବ୍ୟସାଚୀ କଣ୍ଠରେ ବିସ୍ମୟ ଫୁଟିଉଠିଲା ।

କ'ଣ କହିଲୁ, ରୋମିଟା ତୋର ପସନ୍ଦ ହୋଇଛି ?

: ଆରେ ନା, ନା, ମୁଁ ସେ କଥା କହୁ ନାହିଁ । ମୁଁ କହୁଥିଲି ରୋମିଟା ବେଶ୍ କର୍ମଠ, ଏ ଭଳି ଝିଅ କ୍ୱଚିତ୍ ଆଖିରେ ପଡ଼ିଥାଆନ୍ତି ।

ସବ୍ୟସାଚୀ କହିଲା : ହଉ ହଉ । ମୁଁ ସବୁ ବୁଝିପାରିଛି । ବର୍ତ୍ତମାନ ତ ହାତରେ ପ୍ରଶସ୍ତ ସମୟ, ପରେ ଦେଖାଯିବ । ଏଥର କହିଲୁ ସଂଧ୍ୟାବେଳେ ଆମେ ଦ୍ୱାରିକାନାଥ ଗୋଏଙ୍କାଙ୍କ ପାଖରେ ପହଞ୍ଚି କ'ଣ କରିବା ?

: ସେଇକଥା ମୁଁ ଗତକାଲି ରାତିଭରି ଅନେକ ଭାବିଛି, ମିଷ୍ଟର ଗୋଏଙ୍କାଙ୍କର ଆତ୍ମୀୟ, ଯାହାଙ୍କ ସହିତ ଗୋଏଙ୍କା ଇଷ୍ଟେଟର ବହୁ ସ୍ୱାର୍ଥ ବିଜଡ଼ିତ, ମୁଖ୍ୟତଃ ତାଙ୍କୁ ହିଁ ଖୋଜି ବାହାର କରିବାକୁ ସେ ଚାହାନ୍ତି । ତେବେ ତାଙ୍କର ଧାରଣା ଏକଦା ଏହିପରି ଏକ ଆକର୍ଷଣୀୟ ବିଜ୍ଞପନରେ ପ୍ରଲୁବ୍ଧ ହୋଇ, ତାଙ୍କର ଆତ୍ମୀୟ ଜଣକ ଆଜି ନିରୁଦ୍ଦେଶ । ସେ ହୁଏତ ଭାବୁଛନ୍ତି ପୁଣି ଦୀର୍ଘଦିନ ପରେ ସେହିପରି ଏକ ବିଜ୍ଞାପନ ସହିତ ପୂର୍ବରୁ ସେହି ବଜ୍ଞାପନର କୌଣସି ଯୋଗସୂତ୍ର ଅଛି କି ନାହିଁ ?

: ହୁଏତ ସେଇଆ, ସବ୍ୟସାଚୀ କହିଲା । ତେବେ ଆମର ଭୂମିକା ଏ କେସ୍‌ରେ କ'ଣ ହେବ ?

: ସେ କଥା ବି ଚିନ୍ତା କରିଛି । ସତ୍ୟବ୍ରତ କହିଲେ, ମିଷ୍ଟର ଗୋଏଙ୍କାଙ୍କୁ ମୁଁ କହିବି ସେହି ଆପ୍ଲିକେସନ ଫର୍ମଟା ଫିଲ୍‌ଅପ କରି ପଠାଇବା ପାଇଁ ।

: ତା'ପରେ ?

: ନିଶ୍ଚୟ ଗୋଟାଏ ଆପଏଣ୍ଟମେଣ୍ଟ ଲେଟର ଆସିବ ।

: ମିଷ୍ଟର ଗୋଏଙ୍କା କ'ଣ ଯିବେ ଇଣ୍ଟରଭିଉ ଦେବା ପାଇଁ ?

: ନା, ତାଙ୍କର ଆବଶ୍ୟକ ନାହିଁ । ସେ କ୍ଷେତ୍ରରେ ମୁଁ ହେବି ଦ୍ୱାରିକାନାଥ ଗୋଏଙ୍କା ।

: ଆଚ୍ଛା, ତା' ହେଲେ ତ ଖେଳ ଜମିବ ଭଲ; ଆଉ ମୁଁ ବିଚାରା !

: ତୁ, ତୁ ରହିବୁ ମୋ ସ୍ଥାନରେ, ମାନେ ସତ୍ୟବ୍ରତ ମହାପାତ୍ର ରୋଲ୍‌ରେ ତୁ ପ୍ଲେ କରିବୁ ।

: ବେଶ୍ । ତା' ହେଲେ ତୁ ସେହି ବିଭବଶାଳୀ, ଅନିନ୍ଦ୍ୟ ସୁନ୍ଦରୀଙ୍କର ପାଣି ଗ୍ରହଣ କରି କିଛି ଦିନ ପରେ ଅନ୍ତର୍ଦ୍ଧାନ ହେବୁ । ଆଉ ମୁଁ ତୋତେ ଖୋଜିବା ପାଇଁ ପୁଣି ପ୍ରାଇଭେଟ୍ ଡିଟେକ୍‌ଟିଭ ନିୟୋଗ କରିବି ।

ଦୁଇବନ୍ଧୁଯାକ ଏକା ସଙ୍ଗରେ ହସିଉଠିଲେ ।

ସତ୍ୟବ୍ରତ କହିଲା : ସମୟ ସବୁ ସମସ୍ୟାର ସମାଧାନ କରିଦେବ । ଆଜି ସଂଧ୍ୟା ଛ'ଟା ପରେ ଆମେ କର୍ମ୍ମ ଯୋଜନା ଠିକ୍ କରିବା ।

ଠିକ୍ କଣ୍ଟାଏ କଣ୍ଟାଏ ଛଅଟା ବାଜିଲା ବେଳକୁ ସତ୍ୟବ୍ରତ ମହାପାତ୍ର ଓ ସବ୍ୟସାଚୀ ଦାସ ଗ୍ରାଣ୍ଡ ହୋଟେଲର ଦୁଆର ସାମ୍‌ନାରେ ଟ୍ୟାକ୍‌ସିରୁ ଓହ୍ଲାଇଲେ ।

ରୋମି ସେଇମାନଙ୍କ ଅପେକ୍ଷାରେ ଠିଆ ହୋଇଥିଲା ।

ସତ୍ୟବ୍ରତ ଉଚ୍ଛ୍ୱସିତ ହୋଇ କହିଲେ : ଆମେ ଆସି ଯାଇଛୁ ମିସ୍ ଚୌହାନ୍ ! ମିଷ୍ଟର ଗୋଏଙ୍କା...

: ସେ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି । ଶୁଣନ୍ତୁ ମିଷ୍ଟର ମହାପାତ୍ର, ମୁଁ ଆପଣଙ୍କୁ ଗୋଟାଏ କଥା କହିରଖେ, ଆପଣ ମୋତେ ମିସ୍ ଚୌହାନ ବୋଲି ଡାକିବେ ନାହିଁ ।

: ଆଉ ? ସତ୍ୟବ୍ରତ ସତରେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

: ମୋତେ ଆପଣ କେବଳ 'ରୋମି' ବୋଲି ଡାକିବେ । ସମସ୍ତେ ସେଇଆ ଡାକନ୍ତି, ଗୋଏଙ୍କା ସାହେବ ମଧ୍ୟ ।

: ତଥାସ୍ତୁ, ସତ୍ୟବ୍ରତ ହସି ହସି କହିଲେ । ତା'ପରେ ? ଆପଣମାନେ କେତେବେଳୁ ଆସିଲେଣି ?

ରୋମି ଯାଇ ନିର୍ଦ୍ଦିଷ୍ଟ କକ୍ଷର ଦରଜା ଖୋଲିଦେଲା ।

ଗୋଏଙ୍କା ସାହେବ ଚେଆରରୁ ଉଠିପଡ଼ି ଏମାନଙ୍କୁ ଅଭ୍ୟର୍ଥନା ଜଣାଇଲେ ।

ରୋମି ଆଉ କକ୍ଷ ଭିତରେ ପ୍ରବେଶ କଲା ନାହିଁ ।

ଦ୍ୱାରିକାନାଥ ଗୋଏଙ୍କା ସଙ୍ଗେ ସଙ୍ଗେ ଆରମ୍ଭ କଲେ : ଆପଣଙ୍କର ମୂଲ୍ୟବାନ ସମୟ ମୁଁ ମୋଟେ ନଷ୍ଟ କରିବାକୁ ଚାହେଁ ନାହିଁ । ମୁଁ ମୋର ଯେଉଁ ଆତ୍ମୀୟଟିର କଥା ଆପଣଙ୍କୁ କହିବାକୁ କହିଥିଲି, ତାଙ୍କର ନାମ ହେଉଛି...

ଦ୍ୱାରିକାନାଥ ଗୋଏଙ୍କା ହଠାତ୍ ନୀରବ ହୋଇଗଲେ ଏବଂ ସେ ଚେଆରରୁ ଉଠିପଡ଼ି କକ୍ଷର ଦରଜାଯାଏ ଆଗେଇ ଯାଇ, ଦରଜାଟି ଠିକ୍ ଭାବରେ ବନ୍ଦ ହୋଇଛି କି ନାହିଁ ପରୀକ୍ଷା କରି ଦେଖି ଆସିଲେ ।

ନିଜ ଚେଆରରେ ବସୁ ବସୁ କହିଲେ : ଘଟଣାଟି ଅତ୍ୟନ୍ତ ଗୋପନୀୟ । ଆପଣଙ୍କୁ ମଧ୍ୟ ଏହାର ଗୋପନୀୟତା ସମ୍ବନ୍ଧରେ ଯଥେଷ୍ଟ ସାବଧାନ ରହିବାକୁ ପଡ଼ିବ ।

ହଁ, ମୋର ସେହି ଆତ୍ମୀୟଟିର ନାମ...

ମିଷ୍ଟର ଗୋଏଙ୍କା ପୁଣି ଅଟକି ଗଲେ । ଟିକିଏ ଚିନ୍ତା କରି କହିଲେ ।

: ନା, ବର୍ତ୍ତମାନ ମୁଁ ତାଙ୍କର ନାମ ପ୍ରକାଶ କରିବାକୁ ପ୍ରସ୍ତୁତ ନୁହେଁ । ଧରନ୍ତୁ ତାଙ୍କ ନାମ ମିଷ୍ଟର ଏକ୍‌ସ । ସେ ମୋର ପରମ ଆତ୍ମୀୟ । କିନ୍ତୁ ଗୋଏଙ୍କା ଇଷ୍ଟେଟ୍‌ରୁ ମାସିକ କିଛି ରେମୁନେରେସନ ମଧ୍ୟ ପାଉଥିଲେ ।

ଦ୍ୱାରିକାନାଥ ଗୋଏଙ୍କା ପୁଣି ଟିକିଏ ନିରବ ରହି, କିଛି ସମୟ କ'ଣ ଚିନ୍ତାକରି ଦ୍ୱିଧା ଜଡ଼ିତ କଣ୍ଠରେ କହିଲେ: ବିଷୟଟା କିନ୍ତୁ ଖୁବ୍ ଗୋଟାଏ ଆଇନ୍ ସଙ୍ଗତ ନୁହେଁ । ସେଇଥିପାଇଁ ଖୋଲା ଭାବରେ ଏ ସମ୍ବନ୍ଧରେ ମୁଁ ପୋଲିସ୍ ସାହାଯ୍ୟ ନେଇପାରୁ ନାହିଁ । କଥା ହେଉଛି, କୌଣସି ଏକ ସେଫ୍ ଡିପୋଜିଟ୍ ଭଲ୍‌ଟରେ ମିଷ୍ଟର ଏକ୍‌ସଙ୍କ ନାମରେ ଗୋଟିଏ ଲକର

ଭଡ଼ା ନିଆହୋଇଛି । ସେହି ଲକରରେ ଗୋଏଙ୍କା ଇଷ୍ଟେଟର କିଛି ମୂଲ୍ୟବାନ ସଂପଦ ରହିଛି । ସେହି ଲକରର ଚାବିଟି ଅବଶ୍ୟ ମୋ ପାଖରେ ଅଛି; କିନ୍ତୁ ଥିଲେ କ'ଣ ହେବ ସେଠାରେ ଚାବି ଖୋଲି, ସେହି ମୂଲ୍ୟବାନ ସଂପଦଗୁଡ଼ିକୁ ଆଣିବାର ଅଧିକାର ମୋର ନାହିଁ; ଅଥଚ ଏଣେ ଇଷ୍ଟେଟ୍‌ରୁ ମୋ ଉପରେ ତାଗିଦା ଚାଲିଛି ।

: ଅବଶ୍ୟ ସେ ସମୟରେ ମୁଁ ଇଷ୍ଟେଟ୍‌ରେ ଅନ୍ୟାନ୍ୟ ସଭ୍ୟମାନଙ୍କର ମତ ନେଇ ଏପରି କରିଥିଲି । ସେତେବେଳେ ଅବସ୍ଥା ଏପରି ଗୁରୁତର ହୋଇଥିଲା ଯେ, ଇଷ୍ଟେଟ୍‌ର କିଛି ମୂଲ୍ୟବାନ୍ ସମ୍ପଦ ଗୋପନରେ ଅନ୍ୟତ୍ର ରଖିବାକୁ ଆମେ ବାଧ ହୋଇଥିଲୁ । ସେଥିପାଇଁ ଆମକୁ ଏହିପରି ଛକାପନ୍ଝା ଗ୍ରହଣ କରିବାକୁ ପଡ଼ିଥିଲା । ବର୍ତ୍ତମାନ ମିଷ୍ଟର ଏକ୍‌ସଙ୍କ ଅନ୍ତର୍ଦ୍ଧାନ ମୋତେ ବଡ଼ ଚିନ୍ତାରେ ପକାଇ ଦେଇଛି । ମିଷ୍ଟର ଗୋଏଙ୍କା ନୀରବ ରହି ମୁଣ୍ଡ କୁଣ୍ଡାଇଲେ ।

ସତ୍ୟବ୍ରତ କହିଲେ : ଆପଣ କହୁଛନ୍ତି ଲକର ଚାବି ଆପଣଙ୍କ ପାଖରେ; ଅଥଚ ଆପଣ ଲକର ଖୋଲିପାରୁ ନାହାନ୍ତି, କଥାଟା ଟିକିଏ ବୁଝାଇ କୁହନ୍ତୁ ।

ଦ୍ୱାରିକାନାଥ ଗୋଏଙ୍କା କହିଲେ : ସେଫ୍ ଡିପୋଜିଟ୍ ଭଲ୍‌ଟର ନିୟମ ଅନୁସାରେ କେବଳ ତାଙ୍କର ଗ୍ରାହକ ଲକର ଖୋଲିପାରିବ । ଗ୍ରାହକଙ୍କର ସ୍ପେସିମେନ୍ ସିଗାନେଚ୍‌ର ସେଫ୍ ଡିପୋଜିଟ୍‌ର ଅଥରିଟୀଙ୍କ ପାଖରେ ଅଛି । ବ୍ୟାଙ୍କ ପରି ଗ୍ରାହକ ଉପଯୁକ୍ତ ଫର୍ମରେ ଦସ୍ତଖତ କରି ଦେବାକୁ ହେବ । ସେମାନେ ପୂର୍ବ ଦସ୍ତଖତ ସହିତ ବର୍ତ୍ତମାନର ଦସ୍ତଖତ ମିଳାଇବେ । ଯଦି ମିଳିଯାଏ, ତେବେ ଲକର ଖୋଲିବାର ଅନୁମତି ମିଳିବ ଏବଂ ତାଙ୍କ ଲୋକ ଜଣେ ଯାଇ ଗୋଟିଏ ଚାବି ଖୋଲିଦେଇ ଆସିବ, ତା'ପରେ ଗ୍ରାହକ ତା'ଚାବି ଲଗାଇ ଲକର ଖୋଲିବ ।

: ହୁଁ, ତା' ହେଲେ ତ ସମସ୍ୟା । ଆପଣ ମିଷ୍ଟର ଏକ୍‌ସଙ୍କୁ ନ ପାଇଲେ ଲକର ଖୋଲିବା ସମ୍ଭବ ହେବ ନାହିଁ । ସତ୍ୟବ୍ରତ କହିଲେ ।

: ହଁ, ସେଇଆ ହେଉଛି ଚିନ୍ତାର କଥା । ଗତ କେତେ ବର୍ଷ ମଧ୍ୟରେ ଅବଶ୍ୟ ସେଇ ମୂଲ୍ୟବାନ ପଦାର୍ଥଗୁଡ଼ିକ ରହିବା ଦିନଠାରୁ ଥରେ ଦୁଇଥର ଛଡ଼ା ଲକର ଆଉ ଖୋଲା ହୋଇ ନାହିଁ । ବର୍ତ୍ତମାନ ଇଷ୍ଟେଟ୍‌ର ସେହି ସଂକଟମୟ ଦିନଗୁଡ଼ିକ ଚାଲିଯାଇଥିବାରୁ ଏବଂ ନୂତନ ପ୍ରୋଗ୍ରାମ୍ ଅନୁସାରେ ଇନ୍‌ଭେଷ୍ଟମେଣ୍ଟ ପାଇଁ ଯଥେଷ୍ଟ କଳାଟଙ୍କାର ଆବଶ୍ୟକ ପଡ଼ିବାରୁ ସେହି ମୂଲ୍ୟବାନ୍ ପଦାର୍ଥଗୁଡ଼ିକ ଆବଶ୍ୟକ ହେଉଛି । ଏଇଆ ହେଲା ପରିଷ୍କାର କଥା, ତେଣୁ ମିଷ୍ଟର ଏକ୍‌ସଙ୍କ ସହିତ ମୋର ବିଶେଷ ଆବଶ୍ୟକ ହୋଇପଡ଼ିଛି ।

କିଛି ସମୟ ନୀରବତା ପରେ ସତ୍ୟବ୍ରତ କହିଲେ : କେତେଦିନ ହେବ ଆପଣ ତାଙ୍କର କିଛି ଖବର ପାଇ ନାହାନ୍ତି ?

: ପ୍ରାୟ ବର୍ଷେ ହେବ ।

: ତା' ପୂର୍ବରୁ କେବେ ତାଙ୍କ ସହିତ ଆପଣଙ୍କର ଦେଖାହୋଇଥିଲା ?

: ଦେଖା ସାକ୍ଷାତ ହୋଇ ନାହିଁ ପ୍ରାୟ ଦୁଇ ଅଢ଼େଇ ବର୍ଷ ହେବ ।

: ତା'ହେଲେ ?

: ଶେଷ ଚିଠି ମୁଁ ତାଙ୍କର ପାଇଥିଲି ବର୍ଷକ ତଳେ । ସେ ଚିଠିର ଗୋଟିଏ ଠିକଣା ଦେଇ ସେ ଲେଖିଥିଲେ, ମୁଁ ନୂତନ ଠିକଣା ନ ଜଣାଇବା ପର୍ଯ୍ୟନ୍ତ, ଆପାତତଃ ଏହି ଠିକଣାରେ ମୋ ସହିତ ପତ୍ରାଳାପ କରିବ ।

: ତାଙ୍କର ବିବାହରେ ଆପଣ ଯୋଗଦେଇଥିଲେ ?

: ବିବାହ ? ମିଷ୍ଟର ଗୋଏଙ୍କାଙ୍କ ସ୍ୱର କିପରି ଟିକିଏ ବେଖାପ ଶୁଣାଗଲା । ସେ କହିଲେ, ବିବାହ ହୁଏତ ସେ କରିଥିଲେ; କିନ୍ତୁ ଆମ କାହାରିକୁ ନିମନ୍ତ୍ରଣ କରି ନଥିଲେ । ବଧୂଙ୍କର ଚେହେରା ଦେଖିବାର ସୌଭାଗ୍ୟ ଆମ କାହାରି ଆଜିଯାଏ ହୋଇ ନାହିଁ । ତେବେ ତାଙ୍କର ଶେଷ ଚିଠି ପର୍ଯ୍ୟନ୍ତ ମୁଁ ଜାଣିଥିଲି ସେ ତାଙ୍କର ଦାମ୍ପତ୍ୟ ଜୀବନ ଅତ୍ୟନ୍ତ ଆନନ୍ଦରେ ଅତିବାହିତ କରୁଛନ୍ତି ଏବଂ ସେ ପ୍ରତି ଚିଠିରେ ଲେଖୁଥିଲେ, ଯେତେବେଳେ ମୋର ଆବଶ୍ୟକ ପଡ଼ିବ ମୋତେ ଜଣାଇବା ମାତ୍ରକେ ମୁଁ ଯାଇ ହାଜିର ହେବି; କିନ୍ତୁ ଆମର ଦରକାରର ବହୁତ ପୂର୍ବରୁ ଆମେ ତାଙ୍କ ସହିତ ଯୋଗସୂତ୍ରର ସମ୍ପର୍କଟି ହରାଇ ବସି ରହିଛୁ । ଏଥର ଆପଣଙ୍କ କାମ । ଗୋଏଙ୍କା ଇଷ୍ଟେଟ୍ ଏଥିପାଇଁ ଆପଣଙ୍କୁ ଯଥେଷ୍ଟ ପାରିଶ୍ରମିକ ଦେବ । ଆଉ ମୋର ବିଶ୍ୱାସ ଆପଣ ନିଶ୍ଚୟ କୃତକାର୍ଯ୍ୟ ହେବେ ।

: ଯଥା ?

: ଏଇ ଧରନ୍ତୁ, ମିଷ୍ଟର ଏକ୍ସ ଆପଣଙ୍କର କେତେ ଆପଣାର, ପେପରରେ କିପରି ବିଜ୍ଞାପନରେ ସେ ଆକୃଷ୍ଟ ହୋଇ କାହାକୁ ବିବାହ କଲେ, ବିବାହ ପୂର୍ବ ମୁହୂର୍ତ୍ତଗୁଡ଼ିକରେ ତାଙ୍କ ମନର ଅବସ୍ଥା କିପରି ଥିଲା । ବିବାହ ପରେ ତାଙ୍କର ମନର ଅବସ୍ଥା କିପରି ଥଲା ଏହିପରି କେତୋଟି ଅତ୍ୟନ୍ତ ଦରକାରୀ ପଏଣ୍ଟ ଉପରେ ଆମ ସହିତ ଖୋଲାଖୋଲି ଭାବରେ ଆଲୋଚନା କରିବାକୁ ପଡ଼ିବ ।

: ଅବଶ୍ୟ ଏହି ପଏଣ୍ଟଗୁଡ଼ିକ ଆପଣଙ୍କ ପାଇଁ ଖୁବ୍ ଦରକାରୀ, ମିଷ୍ଟର ଗୋଏଙ୍କା କହିଲେ; କିନ୍ତୁ ସେ ସମ୍ବନ୍ଧରେ ପୂର୍ଣ୍ଣ ବିବରଣୀ ଦେବ । ଏତେଦିନ ପରେ ଆଜି ମୋ ପକ୍ଷରେ ସମ୍ଭବ ହେବ କି ନାହିଁ ତାହା ହିଁ ଚିନ୍ତା କରୁଛି ।

: ତେବେ ମିଷ୍ଟର ଏକ୍ସ ମୋର ଖୁବ୍ ଆତ୍ମୀୟ । ତାଙ୍କୁ ବିଶ୍ୱାସ କରିଲା ଭଳି । ଆମେ ପ୍ରାୟ ସମବୟସର । ମୋ'ଠାରୁ ସେ ବର୍ଷେ ଛ'ମାସ ବଡ଼ ହୋଇପାରନ୍ତି । ଆମେ ଏକା ସଙ୍ଗରେ ପାଠ ପଢୁଥିଲୁ । ମନର ମେଳ ବି ଥିଲା ଯଥେଷ୍ଟ; କିନ୍ତୁ ହଠାତ୍ ମୋତେ ମଝିବାଟରେ ପାଠପଢ଼ା ଛାଡ଼ି ବ୍ୟବସାୟରେ ଯୋଗଦେବାକୁ ହେଲା । ସେ କିନ୍ତୁ ପାଠପଢ଼ା ଅବ୍ୟାହତ ରଖିଥିଲେ ।

ସେ ତାଙ୍କ ବାପ-ମା'ଙ୍କର ଏକମାତ୍ର ସନ୍ତାନ । ବାପାଙ୍କର ଯଥେଷ୍ଟ ସମ୍ପତ୍ତି । ଜୀବନ ଭରି କିଛି ନ କଲେ ବି ଆନନ୍ଦରେ ଚଳିଯାଇ ପାରି ଥାଆନ୍ତେ ।

ମୁଁ ବ୍ୟବସାୟରେ ଲିପ୍ତହେବା ପରେ ତାଙ୍କର ମୋର ସମ୍ପର୍କ ଟିକିଏ ଦୂରେଇ ଗଲା; ତଥାପି ଆମର ଆନ୍ତରିକତାରେ କୌଣସି ପ୍ରକାର ଆଞ୍ଚ ଆସି ନଥିଲା ।

କିଛିଦିନ ପରେ ହଠାତ୍ ଆମ ଇଷ୍ଟେଟ୍ ଉପରେ ସରକାରଙ୍କର କଡ଼ା ଦୃଷ୍ଟିପଡ଼ିଥିଲା । ଫଳରେ ବାଧହୋଇ ଆମକୁ କିଛି ପଦାର୍ଥ ଏଣେତେଣେ ବେନାମୀରେ ଲୁଚାଇବାକୁ ପଡ଼ିଥିଲା ।

ସେତିକିବେଳେ ସେଫ୍ ଡିପୋଜିଟ୍ ଭଲ୍ଟ୍‌ରେ ଆମେ ମିଷ୍ଟର ଏକ୍‌ସଙ୍କ ନାମରେ ସେହି ଅମୂଲ୍ୟ ରତ୍ନତକ ଲୁଚେଇ ରଖିଥିଲୁ ।

ତା'ର କିଛିଦିନ ପରେ ମିଷ୍ଟର ଏକ୍‌ସ ଦିନେ ହସି ହସି ଆସି ମୋ ପାଖରେ ପହଞ୍ଚିଲେ ଏବଂ ହାତରେ ଧରିଥିବା ଖବରକାଗଜରୁ ଗୋଟିଏ ବିଶେଷ ବିଜ୍ଞାପନ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରାଇ କହିଲେ : ଦେଖିଲେ କିପରି ଆଡ଼ଭେଞ୍ଚରିଅସ୍ ବିଜ୍ଞାପନ !

ବିଜ୍ଞାପନଟି ମୁଁ ପଢ଼ିସାରି ହସି ହସି କହିଲି: ଏସବୁ ତମପରି ନିଷ୍କର୍ମା ଲୋକଙ୍କୁ ପୋଷାଏ ।

ସେ ବି ହସିଥିଲେ । କହିଥିଲେ : ତମମାନଙ୍କ ପରି ଜଞ୍ଜାଳର ପାହାଡ଼ ଉପରେ ବସି ଜୀବନର ସୌନ୍ଦର୍ଯ୍ୟବୋଧକୁ ନଷ୍ଟ କରି ଦେବାକୁ ମୁଁ ଚାହେଁ ନାହିଁ । ଜୀବନକୁ ଉପଭୋଗ କରିବାକୁ ହେବ । ସେଥିପାଇଁ ବହୁ ରହସ୍ୟମୟ ପରିଧିକୁ ଡେଇଁ ସାତତାଳ ପାଣି, ସାତତାଳ ପଙ୍କ ଆଡ଼େଇ, ଫରୁଆ ଭିତରୁ ମୁକ୍ତାର ସନ୍ଧାନ କରିବାକୁ ହେବ ।

ସେଦିନ ତାଙ୍କ ସହିତ ଆଉ କ'ଣ କଥାବାର୍ତ୍ତା ହୋଇଥିଲା, ମୋର ମନେ ନାହିଁ; କିନ୍ତୁ ସେ ସେହି ବିଜ୍ଞାପନରେ ପ୍ରଲୁବ୍ଧ ହୋଇ ପ୍ରକୃତରେ ସାତତାଳେ ପାଣି, ସାତତାଳେ ପଙ୍କ ଆଡ଼େଇ ଫରୁଆ ଭିତରୁ ମୁକ୍ତା ଆବିଷ୍କାର କରିଥିଲେ ।

ଏଇ ହେଲା କାହାଣୀ । ଏହାଠାରୁ ଅଧିକ ଆଉ କିଛି ମୋତେ ଜଣା ନାହିଁ । ଅବଶ୍ୟ ସେତେ ବେଳେ ମି: ଏକ୍‌ସ କାମିନୀ ଗନ୍ଧରେ ମତୁଆଲା ହୋଇ ଘୂରି ବୁଲୁଥିବାବେଳେ, ମୁଁ କାଞ୍ଚନ ନିଶାରେ ମସ୍‌ଗୁଲ୍ ହୋଇ ରହିଥିଲି । ତେଣୁ କେହି କାହାର ବିଶେଷ ଖବର ରଖିବାର ସୁଯୋଗ ପାଇ ନଥିଲୁ ।

ଦ୍ୱାରିକାନାଥ ଗୋଏଙ୍କା ଏଥର ନୀରବ ହେଲେ ।

ନୀରବତା ବି ସେହି ବନ୍ଦ ଘର ମଧରେ ଏକ ଭୟଙ୍କର ରୂପ ପରିଗ୍ରହ କରିଥିଲା ।

ଏକ ସମୟରେ ସତ୍ୟବ୍ରତ ମହାପାତ୍ର କହିଲେ : ଆମେ ତା'ହେଲେ ଆଜି ଉଠୁଛୁ ଗୋଏଙ୍କା ସାହେବ । ମୋତେ ଆପଣଙ୍କର ସେହି ଆପ୍ଲିକେସନ ଫର୍ମଟା ଦିଅନ୍ତୁ ।

: ମାନେ ?

: ଯେଉଁଟା ଆପଣ ସେହି ବିଜ୍ଞାପନକୁ ଆପ୍ଲାଇ କରି ପାରିଥିଲେ ।

: ସେଇଟା କ'ଣ କରିବେ ?

: ଫିଲ୍‌ଅପ୍ କରି ପଠାଇବି ।

: କିନ୍ତୁ...

: ନା, କିନ୍ତୁ କଲେ ଚଳିବ ନାହିଁ ଗୋଏଙ୍କା ସାହେବ । ଆପ୍ଲିକେସନ ଫର୍ମଟା ଅବଶ୍ୟ ଆପଣଙ୍କ ନାମରେ ଫିଲ୍‌ଅପ୍ ହୋଇଯିବ; କିନ୍ତୁ ଇଣ୍ଟରଭିଉ ସମୟରେ ମୁଁ ଆପଣଙ୍କ ସ୍ଥାନ ଗ୍ରହଣ କରିବି । ତା'ନ ହେଲେ ସେଇ ରହସ୍ୟ ଭେଦକରିବା ଆମ ପକ୍ଷରେ ସମ୍ଭବ ହେବ କିପରି ?

: ଅବଶ୍ୟ । ଦ୍ୱାରିକାନାଥ ଗୋଏଙ୍କା ମନେ ମନେ କ'ଣ ଚିନ୍ତାକଲେ....। ଧୀରେ ଧୀରେ ଡାହାଣ ପାଖ ଡ୍ରୟାର ଖୋଲି ଗୋଟିଏ ଖାମ୍ ବଢ଼ାଇ ଦେଲେ ସତ୍ୟବ୍ରତ ମହାପାତ୍ରଙ୍କ ହାତକୁ ।

: ଆଉ କିଛି ? ଦ୍ୱାରିକାନାଥ ଗୋଏଙ୍କା ପ୍ରଶ୍ନକଲେ ।
: ଆପାତତଃ ନା ।
ଦିଆଲ ଘଡ଼ିରେ ସାତଟା ବାଜିବାର ଶବ୍ଦ ହେଲା ।
ବାହାରେ ବନ୍ଦ ଦରଜାରେ କାହାର କରାଘାତ ଶୁଣାଗଲା ।
ଦ୍ୱାରିକାନାଥ ଗୋଏଙ୍କା ନିଜେ ଯାଇ ଦରଜା ଖୋଲିଦେଲେ ।
ସାମ୍ନାରେ ରୋମି । ପଛକୁ ହୋଟେଲର ଦୁଇଜଣ ବୟ ।
ସମସ୍ତେ ଭିତରେ ପ୍ରବେଶ କଲେ । ଜଳ ଯୋଗର ପର୍ବ ଶେଷ ହେଲା, ନୀରବତା ଭିତରେ ।

ହଠାତ୍ ଦିନେ ଟେଲିଫୋନ୍ ଆସିଲା ଧନଞ୍ଜୟ ବୈରାଗୀଙ୍କ ଘରୁ । ଗୋଟିଏ ନାରୀ କଣ୍ଠର ବିହ୍ୱଳ ସ୍ୱର : ଆପଣ ଶୀଘ୍ର ଚାଲି ଆସନ୍ତୁ । ମୁଁ ଧନଞ୍ଜୟ ବୈରାଗୀଙ୍କ ଘରୁ କହୁଛି । ଆପଣ ଶୀଘ୍ର ନ ପହଞ୍ଚିଲେ ସେ....

ସେତିକରେ ଟେଲିଫୋନ ବାର୍ତ୍ତା ଅସମାପ୍ତ ରହିଗଲା । ସତ୍ୟବ୍ରତ ଚଞ୍ଚଳ ହୋଇ ଉଠିଲେ । ଧନଞ୍ଜୟ ବୈରାଗୀଙ୍କ ଘରେ ହଠାତ୍ ଅଘଟଣ ଘଟିବାର କିଛି କାରଣ ନ ଥିଲା ।

ତଥାପି ତାଙ୍କୁ ଯିବାକୁ ହେବ । ଏଇ ମୁହୂର୍ତ୍ତରେ ।

ସବ୍ୟସାଚୀ ଦାସ ସେତେବେଳଯାଏ ଅଫିସରେ ପହଞ୍ଚି ନ ଥିଲେ । ବର୍ତ୍ତମାନ, ମାନେ ଏଇ ମୁହୂର୍ତ୍ତରେ ଯିବାକୁ ହେଲେ ଅଫିସ୍ ବନ୍ଦ କରି ବାହାରି ଯିବାକୁ ହେବ । ତଥାପି ନ ଯାଇ ଉପାୟ ନାହିଁ ।

ସତ୍ୟବ୍ରତ ଅଫିସ୍ ବନ୍ଦ କରି ବାହାରି ଯାଇଥିଲେ । ଲିଫଟ୍ ପାଇଁ ତାଙ୍କୁ ଅପେକ୍ଷା କରିବାକୁ ହେଲା । ତଳ ଲିଫ୍ଟଟା ଯେତେବେଳେ ଆସି ସେହି ଫ୍ଲୋରରେ ରହିଲା, ଲିଫ୍ଟରୁ ଓହ୍ଲାଇଲା ରୋମି । ସେ ହୁଏତ ସତ୍ୟବ୍ରତଙ୍କୁ ସେଠାରେ ଆଶା କରି ନଥିଲା । ସତ୍ୟବ୍ରତ ବି ଏଇ ମୁହୂର୍ତ୍ତରେ ରୋମିକୁ ପ୍ରତ୍ୟାଶା କରି ନଥିଲେ ।

କିନ୍ତୁ ହଠାତ୍ ଏହି ସାକ୍ଷାତରେ ଦୁହେଁ ଚଞ୍ଚଳ ହୋଇ ଉଠିଲେ ।

ଲିଫିଟ୍ ରୋମିକୁ ସେଠାରେ ଓହ୍ଲାଇ ଦେଇ ଉପରକୁ ଉଠିଯାଇଥିଲା । ଲେଉଟି ଆସିଲେ ସତ୍ୟବ୍ରତ, ତଳକୁ ଓହ୍ଲାଇବା କଥା ।

କିନ୍ତୁ ରୋମି...

ସତ୍ୟବ୍ରତ କହିଲେ : କ୍ଷମା କରିବ ରୋମି, ମୁଁ ବର୍ତ୍ତମାନ ଗୋଟାଏ ଜରୁରୀ କାମରେ ବାହାରୁଛି । ସେଠାକୁ ଯିବା ମୋର ଏକାନ୍ତ ଆବଶ୍ୟକ, ତେଣୁ...

ରୋମିର ମୁହଁରେ ସାମାନ୍ୟ ମଳିନତାର ଚିହ୍ନ ଫୁଟିଉଠିଲା । ସେ ତଥାପି ହସ ଫୁଟାଇବାକୁ ଚେଷ୍ଟାକରି କହିଲା : ମୁଁ ସେପରି କିଛି ଜରୁରୀ କାମରେ ଆପଣଙ୍କ ପାଖକୁ ଆସିନାହିଁ । ଆପଣ କାମରେ ଯାଆନ୍ତୁ ।

ଲିଫ୍ଟ ଆସି ଠିଆହୋଇଗଲା ।

ସତ୍ୟବ୍ରତ ଆଉ ରୋମି ଦୁଇଜଣ ଯାକ ଲିଫ୍ଟରେ ତଳକୁ ଓହ୍ଲାଇଲେ ।

ଲିଫ୍‌ଟରେ ଅନ୍ୟ କେତେକ ଅପରିଚିତ ଲୋକଥିବାରୁ ବିଶେଷ କିଛି କଥାବାର୍ତ୍ତା ହୋଇପାରିଲା ନାହିଁ ।

ସତ୍ୟବ୍ରତ ଲିଫ୍‌ଟରୁ ଓହ୍ଲାଇ କହିଲେ : ମୋତେ କ୍ଷମା କରିବ ରୋମି, ଆଜି ସଂଧ୍ୟାବେଳେ ତମର ସମୟ ହେବ ?

ରୋମି ଟିକିଏ ଚିନ୍ତାକଲା । କହିଲା : ଛଅଟାରେ ବସ୍‌ଙ୍କର ଗୋଟାଏ ପାର୍ଟି ଆଟେଣ୍ଡ୍ କରିବାର ଅଛି, ତା'ପରେ ଫ୍ରି; କିନ୍ତୁ କାହିଁକି କୁହନ୍ତୁ ତ ?

: ଆପଣଙ୍କ ସଙ୍ଗରେ ସାଢ଼େ ଛଅଟା ବେଳେ ଆପଏଣ୍ଟମେଣ୍ଟ ରହିଲା । କେଉଁଠି ଦେଖାହେବ ?

: ମେଟ୍ରୋ ସିନେମା ତଳେ ମୁଁ ଅପେକ୍ଷା କରିଥିବି ।

: ଓକେ, କହି ସତ୍ୟବ୍ରତ ମହାପାତ୍ର ଗୋଟାଏ ଖାଲି ଟ୍ୟାକ୍‌ସି ଦେଖି ସେଇଆଡ଼େ ଆଗେଇ ଗଲେ ।

ରୋମି ଠିଆ ହୋଇ ତାଙ୍କରି କ୍ଷିପ୍ର ଗତିବେଗ ଆଡ଼େ ଚାହିଁଥିଲା ।

ଟ୍ୟାକ୍‌ସି ଠିଆହେଲା ମିଡ଼ିଲ୍‌ଟନ ଷ୍ଟ୍ରୀଟ୍‌ରେ । ନିର୍ଦ୍ଦିଷ୍ଟ ନମ୍ବରରେ ଘର ପାଖରେ ଓହ୍ଲେଇ ସତ୍ୟବ୍ରତ ଦେଖିଲେ, ଗୋଟିଏ ଦୋ' ମହଲା ନାଲି ରଙ୍ଗର ଘର । ଛୋଟ ଲୁହା ଦରଜାଟା ଠେଲି ସେ ଲନ୍ ଭିତରେ ପଶିଲେ । ନାଲି ପଥ, ଫୁଲଗଛ । ସୁନ୍ଦର ପରିବେଶ । କିନ୍ତୁ ଘରର ମେନ୍ ଦରଜା ବନ୍ଦ ଥିଲା ।

ସତ୍ୟବ୍ରତ କଲିଂବେଲ୍ ଟିପିଲେ ।

କିଛି ସମୟ ପରେ ଜଣେ ଭୃତ୍ୟ ଆସି ଦରଜା ଖୋଲିଦେଲା ।

ଭୃତ୍ୟଟି ସତ୍ୟବ୍ରତଙ୍କର ମୁଣ୍ଡରୁ ଗୋଡ଼ଯାଏ ଚାହିଁ ପଚାରିଲା : ଆପଣ କାହାକୁ ଖୋଜୁଛନ୍ତି ?

: ବାବୁ ଘରେ ଅଛନ୍ତି ?

: ଶୋଇଛନ୍ତି । ଡାକ୍ତର ମନା କରିଛନ୍ତି ତାଙ୍କ ସହିତ କେହି ଦେଖାକରିବେ ନାହିଁ ।

: ବାବୁଙ୍କର କ'ଣ ହୋଇଛି ?

: ଦେହ ଭଲ ନାହିଁ ।

: ଘରେ ଆଉ କେହି ନାହାନ୍ତି ?

: ଆଉ କିଏ ?

: ତମର ମା' କିମ୍ବା ଦେଈ ?

ଚାକରଟି ବୋକାଙ୍କ ପରି ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲା ।

କିଛି ସବୟ ପରେ କହିଲା : ଆପଣ ବୋଧେ ଆଜି ପ୍ରଥମ ଏଠାକୁ ଆସିଛନ୍ତି ?

: କାହିଁକି ?

: ତା' ନହେଲେ ଆପଣ ଜାଣି ଥାଆନ୍ତେ ବାବୁ ଏଠାରେ ଏକା ରହନ୍ତି ।

: ଓଃ, ସତ୍ୟବ୍ରତ ଆଉ କ'ଣ ପଚାରିବାକୁ ଯାଇ ନୀରବ ରହିଗଲେ। ସେ କେବଳ ଚିନ୍ତା କରୁଥିଲେ ତାଙ୍କୁ ତା' ହେଲେ ଫୋନ୍ କିଏ କଲା ? କୌଣସି ମହିଳାଙ୍କର ବିହ୍ୱଳ ସ୍ୱର ସ୍ପଷ୍ଟ ସେ ଶୁଣିଛନ୍ତି; ଅଥଚ...

ଚାକରଟି ଦରଜା ବନ୍ଦ କରିବାକୁ ଯାଉଥିଲା ।

ସତ୍ୟବ୍ରତ ବାଧା ଦେଇ କହିଲେ : ଘରେ ତା'ହେଲେ ବର୍ତ୍ତମାନ କେହି ନାହାନ୍ତି ?

: ଜଣେ ନର୍ସ ଅଛନ୍ତି । ସେହି ବାବୁଙ୍କର ଦେଖାଚାହାଁ କରୁଛନ୍ତି । ବେଳେ ବେଳେ ଡାକ୍ତର ବାବୁ ଆସି ଦେଖିଯାଉଛନ୍ତି ।

: ତୁମେ ଦରଜା ଖୋଲିଦିଅ । ମୁଁ ଭିତରକୁ ଯିବି । ମୋତେ ଏଠାକୁ ଆସିବାକୁ ତମ ବାବୁ ଫୋନ୍ କରିଥିଲେ ।

ଚାକରଟି ଆଉ କିଛି କହିଲା ନାହିଁ । ସତ୍ୟବ୍ରତ ଭିତରକୁ ପଶିଗଲେ । ଯେଉଁ ଘରେ ଧନଞ୍ଜୟ ବୈରାଗୀ ଶୋଇଥିଲେ, ସେଇ ଘରେ ଗୋଟିଏ କୋଣକୁ ଖଣ୍ଡିଏ ଚେଆର ଉପରେ ବସି ନର୍ସଟି କ'ଣ ଖଣ୍ଡିଏ ପଢୁଥିଲା ।

ସତ୍ୟବ୍ରତଙ୍କ ପାଦଶବ୍ଦ ଶୁଣି ଉଠିଠିଆହେଲା ।

: ଆପଣ ? ନର୍ସଟି ଆଖିରେ ପ୍ରଶ୍ନବାଚୀ ଫୁଟିଉଠିଲା ।

: ମୁଁ ସତ୍ୟବ୍ରତ ମହାପାତ୍ର । ଅଳ୍ପ ସମୟ ଆଗରୁ ଆପଣ ମୋତେ ଫୋନ୍ କରିଥିଲେ ଏବଂ ଶୀଘ୍ର ଏଠାରେ ଆସି ପହଞ୍ଚିବାକୁ ଅନୁରୋଧ କରିଥିଲେ ।

ନର୍ସଟି ଟିକିଏ ଚିନ୍ତାକରି ଅଳ୍ପ ହସି କହିଲା: କ୍ଷମା କରିବେ ମହାପାତ୍ରବାବୁ, ମୋର ଭୁଲ୍ ହୋଇଯାଇଛି । କିଛି ସମୟ ଆଗରୁ ଧନଞ୍ଜୟବାବୁଙ୍କ ଦେହଟା ଖୁବ୍ ଖରାପ ହୋଇ ଉଠିଥିଲା । ମୁଁ ଡାକ୍ତରକୁ ଫୋନ୍ କରିବାକୁ ଯାଇ ଆପଣଙ୍କ ନମ୍ବରଟା ଡାଏଲ କରି ଦେଇଥିଲି । ଆପଣଙ୍କ ସହିତ କଥା ହେଉଥିବା ଅବସ୍ଥାରେ ଡାକ୍ତର ବାବୁ ଏଠାରେ ପହଞ୍ଚି ଯାଇଥିଲେ । ହଠାତ୍ ମୁଁ ରିସିଭରଟା ରଖି ଦେଇଥିଲି ।

: ହୁଁ, ଆପଣ ମୋ ନମ୍ବରଟା ପାଇଲେ କେଉଁଠୁ ?

ନର୍ସଟି ବିନୀତ ସ୍ୱରରେ କହିଲା : ଏଠାରେ କେତୋଟି ଦରକାରୀ ନମ୍ବର ଟିପା ହୋଇ ରହିଛି । ଧନଞ୍ଜୟବାବୁ ନିଜ ହାତରେ ଲେଖି ମୋତେ ଦେଇଛନ୍ତି । ଡାକ୍ତରଙ୍କ ନମ୍ବରର ଠିକ୍ ତଳକୁ ଆପଣଙ୍କ ନମ୍ବରଟି ଅଛି । ମୁଁ ତରବରରେ ଭୁଲ୍‌ରେ...

ସତ୍ୟବ୍ରତ ହଠାତ୍ ଅନ୍ୟମନସ୍କ ହୋଇ ଉଠିଥିଲେ ।

ସେ ଧନଞ୍ଜୟ ବୈରାଗୀଙ୍କ ଶେଯପାଖରେ କିଛି ସମୟ ଠିଆ ହୋଇ ତାଙ୍କର ଯନ୍ତ୍ରଣାକାତର ମୁହଁକୁ ନିରୀକ୍ଷଣ କଲେ ।

: କ'ଣ ହୋଇଛି ?

: ପେଟରେ ଯନ୍ତ୍ରଣା ।

: କେତେଦିନ ହେବ ?

: ମୁଁ ତ ଦୁଇଦିନ ହେବ ଏଠାରେ ନିଯୁକ୍ତି ପାଇଛି । ତେବେ ଧନଞ୍ଜୟବାବୁ ଆଉ ଦିନେ ଖଣ୍ଡ ଆଗରୁ ଅସୁସ୍ଥ ହୋଇଛନ୍ତି ।

: ହୁଁ, ଧନଞ୍ଜୟବାବୁ ଏ ଯେଉଁ ଟେଲିଫୋନ୍ ନମ୍ବରଗୁଡ଼ିକୁ ଆପଣଙ୍କୁ ଟିପି ଦେଇଛନ୍ତି, କ'ଣ କହିଛନ୍ତି ?

: କହିଛନ୍ତି, ମୋର ଯଦି କୌଣସି ଅସମ୍ଭାଳ ଅବସ୍ଥା ହୁଏ, ତେବେ ତୁମେ ଏମାନଙ୍କୁ ଫୋନ୍ କରି ଶୀଘ୍ର ଆସିବାକୁ କହିବ ।

: ବୁଝିଲି । ଟେଲିଫୋନ୍ ନମ୍ବରଗୁଡ଼ିକ ଦେଖି ?

ନର୍ସଟି ଗୋଟିଏ ଖାତା ଟାଣି ନମ୍ବରଗୁଡ଼ିକ ଦେଖାଇଲା । ମୋଟରେ ଛଅଟି ନମ୍ବର ।

ସତ୍ୟବ୍ରତ ପଚାରିଲେ : ଏ ନମ୍ବରଗୁଡ଼ିକ କାହାର ଆପଣ ସେମାନଙ୍କ ନାଁ ଜାଣିଛନ୍ତି ?

: ନା, କେବଳ ପ୍ରଥମ ନମ୍ବରଟି ଡାକ୍ତରବାବୁଙ୍କର । ଆଉ କାହାରି ନାଁ ମୁଁ ଜାଣି ନାହିଁ ।

: ଧନଞ୍ଜୟବାବୁଙ୍କର ରୋଗଟା କ'ଣ ଖୁବ୍ ସିରିଅସ୍ ?

: ନା, ନର୍ସଟି ହସିଲା । ଧନଞ୍ଜୟବାବୁଙ୍କର ରୋଗଟା ସେପରି କିଛି ଗୁରୁତର ନୁହେଁ । ବୋଧହୁଏ ଗଲବ୍ଲଡ଼ର ପାଇଁ ତାଙ୍କ ପେଟରେ ଭୀଷଣ ଯନ୍ତ୍ରଣା ହେଉଛି । ଡାକ୍ତରବାବୁ ଇଂଜେକ୍‌ସନ ଦେଇ ଶୁଆଇ ପକାଇଛନ୍ତି । ପରୀକ୍ଷା ଶେଷ ହେଲେ ଅପରେସନ୍ ହୋଇ ବି ପାରେ ।

ସତ୍ୟବ୍ରତ ଆଉ ଥରେ ଧନଞ୍ଜୟ ବୈରାଗୀଙ୍କ ମୁହଁକୁ ଚାହିଁ ଫେରି ଯାଉଥିଲେ ।

ନର୍ସଟି ଆସି ବିନୀତ ସ୍ୱରରେ କହିଲା : କ୍ଷମା କରିବେ । ମୁଁ ଆପଣଙ୍କୁ ଅଯଥାରେ କଷ୍ଟ ଦେଲି ।

ସତ୍ୟବ୍ରତ କହିଲେ : ଏ ଘରେ ଧନଞ୍ଜୟ ବାବୁଙ୍କ ଛଡ଼ା ଅନ୍ୟ କେହି ନାହାନ୍ତି ?

ନର୍ସଟି ଟିକିଏ ହସିବାକୁ ଚେଷ୍ଟା କରି କହିଲା : ମୁଁ ପ୍ରଥମେ ଯେଉଁଦିନ ଆସିଲି ସେଦିନ ତ ଚାକରଟି ଛଡ଼ା କେହି ନ ଥିଲେ, କାଲି କିନ୍ତୁ ତାଙ୍କର ଜଣେ ଆତ୍ମୀୟା ଆସିଛନ୍ତି ।

: ଆତ୍ମୀୟା ?

ଶିଡ଼ିରେ କାହାର ପାଦ ଶବ୍ଦ ଶୁଣି ସତ୍ୟବ୍ରତ ବାହାରକୁ ବାହାରି ଆସିଲେ ।

ଜଣେ ସୁସଜ୍ଜିତା ମହିଳା ଦୋ'ତାଲା ଉପରକୁ ଉଠିଯାଉଥିଲେ ।

ସତ୍ୟବ୍ରତ ତାଙ୍କୁ ପଛଆଡୁ ଦେଖିବାକୁ ପାଇଥିଲେ ।

ନର୍ସଟି ମଧ ତାଙ୍କ ପଛେ ପଛେ ବାହାରି ଆସିଥିଲା । ସେ କହିଲା : ଏଇ ସେହି ଭଦ୍ରମହିଳା ।

: ଧନଞ୍ଜୟବାବୁଙ୍କ ସହିତ ତାଙ୍କର ଦେଖାହୋଇଛି ?

: ହଁ, ଦେଖା, କଥାବାର୍ତ୍ତା ସବୁ ହୋଇଛି । ଧନଞ୍ଜୟବାବୁ ଟିକିଏ ସୁସ୍ଥ ହୋଇ ଉଠିଲେ ଏହାଙ୍କ ସହିତ ବୋଧହୁଏ ରାଞ୍ଚି ଚାଲିଯିବେ ।

ହୁଁ, ଆଚ୍ଛା, ମୁଁ ତାହେଲେ ଆସୁଛି । ଧନଞ୍ଜୟବାବୁଙ୍କର ନିଦଭାଙ୍ଗିଲେ ତାଙ୍କୁ ମୋ' ନାଁ କହିବେ । ମୁଁ ଆସିଥିଲି, ଯଦି କିଛି ଦରକାର ହୁଏ ମୋ' ନମ୍ବର ତ ଆପଣଙ୍କ ପାଖରେ ଅଛି, ଫୋନ୍ କରି ମୋତେ ଜଣାଇ ଦେବେ । ମୋ' ନାଁ ମନେ ରହିଲା ତ ?

ସତ୍ୟବ୍ରତ ମହାପାତ୍ର ।

କିନ୍ତୁ ପୁଣି ଶିଡ଼ିରେ ପାଦ ଶବ୍ଦ ଶୁଣି ସତ୍ୟବ୍ରତ ସେଇଆଡ଼େ ଚାହିଁଲେ । ଏଥର ଭଦ୍ରମହିଳା ତଳକୁ ଓହ୍ଲାଇ ଆସି ସତ୍ୟବ୍ରତଙ୍କ ସାମ୍ନା ସାମ୍ନି ଠିଆ ହୋଇ ଯାଇ ହାତ ଘଡ଼ି ଦେଖିଲେ । ନର୍ସଟି ଆଡ଼େ ଚାହିଁ କହିଲେ, : ଆଚ୍ଛା ସିଷ୍ଟର ବର୍ତ୍ତମାନ କ'ଣ ଅଙ୍କଲ ଶୋଇଛନ୍ତି ?

: ହଁ ।

: ମୁଁ ଟିକିଏ ବାହାରକୁ ଯାଉଛି । ଫେରିବାକୁ ଡେରି ହେବ । ଅଙ୍କଲ ଖୋଜିଲେ କହିବ, ମୁଁ ଛ'ଟା ଭିତରେ ଫେରିଆସିବି ।

ଭଦ୍ର ମହିଳା କୌଣସି ଉତ୍ତରକୁ ପ୍ରତୀକ୍ଷା ନ କରି ସଙ୍ଗେ ସଙ୍ଗେ ଚାଲିଗଲେ । ସତ୍ୟବ୍ରତ ଆଡ଼େ ଥରଟିଏ ବି ଆଖି ଟେକି ଚାହିଁଲେ ନାହିଁ । ଏତେ ବ୍ୟସ୍ତ, ଏତେ କାମ । ଆଶ୍ଚର୍ଯ୍ୟ !

ସତ୍ୟବ୍ରତ କହିଲେ : ଆପଣ ବରଂ ଗୋଟିଏ କାମ କରିବେ ସିଷ୍ଟର, ଧନଞ୍ଜୟବାବୁଙ୍କ ନିଦ ଭାଙ୍ଗିଲେ ମୋତେ ଟିକିଏ ଫୋନ୍ କରି ଜଣାଇ ଦେବେ । ମୋର ଖୁବ୍ ଦରକାର ।

ସତ୍ୟବ୍ରତ ଘରୁ ବାହାରି ଯାଇ ଦେଖିଲେ, ଲନ୍‌ରେ ଗୋଟାଏ ଧୂସର ରଙ୍ଗର ଫିଆଟ୍ ଗାଡ଼ି ଠିଆହୋଇଛି ଓ ସେହି ଗାଡ଼ି ଭିତରେ ଭଦ୍ର ମହିଳା ବସି ଗାଡ଼ିରେ ଷ୍ଟାର୍ଟ ଦେବାକୁ ଚେଷ୍ଟା କରୁଛନ୍ତି, କିନ୍ତୁ ଗାଡ଼ି ଷ୍ଟାର୍ଟ ଧରୁ ନାହିଁ ।

ସତ୍ୟବ୍ରତ ଗାଡ଼ି ପାଖରେ ଯାଇ ମୁହୂର୍ତ୍ତେ ଠିଆହେଲେ ।

ଭଦ୍ରମହିଳା ଗ୍ଲାସଦିଆ ଆଖିରେ ଚାହିଁଲେ ସତ୍ୟବ୍ରତ ମୁହଁକୁ । ଚାହାଣୀରେ କାରୁଣ୍ୟ ଥିଲା କି ତାଚ୍ଛଲ୍ୟ ଥିଲା ସତ୍ୟବ୍ରତ ବୁଝି ପାରିଲେ ନାହିଁ । ବାଟଭାଙ୍ଗି ଚାଲିଗଲେ ସେ ନିଜ ବାଟରେ ।

ଗାଡ଼ିର ହର୍ଣ୍ଣ ବାଜିଲା ।

ସତ୍ୟବ୍ରତ ଅତର୍କିତ ଭାବରେ ପଛକୁ ଚାହିଁ ଦେଲେ ।

ଦେଖିଲେ ଭଦ୍ରମହିଳା ହାତଠାରି ତାଙ୍କୁ ଡାକୁଛନ୍ତି ।

ସତ୍ୟବ୍ରତ ଲେଉଟି ଆସି ଗାଡ଼ି ପାଖରେ ଠିଆହେଲେ । ଭଦ୍ରମହିଳା କହିଲେ : ମୁଁ ଖୁବ୍ ଅସୁବିଧାରେ ପଡ଼ିଯାଇଛି । ଗୋଟାଏ ଜରୁରୀ ଆପଏଣ୍ଟମେଣ୍ଟ ଅଛି; କିନ୍ତୁ ଗାଡ଼ିଟା ଷ୍ଟାର୍ଟ ଧରୁ ନାହିଁ ।

ସତ୍ୟବ୍ରତ ହସିଲେ । କିଛି ନ କହି ଗାଡ଼ିର ପଛ ଆଡ଼କୁ ଚାଲି ଯାଇ ହାତରେ ଠେଲି ଦେଲେ । ଗାଡ଼ିଟା କିଛି ଦୂର ଆଗେଇ ଯିବା ପରେ ଷ୍ଟାର୍ଟ ଧରିଲା ଏବଂ ଭଦ୍ରମହିଳା କୃତଜ୍ଞ ସ୍ୱରରେ କହିଲେ : ଧନ୍ୟବାଦ । ଆପଣଙ୍କ କଥା ମନେ ରହିବ ।

ସତ୍ୟବ୍ରତ ମହାପାତ୍ର କିନ୍ତୁ ସେତିକିରେ ସନ୍ତୁଷ୍ଟ ହେଲେ ନାହିଁ । ସେ ଗାଡ଼ିର ଦରଜା ଖୋଲି ଭଦ୍ରମହିଳାଙ୍କ ପାଖକୁ ଲାଗି କରି ବସୁ ବସୁ କହିଲେ : ଆପଣ ରାଞ୍ଚିରେ କେଉଁଠି ରୁହନ୍ତି ?

ଭଦ୍ରମହିଳା ଟିକିଏ ଅପ୍ରତିଭ ହୋଇ କହିଲେ : ମୋର ଗୋଟାଏ ବିଶେଷ ଜରୁରୀ କାମ ଅଛି । ଆଉଦିନେ ଆପଣଙ୍କ ସହିତ ଗଳ୍ପ କରିବି ।

: ଧନଞ୍ଜୟ ବୈରାଗୀ ଆପଣଙ୍କର କ'ଣ ହୁଅନ୍ତି ?

: କହିଲି ପରା ଆଉ ଦିନେ ସେ ସମ୍ବନ୍ଧରେ ଗଳ୍ପ କରିବି ଆଜି ଆପଣ ଦୟାକରି, ପ୍ଲିଜ୍...

ସତ୍ୟବ୍ରତ ମହାପାତ୍ର କ'ଣ ଭାବି କେଜାଣି ଗାଡ଼ିରୁ ଓହ୍ଲାଇ ପଡ଼ିଲେ ।

ଭଦ୍ରମହିଳା ଗାଡ଼ି ଚଳେଇ ବାଁ ଆଡ଼କୁ ଚାଲିଗଲେ ।

ସତ୍ୟବ୍ରତ କିଛି ସମୟ ସେଇ ଚଳନ୍ତା ଗାଡ଼ି ଆଡ଼େ ଅନେଇ ରହି ଯେତେବେଳେ ଫେରିଯିବା ପାଇଁ ପାଦଲେଉଟାଇଲେ, ଦେଖିଲେ ଧନଞ୍ଜୟ ବୈରାଗୀଙ୍କ ଲନ୍ ଭିତରୁ ଚାକର ପିଲାଟି ତାଙ୍କରି ଆଡ଼େ ଦୌଡ଼ି ଦୌଡ଼ି ଆସୁଛି ।

ସେଇଠି ସେ ମୁହୂର୍ତ୍ତେ ଠିଆହୋଇଗଲେ ।

ଚାକର ପିଲାଟି ଆସି କହିଲା: ବାବୁ ଆପଣଙ୍କୁ ଡାକୁଛନ୍ତି ।

ସତ୍ୟବ୍ରତ ନୀରବରେ ଆଗେଇ ଗଲେ ।

ଧନଞ୍ଜୟ ବୈରାଗୀ ଖଟ ଉପରେ ଉଠି ବସିଥିଲେ ।

ସତ୍ୟବ୍ରତଙ୍କୁ ଦେଖିବାକ୍ଷଣି ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି, ଇଙ୍ଗିତରେ ବସିବାକୁ କହିଲେ ।

ସତ୍ୟବ୍ରତ ବ୍ୟଥିତ ସ୍ୱରରେ କହିଲେ : ଆପଣଙ୍କ ଅସୁସ୍ଥତା ସମ୍ବାଦ ମୋତେ ଟିକିଏ ଜାଣଇଲେ ନାହିଁ ?

ଧନଞ୍ଜୟବାବୁ ହସି ହସି କହିଲେ : ସମୟ ହୋଇ ନଥିଲା, ବର୍ତ୍ତମାନ ଆପଣଙ୍କୁ ପ୍ରୟୋଜନ, ଆସି ପହଞ୍ଚିଛନ୍ତି ।

: ମାନେ ?

: ବସନ୍ତୁ । ମୁଁ ଆପଣଙ୍କୁ କହିବି । ନର୍ସ ଆଡ଼େ ଚାହିଁ କହିଲେ, ତୁମେ ଟିକିଏ ବାହାରକୁ ଯାଅ, ଘଣ୍ଟି ବଜେଇଲେ ଆସିବ ।

ନର୍ସଟି ବାହାରିଗଲା ।

ଧନଞ୍ଜୟ ବୈରାଗୀ କହିଲେ : ସେଦିନ ଆପଣଙ୍କଠାରୁ ଆସିବା ସଙ୍ଗେ ସଙ୍ଗେ ସେହି ଆପ୍ଲିକେସନ୍ ଫର୍ମଟି ଫିଲ୍ ଅପ୍ କରି ପଠାଇ ଦେଇଥିଲି । ମୋର ମନେହେଉଛି, ସେହି ଆପ୍ଲିକେସନ୍ ପ୍ରତିକ୍ରିୟା ଏବେ ମୋଠାରେ ତିନି ଚାରିଦିନ ହେବ ଆରମ୍ଭ ହୋଇଯାଇଛି ।

: କିପରି ?

: ଏହା ଭିତରେ ଦୁଇଜଣ ଅଚିହ୍ନା ଲୋକ ଆସି ମୋ ସମ୍ବନ୍ଧରେ ନାନା ପ୍ରକାର ଅନୁସନ୍ଧାନ କରି ଫେରିଯାଇଛନ୍ତି । ସେମାନଙ୍କ ସହିତ ଅବଶ୍ୟ ମୋର ଦେଖା ହୋଇ ନାହିଁ, କିନ୍ତୁ ଯେଉଁ ଧରଣର ଖବର ସେମାନେ ନେଇଯାଇଛନ୍ତି, ମୋର ମନେହେଉଛି ସେହି ଆପ୍ଲିକେସନ୍‌ର ବିଭିନ୍ନ ଧାରା ସହିତ ସେମାନଙ୍କର ଇନ୍‌କ୍ୱାରୀର ପଦ୍ଧତିଟା ମିଶିଯାଉଛି । ଏପରିକି ସେମାନେ ବ୍ୟାଙ୍କକୁ ଯାଇ ମୋର ବାଲାନ୍‌ସ ସମ୍ପର୍କରେ ଭେରିଫିକେସନ କରିବାକୁ ଚେଷ୍ଟା କରିଥିଲେ ।

: ହୁଁ; କିନ୍ତୁ ଖବରଟା ଆପଣଙ୍କର ମୋତେ ଜଣାଇବା ଉଚିତ୍ ଥିଲା ।

: ଅବଶ୍ୟ । କିନ୍ତୁ ହଠାତ୍ ମୁଁ ଅସୁସ୍ଥ ହୋଇପଡ଼ିବାରୁ ସବୁ ଭୁଲିଗଲି ।

: ଆପଣ ତା'ହେଲେ ଏହା ଭିତରେ ଇଣ୍ଟରଭିଉ ପାଇଁ କିଛି ଚିଠିପତ୍ର ପାଇ ନାହାନ୍ତି ?

: ନା । ସତ୍ୟବ୍ରତ ମନେ ମନେ ଟିକିଏ ଚିନ୍ତାକରି କହିଲେ : ଆପଣ ଆପ୍ଲିକେସନ୍ ପଠାଇବାର ଆଜିକୁ ଆଠଦିନ ହୋଇଗଲା । ଏହା ଭିତରେ ଇଣ୍ଟରଭିଉ ପାଇଁ କଲ୍ ପାଇବା ଉଚିତ୍ ଥିଲା ।

ଧନଞ୍ଜୟବାବୁ ହସିବାକୁ ଚେଷ୍ଟାକରି କହିଲେ : ହୁଏତ ଦିନେ ଦୁଇଦିନ ମଧ୍ୟରେ ପାଇଯିବି । ହେଲେ ଜିତ୍ କାହାର ହେବ କହିପାରୁ ନାହିଁ ।

ସତ୍ୟବ୍ରତ କୋମଳ କଣ୍ଠରେ କହିଲେ : ଆପଣ ବିଶ୍ରାମ କରନ୍ତୁ ଧନଞ୍ଜୟବାବୁ, ଆପଣ ଅସୁସ୍ଥ । ହାର ଜିତ୍ କଥା ପରେ ଚିନ୍ତା କରିବେ । ଆଚ୍ଛା, ଆପଣଙ୍କ ଘରେ ଜଣେ ତରୁଣୀଙ୍କ ଦେଖିଲି । ସେ କ'ଣ...

: ଓଃ, ଆପଣ ଜଲି କଥା କହୁଛନ୍ତି ? ସେ ମୋର ଜଣେ ସମ୍ପର୍କୀୟାଙ୍କର ଝିଅ । ରାଞ୍ଚିରେ ରୁହେ । ମୋତେ ଅଙ୍କଲ୍ ଡାକେ । ତା' ସହିତ ଆପଣଙ୍କର ପରିଚୟ ହୋଇଛି ?

: ନା, ତେବେ ପରେ ହେବାର ସମ୍ଭାବନା ଅଛି ।

: ଝିଅଟା କିନ୍ତୁ ପ୍ରକୃତରେ ଭାରି ଜଲି । ହଠାତ୍ ଆସି ପହଞ୍ଚିଛି । ବେଳେ ବେଳେ ଆସେ । ମୁଁ ତା' ସହିତ ଆପଣଙ୍କର ପରିଚୟ କରାଇଦେବି ।

: ହଉ, ଆପଣ ବିଶ୍ରାମ କରନ୍ତୁ । ମୁଁ କାଲି ପୁଣି ଆସିବି, ଆପଣ ସେତିକିବେଳେ ମୋ ସହିତ ପରିଚୟ କରାଇ ଦେବେ ।

ଧନଞ୍ଜୟବାବୁ କହିଲେ : ହେଉ, ଡାକ୍ତର ବି ବେଶୀ କଥାବାର୍ତ୍ତା କରିବାକୁ ବାରଣ କରିଛନ୍ତି । ଆପଣ କିନ୍ତୁ କାଲି ନିଶ୍ଚୟ ଆସିବେ ।

ସତ୍ୟବ୍ରତ ମହାପାତ୍ର ଘଣ୍ଟି ବଜାଇଲେ ।

ନର୍ସ ଭିତରକୁ ଆସିଲା ।

ସତ୍ୟବ୍ରତ କହିଲେ : ଦେଖନ୍ତୁ, ଆପଣଙ୍କ ପେସେଣ୍ଟ୍‌କୁ ମୁଁ ପଚାଶ ଭାଗ ଆରୋଗ୍ୟ କରି ଦେଇଯାଉଛି । ଡାକ୍ତରବାବୁଙ୍କଠାରୁ ମୋର ଫି'ଟା ମାଗି ରଖିବେ ।

ସନ୍ଧ୍ୟା ସାଢ଼େ ଛ'ଟା ବେଳେ ମେଟ୍ରୋସିନେମା ତଳେ ରୋମି ଚୌହାନ ସତ୍ୟବ୍ରତ ମହାପାତ୍ରଙ୍କୁ ଅପେକ୍ଷା କରିଥିଲା ।

ସତ୍ୟବ୍ରତ ମହାପାତ୍ର ଏକା ଆସିଥିଲେ ।

ସେମାନେ ସେଠାରୁ ସିଧା ଯାଇ ଗୋଟିଏ ହୋଟେଲରେ ଉଠିଲେ ।

ରୋମି ଚୌହାନ କାହିଁକି ଯେ ସତ୍ୟବ୍ରତଙ୍କ ସହିତ ମିଶିବା ପାଇଁ ବ୍ୟସ୍ତ ହୋଇ ଉଠିଥିଲା, ସତ୍ୟବ୍ରତ ଠିକ୍ ବୁଝିପାରୁ ନଥିଲେ ।

ମାମୁଲି କେତେକ କଥାବାର୍ତ୍ତା ମଧ୍ୟରେ ଚା'ଖିଆ ପର୍ବ ଶେଷ ହୋଇ ଯାଇଥିଲା । ଏହାପରେ ?

ରୋମି କହିଲା : ଆଜି ମୋ ହାତରେ ପ୍ରଚୁର ସମୟ ଅଛି, ଚାଲନ୍ତୁ କେଉଁଠି ବସି ଖୁବ୍ ଗପିବ ।

ସତ୍ୟବ୍ରତ ଲକ୍ଷ୍ୟକଲେ ଲକ୍ଷଣ ଭଲ ନୁହେଁ । ରୋମି ସହଜରେ ଯିବ ନାହିଁ । ରୋମିକୁ ଅସନ୍ତୁଷ୍ଟ କରିବା ମଧ୍ୟ ସତ୍ୟବ୍ରତର ଇଚ୍ଛା ନୁହେଁ । ତେଣୁ କୁଆଡ଼େ ଯିବା ? ଚାଲନ୍ତୁ ଜୀବନଦୀପ ଭବନକୁ । ସେଇଠି ଅଫିସ୍‌ରେ ବସି ଗଳ୍ପ କରିବା ।

ରୋମି ଉଠିପଡ଼ିଲା । କହିଲା : ମୋର ଆପତ୍ତି ନାହିଁ ।

ସେମାନେ ଗୋଟିଏ ଟ୍ୟାକ୍‌ସିରେ ବସିଲେ ।

ସତ୍ୟବ୍ରତ ପଚାରିଲେ : ଗୋଏଙ୍କା ଇଷ୍ଟେଟ୍‌ରେ ତମେ କେତେ ବର୍ଷ ହେଲା ଚାକିରି କରୁଛ ?

: ଚାରି ପାଞ୍ଚବର୍ଷ ହୋଇଯିବ ।

: ମିଷ୍ଟର ଗୋଏଙ୍କାଙ୍କ ସମ୍ବନ୍ଧରେ ତମର ଧାରଣା କ'ଣ ?

: ଭଦ୍ରଲୋକ । ଖୁବ୍ କର୍ମଠ । କାମଛଡ଼ା ଆଉ କିଛି ବୁଝନ୍ତି ନାହିଁ ।

: ତମର, ମାନେ ତମ ପରିବାରରେ ଆଉ କିଏ ଅଛନ୍ତି ?

: ମୋର ମା' ଆଉ ଗୋଟିଏ ଛୋଟ ଭାଇ । ବାବା ପ୍ଲେନ ଏକ୍ସିଡ଼େଣ୍ଟରେ ପ୍ରାୟ ୭/୮ ବର୍ଷ ହେବ ମରିଯାଇଛନ୍ତି । ମୁଁ ଦିନେ ଆପଣଙ୍କୁ ମୋର ମା' ସହିତ ପରିଚୟ କରାଇ ଦେବି। ସେ ଖୁବ୍ ସ୍ନେହୀ, ଆପଣଙ୍କୁ ଦେଖିଲେ ସହଜରେ ଛାଡ଼ିବି ନାହିଁ ।

: ନିଶ୍ଚୟ ଦିନେ ସୁବିଧା ଦେଖି ମୁଁ ଯିବି ।

ସେମାନେ 'ଜୀବନ ଦୀପ' ଭବନରେ ପହଞ୍ଚି ଲିଫ୍‌ଟ୍‌ରେ ଉପରକୁ ଉଠିଲେ ।

ଅଫିସ୍ ଦୁଆରେ ପହଞ୍ଚି ଶୁଣିଲେ, ଟେଲିଫୋନ୍‌ଟା ବାଜିଚାଲିଛି । ସତ୍ୟବ୍ରତ ତରବର ହୋଇ ତାଲା ଖୋଲି ରିସିଭରଟା ଉଠାଇ କାନରେ ଦେଲେ : ହ୍ୟାଲୋ ।

ଅପର ପ୍ରାନ୍ତରୁ ଶୁଣାଗଲା : ମୁଁ ଧନଞ୍ଜୟ ବାବୁଙ୍କ ଘରୁ କହୁଛି ଆପଣ ଶୀଘ୍ର ଚାଲି ଆସନ୍ତୁ ।

: କିନ୍ତୁ କାହିଁକି ? କ'ଣ ହୋଇଛି ?

ଅପର ପ୍ରାନ୍ତରୁ ଆଉ କୌଣସି ଉତ୍ତର ମିଳିଲା ନାହିଁ ।

ସତ୍ୟବ୍ରତଙ୍କ କପାଳରେ ଚିନ୍ତାରରେଖା ଫୁଟିଉଠିଲା । ହଠାତ୍ ପୁଣି ଡାକରା ପଡ଼ିଲା କାହିଁକି ?

ସତ୍ୟବ୍ରତ ମହାପାତ୍ର ଆଉ ଚେଆରରେ ବସିଲେ ନାହିଁ । ବିଷଣ୍ଣ ମୁଖରେ ରୋମି ଆଡ଼େ ଚାହିଁ କହିଲେ : ତମ ସହିତ ବସି ଦି'ପଦ ଗଳ୍ପ କରିବାର ସୌଭାଗ୍ୟ ମୋର ହେଲା ନାହିଁ ।

ରୋମି ମୁହଁରୁ କିଛି କଥା ବାହାରିଲା ନାହିଁ ।

ନୀରବରେ ସେ ସତ୍ୟବ୍ରତ ସହିତ ଆଗେଇ ଚାଲିଲା ।

ସତ୍ୟବ୍ରତ ମହାପାତ୍ର କିନ୍ତୁ ଧନଞ୍ଜୟ ବୈରାଗୀଙ୍କ ଦୁଆର ମୁହଁରେ ପୋଲିସ୍ ଗାଡ଼ି ଦେଖି ସ୍ତବ୍ଧ ହୋଇଗଲେ ।

ଘଟଣା କ'ଣ ?

ଯେଉଁ ଘରେ ଧନଞ୍ଜୟ ବୈରାଗୀ ଶୋଇଥିଲେ, ସେଇ ଘର ଦୁଆରେ ପହଞ୍ଚି ଦେଖିଲେ ବାହାରେ ଦୁଇଜଣ କନେଷ୍ଟବଳ ଠିଆହୋଇଛନ୍ତି ।

ସତ୍ୟବ୍ରତ ପର୍ଦା ଆଡ଼େଇ ଭିତରେ ପଶିଲେ ।

ପୋଲିସ୍ ଇନସ୍‌ପେକ୍‌ଟର, ଡାକ୍ତର, ଜଲି, ନର୍ସ ଆଉ ଚାକର ପିଲାଟି । ସମସ୍ତେ ଯେପରି ସ୍ତବ୍ଧ ହୋଇ ଧନଞ୍ଜୟ ବୈରାଗୀଙ୍କ ଶେଯ ଆଡ଼େ ଅନାଇ ରହିଛନ୍ତି ।

ତା'ହେଲେ...

ସତ୍ୟବ୍ରତ ମହାପାତ୍ର ମନକୁ ମନ ପ୍ରଶ୍ନ କଲେ ।

ପୋଲିସ୍ ଇନସ୍‌ପେକ୍‌ଟର କହିଲେ : ତମେ ତା'ହେଲେ କହୁଛ ଯେ, ତମେ ଯେତେବେଳେ ପାଞ୍ଚ ମିନିଟ୍ ପାଇଁ ବାଥ୍‌ରୁମ୍ ଯାଇଥିଲ ସେତିକିବେଳେ ଏହି ଦୁର୍ଘଟଣା ଘଟିଛି ?

: ହଁ ସାର୍, ନର୍ସଟି ବିନୀତ ସ୍ୱରରେ କହିଲା । ଧନଞ୍ଜୟବାବୁ ନିଘୋଡ଼ ନିଦରେ ଶୋଇଥିଲେ । ମୁଁ ତାଙ୍କ ଦେହ ଉପରେ ଚାଦରଟା ଭଲ ଭାବରେ ଘୋଡ଼େଇ ଦେଇ ଟିକିଏ ବାଥ୍‌ରୁମ୍‌କୁ ଯାଇଥିଲି ।

: ଫେରି ଆସି ଦେଖିଲି...

: ନା, ନା ଫେରି ଆସି ନୁହେଁ, ନର୍ସଟି କଥା ମଝିରେ କହିଲା, ବାଥ୍‌ରୁମ୍‌ରେ ଥାଇ ମୁଁ ଏକ କରୁଣ ଚିତ୍‌କାର ଶୁଣିଲି, ସଙ୍ଗେ ସଙ୍ଗେ ଛୁଟି ଆସି ଦେଖିଲି, ଧନଞ୍ଜୟ ବାବୁ ଛଟପଟ କରୁଛନ୍ତି, ବିଛଣାପତ୍ର ରକ୍ତାକ୍ତ, ସେ ମୋ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ ତାଙ୍କର ହାତଟା ବଢ଼ାଇଦେଲେ । ଆଉ କିଛି କହି ପାରି ନାହାନ୍ତି । ତାଙ୍କର ଦେହଟା ସଙ୍ଗେ ସଙ୍ଗେ ସ୍ଥିର ହୋଇଗଲା ।

: ତା'ପରେ ତମେ କ'ଣ କଲ ?

: ମୁଁ ଡାକ୍ତର ବାବୁଙ୍କୁ ଫୋନ୍ କଲି, ସେ ଆସି ଆପଣଙ୍କୁ ଫୋନ୍ କଲେ ।

ପୋଲିସ୍ ଇନସ୍‌ପେକ୍‌ଟର ନର୍ସ ଉପରୁ ଆଖି ଉଠାଇ ଜଲି ଆଡ଼କୁ ଚାହିଁ କହିଲେ : ଆଉ ଆପଣ ?

: ମୁଁ, ମୁଁ ସେତେବେଳେ ବାହାରୁ ଆସି ଦୋତାଲାରେ ଲୁଗାପଟା ବଦଳୁଥିଲି । ଅଙ୍କଲଙ୍କର ଚିତ୍କାର ମୋ କାନରେ ଅଳ୍ପ ଟିକିଏ ବାଜିଛି । କିନ୍ତୁ ଠିକ୍ ମୁଁ ସେଇଟା ଧରି ପାରି ନଥିଲି । ତଳ ତାଲାରୁ ଚାକର ଟୋକାଟା ଭୋ ଭୋ ହୋଇ କାନ୍ଦିଉଠିବାରୁ ତଳକୁ ଛୁଟି ଆସି ଦେଖିଲି, ଅଙ୍କଲ ଆଉ ନାହାନ୍ତି ।

ତା'ପରେ ପୋଲିସ୍ ଇନସ୍‌ପେକ୍‌ଟର ହାତ ବଢ଼ାଇ ଦେଇ କହିଲେ, : ଧନଞ୍ଜୟ ବାବୁଙ୍କର ଏହି ହତ୍ୟା ରହସ୍ୟ ସମ୍ବନ୍ଧରେ କିଛି ଜାଣିଛନ୍ତି ?

ପୋଲିସ୍ ଇନସ୍‌ପେକ୍‌ଟର ସତ୍ୟବ୍ରତଙ୍କର ନାମାଙ୍କିତ କାର୍ଡ଼ ଖଣ୍ଡିକ ପଢ଼ିସାରି କହିଲେ : ଆପଣଙ୍କୁ ତା'ହେଲେ ଧନଞ୍ଜୟବାବୁଙ୍କର ଏହି ହତ୍ୟା ରହସ୍ୟ ସମ୍ବନ୍ଧରେ କିଛି ଜଣାଥିବ ।

: ନା, ଧନଞ୍ଜୟବାବୁଙ୍କର ଜୀବନ ନାଶ ସମ୍ବନ୍ଧରେ କୌଣସି ସୂଚନା ମୋତେ ସେ ଦେଇ ନ ଥିଲେ । ଏ ଘଟଣା ଏକ ଅଭାବିତ ଘଟଣା ।

: ଅଭାବିତ ହେଲେ ବି ବର୍ତ୍ତମାନ ଏହାର ମୂଳ କାରଣ ଖୋଜି ବାହାର କରିବାକୁ ହେବ ଏବଂ ହତ୍ୟାକାରୀକୁ ଧରିବାକୁ ହେବ, ଇନସ୍‌ପେକ୍‌ଟରଙ୍କ ସ୍ୱରରେ ଦୃଢ଼ତା ଫୁଟି ଉଠିଥିଲା ।

ସତ୍ୟବ୍ରତ ଶାନ୍ତ ସ୍ୱରରେ କହିଲେ : ଅବଶ୍ୟ ।

ସତ୍ୟବ୍ରତ ନର୍ସଟି ଆଡ଼େ ଚାହିଁ କହିଲେ : ଆଚ୍ଛା ସିଷ୍ଟର ଆପଣ ଯେତେବେଳେ ବାଥ୍‌ରୁମ୍‌କୁ ଗଲେ, ଯିବା ପୂର୍ବରୁ ଏ ଘରେ କ'ଣ ଅନ୍ୟ କେହି ଥିଲା ?

: ନା ।

: ଆଚ୍ଛା ଆପଣ ବାଥ୍‌ରୁମ୍‌ରେ ଥାଇ ଲନ୍‌ରେ କୌଣସି ଗାଡ଼ି ଠିଆ ହେବାର ବା ଛାଡ଼ିବାର ଶବ୍ଦ ପାଇଥିଲେ ?

: ନା ।

: ଆପଣ ବାଥ୍‌ରୁମ୍‌ରୁ ଛୁଟି ଆସି କ'ଣ ଦେଖିଲେ ? ଏଇ ଦରଜାଟା ଆଉଜାଟାକୁ କିପରି ଅବସ୍ଥାରେ ଦେଖିଯାଇଥିଲେ ।

: ଠିକ୍ ମୁଁ ମନେ ପକାଇପାରୁ ନାହିଁ । ନର୍ସଟି ବିନୀତ ସ୍ୱରରେ କହିଲା ।

: ହୁଁ, ସତ୍ୟବ୍ରତ ପୋଲିସ୍ ଇନସ୍‌ପେକ୍‌ଟରଙ୍କ ମୁହଁକୁ ଚାହିଁ କହିଲେ, ଆପଣ ଏଥର କାମ ଆରମ୍ଭ କରନ୍ତୁ । ମୋର ଯାହା ଦେଖିବାର ମୁଁ ଦେଖି ନେଉଛି ।

ପୋଲିସ୍ ଇନସ୍‌ପେକ୍‌ଟର ପ୍ରଥମେ ଡାକ୍ତରବାବୁଙ୍କୁ ବାହାରକୁ ଡାକିନେଲେ ।

ସତ୍ୟବ୍ରତ ମହାପାତ୍ର ନର୍ସ ଆଡ଼େ ଚାହିଁ କହିଲେ : ସିଷ୍ଟର, ଆପଣଙ୍କ ପାଖରେ ଯେଉଁ ଫୋନ୍ ନମ୍ବରଗୁଡ଼ିକ ଥିଲା, ଆପଣ ସେହି ନମ୍ବରଗୁଡ଼ିକ ଡାଏଲ୍ କରିଛନ୍ତି ?

: ନା, କେବଳ ମୁଁ ଆପଣଙ୍କୁ ଫୋନ୍ କରିଛି । ଅନ୍ୟମାନଙ୍କୁ ଫୋନ୍ କରିବାର ସୁଯୋଗ ପାଇ ନାହିଁ, କିମ୍ବା ସେମାନଙ୍କୁ ଫୋନ୍ କରିବାର ପ୍ରୟୋଜନ ଅନୁଭବ କରି ନାହିଁ । ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର । ଏପର୍ଯ୍ୟନ୍ତ ମୋର ସର୍ବାଙ୍ଗରେ ରହି ରହି କମ୍ପନ ସୃଷ୍ଟି ହେଉଛି । ମୁଁ ଖୁବ୍ ଡରିଯାଇଛି ।

: ସ୍ୱାଭାବିକ । ସତ୍ୟବ୍ରତ ମହାପାତ୍ରଙ୍କର ସ୍ୱର ଗମ୍ଭୀର ଶୁଣାଯାଉଥିଲା । ସେ କହିଲେ, ମୋତେ ସେହି ଫୋନ୍ ନମ୍ବରଗୁଡ଼ିକ ଦିଅନ୍ତୁ ତ ! ଦରକାରରେ ଲାଗିପାରେ ।

ନର୍ସ ଫୋନ୍ ନମ୍ବର ଲେଖାଥିବା ଖାତାଟି ସତ୍ୟବ୍ରତଙ୍କ ହାତକୁ ବଢ଼ାଇଦେଲା ।

ସତ୍ୟବ୍ରତ ଏଥର ଆଉ ଟିକେ ଆଗେଇ ଯାଇ ଜଲି ସାମ୍ନାରେ ପହଞ୍ଚିଲେ । ମୁହଁରେ ତା'ର କାତରତା ଫୁଟି ଉଠିଥିଲା ।

ସତ୍ୟବ୍ରତ କହିଲେ : ମିସ୍ ଜଲି, ଆପଣଙ୍କ ଅଙ୍କଲଙ୍କର ଏହି ଦୁରବସ୍ଥା ସମ୍ବନ୍ଧରେ ଆପଣ କେତେଟା ଜାଣନ୍ତି ?

: ମୁଁ, ମୋତେ କ୍ଷମା କରନ୍ତୁ । ବର୍ତ୍ତମାନ ମୋତେ କିଛି ପଚାରନ୍ତୁ ନାହିଁ । ଆପଣଙ୍କର କୌଣସି ପ୍ରଶ୍ନର ମୁଁ ଉତ୍ତର ଦେଇପାରିବି ନାହିଁ ।

: କିନ୍ତୁ ଆପଣଙ୍କୁ ଆମ ସହିତ ସହଯୋଗ କରିବାକୁ ହେବ । ତା' ନହେଲେ....

: ମୁଁ ଏ ଦୁର୍ଘଟଣା ସମ୍ବନ୍ଧରେ କିଛି ଜାଣି ନାହିଁ ମିଷ୍ଟର ମହାପାତ୍ର । କାରଣ ସକାଳେ ମୁଁ ବାହାରକୁ ଯିବା ସମ୍ବନ୍ଧରେ ଆପଣ ତ ସବୁ ଜାଣନ୍ତି । ଆପଣ ନିଜେ ମୋର ଗାଡ଼ି ଷ୍ଟାର୍ଟ କରାଇଦେଇଥିଲେ । ତା'ପରେ ମୁଁ ଫେରିଲି ଏଇ ଅଳ୍ପ ସମୟ ହେବ । ଫେରି ଉପରକୁ ଯାଇ ଲୁଗା ବଦଳାଇବା ଅବସ୍ଥାରେ ଅଙ୍କଲଙ୍କର ଏପରି ଦୁର୍ଘଟଣାର ସଂବାଦ ପାଇଲି । ଏଇ ତ ଏଇଠି ବସିଛି, ଡାକ୍ତର ଆସିଲେ, ପୋଲିସ ଆସିଲେ ଆଉ ଆପଣ ବି ଆସିଲେ ।

ସେତିକିବେଳେ ଗୋଟିଏ କନେଷ୍ଟବଳ ଆସି ଘରେ ପଶିଲା ଏବଂ କହିଲା : ଆପଣଙ୍କୁ ଇନସ୍‌ପେକ୍‌ଟର ସାହେବ ଡାକୁଛନ୍ତି ।

ଜଲି ଅସହାୟ ଦୃଷ୍ଟିରେ ଥରେ ସତ୍ୟବ୍ରତ ମୁହଁକୁ ଏବଂ ଥରେ କନେଷ୍ଟବଳଟା ମୁହଁକୁ ଚାହିଁ ଧୀରେ ଆସନରୁ ଉଠିଲା ।

ଜଲି ଉଠି ଯିବା ସଙ୍ଗେ ସଙ୍ଗେ ସତ୍ୟବ୍ରତ ଆଗେଇ ଗଲେ ଧନଞ୍ଜୟ ବୈରାଗୀଙ୍କ ମୃତଦେହ ପାଖକୁ । କମ୍ବଳଟା ଉଠାଇ ଦେଲେ ଦେହରୁ । ତଳ ପେଟରେ ଛୁରିକା ଘାତ ସ୍ଥାନଟା ଦେଖିଲେ, ଡାହାଣ ହାତଟା ମୁଠା ହୋଇ ରହିଛି । ସତ୍ୟବ୍ରତ ମୁଠାଟା ଫିଟାଇ ଦେଇ ଆଶ୍ଚର୍ଯ୍ୟ ହୋଇଗଲେ, ମୁଠା ଭିତରେ ଗୋଟିଏ ଇନ୍ଦ୍ରନୀଳ ମଣି ।

ପଛକୁ ଚାହିଁଲେ, ନର୍ସଟି ବାହାରକୁ ଚାହିଁଛି, ହୁଏତ ଅପେକ୍ଷା କରୁଛି, ପୋଲିସ୍ ଇନସ୍‌ପେକ୍ଟରଙ୍କ ନିକଟକୁ ତାକୁ କେତେବେଳେ ଡାକରା ପଡ଼ିବ ।

ସତ୍ୟବ୍ରତ ସମସ୍ତଙ୍କ ଅଲକ୍ଷ୍ୟରେ ଧନଞ୍ଜୟ ବୈରାଗୀଙ୍କ ହାତରୁ ସେହି ଇନ୍ଦ୍ରନୀଳ ମଣିଟି ନେଇ ନିଜ ପକେଟରେ ଭରିଲେ । ପୂର୍ବପରି ଘୋଡ଼େଇ ଦେଲେ ଧନଞ୍ଜୟବାବୁଙ୍କୁ ।

ତା'ହେଲେ.......

ସିଷ୍ଟର ହୁଏତ ମିଥ୍ୟା କଥା କହୁଛି । ନା, ନା ହତ୍ୟାକାରୀ ଆସିଥିଲା । ଏଣେ ତେଣେ ଚାହିଁଲା, ଦେଖିଲା ଧନଞ୍ଜୟ ବୈରାଗୀ ନିଦ୍ରାମଗ୍ନ, ସଙ୍ଗେ ସଙ୍ଗେ ସେ ତାଙ୍କ ତଳି ପେଟରେ ଛୁରି ଭୁସି ବାହାରି ଚାଲିଗଲା ।

ନର୍ସର କହିବା ଅନୁସାରେ ଘଟଣାଟି ଏଇଆ ହୋଇପାରେ ।

କିନ୍ତୁ ଘଟଣା ଏହା ନୁହେଁ ।

ଆଉ ଯାହା ହେଉ ନ ହେଉ ହଦ୍ୟାକରୀ ଧନଞ୍ଜୟ ବୈରାଗୀଙ୍କୁ ହତ୍ୟା କରିବା ପୂର୍ବରୁ ଧନଞ୍ଜୟବାବୁଙ୍କର ନିଦ୍ରାଭଗ୍ନ ହୋଇଛି । ହତ୍ୟାକାରୀକୁ ସେ ଚିହ୍ନିପାରିଛନ୍ତି, ତାକୁ ବାଧା ଦେଇଛନ୍ତି । ହୁଏତ ଶେଷରେ ଅଟକାଇ ପାରି ନାହାନ୍ତି ।

କିନ୍ତୁ ଏତେଗୁଡ଼ିଏ ଘଟଣା ଚାରିପାଞ୍ଚ ମିନିଟ୍ ଭିତରେ ଘଟିଯିବା କ'ଣ ସମ୍ଭବ ? ଘଟିଗଲେ ବି ନର୍ସ ତା'ର କିଛି ସୁରାକ ନ ପାଇବା ଆହୁରି ବିସ୍ମୟକର ।

ସତ୍ୟବ୍ରତ ଆଖି ମେଲି ଚାହିଁଲେ । ନର୍ସଟି ତାଙ୍କରି ଆଡ଼େ ଭୟାଳୁ ଆଖିରେ ଚାହିଁଛି । ସେ କହିଲେ : ଦେଖ ସିଷ୍ଟର, ମିଛ କଥା କହି ମୋ ପାଖରୁ ଖୁବ୍ କମ୍ ଲୋକ ମୁକୁଳି ପାରିଛନ୍ତି । ଆପଣ କିନ୍ତୁ ସତ କଥା ନ କହିଲେ ମୁଁ ଆପଣଙ୍କୁ ଛାଡ଼ିବି ନାହିଁ ।

: କିନ୍ତୁ ସାର୍.... ଆଉ ଟିକକରେ ନର୍ସଟି ହୁଏତ କାନ୍ଦି ପକାଇ ଥାଆନ୍ତା ।

ସତ୍ୟବ୍ରତ ସାନ୍ତ୍ୱନା ଦେଇ କହିଲେ : ଭୟର କିଛି କାରଣ ନାହିଁ। ମୁଁ ପୋଲିସ ନୁହେଁ; ବରଂ ତମ୍ଭକୁ ସାହାଯ୍ୟ କରିବି । କ'ଣ ହୋଇଛି ସତ୍ୟ ଘଟଣାଟା ମୋ ପାଖରେ ପ୍ରକାଶ କର ।

: ମୁଁ କିଛି ଜାଣି ନାହିଁ ସାର୍ । ନର୍ସଟି ଏଥର କାନ୍ଦି ଉଠିଲା । କହିଲା, ସତକଥା ହେଉଛି ମୁଁ ପ୍ରାୟ ଅଧଘଣ୍ଟାଏ ଏଠାରେ ଅନୁପସ୍ଥିତ ଥିଲି । ମୋର ଜଣେ ବଂଧୁ ଆସି ହଠାତ୍ ପହଞ୍ଚିଗଲେ । ତାଙ୍କ ସହିତ ପଛଆଡ଼ ବାରଣ୍ଡାରେ ଠିଆହୋଇ ମୁଁ ଗଳ୍ପ କରୁଥିଲି । ସେ ଚାଲିଯିବା ପରେ ମୁଁ ଘରେ ପଶି ଦେଖିଲି ସର୍ବନାଶ ହୋଇଯାଇଛି, ଧନଞ୍ଜୟ ବାବୁଙ୍କ ତଳ ପେଟରେ ଗୋଟାଏ ଛୁରି ଲାଗିଛି ରକ୍ତରେ ବିଛଣା ଭିଜିଯାଇଛି । ମୁଁ ଚିତ୍କାର କରି ଉଠିଲି । ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ଫୋନ୍ କଲି, ତା'ପରେ ଆପଣଙ୍କୁ ମଧ୍ୟ ।

: ଆପଣଙ୍କର ଯେଉଁ ବଂଧୁ ଜଣକ ଆସିଥିଲେ, ସେ ପୁରୁଷ ନା ମହିଳା ? ସତ୍ୟବ୍ରତଙ୍କ କଣ୍ଠସ୍ୱର କଠିନ ହୋଇ ଉଠିଥିଲା ।

: ପୁରୁଷ ।

: ହୁଁ ।

: କିନ୍ତୁ ସାର୍ ତାଙ୍କୁ ଏହା ଭିତରକୁ ଟାଣିବେ ନାହିଁ । ସେ ବିଚରା ନିରୀହ ଭଦ୍ରଲୋକ । ତାଙ୍କ ସହିତ......

କନେଷ୍ଟବଳ ନର୍ସ ଆଡ଼କୁ ହାତ ଦେଖାଇ କହିଲା : ଆପଣ ଆସନ୍ତୁ ।

ସତ୍ୟବ୍ରତ ନର୍ସଟିର ଅସହାୟ ଆଖିଟି ଆଡ଼େ ଥରେ ଚାହିଁ ଚୁପ୍ ଚୁପ୍ କହିଲେ : ତୁମେ ପୂର୍ବରୁ ଯାହା ସ୍ୱୀକାରୋକ୍ତି କରିଛ, ଠିକ୍ ସେଇ କଥା କହିବ ।

ନର୍ସଟି ଚାଲିଗଲା ।

ଘରେ ଆଉ କେହି ନାହାନ୍ତି ।

କିନ୍ତୁ ଏହି ହତ୍ୟାକାଣ୍ଡର 'ମୋଟିଭ୍' କ'ଣ ? କାହିଁକି ଏ ହତ୍ୟା ?

ସତ୍ୟବ୍ରତ ନୀରବରେ ଗୋଟିଏ ଚେଆର ଉପରେ କିଛି ସମୟ ବସି ରହି ଚିନ୍ତା କଲେ । ହାତ ଘଡ଼ିକୁ ଚାହିଁ ଦେଖିଲେ, ଆଠଟା ବାଜୁଛି ।

ଧନଞ୍ଜୟ ବୈରାଗୀ କ'ଣ ଜାଣିଥିଲେ ତାଙ୍କର ମୃତ୍ୟୁ ସମୟ ଆସନ୍ନ ହୋଇ ଆସୁଛି ? ହୁଏତ ଜାଣିଥିଲେ । ନର୍ସଟିକୁ ସେଇଥି ପାଇଁ ବୋଧହୁଏ କେତୋଟି ଫୋନ ନମ୍ବର ଦେଇ ପରୋକ୍ଷରେ ସାବଧାନ କରାଇ ଦେଇଥିଲେ ।

କିନ୍ତୁ ଯେଉଁମାନଙ୍କର ଫୋନ୍ ନମ୍ବର ସେ ଲେଖି ଦେଇଥିଲେ ସେମାନେ କିଏ ? ଜଣେ ତ ଡାକ୍ତର, ଦ୍ୱିତୀୟ ଜଣକ ନିଜେ ସତ୍ୟବ୍ରତ ମହାପାତ୍ର, ଆଉ ଅନ୍ୟ ଚାରିଜଣ ?

ସତ୍ୟବ୍ରତ ସେହି ଫୋନ୍ ନମ୍ବରଗୁଡ଼ିକ ପକେଟରୁ ବାହାର କରି ଦେଖିଲେ । ଗୋଟାଏ ନମ୍ବର ଡାଏଲ କରି ପରୀକ୍ଷା କଲେ କେମିତି ହୁଅନ୍ତା ?

ସେ ଟେଲିଫୋନ୍ ପାଖକୁ ଉଠିଯାଇ ଶେଷରେ ଲେଖାଥିବା ନମ୍ବରଟିକୁ ଡାଏଲ କଲେ ।

ଅପର ପ୍ରାନ୍ତରେ କିଛି ସମୟ ରିଂ ହେଲା ପରେ ଗୋଟିଏ ମୋଟା କଣ୍ଠର ସ୍ୱର ଶୁଣାଗଲା : ହ୍ୟାଲୋ ମାଧବନ ସ୍ପିକିଂ ।

ସତ୍ୟବ୍ରତ କହିଲେ : ମୁଁ ଧନଞ୍ଜୟ ବୈରାଗୀଙ୍କ ଘରୁ କହୁଛି ଆପଣ ତାଙ୍କୁ ଚିହ୍ନନ୍ତି ?

: ନିଶ୍ଚୟ ସେ ମୋର ପରମ ବନ୍ଧୁ । ଆପଣ କିଏ କହୁଛନ୍ତି ? ଅପର ପ୍ରାନ୍ତରୁ ମାଧବନ ପଚାରିଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ମୁଁ ଆପଣଙ୍କୁ ଗୋଟାଏ ଦୁଃସମ୍ବାଦ ଦେଉଛି ।, ଧନଞ୍ଜୟ ବାବୁ ଆଜି ଏଇ ଘଣ୍ଟାକ ପୂର୍ବରୁ ଛୁରିକାହତ ହୋଇ ପ୍ରାଣହରାଇଛନ୍ତି ।

: କ'ଣ କହିଲେ ? ନା ନା, ଅସମ୍ଭବ । ଆଜି ଚାରିଟାବେଳେ ମୋର ତାଙ୍କ ସହିତ ଫୋନ୍‌ରେ କଥା ହୋଇଥିଲା ।

: ତଥାପି ସେ ସନ୍ଧ୍ୟା ସାଢ଼େ ଛଅଟା ସମୟରେ ଛୁରିକାହତ ହୋଇଛନ୍ତି, ଆପଣ ବିଶ୍ୱାସ କରନ୍ତୁ । ଆଉ ଶୁଣନ୍ତୁ, ଆପଣଙ୍କ ସହିତ ମୋର କିଛି ଜରୁରୀ ପରାମର୍ଶ ଅଛି । ମୁଁ ଆପଣଙ୍କ ଘରକୁ ଯିବି । ଠିକଣାଟା.....

ଅପର ପ୍ରାନ୍ତରୁ କିଛି ସମୟ ପର୍ଯ୍ୟନ୍ତ କୌଣସି ଉତ୍ତର ଆସିଲା ନାହିଁ । ସତ୍ୟବ୍ରତ ପୁଣି କହିଲେ : ଆପଣ ଶୁଣନ୍ତୁ ମି: ମାଧବନ ! ମୁଁ ପୋଲିସ୍ ଲୋକ ନୁହେଁ; ଭୟର କିଛି କାରଣ ନାହିଁ । ମୋତେ ଠିକଣାଟା କୁହନ୍ତୁ ।

ମି: ମାଧବନ ବାଧହୋଇ ତାଙ୍କର ଘର ଠିକଣାଟା ଦେଲେ ।

ସତ୍ୟବ୍ରତ ରିସିଭରଟା ରଖି ଆଉ ଗୋଟିଏ ନମ୍ବରରେ ଡାଏଲ କରିବେ ବୋଲି ଭାବୁଛନ୍ତି, ବାହାରେ ବହୁ ପାଦଶବ୍ଦ ଶୁଣାଗଲା । ସେ ଉଠି ଠିଆ ହୋଇପଡ଼ିଲେ ।

ଇନସ୍‌ପେକ୍‌ଟରଙ୍କ ପଛେ ପଛେ ଆଉ କେତେଜଣ ସାଦା ପୋଷାକ ପରିହିତ ଲୋକ । ସେମାନେ ଫଟୋ, ଫିଙ୍ଗର ପ୍ରିଣ୍ଟ୍ ଇତ୍ୟାଦି ନେବା ପାଇଁ ସାଜ ସରଞ୍ଜାମ ଧରି ଆସିଛନ୍ତି ।

ଆଦୌ ସମୟ ନଷ୍ଟ ନ କରି ସମସ୍ତେ ନିଜ ନିଜ କାମରେ ଲାଗିଗଲେ ।

ସତ୍ୟବ୍ରତ ମହାପାତ୍ର ପୋଲିସ୍ ଇନସ୍‌ପେକ୍‌ଟରଙ୍କ ସହିତ ବାହାରକୁ ବାହାରି ଆସିଲେ ।

: ଆପଣଙ୍କର ତଦନ୍ତ ଶେଷ ହେଲା ?

: ଏତେ ଶୀଘ୍ର! ଇନସ୍‌ପେକ୍‌ଟର ହସି ହସି କହିଲେ, ତେବେ ଏହି ହତ୍ୟାକାଣ୍ଡର ହତ୍ୟାକାରୀକୁ ଖୋଜି ବାହାର କରିବା ଖୁବ୍ ସହଜ ବ୍ୟାପାର ହେବ ନାହିଁ ।

: ମୋର ବି ସେଇଆ ଧାରଣା, ସତ୍ୟବ୍ରତ କହିଲେ ।

: ଆପଣ ଯେ କହୁଥିଲେ ଧନଞ୍ଜୟବାବୁ ଆପଣଙ୍କର କ୍ଲାଏଣ୍ଟ, ସେ ଆପଣଙ୍କୁ କେଉଁଥ ପାଇଁ ନିଯୁକ୍ତ କରିଥିଲେ ?

: ସେ ଗୋଟାଏ ଅନ୍ୟ ସମସ୍ୟା । ଏହି ହତ୍ୟାକାଣ୍ଡ ସହିତ ସେ ଘଟଣାର କୌଣସି ସାମ୍ୟ ନାହିଁ ।

: ତଥାପି ଆପଣଙ୍କ ସହଯୋଗ ମୁଁ କାମନା କରୁଥିଲି ।

: ନିଶ୍ଚୟ ପାଇବେ । ସତ୍ୟବ୍ରତ ସ୍ମିତ ହସି କହିଲେ ମୁଁ ଧନଞ୍ଜୟ ବାବୁଙ୍କ ସହିତ ପୂର୍ବରୁ ସଂପୃକ୍ତ ଯେତେବେଳେ, ବର୍ତ୍ତମାନ ସମୟରେ ତାଙ୍କ ସ୍ୱର୍ଗତ ଆତ୍ମାର ସନ୍ତୁଷ୍ଟି ପାଇଁ କିଛି ନ କଲେ, ମୋର ବିବେକ ପାଖରେ ମୁଁ ଅପରାଧୀ ହେବି ।

ଇନସ୍‌ପେକ୍‌ଟର କହିଲେ : ଆପଣଙ୍କ ସାଧୁ ଉଦ୍ଦେଶ୍ୟର ସଫଳତା ପାଇଁ ଭଗବାନ ନିଶ୍ଚୟ ଆପଣଙ୍କୁ ସାହାଯ୍ୟ କରିବେ ।

ସତ୍ୟବ୍ରତ କହିଲେ : ବର୍ତ୍ତମାନ ମୁଁ ଆସୁଛି । ମୋର ପ୍ରାରମ୍ଭିକ ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇଛି । ପରେ ପୁଣି ଆପଣଙ୍କ ସହିତ ସାକ୍ଷାତ ହେବ ।

ସତ୍ୟବ୍ରତଙ୍କ ମୁଣ୍ଡଟା ଭାବନା ଭାରରେ ଭାରି ହୋଇଉଠିଲା ।

ଧନଞ୍ଜୟ ବୈରାଗୀଙ୍କ ହତ୍ୟା ରହସ୍ୟ ମୂଳରେ କି କାରଣ ଥାଇପାରେ ସେ ଚିନ୍ତା କରିପାରୁ ନ ଥିଲେ ।

ଆଜି ରାତି ଭିତରେ ଏ ସମ୍ବନ୍ଧରେ ତାଙ୍କୁ ଅନେକ ବାଟ ଆଗେଇ ଯିବାକୁ ହେବ ।

ପ୍ରଥମେ ତାଙ୍କ ପାଖରେ ଥିବା ଫୋନ୍ ନମ୍ବରଗୁଡ଼ିକ ସେ ଫୋନ୍ କରି ଧନଞ୍ଜୟ ବୈରାଗୀଙ୍କର ଚରିତ୍ର ସମ୍ବନ୍ଧରେ ସବୁ କଥା ବୁଝିବେ ।

ସିଧା ସେ ପୁଣି ଲେଉଟିଗଲେ ଜୀବନ ଦୀପ ଭବନକୁ ।

ଅଫିସ୍‌ରେ ଯାଇ ଦେଖିଲେ, ସବ୍ୟସାଚୀ ବସି ରହିଛି ।

ସତ୍ୟବ୍ରତଙ୍କ ଚିନ୍ତିତ ମୁହଁଆଡ଼େ ଚାହିଁ ପଚାରିଲା: ହଠାତ୍ କିଛି ଦୁର୍ଘଟଣା ଘଟି ଯାଇଛି ବୋଧହୁଏ ।

ସତ୍ୟବ୍ରତ କହିଲେ : ଆମର ପ୍ରଥମ କ୍ଲାଏଣ୍ଟ ଧନଞ୍ଜୟ ବୈରାଗୀ ଖୁଣ୍ ହୋଇଛନ୍ତି ।

: ଖୁଣ୍ ? ସବ୍ୟସାଚୀର ଆଖି ଦୁଇଟା କପାଳକୁ ଉଠିଗଲା ।

ସତ୍ୟବ୍ରତ ନୀରବରେ ଯାଇ ଟେଲିଫୋନ୍ ନମ୍ବର ଡାଏଲ କରିବାକୁ ଲାଗିଲେ ।

: ହ୍ୟାଲୋ ! ଅପର ପ୍ରାନ୍ତରୁ ଏକ କ୍ଷୀଣ କଣ୍ଠସ୍ୱର ଶୁଣାଗଲା ।

ସତ୍ୟବ୍ରତ ପଚାରିଲେ ଆପଣ କିଏ କହୁଛନ୍ତି ?

: ମୁଁ କହୁଛି । ଅପର ପ୍ରାନ୍ତର ସେହି କ୍ଷୀଣ କଣ୍ଠସ୍ୱରଟି କ୍ରମେ ଉତ୍ତପ୍ତ ହୋଇ ଉଠିଲା ।

: ଆପଣଙ୍କ ନାଁ ? ସତ୍ୟବ୍ରତ ସେହିପରି ଶାନ୍ତ ସ୍ୱରରେ ପଚାରିଲେ ।

: ମୋ ନାଁ ଆପଣ ଜାଣି ନାହାନ୍ତି ? ମୋ ଫୋନ୍ ନମ୍ବର ତା'ହେଲେ ପାଇଲେ କେଉଁଠୁ ?

: ଧନଞ୍ଜୟ ବାବୁଙ୍କଠାରୁ । ସତ୍ୟବ୍ରତ ଉତ୍ତର ଦେଲେ ।

ଧନଞ୍ଜୟବାବୁଙ୍କ ନାଁ ଶୁଣି ଲୋକଟି ଯେପରି ଶାନ୍ତ ହୋଇଗଲା । କହିଲା : ଧନଞ୍ଜୟବାବୁଙ୍କୁ କହିବେ ସେ ମୋ ସହିତ ଦେଖା କରିବେ ।

ସଙ୍ଗେ ସଙ୍ଗେ ଅପରପ୍ରାନ୍ତରୁ ରିସିଭରଟି ଟେଲିଫୋନ୍ ଉପରେ ରଖିଦେଲା ପରି ମନେହେଲା ।

ସତ୍ୟବ୍ରତ ମହାପାତ୍ର ଦୁଇ ତିନିଥର 'ହ୍ୟାଲୋ ହ୍ୟାଲୋ' କରି ନିଜେ ବି ରିସିଭରଟା ରଖିଦେଲେ ।

ସବ୍ୟସାଚୀ କହିଲା : ଦ୍ୱାରିକାନାଥ ଗୋଏଙ୍କା ଫୋନ୍ କରିଥିଲେ ।

: କ'ଣ କହିଲେ ?

: ସେ କହିଛନ୍ତି ଆଜି ତାଙ୍କ ସହିତ ତୁ ଗ୍ରାଣ୍ଡରେ ଦେଖାକରିବୁ । ସେ ସାଢ଼େ ନଅରୁ ଦଶ ମଧ୍ୟରେ ଗ୍ରାଣ୍ଡରେ ତୋ' ପାଇଁ ଅପେକ୍ଷା କରିଥିବେ ।

: ଆଉ ?

: ନା, ଆଉ କିଛି ନୁହେଁ । ତେବେ ଦରକାରଟା ତାଙ୍କର ଖୁବ୍ ଜରୁରୀ ।

: ଆଚ୍ଛା, ସେ ପୁଣି ଟେଲିଫୋନ୍ ଡାଏଲ କରିବାରେ ମନଦେଲେ ।

ଏଥର ଅପରପ୍ରାନ୍ତରୁ ଝଣ୍‌ଝଣ୍ ରିସିଭରଟି ଉଠିଲା; କିନ୍ତୁ କୌଣସି ରିପ୍ଲାଇ ନାହିଁ । ସେ ଅପରପ୍ରାନ୍ତରୁ ବେହେଲାର ଏକ କରୁଣ ରାଗିଣୀ ଶୁଣିବାକୁ ପାଇଲେ ।

ପ୍ରାୟ ଦୁଇ ମିନିଟ୍ ପର୍ଯ୍ୟନ୍ତ ସେ ନୀରବରେ ଅପେକ୍ଷା କଲେ । ବେହେଲାର କରୁଣ ରାଗିଣୀ ସେହିପରି ବାଜିଚାଲିଥିଲା କରୁଣରୁ କରୁଣ, ଆହୁରି କରୁଣ ହୋଇ ଉଠି ହଠାତ୍ ବନ୍ଦ ହୋଇଗଲା ।

ତା'ପରେ କିଏ ଜଣେ କହିଲା : ହ୍ୟାଲୋ, ମୁଁ ଜନ୍ ପିଟର କହୁଛି । ଆଜି କୌଣସି ନିମନ୍ତ୍ରଣ ମୁଁ ରକ୍ଷା କରିପାରିବି ନାହିଁ ।

: କିନ୍ତୁ ଆପଣଙ୍କ ସହିତ ମୋର ଖୁବ୍ ଗୋଟାଏ ଜରୁରୀ ଆବଶ୍ୟକ ଥିଲା । ଆପଣ ଯଦି....

: ନା ନା, ମିଷ୍ଟର, ଆପଣ ଯଦି ଆଜି ରାତିକ ପାଇଁ ମୋତେ ଦଶ ହଜାର ଟଙ୍କା ଦିଅନ୍ତି, ତଥାପି ମୁଁ ଯାଇପାରିବି ନାହିଁ । ମୁଁ ଆଜି ମୋର ଜଣେ ପ୍ରିୟଜନଙ୍କ ମୃତ୍ୟୁ ସମ୍ବାଦ

ପାଇ ଭୀଷଣ ମର୍ମାହତ । ମୁଁ ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ଯୀଶୁଙ୍କ ପାଖରେ ପ୍ରାର୍ଥନା କରିବି । ଆପଣ ମୋତେ କ୍ଷମା କରନ୍ତୁ ମିଷ୍ଟର । କାଲି ମୋତେ ଫୋନ୍ କରିବେ ।

ଅପରପ୍ରାନ୍ତରୁ ମଧ ରିସିଭରଟି ରଖିଦେବାର ଶବ୍ଦ ହେଲା ।

ସତ୍ୟବ୍ରତ ଯେପରି ସ୍ତବ୍ଧ ହୋଇଯାଇଥିଲେ ।

ଜନ୍ ପିଟର ତା'ହେଲେ ଧନଞ୍ଜୟ ବାବୁଙ୍କର ପରମ ବନ୍ଧୁ । ତାଙ୍କ ମୃତ୍ୟୁରେ ସେ ଭୀଷଣ ବ୍ୟଥା ପାଇଛନ୍ତି ।

କିନ୍ତୁ ପ୍ରଥମେ ଯାହା ପାଖକୁ ଫୋନ୍ କଲେ, ସେଇ ଲୋକଟା ତାଙ୍କୁ ତ କୌଣସି ଉତ୍ତର ଦେଲା ନାହିଁ; ବରଂ ରୁକ୍ଷକଣ୍ଠରେ ସେ ଅପମାନିତ କଲା ।

ସତ୍ୟବ୍ରତ ଆଉଥରେ ସେଇ ନମ୍ବରରେ ଡାଏଲ କଲେ ।

ଏଥର ଅପରପ୍ରାନ୍ତରେ ଥରେ ମାତ୍ର ରିଙ୍ଗ୍ ହେବାକ୍ଷଣି ଗୋଟିଏ କୋମଳ କଣ୍ଠସ୍ୱର ଭାସି ଆସିଲା : ମୁଁ ଚିତ୍ରା କହୁଛି। ତମେ କାଲି ଆସିଲନି ତ ସୁଭାଷ । କ'ଣ ଦେହ ଖରାପ ହେଲା ? ମୁଁ କିନ୍ତୁ ଅନେକ ବେଳଯାଏ ଅପେକ୍ଷା କଲି । ବାବା ବି ଘରେ ନ ଥିଲେ । ଆସିଥିଲେ କିନ୍ତୁ ଜମି ଥାଆନ୍ତା ଭଲ । ଆଜି ଆସିବ ?

ସତ୍ୟବ୍ରତ ଅପରପ୍ରାନ୍ତରୁ ଏକ ଚପଳା କିଶୋରୀର କଥା ଶୁଣି ସ୍ଥିର ହୋଇଯାଇଥିଲେ । ସେ ଭାବୁଥିଲେ, ସେ ସୁଭାଷ ସାଜି ତା' ସହିତ ଚପଳାମି କରିବେ ନା ନିଜର ପ୍ରକୃତ ପରିଚୟ ଦେବେ ।

ଚିତ୍ରା କ'ଣ ଭାବି କେଜାଣି ପୁଣି କହିଲା : ଆପଣ କିଏ କହୁଛନ୍ତି ?

: ମୁଁ ସତ୍ୟବ୍ରତ ମହାପାତ୍ର କହୁଛି । ତମ ବାବାଙ୍କୁ ଟିକିଏ ଡାକିଦିଅ ।

ଚିତ୍ରା ନିଶ୍ଚୟ ଚଞ୍ଚଳ ହୋଇ ଉଠିଥିବା ମୁହୂର୍ତ୍ତକର ନୀରବତା ପରେ ତା'ର ବିଚଳିତ କଣ୍ଠସ୍ୱର ଶୁଣାଗଲା । ସେ କହିଲା : ଆପଣ ମୋତେ କ୍ଷମା କରିବେ, ମୁଁ ଭାବିଥିଲି......କିନ୍ତୁ ବାବା ଘରେ ନାହାନ୍ତି ସାର୍, ସେ ଏଇ ଅଳ୍ପ ସମୟ ହେବ ବାହାରି ଯାଇଛନ୍ତି । ସେ ଆସିଲେ ମୁଁ ଆପଣଙ୍କ ପାଖକୁ ଫୋନ୍ କରିବାକୁ କହିବି । ଚିତ୍ରା ତରତରରେ ରିସିଭରଟି ରଖିଦେଲା ।

ସତ୍ୟବ୍ରତ ଏଥର ବି ନିରାଶ ହେଲେ ।

ଆଚ୍ଛା, ଏ ସମ୍ବନ୍ଧରେ ପରେ ଦେଖାଯିବ ।

ଆଉ ରହିଲା ଗୋଟିଏ ନମ୍ବର ।

ସତ୍ୟବ୍ରତ ଶେଷ ନମ୍ବରଟି ଡାଏଲ କିରିବାରେ ମନଦେଲେ ।

ଅପର ପ୍ରାନ୍ତରେ ରିଙ୍ଗ୍ ଆରମ୍ଭ ହୋଇଗଲା ।

କିନ୍ତୁ ରିସିଭର କେହି ଉଠାଇଲେ ନାହିଁ ।

ଦୁଇ ମିନିଟ୍, ତିନି ମିନିଟ୍, ତଥାପି କେହି ରିସିଭର ଉଠାଇଲେ ନାହିଁ । ସତ୍ୟବ୍ରତ କିନ୍ତୁ ଏକ ଅଜଣାର ଆବିଷ୍କାର ଉଦ୍ଦେଶ୍ୟରେ ଅପେକ୍ଷା କରି ରହିଥିଲେ ।

ତାଙ୍କ ଆଶା ସଫଳ ହେଲା ।

କିଏ ଜଣେ ଉଚ୍ଚ କଣ୍ଠରେ କହିଲା : ବାରିଷ୍ଟର ସାବ୍ ଘର ଚଲେଗଏ । ଆପ କୌନ ହୋ ଇତ୍‌ନା ରାତ୍‌କୋ ଆଉର କଭି ଫୋନ୍ ମତ୍ କିଜିଏ ।

ସତ୍ୟବ୍ରତଙ୍କର କୌଣସି ଉତ୍ତର ଅପେକ୍ଷା ନ କରି ଲୋକଟା ରିସିଭରଟି ରଖିଦେଲା ।

ସତ୍ୟବ୍ରତଙ୍କର ମୁହଁଟା ବ୍ୟର୍ଥତାର ଆଘାତରେ ବିକୃତ ହୋଇ ଉଠିଥିଲା । ସେ ଟେବୁଲ୍ ଉପରେ ଜୋର୍‌ରେ ବିଧାମାରି କହିଲେ : ରାବିସ୍ ।

ସବ୍ୟସାଚୀ ମଧ ନୀରବରେ ଉଠି ଠିଆହେଲା, କହିଲା : ମୁଁ ଯାଉଛି, ତୁ ଅଫିସ୍ ବନ୍ଦ କରି ଆସିବୁ ।

ସତ୍ୟବ୍ରତ ଉଠି ଠିଆହେଲେ । କହିଲେ : ମୁଁ ବି ତୋ ସହିତ ଯିବି । ଅଫିସ୍ ବନ୍ଦ କରି ଦିଏ ।

: କିନ୍ତୁ ତୋତେ ଯେ ମିଷ୍ଟର ଗୋଏଙ୍କା ଅପେକ୍ଷା କରିଛନ୍ତି ।

: ତା' ହେଲେ ନିହାତି ସେଠାକୁ ଯିବାକୁ ହେବ ନା ?

: ତୋ ଇଚ୍ଛା । ସବ୍ୟସାଚୀ ସ୍ୱରରେ ଅଭିମାନ ଫୁଟି ଉଠିଥିଲା ।

: ଆରେ ଶୁଣ୍, ରାଗୁଛୁ କାହିଁକି ? ସତ୍ୟବ୍ରତ ସ୍ମିତ ହସି କହିଲେ, ଗୋଟାଏ ପଦାର୍ଥ ଦେଖିବୁ ଆଏ । ଏହା ଏକ ମୂଲ୍ୟବାନ ପଦାର୍ଥ, ଆଉ ମୂଲ୍ୟବାନ ପଦାର୍ଥ, ଆଉ ମୂଲ୍ୟବାନ କ୍ଲୁ ବି ।

ସତ୍ୟବ୍ରତ ପକେଟରୁ ଗୋଟିଏ ପଦାର୍ଥ ବାହାର କରି ଟେବୁଲ୍ ଉପରେ ରଖିଲେ ।

ସବ୍ୟସାଚୀର ପଦାର୍ଥଟି ଦୃଷ୍ଟି ଆର୍କଷଣ କରିବା ମାତ୍ରକେ ସେ ସମ୍ମୋହିତଙ୍କ ପରି ଟେବୁଲ ପାଖକୁ ଛୁଟିଗଲା ।

: ଆରେ ଏଇଟା ଯେ....

: ଇନ୍ଦ୍ରନୀଳମଣି । ସତ୍ୟବ୍ରତ ହସି ହସି କହିଲେ ।

: ଏଇଟା କୋଉଠୁ ପାଇଲୁ ?

: କ୍ଲୁ, ଧନଞ୍ଜୟ ବୈରାଗୀଙ୍କ ହତ୍ୟା ରହସ୍ୟ ଉଦ୍‌ଘାଟନ ପାଇଁ ଏହି ଅମୂଲ୍ୟ ମଣିଟି ସବୁଠାରୁ ବଡ଼ ସାକ୍ଷୀ ହୋଇ ଠିଆହେବ । ସତ୍ୟବ୍ରତ ହସି ହସି କହିଲେ ।

: କିନ୍ତୁ ଏହି ଇନ୍ଦ୍ରନୀଳମଣି ଖୁବ୍ ଗୋଟାଏ ବଜାରରେ ତ ଦେଖିବାକୁ ମିଳେ ନାହିଁ । ମୋ ଜୀବନରେ ଏଇ ବୋଧହୁଏ ମୁଁ ପ୍ରଥମେ ଦେଖିଲି । ତୁ ନାଁଟା ନ କହିଥିଲେ ମୁଁ ହୁଏତ ଚିହ୍ନି ପାରି ନ ଥାନ୍ତି ।

: କିନ୍ତୁ ମୁଁ ଆଉଥରେ ଦେଖିଥିଲି ଜଣେ ଜହୁରୀଙ୍କ ପାଖରୁ । ସେଇଥି ପାଇଁ ଦେଖିବା ମାତ୍ରକେ ଚିହ୍ନିପାରିଲି । କିନ୍ତୁ ଏ ପର୍ଯ୍ୟନ୍ତ ବି ବୁଝିପାରିଲି ନାହିଁ ଧନଞ୍ଜୟବାବୁ ଏହି ମଣିଟିକୁ ହାତମୁଠାରେ ମୁଠେଇ ଧରି କାହିଁକି ମୃତ୍ୟୁବରଣ କଲେ ।

: କ'ଣ ହେଲା ? ସବ୍ୟସାଚୀ ସାମ୍ନା ଚେଆରରେ ବସୁ ବସୁ ପଚାରିଲା ।

ସତ୍ୟବ୍ରତ ମଣିଟି ଏକ ଦୃଷ୍ଟିରେ ଚାହିଁ ସଂକ୍ଷେପରେ ଘଟଣାଟି କହିଲେ । ଧନଞ୍ଜୟବାବୁଙ୍କ ହାତମୁଠାରୁ ମୁଁ ଏହିଟିକୁ ଆବିଷ୍କାର କରିଛି । ମୃତ୍ୟୁ ପରେ ବି ସେ ଖୁବ୍ ଦୃଢ଼ ସହକାରେ ମଣିଟିକୁ ମୁଠାଇ ଧରିଥିଲେ । ମନେ ହେଉଥିଲା, ତାଙ୍କର ପ୍ରତିଜ୍ଞା ଥିଲା ପ୍ରାଣ ପଛକେ ଯାଉ, ସେ ଏହି ମଣିଟିକୁ ହାତଛଡ଼ା କରିବେ ନାହିଁ ।

ସବ୍ୟସାଚୀ ହଠାତ୍ ହୋ ହୋ ହୋଇ ହସିଉଠିଲା । କହିଲା, : ତୋର ମତି ବିଭ୍ରମ ହେଲାଣି କିରେ ସତ୍ୟ, ମୁଁ ଦେଖୁଛି କଲିକତା ଆସି ତୁ ଯେ ଧୀରେ ଧୀରେ ବିକାରଗ୍ରସ୍ତ ହୋଇଉଠୁଚୁ ।

: କିପରି ? ସତ୍ୟବ୍ରତ ବିଚଳିତ ହୋଇ ଉଠିଥିଲେ ।

: ଆରେ ଶୁଣ୍ ଶୁଣ୍ । ଏହି ଇନ୍ଦ୍ରନୀଳମଣିଟି ଧନଞ୍ଜୟ ବୈରାଗୀ ହାତରେ ମୁଠାଇ ଖୁଣ୍ ହୋଇଥିବାରୁ, ଖୁଣୀ ସମ୍ବନ୍ଧରେ ତୋର ଏହି ଅର୍ବାଚୀନ ପଟ୍ଟଶିଷ୍ୟ ଗୋଟାଏ ଅସ୍ପଷ୍ଟ ଧାରଣା ଦେଇପାରିବ ।

: ଯଥା ? ସତ୍ୟବ୍ରତ ଆଗ୍ରହ ସହକାରେ ପ୍ରଶ୍ନକଲେ ।

: ହୁଁ, ତା'ହେଲେ ଶୁଣିବୁ ? ମୋର ଧାରଣା ଏହି ଇନ୍ଦ୍ରନୀଳମଣିପରିହିତା ଜନୈକା ଧନଞ୍ଜୟବାବୁଙ୍କୁ ଖୁଣ୍ କରିଛନ୍ତି, ଧନଞ୍ଜୟବାବୁ ଖୁଣ୍ ହେବା ପୂର୍ବରୁ ଆତ୍ମରକ୍ଷା କରିବାକୁ ଯାଇ 'ଜନୈକା'ଙ୍କ ବେକରୁ ଇନ୍ଦ୍ରନୀଳ ମଣିଟି ତୋଳିଆଣିଛନ୍ତି ।

: କ'ଣ କହିଲୁ, କ'ଣ କହିଲୁ ? ଧନଞ୍ଜୟ ବୈରାଗୀଙ୍କ ହତ୍ୟାକାରୀ 'ଜନୈକା', ମାନେ ଇଉ ମିନ୍......

: ହଁ, ହଁ । ଆଇମିନ୍ ସେ ଜଣେ ମହିଳା ହୋଇପାରନ୍ତି ଏବଂ ସେହି ମହିଳାଙ୍କ କଣ୍ଠରେ ହୁଏତ ଏହି ଇନ୍ଦ୍ରନୀଳମଣିଟି ଶୋଭାପାଉଥିଲା । ଧନଞ୍ଜୟବାବୁ ପ୍ରାଣ ବିକଳରେ ମହିଳାଟିକୁ ବାଧାଦେବାକୁ ଯାଇ ହାତରେ ଏହି ମଣିଟି ଟାଣି ଛିଡ଼ାଇ ନେଇଛନ୍ତି । ଭଦ୍ରମହିଳା ସେଇ ମଣିଟାକୁ ଧନଞ୍ଜୟ ବାବୁଙ୍କ ହାତରୁ କାଢ଼ିନେବାର ଆଉ ଅବକାଶ ପାଇ ନାହାନ୍ତି ।

ହୁଁ, ତୋ ଅନୁମାନ ଯଦି ସତ୍ୟ ହୁଏ, ତା'ହେଲେ ନର୍ସ ନତୁବା ଜଲି, ନତୁବା ତୃତୀୟ ମହିଳା ଆଉ କିଏ ହୋଇପାରେ ?

ହତ୍ୟାକାରୀ ଯଦି ମହିଳା ହୋଇ ଥାଏ ତା' ହେଲେ ଚିନ୍ତାର ବିଷୟ, ସତ୍ୟବ୍ରତ ଅସ୍ପଷ୍ଟ ସ୍ୱରରେ କହିଲେ ।

ସବ୍ୟସାଚୀ କହିଲା : ଉଠ୍ ଏଥର । ସମୟ ହୋଇଗଲାଣି ତେଣେ ମିଷ୍ଟର ଗୋଏଙ୍କା ଅପେକ୍ଷା କରିଥିବେ ।

ସତ୍ୟବ୍ରତ ହାତ ଘଡ଼ିକୁ ଚାହିଁ ଉଠି ଠିଆହେଲା ।

ଅଫିସ୍ ବନ୍ଦ କରି ଦୁହେଁ ବାହାରିଗଲେ ।

ଗ୍ରାଣ୍ଡ ହୋଟେଲର ନିର୍ଦ୍ଦିଷ୍ଟ ରୁମ୍ ଦୁଆରେ ପହଞ୍ଚି ଦେଖିଲେ ଜଣେ ଶିଖ୍ ଭଦ୍ରଲୋକ ବାହାରି ଆସୁଛନ୍ତି । ତଳକୁ ମୁହଁପୋତି ସେ ଯେପରି ଗମ୍ଭୀର ଚିନ୍ତାରେ ବୁଡ଼ି ଆଗେଇ ଯାଉଛନ୍ତି ।

ସତ୍ୟବ୍ରତ କେଜାଣି କାହିଁକି ସେଇ ଭଦ୍ରାଲୋକଙ୍କ ପଛେ ପଛେ ଆଗେଇ ଗଲେ ।

ତଥାପି ଶିଖ୍ ଭଦ୍ରଲୋକ ପଛକୁ ଫେରି ଚାହିଁଲେ ନାହିଁ ।

ସତ୍ୟବ୍ରତ ଅବଶ୍ୟ ଅଳ୍ପ ସମୟ ପରେ ଫେରି ଆସି କହିଲେ, : ଭଦ୍ରଲୋକଙ୍କ ହାତରେ ଗୋଟିଏ ମୁଦି ପ୍ରତି ଆକୃଷ୍ଟ ହୋଇ ଛୁଟିଯାଇଥିଲି ।

: କ'ଣ ଇନ୍ଦ୍ରନୀଳର ସନ୍ଧାନରେ ?

ସତ୍ୟବ୍ରତ କିଛି ଉତ୍ତର ନଦେଇ ଦରଜା ଖୋଲିଦେଲେ । ଭିତରେ ଦ୍ୱାରିକାନାଥ ଗୋଏଙ୍କା ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଛନ୍ତି ।

: ଆସନ୍ତୁ ଆସନ୍ତୁ ମିଷ୍ଟର ମହାପାତ୍ର । ମୁଁ ଆପଣଙ୍କ ପାଇଁ ବହୁତ ବେଳୁ ଅପେକ୍ଷା କରିଛି ।

: ହଠାତ୍ କ'ଣ ଏପରି ଆବଶ୍ୟକ ପଡ଼ିଲା ?

: ସେପରି କିଛି ନୁହେଁ ଯେ, ଆପଣଙ୍କ ପାଇଁ ଗୋଟାଏ ଶୁଭ ସଂବାଦ ଅଛି । ଏଇ ନିଅନ୍ତୁ, କହି ଦ୍ୱାରିକାନାଥ ଗୋଟାଏ ଡ୍ରୟାରରୁ ଖଣ୍ଡିଏ ଖାମ୍ ବାହାର କରି ଟେବୁଲ ଉପରେ ଥୋଇଲେ ।

ସତ୍ୟବ୍ରତ କ୍ଷିପ୍ର ହସ୍ତରେ ଟାଣି ନେଇ ଦେଖିଲେ : ଇଣ୍ଟରଭିଉ ପାଇଁ ଚିଠି ଆସିଛି । ଚିଠିଟି ଅତ୍ୟନ୍ତ ସଂକ୍ଷିପ୍ତ ।

ପ୍ରିୟ ମହାଶୟ

ଆପଣଙ୍କର ଆପ୍ଲିକେସନ୍ ମିଳିଛି । ଆଗାମୀ ୨୭ ତାରିଖ ଦିନ ଚାରିଟାବେଳେ ଆପଣଙ୍କ ସହିତ କେତେକ ଆଲୋଚନା କରିବାକୁ ଇଚ୍ଛା । ଆପଣ ନିର୍ଦ୍ଦିଷ୍ଟ ସମୟରେ ଗୋପାଳ ପୁରର ପାମ୍ ବିଚ୍ ହୋଟେଲରେ ଉପସ୍ଥିତ ହେବେ ବୋଲି ଆଶା । ସାକ୍ଷାତ୍‌ରେ ଅନ୍ୟାନ୍ୟ । ଶୁଭେଚ୍ଛା ସହ ।

ସତ୍ୟବ୍ରତ ଚିଠିଟି ପଢ଼ିସାରି ଖାମ୍ ଭିତରେ ଭାଙ୍ଗି ରଖୁ ରଖୁ କହିଲେ : ୨୭ ତାରିଖ ମାନେ, କାଲି ତା'ହେଲେ ଷ୍ଟାର୍ଟ କରିବାକୁ ପଡ଼ିବ । ତା'ନଲେ୨୭ ତାରିଖରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ସମ୍ଭବ ହେବ ନାହିଁ ।

ଦ୍ୱାରିକାନାଥ ଗୋଏଙ୍କା କହିଲେ : କ'ଣ ଭାବୁଛନ୍ତି, ଯିବେତ ?

: ନିଶ୍ଚୟ ନିଶ୍ଚୟ, କିନ୍ତୁ.....

: ଆଉ କିନ୍ତୁ କ'ଣ ? ଚିଠି ପାଇ ସାରି ଆପଣଙ୍କ ପାଇଁ ମୁଁ ସବୁ ବ୍ୟବସ୍ଥା କରି ରଖିଛି ।

: ସବୁ ବ୍ୟବସ୍ଥା ମାନେ ?

: ଗୋଟାଏ କାର୍, ଡ୍ରାଇଭର । ଆଉ କିଛି ମୂଲ୍ୟବାନ ପଦାର୍ଥ ।

: ଯଥା ?

: ଏଇ ନିଅନ୍ତୁ, କହି ଦ୍ୱାରିକାନାଥ ଗୋଏଙ୍କା ପ୍ରଥମେ ଗୋଟିଏ ଛୋଟ ଶିଶି ସତ୍ୟବ୍ରତଙ୍କ ହାତକୁ ବଢ଼ାଇଦେଲେ ।

: ଏଇଟା, ମାନେ......

ଦ୍ୱାରିକାନାଥ ଗୋଏଙ୍କା ଅଳ୍ପ ହସି ହକିଲେ : ଏସବୁ କାମରେ ଏଟା ଖୁବ୍ ଏସେନ୍‌ସିଆଲ । ଏହି ଏସେନ୍‌ସ ରୁ ବୁନ୍ଦାଏ ଯଦି ଆପଣଙ୍କ ପୋଷାକରେ କେଉଁଠି ଲାଗିଥିବ, ତେବେ ମହକରେ ଚଉଦିକ ଫାଟିପଡ଼ିବ ।

ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ, କିନ୍ତୁ ମିଷ୍ଟର ଗୋଏଙ୍କା ଆଉ ଗୋଟିଏ ଗହଣା କେସ୍ ବାହାର କରି କହିଲେ : ଏଇଟା ବି ଆପଣଙ୍କର ଦରକାରରେ ଲାଗିବ । ଏହା ଭିତରେ ଗୋଟାଏ ଲମ୍ବା ସୁନା ଚେନ୍ ଅଛି । ଏହାକୁ ଗଳାରେ ଲମ୍ବାଇବାକୁ ହେବ । ତା' ନହେଲେ ଆପଣ ଦ୍ୱାରିକାନାଥ ଗୋଏଙ୍କା ସାଜି ପାରିବେ ନାହିଁ ।

ତା'ପରେ ଆଉ ଗୋଟିଏ ଛୋଟ କେସ୍ ବାହାର କରି ଟେବୁଲ୍ ଉପରେ ରଖି କହିଲେ : ଏହା ଭିତରେ ଗୋଟିଏ ମୁଦି ଅଛି । ଖୁବ୍ ଦାମୀ । ଏଇଟାକୁ କିନ୍ତୁ ଟିକିଏ ସାବଧାନରେ ରଖିବେ ।

ସତ୍ୟବ୍ରତ କୌତୂହଳୀ ହୋଇ ସେହି କେସ୍‌ଟି ଖୋଲି ପକାଇଲେ । ହଠାତ୍ ତାଙ୍କର ସର୍ବାଙ୍ଗ ଯେପରି ଶିହରୀ ଉଠିଲା । ସେ ଦ୍ୱାରିକାନାଥ ଗୋଏଙ୍କାଙ୍କ ମୁହଁକୁ ବୋକାଙ୍କ ଭଳି ଅନାଇ ରହିଲେ ।

ମିଷ୍ଟର ଗୋଏଙ୍କା ଅଳ୍ପ ହସି କହିଲେ : ଏହି ମୁଦି ଭିତରେ ଯେଉଁ ପଥରଟି ଦେଖୁଛନ୍ତି, ସେଇଟା ହେଉଛି ଇନ୍ଦ୍ରନୀଳମଣି । ଖୁବ୍ ଦାମୀ, ଆଉ ଦୁଷ୍ପ୍ରାପ୍ୟ ମଧ୍ୟ । ସେ ଯଦି ଜହୁରୀ ହୋଇଥାଏ ତା' ହେଲେ ଠିକ୍ ଚିହ୍ନିବ ।

ସତ୍ୟବ୍ରତ ମୁଣ୍ଡରେ କିନ୍ତୁ ଅନ୍ୟଭାବନା ବାତ୍ୟାଚକ୍ର ବେଗରେ ଘୂରିବୁଲୁଥିଲା ।

: ତା'ହେଲେ..... ତା'ହେଲେ......

ମିଷ୍ଟର ଗୋଏଙ୍କା ଏହା ପରେ ଗୋଟାଏ ନୋଟ୍ ବିଡ଼ା କାଢ଼ି ଟେବୁଲ୍ ଉପରେ ଥୋଇଲେ, କହିଲେ : ଏତକ ଆପଣଙ୍କର ପାଥେୟ । ଆପଣଙ୍କର ସଫଳତା ଉପରେ ମୋର ଇଜ୍ଜତ ନିର୍ଭର କରୁଛି । ଆପଣ ଯଦି ସାହାଯ୍ୟ ନ କରନ୍ତି ଶେଷରେ ହୁଏତ ମୋତେ ଆତ୍ମହତ୍ୟା କରିବାକୁ ପଡ଼ିବ ।

: ଆତ୍ମହତ୍ୟା ? ସତ୍ୟବ୍ରତ ଅସ୍ପଷ୍ଟ ସ୍ୱରରେ ଚିତ୍କାର କରି ଉଠିଲେ ।

: ହଁ, ଆତ୍ମହତ୍ୟା ଛଡ଼ା ଅନ୍ୟପଥ ନାହିଁ । କାରଣ ସେଫ୍ ଡିପୋଜିଟ୍ ଭଲ୍ଟରେ ଗୋଏଙ୍କା ଏଷ୍ଟେଟ୍‌ର ଯେଉଁ ଅମୂଲ୍ୟ ମଣିମାଣିକ୍ୟ ଅଛି, ସେଗୁଡ଼ିକ ଉଦ୍ଧାର କରି ନ ପାରିଲେ ମୁଁ ଆଉ କାହାରି ପାଖରେ ମୁହଁଦେଖାଇପାରିବି ନାହିଁ ।

ସତ୍ୟବ୍ରତ ମହାପାତ୍ର ଟେବୁଲ୍ ଉପରେ ଥୁଆହୋଇଥିବା ମୁଦିଟି ଉଠାଇ ନେଇ ଆଉଥରେ ଦେଖିଲେ । ତାଙ୍କ ପାଖରେ ଯେଉଁ ଇନ୍ଦ୍ରନୀଳଟି ଅଛି ଠିକ୍ ଏହିପରି, ଏଇ ସାଇଜ୍‌ର । ଏହିପରି ଚାରିକୋଣିଆ । ସେ ଏହା ପୂର୍ବରୁ ଭାବୁଥିଲେ ହୁଏତ ସବ୍ୟସାଚୀ କଥା ଠିକ୍ ହୋଇପାରେ । କୌଣସି ଭଦ୍ରମହିଳାଙ୍କ ଲକେଟରୁ ସେଇଟି ଧନଞ୍ଜୟ ବୈରାଗୀଙ୍କ ହାତରେ ବନ୍ଦୀ ହୋଇଛି । କିନ୍ତୁ ବର୍ତ୍ତମାନ ଏହି ମୁଦିଟା ଦେଖିବା ପରେ ସତ୍ୟବ୍ରତଙ୍କର ଧାରଣା ବଦଳି ଯାଇଛି । ଏହିପରି ଗୋଟିଏ ମୁଦ୍ରିକା ମଧ୍ୟରୁ ଯେ ଇନ୍ଦ୍ରନୀଳଟି ଯେ ଖସିପଡ଼ି ନାହିଁ, ସେ କଥା କିଏ କହିବ ?

ସତ୍ୟବ୍ରତଙ୍କୁ ଚିନ୍ତିତ ଦେଖି ମିଷ୍ଟର ଗୋଏଙ୍କା କହିଲେ : ଆପଣ ଖୁବ୍ ଦୁଶ୍ଚିନ୍ତାରେ ପଡ଼ିଗଲେ, ନା ମିଷ୍ଟର ମହାପାତ୍ର ?

ସତ୍ୟବ୍ରତଙ୍କର ସ୍ୱପ୍ନ ଭଙ୍ଗ ହେଲା ସତେକି । ସେ କହିଲେ, : ଗୋଟାଏ ପ୍ରଶ୍ନ ଗୋଏଙ୍କା ସାହେବ । ଆପଣଙ୍କର ଏଇ ଯେଉଁ ମୁଦ୍ରିକାଟି ଆପଣ ମୋତେ ଦେଇଛନ୍ତି, ଏଇଭଳି ମାନେ

ଠିକ୍ ଏହିପରି ମୁଦ୍ରିକା ଆପଣଙ୍କ ବଂଶରେ, ବା ଆପଣଙ୍କ ଇଷ୍ଟେଟ୍‌ର କୌଣସି ଲୋକ ବ୍ୟବହାର କରନ୍ତି କି ?

ହଠାତ୍ ଦ୍ୱାରିକାନାଥ ଗୋଏଙ୍କାଙ୍କର ସର୍ବାଙ୍ଗ ଯେପରି ଶିହରୀ ଉଠିଲା । ସେ ପ୍ରକୃତିସ୍ଥ ହୋଇ ଚିନ୍ତିତ ସ୍ୱରରେ କହିଲେ : ହଁ ଥିଲା, କିନ୍ତୁ ତା'ର ମାଲିକ ଥିଲେ ମୋର ସେହି ଆତ୍ମୀୟ, ମାନେ ମିଷ୍ଟର ଏକ୍ସଙ୍କର ବାବା ।

ସତ୍ୟବ୍ରତ ଯେପରି ଆହୁରି ଉତ୍ସାହିତ ହୋଇ ଉଠିଲେ । ସେ କହିଲେ : ଆପଣ ଆହୁରି ଟିକିଏ ଖୋଲାଖୋଲି ଭାବରେ କୁହନ୍ତୁ ।

: ମାନେ ମିଷ୍ଟର ଏକ୍ସଙ୍କର ବାପା ଆମ ପରିବାରର ଜାମାତା ଥିଲେ । ବିବାହ ସମୟରେ ତାଙ୍କୁ ସେହି ଇନ୍ଦ୍ରନୀଳ ଯୁକ୍ତ ମୁଦିଟି ଦିଆହୋଇଥିଲା ।

: ହୁଁ, ତା' ହେଲେ ବର୍ତ୍ତମାନ ତାଙ୍କ ପରିବାରରେ ଆଉ କିଏ ସବୁ ଅଛନ୍ତି ?

: ନା, ମିଷ୍ଟର ଏକ୍ସ ହେଉଛନ୍ତି ବର୍ତ୍ତମାନ ତାଙ୍କ ପରିବାରର ଶେଷ ଦୀପଶିଖା ।

: ବୁଝିଲି ! ଆପଣ ତା'ହେଲେ ବର୍ତ୍ତମାନ ଉଠନ୍ତୁ । ରାତି ଅନେକ ହେଲାଣି । ମୋତେ କାଲି ଗୋପାଳପୁର ଅଭିମୁଖେ ଯାତ୍ରା ଆରମ୍ଭ କରିବାକୁ ହେବ । ସେଥିପାଇଁ ପ୍ରସ୍ତୁତି ଦରକାର ।

ଦ୍ୱାରିକାନାଥ ଗୋଏଙ୍କା ଉଠୁ ଉଠୁ କହିଲେ : ମୋର ଚରମ ଦୁର୍ଦ୍ଦିନର କଥା ମୁଁ ଆପଣଙ୍କୁ କହିଲି । ଆପଣ ଯଦି ଏହି କେସ୍‌ରୁ ମୋର ସେହି ଆତ୍ମୀଙ୍କର କୌଣସି କ୍ଲୁ ନ ପାଆନ୍ତି, ତା'ହେଲେ ଭିନ୍ନଭାବରେ ଆପଣଙ୍କୁ ଅନୁସନ୍ଧାନ କରିବାକୁ ପଡ଼ିବ ।

: ଦେଖାଯାଉ କ'ଣ ହେଉଛି । ସତ୍ୟବ୍ରତ ଓ ସବ୍ୟସାଚୀ ଉଠି ଠିଆହେଲେ । ଗୋଏଙ୍କା ସାହେବଙ୍କ ସଙ୍ଗରେ ସେମାନେ ଆଗେଇ ଯାଉ ଯାଉ ସତ୍ୟବ୍ରତ ପଚାରିଲେ, ଆମେ ଆପଣଙ୍କ ଏଠାକୁ ଆସିବା ସମୟରେ ଜଣେ ଶିଖ୍ ଭଦ୍ରଲୋକ ଆପଣଙ୍କ ଘରୁ ବାହାରିଗଲେ । ସେ ଭଦ୍ରଲୋକ.....

: ଓଃ, ଗୁର୍‌ନାମସିଂଙ୍କ କଥା ଆପଣ କହୁଛନ୍ତି ? ସେ ମୋର ଜଣେ ପରମ ବଂଧୁ । ଆମର ବିଜ୍‌ନେସ୍ ପାର୍ଟନର ମଧ୍ୟ । ଖୁବ୍ ବିଶ୍ୱାସୀ ଭଦ୍ରଲୋକ । ଆଜିକାଲି ଦୁନିଆରେ ସାଧାରଣତଃ ଏତେ ସତ୍‌ଲୋକ ଦେଖିବାକୁ ମିଳନ୍ତି ନାହିଁ ।

ସେମାନେ ଏହିପରି ଆଉ ପାଞ୍ଚଟା କଥାବାର୍ତ୍ତା ହେଉ ହେଉ ହୋଟେଲରୁ ବାହାରିଗଲେ ।

ସେଦିନ ରାତିରେ ସତ୍ୟବ୍ରତଙ୍କୁ ଆଦୌ ନିଦ ହେଲା ନାହିଁ । ସମସ୍ୟାର ପାହାଡ଼ ଯେପରି ତାଙ୍କ ଆଗରେ ମୁଣ୍ଡଟେକି ଠିଆହେଲା ।

ତାଙ୍କର ମନେହେଲା ଦ୍ୱାରିକାନାଥ ଗୋଏଙ୍କାଙ୍କର କେସ୍ ସହିତ ଯେପରି ଧନଞ୍ଜୟ ବୈରାଗୀଙ୍କର ହତ୍ୟା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଅନେକ ରାତିଯାଏ ସତ୍ୟବ୍ରତ ଇନ୍ଦ୍ରନୀଳମଣି ଦୁଇଟିକୁ ମିଶାଇଛନ୍ତି । ତାଙ୍କର ମନେହୋଇଛି ଦୁଇଟି ଜାକ ମଣି ହୁଏତ ଏକା, ଏପରିକି ଓଜନ ମଧ୍ୟ ସମାନ ହେବ । ତାଙ୍କର ଦୃଢ଼ ଧାରଣା ଜନ୍ମିଲା ଯେ, ଧନଞ୍ଜୟ ବୈରାଗୀଙ୍କର

ହତ୍ୟାକାରୀ ଏହିପରି ଗୋଟିଏ ମୁଦି ପିନ୍ଧି ଆସିଥିଲା ଏବଂ ସେହି ମୁଦି ମଧ୍ୟରୁ ଏହି ଇନ୍ଦ୍ରନୀଳଟି ବାହାରି ଯାଇଛି । ଧନଞ୍ଜୟ ବୈରାଗୀ ଆତ୍ମରକ୍ଷା କରିବାକୁ ଶେଷ ଚେଷ୍ଟା କରୁଥିବା ବେଳେ ହୁଏତ ଏହି ମଣିଟି ତାଙ୍କ ହାତମୁଠାରେ ରହିଯାଇଛି ।

କିନ୍ତୁ ଏହି ଇନ୍ଦ୍ରନୀଳର ମାଲିକ ମିଷ୍ଟର ଏକ୍ସଙ୍କର ବାପା । କାଳକ୍ରମେ ମିଷ୍ଟର ଏକ୍ସ ଏହାର ମାଲିକ ହେବା ସ୍ୱାଭାବିକ । କିନ୍ତୁ.....

ରାତିରେ ଏତିକିରୁ ସତ୍ୟବ୍ରତଙ୍କ ଭାବନା ଆଉ ବେଶିଦୂର ଆଗେଇ ପାରି ନଥିଲା ।

ସକାଳହେବା ମାତ୍ରେ ସେ ନିତ୍ୟକର୍ମ ଶେଷ କରି ଛୁଟିଥିଲେ ଅଫିସ୍‌କୁ ।

ଆଜି ତାଙ୍କୁ ଗୋପାଳପୁର ଅଭିମୁଖରେ ଯାତ୍ରା କରିବାକୁ ହେବ ଯେତେବେଳେ, ସେ ଧନଞ୍ଜୟ ବୈରାଗୀଙ୍କ କେସ୍‌ର ଗୋଟାଏ କିଛି ସୁବ୍ୟବସ୍ଥା କରି ଯିବେ । ଅବଶ୍ୟ ସବ୍ୟସାଚୀ ଦାସଙ୍କ ଉପରେ ସେ ପୂର୍ଣ୍ଣ ଦାୟିତ୍ୱ ଦେଇଯିବେ; ତଥାପି କେତେକ ପ୍ରାଥମିକ କାର୍ଯ୍ୟ ତାଙ୍କୁ ଶେଷ କରି ଯିବାକୁ ହେବ । ପ୍ରଥମତଃ ତାଙ୍କ ପାଖରେ ଯେଉଁ ଚାରିଟି ଟେଲିଫୋନ୍ ନମ୍ବର ଅଛି, ସେହି ନମ୍ବରର ମାଲିକ ମାନଙ୍କ ସହିତ କଥାବାର୍ତ୍ତା କରି, ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ ଏକ ପୂର୍ଣ୍ଣ ଧାରଣା ନେବାକୁ ହେବ ।

ପ୍ରଥମେ କାହାକୁ ଟେଲିଫୋନ୍ କରିବେ ?

ମାଧବନ୍‌ର ଠିକଣା ତାଙ୍କ ପାଖରେ ଅଛି । ଜନ୍ ପିଟର ତ ରିପ୍ଲାଇ ଦେଇଥିଲା । ବାରିଷ୍ଟର ସାହେବଙ୍କର ତ ଅଫିସ୍ ଖୋଲି ନ ଥିବା ବାକି ରହିଲେ ଜଣେ । ସେଇ ଭଦ୍ରଲୋକଙ୍କୁ ଦୁଇ ତିନି ଥର ଫୋନ୍ କରି ମଧ କୌଣସି ସନ୍ତୋଷଜନକ ଉତ୍ତର ସେ ପାଇ ନାହାନ୍ତି ।

ସେଇ ନମ୍ବରଟାକୁ ପ୍ରଥମେ ସେ ଡାଏଲ କଲେ ।

ସଙ୍ଗେ ସେଙ୍ଗେ ଉତ୍ତର ମିଳିଲା : ରମାନାଥ ମଲ୍ଲିକ କହୁଛି ।

: ଆପଣ ଧନଞ୍ଜୟ ବୈରାଗୀଙ୍କୁ ଚିହ୍ନନ୍ତି, ସତ୍ୟବ୍ରତ ସଙ୍ଗେ ସଙ୍ଗେ ପ୍ରଶ୍ନ କଲେ ।

: ଚିହ୍ନିଥିଲି; କିନ୍ତୁ ବର୍ତ୍ତମାନ ଚିହ୍ନିବା ନ ଚିହ୍ନିବା ସମାନ । କାଲି ତାଙ୍କର ମୃତ୍ୟୁ ହୋଇଛି । ଆପଣ କିଏ କହୁଛନ୍ତି ?

: ମୁଁ ସତ୍ୟବ୍ରତ ମହାପାତ୍ର କହୁଛି, ତାଙ୍କର ହତ୍ୟାକାରୀକୁ ଖୋଜି ବାହାର କରିବା ପାଇଁ ମୁଁ ନିଯୁକ୍ତ ହୋଇଛି । ତେଣୁ ଆପଣ ଦୟାକରି ମୋତେ ଟିକିଏ ସାହାଯ୍ୟ କରିବେ ଆଶା କରୁଛି ।

: ମୁଁ, ମାନେ.....ଆପଣ ମୋ ନାଁ ଜାଣିଲେ କିପରି ?

: ଶୁଣନ୍ତୁ ମିଷ୍ଟର ମଲ୍ଲିକ । ମୁଁ ଆପଣଙ୍କ ନାଁ ଜାଣି ନ ଥିଲି କିମ୍ବା ଏତେବେଳଯାଏ ଠିକଣା ଜାଣି ନାହିଁ । କେବଳ ଆପଣଙ୍କ ଫୋନ୍ ନମ୍ବରଟା ପାଇଛି । ଦୟାକରି ଏଥର ଆପଣଙ୍କ ଠିକଣାଟା ଦିଅନ୍ତୁ ।

: କିନ୍ତୁ ମୋର ଭୀଷଣ ଅସୁବିଧା ମିଷ୍ଟର ମହାପାତ୍ର । କ'ଣ ଜାଣନ୍ତି, ମୁଁ ହେଲି ବ୍ୟବସାୟୀ ଲୋକ । ସମୟ ଅତି ଅଳ୍ପ । ତା'ଛଡ଼ା ଧନଞ୍ଜୟବାବୁଙ୍କ ସହିତ ବିଶେଷ ଘନିଷ୍ଠତା ମୋର ନ ଥିଲା । ସେ ଆମ ଦୋକାନକୁ ବେଳେ ବେଳେ ଆସନ୍ତି । କିଛି କିଛି ମାଲ କିଣନ୍ତି, ବାସ୍ ସେତିକି । ଏହାଛଡ଼ା ଆଉ ଅଧିକ ସଂପର୍କ କିଛି ତାଙ୍କ ସହିତ ନାହିଁ ।

: ଆପଣଙ୍କର ଦୋକାନଟା କେଉଁଠି ?

: ମଲ୍ଲିକ ବଜାରରେ । ପୁରୁଣା ମଟର ପାର୍ଟସର ଦୋକାନ । ମୋତେ ପ୍ରାୟ ଚିବିଶ ଘଣ୍ଟା ଦୋକାନରେ ରହିବାକୁ ହୋଇଥାଏ । ତେଣୁ ଦୟାକରି ମୋତେ ପୁଲିସ୍ କେସ୍‌ରେ ପକାଇ ହଟହଟା କରିବେ ନାହିଁ ।

: ମୁଁ କିନ୍ତୁ ନିରୁପାୟ ମି: ମିଲ୍ଲିକ । ଆପଣ ମୋ ପାଖକୁ ଆସିବା କିଛି ଦରକାର ନାହିଁ । ମୁଁ ଆପଣଙ୍କ ପାଖକୁ ଯିବି । ଖାଲି ଠିକଣାଟା ଦିଅନ୍ତୁ- ମାନେ ଯେଉଁ ଠିକଣାରେ ଆପଣ ପ୍ରାୟ ମିଳିବେ ।

ଅପରପ୍ରାନ୍ତରୁ କିଛି ସମୟର ନୀରବତା ପରେ, ରମାନାଥ ମଲ୍ଲିକ ଗୋଟିଏ ଠିକଣା ଜଣାଇଲେ, ସତ୍ୟବ୍ରତ ସେତକ ନୋଟ୍ କରି ରଖିଲେ । ରିସିଭରଟା ଯଥା ସ୍ଥାନରେ ରଖିଦେଇ ଦେଖିଲେ, ସବ୍ୟସାଚୀ ଅଫିସ୍ ଭିତରେ ପ୍ରବେଶ କରୁଛି ।

ସତ୍ୟବ୍ରତ ଉଠି ଠିଆ ହୋଇପଡ଼ିଲେ : ଚାଲେ ସବ୍ୟ, ମୋ ସଙ୍ଗରେ ତୋତେ ଆଜି ବାହାରିବାକୁ ହେବ ।

: କିନ୍ତୁ.....

ସତ୍ୟବ୍ରତ ପୁଣି ଚେଆର ଉପରେ ବସିପଡ଼ି ଟେଲିଫୋନ୍‌ରେ ଡାଏଲ କରିବାକୁ ଲାଗିଲେ । ଏଥର ଲକ୍ଷ୍ୟ, ଜନ୍ ପିଟର । ସେ ଠିକଣାଟା ମଧ୍ୟ ଆବଶ୍ୟକ ।

କିନ୍ତୁ ଟେଲିଫୋନ୍ ଧରିଲା ଆଉ ଜଣେ । ସେ କହିଲା : ଜନ୍ ପିଟର ବର୍ତ୍ତମାନ ଘରେ ନାହାନ୍ତି । ଫେରୁ ଫେରୁ ଡେରି ହେବ ।

ସତ୍ୟବ୍ରତ ସେହି ଲୋକଟିଠାରୁ ଜନ୍ ପିଟରର ଠିକଣାଟା ଟିପି ରଖିଲେ ।

ଆଉ ଅପେକ୍ଷା କରି ଲାଭ ନାହିଁ । ସଙ୍ଗେ ସଙ୍ଗେ ସେମାନେ ବାହାରିପଡ଼ିଲେ ।

ପ୍ରଥମେ ମାଧବନଙ୍କ ଘର ।

ମିଷ୍ଟର ମାଧବନ ବାରଣ୍ଡା ଉପରେ ଖାଲିଦେହରେ ଗୋଟାଏ ବେତ ଚେଆର ଉପରେ ବସି ଖବରକାଗଜ ପଢୁଥିଲେ ।

ସତ୍ୟବ୍ରତ ମହାପାତ୍ର ଓ ସବ୍ୟସାଚୀ ଦାସ ଯାଇ ତାଙ୍କର ଧ୍ୟାନଭଙ୍ଗ କଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ନିଜ ନାଁ କହି ସତ୍ୟବ୍ରତ ସାମ୍ନାରେ ପଡ଼ିଥିବା ଗୋଟିଏ ଚେଆର ଅଧିକାର କଲେ ।

ମିଷ୍ଟର ମାଧବନ ଖବରକାଗଜ ଉପରୁ ମୁହଁଉଠାଇ ଚାହିଁଲେ ଥରେ । ତା'ପରେ ପୁଣି ଖବର କାଗଜ ଉପରକୁ ଆଖି ଫେରାଇ ନେଇ କହିଲେ: ଟିକିଏ ଅପେକ୍ଷା କରନ୍ତୁ, ମୁଁ ଗୋଟାଏ ଇଣ୍ଟରେଷ୍ଟିଂ ଖବର ପଢୁଛି ।

ନୀରବତା ଭିତରେ ପ୍ରାୟ ତିନି ଚାରି ମିନିଟ୍ କଟିଗଲା ।

ତଥାପି ମାଧବନ ଆଉ କିଛି କଥା କହିଲେ ନାହିଁ ।

ସତ୍ୟବ୍ରତ ଗଳା ଖଙ୍କାରିଲେ ।

ତଥାପି ମାଧବନ ନୀରବରେ ଇଣ୍ଟରେଷ୍ଟିଂ ଖବର ପଢ଼ିବାରେ ମନ ଦେଇଥିଲେ ।

ଘର ଭିତରୁ କ'ଣ ଗୋଟାଏ ଘଣ୍ଟାଧ୍ୱନି ହେଲା ।

ମିଷ୍ଟର ମାଧବନ ତର ତର ହୋଇ ଚେଆରରୁ ଉଠିପଡ଼ି, ଖବରକାଗଜଟା ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଇ ଅଳ୍ପ ହସି କହିଲେ : ଆପଣ ଖବରକାଗଜଟା ପଢୁଥାଆନ୍ତୁ । ମୁଁ ଏଇ ସଙ୍ଗେ ସଙ୍ଗେ ଚା' ପିଇ ଦେଇ ଆସୁଛି ।

ମାଧବନ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଘର ଭିତରକୁ ଚାଲିଗଲେ ।

ସବ୍ୟସାଚୀ ଆଶ୍ଚର୍ଯ୍ୟ ହୋଇ ଅନାଇଥିଲା ସତ୍ୟବ୍ରତଙ୍କ ମୁହଁକୁ ।

ମାଧବନ ଲୋକଟି ପ୍ରକୃତି !

ବାଧହୋଇ ଦୁଇଜଣଯାକ ଖବରକାଗଜ ଖଣ୍ଡିକୁ ବାଣ୍ଟିନେଇ ପଢ଼ିବସିଲେ ।

ପ୍ରାୟ ଦଶ ମିନିଟ୍ ପରେ ଦୂରରୁ ପାଦଶବ୍ଦ ଶୁଣାଗଲା ।

ସତ୍ୟବ୍ରତ ଚାହିଁ ଦେଖିଲେ ମାଧବନ ଏଥର ପାଇଜାମା ପଞ୍ଜାବୀ ପିନ୍ଧି ଭଦ୍ରଲୋକ ହୋଇ ଫେରିଆସୁଛନ୍ତି । ଖାଲି ସେତିକି ନୁହେଁ; ଦୂରରୁ ହାତ ଯୋଡ଼ି ନମସ୍କାର କରି ହସି ହସି ଆସି ଖାଲିଥିବା ଚେଆରଟିରେ ବସିପଡ଼ି କହିଲେ : କ୍ଷମା କରିବେ ସାର୍ । ମୁଁ ଟିକିଏ ଭାରି ନିୟମାନୁବର୍ତ୍ତୀ । ଠିକ୍‌ସମୟ ଅନୁସାରେ ସବୁ କଥା ପାଳନ କରିବା ମୋର ଧର୍ମ । ତେଣୁ ଆପଣମାନେ ଯଦି ମୋର ବ୍ୟବହାରରେ କ୍ଷୁଣ୍ଣ ହୋଇଥାଆନ୍ତି କ୍ଷମା କରିବେ । ଏଥର ଆପଣଙ୍କ କଥା କୁହନ୍ତୁ । ମୁଁ ଠିକ୍ ପନ୍ଦର ମିନିଟ୍‌ରେ ବାଥ୍‌ରୁମ୍‌କୁ ଚାଲିଯିବି ।

ସତ୍ୟବ୍ରତ କହିଲେ : କାଲି ମୁଁ ଆପଣଙ୍କୁ ଫୋନ୍ କରିଥିଲି, ମନେଥିବ ।

ମିଷ୍ଟର ମାଧବନ ହସି ହସି କହିଲେ : ଆଉ ମୋ ସମ୍ବନ୍ଧରେ ଗୋଟିଏ ଜ୍ଞାତବ୍ୟ ହେଉଛି, ମୋର କିଛି ମନେ ରୁହେ ନାହିଁ । ପାର୍ସନାଲ ଆସିଷ୍ଟାଣ୍ଟ୍ ସବୁ ନୋଟ୍ କରି ରଖେ । ସେ ଆସିବ ଦଶଟାରେ, ଆପଣ ଯଦି ସେତେବେଳଯାଏ ଅପେକ୍ଷା କରିବେ, ତେବେ ଆପଣଙ୍କ ନାଁ ଠିକଣା ଖୋଜି ବାହାର କରି ପାରିବି ।

ସତ୍ୟବ୍ରତ ବଡ଼ ସମସ୍ୟାରେ ପଡ଼ିଗଲେ । ସେ ଆଉ ସମୟ ନଷ୍ଟ ନ କରି କହିଲେ, : ଆପଣ ଧନଞ୍ଜୟ ବୈରାଗୀଙ୍କୁ ଚିହ୍ନିଛନ୍ତି ?

: ମୁଁ ତ ଅନେକ ଲୋକଙ୍କୁ ଚିହ୍ନିଛି ସାର୍ ଧନଞ୍ଜୟ ବୈରାଗୀ ତ ଜଣେ ଲୋକ । ତେବେ ମୋର ପର୍ସନାଲ ଆସିଷ୍ଟାଣ୍ଟ ଆସିଲେ । ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ ଡିଟେଲ୍‌ସ କହି ପାରିବ । ତା'ଛଡ଼ା ଆପଣ ପରକଥା ଉଠାଇ ସମୟ ନଷ୍ଟ ନ କରି ନିଜର କ'ଣ ଦରକାର କୁହନ୍ତୁ ।

ସତ୍ୟବ୍ରତ ମହାପାତ୍ର ମନେ ମନେ ଚିଡ଼ିଉଠିଲେ । ସେ ଉତ୍ତେଜିତ କଣ୍ଠରେ କହିଲେ : ଧନଞ୍ଜୟ ବୈରାଗୀ କାଲି ଖୁଣ୍ ହୋଇଛନ୍ତି, ପୋଲିସ୍ ସୂତ୍ରରୁ ଜଣାଯାଇଛି ଯେ ଆପଣ ତାଙ୍କର ବଂଧୁ; ତେଣୁ ଏହି ଖୁଣ୍ ସଂକ୍ରାନ୍ତ ବ୍ୟପାରରେ ପୋଲିସ୍ ଆପଣଙ୍କୁ ସନ୍ଦେହ କରୁଛି ।

ମିଷ୍ଟର ମାଧବନଙ୍କ ମୁହଁରେ କିନ୍ତୁ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ସେ ପୂର୍ବ ପରି ଅଳ୍ପ ଅଳ୍ପ ହସି କହିଲେ : ଧନଞ୍ଜୟ ବୈରାଗୀ ଯଦି ମୋର ବଂଧୁ ହୋଇଥାଆନ୍ତି ମୋର, ପର୍ସନାଲ ଆସିଷ୍ଟାଣ୍ଟ ଆସି ଯଦି ମୋତେ କୁହନ୍ତି, ତା'ହେଲେ ମୁଁ ଥାନାରେ ଯାଇ ସେଇ କଥା କହି ଆସିବି, ଆପଣ ଅପେକ୍ଷା କରନ୍ତୁ, ମୁଁ, କାମ ସାରେ, ଦେଖାଯିବ ।

: ଶୁଣନ୍ତୁ ମିଷ୍ଟର ମାଧବନ ! ଆପଣଙ୍କ ପରି ଆମର ବି ସମୟର ମୂଲ୍ୟ ଅଛି । ତେଣୁ ଆପଣଙ୍କ ପାଖରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିବା ପାଇଁ ଆମର ବେଳ ନାହିଁ । ଆପଣ ଧନଞ୍ଜୟ ବୈରାଗୀଙ୍କୁ ଚିହ୍ନନ୍ତି କି ନାହିଁ କୁହନ୍ତୁ ।

ମିଷ୍ଟର ମାଧବନ ପୁଣି ହସିଲେ । କହିଲେ : ଆପଣମାନେ ବୁଦ୍ଧିମାନଲୋକ । ଅଯଥା ଏଠାରେ ସମୟ ନଷ୍ଟ କରିବାର ପକ୍ଷପାତୀ ମୁଁ ମଧ୍ୟ ନୁହେଁ । ଆପଣଙ୍କ ଟେଲିଫୋନ୍ ନମ୍ବରଟା ଟିପି ଦେଇ ଯାଆନ୍ତୁ । ମୋର ପର୍ସନାଲ ଆସିଷ୍ଟାଣ୍ଟ ଆସିଲେ, ଆପଣଙ୍କୁ ଫୋନ୍ କରି ସବୁ ଜଣାଇ ଦେବ ।

ସତ୍ୟବ୍ରତ ଆଉ କ'ଣ କହିବାକୁ ଯାଉଥିଲେ ।

କିନ୍ତୁ ପୂର୍ବପରି ପୁଣି ଭିତରୁ ଘଣ୍ଟା ବାଜିଉଠିଲା ।

ମିଷ୍ଟର ମାଧବନ ବ୍ୟସ୍ତ ହୋଇ ଉଠି କହିଲେ : ମୋର ବାଥ୍ ରୁମ୍ ଯିବାର ବେଳ ହୋଇଗଲା । ମୁଁ ଆସୁଛି ।

ମିଷ୍ଟର ମାଧବନ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଉଠିଚାଲିଗଲେ ।

ସବ୍ୟସାଚୀ କହିଲା : ଲୋକଟା ନିଶ୍ଚୟ ବଦ୍ଧ ପାଗଳ । ଚାଲେ ଏଠୁ ପଳେଇଯିବା । ନଷ୍ଟ କରିଲା ଭଳି ସମୟ ଆମ ହାତରେ ନାହିଁ ।

ସତ୍ୟବ୍ରତ ମୁହଁରେ ଚିନ୍ତାର ରେଖା ଫୁଟିଉଠିଥିଲା ।

ମିଷ୍ଟର ମାଧବନ କ'ଣ ପ୍ରକୃତରେ ଅସୁସ୍ଥ ?

ନା ଅସୁସ୍ଥତାର ଛଳନା କରୁଛନ୍ତି ?

କିନ୍ତୁ ଘର ଭିତରୁ ଆଉଜଣେ ଭଦ୍ରଲୋକ ବାହାରି ଆସୁଥିବାର ଦେଖି ସତ୍ୟବ୍ରତ ଟିକିଏ ଆଶ୍ୱସ୍ତ ହେଲେ ।

ଭଦ୍ରଲୋକ ଆଗେଇ ଆସି କହିଲେ : ମୋ ନାଁ ମାଧବନ୍ । ଆପଣ କାହାକୁ ଖୋଜୁଛନ୍ତି ?

ସତ୍ୟବ୍ରତଙ୍କ ବିସ୍ମୟ ବିସ୍ଫାରିତ ଆଖି ଦୁଇଟି ଧୀରେ ସହଜ ହୋଇ ଆସିଲା । ସେ ଆଉଥରେ ଚେଆର ଅଧିକାର କରି ବସୁ ବସୁ କହିଲେ : ମୁଁ ଆପଣଙ୍କ ନିକଟକୁ ଆସିଛି ମିଷ୍ଟର ମାଧବନ । କିନ୍ତୁ ଆଉଜଣେ ଭଦ୍ରଲୋକ, ଅନେକଟା ଦେଖିବାକୁ ଆପଣଙ୍କ ପରି.....

: ଓଃ, ଆପଣଙ୍କର ତା'ସହିତ ଦେଖାହୋଇଥିଲା ? ସେ ମୋର ଭାଇ, ତା'ର ଟିକିଏ ମୁଣ୍ଡଦୋଷ ଅଛି । ଆପଣଙ୍କୁ କିଛି କହି ନାହିଁ ତ ?

ସତ୍ୟବ୍ରତ ସେ ପ୍ରସଙ୍ଗ ଏଡ଼େଇ ଯିବା ପାଇଁ କହିଲେ : ମୋ ନାଁ ସତ୍ୟବ୍ରତ ମହାପାତ୍ର । ମୁଁ କାଲି ଆପଣଙ୍କୁ ଫୋନ୍ କରିଥିଲି । ଧନଞ୍ଜୟ ବୈରାଗୀଙ୍କର ହତ୍ୟା ସଂକ୍ରାନ୍ତ ବ୍ୟାପାରରେ ଆପଣ ଆମକୁ ସାହାଯ୍ୟ କରିବେ, ସେଇ ଆଶାରେ ଆସିଛି ।

ମାଧବନଙ୍କ ମୁହଁଟା ଧୀରେ ଧୀରେ ଗମ୍ଭୀର ହୋଇଉଠିଲା । ସେ ଶାନ୍ତ କଣ୍ଠରେ କହିଲେ, : ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ ଆପଣଙ୍କୁ ମୁଁ କି ସାହାଯ୍ୟ କରିପାରିବି ? ତାଙ୍କର ବିଚିତ୍ର ଗତିଧାରା ସମ୍ବନ୍ଧରେ ମୋର ପରିଚୟ ମାତ୍ର ସାମାନ୍ୟ । ତଥାପି ଆପଣ କ'ଣ ଜାଣିବାକୁ ଚାହାନ୍ତି ପଚାରନ୍ତୁ । ଯଥାସାଧ୍ୟ ଉତ୍ତର ଦେବି ।

ସତ୍ୟବ୍ରତ କହିଲେ : ତାଙ୍କର ପାରିବାରିକ ସମ୍ବନ୍ଧରେ ପ୍ରଥମେ କିଛି କୁହନ୍ତୁ ।

: ସେ ସମ୍ବନ୍ଧରେ ମୁଁ ଅନ୍ଧକାରେ । ଯେବେଠାରୁ ଧନଞ୍ଜୟବାବୁଙ୍କ ସହିତ ମୋର ପରିଚୟ ହୋଇଛି, ତେବେଠାରୁ ମୁଁ ତାଙ୍କୁ ଏହିପରି ଏକା ଦେଖିଛି । ଥରେ ଦି'ଥର ତାଙ୍କର ପାରିବାରିକ ଜୀବନ ସମ୍ବନ୍ଧରେ ପ୍ରଶ୍ନ ଉଠାଇ କୌଣସି ଉତ୍ତର ପାଇ ନାହିଁ ।

: ତା'ହେଲେ ଆପଣଙ୍କ ସହିତ ତାଙ୍କର ସମ୍ବନ୍ଧ କ'ଣ ?

: ସମ୍ବନ୍ଧଟା....ମିଷ୍ଟର ମାଧବନ ଟିକିଏ ଚିନ୍ତାକରି କହିଲେ, ସମ୍ବନ୍ଧଟା ଯେ ଖୁବ୍ ଗୋଟାଏ ଅନ୍ତରଙ୍ଗର ନ ଥିଲା ସେ କଥା କହି ପାରିବି ନାହିଁ । ତାଙ୍କ ସହିତ ପ୍ରଥମେ ମୋର ପରିଚୟ ହୋଇଥିଲା ଗୋଟାଏ କୁଖ୍ୟାତ ସ୍ଥାନରେ । ଯେଉଁ ସ୍ଥାନଟା ସମ୍ବନ୍ଧରେ କିଛି କହିବାକୁ ଗଲେ ଆମ ଦୁଇ ଜଣଙ୍କର ସାମାଜିକ ଖ୍ୟାତି ଉପରେ ଆଞ୍ଚ ଆସିବ । ଆପଣ ଯଦି ନିତାନ୍ତ ଶୁଣିବାକୁ ଚାହାନ୍ତି । ମୁଁ କହିବି ।

: ଧରନ୍ତୁ ଆପଣ ଦୁହିଁଙ୍କର ପରିଚୟ ହେଲା ସେହି କୁଖ୍ୟାତ ସ୍ଥାନରେ ତା'ପରେ ?

: ନା, ଘଟଣାଟା ନ କହିଲେ ଆପଣ ବୁଝିପାରିବେ ନାହିଁ । ଘଟଣାଟା ଘଟିଥିଲା ଗୋଟାଏ ବାଇଜୀକୁ କେନ୍ଦ୍ରକରି । ଘଟଣାଚକ୍ରରେ ଆମେ ସେଦିନ ଗୋଟିଏ ବାଇଜୀ ଘରେ ଆମର ବନ୍ଧୁ ବାନ୍ଧବ ସହ ଯାଇ ପହଞ୍ଚି ଯାଇଥିଲୁ । ସେମାନେ ଆସିଥିଲେ ଚାରିଜଣ, ଆମେ ଯାଇଥିଲୁ ତିନିଜଣ । ତା'ପରେ ଆହୁରି ଅନେକ ଆସିଥିଲେ ଆସରରେ ଯୋଗଦେବା ପାଇଁ ।

ସେଠାରେ ସେଦିନ ଏକ ଅବାଞ୍ଛିତ ପରିସ୍ଥିତି ସୃଷ୍ଟି ହୋଇଥିଲା ।

ମୁଁ ଭୀଷଣ ଭାବରେ ଆଘାତ ପାଇ ଚେତା ହରାଇ ପଡ଼ିଥିଲି ।

ଧନଞ୍ଜୟବାବୁ ମୋତେ ତାଙ୍କ ଘରକୁ ନେଇଯାଇଥିଲେ । ମୋର ସେବା ଶୁଶ୍ରୂଷା କରିଥିଲେ । ସେଇଦିନଠାରୁ ତାଙ୍କର ମୋର ପରିଚୟ । କ୍ରମଶଃ ବନ୍ଧୁତା ବଢ଼ିଉଠିଲା । ଆନ୍ତରିକତା ମଧ୍ୟ ବଢ଼ି ଚାଲିଲା ସଙ୍ଗେ ସଙ୍ଗେ । ଆମେ ଦୁହେଁ ଅଭିନ୍ନ ହୃଦୟ ହୋଇଉଠିଲୁ ।

: ତା'ପରେ ?

: ତା'ପରେ ଆଉ କ'ଣ ? ମୋର ଅବଶ୍ୟ ଅନେକ ପରିବର୍ତ୍ତନ ହେଲା । ବିବାହ କଲି । ସଂସାର କଲି । ଅନେକ ଦାୟିତ୍ୱ ମୁଣ୍ଡକୁ ଆସିଲା । କ୍ରମଶଃ ଧନଞ୍ଜୟବାବୁଙ୍କ ସଙ୍ଗ ତ୍ୟାଗ କରିବାକୁ ମୁଁ ବାଧ୍ୟହୋଇପଡ଼ିଲି । ସେ ମଧ୍ୟ ମୋତେ ଉପଦେଶ ଦେଇ ସେ ପଥରୁ ଫେରାଇ ଦେଲେ । କିନ୍ତୁ ତାଙ୍କ ପ୍ରତି ମୋର ଯେଉଁ ଗଭୀର ଆନ୍ତରିକତା ତାହା ଆଜି ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଛି ।

ସତ୍ୟବ୍ରତ କହିଲେ : ଧନଞ୍ଜୟ ବାବୁ କ'ଣ ଆଜି ପର୍ଯ୍ୟନ୍ତ ସେହି ସବୁ ନାରୀମାନଙ୍କ ପଛରେ ଘୂରି ବୁଲୁଥିଲେ ?

ମାଧବନ କହିଲେ : ଧନଞ୍ଜୟବାବୁଙ୍କର ନାରୀମାନଙ୍କ ପ୍ରତି ଭୀଷଣ ଆସକ୍ତି ଥିଲା । ନୂତନ କୌଣସି ସୁନ୍ଦରୀ ନାରୀର ସନ୍ଧାନ ପାଇଲେ ସେ ଆହାର ନିଦ୍ରା ଭୁଲି ଯାଉଥିଲେ । ଜୀବନପଣ କରି ସେ ସେହି ନାରୀ ସହିତ ଆଳାପ କରିବା ପାଇଁ ଛୁଟିଯାଉଥିଲେ । ନାରୀର ବୟସ ସମ୍ବନ୍ଧରେ ତାଙ୍କ ଆଖିରେ କୌଣସି ବାଡ଼ ନଥିଲା ।

: ହୁଁ, ଆପଣ ତା' ହେଲେ ଧନଞ୍ଜୟବାବୁଙ୍କ ପାରିବାରିକ ଜୀବନ ସମ୍ବନ୍ଧରେ କିଛି ଜାଣି ନାହାନ୍ତି ?

: ମୋର ଧାରଣା, ମାଧବନ ଟିକିଏ ଚିନ୍ତାକରି କହିଲେ, ତାଙ୍କର ପାରିବାରିକ ଜୀବନ ବୋଇଲେ କିଛି ନ ଥିଲା । କାରଣ ମୋର ତାଙ୍କ ସହିତ ପରିଚୟ ପ୍ରାୟ କୋଡ଼ିଏ ବର୍ଷରୁ ଅଧିକ ହେବ । ଏହି କୋଡ଼ିଏ ବର୍ଷ ମଧ୍ୟରୁ ଅନ୍ତତଃ ଦଶଟି ବର୍ଷ ମୁଁ ତାଙ୍କ ସହିତ ନିବିଡ଼ ଭାବରେ ମିଶିଛି; କିନ୍ତୁ କୌଣସି ଦିନ ତାଙ୍କର କୌଣସି ଜଣେ ଆତ୍ମୀୟଙ୍କୁ ତାଙ୍କ ଘରେ ଦେଖି ନାହିଁ କିମ୍ବା କେହି ଜଣେ ଆତ୍ମୀୟ ଥିବା କଥା ତାଙ୍କ ମୁହଁରୁ ଶୁଣି ନାହିଁ । ସେ କେବଳ ବଂଧୁ ବାନ୍ଧବଙ୍କ ମେଳରେ ଆନନ୍ଦ କଳରୋଳ ଭିତରେ ନିଜକୁ କଟାଇ ଆସିଛନ୍ତି । ଅବଶ୍ୟ ଏବେ ଶେଷ ଆଡ଼କୁ କେଇ ବର୍ଷ ହେବ ମୁଁ ତାଙ୍କୁ ଟିକିଏ ନିଷ୍ପ୍ରଭ ଦେଖୁଥିଲି । ସେ କିପରି ଚୁପ୍‌ଚାପ୍ ହୋଇ ଉଠୁଥିଲେ । ତା'ନହେଲେ....

ମାଧବନଙ୍କ ନୀରବତା ପରେ ସତ୍ୟବ୍ରତ କହିଲେ : ଧନଞ୍ଜୟବାବୁଙ୍କର ଏହି ହତ୍ୟା ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ମୁଁ ସ୍ତବ୍ଧ ହୋଇଯାଇଛି ମିଷ୍ଟର ମହାପାତ୍ର । କାରଣ ଧନଞ୍ଜୟବାବୁଙ୍କୁ କେହି ହତ୍ୟା କରିପାରେ ଏ ମୋର ସଂପୂର୍ଣ୍ଣ ଧାରଣା ବାହାରର କଥା । କାଲି ଯେତେବେଳେ ଆପଣ ଫୋନ୍ କରି ମୋତେ ସଂବାଦଟା ଜଣାଇଲେ, ମୁଁ ବିଶ୍ୱାସ କରି ପାରିଲି ନାହିଁ ।

: ଆଚ୍ଛା, ଜଲିକି ଆପଣ ଚିହ୍ନନ୍ତି ?

: ଜଲି କିଏ ?

: ଧନଞ୍ଜୟବାବୁଙ୍କ ଅଙ୍କଲ ଡାକୋ ରାଞ୍ଚିରେ ତାଙ୍କର କୌଣସି ଆତ୍ମୀୟଙ୍କର ଝିଅ । ବୁଲିବାକୁ ଆସିଛି । ଏବେ ବି ତାଙ୍କ ଘରେ ଅଛି । ସତ୍ୟବ୍ରତ କହିଲେ ।

ମାଧବନ ମୁହଁରେ ସ୍ମିତ ହସର ରେଖା ଫୁଟିଉଠି ପୁଣି ଲୀନ ହୋଇଗଲା । ସେ କହିଲେ, : ଧନଞ୍ଜୟବାବୁ ଆଜି ସ୍ୱର୍ଗରେ । ତାଙ୍କ ଆତ୍ମାର ଅସଦ୍‌ଗତି କାମନା ମୁଁ କରୁଛି । କିନ୍ତୁ ଧନଞ୍ଜୟବାବୁଙ୍କର ଘରେ ସବୁବେଳେ ଜଣେ ଦି'ଜଣ ନାରୀ ଥାଆନ୍ତି । ସେମାନେ ଯେ ତାଙ୍କର କୌଣସି ଆତ୍ମୀୟା ନୁହନ୍ତି ମୁଁ ଏକଥା ଜୋର୍‌ଗଳାରେ କହିପାରେ । ଜଲି ହୁଏତ ସେହିପରି ଜଣେ କେହି ଆତ୍ମୀୟାର ଝିଅ ହୋଇଥିବେ, ମୁଁ ଚିହ୍ନି ନାହିଁ । ପ୍ରାୟ ଛଅ ମାସ ହେବ ତାଙ୍କ ସହିତ ମୋର ଦେଖା ହୋଇ ନାହିଁ ।

: ଆଚ୍ଛା, ଆମେ ବର୍ତ୍ତମାନ ଉଠୁଛୁ । ଧନଞ୍ଜୟବାବୁଙ୍କ ସମ୍ବନ୍ଧରେ ଆପଣଙ୍କଠାରୁ ଯେତିକି ଆଲୋକ ପାଇଲୁ, ସେତିକିର ମୂଲ୍ୟ ଆମ ପକ୍ଷରେ ବୁହୁଗୁଣ । ତଥାପି ଆପଣଙ୍କୁ ବିରକ୍ତି କରିଥିବାରୁ କ୍ଷମା କରିବେ ।

ସେମାନଙ୍କ ସଙ୍ଗରେ ମାଧ ବନ ଉଠି ଠିଆହୋଇ ବିନୀତ ସ୍ୱରରେ କହିଲେ : ନା, ନା ମିଷ୍ଟର ମହାପାତ୍ର ! ଆପଣମାନେ ମୋତେ ଆଦୌ ବିରକ୍ତ କରି ନାହାନ୍ତି; ବରଂ ବଂଧୁଙ୍କ ପ୍ରତି ମୋର ଗୋଟାଏ କର୍ତ୍ତବ୍ୟ ଅଛି । ସେହି କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ତ କିଛି କରିପାରୁ ନାହିଁ ।

ସତ୍ୟବ୍ରତ କହିଲେ : ଆପଣଙ୍କୁ ଅଶେଷ ଧନ୍ୟବାଦ, ଦରକାର ହେଲେ ପୁଣି ଆସି ବିରକ୍ତ କରିବୁ ।

ମାଧବନଠାରୁ ବିଦାୟ ନେଇ ସତ୍ୟବ୍ରତ ଜନ ପିଟରଙ୍କ ଉଦ୍ଦେଶ୍ୟରେ ଯାତ୍ରାକଲେ ।

ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ ସତ୍ୟବ୍ରତଙ୍କ ମନରେ ଯେପରି ଏକ ଧାରଣା ସୃଷ୍ଟି ହୋଇଥିଲା, ସେ ଧାରଣା ଭିନ୍ନ ମାର୍ଗରେ ଧାବିତ ହେବାକୁ ଲାଗିଲା ।

ସବ୍ୟସାଚୀ କେବଳ ନୀରବ ଦର୍ଶକର ଭୂମିକା ଗ୍ରହଣ କରି ଚାଲିଥିଲା ।

ଦୁହେଁ ଟ୍ୟାକ୍‌ସିରେ ବସିଲେ ।

ଜନ୍ ପିଟରଙ୍କ ପାଖକୁ ଯାଇ କେଉଁ ପରିସ୍ଥିତିର ସମ୍ମୁଖୀନ ହେବେ କିଏ ଜାଣେ ?

ବହୁ ସମୟ ପରେ ସତ୍ୟବ୍ରତ କହିଲେ : ଜନ୍ ପିଟର ଜଣେ ସୁନ୍ଦର ବେହେଲା ବାଦକ । ସେଦିନ ମୁଁ ତାଙ୍କର କରୁଣ ମୂର୍ଚ୍ଛନାର ସ୍ୱର ଟେଲିଫୋନ୍‌ରେ ଶୁଣିଛି ।

ସବ୍ୟସାଚୀ କିଛି କହିଲା ନାହିଁ ।

ବାହାରକୁ ଚାହିଁ ଗାଡ଼ି, ଘୋଡ଼ା, ମଣିଷ ଦେଖୁଥିଲା ।

ସତ୍ୟବ୍ରତ ପୁଣି କହିଲେ : ଏହା ପରେ ରମାନାଥ ମଲ୍ଲିକ ପାଖକୁ ଯିବା । ତା'ପରେ ବାରିଷ୍ଟର ସାହେବ । ସେଉଠୁ ମୋର ଛୁଟି ।

ସବ୍ୟସାଚୀ କ'ଣ କହିବାକୁ ଯାଉଥିଲା, ଟ୍ୟାକ୍‌ସି ଚାଳକ ହଠାତ୍ ଟ୍ୟାକ୍ସି ଅଟକାଇ କହିଲା : ଏଇ ଯୋଡ଼ା ଗିର୍ଜା । ଆପଣ ଏଇଠି ଓହ୍ଲେଇବେ ନା ଆଗକୁ ଯିବେ ।

ସତ୍ୟବ୍ରତ ମହାପାତ୍ର ଟିକିଏ ଚିନ୍ତା କରି କହିଲେ : ଏଇ ବାଁପାଖକୁ ଯେଉଁ ରାସ୍ତା ଯାଇଛି, ସେଇ ରାସ୍ତାରେ ଆମକୁ ଛାଡ଼ିଦେଇ ଯାଅ ।

ଟ୍ୟାକ୍‌ସି ଚାଳକ ଆଉ ଟିକିଏ ଆଗେଇ ଯାଇ ବାଁଆଡ଼କୁ ବାଙ୍କିଗଲା ।

ସାତ ନମ୍ବର ଘରଦୁଆରେ ଟ୍ୟାକ୍‌ସି ଠିଆହେଲା ।

ସତ୍ୟବ୍ରତ ଓ ସବ୍ୟସାଚୀ ଟ୍ୟାକ୍‌ସିରୁ ଓହ୍ଲେଇ ଆସିଲେ । ଗୋଟିଏ ଭଙ୍ଗା ଜୀର୍ଣ୍ଣ କୋଠା । ବହୁ ପୁରୁଣା । କଙ୍କାଳ ପରି ପୁରାତନର ସାକ୍ଷ୍ୟ ବହନ କରି ଠିଆହୋଇଛି । ଦୋତାଲାର କାଠ ବାରଣ୍ଡାଟା ଠାଏ ଠାଏ ଭାଙ୍ଗିଯାଇଛି, କେଇଟା ପକ୍ଷୀ ପଞ୍ଜୁରି ଟଙ୍ଗା ହୋଇଛି ।

ସତ୍ୟବ୍ରତ ଟ୍ୟାକ୍‌ସି ଚାଳକର ଭଡ଼ା ତୁଟେଇ ଦେଇ କୋଠାଦୁଆର ମୁହଁରେ ଯାଇ ଠିଆହେଲା ।

ଏଇ ଘରେ ଜନ୍ ପିଟର ରୁହେ ତ ?

ଦରଜା ପାଖକୁ ଆଗେଇ ଯାଇ କଡ଼ା ହଲେଇଲେ ।

ଦୂରରୁ ଏକ ଗମ୍ଭୀର କଣ୍ଠସ୍ୱର ଶୁଣାଗଲା ।

କିଛି ସମୟ ପରେ ଦରଜାଟା ଖୋଲିଗଲା ।

ସାମ୍‌ନାରେ ଏକ ବିଶାଳକାୟ ଭଦ୍ରଲୋକ । ଲମ୍ବା, ବଳିଷ୍ଠ, ବୟସ୍କ ମଧ୍ୟ ।

ସତ୍ୟବ୍ରତ ବୋଧହୁଏ ବିଶ୍ୱାସ କରି ପାରିଲେ ନାହିଁ । ପଚାରିଲେ: ଜନ୍ ପିଟର ଏଠାରେ ରୁହନ୍ତି ?

ଲୋକଟି କହିଲା : ମୋ'ରି ନାମ୍ ଜନ୍ ପିଟର । ଆପଣମାନେ ଯଦି ହଲ ବୁକ୍ କରିବାକୁ ଆସିଥାଆନ୍ତି, ଦୟାକରି ଆଜି ଫେରିଯାଆନ୍ତୁ ।

ସତ୍ୟବ୍ରତ କହିଲେ : ଆମେ ଆସିଛୁ ଅନ୍ୟ କାମରେ । ଆପଣ ଭିତରକୁ ଚାଲନ୍ତୁ । ଆପଣଙ୍କ ସହିତ କେତେକ ଜରୁରୀ କଥା ଅଛି ।

ଜନ୍ ପିଟର ଚେହେରାରେ ଭୟାଳୁ ହେଲେ ମଧ୍ୟ, ତାଙ୍କର ଆଖି ଦୁଇଟିରେ କାତରତା ଫୁଟି ଉଠୁଥିଲା । ସତ୍ୟବ୍ରତ ଲକ୍ଷ୍ୟ କରିଥିଲେ ଏହି ବିଶାଳକାୟ ଭଦ୍ରଲୋକ ଜଣକ କୌଣସି କାରୁଣରୁ ଖୁବ୍ ବିପନ୍ନ । ବର୍ତ୍ତମାନ ତାଙ୍କ ପାଇଁ ସାନ୍ତ୍ୱନା ହୁଏତ ଏକମାତ୍ର ପ୍ରୟୋଜନ ହୋଇ ଉଠିଛି ।

ଜନ୍ ପିଟର ଗୋଟିଏ କାଠ ଶିଡ଼ି ଦେଇ ଉପରକୁ ଉଠିଚାଲିଲେ ।

ପଛେ ପଛେ ଚାଲିଥିଲେ ସତ୍ୟବ୍ରତ ଓ ସବ୍ୟସାଚୀ ।

ଜନ୍ ପିଟର ସେମାନଙ୍କୁ ଦୋତାଲାର ଗୋଟିଏ ଘର ଦେଖାଇ ଦେଇ ବସିବାକୁ କହିଲେ ।

ସେ ଘରେ ଗୋଟିଏ ତକ୍ତପୋଷ ଉପରେ ଗଦି ପଡ଼ିଥିଲା ଏବଂ ଗଦି ଉପରେ ଗୋଟିଏ ସୋଫା ଚଦର ବିଛା ହୋଇଥିଲା । ସେହି ଗଦି ଉପରେ ଥୁଆହୋଇଥିଲା ଗୋଟଏ ବେହେଲା, ଫ୍ଲୋର୍ ଉପରେ ଅନାବନା ହୋଇ ଥୁଆହୋଇଥିଲା କେଇହଳ ଡୁବିତବଲା । ଆଉ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର କେତୋଟି ।

ଘର ଧୂପର ବହଳରେ ମହକି ଉଠୁଥିଲା । ସତ୍ୟବ୍ରତ ବୁଲିପଡ଼ି ପଛକୁ ଚାହିଁ ଦେଖିଲେ, ଦିଆଲରେ ଜଣେ ମହିଳାଙ୍କର ଛବି ଟଙ୍ଗାହୋଇଛି । ସଦ୍ୟ ରଜନୀ ଗନ୍ଧାର ଗୋଟିଏ ମାଳ ଛବିଟିକୁ ବେଷ୍ଟନ କରିଛି । କେତେଗୁଡ଼ିଏ ଜ୍ୱଳନ୍ତ ଧୂପକାଠିରୁ ଧୂଆଁ ବାହାରୁଛି ।

ଜନ୍ ପିଟର ସେଇ ଛବିଟି ଆଡ଼େ ଅନାଇ କହିଲେ : ମୋର ଜଣେ ପରମ ଆତ୍ମୀୟା । କାଲି ହସ୍‌ପିଟାଲରେ ହଠାତ୍ ତାଙ୍କର ମୃତ୍ୟୁ ହୋଇଛି । ସେହି ଦୁଃସମ୍ବାଦଟା ମୋତେ ବିଚଳିତ କରି ପକାଇଛି । ମୁଁ ପାରୁନାହିଁ, କୌଣସି ପ୍ରକାର ନିଜକୁ ଆତ୍ମସ୍ଥ କରିପାରୁ ନାହିଁ ।

ଭଦ୍ରଲୋକଙ୍କ ଆଖି ଦୁଇଟି ଆହୁରି ଛଳ ଛଳ ହୋ ଆସିଲା । ମନେ ହେଉଥିଲା ଜନ୍ ପିଟର ଆଖିରେ ହୁଏତ ଏଇମାତ୍ର ଧାରାଶ୍ରାବଣ ଓହ୍ଲାଇ ଆସିବ ।

ସତ୍ୟବ୍ରତଙ୍କ ପ୍ରାଣଟା ବି ବ୍ୟଥିତ ହୋଇଉଠିଲା । ସେ କହିଲେ : ଆପଣଙ୍କର ଏଇ ଦୁଃଖ ମଣିଷର ନିତ୍ୟ ସହଚର । ସେହି ଦୁଃଖକୁ ଧାରଣ କରିବାର ଶକ୍ତି ଆମକୁ ଅର୍ଜନ କରିବାକୁ ହେବ: ତା' ନହେଲେ ମୋରି ପରି ପ୍ରତିଟି ମଣିଷ ଅସହାୟ ହୋଇଉଠିବେ ।

ଜନ୍ ପିଟରଙ୍କ ଆଖିରୁ ଦୁଇ ଟୋପା ଲୁହ ଝରିପଡ଼ିଲା ।

ସତ୍ୟବ୍ରତ ଏକ ଦୀର୍ଘଶ୍ୱାସ ପକାଇ ଘରୁ ବାହାରି ଆସିଲେ । ସାମ୍‌ନାରେ ଗୋଟିଏ ଛୋଟ ବାରଣ୍ଡା । ବାରଣ୍ଡାରେ କେତେଗୁଡ଼ିଏ ଫୁଲଗଛ । ଖୁବ୍ ସତେଜ, ଜୀବନ୍ତ ।

ଜନ୍ ପିଟର ବାହାରକୁ ବାହାରି ଆସି କହିଲେ : ଏଇ ଗଛ ଗୁଡ଼ିକରୁ ଦୁଇଦିନ ପରେ ଫୁଲଗୁଡ଼ିକ ଝରିପଡ଼ିବ । ପତ୍ର ମଉଳି ଯିବ । ସମସ୍ତ ସତେଜତା ହଜିଯିବ । ଖାଲି ଝଟା କେଇଖଣ୍ଡ ଠିଆ ହୋଇ ମୋତେ ବିଦ୍ରୂପ କରିବେ ।

ସତ୍ୟବ୍ରତ ଏହି ବିରାଟକାୟ ମଣିଷଟିର ଭଗ୍ନ ହୃଦୟ କଥା ବୁଝିପାରିଥିଲେ । ସେ ତା'ର ଆତ୍ମୀୟାକୁ ହରାଇ ନିଜକୁ ହରାଇ ବସିଛି । ବର୍ତ୍ତମାନ ଆଉ ଏଠାରେ ଅନ୍ୟ ପ୍ରସଙ୍ଗ ଉଠାଇବା ମାନେ ଜନ୍ ପିଟର ପ୍ରତି ଅନ୍ୟାୟ ଆଚରଣ କରାଯିବା ।

ସତ୍ୟବ୍ରତ ଇଙ୍ଗିତରେ ସବ୍ୟସାଚୀଙ୍କୁ ଡାକି ଫେରିଯାଉଥିଲେ ।

ଜନ୍ ପିଟର କିନ୍ତୁ ବାଟ ଓଗାଳିଲା ।

କହିଲା : ଆପଣମାନେ ଫେରିଯାଆନ୍ତୁ ନାହିଁ । ନିମି ବଞ୍ଚିଥିବା ଅବସ୍ଥାରେ ଏ ଘରୁ କେହି ଖାଲି ମୁହଁରେ ଫେରି ଯାଇପାରି ନାହିଁ । ସେ ଥିଲା ମୋର ପ୍ରାଣର ଉତ୍ସ । ଏହି ଘରର ପରିପୂର୍ଣ୍ଣ ଆନନ୍ଦ । ସେ ମୋତେ ଛାଡ଼ି ଚାଲିଯାଇଛି । ଆପଣମାନେ ଚାଲିଯାଆନ୍ତୁ ନାହିଁ, ମୁଁ ଆପଣଙ୍କୁ ବେହେଲା ବଜେଇ ଶୁଣେଇବି । ଆସନ୍ତୁ ଏଇ ଘରକୁ ଆସନ୍ତୁ ।

ଜନ୍ ପିଟର ସତ୍ୟବ୍ରତ ଓ ସବ୍ୟସାଚୀଙ୍କୁ ଆଉ ଗୋଟିଏ ଘରକୁ ଡାକି ନେଇଗଲା ।

ସେ ଘରଟି ଅପେକ୍ଷାକୃତ ବଡ଼ । ବିଭିନ୍ନ ଧରଣର ବାଦ୍ୟଯନ୍ତ୍ରରେ ପୂର୍ଣ୍ଣ ।

ଜନ୍ ପିଟର ସବୁ ଯନ୍ତ୍ରଗୁଡ଼ିକରେ ଥରେ ଥରେ ହାତମାରି ଦେଇ କହିଲା : ମୋର ଗୋଟିଏ ଅର୍କେଷ୍ଟ୍ରା ପାର୍ଟି ଅଛି । ମୁଁ ତା'ର ପରିଚାଳକ । କିନ୍ତୁ ଏହି ପାର୍ଟିର ପ୍ରାଣଥିଲା ନିମି; ତା'ରି ଉଦ୍ୟମରେ ଗଢ଼ିଉଠିଥିଲା ଏହି ପାର୍ଟିଟି । ଭାରତବର୍ଷରେ ଯଥେଷ୍ଟ ସୁନାମ ଆମେ କରିଛୁ । କିନ୍ତୁ ଏହାପରେ ଆଉ....

ଜନ୍ ପିଟରଙ୍କ ହୃଦୟବିଦାରି ଏକ ଦୀର୍ଘଶ୍ୱାସ ବହି ଆସିଲା । ଟେବୁଲ୍ ଉପରେ ଥୁଆ ହୋଇଥିବା ଗୋଟିଏ ବେହେଲା ଉଠାଇ ଆଣି କାନ୍ଧରେ ଲଗାଇଲେ, ଛଡ଼ିଟା ଆଣି ଗୋଟାଏ ଟାଣଦେଲେ ତାରଗୁଡ଼ିକ ଉପରେ ।

ଇସ୍..... ଯେପରି ମଣିଷର ପଞ୍ଜରା ହାଡ଼ଟା ଖୋଲି ଅଲଗା ହୋଇଯିବ ନିମିଷକେ !

ସତ୍ୟବ୍ରତ ଜନ୍ ପିଟରଙ୍କ ହାତଟା ଧରି ପକାଇ ଶାନ୍ତ ସ୍ୱରରେ କହିଲେ : ଆଜି ଥାଉ, ଆପଣ ଭୀଷଣ କ୍ଳାନ୍ତ, ଦେହ ମନରେ କ୍ଷତ-ବିକ୍ଷତ, ଆମେ ଆଉ ଦିନେ ଆସି ଆପଣଙ୍କ ବାଜଣା ଶୁଣିବୁ ।

ଜନ୍ ପିଟର କରୁଣ ଆଖିରେ ଚାହିଁ ବେହେଲାଟିକୁ କାନ୍ଧରୁ ଓହ୍ଲାଇ ପୁଣି ନିର୍ଦ୍ଦିଷ୍ଟ ସ୍ଥାନରେ ରଖିଦେଲେ ।

ସାମାନ୍ୟ ପ୍ରକୃତିସ୍ଥ ହୋଇ ସତ୍ୟବ୍ରତ ଆଡ଼େ ଚାହିଁଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ଆସିଥିଲି ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ କେତେକ କଥା ଜାଣିବାକୁ । ଆଜି ଥାଉ, ଆପଣ ଅସୁସ୍ଥ । ପରେ କେବେ ଆସିବି ।

ଜନ ପିଟର କହିଲେ : ଧନଞ୍ଜୟ ବୈରାଗୀଙ୍କୁ ମୁଁ ଚିହ୍ନେ । ସେ ମୋର ଜଣେ ପରମ ବଂଧୁ । କିନ୍ତୁ ତାଙ୍କ ସହିତ ବନ୍ଧୁତା ମୋର ରେସ୍ କୋର୍ସରେ । ମୁଁ ଯେଉଁଦିନ ରେସ୍ ଖେଳିବାକୁ ଯାଏ ତାଙ୍କ ସହିତ ଦେଖାହୁଏ । ଭଦ୍ରଲୋକ ଖୁବ୍ ହିସାବୀ । ରେସ୍ ଘୋଡ଼ାମାନଙ୍କ ସମ୍ବନ୍ଧରେ ତାଙ୍କର ଗଭୀର ଜ୍ଞାନ ।

ସତ୍ୟବ୍ରତ ମହାପାତ୍ର ଜନ୍ ପିଟର ମୁଖରୁ ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ ନୂତନ ଏକ ଦିଗର ସନ୍ଧାନ ପାଇ ସ୍ଥିର ହୋଇଯାଇଥିଲେ । କିଛି ସମୟ ପର୍ଯ୍ୟନ୍ତ ତାଙ୍କ ପାଟିରୁ କଥା ବାହାରି ନ ଥିଲା ।

ଜନ୍ ପିଟର ପୁଣି ନୀରବତା ଭଙ୍ଗ କରି କହିଲେ : ଆପଣ ଯଦିଓ ଏ ଲାଇନ୍‌ରେ ନୂଆ ହୋଇଥାଆନ୍ତି, ତା'ହେଲେ ଧନଞ୍ଜୟ ବୈରାଗୀଙ୍କ ସାହାଯ୍ୟ ନେଇପାରନ୍ତି । ଭଦ୍ରଲୋକ ଖୁବ୍ ଅମାୟିକ ଲୋକ । ଆପଣଙ୍କମାନଙ୍କୁ ସଙ୍ଗରେ ଧରି ଧନଞ୍ଜୟବାବୁଙ୍କ ପାଖକୁ ନେଇ ଯାଇଥାଆନ୍ତି । କିନ୍ତୁ ଆଜି ମୁଁ କ୍ଳାନ୍ତ ।

ଅବଶ୍ୟ ଏଇ କ୍ଲାନ୍ତିର କିଛି ଅର୍ଥ ନାହିଁ ମିଷ୍ଟର ମହାପାତ୍ର । ପ୍ରତି ମଣିଷ ଜୀବନରେ ଏହିପରି କେତେଗୁଡ଼ିଏ ବିୟୋଗାନ୍ତ ଦୃଶ୍ୟର ଅବତାରଣା ହୋଇଥାଏ । ଧୀରେ ଧୀରେ ସବୁ ପୁଣି ଠିକ୍‌ହୋଇଯାଏ । ମୁଁ ବି ଦୁଇଦିନ ପରେ ଠିକ୍ ହୋଇଯିବି । ନିମି ଧୀରେ ଧୀରେ ଲୀନ ହୋଇଯିବ ମୋର ଆତ୍ମସତ୍ତାର ଗଭୀର ଗହ୍ୱରରେ ।

ଜନ୍ ପିଟର ଏଥର ହସିବାକୁ ଚେଷ୍ଟା କଲେ ।

କିନ୍ତୁ ସେ ହସ, କରୁଣ, ବିକଳ ।

ସତ୍ୟବ୍ରତ କହିଲେ : ନା, ଆମ ପାଇଁ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ, ଆପଣ ବର୍ତ୍ତମାନ ବିଶ୍ରାମ କରନ୍ତୁ । ଆପଣଙ୍କର ବର୍ତ୍ତମାନ ବିଶ୍ରାମର ଅଶେଷ ପ୍ରୟୋଜନ । ଆମେ ପୁଣି ଆସିବୁ, ପୁଣି ଦେଖା ହେବ ।

ସତ୍ୟବ୍ରତ ଫେରିଆସୁଥିଲେ ।

ଜନ୍ ପିଟର ବେହେଲାଟି ଉଠାଇ ପୁଣି କାନ୍ଧ ଉପରେ ରଖିଲେ ।

ସବ୍ୟସାଚୀ ରାସ୍ତାକୁ ଓହ୍ଲାଇ ଯାଇ କହିଲା : ତୁ କାହା ପଛରେ ଛୁଟିଛୁ ସତ୍ୟ ! ଧନଞ୍ଜୟ ବୈରାଗୀ ଯେ ଦିନକୁ ଦିନ ଜଣେ ମହାପୁରୁଷରେ ପରିଣତ ହେବାକୁ ଯାଉଛନ୍ତି !

ସତ୍ୟବ୍ରତ କହିଲା : ସେଇଆ ତ ମନେହେଉଛି । ଜଣକ ମୁହଁରୁ ଶୁଣିଲେ ଧନଞ୍ଜୟ ବୈରାଗୀ ରେସ୍ ଖେଳର ମାଷ୍ଟର । ଏହାପରେ ଆହୁରି ଯେତେବେଳେ ଶୁଣିବା......

ସାମ୍ନାରେ ଗୋଟାଏ ଖାଲି ଟ୍ୟାକ୍ସି ଦେଖି ପାଟିକରି ଡାକିଲେ ।

ଏହାପରେ ରମାନାଥ ମଲ୍ଲିକଙ୍କ ପାଖକୁ ଯିବାକୁ ହେବ । ପକେଟରୁ ଖଣ୍ଡିଏ ଲେଖା କାଢ଼ି ଟ୍ୟାକ୍ସି ଚାଳକକୁ ଠିକଣାଟି କହିଲେ ।

ସବ୍ୟସାଚୀ ଟ୍ୟାକ୍ସିରେ ବସି କହିଲା : ତୁ ତ ଆଜି ଗୋପାଳପୁର ଚାଲିଯିବୁ । ଫେରୁ ଫେରୁ ନିଶ୍ଚୟ ଚାରି ପାଞ୍ଚଦିନ ଡେରି ହେବ ।

: ବେଶି ଡେରି ବି ହୋଇପାରେ ।

: ଚାରି ପାଞ୍ଚଦିନରୁ ବି ବେଶି ସମୟ ଲାଗିବ ?

: କିଏ ଜାଣେ କେଉଁ ଫାନ୍ଦରେ ମୁଁ ଗୋଡ଼ ଦେବାକୁଯାଉଛି ।

ଧନଞ୍ଜୟ ବୈରାଗୀ ତ ସେହି ଫାନ୍ଦ ଦେଖିବା ପୂର୍ବରୁ ଇହଜଗତରୁ ବିଦାୟ ନେଇ ଗଲେ । ଆଉ ମୁଁ.....

: ମାନେ ଘଟଣାଟା ଖୁବ୍ ଅସ୍ପଷ୍ଟ, ନାଁରେ ସତ୍ୟ !

: ଖାଲି ଅସ୍ପଷ୍ଟ ନୁହେଁ, ରହସ୍ୟାବୃତ୍ତ ମଧ୍ୟ । ମୋର ମନେହେଉଛି ଧନଞ୍ଜୟ ବୈରାଗୀଙ୍କର ମୃତ୍ୟୁ ନିଦାନ ସେଉଠୁ ସ୍ଥିର ହୋଇଛି ।

: ଦୂର୍, ସେଇଟା କିପରି ସମ୍ଭବ ?

: ଧନଞ୍ଜୟ ବୈରାଗୀ କହୁଥିଲେ ସେମାନେ ଇନ୍‌କ୍ୱାରୀରେ ଆସିଥିଲେ । ବୋଧହୁଏ ଧନଞ୍ଜୟବାବୁଙ୍କର ଧନସମ୍ପଦ ସଂପର୍କରେ ଯେଉଁସବୁ ବିବରଣୀ ଦିଆଯାଇଥିଲା, ସବୁ ଗୁଡ଼ିକ

ତ ଅତିରଞ୍ଜିତ ହୋଇଥିଲା, ଫଳରେ ସେମାନେ କିଛି ନ ପାଇ ଏହିପରି ଗୋଟାଏ ଦୁର୍ଘଟଣା ଘଟାଇ ଚାଲିଯାଇଛନ୍ତି ?

: ତା'ହେଲେ ତୁ କହିବାକୁ ଚାହୁଁ ଦ୍ୱାରିକାନାଥ ଗୋଏଙ୍କାଙ୍କ କେସ୍‌ରେ ବି ସେମାନେ ଇନ୍‌କ୍ୱାରୀ କରିଛନ୍ତି ?

: ଅସମ୍ଭବ ବି ନୁହେଁ । କାରଣ ମିଷ୍ଟର ଗୋଏଙ୍କାଙ୍କ ଧନ ସମ୍ବନ୍ଧରେ ଯାହା ବିବରଣୀ ଦିଆହୋଇଥିଲା ତାହା ସତ୍ୟ । ବହୁ କ୍ଷେତ୍ରରେ ବରଂ କମେଇ ଦିଆହୋଇଥିଲା ।

: ତା'ହେଲେ ତୁ କହିବାକୁ ଚାହୁଁ କାଗଜରେ ଯେଉଁ ବିଜ୍ଞାପନଟି ବାହାରିଥିଲା, ସେ ବିଜ୍ଞାପନ ସାହାଯ୍ୟରେ ସେମାନେ କେବଳ କେତେକ ପାର୍ଟିର ଠିକଣା ଜାଣିବାକୁ ଚାହିଁଥିଲେ ।

: ପାର୍ଟିର ତ ନିଶ୍ଚୟ, ତା'ଛଡ଼ା ସେମାନେ କେତେଗୁଡ଼ିଏ ବିକୃତମନ ମଣିଷ ଏବଂ କେତେଗୁଡ଼ିଏ ଆଡ଼ଭେଞ୍ଚରିଷ୍ଟଙ୍କୁ ନିଜ କବଳରେ ପକାଇବାକୁ ଚାହିଁଛନ୍ତି । ଏହି ଶ୍ରେଣୀୟ ଲୋକଗୁଡ଼ାଙ୍କୁ କାବୁ କରିବା ଅତି ସହଜ ।

: ତୁ ଭାବୁଛୁ ସେଇ ବିଜ୍ଞାପନରେ ଆକୃଷ୍ଟ ହୋଇ କ'ଣ ଅନେକ ଲୋକ ଦରଖାସ୍ତ କରିଥିବେ ?

: ଅନେକ ନିଶ୍ଚୟ କରିଥିବେ । ତେବେ ସେମାନଙ୍କର ସଂଖ୍ୟା କେତେ ହୋଇ ପାରେ ଯଦି ପଚାରୁ ତା'ହେଲେ ମୁଁ ନାଚାର ।

ଟ୍ୟାକ୍‌ସି ଆସି ମଲ୍ଲିକ ବଜାରରେ ପହଞ୍ଚି ଯାଇଥିଲା ।

ଦୁଇଜଣଯାକ ଟ୍ୟାକ୍‌ସିରୁ ଓହ୍ଲାଇ ରମାନାଥ ମଲ୍ଲିକଙ୍କର ଦୋକାନଟା ଖୋଜିବାକୁ ଭିତରେ ପଶିଲେ ।

ସେଠାରେ ରମାନାଥ ମଲ୍ଲିକଙ୍କୁ ସମସ୍ତେ ଚିହ୍ନନ୍ତି । ତାଙ୍କ ଦୋକାନଟା ତା'ଭିତରେ ଅପେକ୍ଷାକୃତ ବଡ଼ ଦୋକାନ ।

ରମାନାଥ ମଲ୍ଲିକ ଯେପରି ଏମାନଙ୍କର ପ୍ରତୀକ୍ଷା କରିଥିଲେ ।

ସତ୍ୟବ୍ରତ ଆଉ ସବ୍ୟସାଚୀ ପରିଚୟ ଦେବା ମାତ୍ରକେ ରମାନାଥ ମଲ୍ଲିକ କୃତ୍ୟ କୃତ୍ୟ ହୋଇପଡ଼ିଲେ ।

ଅଫିସ୍ ଘର ଭିତରକୁ ନେଇ ଆଦରରେ ବସାଇଲେ ।

ସତ୍ୟବ୍ରତ କହିଲେ : ପ୍ରଥମ ଥର ଆପଣଙ୍କୁ ଯେତେବେଳେ ଫୋନ୍ କରିଥିଲି, ଆପଣଙ୍କ ସମ୍ବନ୍ଧରେ ମୋ ମନରେ କିନ୍ତୁ ଗୋଟାଏ ଖରାପ ଧାରଣା ହୋଇଥିଲା ।

ରମାନାଥ ମଲ୍ଲିକ୍‌ଙ୍କ ମୁହଁରେ ଖଣ୍ଡେ କୃତ୍ରିମ ହସ ଫୁଟିଉଠିଲା । ସେ ତାଙ୍କର ହାତ ଦୁଇଟାକୁ ମଳୁ ମଳୁ କହିଲେ : ଅନେକ ସମୟରେ ଲୋକମାନଙ୍କ ସହିତ ମୋତେ ରୁକ୍ଷ ବ୍ୟବହାର କରିବାକୁ ହୋଇଥାଏ ସାର୍ । ମୋର ବ୍ୟବସାୟ, ଜାଣନ୍ତି ତ ଆଜ୍ଞା, ଯେତେ ସବୁ ଚୋର ଚୋଠାଙ୍କୁ ନେଇ । ସେମାନଙ୍କ ସହିତ ରୁକ୍ଷ ଆଉ ଅମାନୁଷିକ ବ୍ୟବହାର କରି କରି ମୋ ସ୍ୱଭାବଟା କିପରି ବଦଳି ଗଲାଣି । ମୁଁ ବି ବେଳେ ବେଳେ ସେ କଥା ଚିନ୍ତାକରେ । କିନ୍ତୁ ଉପାୟ କ'ଣ !

ସତ୍ୟବ୍ରତ କହିଲେ : ଏଥର ଆପଣ ଆମକୁ ଧନଞ୍ଜୟବାବୁଙ୍କ ସମ୍ବନ୍ଧରେ କିଛି କୁହନ୍ତୁ । ତାଙ୍କର ହତ୍ୟାକାରୀକୁ ଖୋଜି ବାହାର କରିବାର ଦାୟିତ୍ୱ ଆମେ ନେଇଛୁ । ତେଣୁ

ଆପଣମାନଙ୍କ ପରି ତାଙ୍କର ହିତାକାଂକ୍ଷୀ ବଂଧୁମାନଙ୍କ ସହଯୋଗ ଛଡ଼ା ଆମ ପକ୍ଷରେ ପାଦେ ଆଗେଇବା ବି ସମ୍ଭବ ହେବ ନାହଁ ।

ଏହି ସମୟରେ ଗୋଟିଏ ଲୋକ କିଛି ଖାଦ୍ୟ ସାମଗ୍ରୀ ଧରି ସେହି ଘର ଭିତରେ ପ୍ରବେଶ କଲା ।

ସତ୍ୟବ୍ରତ କହିଲେ : ଏସବୁ ବ୍ୟବସ୍ଥା କାହିଁକି କଲେ ?

ରମାନାଥ ମଲ୍ଲିକ ତାଙ୍କର ସ୍ୱଭାବସିଦ୍ଧ ଏକ ଅସ୍ୱାଭାବିକ ଭଙ୍ଗୀରେ ହସୁ ହସୁ କହିଲେ: ଆପଣମାନେ ହେଲେ ଜନତାର ପରମ ବନ୍ଧୁ । ଆପଣମାନଙ୍କୁ ସେବା କରିବାର ସୌଭାଗ୍ୟ ଆମମାନଙ୍କ ପରି କେତେଜଣଙ୍କ କପାଳରେ ଜୁଟିଥାଏ ? ମାତ୍ର ସାମାନ୍ୟ ଜଳ ଯୋଗର ବ୍ୟବସ୍ଥା ହୋଇଛି । ପ୍ରଥମେ ଏତକ ଶେଷ ହୋଇଯାଉ ତା'ପରେ କାମର କଥା ହେବ ।

ସତ୍ୟବ୍ରତ ଆଉ କୌଣସି ପ୍ରତିବାଦ କରିଲେ ନାହିଁ । କାରଣ ସେ ବୁଝି ପାରିଥିଲେ ରମାନାଥ ମଲ୍ଲିକ ଲୋକ ସହଜ ନୁହେଁ । ଗଭୀର ଜଳର ମାଛ । ତଥାପି କାମ ହାସଲ କରିବାକୁ ହେବ ।

ଜଳଯୋଗର ପର୍ବ ପରେ ସତ୍ୟବ୍ରତ କହିଲେ : ଏଥର ଆପଣ କୁହନ୍ତୁ ମିଷ୍ଟର ମଲ୍ଲିକ୍ । ଧନଞ୍ଜୟବାବୁଙ୍କୁ ଆପଣ କେତେ ଦିନରୁ ଚିହ୍ନନ୍ତି, ତାଙ୍କ ସହିତ ଆପଣଙ୍କ ସଂପର୍କ କ'ଣ, ତାଙ୍କର ଏହି ହତ୍ୟାକାଣ୍ଡ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ରାମାନାଥ ମଲ୍ଲିକ୍ ସେହିପରି ଆଉ ଥରେ ହସି ଆରମ୍ଭ କଲେ, : ଧନଞ୍ଜୟବାବୁ ମୋର ଗୁରୁଦେବ । ଏ ସଂସାର କ୍ଷେତ୍ରରେ ମୁଁ ଯଦି ଆଜି ଜୀବନ ଧାରଣ କରି ବଞ୍ଚି ରହିଥାଏ, ତା'ହେଲେ ତା' ମୂଳରେ ଅଶେଷ ଚେଷ୍ଟା ଅଛି ଧନଞ୍ଜୟବାବୁଙ୍କର ।

ଯୋଡ଼ହାତ କରି ରମାନାଥ ମଲ୍ଲିକ ନମସ୍କାର କଲେ ।

ତା'ପରେ ଆଖିବୁଜି କିଛି ସମୟ ଚିନ୍ତାକରି କହିଲେ : ଏଇ ଯେଉଁ ଦୋକାନରେ ଆପଣ ବସିଛନ୍ତି, ଏଇ ଦୋକାନଟାର ମାଲିକ ପ୍ରକୃତରେ ହେଉଛନ୍ତି ଧନଞ୍ଜୟବାବୁ । ସେ ଆଜି ସ୍ୱର୍ଗରେ ମୁଁ ମୋଟେ ବେଇମାନି କରିବି ନାହିଁ । ତା'ଛଡ଼ା ଦୁନିଆରେ ତାଙ୍କର ନିଜର ହୋଇ ତ କେହି ନାହାନ୍ତି, ତେଣୁ.......

ରମାନାଥ ବାବୁ ପୁଣି ହସିଲେ ।

ସତ୍ୟବ୍ରତ ମହାପାତ୍ର କହିଲେ : ଏ ଦୋକାନ ଧନଞ୍ଜୟବାବୁଙ୍କର ଯେ ଆପଣ କହୁଛନ୍ତି, କିନ୍ତୁ ତାଙ୍କ ନାଁରେ କ'ଣ କାଗଜପତ୍ର କିଛି ଅଛି ?

: କାଗଜପତ୍ର ପୁଣି କ'ଣ ହେବ ଆଜ୍ଞା । ଆମ ଲାଇନ୍‌ର ବ୍ୟବସାୟରେ 'ଜବାନ୍' ହେଉଛି ଅସଲ କଥା । ଧନଞ୍ଜୟବାବୁଙ୍କୁ ମୁଁ 'ଜବାନ' ଦେଇଥିଲି । ସେ ମୋ ଉପରେ ବିଶ୍ୱାସ କରି ମୋତେ ଏଇ ଦୋକାନଟାକୁ ସଂପୂର୍ଣ୍ଣରୂପେ ଛାଡ଼ିଦେଇଛନ୍ତି ।

: ହୁଁ, ଆପଣ ତା'ହେଲେ ଧନଞ୍ଜୟବାବୁଙ୍କ ସହିତ କେତେ ବର୍ଷ ହେବ ସଂପୃକ୍ତ ?

: ଆଜ୍ଞା, ସେ ଅନେକ ବର୍ଷ । ଧନଞ୍ଜୟବାବୁ ଯେତେବେଳେ ଏଇ କାରବାର ଆରମ୍ଭ କରିଥିଲେ, ତା'ର ବର୍ଷେ ଦୁଇବର୍ଷ ପରେ ମୋତେ ସେ ଧରି ଆଣିଥିଲେ । ତାଙ୍କର ଏବଂ ମୋର ଅକ୍ଲାନ୍ତ ଚେଷ୍ଟାରେ ପାଞ୍ଚଟା ବର୍ଷ ଭିତରେ, ବିନା ଇନ୍‌ଭେଷ୍ଟମେଣ୍ଟରେ ଆମର ଦୋକାନ ଏ ବଜାରରେ ସବୁଠାରୁ ବଡ଼ ହୋଇ ଉଠିଲା ।

: ବିନା ଇନ୍‌ଭେଷ୍ଟମେଣ୍ଟ ମାନେ ? ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ରମାନାଥ ମଲ୍ଲିକ ଘରର ଚାରିଆଡ଼କୁ ଥରେ ଚାହିଁ, ସତର୍କ ଦୃଷ୍ଟି ବୁଲାଇ, ପୁଣି ସେଇ ଅସ୍ୱାଭାବିକ ହସ ହସି ହାତ ମଳୁ ମଳୁ ସତ୍ୟବ୍ରତଙ୍କର ଆଉ ଟିକିଏ ପାଖକୁ ଘୂଞ୍ଚି ଯାଇ ଧୀରେ ଧୀରେ କହିଲେ : ଆଉ ଯାହା ଥାଉ ନ ଥାଉ, ଧନଞ୍ଜୟବାବୁଙ୍କର ସାହସ ଥିଲା । ଗୋଟିଏ ରାତିର କଥା ମୋର ମନେ ଅଛି, ସେଦିନ ଆମେ ତିନିଟା କାର୍ ଗ୍ୟାରେଜର ତାଲା ଭାଙ୍ଗି ହରଣଚାଳ କରି ଆଣିଥିଲୁ ।

ସତ୍ୟବ୍ରତ ମହାପାତ୍ର ରମାନାଥ ମଲ୍ଲିକ୍‌ଙ୍କଠାରୁ ଏପରି ଏକ ଅଭାବିତ ସମ୍ବାଦ ଶୁଣିବେ ଆଶା କରି ନଥିଲେ ।

ଆଖି ଦୁଇଟା ତାଙ୍କର କପାଳକୁ ଉଠିଯାଇଥିଲା ।

ରମାନାଥ ମଲ୍ଲିକ ସେହିପରି ଉତ୍ସାହିତ ହୋଇ କହିଚାଲିଥିଲେ, ଖାଲି ସେତିକି ନୁହେଁ; ସେଇଦିନ ରାତାରାତି ସେହି ତିନିଟିଯାକ କାର୍‌ର ପାର୍ଟସ ଖୋଲା ହୋଇଯାଇଥିଲା ଏବଂ ପରଦିନ ରାତି ପାହୁ ନ ପାହୁଣୁ ଆମର ଏହି ଦୋକାନ ପାଇଁ ପ୍ରାୟ ପଚାଶ ଷାଠିଏଟି ମଟର ଗାଡ଼ି ସାତ ଆଠଟି ଟ୍ରକ୍ ଏବଂ ଦୁଇ ତିନିଶ ମଟର ସାଇକେଲ ନିଜ ହାତରେ ଉଠେଇ ଆଣିଛୁ । ଏହି ଦୋକାନ ପାଇଁ ଆମକୁ ତିନିଟି ବର୍ଷ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଛି । ତା'ପରେ ନିଜ ଗୋଡ଼ରେ ଏହି ଦୋକାନ ଠିଆହୋଇ ଯାଇଛି । ଆମେ ବି ଠିଆ ହୋଇଯାଇଛୁ ।

: ତା'ପରେ ?

ସତ୍ୟବ୍ରତ ଭାବିଥିଲେ ଏହା ପରେ ଆହୁରି କିଛି ଦୁଃସାହସିକ କାର୍ଯ୍ୟ ପାଇଁ କେତୋଟି ଖୁଣ୍ କରିବାକୁ ପଡ଼ିଥିଲା ?

: ଖୁଣ୍, ନା, ନା ମିଷ୍ଟର ମହାପାତ୍ର; ଧନଞ୍ଜୟବାବୁ ହତ୍ୟାକୁ ବିଶେଷ ଘୃଣା କରୁଥିଲେ । କିନ୍ତୁ ......

ସତ୍ୟବ୍ରତ ପ୍ରଶ୍ନବାଚୀ ନୟନରେ ଚାହିଁ ପଚାରିଲେ : କହନ୍ତୁ, ଅଟକି ଗଲେ କାହିଁକି ? ଆପଣ ଏତିକି ଜାଣିରଖନ୍ତୁ, ମୋ ଦ୍ୱାରା ଆପଣଙ୍କର ଅନ୍ତତଃ କିଛି ଅନିଷ୍ଟ ହେବ ନାହିଁ ।

: ନା ମିଷ୍ଟର ମହାପାତ୍ର । ମୋର ଅନିଷ୍ଟ ହେବା ଭଳି କଥା ମୁଁ ଆପଣଙ୍କୁ କିଛି କହିବି କାହିଁକି ? ତା'ଛଡ଼ା ବର୍ତ୍ତମାନ ଯାହା କହୁଛି, ସେ ସମ୍ବନ୍ଧରେ ଆଜି ଆପଣ ଚେଷ୍ଟା କଲେ ବି କୌଣସି କ୍ରିୟାନୁଷ୍ଠାନ କରି ପାରିବେ ନାହିଁ । ହଁ ମୁଁ ଯାହା କହୁଥିଲି, ଏଇ ସବୁ ଦୁଃସାହସିକ କାମ କରିବାକୁ ଆମକୁ କୌଣସି ନରହତ୍ୟା କରିବାକୁ ପଡ଼ିନାହିଁ । ତେବେ ଥରେ ଜେଲ ଦର୍ଶନ କରିବାକୁ ପଡ଼ିଛି ।

: ଧନଞ୍ଜୟବାବୁଙ୍କୁ ମଧ୍ୟ !

: ହଁ ସେ ଥିଲେ ଛ'ମାସ, ମୋତେ ରହିବାକୁ ହୋଇଥିଲା ଦେଢ଼ବର୍ଷ ।

: ତା'ପରେ ?

: ତା'ପରେ ଆଉ କ'ଣ ? ତା'ପରେ ମୂଳଧନ ଅନେକ ହୋଇ ଯାଇଥିଲା । ଧନଞ୍ଜୟବାବୁଙ୍କ ନାମ ସମାଜରେ ପ୍ରତିଷ୍ଠା ଲାଭ କରିଥିଲା, ଆମେ ଇଚ୍ଛାକରି ସେହି ରାତ୍ରି ଅଭିଯାନ ବନ୍ଦ କରି ଦେଇଥିଲୁ; କିନ୍ତୁ ଧନଞ୍ଜୟବାବୁଙ୍କ ହାତରେ ଏପରି କେତେ ଗୁଡ଼ିଏ

ବ୍ୟବସାୟୀ ଥିଲେ ଯେଉଁମାନେ ଏହି ଧରଣର କାମରେ ଜୀବିକା ନିର୍ବାହ କରନ୍ତି, ସେମାନେ ପ୍ରଥମେ ମାଲ୍ ଆଣି ଆମ ଦୋକାନରେ ପହଞ୍ଚୁଥିଲେ ଆଜି ବି ଧନଞ୍ଜୟବାବୁଙ୍କ ଆଶୀର୍ବାଦରୁ ବେଶ୍ ଚାଲୁଛି ।

: କିନ୍ତୁ ଧନଞ୍ଜୟବାବୁଙ୍କର ଏହି ହତ୍ୟା ସମ୍ବନ୍ଧରେ ମୁଁ ଜାଣିବାକୁ ଆସିଛି । ଦୋକାନର ପରିଚାଳନା ବା ସମୃଦ୍ଧି ସମ୍ବନ୍ଧରେ ଜାଣି ମୋର କିଛି ଲାଭ ହେବ ନାହିଁ ।

ଏଥର ରମାନାଥ ମଲ୍ଲିକଙ୍କ ମୁହଁ ସାମାନ୍ୟ ଝାଉଁଳି ପଡ଼ିଲା । ସେ କହିଲେ : ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର, ଗତ ତିନି ଚାରି ବର୍ଷ ହେବ ଧନଞ୍ଜୟବାବୁଙ୍କର ମୋ ସହିତ କୌଣସି ସଂପର୍କ ନାହିଁ । ସେ ଗୋଟିଏ ପଇସା ମୋଠାରୁ ନେଇ ନାହାନ୍ତି । ଏହା ପୂର୍ବରୁ ପ୍ରତି ମାସରେ ମୁଁ ତାଙ୍କୁ ପାଞ୍ଚ ହଜାର କରି ଟଙ୍କା ଦେଇ ଆସୁଥିଲି; କିନ୍ତୁ ବିଗତ ଦୁଇବର୍ଷ ହେବ ସେ ମୋ'ଠାରୁ ଏକ ପଇସା ନେଉ ନାହାନ୍ତି । ଥରେ ଦି'ଥର ଦେବାକୁ ଯାଇଥିଲି, ସେ ମୋତେ ଥାପଡ଼ ମାରି ତଡ଼ି ଦେଇଥିଲେ ।

ସତ୍ୟବ୍ରତ ଉତ୍ସାହିତ ହୋଇ ପଚାରିଲେ : ଥାପଡ଼ ମାରି ତଡ଼ି ଦେଇଥିଲେ ମାନେ ?

: ତା'ର କିଛି ମାନେ ନାହିଁ । ଶେଷ ଥର ଯେବେ ଟଙ୍କା ଦେବାକୁ ଯାଇଥିଲି, ମୋ ସଙ୍ଗରେ ମୋର ବଡ଼ ଝିଅଟି ଯାଇଥିଲା । ତାକୁ ଦେଖି ଧନଞ୍ଜୟବାବୁ ଖୁବ୍ ଆଦର କରିଥିଲେ, ମୋତେ ପଚାରିଥିଲେ, ଇଏ ତ ପ୍ରଥମ, ଏହା ପରେ ଆଉ କେତୋଟି ପିଲା ତୋର ?

ମୁଁ କହିଥିଲି : ତିନ୍ ।

ସେଦିନ ସେ ମୋ' ଉପରେ ଅତ୍ୟନ୍ତ ବିରକ୍ତ ହୋଇଥିଲେ ଏବଂ କହିଥିଲେ, ଆଜିଯାଏ ମୋତେ ଖବର ଦେଇ ନାହୁଁ କାହିଁକି ? ନେଇ ଯା ଏ ଟଙ୍କା । ଉଠ୍ ମୋ ଘରୁ । ଆଉ ଦିନେ ଏଠାକୁ ଆସିବୁ ନାହିଁ ।

ସତ୍ୟବ୍ରତ ତଥାପି କିଛି ବୁଝିପାରିଲେ ନାହିଁ, କହିଲେ : ବିଷୟଟା ମୁଁ ଠିକ୍ ବୁଝି ପାରିଲି ନାହିଁ ।

ରମାନାଥ ମଲ୍ଲିକ୍ କହିଲେ : ବିଷୟଟା ମୁଁ ବି ସେଦିନ ବୁଝିପାରି ନଥିଲି । ଆଉ ଦିନେ ପୁଣି କିଛି ଟଙ୍କା ଧରି ଯାଇଥିଲି ତାଙ୍କ ଘରକୁ । ସେଦିନ ବି ସେ ରାଗି ଗର୍ଜି ଉଠି କହିଥିଲେ : ତୋର ପିଲାପିଲି ଚାରିଟି ହେଲେଣି, ଆଜିକାଲିର ଯାହା ବଜାର, ସେଥିରେ ମୋତେ ମାସକୁ ମାସ ପାଞ୍ଚ ହଜାର ଟଙ୍କା ଦେଇ ତୁ ସଂସାର ଚଳାଉଛୁ କିପରି ?

ମୁଁ ଅନୁରୋଧ କରିଥିଲି, କହିଥିଲି ଯେ, ଆପଣଙ୍କୁ ପାଞ୍ଚ ହଜାର ଟଙ୍କା ଦେଇ ମଧ୍ୟ ମୋ ସଂସାର ପରିଚାଳନାରେ କୌଣସି ଅସୁବିଧା ହେଉ ନାହିଁ ।

ସେ ମୋ' କଥା ଶୁଣି ଆହୁରି ରାଗିଯାଇଥିଲେ, ଏବଂ ମୋତେ ମାରି ମାରି ବାହାରକୁ ଠେଲିଦେଇ ଦରଜା ବନ୍ଦ କରି ଦେଇଥିଲେ ।

ସେଇ ଦିନଠାରୁ ମୁଁ ଚାଲି ଆସିଛି, ଆଉ ତାଙ୍କ ସହିତ ମୋର ଦେଖା ହୋଇ ନାହିଁ । ଏହି ଦୁଇ ବର୍ଷ ମଧ୍ୟରେ ଆପଣ ତାଙ୍କର ଖବର କିଛି ରଖିଥିଲେ ?

: ସତକଥା କହିବାକୁ ଗଲେ ଆଗପରି ଖୁବ୍ ଆନ୍ତରିକ ଭାବରେ ମୁଁ ତାଙ୍କର କୌଣସି ଖବର ରଖିବାକୁ ଚେଷ୍ଟା କରି ନାହିଁ । ଏହା ମୂଳରେ ମୋର କୌଣସି ଆକ୍ରୋଶ ନାହିଁ; କିନ୍ତୁ ଧୀରେ ଧୀରେ ସଂପର୍କଛଡ଼ା ହୋଇ ଯିବାରୁ ଏପରି ଘଟିଛି ।

: ମୁଁ କାଲି ଆପଣଙ୍କୁ ଫୋନ୍ କରିଲା ବେଳେ ଯେତେବେଳେ କହିଲି, ଧନଞ୍ଜୟବାବୁଙ୍କ ଘରୁ କହୁଛି, ଆପଣ ଉତ୍ତର ଦେଇଥିଲେ, ତାଙ୍କୁ କହିବେ ମୋ ସହିତ ଦେଖା କରିବାକୁ, ଆପଣଙ୍କ ବ୍ୟବହାରରୁ ମନେହେଲା ଆପଣଙ୍କର ତାଙ୍କ ସହିତ ଯେପରି କୌଣସି ସୁସଂପର୍କ ନାହିଁ ।

: ନା ନା, ଆପଣ ଭୁଲ୍ କହୁଛନ୍ତି, ମୁଁ ଆପଣଙ୍କର ସେହି ଟେଲିଫୋନ୍ ବାର୍ତ୍ତାକୁ ବିଶ୍ୱାସ କରି ପାରି ନଥିଲି । ମନେହେଲା କିଏ ଯେପରି ମୋତେ ଠକିବା ପାଇଁ ଧନଞ୍ଜୟବାବୁଙ୍କ ନାମ ଧରି ଡାକୁଛି ।

: ତା'ହେଲେ ଆପଣ ତାଙ୍କର ଏହି ହତ୍ୟା ରହସ୍ୟ ସମ୍ବନ୍ଧରେ କୌଣସି ସଂବାଦ ଦେଇ ପାରିବେ ନାହିଁ ।

ରମାନାଥ ମଲ୍ଲିକ୍ ପୁଣି ଥରେ ହସିବାକୁ ଚେଷ୍ଟାକରି କହିଲେ : ଆପଣଙ୍କୁ ତ ସବୁ କଥା କହିଲି । ତାଙ୍କ ମୋର ସଂପର୍କର ଆରମ୍ଭରୁ ଶେଷଯାଏ ଆପଣ ସବୁ ଶୁଣିଲେ, ଏହାପରେ ଯଦି ଆପଣ ମୋ ଅବସ୍ଥା ନ ବୁଝନ୍ତି, ମୁଁ ନାଚାର ।

: ଆଚ୍ଛା ଆପଣ ଧନଞ୍ଜୟବାବୁଙ୍କର ପାରିବାରିକ ଜୀବନ ସଂପର୍କରେ କିଛି କହି ପାରିବେ ?

: ମୋ ଜାଣିବାରେ ତାଙ୍କର ପାରିବାରିକ ଜୀବନ ବୋଲି କିଛି ନଥିଲା । ସେ ତ ବିବାହ କରି ନଥିଲେ, ତା'ଛଡ଼ା ତାଙ୍କର ଆତ୍ମୀୟ ସ୍ୱଜନ କାହାରିକୁ କେବେ ମୁଁ ଦେଖି ନାହିଁ ।

ସତ୍ୟବ୍ରତ କିଛି ସମୟ ଚୁପ୍ ରହି କ'ଣ ଚିନ୍ତା କରି ଉଠି ଠିଆହେଲେ। କହିଲେ : ଆପଣଙ୍କୁ ଅଶେଷ ଧନ୍ୟବାଦ, ଆପଣ ମନପ୍ରାଣରେ ଆମକୁ ସାହାଯ୍ୟ କରିବାକୁ ଚେଷ୍ଟା କରିଛନ୍ତି । ଆଜି ଆମେ ଆସୁଛୁ । ପୁଣି ଆପଣଙ୍କ ସହିତ ସାକ୍ଷାତ ହେବ ।

ରମାନାଥ ମଲ୍ଲିକ୍ ଚେଆରରୁ ଉଠି ଯୋଡ଼ହାତ କରି ଠିଆ ହୋଇପଡ଼ିଲେ । ତାଙ୍କ ଆଖିର ଚାହାଣି ଓ ହସର ଭଙ୍ଗୀ ସତ୍ୟବ୍ରତଙ୍କୁ ପୂର୍ବପରି ଆସ୍ୱାଭାବିକ ମନେ ହେଲା ।

କାରଣ ହାତରେ ସମୟ ଖୁବ୍ ଅଳ୍ପ ।

ଏଥର ବାରିଷ୍ଟର ସାହେବଙ୍କ ଅଫିସ୍ ।

ବାରିଷ୍ଟର ଚାଣକ୍ୟ ସେନ୍ ଚେମ୍ବରରେ ଥିଲେ ।

ସତ୍ୟବ୍ରତ ମହାପାତ୍ର ଓ ସବ୍ୟସାଚୀ ଦାସଙ୍କର ପରିଚୟ ପାଇ ଅତ୍ୟନ୍ତ ଖୁସି ହେଲେ । ଚାଣକ୍ୟ ସେନ୍ ବୟୋବୃଦ୍ଧ ବ୍ୟକ୍ତି । ବୟସ ତାଙ୍କର ଷାଠିଏ-ପଞ୍ଚଷଠିରୁ କମ୍ ହେବ ନାହିଁ । ମୁଣ୍ଡର ବାଳଗୁଡ଼ିକ ସବୁ ପାଚିଯାଇଛି । କିନ୍ତୁ ସେ ଅସମ୍ଭବ କାର୍ଯ୍ୟକ୍ଷମ ଦେଖାଯାଉଛନ୍ତି ।

ସତ୍ୟବ୍ରତ ଧୀରେ ଧୀରେ ତାଙ୍କର ଆସିବାର ଉଦ୍ଦେଶ୍ୟ କହିଗଲେ । ବାରିଷ୍ଟର ସେନ୍ ନିବିଷ୍ଟ ଚିତ୍ତରେ ସବୁ ଶୁଣିଲେ । ଟେବୁଲ୍ ଉପରୁ ଚଷମାଟି ଉଠାଇ ନେଇ ଆଖିରେ ଲଗାଇଲେ ।

କଲିଂ ବେଲ୍ ଟିପି ବେହେରାକୁ ଡାକିଲେ। ଡ୍ରୟାର ଟାଣି ବିଡ଼ାଏ ଚାବି ବାହାର କରି ବେହେରା ହାତକୁ ବଢ଼ାଇ ଦେଇ ଗୋଟିଏ ଷ୍ଟିଲ୍ ଆଲମାରି ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି ଖୋଲିବାକୁ କହିଲେ ।

ସତ୍ୟବ୍ରତ ଓ ସବ୍ୟସାଚୀ ବାରିଷ୍ଟର ସେନ୍‌ଙ୍କର କାର୍ଯ୍ୟକଳାପ ନୀରବରେ ଲକ୍ଷ୍ୟ କରି ଚାଲିଥିଲେ ।

ବେହେରାଟି ଆଲମାରି ଖୋଲି ଦେଲାରୁ ବାରିଷ୍ଟର ସେନ୍ ସେଇ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି କହିଲେ : ଦେଖୁଛନ୍ତି ମିଷ୍ଟର ମହାପାତ୍ର ! ଏହି ଆଲମାରୀ ଭର୍ତ୍ତି କାଗଜପତ୍ର, ପ୍ରାୟ ପାଞ୍ଚଶହରୁ ଅଧିକ କେସ୍‌ର ଫାଇଲ୍ ଏହା ଭିତରେ ଅଛି । ଏସବୁ କାହାର ଜାଣନ୍ତି? ବୈରାଗୀ ଇଷ୍ଟେଟ୍‌ର ।

ବାରିଷ୍ଟର ସେନ୍ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ ହସିଲେ ।

: ବୈରାଗୀ ଇଷ୍ଟେଟ୍‌ର ମାନେ ? ସତ୍ୟବ୍ରତ ପ୍ରଶ୍ନବାଚୀ ଆଖିରେ ଚାହିଁଥିଲେ ।

ବାରିଷ୍ଟର ସେନ୍ ସେହିପରି ହସୁ ହସୁ କହିଲେ : ମୁଁ ଏ ଆଲମାରୀଟାର ନାମ ଦେଇଛି ବୈରାଗୀ ଇଷ୍ଟେଟ୍ । ଏ ମାମଲାଗୁଡ଼ିକ ସବୁ ଧନଞ୍ଜୟ ବୈରାଗୀଙ୍କର । ପ୍ରତି ମାସରେ ସେ ମୋତେ କେତେ ଟଙ୍କା ଦିଅନ୍ତି ଜାଣନ୍ତି ? ଦଶ ହଜାର । ବର୍ଷକୁ ପ୍ରାୟ ଲକ୍ଷାଧିକ ଟଙ୍କା ମୁଁ ପାଏ ତାଙ୍କଠାରୁ ।

ସତ୍ୟବ୍ରତ ପ୍ରକୃତରେ ଏଥର ଜଡ଼ପାଲଟି ଯାଇଥିଲେ ।

ବାରିଷ୍ଟର ସେନ୍ ଚଷମାଟା ଆଖିରୁ ଓହ୍ଲାଇ ପୁଣି ଟେବୁଲ୍ ଉପରେ ରଖି, କପାଳରେ ହାତ ବୁଲାଉ ବୁଲାଉ କହିଲେ : ଆପଣମାନେ ଏହି ଅନନ୍ତ ସିନ୍ଧୁ ସମ୍ପର୍କରେ ମୋ'ଠାରୁ ସମ୍ବାଦ ସଂଗ୍ରହ କରିବାକୁ ଆସିଛନ୍ତି, ମୋର ତାଙ୍କ ସହିତ ସମ୍ପର୍କ ପ୍ରାୟ ତିରିଷ ବର୍ଷ ହେବ, ମୁଁ ଆଜି ପର୍ଯ୍ୟନ୍ତ ତାଙ୍କ ସହିତ ତିରିଶ ଥର ମିଶିବାର ସୁଯୋଗ ପାଇଛି କି ନାହିଁ କହି ପାରିବି ନାହିଁ । ମୋର ଦୀର୍ଘ ଜୀବନ କାଳ ମଧରେ ମୁଁ ବହୁ ଲୋକଚରିତ୍ର ସମ୍ପର୍କରେ ଗଭୀର ଗବେଷଣା କରିଛି; କିନ୍ତୁ ଏହି ଧନଞ୍ଜୟ ବୈରାଗୀ ! ଏହାଙ୍କୁ ମୁଁ ଆଜିଯାଏ ଚିହ୍ନି ପାରିଲି ନାହିଁ ।

ଚାଣକ୍ୟ ସେନ୍ ସତ୍ୟବ୍ରତଙ୍କୁ ପୁଣି କହିଲେ : ଏଇ ଯେଉଁ ପାଞ୍ଚଶହରୁ ଅଧିକ କେସ୍ ଏହି ଆଲମାରି ଭିତରେ ଦେଖୁଛନ୍ତି ଏହି କେସ୍‌ଗୁଡ଼ିକୁ ଯଦି ଗଭୀର ଭାବରେ ଆପଣ ଅନୁଧ୍ୟାନ କରିବେ, ତେବେ ଆପଣଙ୍କର ମନେ ହେବ ଧନଞ୍ଜୟ ବୈରାଗୀ ଜଣେ ଅତିମାନବ । କାରଣ କୌଣସି ରକ୍ତ-ମାଂସଧାରୀ ମନୁଷ୍ୟ ପକ୍ଷରେ ଏପରି କୀର୍ତ୍ତି-କଳାପ ସମ୍ଭବ ନୁହେଁ । ନା ନା, ଆଦୌ ସମ୍ଭବ ନୁହେଁ । ମୁଁ ବାରିଷ୍ଟର ଚାଣକ୍ୟ ସେନ୍ କହୁଛି, ଧନଞ୍ଜୟ ବୈରାଗୀଙ୍କର ଏପରି ଅପମୃତ୍ୟୁ ହୋଇ ନ ପାରେ । ଆପଣ ଯାହା ଦେଖୁଛନ୍ତି ଭୁଲ୍ । ପୋଲିସ୍ ଯାହା ରିପୋର୍ଟ ଲେଖିଛି ଭୁଲ୍ । ମୁଁ ତ ଆଜି ସକାଳେ ଖବରଟା ପାଇ ପ୍ରଚୁର ହସିଛି । ଧନଞ୍ଜୟ ବୈରାଗୀ ଏପରି ଅତର୍କିତ ଭାବରେ ଆତତାୟୀ ହାତରେ ମୃତ୍ୟୁବରଣ କରିବା ଉଚିତ ନୁହେଁ ।

ବାରିଷ୍ଟର ସେନ୍ ସାମାନ୍ୟ ଉତ୍ତେଜିତ ହୋଇଉଠିଥିଲେ ।

ଟେବୁଲ୍ ଉପରୁ ଚଷମାଟି ଉଠାଇ ପୁଣି ଆଖିରେ ଦେଲେ ।

ସତ୍ୟବ୍ରତ ସବ୍ୟସାଚୀ ଆଡ଼େ ଅସହାୟ ଚାହାଣିରେ ଚାହିଁ ଶାନ୍ତ ସ୍ୱରରେ କହିଲେ : ଆପଣ ତା'ହେଲେ ଧନଞ୍ଜୟ ବୈରାଗୀଙ୍କର ମୃତ୍ୟୁକୁ ବିଶ୍ୱାସ କରିପାରୁ ନାହାନ୍ତି ?

: ବିଶ୍ୱାସ କରିପାରୁ ନାହିଁ ମିଷ୍ଟର ମହାପାତ୍ର, ମୋର ବିଶ୍ୱାସ କରିବା ଉଚିତ୍ ନୁହେଁ । କାରଣ...

ବାରିଷ୍ଟର ସେନ୍ ପୁଣି ନୀରବ ହୋଇଗଲେ ।

ସତ୍ୟବ୍ରତ କହିଲେ : କୁହନ୍ତୁ ସାର୍, କାରଣଟା କ'ଣ କୁହନ୍ତୁ ।

ବାରିଷ୍ଟର ସେନ୍ କହିଲେ : ନା, ଯେତେହେଲେ ଧନଞ୍ଜୟ ବୈରାଗୀ ଜଣେ ରକ୍ତ-ମାଂସଧାରୀ ମଣିଷ, ଠିକ୍ ଅଛି । ଆପଣମାନେ ତାଙ୍କ ସମ୍ବନ୍ଧରେ ଆଉ କ'ଣ ଜାଣିବାକୁ ଚାହାନ୍ତି କୁହନ୍ତୁ । ମୁଁ ଯଥାସାଧ୍ୟ ଉତ୍ତର ଦେବି ।

ସତ୍ୟବ୍ରତ କିଛି ସମୟ ନୀରବରେ ଚିନ୍ତାକରି କହିଲେ : ନା ସାର୍, ଆମେ ଆପଣଙ୍କ ଠାରୁ ଧନଞ୍ଜୟ ବୈରାଗୀଙ୍କ ସମ୍ବନ୍ଧରେ କିଛି ଜାଣିବାକୁ ଆସିଥିଲୁ, ପ୍ରଶ୍ନ ପଚାରିବାକୁ ନୁହେଁ ।

ବାରିଷ୍ଟର ସେନ୍ ଏଥର ଶାନ୍ତ ସ୍ୱରରେ କହିଲେ : ଧନଞ୍ଜୟ ବୈରାଗୀଙ୍କ ସମ୍ପର୍କରେ ମୋର କିଛି ଧାରଣା ନାହିଁ । ତେବେ ସେ ଜଣେ କେସ୍‌ଖୋର ଲୋକ ଥିଲେ । ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସେ କେସ୍ କରି ଅଦାଲତରେ ନ୍ୟାୟ ବିଚାର ଭିକ୍ଷା କରୁଥିଲେ ।

: ଯଥା ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

ବାରିଷ୍ଟର ସେନ୍ କହିଲେ : ଧନଞ୍ଜୟ ବୈରାଗୀଙ୍କର କେସ୍‌ର ଧରଣ କିନ୍ତୁ ଅଦ୍ଭୁତ । ଆପଣ ଭାବନ୍ତୁ ନାହିଁ ଯେ ଏ ଯେଉଁ କେସ୍‌ର ଫାଇଲ୍ ସବୁ ତାଙ୍କର ମୋ ପାଖରେ ରହିଛି ସେଗୁଡ଼ିକ ଲୋକଙ୍କଠାରୁ ଟଙ୍କା ଆଦାୟ ପାଇଁ । ଶୁଣନ୍ତୁ ଏହା ଭିତରୁ ଗୋଟିଏ କେସ୍‌ର ମୁଁ ଉଦାହରଣ ଦେଉଛି ।

ବାରିଷ୍ଟର ସେନ୍ ବେହେରାକୁ ନିର୍ଦ୍ଦେଶ ଦେଲେ ସେହି ଆଲମାରି ଭିତରୁ ଗୋଟିଏ ଫାଇଲ୍ ବାହାର କରି ଆଣିବା ପାଇଁ ।

ବାରିଷ୍ଟର ସେନ୍ ଫାଇଲ୍‌ଟିକୁ ଖୋଲି, କିଛି ସମୟ ପଢ଼ି କହିଲେ : ଶୁଣନ୍ତୁ ଇଏ ଗୋଟିଏ କେସ୍ । ଏହି କେସ୍‌ଟିର ବିଷୟବସ୍ତୁ ହେଉଛି, ଜଣେ ଅନ୍ଧ ବାଳକ । ସେ ତା'ର ବିଧବା ମାତାର ଏକ ମାତ୍ର ସମ୍ବଳ । ଅବଲମ୍ବନ ବି କହି ପାରନ୍ତି । ବିଧବା ମା' ପିଲାଟିକୁ ସଙ୍ଗରେ ଧରି ରାସ୍ତାକୁ ବାହାରି ଆସେ । ପିଲାଟି ଗୀତଗାଏ । ଲୋକେ ତା' ଗୀତରେ ମୁଗ୍ଧ ହୋଇ ଦି' ପଇସା ପଇସାଏ ଦିଅନ୍ତି । ସଞ୍ଜବେଳକୁ ଯାହା ଟଙ୍କାଏ ଆଠଣା ମିଳେ ସେଇଥିରେ ମା' ପୁଅଙ୍କର ଦିନ ଚଳେ । ସୁଖରେ ହେଉ ବା ଦୁଃଖରେ ହେଉ ।

ଦିନେ ସେହି ଅନ୍ଧ ବାଳକଟି ଫୁଟ୍ ପାଥ୍ ଉପରେ ବସି ଗୀତ ଗାଉଥିବା ବେଳେ ହଠାତ୍ ଗୋଟାଏ ଷ୍ଟେଟ୍ ବସ୍ ଫୁଟ୍‌ପାଥ୍ ଉପରକୁ ମାଡ଼ିଆସିଲା ଏବଂ ଅନ୍ଧ ବାଳକଟି ଷ୍ଟେଟ୍ ବାସ୍‌ର ଚକାତଳେ ପେଷି ହୋଇଗଲା ।

ଲୋକେ ଆହା ଆହା କଲେ ।

ବସ୍‌ର ଚାଳକକୁ ମାରିବା ପାଇଁ ଧମକ ଚମକ ଦେଲେ ।

କିନ୍ତୁ ଶେଷରେ ସେହି ଅନ୍ଧ ବାଳକଟିର ବିଧବା ମା'ର ପକ୍ଷ ହୋଇ ଧନଞ୍ଜୟ ବୈରାଗୀ କେସ୍ କଲେ କୋର୍ଟରେ ।

ଏହି ଅସହାୟ ମହିଳାକୁ ଜୀବନସାରା କ୍ଷତିପୂରଣ ଦେବାକୁ ହେବ ।

ଷ୍ଟେଟ୍ ଟ୍ରାନସ୍‌ପୋର୍ଟ ବିରୋଧରେ କେସ୍ ଆଜି ବି ଚାଲିଛି କୋର୍ଟରେ ।

ବୁଝିଲେ ମିଷ୍ଟର ମହାପାତ୍ର ! ଏହିପରି ନାନା ଧରଣର ବିଚିତ୍ର ବିଚିତ୍ର କେସ୍ ସବୁ ଏହି ଆଲମାରି ଭିତରେ ରହିଛି । କେଉଁଟା ତାଙ୍କ ନିଜ ସ୍ୱାର୍ଥ ପାଇଁ ନୁହେଁ; ଅଥଚ ଅନ୍ୟ ପାଇଁ, ଦେଶ ପାଇଁ, ଜାତିର ମଙ୍ଗଳ ପାଇଁ ହଜାର ହଜାର ଟଙ୍କା ଖର୍ଚ୍ଚ କରୁଥିଲେ ଧନଞ୍ଜୟ ବୈରାଗୀ ।

ସତ୍ୟବ୍ରତ ନୀରବରେ ସବୁ ଶୁଣି ସାରି କହିଲେ : ଏତେ ଟଙ୍କା ସେ ପାଉଥିଲେ କେଉଁଠୁ? ତାଙ୍କର ସୋର୍ସ ଅଫ୍ ଇନ୍‌କମ ସମ୍ବନ୍ଧରେ ଆପଣ କିଛି ଜାଣନ୍ତି ?

ବାରିଷ୍ଟର ସେନ୍ ଚଷମାର ଫ୍ରେମ୍‌ଟାକୁ ଦାନ୍ତରେ କାମୁଡ଼ି କିଛି ସମୟ ଚିନ୍ତାକଲେ । ତା'ପରେ ଧୀରେ ଧୀରେ କହିଲେ : ସତେ ତ ! ଧନଞ୍ଜୟ ବୈରାଗୀଙ୍କ ସୋର୍ସ ଅଫ୍ ଇନ୍‌କମ୍ ସମ୍ବନ୍ଧରେ ମୋର କିଛି ଜାଣିବା ଉଚିତ ଥିଲା । ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର, ସେ ଦିଗଟାର କଥା ମୁଁ ମୋଟେ ଭାବିନାହିଁ । ତା'ଛଡ଼ା ସେ ମୋତେ କେବେ ଭାବିବାକୁ ଅବକାଶ ବି ଦେଇ ନାହାନ୍ତି ।

: ହୁଁ, ଆପଣ ତା'ହେଲେ ତାଙ୍କ ପାରିବାରିକ ଜୀବନ ସମ୍ବନ୍ଧରେ କିଛି ଜାଣି ନାହାନ୍ତି ?

: କହିଲି ତ ଆପଣଙ୍କୁ । ତିରିଶ ବର୍ଷ ଭିତରେ ତିରିଶ୍‌ଥର ତାଙ୍କ ସହିତ ଦେଖା ହୋଇଛି କି ନାହିଁ ସନ୍ଦେହ ।

: ଆପଣଙ୍କ ସହିତ ତାଙ୍କର ଯୋଗାଯୋଗ ହେଉଥିଲା କିପରି ?

: ସବୁ ଫୋନ୍‌ରେ, ଦୁଇ ଚାରିଦିନ ଅନ୍ତରରେ ସେ ମୋତେ ଥରେ ଫୋନ୍ କରୁଥିଲେ ଏବଂ ବିଭିନ୍ନ କେସ୍ ସମ୍ବନ୍ଧରେ ତଦାରଖ କରୁଥିଲେ ।

: ଆଉ ନୂତନ କେସ୍ ହେଲେ ?

: ସେ କଥା ମଧ୍ୟ ଫୋନ୍‌ରେ ଯୋଗାଯୋଗ ହେଉଥିଲା ଏବଂ ଆସାମୀକୁ ସେ ମୋ ପାଖକୁ ପଠାଇ ଦେଉଥିଲେ ।

: ବୁଝିଲି । ଆପଣଙ୍କଠାରୁ ତା'ହେଲେ ଆମେ ଆଉ ବିଶେଷ କିଛି ଆଶା କରିବା ଉଚିତ ହେବ ନାହିଁ ।

: ଶୁଣନ୍ତୁ ମିଷ୍ଟର ମହାପାତ୍ର, ବାରିଷ୍ଟର ସେନ୍‌ଙ୍କ କଣ୍ଠରେ ଆନ୍ତରିକତା ଫୁଟି ଉଠିଲା । ସେ କହିଲେ, ଆପଣ ହତାଶ ହୁଅନ୍ତୁ ନାହିଁ । ହତାଶ ମଣିଷକୁ ସର୍ବନାଶର ପଥରେ ଟାଣି ନେଇଯାଏ । ଆପଣ ୟାଙ୍ଗ୍ ମ୍ୟାନ୍ । ଆଶାହତ ହେଉଛନ୍ତି କାହିଁକି ? ମୁଁ ତ ପୁଣି ଏହି ଅନ୍ତିମ ବୟସରେ ଧନଞ୍ଜୟ ବୈରାଗୀଙ୍କର ମୃତ୍ୟୁକୁ ସ୍ୱୀକାର କରି ପାରୁ ନାହିଁ । ତାଙ୍କର ମୃତ୍ୟୁ ନିଶ୍ଚିତ ଜାଣି ମଧ୍ୟ ମୁଁ କହୁଛି, ନା ଧନଞ୍ଜୟ ବୈରାଗୀ ବଞ୍ଚିଛନ୍ତି । ଆପଣ ହତାଶ ହୁଅନ୍ତୁ ନାହିଁ ୟାଙ୍ଗ୍ ମ୍ୟାନ୍ । ମୋ' ଠାରୁ ନ ପାଇଲେ ବି ଅନ୍ୟ କାହାରିଠାରୁ ଆପଣ ନିଜ ମନର ପ୍ରଶ୍ନର ଉତ୍ତର ଖୋଜି ପାଇବେ ।

ବାରିଷ୍ଟର ସେନ୍ ହାତ ଘଡ଼ିକୁ ଚାହିଁ ଚମକି ଉଠିଲେ ।

ମୋତେ କ୍ଷମା କରିବେ ମିଷ୍ଟର ମହାପାତ୍ର । ମୋର ଆଉ ଅଧଘଣ୍ଟା ପରେ ଗୋଟାଏ କେସ୍ ଅଛି । ସେଥିପାଇଁ ମୋତେ ପ୍ରସ୍ତୁତ ହେବାକୁ ହେବ ।

ସତ୍ୟବ୍ରତ ଆଉ କୌଣସି କଥା ନ କହି ଉଠି ଠିଆହେଲେ ଏବଂ ସବ୍ୟସାଚୀ ସଙ୍ଗରେ ବାହାରି ଗଲେ ବାହାରକୁ ।

ସବ୍ୟସାଚୀ କହିଲା: ଆମେ ଯେତେ ଜାଗାକୁ ଯାଉଛେ, ଯାହା ସହିତ ଦେଖା କରୁଛେ, ଧନଞ୍ଜୟ ବୈରାଗୀଙ୍କ ଚରିତ୍ର ସମ୍ବନ୍ଧରେ କୌଣସି ସ୍ପଷ୍ଟ ଧାରଣା ପାଉ ନାହୁଁ ବରଂ ବେଳକୁ ବେଳ ଧନଞ୍ଜୟ ବୈରାଗୀ ଆମ ଆଖି ଆଗରେ ଏକ ରହସ୍ୟ ଉପନ୍ୟାସର ନାୟକ ହୋଇ ଉଠୁଛନ୍ତି ।

: ହୁଁ, ବଡ଼ ଅଦ୍ଭୁତ ଚରିତ୍ର । ପୋଲିସ୍ ହାତରେ ଛାଡ଼ିଦେଲେ ଏ କେସ୍‌ରେ କୌଣସି ସମାଧାନ ହେବ ନାହିଁ । ବର୍ତ୍ତମାନ ବି ଆମେ ଆଲୋକର କ୍ଷୀଣ ଶିଖାଟିଏ ବି ଦେଖିବାକୁ ପାଇଲେ ନାହିଁ । ଏହା ପରେ କେଉଁ ପଥରେ ଆଗେଇବା ସେ କଥା ମୁଁ ଭାବି ଠିକ୍ କରି ପାରୁ ନାହିଁ ।

ସବ୍ୟସାଚୀ କହିଲା : ଆଚ୍ଛା, ଆମେ ଆଉ ଜଣକ ସମ୍ବନ୍ଧରେ ତ କିଛି ଚିନ୍ତା କଲେ ନାହିଁ ।

: ସେ କିଏ ?

ଡାକ୍ତର କହିଲେ : ପ୍ରାୟ ବର୍ଷେ ହେବ ତାଙ୍କର ଧନଞ୍ଜୟ ବୈରାଗୀଙ୍କ ସହିତ ପରିଚୟ । ଆଉ ଥରେ ସେ ଗୋଟାଏ ଭୀଷଣ ଅସ୍ୱାଭାବିକ ପରିସ୍ଥିତିରେ ପଡ଼ି ମୋର ଶରଣାପନ୍ନ ହୋଇଥିଲେ । ମୁଁ ତାଙ୍କୁ ସାହାଯ୍ୟ କରିଥିଲି । ସେଇଦିନଠାରୁ ତାଙ୍କର ଯେ କୌଣସି ଅସୁସ୍ଥତାରେ ମୋତେ ସେ ଡାକି ପଠାନ୍ତି ।

ସତ୍ୟବ୍ରତ ଶାନ୍ତ କଣ୍ଠରେ ପଚାରିଲେ : ଅସ୍ୱାଭାବିକ ପରିସ୍ଥିତି ମାନେ ? କୌଣସି ରୋଗ ଫୋଗ ନୁହେଁ ?

: ଡାକ୍ତରବାବୁ । ସେ ତାଙ୍କର ହାଉସ୍ ଫିଜିସିଆନ୍ ଯେତେବେଳେ, ସେହି ଏକମାତ୍ର ଲୋକ ହୁଏତ ବିସ୍ତୃତ ଭାବେ ସବୁ କଥା କହିପାରିବେ ।

ସତ୍ୟବ୍ରତର ଆଖିରେ ହଠାତ୍ ଯେପରି ଆଶାର ଆଲୋକ ଜଳିଉଠିଲା । କିନ୍ତୁ କଣ୍ଠରେ କୌଣସି ଉତ୍ସାହ ଫୁଟିଲା ନାହିଁ । ନୀରସ କଣ୍ଠରେ କହିଲେ : ଡାକ୍ତରଙ୍କ ମୁହଁରୁ ଆମେ ହୁଏତ ଶୁଣିବା-ଏଇଥର ପ୍ରଥମ କରି ସେ ଧନଞ୍ଜୟ ବୈରାଗୀଙ୍କୁ ଦେଖିବାକୁ ଯାଇଥିଲେ । ଏହା ପୂର୍ବରୁ ତାଙ୍କ ସହିତ ଡାକ୍ତରଙ୍କର କୌଣସି ପରିଚୟ ନଥିଲା । ଏବଂ ସେମାନେ ଶୁଣିଲେ ମଧ୍ୟ ସେଇଆ । ତେବେ ଏତେଟା ନିରାଶବ୍ୟଞ୍ଜକ ନୁହେଁ ।

ଡାକ୍ତର କହିଲେ : ପ୍ରାୟ ବର୍ଷେ ହେବ ତାଙ୍କର ଧନଞ୍ଜୟ ବୈରାଗୀଙ୍କ ସହିତ ପରିଚୟ । ଆଉ ଥରେ ସେ ଗୋଟାଏ ଭୀଷଣ ଅସ୍ୱାଭାବିକ ପରିସ୍ଥିତିରେ ପଡ଼ି ମୋର ଶରଣାପନ୍ନ ହୋଇଥିଲେ । ମୁଁ ତାଙ୍କୁ ସାହାଯ୍ୟ କରିଥିଲି । ସେଇଦିନଠାରୁ ତାଙ୍କର ଯେ କୌଣସି ଅସୁସ୍ଥତାରେ ମୋତେ ସେ ଡାକି ପଠାନ୍ତି ।

ସତ୍ୟବ୍ରତ ଶାନ୍ତ କଣ୍ଠରେ ପଚାରିଲେ : ଅସ୍ୱାଭାବିକ ପରିସ୍ଥିତି ମାନେ ? କୌଣସି ରୋଗ ଫୋଗ ନୁହେଁ ?

ଡାକ୍ତର ଅଳ୍ପ ଟିକିଏ ହସି କହିଲେ : ସେ ଏକ ଅସାମାଜିକ ଘଟଣା । ଅତ୍ୟନ୍ତ ଗୋପନୀୟ ମଧ୍ୟ । ତେଣୁ ସେ ସଂପର୍କରେ ଖୋଲାଖୋଲି ଭାବରେ ମୁଁ କିଛି କିହିବି ନାହିଁ, ଆପଣ ମଧ୍ୟ ନ ପଚାରିବା ଉଚିତ୍ ।

ସତ୍ୟବ୍ରତ ଡାକ୍ତରବାବୁଙ୍କ ଇଂଗିତଟା ବୁଝିପାରି ଚିନ୍ତିତ ହୋଇପଡ଼ିଲେ । କିଛି ସମୟ ନୀରବତା ପରେ ଧୀରେ ଧୀରେ କହିଲେ : କାହାରି ଜୀବନରେ କୌଣସି ଗୋପନ କଥା ଶୁଣିବାର ସାମାନ୍ୟତମ ଆଗ୍ରହ କିନ୍ତୁ ଆମର ନାହିଁ ଡକ୍ଟର ମଇତ୍ର: କିନ୍ତୁ ପରିସ୍ଥିତି ଦୃଷ୍ଟିରୁ ଅନେକ ସମୟରେ ଆମେ ସେହି ସବୁ ଏକାନ୍ତ ଗୋପନ କଥା ଜାଣିବାକୁ ବାଧ୍ୟ ହୋଇଥାଉଁ । ବର୍ତ୍ତମାନ ପରିସ୍ଥିରେ ଧନଞ୍ଜୟ ବୈରାଗୀଙ୍କ ଜୀବନର ଯେକୌଣସି ସାମାନ୍ୟତମ ଘଟଣାର ମୂଲ୍ୟ ଆମ ପାଖରେ ଯଥେଷ୍ଟ ବେଶି । ତେବେ ଆପଣ ମୋତେ ବିଶ୍ୱାସ କରନ୍ତୁ; ପ୍ରୟୋଜନରୁ ଅତିରିକ୍ତ କୌଣସି ତଥ୍ୟ ବାହାରେ ପ୍ରକାଶିତ ହେବ ନାହିଁ । ତା'ଛଡ଼ା ଧନଞ୍ଜୟ ବୈରାଗୀ ବର୍ତ୍ତମାନ ସ୍ୱର୍ଗରେ । ତାଙ୍କ ସମ୍ବନ୍ଧରେ କୌଣସି ତଥ୍ୟ ଯଦି ଭୁଲ୍‌ବଶତଃ ପ୍ରକାଶିତ ହୋଇଯାଏ; ତେବେ ଧନଞ୍ଜୟ ବୈରାଗୀଙ୍କର ଖ୍ୟାତିରେ ତାହା ଆଉ ଆଞ୍ଚ ଆଣିବାର ସମ୍ଭାବନା ଅତି କମ୍ ।

ଡାକ୍ତର ମଇତ୍ରଙ୍କ କପାଳରେ ଚିନ୍ତାର ରେଖା ଫୁଟିଉଠିଥିଲା । ସେ ତଥ୍ୟ ପ୍ରକାଶରେ ମନେ ମନେ ଅସମ୍ମତ ହେଉଥିଲେ ମଧ୍ୟ ମୁହଁରେ ତାହା କରି ପାରୁ ନଥିଲେ । ଅନେକ ସମୟ ଭାବିଚିନ୍ତି କହିଲେ : ଶୁଣନ୍ତୁ ମିଷ୍ଟର ମହାପାତ୍ର, ଧନଞ୍ଜୟବାବୁଙ୍କ ଖ୍ୟାତି ଅଖ୍ୟାତି କଥା ମୁଁ ଭାବୁ ନାହିଁ; ମୁଁ ଭାବୁଛି ସେଇ ଅନ୍ୟଜଣକ କଥା । ସିଏ ବର୍ତ୍ତମାନ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ତାଙ୍କ ଜୀବନର ଗୋଟାଏ ଗୋପନ ରହସ୍ୟ ପ୍ରକାଶ କରିଦେବା ମୋ'ପରି ଜଣେ ଦାୟିତ୍ୱସମ୍ପନ୍ନ ବ୍ୟକ୍ତିପକ୍ଷରେ କେତେଦୂର ସମୀଚୀନ ହେବ, ମୁଁ ଚିନ୍ତା କରି ପାରୁ ନାହିଁ ।

ସତ୍ୟବ୍ରତ କହିଲେ : ଆପଣ ସେ ସମ୍ବନ୍ଧରେ ମୋଟେ ଭାବନ୍ତୁ ନାହିଁ । ଆପଣଙ୍କୁ ନିର୍ଭର ପ୍ରତିଶ୍ରୁତି ମୁଁ ଦେଉଛି ସେହି ପ୍ରତିଷ୍ଠିତ ସମାଜପତିଙ୍କ ଜୀବନର ଗୋପନ ରହସ୍ୟ ଅନ୍ୟତ୍ର ଆଉ ପ୍ରକାଶିତ ହେବ ନାହିଁ । ମୁଁ ଭଗବାନଙ୍କ ନାମରେ ଆପଣଙ୍କ ପାଖରେ ଶପଥ କରୁଛି ।

ଡାକ୍ତର ମଇତ୍ର ଆହୁରି କିଛି ସମୟ ଚିନ୍ତାକଲେ । ତା'ପରେ ଧୀରେ ଧୀରେ କହିଲେ : ଘଟଣାଟା ଘଟିଥିଲା ଜଣେ ନାରୀଙ୍କୁ କେନ୍ଦ୍ର କରି । ମୁଁ ତାଙ୍କର ନାମ ପ୍ରକାଶ କରିବି ନାହିଁ । ଭଦ୍ରମହିଳା ବିଧବା । ସମ୍ଭ୍ରାନ୍ତ ପରିବାରର ବଧୂ । ତାଙ୍କର ସ୍ୱାମୀ ମଧ୍ୟ ଖୁବ୍ ପ୍ରତିପତ୍ତିସମ୍ପନ୍ନ ବ୍ୟକ୍ତିଥିଲେ । ଭଦ୍ରମହିଳାଙ୍କର ସନ୍ତାନ ସନ୍ତତି ତିନିଟି ସମସ୍ତେ ପ୍ରାୟ ସାବାଳକ; ତଥାପି ଭଦ୍ରମହିଳାଙ୍କର କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ସେହି ଦୁର୍ଘଟଣାଟି ଘଟିଥିଲା । ସେ ଅନ୍ତଃସତ୍ତ୍ୱା ହୋଇପଡ଼ିଥିଲେ । ଧନଞ୍ଜୟ ବୈରାଗୀ ମୋତେ ଘରକୁ ଡାକି ଗୋପନରେ ସବୁ କଥା କହିଥିଲେ । ମୁଁ ମଧ୍ୟ ସେଦିନ ଶପଥ ନେଇଥିଲି ଏ ଘଟଣା ଅନ୍ୟ କେଉଁଠି ପ୍ରକାଶ ନ କରିବା ପାଇଁ । ତା'ପରେ ଭଦ୍ରମହିଳାଙ୍କୁ ସେଇ କଳଙ୍କରୁ ମୁଁ ମୁକ୍ତ କରିଥିଲି ।

ଏହିପରି ଗୋଟିଏ କିଛି ଘଟିଥିବ ବୋଲି ସତ୍ୟବ୍ରତ ଆଗରୁ ମନେ ମନେ ଚିନ୍ତା କରିଥିଲେ, ତେଣୁ ସେ ଆଶ୍ଚର୍ଯ୍ୟ ହେଲେ ନାହିଁ । କେବଳ ଶାନ୍ତ ସ୍ୱରରେ ପ୍ରଶ୍ନ କଲେ : ସେ ଭଦ୍ରମହିଳା କଲିକତାରେ ରୁହନ୍ତି ନା ବାହାରେ ?

ଡାକ୍ତର ମଇତ୍ର ଦ୍ୱିଧାଜଡ଼ିତ କଣ୍ଠରେ କହିଲେ : ନାଁ ସେ ବାହାରେ ରୁହନ୍ତି, ତେବେ ଏହାଠାରୁ ଆଉ ଅଧିକ ମୋତେ ପଚାରନ୍ତୁ ନାହିଁ ମିଷ୍ଟର ମହାପାତ୍ର । ସେ ଘଟଣା ସମ୍ବନ୍ଧରେ ଆଉ ଅଧିକ ଆଗେଇଲେ ଭଗବାନଙ୍କ ନିକଟରେ ମୁଁ ଅପରାଧୀ ହେବି ।

ସତ୍ୟବ୍ରତ କହିଲେ : ନା ସେ ଘଟଣା ସମ୍ବନ୍ଧରେ ଏହାଠାରୁ ଅଧିକ ଜାଣିବା ମଧ ମୋର ଆବଶ୍ୟକ ନାହିଁ । କିନ୍ତୁ ଧନଞ୍ଜୟବାବୁଙ୍କ ଜୀବନ ସମ୍ବନ୍ଧରେ ଆଉ ଯଦି ଅଧିକ କିଛି ଜାଣି ଥାଆନ୍ତି କୁହନ୍ତୁ ।

ଡାକ୍ତର ମଇତ୍ର ବିନମ୍ର କଣ୍ଠରେ କହିଲେ : ନା, ଏଇ ଗୋଟିଏ ମାତ୍ର ଘଟଣା ଛଡ଼ା ତାଙ୍କ ଜୀବନ ସମ୍ବନ୍ଧରେ ଆଉ କୌଣସି କଥା ଜାଣିବାର ସୁଯୋଗ ମୁଁ ପାଇ ନାହିଁ । ଚେଷ୍ଟା ବି କରି ନାହିଁ ।

: ଅଶେଷ ଧନ୍ୟବାଦ । ସତ୍ୟବ୍ରତ ଉଠି ଠିଆ ହେଲେ । ଆପଣ ଆମକୁ ନିଷ୍କପଟ ଚିତ୍ତରେ ଯେତିକି ସାହାଯ୍ୟ କରିଛନ୍ତି, ସେତିକି ଆମ ପକ୍ଷରେ ଯଥେଷ୍ଟ ସହାୟକ ହେବ । ଆଜି ଆମେ ଆସୁଛୁ । ନମସ୍କାର ।

ଡାକ୍ତର ମଇତ୍ର ଉଠି ଠିଆହେଲେ ଏବଂ ପ୍ରତି ନମସ୍କାର ଜଣାଇଲେ ।

ଜୀବନ ଦୀପ ଭବନକୁ ଫେରି ଆସିଲେ ସେମାନେ ।

ଆଜି ସଂଧ୍ୟାବେଳେ ସତ୍ୟବ୍ରତ ମହାପାତ୍ରଙ୍କୁ ଗୋପାଳପୁର ଅଭିମୁଖରେ ଯାତ୍ରା କରିବାକୁ ହେବ । ସେଥିପାଇଁ କିଛି ପ୍ରସ୍ତୁତି ଆବଶ୍ୟକ ।

କିନ୍ତୁ ଜୀବନଦୀପ ଭବନରେ ପହଞ୍ଚି ଦେଖିଲେ, ରୋମି ଅପେକ୍ଷା କରିଛି । ବେଶବାସର ପରିପାଟୀ ଅତ୍ୟନ୍ତ ଉଗ୍ର । ଚାଲି ଚଳନରେ ଅଧିକ ଆଶାର ଦୀପ୍ତି ।

ସତ୍ୟବ୍ରତ ରୋମିକୁ ପଚାରିଲେ : ହଠାତ୍ ତମେ ଯେ ! କେତେବେଳୁ ?

: ପ୍ରାୟ ଘଣ୍ଟାଏ ହେବ । ରୋମି ହସି ହସି କହିଲା ।

: ଆଜି ଅଫିସ୍ ଯାଇ ନାହିଁ ?

: ଛୁଟି ନେଇଛି ।

: କାହିଁକି ?

: ଚାଲନ୍ତୁ ଉପରେ କହିବି । ଆପଣଙ୍କ ସହିତ ଗୋଟାଏ ବିଶେଷ ଦରକାର ଅଛି ।

ସେମାନେ ଲିଫ୍‌ଟ ଆଡ଼କୁ ଆଗେଇ ଗଲେ ।

କିନ୍ତୁ ସବ୍ୟସାଚୀ କାହିଁ ? ଟ୍ୟାକ୍ସି ଭଡ଼ାଦେବାକୁ ପଛରେ ସେ ରହି ଯାଇଥିଲା । ଗଲା କୁଆଡ଼େ ?

କିଛି ସମୟ ଅପେକ୍ଷା କରି ସତ୍ୟବ୍ରତ ପୁଣି ରାସ୍ତା ଆଡ଼େ ଲେଉଟିଗଲେ । ଟ୍ୟାକ୍ସି ନାହିଁ, କିମ୍ବା ସବ୍ୟସାଚୀ ନାହିଁ ।

ନା, ଆଉ ଅପେକ୍ଷା କରିବା ସମ୍ଭବ ନୁହେଁ । ଯୁଆଡ଼େ ଯାଇଥିବ ବଳେ ଫେରିଆସିବ ।

ସତ୍ୟବ୍ରତ ଓ ରୋମି ଉପରକୁ ଗଲେ ।

ଅଫିସ୍ ଖୋଲି ସତ୍ୟବ୍ରତ ଗୋଟିଏ ଚେଆର ଅଧିକାର କରି ବସୁ ବସୁ କହିଲେ : ତମ କଥା ସଂକ୍ଷେପରେ ଶେଷ କର ରୋମି, ମୋର ଆଜି ଅନେକ କାମ ।

ହଠାତ୍ ରୋମିର ମୁଖମଣ୍ଡଳ ବିଷଣ୍ଣ ହୋଇଉଠିଲା । ସେ ଅଭିମାନ ସ୍ୱରରେ କହିଲା: ମୋରି ବେଳକୁ ଆପଣଙ୍କର ସବୁକାମ ଯେ ଆସି ପହଞ୍ଚିଯାଏ ! ମୁଁ ଗୋଟିଏ ଲୋକ ଏହି ସଂସାରକୁ ଆସିଛି, ମୋର କ'ଣ ମନପ୍ରାଣ ବୋଲି କିଛି ଗୋଟାଏ ନାହିଁ ?

ସତ୍ୟବ୍ରତ ରୋମି ମୁହଁରୁ ଏପରି କଥା ଅନ୍ତତଃ ଆଶା କରି ନ ଥିଲେ । ସେ ଟିକିଏ ନୀରବ ରହି କହିଲେ : ନିଶ୍ଚୟ ରୋମି, ପ୍ରତିଟି ମଣିଷର ମନ ଅଛି, ପ୍ରାଣ ଅଛି । ତମର ପ୍ରାଣ ପ୍ରାଚୁର୍ଯ୍ୟ ଆହୁରି ଅଧିକା ଥିବା କଥା । କ'ଣ କହିବାକୁ ଚାହଁ କୁହ, ମୁଁ ବି ମନପ୍ରାଣ ଦେଇ ତମ କଥା ଶୁଣିବି ।

ରୋମି ସତ୍ୟବ୍ରତଙ୍କ ପାଖକୁ ଲାଗିଯାଇ ସ୍ମିତ ହସି କହିଲା : ଆପଣ ଜାଣି ନାହାନ୍ତି ସତ୍ୟବ୍ରତବାବୁ, ଆପଣଙ୍କୁ ଦେଖିଲା ଦିନଠାରୁ ମୋ ମନରେ କିପରି ଏକ ଉତ୍ତେଜନା ସୃଷ୍ଟି ହୋଇଛି । ଦିନ ରାତି ମୁଁ କ'ଣ ଯେ ଭାବୁଛି, କ'ଣ ଯେ କରୁଛି କିଛି ବୁଝିପାରୁନାହିଁ ।

: ହଠାତ୍....ମୋ ପ୍ରତି....

: ନାଁ, ଆପଣ ହୁଏତ ମୋତେ ପରିହାସ କରି ପାରନ୍ତି, କିନ୍ତୁ ମନପ୍ରାଣଭରି ମୁଁ ଆପଣଙ୍କୁ ଦେଖିବାକୁ ଚାହେଁ । ଆପଣଙ୍କ ସାନିଧ୍ୟ ଲାଭ କରିବାକୁ ଚାହେଁ, କୁହନ୍ତୁ, ଆପଣ କ'ଣ ମୋତେ ନିରାଶ କରିବେ ?

ସତ୍ୟବ୍ରତଙ୍କ ଜୀବନରେ ହଠାତ୍ ଏକ ନୂତନ ସମସ୍ୟାର ଉଦ୍ଭବ ହେବାରୁ ସେ ଟିକିଏ ବିଚଳିତ ହୋଇପଡ଼ିଲେ । ଏତିକିବେଳେ ସବ୍ୟସାଚୀର ଅଭାବ ତାଙ୍କୁ ବିଶେଷ ଅନୁଭୂତ ହେଲା । ଗଲା କୁଆଡ଼େ ସେ ?

ରୋମି କହିଲା : ଆପଣଙ୍କ ପ୍ରତି ମୋର ଏହି ଆସକ୍ତିର ଗୋଟିଏ କାରଣ ଅଛି । ନିର୍ଲଜଙ୍କ ପରି ଯେ ଆପଣଙ୍କ ପାଖରେ ଆସି ମୋର ମନର କଥା ଖୋଲାଖୋଲି ଭାବରେ ବ୍ୟକ୍ତ କରିବାକୁ ହେବ, ଏକଥା ମୁଁ ଏଇ ମୁହୂର୍ତ୍ତରେ ବି ଚିନ୍ତା କରିପାରୁ ନାହିଁ ।

: ନା, ତୁମେ କୁହ ରୋମି, ମୁଁ ଶୁଣିବି । ତମର ସବୁକଥା ଶୁଣିବାର ଯେତେ ସମୟ ଲାଗୁ ପଛକେ ମୁଁ ଶୁଣିବି ।

ରୋମି ହସିଲା । କିପରି ଏକ କାରୁଣ୍ୟ ଭାବ ଫୁଟିଉଠିଲା ତା' ମୁହଁରେ । ସେ କହିଲା : ମୁଁ ଆପଣଙ୍କର ସମୟ ମୋଟେ ନଷ୍ଟ କରିବାକୁ ଚାହେଁ ନାହିଁ; କିନ୍ତୁ ମୁଁ ନାଚାର । ନିଜ ମନକୁ ମୁଁ ଶାସନ କରିପାରୁ ନାହିଁ, ନିଜକୁ ବି ।

ସତ୍ୟବ୍ରତ ରୋମିର ଦୀର୍ଘଶ୍ୱାସ ଅନୁଭବ କଲେ ।

: ତୁମେ କୁହ ରୋମି । ମୁଁ ଶୁଣିବି । ତମ ମନଟା ଯେକୌଣସି କାରଣରୁ ବିକଳ ହୋଇ ଉଠିଛି, ସେ କଥା ମୁଁ ବୁଝି ପାରିଛି । କ'ଣ ହେଇଛି ତମର ? ସତ୍ୟବ୍ରତ ରୋମିର ମୁଣ୍ଡରେ ହାତ ବୁଲେଇ ସାଉଁଳେଇ ଦେଲେ ।

ରୋମି ଆଖିରୁ ଝର ଝର ହୋଇ ଲୁହ ଝରିପଡ଼ିଲା ।

ସେ ବ୍ୟଥିତ ସ୍ୱରରେ କହିଲା : ମୋର ଯେ ପରମ ଆତ୍ମୀୟ ଥିଲେ । ମୋତେ ସେ ଜୀବନ ସାଥୀ କରି ଘର ବାନ୍ଧିବା ପାଇଁ ବ୍ୟାକୁଳ ହୋଇଉଠିଥିଲେ । କେତେ ଦିନ, କେତେ ରାତି ଯେ ଆମର ଭବିଷ୍ୟତର ସୁନେଲି କଳ୍ପନା ଭିତରେ କଟିଛି, ତା'ର ହିସାବ ମୁଁ ଦେଇ ପାରିବି ନାହିଁ ।

କିନ୍ତୁ ଦିନେ ସେ ମୋତେ ସାରା ଜୀବନ ପାଇଁ କନ୍ଦେଇ ଫାଙ୍କି ଦେଇ ଆରପୁରକୁ ଚାଲିଗଲେ ।

ରୋମି ସତ୍ୟବ୍ରତଙ୍କୁ ଦୁଇ ହାତରେ ଜାବୁଡ଼ିଧରି ଭୋ ଭୋ ହୋଇ କାନ୍ଦିଉଠିଲା ।

ଉଃ, କି ଯନ୍ତ୍ରଣା । ସତ୍ୟବ୍ରତ ରୋମିକୁ ସାନ୍ତ୍ୱନା ଦେଇପାରିଲେ ନାହିଁ, କିମ୍ବା ନିଜ ଦେହରୁ ଅଲଗା କରି ପାରିଲେ ନାହିଁ ।

ଅନେକ ସମୟ ପରେ ରୋମି ନିଜେ ସତ୍ୟବ୍ରତଙ୍କୁ ଛାଡ଼ିଦେଇ ଲଜ୍ଜାଜଡ଼ିତ କଣ୍ଠରେ କହିଲା : ମୋତେ ଆପଣ କ୍ଷମା କରିବେ । ମୋର ଧୃଷ୍ଟତା ମାର୍ଜନା କରିବେ । ଆପଣଙ୍କୁ ଦେଖିବା ଦିନଠାରୁ ମୋର ସେହି ପରମ ଆତ୍ମୀୟଟିର କଥା ବାରମ୍ବାର ମନେପଡୁଛି । ତାଙ୍କର ବହୁ ସାଦୃଶ୍ୟର ଅଧିକାରୀ ଆପଣ । ପ୍ରଥମେ ଯେଉଁଦିନ ଆପଣଙ୍କୁ ମୁଁ ଦେଖିଲି ମୋର ତ ମନେ ହୋଇଥିଲା, ମୁଁ ସ୍ୱପ୍ନ ଦେଖୁଛି ହୁଏତ ।

ସତ୍ୟବ୍ରତଙ୍କ ସ୍ୱରରେ ସାନ୍ତ୍ୱନା ଫୁଟିଉଠିଲା । ସେ କହିଲେ, : ଅନେକ ସମୟରେ ସେପରି ହୋଇଥାଏ । ଜଣକ ସାଦୃଶ୍ୟ ଅନ୍ୟ ଜଣକଠାରେ ଦେଖିବାକୁ ମିଳିଥାଏ । ଆପଣ ଧୈର୍ଯ୍ୟ ଧରନ୍ତୁ, ସବୁ ଠିକ୍ ହୋଇଯିବ ।

: ଠିକ୍ ! ମୋ ଜୀବନରେ ପୁଣି ସବୁ ଠିକ୍ ହୋଇଯିବ ।

ରୋମି କିପରି ଅସ୍ୱାଭାବିକ ଭାବେ ହସିଉଠିଲା । କହିଲା, : ଯାହାର ସବୁ ଶେଷ ହୋଇଯାଇଛି, ତାହାର ପୁଣି ସବୁ ଠିକ୍ ହୋଇଯିବ କେମିତି ?

ସତ୍ୟବ୍ରତ କହିଲେ : ପୃଥିବୀର ଗତି ବଡ଼ ବିଚିତ୍ର ରୋମି । ମଣିଷର ମନ ତା'ଠାରୁ ଆହୁରି ବିଚିତ୍ର । କାଲି ତୁମକୁ ତୁମର ଯେଉଁ ପରମ ଆତ୍ମୀୟ ଜଣକ ଛାଡ଼ି ଚାଲିଯାଇଥିଲେ, ତମେ ଯେତେବେଳେ ନିଜକୁ ଅତ୍ୟନ୍ତ ଅସହାୟ ମନେ କରି କୂଳ ଖୋଜି ପାଉ ନଥିଲ, ଆଜି ଦେଖ ତମ ମନରେ ମୁଁ ତମର ସେହି ପ୍ରିୟଜନର ସ୍ଥାନ ଦଖଲ କରି ସାରିଲିଣି । ଏହା ତମର ପାପ ନୁହେଁ କିମ୍ବା ଅପରାଧ ନୁହେଁ । ତମ ଅସହାୟ ମନ ଭିତରେ କେବଳ ଗୋଟିଏ ଛୋଟିଆ ସାନ୍ତ୍ୱନା । ତେଣୁ କାଳକ୍ରମେ ତମ ମନ ଶକ୍ତ ହେବ, ତମ ପାଦତଳୁ ଚୋରାବାଲି ଅପସରି ଯିବ, ତମେ ଦୃଢ଼ପାଦରେ ଠିଆ ହେବ ।

ସତ୍ୟବ୍ରତ ରୋମି ଗାଲରେ ଗୋଟିଏ ଛୋଟ ଚାପୁଡ଼ା ମାରି ସ୍ମିତ ହସିଲେ ।

ରୋମି ମୁହଁରେ ବି ହସ ଫୁଟିଲା ।

ସ୍ୱରରେ ଆନ୍ତରିକତା ଫୁଟିଲା ।

: ସତ କହୁଛନ୍ତି ଆପଣ ? ଚୋରାବାଲି ଉପରେ ଗୋଡ଼ ମୋର ଶକ୍ତ ହେବ ?

ସତ୍ୟବ୍ରତ ଆହୁରି ହସିଲେ । ଗାଲ ଆଉଁସି ଦେଲେ । ପିଠି ଥାପୁଡ଼େଇ ଦେଲେ । କହିଲେ: ମଣିଷ ଆଶାର ଶେଷ ସୀମାରେ କେବେ ପହଞ୍ଚି ପାରେ ନାହିଁ । କିନ୍ତୁ ପାଖାପାଖି ପହଞ୍ଚେ । ତମେ ନିରାଶ ହୁଅନାହିଁ ରୋମି, ମୁଁ ତୁମକୁ କଥା ଦେଉଛି.....

ସତ୍ୟବ୍ରତର କଥା ଅସମାପ୍ତ ରହିଗଲା । ସବ୍ୟସାଚୀ ଦରଜା ଖୋଲି ଘର ଭିତରେ ଝଡ଼ବେଗରେ ପ୍ରବେଶ କଲା ।

: କିରେ, ତୁ କୁଆଡ଼େ ରହିଗଲୁ କି ?

ସବ୍ୟସାଚୀ କୌଣସି ଉତ୍ତର ନ ଦେଇ ନୀରବରେ ଗୋଟିଏ ଚେଆର ଦଖଲ କରି ବସୁ ବସୁ କହିଲା : ତୋର ସମୟଜ୍ଞାନ ଅଛି ତ ?

ସତ୍ୟବ୍ରତ ହାତ ଘଡ଼ିକୁ ଚାହିଁ ଦେଖିଲେ: ଦୁଇଟା ବାଜୁଛି ।

: ଏଥର ତୁମେ ଆସ ରୋମି । ପୁଣି ପରେ ଦେଖାହେବ ।

ରୋମି କିନ୍ତୁ ଉଠିଲା ନାହିଁ ।

ସବ୍ୟସାଚୀ କହିଲା : ଆଉ ଡେରିକଲେ ଖାଇବାକୁ ମିଳିବ ନାହିଁ କହି ଦେଉଛି । ଆଗ ଯା' ଖାଇ ଦେଇ ଆସିବୁ ।

ରୋମି ଏଥର ଉଠି ଠିଆହେଲା । କହିଲା : ମୁଁ ବି ଏତେବେଳଯାଏ ଖାଇନାହିଁ । ଘରେ ମା'ବି ଖାଇ ନଥିବ । ଚାଲନ୍ତୁ ନା ମୋ ସହିତ, ମିଷ୍ଟର ଦାସ୍, ଆପଣ ବି ଚାଲନ୍ତୁ । ଆଜି ଆମ ଘରେ ଯଦି ଭୋଜନଟା ହୁଏ କିଛି ଆପତ୍ତି ଅଛି ?

ସବ୍ୟସାଚୀ ଉଠି ଠିଆହେଲା । କହିଲା : ମୋର କିଛି ଆପତ୍ତି ନାହିଁ । ଖାଇବା ବ୍ୟାପାରରେ ମୋର କେବେ ବାଛ ବିଚାର ନଥାଏ । ପେଟ ପୂରିଲେ ହେଲା ।

ସତ୍ୟବ୍ରତ କିନ୍ତୁ ଆପତ୍ତି କଲା । କହିଲା : ଆଉ ବାଧକର ନାହିଁ ରୋମି । ମୋର କେତେଗୁଡ଼ିଏ ଜରୁରୀ କାମ ଅଛି । ଶୀଘ୍ର ଶେଷ କରିବାକୁ ହେବ ।

ରୋମି ସତ୍ୟବ୍ରତ ମୁହଁ ଉପରେ ଏକ ତୀକ୍ଷ୍ଣ ଚାହାଣି ବୁଲାଇ ନୀରବରେ ଘରୁ ବାହାରି ଚାଲିଗଲା ।

ସତ୍ୟବ୍ରତ ଏକ ଦୀର୍ଘଶ୍ୱାସ ତ୍ୟାଗକରି କହିଲେ : ତୁ ଆଜି ମୋତେ ବଞ୍ଚାଇ ଦେଲୁ ସବ୍ୟ । ଯଦି ଆଉ ଟିକିଏ ଡେରିକରି ଥାଆନ୍ତୁ, ମୋ ଅବସ୍ଥା ଯେ କ'ଣ ହୋଇଥାନ୍ତା.....

ହଠାତ୍ ଟେଲିଫୋନ୍‌ଟା ବାଜିଉଠିଲା ।

: ହ୍ୟାଲୋ ? ସତ୍ୟବ୍ରତ ରିସିଭର ଉଠାଇଲେ ।

ଅପରପ୍ରାନ୍ତରୁ ପୋଲିସ୍ ଇନସ୍‌ପେକ୍ଟର କହୁଥିଲେ ।

ସତ୍ୟବ୍ରତ ଯଦି ଥାନାକୁ ଥରେ ଆସିପାରନ୍ତ ତା'ହେଲେ କେତେକ ନୂତନ ତଥ୍ୟ ପାଇପାରନ୍ତ । ତା'ଛଡ଼ା ଗୋଟାଏ ଦୁଇଟା ବିଷୟରେ ଆପଣଙ୍କ ସହିତ ଟିକିଏ ଆଲୋଚନା କରିବାକୁ ଚାହେଁ । ସମୟ ହେବ କି ?

ସତ୍ୟବ୍ରତ ଉତ୍ତର ଦେଲେ : ସେ ଏହି ଘଣ୍ଟାକ ଭିତରେ ଯାଇ ଥାନାରେ ପହଞ୍ଚିବେ ।

ଟେଲିଫୋନ୍ ରିସିଭର ରଖିଦେଇ ସତ୍ୟବ୍ରତ ଦେଖିଲେ, ସବ୍ୟସାଚୀ ଟେବୁଲ୍ ଉପରେ ଗୋଡ଼ଟେକି ଆଖିବୁଜି ସାରିଲାଣି ।

: କିରେ, ସତ୍ୟବ୍ରତ ! ତା'ପାଖକୁ ଯାଇ ହଲାଇଦେଲେ । କହିଲେ, ଖାଇବାକୁ ଯିବୁ ନାହିଁ ?

: ମୁଁ ସେ କାମ ଶେଷ କରି ଆସିଛି । ତୁ ଚାଲିଯା ।

: ମୋତେ ଟିକିଏ ଥାନାକୁ ଯିବାକୁ ହେବ ଯେ !

: ଯା, ସବୁକାମ ଶେଷ କରି ଆସିବୁ । ମୁଁ ଅଫିସ୍ ଜଗିଛି ।

ସତ୍ୟବ୍ରତ କିଛି କହିଲେ ନାହିଁ ।

ଧୀରେ ଧୀରେ ସେ ଅଫିସ୍‌ରୁ ବାହାରି ଚାଲିଗଲେ ।

ଥାନାରେ ଇନସ୍‌ପେକ୍ଟର ଜାଲାନ୍ ସତ୍ୟବ୍ରତଙ୍କ ପାଇଁ ଅପେକ୍ଷା କରି ବସିଥିଲେ ।

ସତ୍ୟବ୍ରତଙ୍କୁ ଅଭିବାଦନ ଜଣାଇ କହିଲେ : ଆସନ୍ତୁ ମିଷ୍ଟର ମହାପାତ୍ର । ଆପଣଙ୍କୁ ସକାଳୁ ମୁଁ ତିନି ଚାରିଥର ରିଙ୍ଗ୍ କଲିଣି; କିନ୍ତୁ ସବୁବେଳେ ନୋ ରିପ୍ଲାଇ ହୋଇଛି ।

: ମୁଁ ନଥିଲି । ଆଉ କିଛି ଆଶାର ଆଲୋକ ଦିଶିଲା ?

ଇନସ୍‌ପେକ୍ଟର ଜାଲାନଙ୍କ ମୁହଁରେ ଯେପରି ବିଜୟୀର ହସ ଫୁଟିଉଠିଲା । ସେ କହିଲେ, : ଆଶା ତ୍ ଆମ ଜୀବନର ସମ୍ବଳ; କିନ୍ତୁ ଆଲୋକ ଶବ୍ଦଟାର ଅର୍ଥ ଆମ ପାଖରେ ଯେପରି ଦୁର୍ବୋଧ ।

: କାହିଁକି ?

: ଅବଶ୍ୟ ମୁଁ ତା'ର ବ୍ୟାଖ୍ୟା କରିପାରିବି ନାହିଁ । ତେବେ ଆଲୋକ ଯେ ବେଳେ ବେଳେ ଆମକୁ ବାଟ ଦେଖାଏ ନାହିଁ, ତାହା ମୁଁ କହୁ ନାହିଁ । ଏଇ ଧରନ୍ତୁ ଧନଞ୍ଜୟ ବୈରାଗୀ କେସ୍‌ରେ ମୁଦିଟି ।

ଇନ୍‌ସ୍‌ପେକ୍ଟର ଜାଲାନ ଗୋଟିଏ ମୁଦି ବାହାର କରି ଟେବୁଲ୍ ଉପରେ ଥୋଇଲେ । ଫମ୍ପା ମୁଦିଟିଏ, ମଝିରେ ଗୋଟିଏ ପଥର ବସିଥିଲା ହୁଏତ । ଚାରିକୋଣିଆ ଖାଲି ଜାଗାଟା ଶୂନ୍ୟ ରହିଯାଇଛି ।

ସତ୍ୟବ୍ରତ ସେହି ମୁଦିଟିକୁ ଦେଖିବା ମାତ୍ରକେ ତାଙ୍କର ସର୍ବାଙ୍ଗରେ କିପରି ଏକ ତଡ଼ିତ୍ ପ୍ରବାହ ଖେଳିଗଲା ।

କ୍ଷିପ୍ର ହସ୍ତରେ ସେ ସେଇଟିକୁ ଉଠାଇ ନେଇ କହିଲେ : ଏଇଟା ଆପଣ କେଉଁଠୁ ପାଇଲେ ?

ଇନସ୍‌ପେକ୍ଟର ଜାଲାନ୍‌ଙ୍କ ମୁହଁରେ ବିଜୟର ହସ ଫୁଟିଉଠିଲା । ସେ ଗମ୍ଭୀର ହୋଇ କହିଲେ : ଏଇଟା ପୋଲିସଙ୍କର ଆଖି ମିଷ୍ଟର ମହାପାତ୍ର । ଛଞ୍ଚାଣ ଆଖିଠାରୁ ବି ତୀକ୍ଷ୍ଣ ।

: ଅବଶ୍ୟ । ସତ୍ୟବ୍ରତଙ୍କ ସ୍ୱରରେ ପ୍ରଶଂସା ସୂଚକ ଧ୍ୱନି ଫୁଟିଉଠିଲା ।

ଇନସ୍‌ପେକ୍‌ଟର ଜାଲାନ ସେହିପରି ଗମ୍ଭୀର ଗଳାରେ କହିଲେ, : ମୁଁ ଏହି ଶୂନ୍ୟ ପଞ୍ଜୁରି ଆବିଷ୍କାର କରିଛି, ଆପଣଙ୍କୁ ଏଥର ଶାରିଟିକୁ ଧରି ଆଣିବାକୁ ହେବ । ତା'ହେଲେ ପ୍ରୋବ୍‌ଲେମ୍ ସଲ୍‌ଭ ହୋଇପାରିବ ।

: ମାନେ ?

ଇନସ୍‌ପେକ୍‌ଟର ମୁଦିଟିକୁ ଉଠାଇ ନେଇ ଖାଲି ଚଉକ ସ୍ଥାନଟି ଦେଖାଇ କହିଲେ: ଏଇ ସ୍ଥାନଟିରେ ନିଶ୍ଚୟ ଖଣ୍ଡିଏ ପଥର ଲାଗିଥିଲା । ବହୁ ଅନୁସନ୍ଧାନ ପରେ ମଧ୍ୟ ସେହି ପଥର ଖଣ୍ଡିକ ଆବିଷ୍କାର କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ ।

ସତ୍ୟବ୍ରତ ମନେ ମନେ ସେତେବେଳେ ଇନ୍ଦ୍ରନୀଳ କଥା ଚିନ୍ତା କରୁଥିଲେ । ଠିକ୍ ସେଇ ଇନ୍ଦ୍ରନୀଳ ଖଣ୍ଡିକ ଏହି ମୁଦି ଭିତରେ ଲାଗିଥିଲା । ଇନସ୍‌ପେକ୍‌ଟର ଜାଲାନ ଠିକ୍ କହିଛନ୍ତି, ଏହି ମୁଦି ରହସ୍ୟ ଭିତରେ ଧନଞ୍ଜୟବାବୁଙ୍କର ହତ୍ୟା ରହସ୍ୟ ଲୁଚିରହିଛି ।

ଇନ୍‌ସପେକ୍‌ଟର ଜାଲାନ ସତ୍ୟବ୍ରତଙ୍କ ନୀରବତା ଭଙ୍ଗକରି କହିଲେ : ଆପଣ ଖୁବ୍ ଚିନ୍ତିତ ହୋଇପଡ଼ିଛନ୍ତି ଦେଖୁଛି, କିନ୍ତୁ ମୁଁ ଭାବୁଛି ଏହି ମୁଦି ରହସ୍ୟ ଉଦ୍‌ଘାଟନ କରି ପାରିଲେ ଅସଲ ହତ୍ୟାକାରୀକୁ ବାହାର କରି ହେବ ।

ସତ୍ୟବ୍ରତ ସମ୍ମତି ଜଣାଇ କହିଲେ : ମୁଁ ବି ସେଇକଥା ଭାବୁଛି, ମିଷ୍ଟର ଜାଲାନ୍ କିନ୍ତୁ ଏହି ମୁଦିଟି କାହାର ହୋଇପାରେ ? ଧନଞ୍ଜୟ ବୈରାଗୀଙ୍କ ଘରେ ଥିଲେ ମାତ୍ର ତିନିଜଣ ଲୋକ । ପ୍ରଥମ ଜଣକ ଜଲି, ଦ୍ୱିତୀୟ ନର୍ସ, ତୃତୀୟ ଚାକର ।

ଚାକର ହାତରେ ଏଇ ମୁଦିଟି ନଥିବାର କଥା, ନର୍ସ ବି ଏ ମୁଦି ପିନ୍ଧିବା ସମ୍ଭବ ନୁହେଁ. ତା'ହେଲେ ରହିଲା ଜଲି ।

କିନ୍ତୁ....

ସତ୍ୟବ୍ରତ ଅନ୍ୟମନସ୍କ ହୋଇ ଉଠିଲେ ।

ଇନସ୍‌ପେକ୍‌ଟର ଜାଲାନ ଉତ୍ସାହିତ ହୋଇ କହିଲେ : ମୁଁ ବି ପ୍ରଥମେ ଆପଣଙ୍କ ଭଳି ଚିନ୍ତା କରିଥିଲି । କିନ୍ତୁ ପରେ ଜଲିକୁ ବହୁତ ପ୍ରକାର ଜେରା କରି ଜାଣିପାରିଲି ଯେ ଜଲି ପକ୍ଷରେ ଏ କାର୍ଯ୍ୟ ସମ୍ଭବ ନୁହେଁ । ଜଲିର ଏହିଭଳି ଏକ ହତ୍ୟାକାଣ୍ଡ ଘଟାଇବା ପାଇଁ ମନୋବଳ ନାହିଁ ।

: ତା'ହେଲେ ଧରିନେବାକୁ ହେବ କୌଣସି ଚତୁର୍ଥ ବ୍ୟକ୍ତି ଦ୍ୱାରା ଏହି ହତ୍ୟାକାଣ୍ଡଟି ଘଟିଛି, ଏବଂ ହତ୍ୟାକାରୀ ମୁହୂର୍ତ୍ତକ ଭିତରେ କାମ ଶେଷ କରି ଅଦୃଶ୍ୟ ହୋଇଯାଇଛି ।

ଇନସ୍‌ପେକ୍‌ଟର ଜାଲାନ ଅଳ୍ପ ହସି କହିଲେ : ଘଟଣାଟା ଘଟିଛି ସେହିପରି; କିନ୍ତୁ ଆପଣ କହିପାରିବେ ଚତୁର୍ଥ ବ୍ୟକ୍ତିଟି କିଏ ହୋଇପାରେ ? ଆଇ ମିନ୍ ସ୍ତ୍ରୀ ନା ପୁରୁଷ ?

ସତ୍ୟବ୍ରତ ହସିଲେ । କହିଲେ : ଠିକ୍ ସମୟରେ ଆପଣ ଜାଣିପାରିବେ । ବର୍ତ୍ତମାନ ଆଉ ଯଦି କିଛି ସଂବାଦଥାଏ କୁହନ୍ତୁ । ମୁଁ ଆଜି ଟିକିଏ ଗୋପାଳ ପୁର ଯାଉଛି । ତେଣୁ ବର୍ତ୍ତମାନ ଯାଇ ପ୍ରସ୍ତୁତି ପର୍ବ ଶେଷ କରିବାକୁ ହେବ ।

: ଗୋପାଳପୁର? ଇନସ୍‌ପେକ୍ଟର ଜାଲାନ ଟିକିଏ ଅତ୍ୟଧିକ ବିସ୍ମିତ ହେଲେ । କହିଲେ, ଆପଣ ତା'ହେଲେ ଏ କେସ୍‌ରେ ଆମକୁ ସାହାଯ୍ୟ କରୁ ନାହାନ୍ତି ?

ସତ୍ୟବ୍ରତ କହିଲେ : ଗୋଟାଏ ଜରୁରୀ କାମରେ ମୋତେ ହଠାତ୍ ଯିବାକୁ ହେଉଛି । ଦୁଇ ଚାରିଦିନ ପରେ ପୁଣି ଫେରି ଆସିବି । ମୋର ସହକାରୀ ସବ୍ୟସାଚୀ ରହୁଛି । ସେ ଆପଣଙ୍କୁ ସହଯୋଗ କରିବ ।

: କିନ୍ତୁ ଏଇ ଦୁଇ ଚାରିଦିନ ଭିତରେ ଏ କେସ୍‌ର ଗୋଟାଏ କିଛି ସମାଧାନ କରି ପାରିବି ବୋଲି ଆଶା କରୁଥିଲି । ଭାବିଥିଲି ଆପଣଙ୍କୁ ଟିକିଏ ରାଞ୍ଚିଯିବା ପାଇଁ ଅନୁରୋଧ କରିବି ।

: ରାଞ୍ଚି, ମାନେ ଜଲି ସମ୍ବନ୍ଧରେ ଜାଣିବା ପାଇଁ ତ ? ସତ୍ୟବ୍ରତ ସ୍ମିତ ହସି କହିଲେ । କିନ୍ତୁ ମୋ ଜାଣିବାରେ ଜଲି ଧନଞ୍ଜୟ ବୈରାଗୀଙ୍କର କୌଣସି ଆତ୍ମୀୟ ନୁହେଁ । ତେବେ ଆପଣ ଗୋଟାଏ କାମ କରନ୍ତୁ । ରାଞ୍ଚି ପୋଲିସକୁ ଖବରଟା ଦିଅନ୍ତୁ । ସେମାନେ ଗୋପନରେ ଅନୁସନ୍ଧାନ କରି ରିପୋର୍ଟଟା ପଠାଇ ଦେବେ ।

ଇନସ୍‌ପେକ୍ଟର ଜାଲାନ ଚିନ୍ତିତ ସ୍ୱରରେ କହିଲେ : ଆପଣ ଯାଇ ନ ପାରିଲେ ଶେଷରେ ମୋତେ ସେଇଆ କରିବାକୁ ହିଁ ହେବ ।

ଗୋପାଳପୁର ସି' ବିଚ୍ ହୋଟେଲର ଗୋଟିଏ ନିଭୃତ କକ୍ଷ । ସତ୍ୟବ୍ରତ ଧୀରେ ଦରଜା ଖୋଲି ଭିତରକୁ ପଶିଲେ । ବିଶାଳ ଏକ ସୌଖୀନ ଚିତ୍ରପୁରୀ ।

ସତ୍ୟବ୍ରତ ଘର ଭିତରେ କାହାରିକୁ ଦେଖିପାରିଲେ ନାହିଁ, କିନ୍ତୁ ତାଙ୍କର ମନେ ହେଲା ସାମ୍ନା ଟେବୁଲ୍‌ରେ କିଏ ଜଣେ ଯେପରି ଖବର କାଗଜରେ ମୁହଁଘୋଡ଼େଇ ବସି ରହିଛି ।

ତାଙ୍କ ଅନୁମାନ ସତ୍ୟ ହେଲା ।

ଧୀରେ ଖବରକାଗଜଟି ତଳକୁ ଘୁଞ୍ଚିଆସିଲା ।

ସତ୍ୟବ୍ରତ ଦେଖିଲେ ଗ୍ଲାମ ପରିହିତା ଜନୈକା ରୂପସୀ ମହିଳା ।

ସତ୍ୟବ୍ରତ ତା' ମୁହଁକୁ ଏବଂ ସେ ସତ୍ୟବ୍ରତ ମୁହଁକୁ ମୁହୂର୍ତ୍ତେ ଅନାଇ ରହିଗଲେ ।

ସତ୍ୟବ୍ରତ ଠିଆହୋଇଥିଲେ, ଭଦ୍ର ମହିଳା ଚେଆର ଉପରେ ବସିଥିଲେ ।

ସମଗ୍ର କକ୍ଷ ଭିତରେ କିପରି ଏକ ନିସ୍ତବ୍‌ଧତା ପୂରି ରହିଥିଲା ।

କେତେ ସମୟ ପରେ ଭଦ୍ର ମହିଳା କହିଲେ : ବସନ୍ତୁ ।

ସତ୍ୟବ୍ରତ ସାମ୍ନା ଚେଆରଟି ଉପରେ ବସିଲେ ।

ଭଦ୍ରମହିଳା ଖବରକାଗଜଟି ସେହିପରି ଅର୍ଦ୍ଧ ଆବୃତ ଅବସ୍ଥାରେ ଦେହ ଉପରେ ଢ଼ାଙ୍କି ରଖି କହିଲେ : ଆପଣଙ୍କ ନାଁ ଦ୍ୱାରିକାନାଥ ଗୋଏଙ୍କା ?

: ହଁ ।

: ମୋ ନାଁ ଜାଣିଛନ୍ତି ?

: ନା ।

: ସୁଭଦ୍ରା ଦେବୀ ! ମନକୁ ଯାଉଛି ?

: ନା, ଆପଣଙ୍କ ନାଁ ଅନ୍ତତଃ ଆପୋଲୋ ଜାତୀୟ ଗୋଟାଏ କିଛି ହୋଇଥିଲେ ଭଲ ହୋଇଥାନ୍ତା ।

ସୁଭଦ୍ରା ଦେବୀ ହସିଲେ । କହିଲେ : ମୋ ଜନ୍ମ ବେଳେ ଆପୋଲୋର ଜନ୍ମ ହୋଇ ନଥିଲା, ସେଇଥି ପାଇଁ ବୋଧହୁଏ ବାପା ମା' ଗୋଟାଏ ନିଛକ ପୌରାଣିକ ନାଁ ଦେଇଛନ୍ତି, ତେବେ ଆପଣଙ୍କର ପସନ୍ଦ ନହେଲେ ବଦଳେଇ ଦେଇପାରନ୍ତି ।

ସତ୍ୟବ୍ରତ ଲକ୍ଷ୍ୟକରୁଥିଲେ ସୁଭଦ୍ରା ଦେବୀଙ୍କର ଦୃଷ୍ଟି ସତ୍ୟବ୍ରତ ହାତରେ ପିନ୍ଧିଥିବା ଇନ୍ଦ୍ରନୀଳ ମୁଦି ପ୍ରତି, ସେ ଆକୃଷ୍ଟ ହୋଇଛି ।

: ନା, ନା ମୋତେ ସବୁରକମ ନାମ ଭଲ ଲାଗେ । ତା'ଛଡ଼ା ମୁଁ ଉଗ୍ର ଆଧୁନିକଧର୍ମୀ ନୁହେଁ ।

: ବୁଝିଲେ ମିଷ୍ଟର ଗୋଏଙ୍କା, ମୋ ପାଖକୁ ପ୍ରାୟ ଦୁଇଶହ ଖଣ୍ଡ ଦରଖାସ୍ତ ଆସିଥିଲା, ସବୁ ଦରଖାସ୍ତର ସମୀକ୍ଷା କରି ମାତ୍ର ଚାରିଜଣ ପ୍ରାର୍ଥୀଙ୍କୁ ଇଣ୍ଟରଭିଉ କଲ କରାହୋଇଛି । ତା' ମଧ୍ୟରୁ ଆପଣଙ୍କର ଆପ୍ଲିକେସନ୍‌କୁ ଅଗ୍ରାଧିକାର ଦିଆହୋଇଛି ।

: କାହିଁକି ?

: ତା'ର କାରଣ ହେଉଛି ଆପଣ ଯାହା, ତା'ଠାରୁ ବହୁତ କମେଇ ଆପଣ ବିବରଣୀ ଦେଇଛନ୍ତି, କିନ୍ତୁ ଅନ୍ୟମାନେ..... ସୁଭଦ୍ରାଦେବୀ କଥା ଅସମାପ୍ତ ରଖି ହସିଲେ । କହିଲେ, ବୁଝି ପାରିଲେ ? ତା'ଛଡ଼ା ବର୍ତ୍ତମାନ ଆପଣଙ୍କୁ ଦେଖି ମୋର ମନେହେଉଛି ବୟସ ଦିଗରୁ ମଧ୍ୟ ଆପଣ କାର୍ପଣ୍ୟ କରି ନାହାନ୍ତି ।

: କିନ୍ତୁ.... .

: କ'ଣ କୁହନ୍ତୁ, ଅଟକି ଗଲେ କାହିଁକି ?

: ନା, ମୁଁ ଭାବୁଛି ଆପଣଙ୍କର ସମୀକ୍ଷାର ଧାରା କଥା । ଆପଣଙ୍କ ସହିତ କଥାବାର୍ତ୍ତା କରିବା ପରେ ମୋର ମନେହେଉଛି ମୁଁ ଯେପରି ଏକ ମହୀୟସୀ ମହିଳାଙ୍କର ସାକ୍ଷାତ ପାଇଛି, ଭାରତବର୍ଷରେ ଆପଣଙ୍କ ପରି ମହିଳା ଆପଣ ବୋଧହୁଏ ସର୍ବ ପ୍ରଥମ ।

: କାହିଁକି, କାହିଁକି,? ହଠାତ୍ ମୋତେ ଆପଣ ପ୍ରଶଂସା କରି ଉଠିଲେ କାହିଁକି ?

: ନା, ଆପଣ ବାସ୍ତବିକ୍ ଅନନ୍ୟା, ଆପଣଙ୍କୁ ଗ୍ରହଣ କରିବାକୁ ସାମାନ୍ୟତମ ଆପତ୍ତି ବି ନାହିଁ ।

: କିନ୍ତୁ ଗୋଟିଏ କଥା ମିଷ୍ଟର ଗୋଏଙ୍କା । ଏହି କଥା ପଦକ ମୋ ମୁହଁରୁ ଶୁଣି ଆପଣ ଆହୁରି ଆଶ୍ଚର୍ଯ୍ୟ ହୋଇଯିବେ ।

ସୁଭଦ୍ରା ଦେବୀ ମୁହୂର୍ତ୍ତେ ନୀରବ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲେ, ତା'ପରେ ଧୀରେ ଧୀରେ କହିଲେ : ମୋର ଯେଉଁ ସମ୍ପତ୍ତିର ବିବରଣୀ କଥା ଜାଣି ଆପଣ ଗୋପାଳପୁରଯାଏ ଛୁଟିଆସିଛନ୍ତି, ତାହା ସଂପୂର୍ଣ୍ଣ ମରୀଚିକା ।

: ମାନେ ? ସତ୍ୟବ୍ରତଙ୍କ କଣ୍ଠ ସ୍ୱରରେ ବିସ୍ମୟ ଫୁଟିଉଠିଲା ।

ସୁଭଦ୍ରା ଦେବୀ ଅଳ୍ପ ଅଳ୍ପ ହସି, ଗ୍ଲାସଟାକୁ ଆଖିରୁ ଖୋଲି ଟେବୁଲ୍ ଉପରେ ଥୋଇ କହିଲେ : ସତ କହିବାକୁ ଗଲେ ମୋର ବିରାଟ ଏକ କୃଷି ଫାର୍ମ ଛଡ଼ା ସମ୍ବଳ ଆଉ କିଛି ନାହିଁ ।

ସତ୍ୟବ୍ରତ ଏହି ରହସ୍ୟମୟୀ ତରୁଣୀଟିଠାରୁ ଏପରି ଏକ ଉତ୍ତର ହୁଏତ ଆଶା କରି ନଥିଲେ । ସେ ମୁହୂର୍ତ୍ତେ ନୀରବ ହୋଇ ସାମାନ୍ୟ ଚିନ୍ତାକରି କହିଲେ : ତା'ହେଲେ ଆପଣ କ'ଣ କହୁଛନ୍ତି ? ମୁଁ ଫେରିଯିବି ।

: ନା, ନା ମିଷ୍ଟର ଗୋଏଙ୍କା, ମୁଁ ଆପଣଙ୍କୁ ଫେରେଇ ଦେବାକୁ ଡାକି ନାହିଁ; କିନ୍ତୁ ଆପଣଙ୍କ ନିଷ୍କପଟ ଆଚରଣ ଯୋଗୁଁ ମୋ ତରଫରୁ ସତ୍ୟକଥା କହିବାକୁ ମୁଁ ବାଧ ହୋଇଛି, ତା'ଛଡ଼ା ଆମର ଯେଉଁ ସମ୍ପର୍କ ପ୍ରତିଷ୍ଠା ହେବାକୁ ଯାଉଛି, ସେହି ସମ୍ପର୍କ ଭିତରେ ଛଳନା ଆଉ କପଟାଚାର ଆଦୌ ଗ୍ରହଣୀୟ ନୁହେଁ ।

: ହୁଁ, ବୁଝିଲି, ସତ୍ୟବ୍ରତଙ୍କ ସ୍ୱର ଗମ୍ଭୀର ହୋଇ ଉଠିଥିଲା ।

ସୁଭଦ୍ରା ଦେବୀ କହିଲେ : ଏହାପରେ ଆଉ ଆଲୋଚନା ଚଳେଇ ଯିବା ନା ଏତିକରୁ ବନ୍ଦ କରିବା ?

: ମାନେ ?

: ମାନେ ଆଉ କ'ଣ ଆପଣଙ୍କର ପ୍ରଥମ ଆଶା ବ୍ୟର୍ଥ ହୋଇଛି; ଅର୍ଥାତ ଆପଣ ମୋ ପାଖକୁ ମୁଖ୍ୟତଃ ସମ୍ପତ୍ତି ଲୋଭରେ ଛୁଟି ଆସିଥିଲେ, ବର୍ତ୍ତମାନ ବୁଝି ତ ପାରୁଛନ୍ତି, ମୋର ମାତ୍ର ଏକ କୃଷି ଫାର୍ମ ଛ'ଡ଼ା ଆଉ କିଛି ନାହିଁ । ସେଇଥିପାଇଁ ପଚାରୁଥିଲି.......

: ସେତିକିରେ ଚଳିବ । ସତ୍ୟବ୍ରତ ଶାନ୍ତ ସ୍ୱରରେ କହିଲେ ।

: ମାନେ ? ଆପଣ ବିଶାଳ ସମ୍ପତ୍ତିର ଅଧିକାର ଛାଡ଼ିଦେଇ ମୋର ଏହି କେତେ ଏକର ଜମିରେ ଚାଷ ଆରମ୍ଭ କରିବେ ?

ସତ୍ୟବ୍ରତ ହସିଲେ । କହିଲେ : ଓଲଟା କିଛି ତ ହୋଇପାରେ । ଧରନ୍ତୁ ମୁଁ ଆପଣଙ୍କୁ ମୋର ସେଇ ବିଶାଳ ସାମ୍ରାଜ୍ୟର ଅଧିଶ୍ୱରୀ କରି ନେଇଯାଇପାରେ ।

: ତା' ଅବଶ୍ୟ ପାରନ୍ତି; କିନ୍ତୁ ମୋର ଗୋଟିଏ ସ୍ୱତନ୍ତ୍ର ଅଭିରୁଚି ଅଛି । ମୋର ସେହି ଫାର୍ମଟି ଛାଡ଼ି ମୁଁ କୁଆଡ଼େ ଯାଇପାରିବି ନାହିଁ । ମୋ ସହିତ ଯଦି କେହି ତାଳ ମିଳାଇ ଚଳି ପାରିଲା ତେବେ ମୁଁ ତାକୁ ଗ୍ରହଣ କରିବି, ନୋହିଲେ ନାହିଁ ।

ଏହାପରେ କିଛି ସମୟ ପାଇଁ ନୀରବତା ନଇଁ ଆସିଲା ।

ଦୀର୍ଘ ନୀରବତା ପରେ ସତ୍ୟବ୍ରତ ପ୍ରଶ୍ନ କଲେ : ତା'ହେଲେ ଆପଣଙ୍କର ଦୁଇ ନମ୍ବର ପ୍ରାର୍ଥୀଟି କିଏ ?

ସୁଭଦ୍ରା ଦେବୀ କହିଲେ : ସେସବୁ ଗୋପନ କଥା ଆପଣଙ୍କୁ ଜଣାଇପାରିବି ନାହିଁ । ତେବେ ଆପଣଙ୍କର ଉଚିତ୍ ଥରେ ମୋର ସେହି ଫାର୍ମଟି ଦେଖି ଆସିବା । ଆଶାକରୁଛି ଆପଣ ଥରେ ମୋର ସେହି ଫାର୍ମଟି ଆଡୁ ବୁଲି ଆସିଲେ ଆଉ ସହରକୁ ଲେଉଟି ଯିବା ପାଇଁ ଇଚ୍ଛା କରିବେ ନାହିଁ ।

: ରାଜି । ସତ୍ୟବ୍ରତ ସମ୍ମତି ଜଣାଇଲେ ।

: ତା'ହେଲେ ଆଲୋଚନା ଏତିକିରୁ ମୁଲତବୀ ରହିଲା ।

ଆପଣ ମୋର ଫାର୍ମ ପରିଦର୍ଶନ ଶେଷରେ ଆପଣଙ୍କର ଶେଷ ମନ୍ତବ୍ୟ ଦେବେ, ଏଇଆ ତ ? ସୁଭଦ୍ରା ଦେବୀ ପଚାରିଲେ ।

ସତ୍ୟବ୍ରତ କହିଲେ : ମୋର ସିଦ୍ଧାନ୍ତ ନହେଲେ ପଛରେ ଜଣାଇବି; କିନ୍ତୁ ମୋ ପ୍ରତି ଆପଣଙ୍କର ସିଦ୍ଧାନ୍ତଟା କ'ଣ ?

ସୁଭଦ୍ରା ଦେବୀ ଗ୍ଲାସଟି ଉଠାଇ ନେଇ ଆଖିରେ ଲଗାଇଲେ । ଉଠି ଠିଆ ହୋଇ ପଡ଼ି କହିଲେ: ମୋ ସିଦ୍ଧାନ୍ତ ତ ଆଗରୁ ମୁଁ ଆପଣଙ୍କୁ ଜଣାଇଦେଇଛି । ତେବେ ସତକଥା କହିବାକୁ ଗଲେ ମୋର ବିଶେଷ କିଛି ଆପତ୍ତି ନାହିଁ । ତେବେ ଆପଣ କୃଷି ଫାର୍ମରେ ରହି ମୋ ସହିତ ଜୀବନ ଯାପନ କରିବାକୁ ପଡ଼ିବ ।

ସତ୍ୟବ୍ରତ ମଧ୍ୟ ଉଠି ଠିଆ ହୋଇଥିଲେ ।

ସୁଭଦ୍ରା ଦେବୀ ପଚାରିଲେ : ଆପଣ କେଉଁଠି ରହୁଛନ୍ତି ?

: ମୁଁ, ବ୍ରହ୍ମପୁରରେ ଗୋଟାଏ ହୋଟେଲରେ ଉଠିଛି । ସେଉଠୁ ନିତ୍ୟକର୍ମ ଶେଷକରି ଆପଣଙ୍କ ସହିତ ସାକ୍ଷାତ କରିବାକୁ ଆସିଥିଲି ।

: ଠିକ୍ ଅଛି, ଆପଣ ସେଇଠିକୁ ବର୍ତ୍ତମାନ ଫେରିଯାଆନ୍ତୁ । ଆଜି ସଂଧ୍ୟା ଛ'ଟାବେଳକୁ ଆପଣ ପ୍ରସ୍ତୁତ ହୋଇ ଖଲ୍ଲିକୋଟ କଲେଜ ପାଖରେ ଅପେକ୍ଷା କରିଥିବେ । ଗୋଟିଏ କଳାରଙ୍ଗର ଆମ୍ବାସାଡ଼ାର ଗାଡ଼ି ଠିକ୍ ସମୟରେ ଆପଣଙ୍କ ପାଖରେ ପହଞ୍ଚିବ । ଆପଣ ସେଇ ଗାଡ଼ିରେ ଉଠି ବସିବେ ।

: କିନ୍ତୁ ମୋର ଯେ ଗାଡ଼ି ଅଛି । ମୋ ଗାଡ଼ିରେ....

: ନା, ନା। ଆପଣଙ୍କର ଗାଡ଼ିର ଆବଶ୍ୟକତା ନାହିଁ । ଆପଣ ସେହି କଳା ଆମ୍ବାସାଡ଼ାରରେ ବସିଲେ ଡ୍ରାଇଭର ଆପଣଙ୍କୁ ନେଇ ଠିକ୍‌ଯାଗାରେ ଛାଡ଼ିଦେବ । ମୁଁ ଅପେକ୍ଷା କରିଥିବି ।

ସୁଭଦ୍ରା ଦେବୀ ଆଉ ଅପେକ୍ଷା ନକରି, ସେଇ ଘରର ଗୋଟିଏ ଦରଜା ଖୋଲି ଅନ୍ୟ କକ୍ଷକୁ ଚାଲିଗଲେ ।

ସତ୍ୟବ୍ରତ ସ୍ତବ୍ଧ ହୋଇ ଚାହିଁ ରହିଥିଲେ ସେଇଆଡ଼େ ।

ବଡ଼ ବିଚିତ୍ର ମନେହେଲା ସୁଭଦ୍ରା ଦେବୀଙ୍କ ଆଚରଣ ।

ସତ୍ୟବ୍ରତଙ୍କର କିନ୍ତୁ ଅନ୍ୟ ଉପାୟ କିଛି ନଥିଲା ।

ସେ ଧୀରେ ପାଦଚାଳି ବାହାରି ଆସିଲେ ବାହାରକୁ ।

ବାଲୁକା ପ୍ରାନ୍ତର, ଝାଉଁବଣ, ଆଉ ସମୁଦ୍ରର ନୀଳଢେଉ ତାଙ୍କ ମନର କିଛି ଦାଗ କାଟି ପାରିଲା ନାହିଁ ।

ସତ୍ୟବ୍ରତ ବାଲୁକାପ୍ରାନ୍ତର ଉପରେ ଧୀର୍ ପାଦଚାଳି ଚିନ୍ତିତ ମନରେ ଆଗେଇ ଯାଉଥିଲେ ।

ସତ୍ୟବ୍ରତ ହୋଟେଲରେ ବସି ଚିନ୍ତା କରୁଥିଲେ ।

ସୁଭଦ୍ରା ଦେବୀ ଅଳ୍ପ ବୟସୀ, ଆଧୁନିକା ସୁନ୍ଦରୀ ଆଉ ବୁଦ୍ଧିମତୀ ମଧ୍ୟ । ସେ ହୁଏତ ଦ୍ୱାରିକାନାଥ ଗୋଏଙ୍କା ନାମୀ ସତ୍ୟବ୍ରତ ମହାପାତ୍ରଙ୍କୁ ଫାନ୍ଦରେ ପକାଇଛି । ଚେଷ୍ଟା ତା'ର ସଫଳ ହୋଇଛି ।

କିନ୍ତୁ ସତ୍ୟବ୍ରତଙ୍କର ଉଦ୍ଦେଶ୍ୟ ?

କାହିଁକି ସେ ଆସିଛନ୍ତି ସୁଭଦ୍ରା ଦେବୀ ପାଖକୁ ! ସେ ସମ୍ବନ୍ଧରେ କୌଣସି ସାମାନ୍ୟତମ ଆଭାସ ବି ମିଳିଲା ନାହିଁ ତାଙ୍କୁ । ଫାର୍ମରେ ଯାଇ ସେ କ'ଣ ତା'ଙ୍କର ଉଦ୍ଦେଶ୍ୟ ସଫଳକରି ପାରିବେ ?

ତଥାପି ତାଙ୍କୁ ପ୍ରୋଗ୍ରାମ ଅନୁଯାୟୀ ଆଗେଇ ଯିବାକୁ ହେବ ।

ସଂଧ୍ୟା ଛ'ଟା ବେଳେ ଯେଉଁ କଳା ଆମ୍ବାସାଡ଼ାରଟି ତାଙ୍କ ଆତିଥେୟତାକୁ ସ୍ୱାଗତ ଜଣାଇବା ପାଇଁ ଆସିବ, ସେଇ ଆମ୍ବାସାଡ଼ାରରେ ତାଙ୍କର ଉଠିଯିବା ଉଚିତ ହେବ କି ?

ଏହିପରି ବହୁ ଅସଂଲଗ୍ନ ଭାବନା ମଧ୍ୟରେ ସତ୍ୟବ୍ରତ ବୁଡ଼ିରହିଥିଲେ । ସଂଧ୍ୟା ପୂର୍ବରୁ କଲିକତାର ଗୋଟାଏ ଟେଲିଫୋନ୍ ବାର୍ତ୍ତା ପାଇଁ ସେ ଅପେକ୍ଷା କରିଥିଲେ । ସେ ଆଉର କେତୋଟି ଘଟଣା ସେ ସବ୍ୟସାଚୀଠାରୁ ପାଇବେ ବୋଲି ଆଶା କରୁଥିଲେ । ଧନଞ୍ଜୟ ବୈରାଗୀଙ୍କ ହତ୍ୟା ସହିତ ଏହି ଘଟଣାର କୌଣସି ସଂଯୋଗ ଅଛି କି ନାହିଁ, ସେ କେବଳ ସେତିକି ଜାଣିବାକୁ ଚାହାନ୍ତି ।

ଘଣ୍ଟାକଣ୍ଟା କିନ୍ତୁ ଆଗେଇ ଚାଲିଥିଲା ।

ସଂଧ୍ୟା ପାଖେଇ ଆସୁଥିଲା ।

କିନ୍ତୁ କଲିକତା ସହିତ ଟେଲିଫୋନ୍‌ରେ ସେ କୌଣସି ସଂଯୋଗ ସ୍ଥାପନ କରି ପାରିଲେ ନାହିଁ । ଶେଷରେ ଟେଲିଫୋନ୍ ଏକ୍ସଚେଞ୍ଜ ତାଙ୍କୁ ନିରାଶ କଲା-ଲାଇନ୍ ଖରାପ ଅଛି ।

ସତ୍ୟବ୍ରତ ଆଉ ଅପେକ୍ଷା କଲେ ନାହିଁ ।

ଯାହାଥିବ କପାଳରେ ଭାବି, ସେ ପ୍ରସ୍ତୁତ ହୋଇ ପଡ଼ିଲେ ।

ଠିକ୍ ଛ'ଟାବେଳେ ଖଲିକୋଟ୍ କଲେଜ ସାମ୍‌ନାରେ ଗୋଟିଏ କଳା ଆମ୍ବାସାଡ଼ାର ଗାଡ଼ି ଆସି ଠିଆହେଲା ।

ସତ୍ୟବ୍ରତ ଗାଡ଼ିଟିକୁ ଚାହିଁଲେ ।

ସାମ୍‌ନାରେ ଡ୍ରାଇଭର ଖାକି ପୋଷାକ ପିନ୍ଧି ଓ ମୁଣ୍ଡରେ ଗୋଟିଏ ଟୋପି ଲଗେଇ ବସିଛି ।

ଗାଡ଼ିର ପଛ ଦୁଆରଟା ଖୋଲିଗଲା ।

ସତ୍ୟବ୍ରତ ଆଗେଇ ଯାଇ ଦେଖିଲେ ଜଣେ ମହିଳା ।

ସେ କିନ୍ତୁ ସୁଭଦ୍ରା ଦେବୀ ନୁହନ୍ତି ।

ତା'ହେଲେ ?

ମହିଳାଟି ହାତଠାରି ସତ୍ୟବ୍ରତଙ୍କୁ ଡାକିଲା ।

ସତ୍ୟବ୍ରତ ଭିତରେ ବସିଲେ। ଗାଡ଼ି ଛାଡ଼ିଦେଲା । ମହିଳାଟି ସତ୍ୟବ୍ରତଙ୍କ ପାଖରୁ ଟିକିଏ ଦୂରେଇ ବସିଲା ।

ସତ୍ୟବ୍ରତ ମହିଳାଟି ଆଡ଼େ ପ୍ରଶ୍ନବାଚୀ ଆଖିରେ ଚାହିଁ କହିଲେ : ଆପଣଙ୍କ ପରିଚୟଟା ଜାଣିପାରିଲି ନାହିଁ ତ !

: ମୋ ନାଁ ସୁଧା ଆରୋରା । ମୁଁ ସୁଭଦ୍ରା ଦେବୀଙ୍କର ପି : ଏ :

: ହୁଁ, ବୁଝିଲି । ଆମେ ବର୍ତ୍ତମାନ କୁଆଡ଼େ ଯାଉଛେ ?

: ଆପଣ ଜାଣିଥିବେ । ସୁଭଦ୍ରା ଦେବୀ ଆପଣଙ୍କୁ କହିଥିବେ ।

: ହୁଁ କହିଥିଲେ । କିନ୍ତୁ ଆମେ କେତେଦୂର ଯିବା ?

: ଏଠାରୁ ଅନେକଦୂର ।

ତା'ପରେ ନୀରବତା । ଗାଡ଼ି ଆଗେଇ ଚାଲିଥିଲା କ୍ରମେ ସେମାନେ ଟାଉନ୍ ଛାଡ଼ିଦେଲେ ।

ସୁଧା ଆରୋରା ବାହାରକୁ ଚାହିଁ ଚୁପ୍‌ଚାପ୍ ବସିଥିଲେ ।

ସୁଭଦ୍ରା ଦେବୀଙ୍କର ସେହି ଫାର୍ମରେ କେତେଲୋକ କାମ କରନ୍ତି ?

: ଅନେକ ଲୋକ ।

: ସେଠାରେ କ'ଣ ସବୁ ଚାଷ ହୁଏ ?

: ଅନେକ ଜିନିଷ ।

ସତ୍ୟବ୍ରତ ବୁଝିଲେ, ପ୍ରୟୋଜନରୁ ଅତିରିକ୍ତ ସୁଧା ଆରୋରା କିଛି କହିବାକୁ ଚାହେଁ; ନାହିଁ

ତଥାପି ସେ ପଚାରିଲେ : ଆପଣ ସେଠାରେ କେତେ ବର୍ଷ ହେବ କାମ କରୁଛନ୍ତି ?

: ଅନେକ ଦିନରୁ ।

ସତ୍ୟବ୍ରତ ସୁଧା ଆରୋରାଙ୍କର ଏପରି ଅସହଯୋଗ ମନୋବୃତ୍ତି କଥା ବୁଝିପାରି ନୀରବ ରହିଲେ ।

ଆଉ କୌଣସି କଥାବାର୍ତ୍ତା ନୁହେଁ ।

ଏକ ସମୟରେ ଗାଡ଼ି ଯାଇ ଠିଆହେଲା ନିର୍ଦ୍ଦିଷ୍ଟ ସ୍ଥାନରେ ।

ସୁଧା ଆରୋରା କହିଲେ : ଏଥର ଓହ୍ଲାନ୍ତୁ । ଆମେ ଆସି ପହଞ୍ଚିଗଲେଣି ।

ସତ୍ୟବ୍ରତ ଗାଡ଼ିରୁ ଓହ୍ଲାଇଲେ, ସାମନାରେ ଗୋଟିଏ ଦୋତାଲା କୋଠା । ଅନ୍ଧକାର ଚାରିଆଡ଼େ ଛାଇଯାଇଥିଲା । କେବଳ କୋଠାଟିରେ ଆଲୋକ ଜଳୁଥିବାରୁ ସତ୍ୟବ୍ରତ ଧୀରେ ଧୀରେ ଆଗେଇ ଗଲେ ।

ଦୋତାଲା ଉପରେ, ବାରଣ୍ଡାରେ ଗୋଟିଏ ଇଜି ଚେଆର ଉପରେ ଅର୍ଦ୍ଧ ଶାୟିତ ଅବସ୍ଥାରେ ସୁଭଦ୍ରା ଦେବୀ ଖବର କାଗଜ ପଢୁଥିଲେ । ପିନ୍ଧିଥିଲେ ଖଣ୍ଡେ ହାଲ୍‌କା ସାଦା ଶାଢ଼ି ।

ସତ୍ୟବ୍ରତଙ୍କୁ ଦେଖି ଅଳସ ଭଙ୍ଗୀରେ କହିଲେ : ଆସନ୍ତୁ ମିଷ୍ଟର ଗୋଏଙ୍କା । ମୁଁ ଆପଣଙ୍କ ପାଇଁ ଅପେକ୍ଷା କରି ବସିଛି ।

ସତ୍ୟବ୍ରତଙ୍କ ଆଖି ଦୁଇଟି ସୁଭଦ୍ରା ଦେବୀଙ୍କ ମୁହଁ ଉପରେ ସ୍ଥିର ହୋଇଗଲା । ସକାଳେ ଏତେ ସମୟ ସେ କଥାବାର୍ତ୍ତା ହୋଇଥିଲେ ସୁଭଦ୍ରା ଦେବୀଙ୍କ ସହିତ କିନ୍ତୁ.....

: ବସନ୍ତୁ। ସୁଭଦ୍ରା ଦେବୀ ନୀରବତା ଭଙ୍ଗକରି କହିଲେ ।

: ହଁ, ସତ୍ୟବ୍ରତ ଚଞ୍ଚଳ ହୋଇଉଠିଲେ । ସାମ୍ନା ଚେଆରରେ ବସୁ ବସୁ କହିଲେ, ଧନ୍ୟବାଦ ।

ସୁଭଦ୍ରା ଦେବୀ ହସି କହିଲେ : ମୋର ଏହି ଘରଟିର ନାମ ଶୈଳାବାସ । ଏହି ଫାର୍ମରେ ସବୁ ପ୍ରକାର ଆଧୁନିକ ବ୍ୟବସ୍ଥା ରହିଛି । ପ୍ରାଚୀନ ଆଉ ନୂତନର ମିଳନରେ ମୁଁ ଏକ ନୂତନ ତୀର୍ଥ ଗଠନ କରିବାକୁ ଚେଷ୍ଟା କରୁଛି । ତେଣୁ ଆପଣଙ୍କ ସହଯୋଗ, ମୋତେ ସହାୟତା କରିବ, ଏହି ଆଶା ମୁଁ ପୋଷଣ କରିବି ।

: ନିଶ୍ଚୟ, ନିଶ୍ଚୟ ସୁଭଦ୍ରା ଦେବୀ । ସହରଠାରୁ ଦୂରରେ, ଆପଣ ଯେଉଁ ଆଦର୍ଶବାଦ ମନରେ ଧରି କାର୍ଯ୍ୟରେ ଅଗ୍ରସର ହୋଇଛନ୍ତି, ଏକା ମୁଁ କାହିଁକି ଭଗବାନ ଆପଣଙ୍କୁ ସହାୟ ହେବେ ।

ସୁଭଦ୍ରା ଦେବୀ କହିଲେ : ଆଜି ଆପଣ ବିଶ୍ରାମ କରନ୍ତୁ । ସୁଧା ଆପଣଙ୍କୁ ନିର୍ଦ୍ଦିଷ୍ଟ ଘର ଦେଖାଇ ଦେବ । କାଲି ସୂର୍ଯ୍ୟୋଦୟ ପରେ ମୁଁ ଆପଣଙ୍କୁ ସବୁ ବୁଲେଇ ଦେଖେଇବି । ତା'ପରେ ଆପଣଙ୍କର ମତାମତ ମୋତେ ଜଣାଇବେ ।

ସୁଧା ଆରୋରା ସତ୍ୟବ୍ରତ ମହାପାତ୍ରଙ୍କୁ ଏକ ନିର୍ଦ୍ଦିଷ୍ଟ କକ୍ଷ ଦେଖାଇ ଦେଇ କହିଲା : ଭିତରକୁ ଯାଆନ୍ତୁ, ସବୁ ପ୍ରକାର ବ୍ୟବସ୍ଥା ଅଛି । ଆପଣଙ୍କର କିଛି ଅସୁବିଧା ହେବ ନାହିଁ । ଦରକାର ହେଲେ କଲିଂ ବେଲ୍ ଟିପି ଚାକରକୁ ଡାକିବେ ।

ସତ୍ୟବ୍ରତ ପଛକୁ ଚାହିଁ ଚାହିଁ ଦରଜା ଠେଲିଲେ । ସୁଧା ଆରୋରା ଚାଲିଯାଉଥିଲା । ଦରଜା ମଧ୍ୟ ଖୋଲିଗଲା ।

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ସେ ଏକ ଚିତ୍ରପୁରୀ ମଧ୍ୟରେ ପ୍ରବେଶ କରୁଛନ୍ତି ।

ଘରର ସାଜସଜ୍ଜା, ଆସବାବ ସହ ସବୁଠି ଅତ୍ୟାଧୁନିକର ଛାପ ଲାଗିରହିଛି । ଘରର ଝରକା ଭିତର ଦେଇ ଶୀତଳ ପବନ କେଉଁଠୁ ନାନାଜାତି ଫୁଲର ଗନ୍ଧ ବାହି ଆଣୁଛି ।

ସତ୍ୟବ୍ରତ ଘର ଭିତରେ ଅତି ଯତ୍ନରେ ସଜଡ଼ା ଶେଯଉପରେ ବସିପଡ଼ିଲେ । ନରମ, ହାଲୁକା, ଆଃ....

ମୁହୂର୍ତ୍ତକ ପରେ ଦରଜା ଖୋଲିବାର ଶବ୍ଦ ହେଲା । ଜଣେ ବୟସ୍କ ପରିଚାରକ ହାତରେ ଗୋଟିଏ ଟ୍ରେ' ଧରି ଭିତରକୁ ପଶିଲା । ଟ୍ରେ'ରେ କେତେକ ଖାଦ୍ୟଦ୍ରବ୍ୟ ଏବଂ କଫିପଟ୍ ।

ପରିଚାରକଟି କହିଲା : ହଜୁର୍ ମୁଁ ଆସିଛି ।

ସତ୍ୟବ୍ରତ କହିଲେ : ଭଲ କରିଛ । ତୁମେ ଖାଇବା ଜିନିଷତକ ସେଇଠି ରଖିଦେଇ ଚାଲିଯାଅ । ମୁଁ ପରେ ଖାଇଦେବି ।

: ନା ହଜୁର୍ । ଆମର ଏହି ଶୈଳାବାସରେ ନିୟମକାନୁନ୍ ଟିକିଏ ଅନ୍ୟ ଧରଣର । ଅତିଥିମାନଙ୍କର ସେବା ଯତ୍ନ ଆମେ ନିଜେ ହାତରେ କରିଥାଉଁ, ଅବଶ୍ୟ ମା'ଙ୍କର ଏହି କଠୋର ଆଦେଶ ଆମକୁ ପାଳନ କରିବାକୁ ହୋଇଥାଏ ।

ସତ୍ୟବ୍ରତ ସେହି ବୟସ୍କ ପରିଚାରକଟି ଆଡ଼େ କିଛି ସମୟ ନିର୍ନିମେଷ ନୟନରେ ଚାହିଁ କହିଲେ : ତମ ନାଁ କ'ଣ ?

: ସାଗର ଦାସ ।

: କେତେ ବର୍ଷ ହେବ ଏଠାରେ କାମ କରୁଛ ?

: ଅନେକ ଦିନରୁ ।

: ଅନେକ ଦିନ ମାନେ କେତେ ଦିନ ?

ସାଗର ଦାସ କହିଲା : ଆପଣ ଗୋଟିଏ କଥା ମନେରଖନ୍ତୁ, ଆପଣ ଏଠାକୁ ନୂଆ ଆସିଛନ୍ତି, ଆପଣ ଆମର ଅତିଥି । ସମସ୍ତ ପ୍ରକାର ସମ୍ମାନର ଆପଣ ଅଧିକାରୀ; କିନ୍ତୁ ଶୈଳାବାସର କୌଣସି କର୍ମଚାରୀଙ୍କୁ ବ୍ୟକ୍ତିଗତ ପ୍ରଶ୍ନ କିଛି କରିବେ ନାହିଁ । ଶୈଳାବାସର ଏହା ନିୟମ ।

: ହୁଁ, ସତ୍ୟବ୍ରତ ଟିକିଏ ନୀରବ ହୋଇ କହିଲେ, ବୁଝିଲି । ଏଥର କୁହ ମୋତେ କ'ଣ କରିବାକୁ ହେବ ।

: ଏଥର ଆପଣ ଭୋଜନପର୍ବ ଶେଷ କରନ୍ତୁ । ସାଢ଼େ ନଅଟା ଭିତରେ ସମସ୍ତଙ୍କୁ ଶୋଇପଡ଼ିବାକୁ ହେବ । ଶୈଳାବାସର ଏହା ନିୟମ ।

ସତ୍ୟବ୍ରତ କହିଲେ : ନିୟମଟା ଅତିଥିମାନଙ୍କ ପାଇଁ ବି ପ୍ରଯୁଜ୍ୟ ?

ସାଗର ଦାସ ବିନୟ ସହକାରେ କହିଲା : ଆପଣ ଦିନେ ଦୁଇଦିନ ଏଠାରେ ରହିଗଲେ, ଧୀରେ ଧୀରେ ସବୁକଥା ଜାଣିପାରିବେ । ଆପଣଙ୍କୁ ବି ସବୁ ଭଲ ଲାଗିବ । ଉଠନ୍ତୁ । ଏଇ ସାମ୍‌ନା ଘରଟା ବାଥ୍‌ରୁମ୍, ମୁହଁ ହାତ ଧୋଇ ଆସନ୍ତୁ ।

ସତ୍ୟବ୍ରତ ଆଉ କଥା ନ ବଢ଼ାଇ ବାଥ୍‌ରୁମ୍‌କୁ ଉଠିଗଲେ । ଫେରିଲା ବେଳକୁ ସାଗରଦାସ ଖାଦ୍ୟ ସାମଗ୍ରୀସବୁ ପ୍ଲେଟ୍‌ରେ ସଜାଇ ରଖିଥିଲା । ସତ୍ୟବ୍ରତଙ୍କୁ ଖାଇବାଟା ଖୁବ୍ ତୃପ୍ତିକର ମନେହେଲା । ସାଗର ଦାସ କଫି ପଟ୍‌ରୁ କଫି ଢାଳିବାର ଦେଖି ସତ୍ୟବ୍ରତ କହିଲେ : ଏହି ଗୁରୁ ଭୋଜନ ପରେ କଫିର ଆଉ ଆବଶ୍ୟକ ନାହିଁ ।

ସାଗର ଦାସ ସେହିପରି ବିନୟ ସହକାରେ କହିଲା : ଶୈଳାବାସର ନିୟମ ଆଜ୍ଞା । ଭୋଜନ ପରେ ସମସ୍ତେ କଫି ପାନ କରନ୍ତି ।

ସତ୍ୟବ୍ରତ ଅତ୍ୟନ୍ତ ରାଗିଯାଇଥିଲେ ମଧ, କୌଣସି ପ୍ରତିବାଦ ନକରି ଧୀରେ ଧୀରେ କଫି କପ୍‌ଟା ମଧ ପିଇ ଶେଷ କଲେ ।

ସାଗର ଦାସ ଏହାପରେ ଶୁଭରାତ୍ରି ଜଣାଇ କହିଗଲା ଆପଣ ଶୋଇ ପଡ଼ନ୍ତୁ । ଆଉ ଅଧ ଘଣ୍ଟାପରେ ସମସ୍ତ ଶୈଳାବାସ ଅନ୍ଧକାର ହୋଇଯିବ। ଠିକ୍ ରାତି ସାଢ଼େ ନଅରେ, ଶୈଳାବାସର ମେନ୍ ସୁଇଚ୍ ଅଫ୍ କରି ଦିଆହୁଏ । ଅନ୍ଧକାର ଘୋଟିଯାଏ ଚାରିଆଡ଼େ । ଆପଣ ଅନ୍ଧକାର ଭିତରେ କୁଆଡ଼େ ବାହାରକୁ ବାହାରିବାର ଚେଷ୍ଟା କରିବେ ନାହିଁ ।

ସାଗର ଦାସ ଚାଲିଗଲା ।

ସତ୍ୟବ୍ରତ ତା' ଯିବା ପଥକୁ କିଛି ସମୟ ଅନାଇ ରହି, ବିଛଣା ଉପରେ ନିଜର ଅବଶ ଦେହଟାକୁ ଲୋଟେଇ ଦେଲେ ।

କିନ୍ତୁ....

ପୁଣି ଦରଜା ଖୋଲିବାର ଶବ୍ଦ ହେଲା ।

ସତ୍ୟବ୍ରତ ଚାହିଁ ଦେଖିଲେ ସ୍ୱୟଂ ସୁଭଦ୍ରା ଦେବୀ । ରାତ୍ରିବାସରେ ସମଗ୍ର ଦେହ ଆବୃତ । ଆଖିରେ ଅଳସ ଚାହାଣି । ଘର ଭିତରକୁ ପଶି ଆସି କହିଲେ : ଶୁଭରାତ୍ରି ଜଣାଇବାକୁ ଆସିଲି । କିଛି ଅସୁବିଧା ଅନୁଭବ କରୁ ନାହାନ୍ତି ତ ?

: ନା, ନା ସୁଭଦ୍ରା ଦେବି । ଆପଣ ଯାଆନ୍ତୁ ବିଶ୍ରାମ କରିବେ ।

ସୁଭଦ୍ରା ଦେବୀ କହିଲେ : ଆପଣଙ୍କ ସହିତ ଅନେକ କଥା ଅଛି । ମନ ଖୋଲି ରାତି ରାତି ଅନିଦ୍ରା ହୋଇ ଗଳ୍ପ କରିବାକୁ ମନହେଉଛି; କିନ୍ତୁ ଶୈଳାବାସର ନିୟମ ଆମକୁ ତାହା କରାଇ ଦେବ ନାହିଁ । କାଲି ସକାଳେ ପୁଣି ଦେଖାସାକ୍ଷାତ । ଶୁଭରାତ୍ରି ।

ସୁଭଦ୍ରା ଦେବୀ ଚାଲିଗଲେ ।

: ଏହା ପରେ ?

ସତ୍ୟବ୍ରତ ଦରଜା ଆଡ଼କୁ ଚାହିଁଥିଲେ । ଏହା ପରେ ଆଉ କାହାରି ଆବିର୍ଭାବର ସମ୍ଭାବନା ନାହିଁ ତ ?

କିଏ ଜାଣେ ! ଶୈଳାବାସର ନିୟମ ଅନୁସାରେ ଆଉ ଯଦି କାହାରି ପ୍ରବେଶ କରିବାର ନିୟମ ଥାଏ । ଆସନ୍ତୁ; ଆପତ୍ତି କରିବାର କିଛି ନାହିଁ; ଆପତ୍ତି କଲେ ଶୁଣିବ୍ କିଏ ?

କିନ୍ତୁ.....

ସତ୍ୟବ୍ରତଙ୍କର ମନେହେଲା ସେ ଯେପରି ଆଉ ବସିପାରିବେ ନାହିଁ । ଆଖିରେ ତାଙ୍କର ପ୍ରବଳ ନିଦ୍ରା ।

ଧୀରେ ଧୀରେ ସେ ଦେହଟାକୁ ପୁଣି ଶେଯଉପରେ ଲୋଟାଇ ଦେଲେ ।

ପକ୍ଷୀମାଙ୍କର କାକଳିରେ ସତ୍ୟବ୍ରତର ନିଦ୍ରାଭଙ୍ଗ ହେଲା ।

ଝରକା ଦେଇ ଦିନର ଆଲୋକ ସମଗ୍ର ଘରେ ବିସ୍ତୃତ ହୋଇପଡ଼ିଥିଲା ।

ସତ୍ୟବ୍ରତ ଉଠିଲେ । ଆଗେଇ ଗଲେ ଝରକା ପାଖକୁ । ଅଦୂରରେ ପାହାଡ଼ ଖାଲି ପାହାଡ଼, ଛୋଟ ବଡ଼ ଅନେକ । ଖଣ୍ଡ ଖଣ୍ଡ ଭସା ମେଘ ପରି ଦିଶୁଛି ।

ଦରଜା ଖୋଲିବାର ଶବ୍ଦ ଶୁଣି ସତ୍ୟବ୍ରତ ବୁଲି ଅନାଇଲେ । ସାଗର ଦାସ ଟ୍ରେ' ଉପରୁ ପ୍ଲେଟ୍ କାଢ଼ି ଜଳଖିଆ ହାତରେ, ଗୋଟିଏ ଟେବୁଲ ଉପରେ ରଖିଲା ।

ସତ୍ୟବ୍ରତର କିଛି କଥା ନ କହି ସିଧା ବାଥରୁମକୁ ଚାଲିଗଲେ । ସାଗର ଦାସ ଟ୍ରେ' ଉପରୁ ପ୍ଲେଟ୍ କାଢ଼ି ଜଳଖିଆ ସଜାଡ଼ିବାକୁ ଲାଗିଲା ।

ସତ୍ୟବ୍ରତ ଖିଆ ଶେଷହେବା ମାତ୍ରକେ, ଦରଜା ଖୋଲି ଘରେ ପଶିଲେ ସୁଭଦ୍ରା ଦେବୀ । ମୁହଁରେ ସେହି ମିଠା ହସ । କହିଲେ : ଶୀଘ୍ର ପ୍ରସ୍ତୁତ ହୋଇପଡ଼ନ୍ତୁ ।

ସତ୍ୟବ୍ରତ ଚା' କପ୍‌ଟା ଶେଷଥର ପାଇଁ ମୁହଁରେ ଲଗାଇ କହିଲେ : ମୁଁ ପ୍ରସ୍ତୁତ, ଚାଲନ୍ତୁ ।

ସୁଭଦ୍ରା ଦେବୀ ଆଉ ବସିଲେ ନାହିଁ । ଦୁହେଁ ବାହାରି ଗଲେ ଘରୁ । ତଳେ ଯାଇ ଦେଖିଲେ ଗୋଟିଏ ଜିପ୍ ସେମାନଙ୍କ ପାଇଁ ଅପେକ୍ଷା କରିଛି ।

ଦୁହେଁ ଜିପ୍‌ରେ ଉଠି ବସିଲେ ।

ବାଃ...ସତ୍ୟବ୍ରତ ବିସ୍ମିତ ହୋଇ ଦେଖିଲେ ଶୈଳାବାସ ପଛପଟକୁ ଯେଉଁ ବିସ୍ତୃତ ଅଞ୍ଚଳ, ତହିଁରେ ଛୋଟ ଛୋଟ ଅନେକ ଘର ଅନେକ ଗଛ, ଲତା, ଅନେକ ଫଳ ଫୁଲ, ଅନେକ ପଶୁପକ୍ଷୀ ଏବଂ...

ଜିପ୍‌ଟି ଗୋଟିଏ ଜାଗାରେ ଠିଆହେଲା ।

ସୁଭଦ୍ରା ଦେବୀ ଓହ୍ଲାଇଲେ, ପଛେ ପଛେ ସତ୍ୟବ୍ରତ ମଧ୍ୟ ।

ଗୋଟିଏ ଛୋଟ ଟାଇଲ୍ ଘରୁ ଜଣେ ମଧ୍ୟବୟସ୍କ ଭଦ୍ରଲୋକ ବାହାରି ଆସିଲେ ।

ସୁଭଦ୍ରା ଦେବୀ କହିଲେ : ଅମରବାବୁ । ଆମ ଗୋଲାପ କଲୋନୀର ଅଧିନାୟକ ।

ସତ୍ୟବ୍ରତ ନମସ୍କାର କଲେ, ଅମରବାବୁ ପ୍ରତିନମସ୍କାର କଲେ ।

ସେମାନେ ଆଗେଇ ଗଲେ ଗୋଲାପ କଲୋନୀ ଭିତରକୁ ।

ଏତେ ଫୁଲ ! ଏତେ ସୁନ୍ଦର, ଏତେ ସୌରଭ !

ସତ୍ୟବ୍ରତ ଆଗରୁ କେବେ ଏତେ ଜାତିର ଗୋଲାପ ଦେଖି ନଥିଲେ । ଅମରବାବୁ ଗୋଟି ଗୋଟି କରି ଗୋଲାପଗୁଡ଼ିକର ପରିଚୟ ଦେବାକୁ ଯାଉଥିଲେ । ସୁଭଦ୍ରା ଦେବୀ ବାଧା ଦେଇ କହିଲେ : ଆଜି ଥାଉ ଅମରବାବୁ, ଆଉ ଦିନେ ଗୋଲାପଗୁଡ଼ିକ ସହିତ ମିଷ୍ଟର ଗୋଏଙ୍କାଙ୍କର ପରିଚୟ କରାଇ ଦେବେ । ଆଜି ଆମକୁ ସମସ୍ତ ଫାର୍ମ ବୁଲି ଦେଖିବାକୁ ହେବ ।

ସତ୍ୟବ୍ରତ ଆଉ ସୁଭଦ୍ରା ଦେବୀ ଗୋଲାପ କଲୋନୀରୁ ବାହାରି ଆସି ପୁଣି ଗାଡ଼ିରେ ବସିଲେ ।

ଆଉ କିଛି ବାଟ ଆଗେଇ ଯାଇ ଜିପ୍ ଅଟକିଲା । ସେଠାରେ ମଧ୍ୟ ସେହିପରି ଗୋଟିଏ ଛୋଟ ଟାଇଲ୍ ଘର । ଭିତରୁ ଜଣେ ବିଶାଳକାୟ ଲୋକ ବାହାରି ଆସି ନମସ୍କାର ଜଣାଇଲେ ।

ସୁଭଦ୍ରା ଦେବୀ କହିଲେ : କର୍ଣ୍ଣେଲ ସାକ୍‌ସେନା ତାଙ୍କର ରିଟାଏଡ୍ ଲାଇଫ୍ ପାଇଁ ଏହି ସ୍ଥାନଟିକୁ ବାଛି ନେଇଛନ୍ତି ।

ସେମାନେ ଧୀରେ ଧୀରେ ଅଙ୍ଗୁର କଲୋନୀ ଭିତରକୁ ପଶିଲେ । ପ୍ରଚୁର ଅଙ୍ଗୁର ପେଛା ପେଛା ହୋଇ ଓହଳିଛି ।

କିନ୍ତୁ କର୍ଣ୍ଣେଲ ସାକ୍‌ସେନାଙ୍କ ଆଖିରେ କିପରି ଏକ ଅସହାୟ ଭାବ ଲକ୍ଷ୍ୟକଲେ ସତ୍ୟବ୍ରତ ମହାପାତ୍ର । ତାଙ୍କ ମନରେ ଆଗ୍ରହ, ବା ପ୍ରାଣପ୍ରାଚୁର୍ଯ୍ୟ କିଛି ଥିଲା ପରି ମନେ ହେଲା ନାହିଁ ।

ସେମାନେ ଅଙ୍ଗୁର କଲୋନୀରୁ ଫେରିଆସିଲେ ।

ତା'ପରେ ଆମ୍ବ, ଡାଳିମ୍ବ, ଲିଚୁ ଇତ୍ୟାଦି ବିଭିନ୍ନ କଲୋନୀଗୁଡ଼ିକୁ ସୁଭଦ୍ରା ଦେବୀ ସତ୍ୟବ୍ରତଙ୍କୁ ବୁଲାଇ ଦେଖାଇଲେ । ପାହାଡ଼ର କଡ଼େ କଡ଼େ ଏହି ବିରାଟ ଫାର୍ମଟି ଯେ ଭାରତବର୍ଷର ଏକ ଆଦର୍ଶ ଏହା ଅନସ୍ୱୀକାର୍ଯ୍ୟ । କିନ୍ତୁ ଏହି ଫାର୍ମର ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ଦେଖି ସତ୍ୟବ୍ରତ ଖୁବ୍ ଗୋଟାଏ ଉତ୍ସାହ ପ୍ରକାଶ କରିପାରିଲା ନାହିଁ ।

ସମସ୍ତଙ୍କର ମୁହଁ ମଳିନ, ଚାହାଣି ନିଷ୍ପ୍ରଭ, ଆଉ କଥାବର୍ତ୍ତା ଅତ୍ୟନ୍ତ ସଂକ୍ଷେପ ।

ସତ୍ୟବ୍ରତ ସେଦିନ ବୁଲି ବୁଲି ବହୁତ ଦେଖିଲେ । ପୋଲଟ୍ରୀ ଫାର୍ମ, ଡାଇରୀ ଫାର୍ମ ସବୁ ତା'ଭିତରେ ସୁଭଦ୍ରା ଦେବୀ ପ୍ରତିଷ୍ଠା କରିଛନ୍ତି; ଆଉ ସବୁ ବ୍ୟବସ୍ଥା ଅତ୍ୟାଧୁନି ପଦ୍ଧତି ଅନୁସରଣରେ ହୋଇଛି ।

ପ୍ରାୟ ଗୋଟାଏ ବେଳକୁ ସେମାନେ ପୁଣି ଫେରିଆସିଲେ ଶୈଳାବାସକୁ ।

ଗାଡ଼ିରୁ ଓହ୍ଲାଇ ସୁଭଦ୍ରା ଦେବୀ କହିଲେ : ଆପଣ ଯାଇ ବିଶ୍ରାମ କରନ୍ତୁ । ମୁଁ ଚାରିଟା ବେଳକୁ ଡାକି ପଠାଇବି ବସି ଆଲୋଚନା କରିବା ।

ସୁଭଦ୍ରା ଦେବୀ ଚାଲିଗଲେ ।

ସତ୍ୟବ୍ରତ ଫେରିଆସିଲେ ନିର୍ଦ୍ଦିଷ୍ଟ ପ୍ରକୋଷ୍ଠକୁ ।

ସାଗର ଦାସ ଅପେକ୍ଷା କରିଥିଲା । କହିଲା : ଆପଣଙ୍କ ପାଇଁ ମୁଁ ଅନେକ ବେଳରୁ ଅପେକ୍ଷା କରିଛି ।

ସତ୍ୟବ୍ରତ କହିଲେ : ମୋର ଟିକିଏ ଡେରିହେବ ସାଗର । ବର୍ତ୍ତମାନ ବୁଲି ବୁଲି ଆସିଲି, ଦେହଟା ଗରମ ହୋଇ ଯାଇଛି, ତମେ ବରଂ ଚାଲିଯାଅ । ଏଇଠି ତ ଖାଇବା ଜିନିଷ ସବୁ ଅଛି, ମୁଁ ଖାଇ ଦେବି ।

ଆଜି କାହିଁକି ସାଗର ଦାସ କିଛି ପ୍ରତିବାଦ କଲାନାହିଁ । ଧୀରେ ଧୀରେ କହିଲା : ବେଶି ଡେରି କିନ୍ତୁ କରିବେ ନାହିଁ ହଜୁର୍ ।

: ନା, ନା ଏଇ ଅଧଘଣ୍ଟା ଭିତରେ ମୁଁ ସବୁ କାମ ଶେଷ କରିଦେବି ।

ସାଗର ଦାସ ଧୀରେ ଧୀରେ ପଛକୁ ଚାହିଁ ଆଗେଇ ଯାଇ ଦରଜାଟି ବନ୍ଦ କଲା ।

ସତ୍ୟବ୍ରତଙ୍କ ମନର ସମସ୍ତ ଚିନ୍ତା-ଭାବନା ଗୋଳମାଳ ହୋଇଯାଇଥିଲା । କିଏ ଏ ସୁଭଦ୍ରା ଦେବୀ ! କ'ଣ ତା'ର ଉଦ୍ଦେଶ୍ୟ ? ଫାର୍ମର ଯେଉଁ ସବୁ ବିଭାଗୀୟ କର୍ମକର୍ତ୍ତାମାନଙ୍କ ସହିତ ସତ୍ୟବ୍ରତଙ୍କର ଆଜି ପରିଚୟ ହେଲା, ସେମାନେ ବା କିଏ ? ସେମାନେ ସମସ୍ତେ କ'ଣ ସୁଭଦ୍ରା ଦେବୀଙ୍କୁ ବିବାହ କରିବାକୁ ପ୍ରଲୁବ୍ଧ ହୋଇ ଆସି ଶେଷରେ.....

ପୁଣି ଦରଜା ଖୋଲିବାର ଶବ୍ଦ ହେଲା ।

ସତ୍ୟବ୍ରତ ଦେଖିଲେ ସାଗର ଦାସ ଲେଉଟି ଆସିଛି ।

: ତୁମେ ପୁଣି ଫେରି ଆସିଲ ଯେ ସାଗର ଦାସ !

: ନା, ଯାଇପାରିଲି ନାହିଁ । ଆପଣ କାମ ସାରନ୍ତୁ। ମୁଁ ଅପେକ୍ଷା କରିବି ।

ସତ୍ୟବ୍ରତ ମନେ ମନେ ଚିଡ଼ିଉଠିଲେ, ଏଠାରେ ଯେ ମହା ଯନ୍ତ୍ରଣା ।

ବାଧହୋଇ ସେ ଉଠି ମୁହଁ, ହାତ ଧୋଇବାକୁ ଗଲେ ।

ସାଗର ଦାସ ଖାଦ୍ୟ ସରଞ୍ଜାମ ସଜାଡ଼ିବାରେ ଲାଗିଲା ।

ସତ୍ୟବ୍ରତ ଅଳ୍ପ ସମୟ ମଧ୍ୟରେ ଫେରିଆସିଲେ ନିତ୍ୟକର୍ମ ଶେଷ କରି ।

ସାଗର ଦାସ ଗୋଟିଏ ପରେ ଗୋଟିଏ ଖାଦ୍ୟ ପଦାର୍ଥ ସଜାଡ଼ିଦେଲା। ଟେବୁଲ୍ ଉପରେ ।

ସବୁଗୁଡ଼ିକ ସୁସ୍ୱାଦ ।

ସତ୍ୟବ୍ରତ ପରମ ତୃପ୍ତିରେ ଖାଇବା ପର୍ବ ଶେଷ କଲେ ।

ଏହା ପରେ ?

ସାଗର ଦାସ ଗୋଟାଏ ବିରାଟ ଗ୍ଲାସରେ ଦହି ସରବତ୍ ଆଣି ଟେବୁଲ୍ ଉପରେ ଥୋଇଲା । ସତ୍ୟବ୍ରତ ସେଇ ଆଡ଼େ ଚାହିଁଲେ ମୁହୂର୍ତ୍ତେ । ମନେ ମନେ ଚିନ୍ତାକଲେ ରାତିରେ କଫି; ଆଉ ଦିନରେ ସରବତ୍ - ବ୍ୟବସ୍ଥା ମନ୍ଦ ନୁହେଁ ।

ଧୀରେ ଧୀରେ ମୁହଁ ପାଖକୁ ଉଠାଇ ନେଲେ ସରବତ୍ ଗ୍ଲାସଟି ।

ଏଥର ସାଗର ଦାସର କାମ ଶେଷ ।

ସେ ଦରଜା ଖୋଲି ବାହାରି ଗଲା ବାହାରକୁ । ଗ୍ଲାସ୍‌ଟା ପୁଣି ଟେବୁଲ୍ ଉପରେ ଥୋଇ ଦେଇ ଉଠିଗଲେ ହାତ ଧୋଇବାକୁ ।

ଫେରିଆସି ବିଛଣା ଉପରେ ଅବଶ ଦେହଟାକୁ ଲମ୍ବାଇ ଦେଇ ହାତଘଡ଼ିକୁ ଚାହିଁଲେ, ପ୍ରାୟ ଦୁଇଟା ବାଜିବ ।

ଆଉ ଦୁଇଘଣ୍ଟା ପରେ ସୁଭଦ୍ରା ଦେବୀଙ୍କର ସମ୍ମୁଖୀନ ହେବାକୁ ହେବ । ସତ୍ୟବ୍ରତ ମହାପାତ୍ରଙ୍କୁ ।

ସୁଭଦ୍ରା ଦେବୀ ହୁଏତ ପ୍ରଶ୍ନ କରିବେ, ମତାମତ ଜାଣିବା ପାଇଁ ।

ସତ୍ୟବ୍ରତ କ'ଣ ଉତ୍ତର ଦେବେ ?

କିଛି ତ ସେ ଭାବି ଠିକ୍ କରି ପାରିଲେ ନାହିଁ । ଏ ପର୍ଯ୍ୟନ୍ତ ।

ସୁଭଦ୍ରା ଦେବୀ ତାଙ୍କ ଫାର୍ମର ଯେଉଁ ଲୋକମାନଙ୍କ ସହିତ ପରିଚୟ କରାଇ ଦେଲେ, ସୋମାନଙ୍କ ଭିତରେ ତରୁଣ, ପ୍ରୌଢ଼ ଓ ବୃଦ୍ଧ ସବୁ ଶ୍ରେଣୀର ଲୋକ ଅଛନ୍ତି । ସେମାନଙ୍କ ସହିତ ନିରୋଳାରେ ଆଳାପ ନ ହେବାଯାଏ ସତ୍ୟବ୍ରତ ଏହି କୃଷି ଫାର୍ମର ରହସ୍ୟ କିଛି ବୁଝିପାରିବେ କିପରି ?

ତା'ଛଡ଼ା ସତ୍ୟବ୍ରତ ଆସି ନାହାନ୍ତି ସୁଭଦ୍ରା ଦେବୀଙ୍କୁ ବିବାହ କରି ସ୍ୱପ୍ନ ସଫଳ କରିବା ପାଇଁ !!

ସେ ଆସିଛନ୍ତି ଦୁଇଟି ଉଦ୍ଦେଶ୍ୟରେ ।

ଏକରେ -ଦ୍ୱାରିକାନାଥ ଗୋଏଙ୍କାଙ୍କର ଆତ୍ମୀୟର ସନ୍ଧାନ କରିବାକୁ ।

ଦୁଇରେ - ଧନଞ୍ଜୟ ବୈରାଗୀର ହତ୍ୟାକାରୀକୁ ଖୋଜି ବାହାର କରିବାକୁ ।

କିନ୍ତୁ ସୁଭଦ୍ରା ଦେବୀ ତାଙ୍କୁ ଯେପରି ଫାନ୍ଦରେ ପକାଇଲେଣି, ହାତରେ ଆଉ ସମୟ ନାହିଁ; ମାତ୍ର ଏଇ ଦୁଇଘଣ୍ଟା ଭିତରେ ତାଙ୍କୁ ସବୁ ସମସ୍ୟାର ସମାଧାନ କରିବାକୁ ହେବ ।

ସେ ଯଦି ସୁଭଦ୍ରା ଦେବୀଙ୍କ ବିବାହ ପ୍ରସ୍ତାବରେ ରାଜି ହୁଅନ୍ତି, ତେବେ ହୁଏତ ତାଙ୍କୁ ଏଠାରେ ରହିବାର ଅନୁମତି ମିଳିବ, ନତୁବା ସେଇ କଳା ଆମ୍ଭାସାଡ଼ାର ପୁଣି ଛାଡ଼ି ଦେଇ ଆସିବ ବ୍ରହ୍ମପୁରରେ ।

ତେବେ....

ସତ୍ୟବ୍ରତ ମହାପାତ୍ର ଏ ସବୁ ସମସ୍ୟାର କୌଣସି ସୁଚିନ୍ତିତ ଯୋଗସୂତ୍ର ଖୋଜି ପାଇବା ପୂର୍ବରୁ ଧୀରେ ଧୀରେ ତାଙ୍କ ଆଖି ଲାଗିଆସିଲା । ସେ ଶୋଇ ପଡ଼ିଲେ ।

ପୁଣି ସାଗର ଦାସର ଡାକରେ ନିଦ ଭାଙ୍ଗିଲା ସତ୍ୟବ୍ରତଙ୍କର ।

ହାତଘଡ଼ିକୁ ଚାହିଁ ଦେଖିଲେ, ଛଅଟ ।

ଆଶ୍ଚର୍ଯ୍ୟ ! ଚାରିଟା ବେଳେ ସେ ତାଙ୍କର ସୁଭଦ୍ରା ଦେବୀଙ୍କ ସହିତ ଆପଏଣ୍ଟମେଣ୍ଟ ଥିଲା, ଏପରି କର୍ତ୍ତବ୍ୟଜ୍ଞାନହୀନ ଏହା ପୂର୍ବରୁ କେବେ ତ ସେ ହୋଇ ନଥିଲେ ? ଆଜି ହଠାତ୍ ଏ କାଳନିଦ୍ରା ତାଙ୍କୁ ଗ୍ରାସକଲା କାହିଁକି ?

ସାଗର ଦାସ ଚା' ଓ ଜଳଖିଆ ଧରି ଠିଆହୋଇଥିଲା ।

ସତ୍ୟବ୍ରତ ପଚାରିଲେ : ତୁମର ମା' କେଉଁଠି ସାଗର ଦାସ ?

: ମୁଁ କହି ପାରିବି ନାହିଁ ।

: ମୋର ତାଙ୍କ ସହିତ ଚାରିଟାବେଳେ କଥାବାର୍ତ୍ତା ହେବାର ଥିଲା; କିନ୍ତୁ ମୁଁ ଶୋଇ ପଡ଼ିଲି ।

ସାଗର ଦାସ ନୀରବରେ ଠିଆହୋଇଥିଲା ।

: ତାଙ୍କ ସହିତ ତମର ଦେଖା ହେବ ନାହିଁ ?

: ନା ।

: ମୁଁ କେଉଁଠି ତାଙ୍କର ଦେଖାପାଇବି ?

: କହି ପାରିବି ନାହିଁ ।

ସତ୍ୟବ୍ରତ ଆଉ କିଛି ପଚାରିଲେ ନାହିଁ । ମୁଁହ, ହାତ ଧୋଇ ବସି ଚା' ଜଳଖିଆ ଖାଇଲେ ।

ସାଗର ଦାସ ଚାଲିଗଲା ।

ନା, ଏଠାରେ ଏପରି ନିଶ୍ଚିତ ହୋଇ ବସିରହିଲେ ଆଉ ଚଳିବ ନାହିଁ । ଏଥର ବାହାରକୁ ବାହାରିବାକୁ ହେବ ଏବଂ କିଛି ସମୟ ପରେ ବାହାରି ପଡ଼ିଲେ ମଧ୍ୟ ।

କୁଆଡ଼କୁ ଯିବେ ? ଶୈଳାବାସରୁ ତଳକୁ ଓହ୍ଲାଇ ସେ ଗୋଟିଏ ସରୁ ଲାଲ ପଥ ଦେଖିଲେ । ଲମ୍ବି ଯାଇଛି ଆଗକୁ ।

ଆଗକୁ ଆଗକୁ ସେ ଆଗେଇଗଲେ । ଆହୁରି ଆଗରେ ଗୋଟିଏ ଛୋଟ ଟାଇଲ୍ ଘର ।

ଘର ଭିତରେ ଝରକା ଫାଙ୍କରୁ ଏକ ନିଷ୍ପ୍ରଭ ଆଲୋକ ଦିଶୁଛି ।

ଦରଜାଟା ଭିତରୁ ବନ୍ଦ ।

ସତ୍ୟବ୍ରତ ଦରଜାରେ ଧୀରେ କରାଘାତ କଲେ ।

: କିଏ ? ଭିତରୁ ଶବ୍ଦ ହେଲା ଏବଂ ମୁହୂର୍ତ୍ତକ ପରେ ଦରଜାଟି ଖୋଲିଗଲା ।

ଏକ ପ୍ରୌଢ଼ ଭଦ୍ରଲୋକ, ଫୁଲପ୍ୟାଣ୍ଟ ଉପରେ ଗଞ୍ଜି ଖଣ୍ଡେ ପିନ୍ଧି ଅସହାୟ ଆଖିରେ ସତ୍ୟବ୍ରତ ଆଡ଼େ ଚାହିଁ ଠିଆ ହୋଇଥିଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର ।

ସତ୍ୟବ୍ରତ ଭିତରକୁ ପଶିବାକୁ ଚେଷ୍ଟା କରୁଥିଲେ କିନ୍ତୁ ସେହି ପ୍ରୌଢ଼ ଭଦ୍ରଲୋକ ଜଣକ ଦୁଆରର ଦୁଇ ପାଖରେ ହାତରଖି ଯେପରି ପଥ ଓଗାଳି ଠିଆହୋଇଥିଲେ ।

ସତ୍ୟବ୍ରତ କହିଲେ : ଭିତରକୁ ଚାଲନ୍ତୁ । ଆପଣଙ୍କ ସହିତ ମୋର କାମ ଅଛି ।

ପ୍ରୌଢ଼ ଭଦ୍ରଲୋକ ଜଣକ ଦାନ୍ତ ନିକୁଟି ହସିଲେ : ଛାଡ଼ପତ୍ର କାର୍ଡ ଦେଖି ?

: ତା' ନ ଦେଖାଇଲେ କେହି ଆପଣଙ୍କୁ ପାଖ ପୂରାଇ ଦେବେ ନାହିଁ । ଦରବାନ୍ ଡାକି ତା'ହାତରେ ଧରାଇ ଦେବ । ଆପଣ ଯେ ଗୁପ୍ତଚର ନ ହୋଇପାରନ୍ତି କିଏ କହିବ ?

: ନା, ନା ଆପଣ ବିଶ୍ୱାସ କରନ୍ତୁ । ମୁଁ ଗୁପ୍ତଚର ନୁହେଁ ।

ସୁଭଦ୍ରା ଦେବୀ ମୋତେ ସଙ୍ଗରେ ଆଣିଛନ୍ତି । ଆଜି ସକାଳେ ସେ ଆପଣଙ୍କ ସହିତ ମୋର ପରିଚୟ କରାଇ ଦେଇଥିଲେ । ଆପଣ ଏତେ ଶୀଘ୍ର ଭୁଲିଗଲେଣି ?

ପ୍ରୌଢ଼ ଭଦ୍ରଲୋକ ଜଣ୍‌କ ଏଥର ଦରଜାରୁ ହାତ ଦୁଇଟି ଉଠାଇ ନେଇ କହିଲେ : ଆସନ୍ତୁ, ଏହା କିନ୍ତୁ ବେଆଇନ । ମୋ' ଦାୟିତ୍ୱରେ ମୁଁ ଆପଣଙ୍କୁ ଏଠାରେ ଦଶ ମିନିଟ୍ ରଖିପାରେ, ଆଉ ଅଧିକ ନୁହେଁ ।

ସତ୍ୟବ୍ରତ ଘର ଭିତରକୁ ପ୍ରବେଶ କରି ଦେଖିଲେ, ଘରର ଆସବାସ ପତ୍ର ସବୁ ଅବ୍ୟବସ୍ଥିତ। ଟେବୁଲ୍ ଉପରେ ଗୋଟିଏ ପାନପାତ୍ର ଥୁଆହୋଇଛି ଓ ଗୋଟିଏ ବୋତଲ ଖୋଲା ହୋଇଛି ।

ସତ୍ୟବ୍ରତ ମୁହୂର୍ତ୍ତେ ସେଇ ଆଡ଼େ ଚାହିଁ କହିଲେ : ଆପଣ ଏଠାରେ କେତେ ଦିନ ହେବ ଅଛନ୍ତି ?

ପ୍ରୌଢ଼ ଭଦ୍ରଲୋକ ଜଣକ କହିଲେ : ମୁଁ, ମୋର ତ ମନେ ନାହିଁ । ଆମର ଏଠି କିଛି ମନେରଖିବା ଧର୍ମ ନୁହେଁ ।

: ସୁଭଦ୍ରା ଦେବୀଙ୍କୁ ଆପଣ ଚିହ୍ନନ୍ତି ?

ପ୍ରୌଢ଼ ଭଦ୍ରଲୋକ ଜଣକ ଏଥର ହୋ ହୋ ହୋଇ ହସି ଉଠି କହିଲେ ମୋର ଭାବି ସ୍ତ୍ରୀଙ୍କୁ ମୁଁ ଚିହ୍ନିନାହିଁ ? ଆପଣ ତ ଆଶ୍ଚର୍ଯ୍ୟ ଲୋକ ଦେଖୁଛି ।

: ଓ ହଁ ହଁ, ମୁଁ ଭୁଲି ଯାଇଥିଲି । ସତ୍ୟବ୍ରତ କହିଲେ । ଆପଣ ଏଠି କେଉଁ କଲୋନୀର ଚାର୍ଯରେ ଅଛନ୍ତି ?

: ମନ୍ଦାର କଲୋନୀ । ନାନା ପ୍ରକାର ମନ୍ଦାର ଫୁଲର ସମାବେଶ ଦେଖିବେ ଏହି କଲୋନୀରେ । ବର୍ତ୍ତମାନ ରାତି ହୋଇ ଗଲାଣି, ଆପଣ କାଲି ଆସିବେ, ମୁଁ ସବୁ ବୁଲେଇ ଦେଖେଇ ଦେବି ।

: ନିଶ୍ଚୟ ଆସିବି । କିନ୍ତୁ ସୁଭଦ୍ରା ଦେବୀଙ୍କ ସହିତ ଆପଣଙ୍କର ବିବାହର ଦିନ ସ୍ଥିର ହୋଇଛି ?

: ସେତ ଅନେକ ଦିନରୁ ସ୍ଥିର ହୋଇ ରହିଛି । ତା'ନହେଲେ ମୁଁ ମୋର ବିଶାଳ ସମ୍ପତ୍ତି ଛାଡ଼ି ଏଇଠି ଅରଣ୍ୟ ଜୀବନ ଯାପନ କରୁଥାଆନ୍ତି କାହିଁକି ?

ସତ୍ୟବ୍ରତ ହଠାତ୍ ପ୍ରଶ୍ନ କଲେ : ଆପଣ ଦ୍ୱାରିକାନାଥ ଗୋଏଙ୍କାଙ୍କୁ ଚିହ୍ନନ୍ତି ?

: ଦ୍ୱାରିକାନାଥ ଗୋଏଙ୍କା, ସେ କିଏ ? ନା, ନା ମୋ ନାଁ ରାମଶଙ୍କର ବାଜପେୟୀ । ମୋର ଆତ୍ମୀୟ ସ୍ୱଜନ ଅନେକ ଅଛନ୍ତି । କିନ୍ତୁ କୌଣସି ଗୋଏଙ୍କା ପରିବାର ସହିତ ମୋର ଜଣାଶୁଣା ନାହିଁ ।

: ହୁଁ, ଆପଣ ତା'ହେଲେ ବିଶ୍ରାମ କରନ୍ତୁ ମୁଁ ଆସୁଛି ।

: ଆମ ବିବାହ ତିଥି ହେଉଛି ୨୭ ବୈଶାଖ, ମନେରଖି ଥାଆନ୍ତୁ, ଆପଣ ନିଶ୍ଚୟ ଆସିବେ ।

ସତ୍ୟବ୍ରତ ସମ୍ମତି ଜଣାଇ ସେଠାରୁ ବାହାରି ଆସିଲେ ।

ରାମଶଙ୍କର ବାଜପେୟୀଙ୍କର ଯେ ସ୍ମରଣ ଶକ୍ତିର ବିଭ୍ରାନ୍ତି ଘଟିଛି ସତ୍ୟବ୍ରତ ତାହା ବୁଝିପାରିଥିଲେ ।

ସେଇ ଅର୍ଦ୍ଧ ଅନ୍ଧକାର ମଧ୍ୟରେ ଗୋଟିଏ ସରୁ ପଥ ଧରି ସତ୍ୟବ୍ରତ ଆହୁରି ଆଗେଇ ଗଲେ କିଛି ବାଟ । ଏଠିକାର ଚରିତ୍ରମାନଙ୍କ ସହିତ ତାଙ୍କର ପରିଚୟ ହେବା ନିତାନ୍ତ ଆବଶ୍ୟକ । ଏଇ ସବୁ କଲୋନୀ ଅଧିନାୟକମାନଙ୍କ ଭିତରେ ସେ ଦ୍ୱାରିକାନାଥ ଗୋଏଙ୍କାଙ୍କର ସେହି ଆତ୍ମୀୟ ଜଣକ ଲୁଚି ନ ରହିଛନ୍ତି କିଏ କହିପାରିବ ? ତେବେ ସେହି ଭଦ୍ରଲୋକଙ୍କର ଗୋଟିଏ ଫଟୋ ଆଣିପାରିଥିଲେ, ବର୍ତ୍ତମାନ ବିଶେଷ ସହାୟକ ହୋଇଥାଆନ୍ତା ।

ହଠାତ୍ ବାଁ ପାଖରୁ ଗୋଟିଏ କାର୍ ଆଗେଇ ଆସୁଥିବାର ସତ୍ୟବ୍ରତ ଲକ୍ଷ୍ୟ କଲେ । କାର୍‌ଟା ତାଙ୍କ ଆଡ଼କୁ ନ ଆସି ଡାହାଣ ଆଡ଼କୁ ବଙ୍କେଇଗଲା ଏବଂ ଅଳ୍ପ ଦୂର ଯାଇ ଗୋଟିଏ ଜାଗାରେ ଅଟକିଗଲା ।

ଗାଡ଼ିଟି ଯେଉଁଠି ଠିଆହୋଇଥିଲା, ଧୀରେ ଧୀରେ ଯାଇ ସତ୍ୟବ୍ରତ ସେଇଠି ପହଞ୍ଚିଲେ । ସାମ୍‌ନାରେ ଗୋଟିଏ ଟାଇଲ୍ ଘର । ଏଇ ଘରେ ବୋଧହୁଏ ଅମରବାବୁ ରହନ୍ତି, ଗୋଲାପ କଲୋନୀର ଅଧକ୍ଷ ।

କିନ୍ତୁ...

ହଠାତ୍ ସତ୍ୟବ୍ରତଙ୍କର ସାମ୍‌ନାରେ ଠିଆହୋଇଥିବା ଗାଡ଼ିର ନମ୍ବର ଉପରେ ଆଖି ପଡ଼ିବା ମାତ୍ରକେ ସେ ହତଭମ୍ବ ହୋଇଗଲେ । ମନେହେଲା ସେ ଏହି ଗାଡ଼ିର ନମ୍ବର ସହିତ ଯେପରି ବିଶେଷ ଭାବେ ପରିଚିତ ।

କେଉଁଠି? କେଉଁଠି ଏ ଗାଡ଼ି ସେ ଦେଖିଥିଲେ ?

ଠିକ୍ ଠିକ୍ । ଏଇ ଗାଡ଼ିଟାକୁ ସେ ଧନଞ୍ଜୟ ବୈରାଗୀଙ୍କ ଲନ୍ ଭିତରେ ଦେଖିଥିଲେ । ଏହି ଗାଡ଼ିର ଆରୋହୀ ଥିଲା ଜଲି, ଧନଞ୍ଜୟ ବୈରାଗୀଙ୍କର କୌଣସି ଆତ୍ମୀୟଙ୍କର କନ୍ୟା । ହଁ, ଠିକ୍ ମନେଅଛି ସତ୍ୟବ୍ରତଙ୍କର । ୦୧୨୩ । ମନେ ରହିବା ଭଳି ନମ୍ବର, ସେଥିପାଇଁ ସତ୍ୟବ୍ରତଙ୍କର ନମ୍ବରଟା ମନେ ରହିଯାଇଥିଲା ।

କିନ୍ତୁ ସେ ଗାଡ଼ିଟା ଏଠି କାହିଁକି ?

ଗାଡ଼ିର ଆରୋହୀ ବା କିଏ ?

ଅଳ୍ପ ଅଳ୍ପ କଥାବାର୍ତ୍ତା ଶୁଣାଗଲା । ବୋଧହୁଏ ଯେଉଁମାନେ ଗାଡ଼ିରୁ ଓହ୍ଲାଇଥିଲେ ସେମାନେ ଫେରିଆସୁଥିଲେ ।

ସତ୍ୟବ୍ରତ ଗୋଟିଏ ଝାମ୍ପୁରା ଗଛମୂଳେ ଲୁଚିପଡ଼ିଲେ ।

ଦୁଇଜଣ ମହିଳା ଆସି ଗାଡ଼ିରେ ଉଠିଲେ ।

ସେମାନଙ୍କ ଭିତରୁ ସତ୍ୟବ୍ରତ ଜଣଙ୍କୁ ଚିହ୍ନି ପାରିଲେ । ସେ ଜଣକ ସୁଭଦ୍ରା ଦେବୀ । ଆର ଜଣକ ?

ଗାଡ଼ି ଚାଲିଗଲା । ସତ୍ୟବ୍ରତ ଗଛ ଉହାଡ଼ରୁ ବାହାରି ଚାରି ଆଡ଼କୁ ଚାହିଁ ଆଗେଇଗଲେ ସେଇ ଟାଇଲ୍ ଘର ଆଡ଼କୁ ।

ହଁ, ଏଇ ଘରଟାରେ ଗୋଲାପ କଲୋନୀର ଅଧକ୍ଷ ଅମରବାବୁ ରୁହନ୍ତି ।

ଭିତରେ ଥିଲେ ମଧ୍ୟ । ଦରଜା ଫାଙ୍କରୁ ଦେଖିଲେ, ଅମରବାବୁ ଗୋଟିଏ ଆରାମ ଚେଆର ଉପରେ ଶୋଇ ଉପରକୁ ଚାହିଁଛନ୍ତି ।

ସତ୍ୟବ୍ରତ କବାଟର କଡ଼ା ହଲାଇଲେ ।

: କିଏ ? ଭିତରୁ ଅମରବାବୁ ପଚାରିଲେ ଏବଂ ଉଠିଆସି କବାଟ ଖୋଲିଦେଲେ ।

ସେ ବୋଧହୁଏ ସତ୍ୟବ୍ରତ ମହାପାତ୍ରଙ୍କୁ ସେଇ ମୁହୂର୍ତ୍ତରେ ସେଠାରେ ଆଶା କରି ନଥିଲେ ।

ଆଖି ଯୋଡ଼ାକ ତାଙ୍କର କପାଳକୁ ଉଠିଯାଇଥିଲା ।

ଆଶ୍ଚର୍ଯ୍ୟ ସ୍ୱରରେ ପ୍ରଶ୍ନ କଲେ : ଆପଣ ଏକା ?

ସଙ୍ଗେ ସେଙ୍ଗେ ସେ ସତ୍ୟବ୍ରତ ମହାପାତ୍ରଙ୍କ ହାତଧରି ଭିତରକୁ ଟାଣି ନେଇଗଲେ ଏବଂ ଦରଜାଟା ହଠାତ୍ ବନ୍ଦ କରିଦେଲେ ।

ସତ୍ୟବ୍ରତ ଏଥର ଆହୁରି ଆଶ୍ଚର୍ଯ୍ୟ ହେଲେ ।

କେତୋଟି ମୁହୂର୍ତ୍ତ ଅନ୍ଧକାର ଭିତରେ କଟିଯିବା ପରେ ଅମରବାବୁ ଚୁପି ଚୁପି କହିଲେ : ଆପଣ କ'ଣ ଶୈଳାବାସରୁ ଲୁଚିକରି ଏଠାକୁ ଚାଲିଆସିଛନ୍ତି ?

: ଲୁଚିକରି ମାନେ ? ସତ୍ୟବ୍ରତ ସେହିପରି ଚୁପି ଚୁପି ପଚାରିଲେ ।

: ଆପଣ ଏଠାକୁ ଆସିଥିବା କଥା କେହି ଜାଣି ନାହାନ୍ତି ?

: ନା ।

: ଆପଣ ତା'ହେଲେ ଶୀଘ୍ର ଫେରି ଯାଆନ୍ତୁ । ତା'ନହେଲେ....

: ତା' ନହେଲେ କ'ଣ ହେବ ?

: ଯାହା ନ ହେବାର ତାହା ହିଁ ହେବ । ରାତି ନଅଟା ବେଳକୁ ଆପଣଙ୍କର ରୁମ୍ ଥରେ ଚେକ୍ ହେବ, ସେତେବେଳେ ଆପଣ ରୁମ୍‌ରେ ନଥିଲେ ସଜ୍ଞାନରେ ଆପଣ ଆଉ ରୁମ୍‌କୁ ଫେରିପାରିବେ ନାହିଁ ।

ସତ୍ୟବ୍ରତ ଅବଜ୍ଞାର ହସ ହସିଲେ । କହିଲେ : ମୋର ପୋଜିସନ କିନ୍ତୁ ଏଠାରେ ଭିନ୍ନ । ଆପଣ ଜାଣି ନାହାନ୍ତି ବୋଧହୁଏ, ସ୍ୱୟଂ ସୁଭଦ୍ରା ଦେବୀଙ୍କର ମୁଁ ହେଉଛି.....

ଅମରବାବୁ ଘର ଭିତରେ ଗୋଟିଏ ଜିରୋ ପାଓାରର ବଲ୍ ଜଳାଇ ସତ୍ୟବ୍ରତ ମହାପାତ୍ରଙ୍କୁ ବସିବାକୁ କହିଲେ ।

ନିଜେ ଗୋଟିଏ ଚେଆର ଉପରେ ବସି ଏକ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ: ମୁଁ ବି ଦିନେ ସୁଭଦ୍ରା ଦେବୀଙ୍କର ଥିଲି ଅତି ପ୍ରିୟପାତ୍ର । ମୋର ବି ଆପଣଙ୍କ ପରି ଅହଙ୍କାର ଥିଲା; କିନ୍ତୁ ଆଜି ଦେଖୁଛନ୍ତି ତ ଅବସ୍ଥା ! ବନ୍ଦୀ, ଆଜି ଆଉ ହଲଚଲ ହେବାର ଉପାୟ ନାହିଁ । ଏହି ଘର ଆଉ ପଛ ଆଡ଼ର ସେହି ବଗିଚାଟି ଛଡ଼ା ମୋର ଗୋଟିଏ ପାଦ ବାହାରକୁ ପାଦ ପକାଇବାର ଅଧିକାର ନାହିଁ ।

: ମାନେ ? ସତ୍ୟବ୍ରତଙ୍କ ସ୍ୱରରେ ବିସ୍ମୟ ଫୁଟିଉଠିଲା ।

: ମୁଁ ବି ଦିନେ ଆପଣଙ୍କ ପରି ମନରେ ଅସୀମ କଳ୍ପନା ଧରି ଆସିଥିଲି । ସୁଭଦ୍ରା ଦେବୀଙ୍କ ରୂପ ମୋତେ ପାଗଳ କରିଥିଲା । ଆଚରଣ ମୋତେ ମୁଗ୍ଧ କରିଥିଲା; କିନ୍ତୁ ତାଙ୍କର ଚକ୍ରାନ୍ତରେ ମୁଁ ମେଷ ଶାବକ ହୋଇ ପଡ଼ିରହିଛି । ଆଉ ଉପାୟ ନାହିଁ । ଏଇ ଗୋଲାପ କଲୋନୀର ତଦାରଖ କରୁ କରୁ ମୋର ଯୌବନ ଶେଷ ହୋଇ ଆସିଲାଣି, ବାର୍ଦ୍ଧକ୍ୟ ବି ଶେଷ ହୋଇଯିବ ।

: କିନ୍ତୁ ଆଜିର ଏହି ସଭ୍ୟ ସମାଜରେ ଏହା କିପରି ସମ୍ଭବ ?

: ସବୁ ସମ୍ଭବ ଆଜ୍ଞା । କୋକେନ୍‌ର ମାଦକତା ଦୁଇ ଦିନ ପରେ ଆପଣଙ୍କୁ ବି ଏକ କଲୋନୀର ଅଧକ୍ଷ କରିଦେବ । ଆପଣ ଆଉ ସେଇ ମାଦକତାର ମୋହ କଟାଇ କଲୋନୀର ବାହାରକୁ ଯିବା କଥା ଚିନ୍ତାକରି ପାରିବେ ନାହିଁ । ସକାଳେ ଆଉ ରାତିରେ ଚାହିଁ ରହିଥିବେ ସେଇ ସରବତ୍ ଆଉ କଫି ପଟକୁ ।

ହଠାତ୍ ସତ୍ୟବ୍ରତ ଯେପରି ଚମକି ଉଠିଲେ ।

: କ'ଣ କହିଲେ ଅମରବାବୁ ।

: ଆପଣଙ୍କୁ ଦିବା ଭୋଜନ ପରେ ସରବତ୍ ଗ୍ଲାସ ଦିଆ ହୋଇନାହିଁ ? ରାତ୍ରି ଭୋଜନ ପରେ କଫି ପିଇବାକୁ ଦିଆ ହୋଇ ନାହିଁ ?

: ହଁ, ହଁ ତା'ପରେ, ତା'ପରେ.....

: ତା'ପରେ ଆପଣ ପ୍ରବଳ ନିଦରେ ତୂଳିତଳ୍ପ ଶେଯ ଉପରେ ଆରାମରେ ଶୋଇ ଯାଇ ନାହାନ୍ତି ?

: ହଁ ହଁ । ମନେପଡୁଛି ସବୁ । ତା'ପରେ କୁହନ୍ତୁ ।

ଏଥର କିନ୍ତୁ ଅମରବାବୁ ହସିଉଠିଲେ । କହିଲେ : ତା'ପରେ ଆଉ କହିବାର କିଛି ନାହିଁ । ସେହି ପ୍ରକ୍ରିୟାରେ ପନ୍ଦରଟି ଦିନ କଟିବା ପରେ ଆପଣଙ୍କୁ କୌଣସି କଲୋନୀର ଅଧକ୍ଷ କରାଇ ଦିଆଯିବ । ସେତେବେଳେ କୋକେନ୍‌ର ମୋହ ଆପଣଙ୍କ ପ୍ରାଣରେ ଏପରି ପ୍ରତିକ୍ରିୟା ସୃଷ୍ଟି କରିଥିବ ଯେ, ଆପଣ କେବଳ ସେହି ସରବତ୍ ଆଉ କଫି କପକୁ ଅପେକ୍ଷା କରି କରି ସମୟ କଟାଉଥିବେ ।

: ତା'ପରେ......?

: ତା'ପରେ ସୁଭଦ୍ରା ଦେବୀ ଆସିବେ । ପ୍ରତିଦିନ । ପ୍ରତି ରାତିରେ । ସେ କେବଳ ଆପଣଙ୍କ ସହିତ ବିବାହର ତିଥି ଠିକ୍ କରିବାକୁ ଆସୁଥିବେ ଏବଂ ତାଙ୍କର ଅର୍ଦ୍ଧନଗ୍ନ ଦେହର

ସୌନ୍ଦର୍ଯ୍ୟରେ ଆପଣଙ୍କୁ ବଶୀଭୂତ କରି ରଖିଥିବେ । ଧୀରେ ଧୀରେ କୋକେନ୍‌ର ନିଶା ଆଉ ସୁଭଦ୍ରା ଦେବୀଙ୍କ ନଗ୍ନ ଦେହ ଆପଣଙ୍କ ଦେହର ସବଳ ତନ୍ତ୍ରୀଗୁଡ଼ିକୁ ଶିଥିଳ କରି ପକାଇବ । ତା'ପରେ କ'ଣ ହେବ ଜାଣନ୍ତି ? ତା'ପରେ ସୁଭଦ୍ରା ଦେବୀ ବାଜିମାତ୍ କରିବେ । ଏକ ଅତ୍ୟନ୍ତ ଦୁର୍ବଳ ମୁହୂର୍ତ୍ତରେ ଆପଣଙ୍କ ଦେହ ସହିତ ଦେହ ମିଶାଇ ସେ ଗୋଟିଏ ଉଇଲରେ ଆପଣଙ୍କର ଦସ୍ତଖତ କରାଇ ନେବେ । ପରଦିନଠାରୁ ଆପଣ ହେବେ ସର୍ବହରା, ନିସ୍ୱ । ଆପଣଙ୍କର ବଞ୍ଚିବାର ଏକମାତ୍ର ଅବଲମ୍ବନ ହେବ.....

ଅମରବାବୁ ସତ୍ୟବ୍ରତ ମହାପାତ୍ରଙ୍କ ହାତ ଅଙ୍ଗୁଳିରେ ଥିବା ଇନ୍ଦ୍ରନୀଳ ମୁଦିଟି ଆଡ଼େ ଚାହିଁ ହଠାତ୍ ଅଟକି ଗଲେ । ତାଙ୍କ ମନର ସମସ୍ତ ଉତ୍ସାହ ଯେପରି ମୁହୂର୍ତ୍ତକ ମଧ୍ୟରେ ସ୍ତବ୍ଧ ହୋଇଗଲା । ତାଙ୍କ ଆଖିରେ କିପରି ଏକ କରୁଣ ଚାହାଣି ଫୁଟିଉଠିଲା ।

ସତ୍ୟବ୍ରତ ମଧ୍ୟ କେତୋଟି ମୁହୂର୍ତ୍ତ ନୀରବ ରହି ଆଖିରେ ବିସ୍ମୟ ଫୁଟାଇ ପଚାରିଲେ : ଆପଣ ହଠାତ୍ ଚୁପ୍ ହେଇଗଲେ ଯେ ?

: ହଁ, ଆଜି ଆଉ କହିବାର କିଛି ନାହିଁ । ଆପଣ ଶୈଳାବାସକୁ ଫେରିଯାଆନ୍ତୁ । ରାତି ଆଠଟା ପରେ ଆପଣ ଆଉ ଫେରିପାରିବେ ନାହିଁ । ତେବେ ଗୋଟିଏ କଥା ମନେ ରଖିବେ, ଦିବା ଭୋଜନ ଓ ରାତ୍ରି ଭୋଜନ ପରେ ଆପଣଙ୍କୁ ଯେଉଁ ସରବତ୍ ଓ କଫି ପାନ କରିବାକୁ ଦିଆଯିବ ଆପଣ ପରିଚାରକର ଆଖି ଏଡ଼ାଇ କୌଶଳ କ୍ରମେ ତାହା ନଷ୍ଟ କରିଦେବେ । ତା'ହେଲେ ଆପଣ ହୁଏତ ମୋ'ପରି କିଛିଦିନ ସଜ୍ଞାନରେ ରହିପାରିବେ । କିନ୍ତୁ ମୁଁ ଯାହା ସୂଚନା ପାଉଛି । ଏଠାରେ ଆପଣଙ୍କର ପରମାୟୁ.....

ହଠାତ୍ ବାହାରେ ପୁଣି ଗୋଟାଏ କାର୍ ଠିଆହେବାର ଶବ୍ଦ ଶୁଣି ଅମରବାବୁ ବିବ୍ରତ ହୋଇ ଉଠିଲେ । ସେ ସତ୍ୟବ୍ରତଙ୍କୁ ଠେଲି ଠେଲି ପାଖ ଘରବାଟେ ବଗିଚା ଆଡ଼କୁ ଗୋଟିଏ ପଥ ଦେଖାଇ ଦେଇ କହିଲେ : ଶୀଘ୍ର, ଆପଣ ଶୀଘ୍ର ଚାଲିଯାଆନ୍ତୁ ।

ସତ୍ୟବ୍ରତ ମୁହୂର୍ତ୍ତେ ବିଳମ୍ବ ନ କରି ସେଇ ସଂକୀର୍ଣ୍ଣ ପଥ ଦେଇ ଗୋଲାପ ବଗିଚା ଭିତରେ ପ୍ରବେଶ କଲେ ।

ତା'ପରେ ଅଙ୍କାବଙ୍କା ପଥ ଦେଇ ସେ ଆଗେଇ ଗଲେ ଆଗକୁ ଆଗକୁ । ଏକ ସମୟରେ ସେ ପ୍ରଧାନ ପଥରେ ପହଞ୍ଚି କ୍ଷିପ୍ର ପଦରେ ଆଗେଇ ଗଲେ ଶୈଳାବାସ ଆଡ଼କୁ ।

ଶୈଳାବାସର ନିର୍ଦ୍ଦିଷ୍ଟ କୋଠରୀଟି ମଧ୍ୟରେ ପହଞ୍ଚି କ୍ଷିପ୍ରପଦରେ ଆଗେଇ ଗଲେ ଶଯ୍ୟା ଆଡ଼କୁ । ସେତେବେଳେ ଘରଟି ଅନ୍ଧକାର । ସେ ଘରର ଆଲୋକ ଜଳେଇବ କି ନାହିଁ ଚିନ୍ତାକରି ନ ପାରି ଚୁପ୍‌ଚାପ୍ ଯାଇ ଶେଯ ଉପରେ ଶୋଇପଡ଼ିଲେ । ସମଗ୍ର ଦେହ ତାଙ୍କର ଝାଳରେ ବୁଡ଼ିଯାଇଥିଲା । ଦ୍ରୁତ ଗତିରେ ପାଦ ଚାଲିବାରୁ କ୍ଳାନ୍ତି ତାଙ୍କୁ ଅବଶ କରି ପକାଇଥିଲା । ଆଖିରେ ଧୀରେ ତନ୍ଦ୍ରା ଘୋଟି ଆସୁଥିଲା । କିନ୍ତୁ....

ଘରର ଆଲୋକଟା ହଠାତ୍ ଜଳିଉଠିଲା ।

ସତ୍ୟବ୍ରତ ଆଖିମଳି ଚାହିଁଲେ, ସାଗର ଦାସ ।

ସାଗର ଦାସ ସବୁଦିନ ପରି ଗୋଟାଏ ଟ୍ରେ'ରେ ନୈଶ ଭୋଜନ ସଜାଡ଼ି କରି ଆଣିଛି । ସତ୍ୟବ୍ରତଙ୍କର ଉଠିବାକୁ ଇଚ୍ଛା ନଥିଲେ ମଧ୍ୟ ସେ ବାଧହୋଇ ଉଠିଲେ । ଡେରି କରି ଲାଭ

ନାହିଁ । ସାଗର ଦାସ କୌଣସି ଅନୁରୋଧ ଉପ୍ରୋଧ ଶୁଣିବ ନାହିଁ । ମାଲିକର ହୁକୁମ୍ ଜାହିର କରିବା ପାଇଁ ତା'ର ଜନ୍ମ ହୋଇଛି ।

ସତ୍ୟବ୍ରତ ସିଧା ଉଠି ବାଥ୍‌ରୁମ୍‌କୁ ଯାଇ ମୁହଁ ହାତ ଧୋଇ ଆସିଲେ ।

ତା'ପରେ ଖାଇବାକୁ ବସିଗଲେ ।

ସାଗର ଦାସ ଗୋଟିକ ପରେ ଗୋଟିଏ ପ୍ଲେଟ୍ ସଜାଇ ଦେଲା ।

ସତ୍ୟବ୍ରତ ତଳେଇ ଚାହୁଁଥିଲେ ସାଗର ଦାସର ତୀକ୍ଷ୍ଣ ସତର୍କ ଦୃଷ୍ଟି ଆଡ଼େ ।

ଖାଇବା ଶେଷ ହେଲା ।

ଏଥର କଫି ପର୍ବ ।

ସାଗର ଦାସ କଫି ପଟ୍ରୁ କଫି ଢାଳିଲା ।

ଥୋଇଦେଲା ସତ୍ୟବ୍ରତଙ୍କ ସାମ୍‌ନାରେ ।

ସତ୍ୟବ୍ରତ ସ୍ମିତହସି ଧୀର ମୁଲାଏମ ସ୍ୱରରେ ପଚାରିଲେ, ସାଗର ଦାସ। ତମ ମା'ଙ୍କ ସହିତ ଆଜି କେତେବେଳେ ଦେଖାହୋଇଥିଲା ?

: ଦେଖା ହୋଇ ନାହିଁ ।

: ଦେଖା ହେବ ?

ନା, ତାଙ୍କ ସହିତ ମୋର କାମ କ'ଣ ?

: ତମ ମା'ଙ୍କ ପାଖକୁ ଗୋଟାଏ ଖବର ପଠାଇବାର ଇଚ୍ଛା ଥିଲା, ଖବରଟା କିପରି ତାଙ୍କ ପାଖରେ ପହଞ୍ଚିବ ?

: ସେ ବଳେ ବଳେ ଆସିବେ । ଯାହାର ଯେତେବେଳେ ଯାହା ଦରକାର ପଡ଼େ ପରମୁହୂର୍ତ୍ତରେ ମା' ଆସି ତାକୁ ଦେଖାଦିଅନ୍ତି, ମୋର ଆଉ ସମୟ ନାହିଁ । ଆପଣ ଶୀଘ୍ର କପ୍‌ଟା ଖାଲି କରନ୍ତୁ, ମୁଁ ଚାଲିଯିବି ।

ସତ୍ୟବ୍ରତ କଫି କପ୍‌ରୁ ଢୋକେ ଶୋଷି ନେଇ କହିଲେ, : ଜାଣ ସାଗର ଦାସ, କଫି ହେଉଛି ସବୁଠାରୁ ମୋର ପ୍ରିୟ ପାନୀୟ । ଖାଲି ସେତିକି ନୁହେଁ, କଫି ଉପରେ ମୋର ଗୋଟାଏ ସ୍ୱତଃ ଦୁର୍ବଳତା ରହିଯାଇଛି, ତେଣୁ ଏତେ ଶୀଘ୍ର ମୁଁ କଫି କପ୍ ଶେଷ କରି ପାରିବି ନାହିଁ । ତମେ ବରଂ କାମ ଶେଷ କରି ଆସ, କପ୍‌ଟା ନେଇଯିବ ।

ସାଗର ଦାସ ମୁହୂର୍ତ୍ତେ କ'ଣ ଚିନ୍ତାକଲା । ତା'ପରେ ହଠାତ୍ ଅନ୍ୟାନ୍ୟ ବାସନଗୁଡ଼ିକ ଉଠାଇ ଟ୍ରେ'ରେ ରଖି ଘରୁ ବାହାରି ଚାଲିଗଲା !

ସାଗର ଦାସ ବାହାରି ଯିବା ସଙ୍ଗେ ସଙ୍ଗେ ସତ୍ୟବ୍ରତ ଆଉ ମହୂର୍ତ୍ତେ ଡେରି ନ କରି ବାଥ୍‌ରୁମ୍‌କୁ ଉଠିଯାଇ କଫିଯାକ ଢାଳିଦେଲେ । ଶୂନ୍ୟ କପ୍‌ଟି ଧରି ଫେରି ଆସିଲେ ପୂର୍ବ ସ୍ଥାନକୁ ।

ଗୋଲାପ କଲୋନୀର ଅମରବାବୁଙ୍କ ଠାରୁ ବିଦାୟ ନେବା ପରଠାରୁ ତାଙ୍କ ମନରେ ବହୁ ପ୍ରକାର ଚିନ୍ତା ଭାବନାର ସୁଅ ଛୁଟିଛି । ସୁଭଦ୍ରା ଦେବୀଙ୍କ ସ୍ୱରୂପ ଧୀରେ ଧୀରେ ତାଙ୍କ ଆଖି ଆଗରେ ପ୍ରକଟ ହୋଇ ଉଠୁଛି । କୃଷି ଫାର୍ମ ନାମରେ ସୁଭଦ୍ରା ଦେବୀ ଏ ଯେଉଁ ମୋହମାୟା ଜାଲ ବିସ୍ତାରି ବସିଛନ୍ତି ଏହି ହାଲରେ ଥରେ ଧରାଦେଲେ ଆଉ ବାହାରି ଯିବା ଉଦ୍ଦେଶ୍ୟ କ'ଣ ଏଠାରେ ବ୍ୟର୍ଥ ହୋଇଯିବ। ଦ୍ୱାରିକାନାଥ ଗୋଏଙ୍କାଙ୍କର ଆତ୍ମୀୟକୁ ସେ

ଏଠାରେ ଖୋଜି ପାଇବେ ନାହିଁ । ଧନଞ୍ଜୟ ବୈରାଗୀଙ୍କର ହତ୍ୟାକାରୀ ଏହି କୃଷିଫାର୍ମ ଭିତରେ ଲୁଚିରହିଥିଲେ ମଧ୍ୟ ସେ ତାକୁ ଖୋଜି ବାହାର କରି ପାରିବେ ନାହିଁ? ଏତେଦିନ ପରେ ତାଙ୍କର ସମସ୍ତ ପ୍ରୟାସ କ'ଣ ବ୍ୟର୍ଥ ହୋଇଯିବ ?

ହଠାତ୍ ସତ୍ୟବ୍ରତଙ୍କର ଭାବନା ଥମିଗଲା ।

କିଏ ଘରର ଦରଜା ଖୋଲି ଭିତରେ ପ୍ରବେଶ କଲା ।

ସାଗର ଦାସ ହୋଇଥିବ ବୋଧହୁଏ ।

: ଶୋଇପଡ଼ିଲେ କି ?

ସତ୍ୟବ୍ରତ ଏକ ମଧୁର କଣ୍ଠସ୍ୱର ଶୁଣି ବୁଝିପାରିଲେ ସ୍ୱୟଂ ସୁଭଦ୍ରା ଦେବୀ ଆଗମନ କରିଛନ୍ତି । ଇଚ୍ଛା କରି ସେ ଜବାବ୍ ଦେଲେ ନାହିଁ । ଆଖିବୁଜି ଶୋଇ ପଡ଼ିଲେ । ସତେ ଯେପରି କୋକେନ୍‌ର ପ୍ରତିକ୍ରିୟା ତାଙ୍କ ଦେହର ଶିରାପ୍ରଶିରାକୁ ଅବଶ କରି ଆଣୁଛି ।

ସୁଭଦ୍ରା ଦେବୀ ଆଗେଇ ଆସିଲେ ଶେଯପାଖକୁ ।

ଆଉଥରେ ଡାକିଲେ ।

: ଗୋଏଙ୍କାଜୀ !

ସୁଭଦ୍ରା ଦେବୀ ସତ୍ୟବ୍ରତ ଦେହରେ ହାତମାରିଲେ ।

: ଆପଣ ଖୁବ୍ କ୍ଳାନ୍ତ, ନା ମିଷ୍ଟର ଗୋଏଙ୍କା ?

ସତ୍ୟବ୍ରତ ଅଳସ ଆଖିପତା ମେଲି ଧୀରେ ଚାହିଁଲେ । ସେ ଯେପରି ଆଶ୍ଚର୍ଯ୍ୟ ହୋଇଛନ୍ତି । ଉଠିବସିବାକୁ ଚେଷ୍ଟାକରି ମଧ୍ୟ ଉଠିପାରୁ ନାହାନ୍ତି ସେହିପରି ଭାବ ଦେଖାଇ ପୁଣି ବିଛଣାରେ ପଡ଼ିଗଲେ ।

ସୁଭଦ୍ରା ଦେବୀ ମନେ ମନେ ଖୁସି ହେଉଥିଲେ ହୁଏତ ଯୋଜନା ଯେ ତାଙ୍କର ବ୍ୟର୍ଥ ହୋଇ ନାହିଁ, ବେଶ୍ ସେ ବୁଝିପାରୁଥିଲେ ।

କହିଲେ : ଆପଣ ଖୁବ୍ କ୍ଳାନ୍ତ । ବର୍ତ୍ତମାନ ବିଶ୍ରାମ କରନ୍ତୁ । ମୁଁ ଆସିଥିଲି ଆପଣଙ୍କ ସହିତ ସେହି ସମ୍ବନ୍ଧରେ କଥାବାର୍ତ୍ତା କରିବା ପାଇଁ । କିନ୍ତୁ ବର୍ତ୍ତମାନ ଦେଖୁଛି ସମ୍ଭବ ନୁହେଁ । ତେବେ ଆପଣ ଆହୁରି ଭଲଭାବରେ ଏଠାକାର ପରିବେଶ ସମ୍ବନ୍ଧରେ ଅନୁଧ୍ୟାନ କରନ୍ତୁ । ମୁଁ ଆଜି ରାତିରେ ଟିକିଏ ବାହାରକୁ ଯାଉଛି । ତିନି ଚାରିଦିନ ପରେ ଫେରିଆସିବି । ସେତେବେଳେ ସବୁ କଥା ଖୋଲାଖୋଲି ଭାବରେ ଆଲୋଚନା କରି ବିବାହ ଦିନ ଧାର୍ଯ୍ୟକରିବା ।

ସତ୍ୟବ୍ରତ ସବୁ ଶୁଣି ମଧ୍ୟ ନ ଶୁଣିଲା ପରି ପଡ଼ିରହିଥିଲେ । ସୁଭଦ୍ରା ଦେବୀଙ୍କ ଶେଷ କଥା ଶୁଣି ସ୍ମିତ ହସି ହାତ ହଲାଇ ଇଂଗିତରେ କହିଲେ : ଠିକ୍ ଅଛି ।

ସୁଭଦ୍ରା ଦେବୀ ସତ୍ୟବ୍ରତଙ୍କ ଦେହ ଉପରେ ଖଣ୍ଡିଏ ଚାଦର ଟାଣି ଘୋଡ଼େଇ ଦେଉ ଦେଉ କହିଲେ: ଆପଣଙ୍କର ଏଠାରେ କିଛି ଅସୁବିଧା ହେଉ ନାହିଁ ତ ?

ସତ୍ୟବ୍ରତ ଉତ୍ତରରେ କେବଳ ସ୍ମିତ ହସିଲେ ।

ବହୁତ ରାତିଯାଏ ସେଦିନ ଶୋଇପାରି ନଥିଲେ ସତ୍ୟବ୍ରତ ମହାପାତ୍ର । ଧୀରେ ଧୀରେ ସୁଭଦ୍ରା ଦେବୀଙ୍କର ଉଦ୍ଦେଶ୍ୟ ତାଙ୍କ ଆଖି ଆଗରେ ପ୍ରକଟ ହୋଇଉଠୁଥିଲା । ତାଙ୍କ ବିରୋଧରେ ଯେ ରୀତିମତ ଗୋଟାଏ ଚକ୍ରାନ୍ତ ଚାଲିଛି ଏବଂ ତାଙ୍କୁ ଯେ ଏହି ଶୈଳାବାସର ଚାରି କାନ୍ଥ ଭିତରେ ସାରାଜୀବନ ପାଇଁ ଅଟକାଇ ରଖିବାକୁ ସୁଚିନ୍ତିତ ଯୋଜନା ପ୍ରସ୍ତୁତ ହୋଇସାରିଛି ଏହା ସେ ସ୍ପଷ୍ଟ ବୁଝିପାରୁଥିଲେ ।

କିନ୍ତୁ ସୁଭଦ୍ରା ଦେବୀଙ୍କର ଏହି ଚକ୍ରାନ୍ତ ଯେ ବ୍ୟର୍ଥ ହେବ, ସେ କଥା ସୁଭଦ୍ରା ଦେବୀ ଯେତେବେଳେ ଜାଣିପାରିବେ ସେତେବେଳେ ତାଙ୍କୁ ଅନୁଶୋଚନା କରିବାର ବେଳ ବି ମିଳିବ ନାହିଁ ।

ପୁଣି କିଏ ଯେପରି ପବାଟ ଖୋଲିବାର ଶବ୍ଦ ହେଲା ।

ଏତେ ରାତିରେ...

ସତ୍ୟବ୍ରତ ବିଛଣାରୁ ଉଠି ବସିଲା ବେଳକୁ ଗୋଟିଏ ଛାୟାମୂର୍ତ୍ତି ତାଙ୍କ ପାଖକୁ ଆଗେଇ ଆସିଥିଲା ।

ଫୁସ୍ ଫୁସ୍ କଥା ସତ୍ୟବ୍ରତ ଶୁଣିଲେ : ମୁଁ ଅମରବାବୁ ଆସିଛି, ଗୋଲାପ କଲୋନୀର ଅଧକ୍ଷ । ଆପଣ ମୋ ସହିତ ଏହି ମୁହୂର୍ତ୍ତରେ ବାହାରକୁ ବାହାରି ଆସନ୍ତୁ ।

ସତ୍ୟବ୍ରତ ହଠାତ୍ କିଛି ସ୍ଥିର କରି ପାରିଲେ ନାହିଁ ।

ଅମରବାବୁ କିନ୍ତୁ ସତ୍ୟବ୍ରତଙ୍କ ହାତ ଧରି ଜୋର୍‌ରେ ଟାଣି ଉଠାଇ ବସାଇଲେ । ସତ୍ୟବ୍ରତ ଖଟ ଉପରୁ ତଳକୁ ଓହ୍ଲେଇ ଆସିବା ପରେ ଅମର ବାବୁ ଖଟ ଉପରେ ଦୁଇଟି ତକିଆକୁ ଯୋଡ଼ି ଲମ୍ବାକରି ଶୁଆଇ ଦେଇ ତା'ପରେ ଗୋଟିଏ ଚାଦର ଢାଙ୍କିଦେଲେ । ଦେଖିଲେ ମନେହେବ ଯେପରି ଜଣେ ମଣିଷ ଶୋଇଛି ।

ତା'ପରେ ଅମରବାବୁ ସତ୍ୟବ୍ରତ ମହାପାତ୍ରଙ୍କ ହାତ ଧରି ବାହାରକୁ ବାହାରିଗଲେ ।

ସେହି ଅନ୍ଧକାର ଭିତରେ ଅମରବାବୁ ସତ୍ୟବ୍ରତଙ୍କୁ ଅମଡ଼ା ବାଟରେ ଚଲାଇ ଚଲାଇ କେଉଁଆଡ଼େ ଯେ ନେଉଥିଲେ, ସତ୍ୟବ୍ରତ ନିଜେ ତାହା ବୁଝିପାରୁ ନ ଥିଲେ । କୌଣସି ପ୍ରଶ୍ନ ପଚାରିବାକୁ ସାହସ କରିପାରୁ ନ ଥିଲେ ।

ଏକ ସମୟରେ ସେମାନଙ୍କ ପଥଚଲା ଶେଷହେଲା ।

ଅମରବାବୁ ପର୍ବତ ଗହ୍ୱରର ଏକ ଶିଳାଖଣ୍ଡ ଉପରେ ବସି ସତ୍ୟବ୍ରତଙ୍କୁ ବସିବାକୁ କହି ଯେପରି ସ୍ୱସ୍ତିର ନିଶ୍ୱାସ ପକାଇଲେ ।

ସତ୍ୟବ୍ରତଙ୍କ ନାକରୁ ଖରଶ୍ୱାସ ବାହାରୁଥିଲା ।

କାରଣ ଅମରବାବୁ ତାଙ୍କୁ ଯେପରି ଅଙ୍କାବଙ୍କା କଣ୍ଟକକୀର୍ଣ୍ଣ ପଥରେ ଟାଣି ଘୋଷାଡ଼ି ଦଉଡ଼ାଇ ନେଉଥିଲେ, ସେଥିରେ ସତ୍ୟବ୍ରତଙ୍କର ପାଦ ଯେ କ୍ଷତବିକ୍ଷତ ହୋଇ ନଥିଲା ତାହା ନୁହେଁ ।

ଅମର ବାବୁ କହିଲେ : ବର୍ତ୍ତମାନ ରାତି ପ୍ରାୟ ଦୁଇଟା ହେବ । ସମସ୍ତେ ଶୋଇ ପଡ଼ିଲେଣି । ସୁଭଦ୍ରା ଦେବୀ ଶୈଳାବାସରେ ନାହାନ୍ତି । ଏହାଛଡ଼ା ଉପଯୁକ୍ତ ସମୟ ହୁଏତ ଆଉ ଆସିବ କି ନାହିଁ ଜାଣେ ନାହିଁ ସେଇଥିପାଇଁ ମୁଣ୍ଡରେ ବହୁତ ବିପଦ ମୁଣ୍ଡେଇ ମୁଁ

ଆପଣଙ୍କ ପାଖକୁ ଧାଇଁଆସିଛି । ଆପଣଙ୍କୁ ମୋର ଗୋଟାଏ ଅନୁରୋଧ ରକ୍ଷାକରିବାକୁ ହେବ ।

: କ'ଣ କୁହନ୍ତୁ । ସତ୍ୟବ୍ରତ କହିଲେ ।

: ଆପଣଙ୍କୁ ଏଠାକାର ସମସ୍ତ ମୋହ ତୁଟାଇ, ସୁଭଦ୍ରା ଦେବୀଙ୍କର ମାୟା ତ୍ୟାଗ କରି ଏଇ ମୁହୂର୍ତ୍ତରେ ଚାଲିଯିବାକୁ ହେବ ।

: କାହିଁକି ? ଆପଣ ଭାବୁଛନ୍ତି ମୁଁ କ'ଣ ଆପଣଙ୍କର ପ୍ରତିଦ୍ୱନ୍ଦୀ ହୋଇ ଠିଆ ହୋଇଛି ? ସତ୍ୟବ୍ରତ ଉତ୍ତର ଦେଲେ ।

: ନା, ନା ଆପଣ ମୋତେ ମୋ କଥା ବୁଝିପାରୁନାହାନ୍ତି । ଆପଣ ଆଜିଯାଏ ଏଠାରେ ଜୀବିତ ଅଛନ୍ତି, ତାହା ଆପଣଙ୍କର ପରମ ସୌଭାଗ୍ୟ, ହୁଏତ ରାତି ଶେଷବେଳକୁ ବା ଦୁଇଦିନ ପରେ ଆପଣ ନିଶ୍ଚିତ ମୃତ୍ୟୁବରଣ କରିବେ ।

: ମୃତ୍ୟୁ ! ସତ୍ୟବ୍ରତ ଚମକି ଉଠି କହିଲେ, ଏ ଆପଣ କ'ଣ କହୁଛନ୍ତି ?

: ହଁ ମୁଁ ଠିକ୍ କହୁଛି । ମୃତ୍ୟୁ ଆପଣଙ୍କ କପାଳ ଲିଖନ ।

: ଆପଣ କିପରି ଜାଣିଲେ ?

: ଆପଣଙ୍କ ଅଙ୍ଗୁଳିରେ ଥିବା 'ଇନ୍ଦ୍ରନୀଳ' ମୁଦି ହିଁ ତା'ର ଜ୍ୱଳନ୍ତ ପ୍ରମାଣ ।

ସତ୍ୟବ୍ରତ ଶିହରୀ ଉଠିଲେ । ପାଟିରୁ ତାଙ୍କର କଥା ବାହାରିଲା ନାହିଁ । ଅଙ୍ଗୁଳିରେ ପିନ୍ଧିଥିବା ଇନ୍ଦ୍ରନୀଳ ମୁଦିଟି ଆଡ଼େ ସେ ନିର୍ନିମେଷ ନୟନରେ ଅନାଇ ରହିଲେ ।

ଅମରବାବୁ କହିଲେ : ଇନ୍ଦ୍ରନୀଳ ମୁଦିଟି ହେଉଛି ଏଠାକାର ମୃତ୍ୟୁ ସଙ୍କେତ । ଆଜିଯାଏ ଯେଉଁମାନଙ୍କୁ ହାତରେ ଇନ୍ଦ୍ରନୀଳ ମୁଦି ପିନ୍ଧାଇ ଏଠାକୁ ପଠାହୋଇଛି, ସେମାନେ ମୃତ ଗୁହାରେ, ସମୟ ଥିଲେ ମୁଁ ଆପଣଙ୍କୁ ସବୁ ଦେଖାଇ ଥାଆନ୍ତି; କିନ୍ତୁ ବର୍ତ୍ତମାନ ଏଇ ମୁହୂର୍ତ୍ତରେ ଆପଣଙ୍କୁ ଏ ଜାଗା ଛାଡ଼ି ଚାଲିଯିବାକୁ ହେବ; ନ ହେଲେ ପରମୁହୂର୍ତ୍ତଟା ଆପଣଙ୍କ ପଳାୟନ ପାଇଁ ଅନୁକୂଳ ହୋଇ ନ ପାରେ ।

: କିନ୍ତୁ ଗୋଟାଏ କଥା ଅମରବାବୁ ମୁଁ ବୁଝିପାରୁ ନାହିଁ - ବାହାରୁ ଲୋକ ସଂଗ୍ରହ କରି ଇନ୍ଦ୍ରନୀଳ ମୁଦି ପିନ୍ଧାଇ କିଏ ସେମାନଙ୍କୁ ଏହି ମରଣ ଗହ୍ୱରକୁ ପଠାଇ ଥାଏ ।

ଅମରବାବୁ କହିଲେ : ସେ କଥା ମୋଠାରୁ ଆପଣ ବେଶି ଜାଣିଥିବେ, କାରଣ ଆପଣଙ୍କ ହାତରେ ଇନ୍ଦ୍ରନୀଳ ମୁଦି ଅଛି । ଏ ମୁଦି ଆପଣଙ୍କ ହାତକୁ କିପରି ଆସିଲା, ଆପଣ ଚିନ୍ତା କରି ଦେଖନ୍ତୁ । ତେବେ ମୁଁ ଏତିକି ଜାଣେ ଏହି କୃଷିଫାର୍ମର ବାହାରେ ସଭ୍ୟ ଜଗତରେ ଏମାନଙ୍କର ଗୋଟାଏ ଦୁର୍ଦ୍ଦାନ୍ତ ଦଳ ଅଛି, ସେହି ଦଳ ସମ୍ବନ୍ଧରେ ଯେଉଁମାନେ ସାମାନ୍ୟ ସୂଚନା ପାଇଯାଆନ୍ତି ବା ସେମାନେ ଯେତେବେଳେ ଭାବନ୍ତି ଏହି ଲୋକଟା ବଞ୍ଚି ରହିଲେ ଦଳର ଅନିଷ୍ଟ ହେବ, ସେତେବେଳେ ଦଳର ଅଧିନାୟକ ଲୋକଟିକୁ କୌଣସି ଉପାୟରେ ଇନ୍ଦ୍ରନୀଳ ମୁଦି ପିନ୍ଧାଇ ଏଠାକୁ ପଠାଇ ଦିଏ । ତା'ପରର ଘଟଣା ଅତି ସହଜ । ସେହି ନିର୍ଦ୍ଦିଷ୍ଟ ଲୋକଟି ଏଠାରେ ଲୋକଲୋଚନର ଅଗୋଚରରେ ମରଣ ଗହ୍ୱର ମଧ୍ୟରେ ପଶି ଧୀରେ ଧୀରେ କଙ୍କାଳରେ ପରିଣତ ହୋଇଯାଏ । ଏମାନଙ୍କର ଏହିସବୁ ସମ୍ବାଦ ଏକା ମୋ'ଛଡ଼ା ଏଠାକାର ଅନ୍ୟ କେହି ଜାଣନ୍ତି ନାହିଁ । କାରଣ ମୋ'ଛଡ଼ା ବୋଧହୁଏ ଅନ୍ୟ ଜଣେ ସୁସ୍ଥଲୋକ କେହି ଏଠାରେ ନାହାନ୍ତି ।

ହଠାତ୍ ସତ୍ୟବ୍ରତଙ୍କ ଆଖି ଆଗରେ ଭାସିଉଠିଲା ଦ୍ୱାରୀକାନାଥ ଗୋଏଙ୍କାଙ୍କର ମୁହଁ । ତା'ପଛେ ପଛେ ଧନଞ୍ଜୟ ବୈରାଗୀଙ୍କର ମୃତ ଦେହ । ମୃତ୍ୟୁ ପରେ ମଧ୍ୟ ଧନଞ୍ଜୟ ବୈରାଗୀ ତାଙ୍କ ହାତମୁଠାରେ ଗୋଟାଏ ଇନ୍ଦ୍ରନୀଳ ମଣି ମୁଠାଇ ଧରିଥିଲେ ।

ତା'ହେଲେ...

ଦ୍ୱାରିକାନାଥ ଗୋଏଙ୍କା କ'ଣ ଏହି ନାଟକର ପ୍ରଧାନ ଅଭିନେତା ! ତାଙ୍କର ଆତ୍ମୀୟଙ୍କର ଅନ୍ତର୍ଦ୍ଧାନ ସମ୍ବାଦ ସମସ୍ତ କଳ୍ପିତ !! ସେ କେବଳ ସତ୍ୟବ୍ରତଙ୍କୁ ଫାନ୍ଦରେ ପକାଇବା ପାଇଁ ଏହିପରି ଏକ କଳ୍ପନା କାହାଣୀ ରଚନା କରିଥିଲେ ? କିନ୍ତୁ କାହିଁକି ?

ସତ୍ୟବ୍ରତଙ୍କର ନୀରବତା ଭଙ୍ଗକରି ଅମରବାବୁ ପୁଣି କହିଲେ, : ଆପଣଙ୍କ ପରି ଜଣେ ଉଦୀୟମାନ ଯୁବକ ଏଠାରେ ମୃତ୍ୟୁ ବରଣ କରୁ ଏହା ମୁଁ ଚାହେଁ ନାହିଁ । ସେଇଥିପାଇଁ ମୁଁ ବିପଦର ବୋଝ ମୁଣ୍ଡରେ ମୁଣ୍ଡାଇ ଏଠାକୁ ଛୁଟି ଆସିଛି । ଖାଲି ସେତିକି ନୁହେଁ; ମୁଁ ଚାହେଁ ଏଠାରେ ଏହି ଗୋପନ ମରଣ ଆଖଡ଼ାଟି ସମୂଳେ ଧ୍ୱଂସ କରି ଦେବା ପାଇଁ । ବହୁତ ଦିନରୁ ମୁଁ ସେହି ସୁଯୋଗକୁ ଅପେକ୍ଷା କରି ବସି ରହିଛି । ଆଜି ସେ ସୁଯୋଗ ଆସିଛି ଏବଂ ଆପଣ ହେଉଛନ୍ତି ମୋର ପ୍ରଧାନ ସହାୟକ ।

: କିପରି ? ସତ୍ୟବ୍ରତ ପଚାରିଲେ ।

: ଆପଣ ଶୁଣନ୍ତୁ । ସମୟ ଆଉ ଅଳ୍ପ । କାଲି ରାତି ବାରଟା ବେଳେ ଗୋପାଳପୁରର ସି- ବିଚ୍ ହୋଟେଲରେ ଏମାନଙ୍କର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବ । ବିଭିନ୍ନ ସ୍ଥାନରୁ ପ୍ରତିନିଧିମାନେ ଆସି ସେହି ଅଧିବେଶନରେ ଯୋଗଦେବେ । ସେଠାରେ ଗତ ଏକ ବର୍ଷର ହିସାବ ନିକାଶ ହେବ ଏବଂ ଆଗାମୀ ବର୍ଷର କାର୍ଯ୍ୟସୂଚୀ ନିର୍ଣ୍ଣୟ କରାହେବ । ଯେଉଁମାନେ ଏହି ଅଧିବେଶନରେ ଯୋଗଦେବେ, ସେମାନେ ଦେଶର ବିଭିନ୍ନସ୍ତରର ମାନ୍ୟଗଣ୍ୟ ଲୋକ । ସତ୍ୟତାର ଆବରଣ ତଳେ ସେମାନଙ୍କର ଯେ ଗୋଟାଏ ବର୍ବର ମନୋବୃତ୍ତି ଲୁଚିରହିଛି ଏବଂ ତାହା ସେମାନଙ୍କର ଜୀବନଧାରଣର ବୃତ୍ତି ହୋଇ ରହିଛି, ଆପଣ ବାହାରୁ ସେ କଥା ମୋଟେ ବୁଝିପାରିବେ ନାହିଁ । କିନ୍ତୁ ଯେପରି ହେଉ ଆପଣଙ୍କୁ ସେହି ବ୍ୟୂହଭେଦ କରିବାକୁ ହେବ । ସେମାନଙ୍କର ଏହି ସଭ୍ୟତାର ମୁଖା ଖୋଲିଦେବାକୁ ହେବ । ଆପଣ ଚାଲିଯାଆନ୍ତୁ । ଆମ ସମସ୍ତଙ୍କୁ ଆପଣ ଉଦ୍ଧାର କରନ୍ତୁ । ଦଳେ ସଭ୍ୟ ମଣିଷଙ୍କୁ ଏଠାରେ ପର୍ଯ୍ୟାୟକ୍ରମରେ ଯେ ମେଷଶାବକରେ ପରିଣତ କରାହେଉଛି, ଏଥିରୁ ଏମାନଙ୍କୁ ମୁକ୍ତି ଦିଅନ୍ତୁ ।

ଅମରବାବୁଙ୍କର ଏହି ଆବେଗମୟ କଥା ଶୁଣି ସତ୍ୟବ୍ରତ ସ୍ତବ୍ଧ ହୋଇ ଯାଇଥିଲେ । ସେ ଭାବିପାରୁ ନ ଥିଲେ ସେ ବାସ୍ତବ ଜଗତରେ ଥାଇ ଜଣେ ରକ୍ତମାଂସ ଦେହଧାରୀ ମଣିଷ ଠାରୁ ଏହି କଥା ଶୁଣୁଛନ୍ତି; ହେଲେ ଅବିଶ୍ୱାସ କରିବାର ମଧ୍ୟ ଉପାୟ ନଥିଲା ।

କ୍ଷଣିକ ନୀରବତା ପରେ ସତ୍ୟବ୍ରତ ପଚାରିଲେ : କିନ୍ତୁ ଅମରବାବୁ, ମୋର ଗୋଟିଏ ପ୍ରଶ୍ନ । ସହଜ ଭାଷାରେ କହିବାକୁ ଗଲେ ଆପଣ ଏଠାକାର ଜଣେ କଏଦୀ । ତେବେ କୌଶଳକ୍ରମେ ଆପଣ ମାଦକଦ୍ରବ୍ୟର ମୋହ କଟାଇ କୌଣସି ପ୍ରକାର ସୁସ୍ଥ ମସ୍ତିଷ୍କରେ ଅଛନ୍ତି, କିନ୍ତୁ ଏମାନଙ୍କର ଏହି ଗୁପ୍ତ କଥା ସବୁ ଜାଣିଲେ କିପରି ?

ଅମରବାବୁ କହିଲେ : ଆଜି ଆଉ ବିସ୍ତୃତ ଭାବେ ସବୁ କଥା କହିବାର ସମୟ ନାହିଁ । ତେବେ ଏତିକି ଜାଣି ରଖନ୍ତୁ ଆପଣଙ୍କର ସମସ୍ତ ପରିଚୟ ମୋ ପାଖରେ ଗୋପନ ଥିଲେ ମଧ୍ୟ ମୁଁ ଆପଣଙ୍କ ନାଁ ଜାଣିପାରିଛି ଏବଂ ଆପଣଙ୍କ ପେଶା ମଧ୍ୟ ଜାଣିପାରିଛି । ତେଣୁ

ମିଷ୍ଟର ମହାପାତ୍ର, ଆପଣ ଏତିକିରୁ ବୁଝି ପାରୁଥିବେ ଯେ ସେମାନଙ୍କର ଜଣେ ଅତି ବିଶ୍ୱସ୍ତ କର୍ମଚାରୀ ସହିତ ମୋର ଯୋଗସୂତ୍ର ଅଛି ଏବଂ ଏକଥା ମଧ୍ୟ ମୁଁ ଜାଣିଛି ଆପଣ ଧନଞ୍ଜୟ ବୈରାଗୀଙ୍କର କେସ୍ ହାତକୁ ନେଇଥିବାରୁ ଆପଣଙ୍କୁ ଏହି ମୃତ୍ୟୁଦଣ୍ଡ ଆଦେଶ ହୋଇଛି ।

ସତ୍ୟବ୍ରତ ସତରେ ଏଥର ଅମରବାବୁଙ୍କ କଥା ଶୁଣି ସ୍ତବ୍ଧ ହୋଇଯାଇଥିଲେ । ଏହା ପରେ ଅମରବାବୁଙ୍କୁ ତାଙ୍କର ଆଉ ଅବିଶ୍ୱାସ କରିବାର କିଛି ନଥିଲା । ସେ ମୁହୂର୍ତ୍ତେ ଚିନ୍ତା କରି କହିଲେ: କିନ୍ତୁ ସେମାନଙ୍କର ସେହି ବନ୍ଦ ଦ୍ୱାର ମିଟିଂରେ ପ୍ରବେଶ କରିବା ମୋ ପକ୍ଷରେ କ'ଣ ସମ୍ଭବ ହେବ ? ତା'ଛଡ଼ା ସେମାନଙ୍କ ବିରୋଧରେ କୌଣସି ଚାର୍ଜ ନ ଥାଇ ପୋଲିସ୍ ସାହାଯ୍ୟରେ ଆରେଷ୍ଟ ବି କରି ହେବ ନାହିଁ ।

ଅମରବାବୁ କହିଲେ: ଆପଣ ଚତୁର ଲୋକ, ସେ ଦାୟିତ୍ୱ ଆପଣଙ୍କର । ମୁଁ ଖାଲି ଖବରଟାଏ ଦେଲି । ତେବେ ଆଉ ଗୋଟିଏ ସାହାଯ୍ୟ ମୁଁ ଆପଣଙ୍କୁ କରିପାରେ । ମୋର ସେହି ବିଶ୍ୱସ୍ତ ଲୋକଟି ଯିଏ ସେମାନଙ୍କର ଭିତରର ସମ୍ବାଦ ମୋତେ ଯୋଗାଇଥାଏ ସେ ମଧ୍ୟ ସେମାନଙ୍କ ସହିତ ସେଠାରେ ଉପସ୍ଥିତ ରହିବ । ମୁଁ କହିଛି ସେ ଆପଣଙ୍କୁ ସାହାଯ୍ୟ କରିପାରେ । ଅବଶ୍ୟ ଆପଣ ଯଦି ପ୍ରୟୋଜନ ମନେକରନ୍ତି ।

ସତ୍ୟବ୍ରତ ଉତ୍ସାହିତ ହୋଇ ପଚାରିଲେ : ମୁଁ କିପରି ତାଙ୍କର ଦେଖାପାଇବି ?

ଅମରବାବୁ କହିଲେ: ମୋର ତାକୁ ନିର୍ଦ୍ଦେଶ ଅଛି, ସି ବିଚ୍ ହୋଟେଲର ଡାହାଣ ପାଖକୁ ପ୍ରାୟ ଶହେଗଜ ଦୂରରେ ସମୁଦ୍ର ବାଲିଉପରେ ଆପଣ ଗୋଟାଏ ଦୀର୍ଘ '୦' ଲେଖି କାଲି ଦିନ ଚାରିଟାବେଳେ ଛଦ୍ମବେଶରେ ବସିଥିବେ । ସେ ଯଦି ସମୁଦ୍ର ବାଲିରେ '୦' ଦେଖେ ତା'ହେଲେ ଆପଣଙ୍କ ପାଖକୁ ଆଗେଇ ଯିବ, ଆପଣ ସଂକ୍ଷେପରେ ଏବଂ ଅଳ୍ପ ସମୟ ମଧ୍ୟରେ ଆପଣଙ୍କର ଯଦି କିଛି ନିର୍ଦ୍ଦେଶ ଥାଏ ତେବେ ଶେଷ କରିବେ । ସେ ତାହା ଅତି ବିଶ୍ୱସ୍ତତାର ସହିତ ପାଳନ କରିବ । କିନ୍ତୁ ସବୁ କଥା ଅତି ସତର୍କତାର ସହ ଶେଷ କରିବାକୁ ହେବ ।

ସତ୍ୟବ୍ରତ ଅମରବାବୁଙ୍କ ଠାରୁ ଏହି କଥା ଶୁଣିସାରି ଆନନ୍ଦରେ ତାଙ୍କୁ କୁଣ୍ଢାଇ ପକାଇଲେ । କହିଲେ : ଆପଣ ମୋଠାରୁ ମଧ୍ୟ ପ୍ରଖର ବୁଦ୍ଧିସମ୍ପନ୍ନ ଅମରବାବୁ । କିନ୍ତୁ ମୁଁ ବୁଝିପାରୁ ନାହିଁ ଆପଣ ତାଙ୍କ ଦଳର ଜଣେ ଅତି ବିଶ୍ୱସ୍ତ ଲୋକକୁ କିପରି ହାତକରି ପାରିଲେ ?

ଅମରବାବୁ ଗୋଟିଏ ଦୀର୍ଘଶ୍ୱାସ ପକାଇ କହିଲେ : ସେମାନେ ସମସ୍ତେ ମୁକ୍ତି ଚାହାନ୍ତି ମିଷ୍ଟର ମହାପାତ୍ର । ସମସ୍ତେ ମୁକ୍ତି ପାଇଁ ବ୍ୟାକୁଳ । ତା'ଛଡ଼ା ସେ ଯେଉଁ ଲୋକଟି କଥା ମୁଁ କହୁଛି, ସେ ଜଣେ ମହିଳା, ମୋର ଜଣେ ସଂପର୍କୀୟା । ସେଇଥିପାଇଁ ବିଶ୍ୱସ୍ତତା ଟିକିଏ ବଢ଼ିଯାଇଛି । ଆପଣ ଆଉ ଡେରିକରନ୍ତୁ ନାହିଁ । ମହାପାତ୍ର ବାବୁ । ଆପଣଙ୍କ ସଫଳତା ଉପରେ ଆମ ସମସ୍ତଙ୍କର ମୁକ୍ତି ନିର୍ଭର କରୁଛି ।

ଏଥର ସତ୍ୟବ୍ରତ ଉଠି ଠିଆହେଲେ ।

ଅମରବାବୁଙ୍କ ସହିତ କରମର୍ଦ୍ଦନ କରି କହିଲେ : ଜାଣେ ନା ଆପଣମାନଙ୍କୁ ମୁକ୍ତି ଦେଇ ଆପଣମାନଙ୍କର ସ୍ୱପ୍ନ ସଫଳ କରି ପାରିବି କି ନାହିଁ, କିନ୍ତୁ ଆପଣଙ୍କର ଏହି ଆନ୍ତରିକତା ଏବଂ ମୋର ଜୀବନ ଦାନର କଥା ମୁଁ କେବେ ଭୁଲିପାରିବି ନାହିଁ ।

ସତ୍ୟବ୍ରତ ମହାପାତ୍ର ଧୀରେ ଧୀରେ ଆଗେଇ ଚାଲିଲେ ।

ଅମରବାବୁ କହିଲେ : ସୂର୍ଯ୍ୟୋଦୟ ପୂର୍ବରୁ ଆପଣ ବହୁତ ବାଟ ଆଗେଇଯାଇଥିବେ । ତା'ପରେ ଆପଣଙ୍କର ଗୋପାଳପୁରରେ ପହଞ୍ଚିବାକୁ କୌଣସି ଅସୁବିଧା ହେବ ନାହିଁ ।

ସେଦିନ ବ୍ରହ୍ମପୁର ସହରରେ ଖୁବ୍ ଗୋଟାଏ ଉତ୍ତେଜନା ଦେଖାଦେଇଥିଲା । ଆଗଦିନ ରାତିରେ ଗୋପାଳପୁରର ସି- ବିଚ୍ ହୋଟେଲରୁ କେତେକ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ପୋଲିସ୍ ବିଶେଷ କ୍ଷମତା ବଳରେ ଆରେଷ୍ଟ କରିଥିବାରୁ ଘଟଣାଟା ଆହୁରି ସାଂଘାତିକ ହୋଇ ଉଠିଥିଲା ।

ଯେଉଁମାନେ ଆରେଷ୍ଟ ହୋଇଥିଲେ ସେମାନେ ଥିଲେ ସମାଜର ଧନୀ, ମାନୀ ଓ ନେତୃସ୍ଥାନୀୟ ଲୋକମାନେ । ସେମାନଙ୍କ ଭିତରୁ ଆମର ପରିଚିତ ହେଉଛନ୍ତି ଦ୍ୱାରିକାନାଥ ଗୋଏଙ୍କା, ସୁଭଦ୍ରା ଦେବୀ, ସୁଧା ଆରୋରା, ଜଲି ଏବଂ ଆହୁରି ଅନେକେ ।

ବ୍ରହ୍ମପୁର ସଦର ପୋଲିସ୍ ଷ୍ଟେସନ୍‌ରେ ବିଭାଗୀୟ ବଡ଼କର୍ତ୍ତାମାନଙ୍କର ଏକ ବନ୍ଦ ଦୁଆର ମିଟିଂ ବସିଥିଲା । କାରଣ ସେମାନେ ସତ୍ୟବ୍ରତ ମହାପାତ୍ରଙ୍କ କଥା ଅନୁସାରେ ଯେଉଁ ବେଆଇନ କାମ କରିଛନ୍ତି, ମାନେ କାହାରି ଉପରେ କୌଣସି ଚାର୍ଯ ନ ଥାଇ ବିଶେଷ କ୍ଷମତା ବଳରେ ସେମାନେ ଯେ ଏତେ ଗୁଡ଼ିଏ ମାଣ୍ୟଗଣ୍ୟ ବ୍ୟକ୍ତିଙ୍କୁ ଆରେଷ୍ଟ କରି ରଖିଛନ୍ତି, ସେମାନଙ୍କ ବିରୋଧରେ ଉପଯୁକ୍ତ ପ୍ରମାଣ ଯୋଗାଇ ନ ପାରିଲେ ପୋଲିସ୍ ଅଫିସରମାନଙ୍କର ଯେ ନିଶ୍ଚୟ ଦୁର୍ଦ୍ଦଶାର ସୀମା ରହିବ ନାହିଁ, ସେମାନେ ଅଳ୍ପ ବହୁତେ ତାହା ଅନୁଭବ କରୁଥିଲେ ।

କିନ୍ତୁ ସତ୍ୟବ୍ରତ ମହାପାତ୍ର ସମସ୍ତଙ୍କ ମୁହଁର କଳାଛାଇ ଘୁଞ୍ଚେଇବା ପାଇଁ ଉଠି ଠିଆ ହେଲେ । ସ୍ମିତ ହସି କହିଲେ ଶୁଣନ୍ତୁ- ଆପଣମାନେ ତା'ପରର ଘଟଣାସବୁ ଶୁଣନ୍ତୁ । କାଲି ମୁଁ ଆପଣ ମାନଙ୍କୁ କହିଥିଲି କିପରି କୃଷି ଫାର୍ମରୁ ଆସି ବ୍ରହ୍ମପୁରରେ ପହଞ୍ଚିଲି, ତା'ପରର ଘଟଣା କିନ୍ତୁ ଆପଣମାନେ କେହି ଜାଣନ୍ତି ନାହିଁ ।

ଗୋଲାପ କଲୋନୀର ଅଧ୍ୟକ୍ଷ ଅମରବାବୁଙ୍କ କଥା ମୁଁ କାଲି ଆପଣମାନଙ୍କୁ କହିଥିଲି ଏବଂ ତାଙ୍କରି ସୁବନ୍ଦୋବସ୍ତ ଅନୁଯାୟୀ ମୁଁ ସି- ବିଚ୍ ହୋଟେଲ ର ଡାହାଣ ପାଖକୁ ପ୍ରାୟ ଶହେଗଜ ଦୂରରେ, ସମୁଦ୍ର ବାଲି ଉପରେ ଗୋଟାଏ ବିରାଟ 'ଠ' ଲେଖି ଛଦ୍ମବେଶରେ ବସି ରହିଥିଲି ।

ଠିକ୍ ସଂଧ୍ୟା ନଇଁଆସିବା କ୍ଷଣି ଜଣେ ଭଦ୍ରମହିଳା ମୋ ପାଖକୁ ଆସ୍ତେ ଆସ୍ତେ ଆଗେଇ ଆସିଲେ ଏବଂ ଧୀରେ ଧୀରେ କହିଲେ : ଅମରବାବୁ ମୋତେ କହିଥିଲେ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ।

ମୁଁ ସଙ୍ଗେ ସଙ୍ଗେ ଭଦ୍ରମହିଳାଙ୍କ ହାତକୁ ଗୋଟିଏ 'ଟେପ୍ ରେକଡର' ବାକ୍ସ ବଢ଼େଇ ଦେଇ କହିଲି : ଆପଣ ଏଇଟିକୁ ଏପରି ଏକ ଜାଗାରେ ସେଟ୍ କରିବେ, ଯେପରି ମିଟିଂର ସବୁ କଥା ଏଥିରେ ରେକର୍ଡ ହୋଇପାରିବ; ଅଥଚ ସେମାନେ କେହି କିଛି ବୁଝିପାରିବେ ନାହିଁ ।

ଭଦ୍ରମହିଳା ମୋ ହାତରୁ 'ଟେପ୍ ରେକର୍ଡର'ଟି ନେଇ କହିଲେ : ଆଉ କିଛି ?

ମୁଁ କହିଲି : ଆଉ ଯାହା କରିବାର ମୁଁ କହିବି । ଭଦ୍ରମହିଳା ଚାଲିଗଲେ ।

ତା'ପରେ ଘଟଣା ତ ଆପଣମାନେ ସମସ୍ତେ ଜାଣନ୍ତି । ଆମେ ଠିକ୍ ରାତି ଦୁଇଟା ବେଳେ ସି- ବିବ୍ ହୋଟେଲରେ ସେହି ନିର୍ଦ୍ଦିଷ୍ଟ କକ୍ଷଟି ରେଡ୍ କରି ମହାପୁରୁଷମାନଙ୍କୁ ଉଦ୍ଧାର କଲେ; କିନ୍ତୁ ଆପଣମାନେ କେହି ଏଇ 'ଟେପ୍ ରେକର୍ଡର' ରହସ୍ୟ ଜାଣି ନ ଥିଲେ ।

ସତ୍ୟବ୍ରତ ମହାପାତ୍ର ଟେବୁଲ୍ ଉପରେ ରଖାହୋଇଥିବା ଆଟାଚି କେସ୍ ସଦୃଶ ବିଶେଷ ଧରଣର 'ଟେପ୍ ରେକର୍ଡ଼ର'ଟି ଖୋଲି କହିଲେ : ଆପଣମାନେ ଶୁଣିବେ ? ପ୍ରଥମେ କହୁଛନ୍ତି ସୁଭଦ୍ରା ଦେବୀ, ଆମର ଏଇ ରହସ୍ୟ ନାଟିକାର ନାୟିକା, ଶୁଣନ୍ତୁ, : ବନ୍ଧୁଗଣ ! ଆପଣମାନେ ବହୁ ଦୂରଦୁରାନ୍ତରୁ ଶ୍ରମ ସ୍ୱୀକାର କରି ଆସିଛନ୍ତି । ପ୍ରଥମେ ମୋର ଅଭିନନ୍ଦନ ଗ୍ରହଣ କରନ୍ତୁ । ଆଜି ଆମର ଏହି ଅନୁଷ୍ଠାନଟିର ୫ମ ବାର୍ଷିକ ଅଧିବେଶନ । ଏହି ପାଞ୍ଚଟି ବର୍ଷ କାଳ ଆପଣମାନଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ଲୋକ-ଚକ୍ଷୁର ସାମ୍ନାରେ ଆମେ ଯେପରି ବିଜୟ ଅଭିଯାନ ରଚନା କରି ଚାଲିଛି, ବାସ୍ତବିକ ଏହା ଅଭିନବ । ଏଥିପାଇଁ ସମସ୍ତଙ୍କର ସମାନ ଦାନ ଏହି ଅନୁଷ୍ଠାନ ପଛପଟରେ ରହିଛି ।

କିନ୍ତୁ ଆଜିର ଅଧିବେଶନରେ ମୋର ଏକ ବିଶେଷ ବକ୍ତବ୍ୟ ରହିଛି । ତାହା ହେଉଛି, ଆମର ସାମାନ୍ୟ ଅସାବଧାନତା ଫଳରେ ଏହି ଅନୁଷ୍ଠାନର ଭିତିରି ରହସ୍ୟ ବାହାରେ ପ୍ରକାଶିତ ହୋଇଯିବାର ସମ୍ଭାବନା ଆସିଯାଇଥିଲା । କିନ୍ତୁ ଦ୍ୱାରିକାନାଥ ଗୋଏଙ୍କାଜୀଙ୍କ ଚତୁରତା ଫଳରେ ଆମେ ବର୍ତ୍ତମାନ ପୁଣି ନିରାପଦ ମାର୍ଗରେ ଆଗେଇ ଚାଲିଛେ ।

ଏଠାରେ ଘଟଣାଟା ଟିକିଏ ଖୋଲି କହିଲେ ଭଲ ହେବ । ଆମର ଏହି ଅନୁଷ୍ଠାନର ବିଜ୍ଞାପନ ଦେଖି ଧନଞ୍ଜୟ ବୈରାଗୀ ନାମକ ଜନୈକ ବ୍ୟକ୍ତି ଭାରତର ଜଣେ ବିଖ୍ୟାତ ଗୋଏନ୍ଦାଙ୍କର ଦ୍ୱାରସ୍ଥ ହୋଇଥିଲେ । ଯେଉଁ ମୁହୂର୍ତ୍ତରେ ସେ ସେହି ଗୋଏନ୍ଦାଙ୍କର ଦ୍ୱାରସ୍ଥ ହେଲେ, ସେଇ ମୁହୂର୍ତ୍ତରେ ଗୋଏଙ୍କାଜୀ ତାହା ଜାଣିପାରି, ସଙ୍ଗେ ସଙ୍ଗେ ସେ ମଧ୍ୟ ସେହି ଗୋଏନ୍ଦାଙ୍କର ଦ୍ୱାରସ୍ଥ ହେଲେ । ସେ ଜଣେ ପେସାଦାର ଗୋଏନ୍ଦା ହୋଇଥିବାରୁ ଗୋଏଙ୍କାଜୀଙ୍କର ଗୋଟିଏ ମିଥ୍ୟା କେସ୍ ହାତକୁ ନେଇ ତଦନ୍ତ ଭାର ଗ୍ରହଣ କଲେ ।

କିନ୍ତୁ ଧନଞ୍ଜୟ ବୈରାଗୀଙ୍କର ଉପସ୍ଥିତି ଆମ କାର୍ଯ୍ୟରେ ବିଘ୍ନ ସୃଷ୍ଟିକଲା । ତେଣୁ ଗୋଏଙ୍କାଜୀ ତାଙ୍କୁ ଆମ ବାଟରୁ ଘୁଞ୍ଚାଇବା ପାଇଁ 'ଇନ୍ଦ୍ରନୀଳ' କୌଶଳ ଅବଲମ୍ୱନ କଲେ । ତା'ପରେ ଧନଞ୍ଜୟ ବୈରାଗୀ ସେପୁରକୁ ବାଟ କାଟିଲେ ।

କିନ୍ତୁ ସେହି ଗୋଏନ୍ଦାପ୍ରବର ଆମ ବାଟରୁ ଘୁଞ୍ଚିଲେ ନାହିଁ । ଗୋଏଙ୍କାଜୀ ଦେଖିଲେ, ହୁଏତ ଏହି ଗୋଏନ୍ଦା ଜଣକ ଦିନେ ଆମ ପଥରେ କଣ୍ଟା ହୋଇ ଠିଆ ହେବ । ସେ ଭାବିଲେ, ବାଟରେ କଣ୍ଟା ରଖି କି ଲାଭ ?

ତେଣୁ ସେ ଗୋଏନ୍ଦାପ୍ରବର 'ଇନ୍ଦ୍ରନୀଳ' ପଦ୍ଧତିରେ ବର୍ତ୍ତମାନ ବନ୍ଦୀଅଛନ୍ତି ଆମ କୃଷି ଫାର୍ମ ଭିତରେ । ଆମର ଦୁଷ୍ଟବୁଦ୍ଧିର ଚାଲ୍ କଥା ସେ ଏବେ ବୁଝିପାରିଛନ୍ତି । କିନ୍ତୁ ବର୍ତ୍ତମାନ ଆଉ ତାଙ୍କର ଫେରିଯିବାର ବାଟ ନାହିଁ ।

ଆଗାମୀ କାଲି ଆପଣମାନେ ଯେତେବେଳେ କୃଷି ଫାର୍ମର ପରିଦର୍ଶନରେ ଯିବେ, ମୁଁ ସେହି ବୁଦ୍ଧିମାନ ଗୋଏନ୍ଦାଙ୍କୁ ଆପଣମାନଙ୍କୁ ଦେଖାଇବି । ତା'ପରେ ମୁଁ ତାଙ୍କୁ ମୃତ୍ୟୁ ବ୍ୟୁହରେ ବନ୍ଦୀ କରି ତାଙ୍କର ବୁଦ୍ଧିଦୀପ୍ତ ମୁଣ୍ଡ ଭିତରୁ ସମସ୍ତ ବୁଦ୍ଧି ଧୀରେ ଧୀରେ ଟାଣି ନେଇ କଙ୍କାଳରେ ରୂପାନ୍ତରିତ କରିବି । ତେଣୁ ଆଗାମୀ ଏକ ବର୍ଷ ପାଇଁ ଆମ କାର୍ଯ୍ୟକଳାପରେ

ବାଧା ଦେବା ପାଇଁ ଆଉ କେହି ନାହାନ୍ତି । ଏ ବର୍ଷ ମଧ୍ୟ ଆମର ଆଉ ଅଧିକ କାଣ୍ଡିଡେଟ୍ ଆବଶ୍ୟକ ନାହିଁ । ଆପଣମାନେ ବଛା ବଛା ପାଞ୍ଚ ସାତଟି କାଣ୍ଡିଡେଟ୍ ପଠାଇପାରିଲେ, ଆମେ ସୁରୁଖୁରୁରେ ଚଳିଯିବା ।

ଏହି ହେଲା ମୋର ବକ୍ତବ୍ୟ । ଏହା ପରେ ଡକ୍ଟର ଶ୍ରୀନିବାସନ ଆପଣମାନଙ୍କ ସମ୍ମୁଖରେ ଗତ ଏକ ବର୍ଷର ଲାଭ କ୍ଷତିର ହିସାବ ପେସ୍ କରିବେ ଏବଂ ଡିଭିଡେଣ୍ଡ ଘୋଷଣା କରିବେ । ଗୋଏଙ୍କାଜୀ ଆମର ସଂଗଠନ ସଂପର୍କରେ ତାଙ୍କର ସୁଚିନ୍ତିତ ପ୍ଲାନ୍ ଓ ପ୍ରୋଗ୍ରାମ କଥା କହିବେ । ତା'ପରେ ଅନ୍ୟାନ୍ୟ ବନ୍ଧୁଗଣ ସେମାନଙ୍କ ସୁବିଧା ଅସୁବିଧାର କଥା କହି ଆଗାମୀ ବର୍ଷର କାର୍ଯ୍ୟସୂଚୀ ନିର୍ଦ୍ଧାରଣ କରିବେ ।

ଟେପ୍ ରେକର୍ଡଟି ସତ୍ୟବ୍ରତ ମହାପାତ୍ରଙ୍କ ହାତର ସ୍ପର୍ଶ ପାଇ ହଠାତ୍ ବନ୍ଦ ହୋଇଗଲା । ସେ କହିଲେ : ଶୁଣିଲେ ତ, ଏହି ଟେପ୍ ଭିତରେ ପ୍ରତ୍ୟେକଙ୍କର କଣ୍ଠସ୍ୱର ବନ୍ଦୀ ହୋଇ ରହିଛି । ତେଣୁ ଏପରି ଅକାଟ୍ୟ ପ୍ରମାଣ ସଂଗ୍ରହ ପରେ ଆପଣମାନଙ୍କର ବିଚଳିତ ହେବାର କିଛି କାରଣ ନାହିଁ । ତା'ଛଡ଼ା ଯେଉଁ ଭଦ୍ର ମହିଳା ଜଣକଙ୍କ ସାହାଯ୍ୟରେ ଆଜି ଆମର ଏହି ସାଫଲ୍ୟ, ସେଇ ଭଦ୍ର ମହିଳାଙ୍କ ନାମ ହେଉଛି ସୁଧା ଆରୋରା । ସେ ଥିଲେ ସୁଭଦ୍ରା ଦେବୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ । ତେଣୁ ତାଙ୍କର ସମସ୍ତ ପ୍ରାଇଭେଟ୍ କଥା ତାଙ୍କୁ ନିଶ୍ଚୟ ଜଣା ଥିବ । ଆପଣମାନେ ଜାଣିଲେ ଆହୁରି ଖୁସି ହେବେ ଯେ, ସେହି ସୁଧା ଆରୋରା ହେବେ ଆମର ସରକାରୀ ସାକ୍ଷୀ ।



କେ ଉଁଠି ଗୋଟାଏ ଷ୍ଟେସନରେ ଟ୍ରେନଟା ଅଟକିଗଲା ।

ହକରମାନଙ୍କ ପାଟିଗୋଳ ଶୁଣି ଦୀପଙ୍କରର ନିଦ ଭାଙ୍ଗିଗଲା । ବୋଧହୁଏ କଟକ ଷ୍ଟେସନ୍‌ରେ ଆସି ଟ୍ରେନ୍‌ଟା ପହଞ୍ଚିଛି !



ଦୀପଙ୍କର ଆଖି ମଳି ମଳି ଝରକାଟା ଟେକି ବାହାରକୁ ଚାହିଁଲା ।

ଆଖି ଯୋଡ଼ାକ ତା'ର କପାଳକୁ ଉଠିଯାଇଥିଲା ।

ବୋଧହୁଏ ନିଜ ଆଖିକୁ ସେ ବିଶ୍ୱାସ କରି ପାରୁ ନଥିଲା ।

ଠିକ୍ ତା'ରି ସାମ୍‌ନାରେ ଷ୍ଟେସନର ନାମାଙ୍କିତ ବୋର୍ଡଟା ହିନ୍ଦୀ ଓ ଇଂରାଜୀ ଅକ୍ଷରରେ ଲେଖା ହୋଇଛି ''ରାଞ୍ଚି''।

ଦୀପଙ୍କର ଅସହାୟ ଆଖିରେ କମ୍ପାର୍ଟମେଣ୍ଟ ଭିତରକୁ ଚାହିଁଲା । କାଲି ରାତିର ଭିଡ଼ ବର୍ତ୍ତମାନ ଯଥେଷ୍ଟ କମିଯାଇଛି । ଯେଉଁମାନେ ଓହ୍ଲାଇବା କଥା ସେମାନେ ତରତର ହୋଇ ଓହ୍ଲାଇ ଯାଉଛନ୍ତି ।

କିନ୍ତୁ ଏହା କିପରି ସମ୍ଭବ ?

ତା'ର ଭୁବନେଶ୍ୱର ଯିବା କଥା, ତା'ପକେଟ୍‌ରେ ବର୍ତ୍ତମାନ ସୁଦ୍ଧା ଭୁବନେଶ୍ୱରର ଟିକଟ ରହିଚି । ଅଥଚ, ଅଥଚ...

ଗୋଟିଏ କୁଲି ଆସି ଦୀପଙ୍କରର ଧ୍ୟାନଭଂଗ କରାଇଲା ।

: ବାବୁ ଜଲ୍‌ଦି ଉତରିଏ, ଗାଡ଼ି ଅଭି ଛୋଡ଼୍‌ଦେଗା ।

ଦୀପଙ୍କର ତର ତର ହୋଇ ସିଟ୍‌ତଳୁ ଲେଦର ସୁଟ୍‌କେସଟି ଟାଣି ବାହାର କଲା । ଆଉ ସମୟ ନଷ୍ଟ ନ କରି ସଙ୍ଗେ ସଙ୍ଗେ ପ୍ଲାଟ୍‌ଫର୍ମ ଉପରକୁ ଓହ୍ଲାଇ ପଡ଼ିଲା ।

କିନ୍ତୁ...

କାଲି ରାତିରେ, ପୂଜାଛୁଟିର ଭିଡ଼ ଭିତରେ କୁଲି ତାକୁ ନିଶ୍ଚୟ ଅନ୍ୟ ଗାଡ଼ିରେ ବସାଇ ଦେଇ ଯାଇଛି ।

ତଥାପି ଦୀପଙ୍କର ନିଜକୁ ବିଶ୍ୱାସ କରି ପାରୁନଥିଲା ।

ତଳକୁ ଓହ୍ଲାଇ ମଧ୍ୟ ଷ୍ଟେସନର ନାମାଙ୍କିତ ବୋର୍ଡଟା ଆଡ଼କୁ ସେ ଅସହାୟ ଆଖିରେ ଅନାଇ ରହିଥିଲା ।

ଭଦ୍ରଲୋକ କହିଲେ : ଆପଣ ଏଠାକୁ ନୂଆ ଆସିଛନ୍ତି । ଅଚିହ୍ନା ଜାଗା, ସେଇଥି ପାଇଁ ମୁଁ ଆପଣଙ୍କୁ ପାଛୋଟି ନେବାକୁ ଆସିଛି ।

ଦୀପଙ୍କର କହିଲା : ମୁଁ ତ ଆପଣଙ୍କୁ ଚିହ୍ନିପାରୁନାହିଁ ।

: ମୁଁ କିନ୍ତୁ ଆପଣଙ୍କୁ ଚିହ୍ନିପାରିଛି । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ନେଇ ଆପଣଙ୍କୁ ଠିକ୍ ଜାଗାରେ ପହଞ୍ଚାଇ ଦେବି ।

: କିନ୍ତୁ...

: ନା, ନା ଆପଣ ଆସନ୍ତୁ । ଅନେକ ଡେରିହୋଇଗଲା । ଅବଶ୍ୟ ବାଟରେ ଗୋଟାଏ ଆକ୍‌ସିଡେଣ୍ଟ ଯୋଗୁ ରାସ୍ତା ଟିକିଏ ଜାମ୍ ହୋଇଯାଇଥିଲା । ଯାହାହେଉ ମୁଁ ଠିକ୍ ସମୟରେ ନେଇ ଆପଣଙ୍କୁ ପହଞ୍ଚାଇ ଦେବି ।

ଭଦ୍ରଲୋକ ଦୀପଙ୍କର ହାତରୁ ସୁଟ୍‌କେସ୍‌ଟି ଟାଣିନେଇ ଆଗେଇ ଯାଉଥିଲେ । ସେ ଏତେ କ୍ଷିପ୍ର ଗତିରେ ଚାଲିଥିଲେ ଯେ, ଦୀପଙ୍କର ଏକ ପ୍ରକାର ତାଙ୍କ ପଛରେ ଛୁଟି ଛୁଟି ଧାଇଁଥିଲେ ।

ଦୀପଙ୍କର କୁଆଡ଼େ ଯାଉଛି, କାହିଁକି ଯାଉଛି କିଛି ଜାଣିବାର ତା'ର ଅବକାଶ ନଥିଲା । ସେହି ଭଦ୍ରଲୋକ ଜଣକ ଯେପରି ଦୀପଙ୍କରକୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହୁଞ୍ଚାଇ ଦେବାକୁ ବ୍ୟସ୍ତ ହୋଇପଡ଼ିଥିଲେ ।

ଶେଷରେ ପ୍ଲାଟ୍‌ଫର୍ମ ବାହାରେ, କିଛିବାଟ ଆଗେଇ ଯିବା ପରେ ରାସ୍ତା ଉପରେ ଗୋଟାଏ ଫିଆଟ୍ ଗାଡ଼ି ପାଖରେ ଭଦ୍ରଲୋକ ଯାଇ ଠିଆ ହେଲେ । କ୍ଷିପ୍ରହସ୍ତରେ ଗାଡ଼ି ଦରଜା ଖୋଲି, ବାକ୍‌ସଟା ଭିତରେ ରଖିଦେଇ କହିଲେ : ଆପଣ ବସନ୍ତୁ । ଡ୍ରାଇଭର ଆପଣଙ୍କୁ ଠିକ୍ ଜାଗାକୁ ନେଇଯିବ ।

ଦୀପଙ୍କର ଗାଡ଼ିରେ ଉଠିବ କି ନାହିଁ ମନସ୍ଥିର କରିବା ପୂର୍ବରୁ ସେହି ଭଦ୍ରଲୋକ ଏକ ପ୍ରକାର ଜୋର୍ କରି ଦୀପଙ୍କରକୁ ଭିତରରୁ ଠେଲି ବସାଇ ଦେଇ ଗାଡ଼ିର ଦରଜାଟା ବନ୍ଦ କରି ଦେଲେ ।

ଡ୍ରାଇଭର୍ ସଙ୍ଗେ ସଙ୍ଗେ ଗାଡ଼ି ଛାଡ଼ିଦେଲା ।

ଭଦ୍ରାଲୋକ ସେଇଠି ରହିଗଲେ ।

ଦୀପଙ୍କର ଏକା ଗାଡ଼ିରେ ବସି ଏକ ଅନିର୍ଦ୍ଦିଷ୍ଟ ପଥରେ ଆଗେଇ ଚାଲିଥିଲା ।

ଦୀପଙ୍କର ଭାବି ପାରୁ ନଥିଲା ଏ କ୍ଷେତ୍ରରେ ତା'ର କର୍ତ୍ତବ୍ୟ କ'ଣ !

ସେ କ'ଣ ଚିତ୍କାର କରି ରାସ୍ତାର ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିବ ? ଅଥବା ଡ୍ରାଇଭରକୁ ବାଧା ଦେଇ ଗାଡ଼ି ବନ୍ଦ କରିବାକୁ କହିବ ?

ଗାଡ଼ି କିନ୍ତୁ ଆଗେଇ ଚାଲିଥିଲା ।

ଦୀପଙ୍କର ଉଦ୍‌ବିଗ୍ନ ହୋଇ ଅପଲକ ଆଖିରେ ବାହାରକୁ ଚାହିଁଥିଲା । ଏ ଯେପରି ରହସ୍ୟ ଉପନ୍ୟାସର ଏକ କାହାଣୀ ।

ସହରର ଆଉ କିଛି ପଥ ଅତିକ୍ରମ କରିବା ପରେ, ଗାଡ଼ିଟି ପ୍ରଶସ୍ତ ରାଜପଥ ଉପରେ ଏକ ବାଙ୍ଗଲୋ ପାଟର୍ଣ୍ଣର କୋଠା ସାମ୍‌ନାରେ ଠିଆହୋଇଗଲା ।

ଗୋଟିଏ ଲୋକ କୋଠା ଭିତରୁ ଛୁଟିଆସି ଗାଡ଼ିର ଦରଜା ଖୋଲିଦେଲା । ଦୀପଙ୍କର ଚାହିଁ ଦେଖିଲା, ଲୋକଟି-ବେହେରା ବା ଦରବାନ୍ ଶ୍ରେଣୀର ହେବ ।

ଦୀପଙ୍କର ଗାଡ଼ିରୁ ଓହ୍ଲାଇଲା । ମନ ଭିତରର ସମସ୍ତ ଭୟ ଓ ଆଶଂକାକୁ ଦମନ କରି ସେ ଶକ୍ତ ପାଦରେ ଠିଆ ହେଲା ।

ବେହେରାଟି ଦୀପଙ୍କରଙ୍କୁ ପଥ ଦେଖାଇବା ପାଇଁ ଆଗେ ଆଗେ ଚାଲିଥିଲା ।

ସେତେବେଳକୁ ଦୀପଙ୍କରର ସମସ୍ତ ଭାବନା ଶକ୍ତି ଗୋଳମାଳ ହୋଇଯାଇଥିଲା । ତଥାପି ସେ ମନକୁ ସବଳ ଓ ଦୃଢ଼ କରିବାକୁ ଚେଷ୍ଟା କରୁଥିଲା ଯେ ଶେଷ ପର୍ଯ୍ୟନ୍ତ ତାକୁ ଏହି ଅଜ୍ଞାତ ଘଟଣାର ସମ୍ମୁଖୀନ ହେବାକୁ ହେବ ।

ତେଣୁ ଥରିଲା ପାଦରେ ସେହି ବେହେରା ଜଣକ ସହିତ ଦୀପଙ୍କର ଆଗେଇ ଚାଲିଥିଲା ।

ବେହେରାଟି ଦୋତାଲାର ଗୋଟିଏ ଘର ଦେଖାଇ ଦେଇ କହିଲା : ଏଇ ଘରେ ଆପଣ ରହିବେ ।



କାଚ ଦରଜା ଠେଲି ବେହେରାଟି ପ୍ରବେଶ କଲା । ପଛେ ପଛେ ଦୀପଙ୍କର ।

ଘର ଭିତରେ ପଶି, ଘରର ସାଜସଜ୍ଜା ଦେଖି ଆଉ ଥରେ ଦୀପଙ୍କରର ମୁଣ୍ଡ ବୁଲେଇ ଦେଲା । ସେ ଗୋଟାଏ ସୋଫା ଉପରେ ନଥିକିନା ବସି ପଡ଼ିଲା ।

ବେହେରା ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଖୋଲିଦେଇ କହିଲା : ମୁନିବଜୀ ମୋତେ ଆପଣଙ୍କ ସେବାରେ ନିଯୁକ୍ତ କରିଛନ୍ତି । ଆପଣଙ୍କର ସବୁ ସୁବିଧା ଅସୁବିଧା ଦେଖିବାର ଦାୟିତ୍ୱ ମୋର । ଆପଣଙ୍କର କିଛି ଅସୁବିଧା ହେବ ନାହିଁ । ଆପଣ ମୁହଁ, ହାତ ଧୋଇ ଆସନ୍ତୁ । ଏଇ ସାମ୍‌ନାରେ ବାଥ୍‌ରୁମ୍ । ମୁଁ ଯାଉଛି ଆପଣଙ୍କ ପାଇଁ ଚା' ଜଳଖିଆ ଆଣେ ।

ବେହେରା ଘର ଭିତରୁ ବାହାରି ଯାଉଥିଲା ।

ଦୀପଙ୍କର ତାକୁ ହାତଠାରି ପାଖକୁ ଡାକିଲା ।

: ତୁମ ନାଁ କ'ଣ ?

: ମୋ ନାଁ, ମୋ ନାଁ ହଜୁର ରତ୍ନାକର । ମୋତେ କିନ୍ତୁ ସମସ୍ତେ ରତନ ବୋଲି ଡାକନ୍ତି ।

: ବେଶ୍ ଭଲ ନାଆଁଟି ତ, ମୁଁ ବି ତମକୁ ରତନ ବୋଲି ଡାକିବି । ଆଚ୍ଛା ରତନ, ତମ ମୁନିବ୍‌ଜୀଙ୍କ ନାଁ କ'ଣ ?

ରତନ ଦୀପଙ୍କରର ମୁହଁରୁ ଏପରି ପ୍ରଶ୍ନ ଶୁଣି କିପରି ହତଭମ୍ବ ହୋଇ ଅନାଇ ରହିଲା । ତା'ପରେ ଧୀରେ ଧୀରେ କହିଲା : ଆପଣ ରାୟବାହାଦୁର ଶଙ୍କର ପ୍ରସାଦଙ୍କ ନାଁ ଶୁଣି ନାହାନ୍ତି ? ଆପଣ ତାଙ୍କର ବିଶେଷ ସମ୍ମାନିତ ଅତିଥି, ଅଥଚ...

ଦୀପଙ୍କର ମୁଣ୍ଡ ଭିତରେ ସବୁ ଯେମିତି ଗୋଳମାଳ ହୋଇଯାଉଥିଲା । ରାୟବାହାଦୁର ଶଙ୍କର ପ୍ରସାଦଙ୍କର ସେ ନିମନ୍ତ୍ରିତ ଅତିଥି ! ସେ ଏହି ଆତିଥେୟତା ସମ୍ବନ୍ଧରେ ସାମାନ୍ୟତମ ଆଭାସ ବି ପାଇନାହାନ୍ତି । ତେବେ କ'ଣ ହାବଡ଼ା ଷ୍ଟେସନ୍‌ରୁ , ଟ୍ରେନ୍‌ରେ ଉଠିବା ପୂର୍ବରୁ ତା' ବିରୋଧରେ ଷଡ଼ଯନ୍ତ୍ର କରା ହୋଇ ତାକୁ ରାଞ୍ଚି ପଠାଇ ଦିଆହୋଇଛି ?

ଦୀପଙ୍କର ଦେଖିଲା, ରତନ ତା'ରି ଆଡ଼କୁ କିପରି ଏକ ଜିଜ୍ଞାସୁ ଆଖିରେ ଅନାଇ ରହିଛି । ସେ ତା'ର ସେହି ସନ୍ଦେହ ଭାବଟା କଟାଇବା ପାଇଁ କହିଲା : ତମେ ଶୀଘ୍ର ଚା'ର ବନ୍ଦୋବସ୍ତ କର ରତନ । ମୋର ଅନେକ କାମ ଅଛି । ମୋତେ ଶୀଘ୍ର ଶୀଘ୍ର ପ୍ରସ୍ତୁତ ହେବାକୁ ହେବ ।

ରତନ ଏଥର ଘରୁ ବାହାରି ଗଲା ।

ଦୀପଙ୍କର ଫୁଲ୍‌ସ୍ପିଡ୍‌ରେ ଘୁରୁଥିବା ଫ୍ୟାନ୍‌ଟା ଆଡ଼େ ଚାହିଁ ରହି ତା'ର ମନେ ହେଉଥିଲା, ତା' ମୁଣ୍ଡର ଭାବନାଗୁଡ଼ାକ ଯେପରି ଏହି ଫ୍ୟାନ୍‌ର ବ୍ଲେଡ୍‌ଗୁଡ଼ିକ ଠାରୁ ଆହୁରି ଜୋର୍‌ରେ ଘୂରୁଛି ।

ଦୀପଙ୍କର ଆଖିବୁଜି ଚିନ୍ତାକରୁଥିଲା ।

: ତା'ପରେ ଶର୍ମାଜୀ ! ଶେଷ ପର୍ଯ୍ୟନ୍ତ ଆପଣ ଆସିଲେ ।

ହଠାତ୍ ଘର ଭିତରେ ଏକ ଅପରିଚିତ କଣ୍ଠସ୍ୱର ଶୁଣି ଦୀପଙ୍କର ଆଖି ଖୋଲି ଚାହିଁଲା ।

ସାମ୍‌ନାରେ ବାଇଶି ତେଇଶି ବର୍ଷର ଏକ ସ୍ୱାସ୍ଥ୍ୟବାନ ଯୁବକ ଠିଆ ହୋଇ ଗୋଟାଏ ପାନିଆରେ ମୁଣ୍ଡକୁଣ୍ଡାଉଛି ।

ଦୀପଙ୍କର ସୋଫା ଉପରୁ ଉଠି ଠିଆହୋଇପଡ଼ିଲା ।

ସେ ଯୁବକଟି କହିଲା : ଆପଣ ବସନ୍ତୁ ଶର୍ମାଜୀ ! ଆପଣ ବାପାଙ୍କର ସମ୍ମାନନୀୟ ଅତିଥି । କିନ୍ତୁ ଏତିକି ଜାଣି ରଖନ୍ତୁ ଆପଣ ଏଠାକୁ ଆସି କିଛି ଭୁଲ୍ କଲେ ନାହିଁ । ଆମେ ଆପଣଙ୍କୁ ଚିଠି ଲେଖି ଜଣାଇ ଦେଇଥିଲୁ ଆପଣ ଆସିବେ ନାହିଁ । ତଥାପି ଆପଣ ଲୋଭରେ ପଡ଼ି ଆସିଲେ । ମୁଁ ଖାଲି ଜଣାଇ ଦେବା ପାଇଁ ଆସିଲି, ଆପଣଙ୍କର ଶେଷ ପରିଣତି ଭଲ ହେବ ନାହିଁ ।

ଦୀପଙ୍କର ସେହି ଯୁବକଟିକୁ କି ପ୍ରଶ୍ନ କରିବ, ଅଥବା ନିଜେ ଏଠାକୁ କାହିଁକି ଆସିଛି, ତାକୁ କିଏ ଆଣିଛି, ଏହି ସବୁ ପ୍ରଶ୍ନର କୌଣସି ଗୋଟିଏ ଉତ୍ତର ଜାଣିବା ପୂର୍ବରୁ ଯୁବକଟି ଘରୁ ବାହାରି ଚାଲିଯାଇଥିଲା ।

ଦୀପଙ୍କର ଖାଲି ମନେ ମନେ ଏତିକି ଅନୁମାନ କରି ପାରିଥିଲା ଯେ, ଏହି ଯୁବକଟି ରାୟବାହାଦୂର ଶଙ୍କର ପ୍ରସାଦଙ୍କର ପୁତ୍ର ।

କିନ୍ତୁ ସେ କ'ଣ କହିଗଲା ।

ଦୀପଙ୍କରକୁ ତା'ହେଲେ ଏଠାକୁ ଚକ୍ରାନ୍ତ କରି ଅଣାହୋଇଛି ।

କିନ୍ତୁ ଦୀପଙ୍କର କୌଣସି ଚିଠି ତ ପାଇନାହିଁ ଏମାନଙ୍କଠାରୁ ।

ଆଶ୍ଚର୍ଯ୍ୟ । ସବୁ ଯେପରି କିପରି ଏକ ପ୍ରହେଳିକା....

ପୁଣି ଦରଜା ଖୋଲି ଘର ଭିତରେ ପଶିଲା ରତନ । ହାତରେ ଗୋଟାଏ ଟ୍ରେ'ରେ ନାନା ଜାତିର ଲୋଭନୀୟ ଖାଦ୍ୟ ।

ସେଗୁଡ଼ିକ ଓହ୍ଲାଇ ରଖି ରତନ କହିଲା : ଆପଣ ଏପର୍ଯ୍ୟନ୍ତ ନିତ୍ୟକର୍ମ ଶେଷ କରି ନାହାନ୍ତି ?

ଦୀପଙ୍କର ଆଉ ପଦେ କଥା ନ କହି ଧୀରେ ଧୀରେ ଉଠିଗଲା ବାଥରୁମ୍ ଆଡ଼େ ।

ଫେରିଆସିଲା ଖୁବ୍ ଅଳ୍ପ ସମୟ ପରେ ।

ରତନ ସଙ୍ଗେ ସଙ୍ଗେ ପ୍ଲେଟ୍‌ରେ ଖାଇବାଗୁଡ଼ିକ ସଜାଇ ଥୋଇଲା ଦୀପଙ୍କର ସାମ୍‌ନାରେ ।

ଦୀପଙ୍କର ନୀରବ୍‌ରେ ଖାଇଚାଲିଥିଲା ।

ରତନ ନୀରବ ଦର୍ଶକ ହୋଇ ଠିଆହୋଇଥିଲ ।

ଏକ ସମୟରେ ରତନ ଡାକିଲା : ବାବୁ !

ଦୀପଙ୍କର ଶ୍ରବଣେନ୍ଦ୍ରିୟଟା ଉତ୍କର୍ଣ୍ଣ ହୋଇ ଉଠିଲା ।

ରତନ କହିଲା : ମୁନିବ୍‌ଜୀ କହୁଥିଲେ ସେ ଆପଣଙ୍କୁ ଖୁବ୍ ଭଲପାଆନ୍ତି । ସେଇଥି ପାଇଁ...

ପୁଣି ଦରଜା ଖୋଲିବାର ଶବ୍ଦ ଶୁଣି ଦୀପଙ୍କର ବୁଲି ଅନେଇଲା । ଏ ଯେ ସେଇ ଭଦ୍ରଲୋକ । ଯିଏ ତାକୁ ଷ୍ଟେସନ୍‌ରୁ ପାଛୋଟି ଆଣିବା ପାଇଁ ଯାଇଥିଲେ ।

ଭଦ୍ରଲୋକ ହସି ହସି ଦୀପଙ୍କର ପାଖରେ ବସିଲେ । କହିଲେ : ଆପଣଙ୍କର ଆଉ କିଛି ଅସୁବିଧା ହୋଇ ନାହିଁ ତ ?

: ନା । ଦୀପଙ୍କରର ସ୍ୱର ଗମ୍ଭୀର ଶୁଣାଯାଉଥିଲା ।

ଭଦ୍ରଲୋକ କହିଲେ : ରାୟବାହାଦୁର ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି । ସେ ଆଜି ବାହାରକୁ ଚାଲିଯିବେ । ଆପଣଙ୍କ ସହିତ ଦୁଇ ଚାରିପଦ କଥା ହେବା ପାଇଁ ସେ ଅପେକ୍ଷା କରି ବସିଛନ୍ତି ।

ଦୀପଙ୍କର ଏହା ଭିତରେ ନିଜକୁ ଟିକିଏ ଶକ୍ତ କରି ନେଇଥିଲା । ସେ ସ୍ଥିର କରିଥିଲା ଯେ, ତା' ତରଫରୁ କୌଣସି ଦୁର୍ବଳତା ସେ ପ୍ରକାଶ କରିବ ନାହିଁ । ଘଟଣା ଯାହା ଘଟୁଛି ଘଟୁ । ସେ ସାବଧାନରେ ସବୁ ଅନୁଧ୍ୟାନ କରିଯିବ ।

ଭଦ୍ରଲୋକ ପୁଣି କହିଲେ : ରାୟବାହାଦୂର କିନ୍ତୁ ଆପଣଙ୍କଠାରୁ ଅନେକ କିଛି ଆଶା କରନ୍ତି ।

: ହୁଁ । ଦୀପଙ୍କର ଉଠି ଠିଆ ହେଲା ।

ହାତ ଧୋଇବା ପାଇଁ ବାଥ୍‌ରୁମ୍‌କୁ ଗଲା । ଟାଓ୍ୱେଲରେ ମୁହଁ ପୋଛି ପୋଛି ଫେରି ଆସୁ ଆସୁ କହିଲା : ଆପଣଙ୍କ ପରିଚୟଟା ଠିକ୍ ମୁଁ ଜାଣିପାରିଲି ନାହିଁ । କିନ୍ତୁ...

ଭଦ୍ରଲୋକ ଅଳ୍ପ ହସିଲେ । କହିଲେ : ଧୀରେ ଧୀରେ ସବୁ ଜାଣିହୋଇଯିବ । ମୁଁ ହେଉଛି ରାୟବାହାଦୂରଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ । ଏତିକି ପରିଚୟ ମୋ ପାଇଁ ଯଥେଷ୍ଟ ।

: ଆପଣଙ୍କ ନାଁଟା ?

: ଚତୁର୍ଭୁଜ ପାଣ୍ଡେ । ମୋତେ କିନ୍ତୁ ଏଠାରେ ସମସ୍ତେ ପଣ୍ଡିତଜୀ ବୋଲି ଡାକନ୍ତି ।

: ଆଚ୍ଛା ପଣ୍ଡିତଜୀ । ରାୟବାହାଦୁରଙ୍କ ପାଖକୁ ଯିବା ପୂର୍ବରୁ ମୋର ଆପଣଙ୍କୁ କେତୋଟି କଥା ପଚାରିବାର ଅଛି ।

ପଣ୍ଡିତଜୀ ଯେପରି ଆଉ କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ସେ ଉଠି ଠିଆହୋଇ ପଡ଼ି କହିଲେ : ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ରାୟବାହାଦୁର ଖୁବ୍ ଭଲ ଲୋକ । ସେ ଆପଣଙ୍କୁ ଖୁବ୍ ଆଦର ଯତ୍ନ କରିବେ । ଆପଣ ଶୀଘ୍ର ମୋ ସହିତ ଚାଲି ଆସନ୍ତୁ । ସେ ତେଣେ ଆପଣଙ୍କ ପାଇଁ ଅପେକ୍ଷା କରି ବସିଛନ୍ତି ।

ଦୀପଙ୍କର ଲକ୍ଷ୍ୟ କଲା, ସେ କାହାରି ସହିତ କଥା କହିବାର, ଅଥବା ରାୟବାହାଦୁରଙ୍କ ସମ୍ବନ୍ଧରେ କିଛି ଜାଣିବାର ସୁଯୋଗ କେହି ଯେପରି ତାକୁ ଦେବା ପାଇଁ ପ୍ରସ୍ତୁତ ନୁହନ୍ତି ।

ଦୀପଙ୍କର ମନେ ମନେ ଆହୁରି ସହଜ ଓ ଶକ୍ତହେବା ପାଇଁ ଚେଷ୍ଟା କଲା । ସେ ନିଜକୁ ଏପରି ଭାବରେ ଠିଆକରାଇବାକୁ ଚାହୁଁଥିଲା, ପ୍ରକୃତରେ ସେ ଯେପରି ରାୟବାହାଦୁରଙ୍କର ଅତ୍ୟନ୍ତ ସମ୍ମାନନୀୟ ଅତିଥି । ତାକୁ ଏଠାକୁ ନିମନ୍ତ୍ରଣ କରି ଅଣାହୋଇଛି ।

ପଣ୍ଡିତଜୀଙ୍କ ପଛେ ପଛେ ଶକ୍ତ ପାଦରେ ଦୀପଙ୍କର ଆଗେଇଥିଲା ।

ସେହି କୋଠାର ଅପର ଭାଗରେ ଗୋଟିଏ ସୁନ୍ଦର ସଜ୍ଜିତ ଘର ଭିତରକୁ ପଣ୍ଡିତଜୀ ଦୀପଙ୍କରକୁ ଡାକି ନେଇଗଲା ।

ଏକ ବିରାଟ ସେକ୍ରେଟେରୀଏଟ୍ ଟେବୁଲ୍‌କୁ ଭରାଦେଇ ବସିଛନ୍ତି ଜଣେ ବୃଦ୍ଧ । ମୁହଁର ଦାଢ଼ୀ ସବୁ ପାଚି ସାଦା ହୋଇ ଯାଇଛି । ମୁଣ୍ଡର ବାଳ ମଧ ଧଳା ହୋଇଯାଇଛି । ଆଖିରେ ଗୋଟାଏ ମୋଟା ଫ୍ରେମର ଚଷମା । ରାୟବାହାଦୁର ସେହି ଚଷମା ଫାଙ୍କରେ ଚାହିଁଲେ ଦୀପଙ୍କର ମୁହଁକୁ ।

କେତୋଟି ମୁହୂର୍ତ୍ତ ନୀରବରେ କଟିଗଲା । ତା'ପରେ ରାୟବାହାଦୁର ହାତ ହଲାଇ, ଶାନ୍ତ ସ୍ୱରରେ କହିଲେ : ବସ ବାବା, ବସ । ମୁଁ ତମରି ପାଇଁ ପ୍ରତୀକ୍ଷା କରି ବସି ରହିଛି । ଆଜି ଶୁଣିଲି ଗାଡ଼ିଟା ଟିକିଏ ଲେଟ୍ ଥିଲା । ତମର ବାଟରେ କିଛି ଅସୁବିଧା ହୋଇ ନାହିଁ ତ !

ଦୀପଙ୍କର ଗାଡ଼ି ନାଁ ଶୁଣି ଯେପରି ସଚେତନ ହୋଇ ଉଠିଲା । ସେ ଭୁଲି ଯାଇଥିଲା, ରାୟବାହାଦୁର ଜଣେ ବୟସ୍କ ସମ୍ମାନନୀୟ ବ୍ୟକ୍ତି ।

ଦୀପଙ୍କର ସଚେତନ ହୋଇ ଧାଇଁଗଲା ପଦଧୂଳି ଗ୍ରହଣ କରିବା ପାଇଁ ।

ରାୟବାହାଦୁର ବାଧାଦେଲେ ।

କହିଲେ : ଥାଉ ବାବା, ମୁଁ ଆଶୀର୍ବାଦ କରୁଛି ! ତୁମେ ସୁଖୀ ହୁଅ । ବସ, ବସ । ତମ ସହିତ ଅନେକ କଥା ଅଛି ବାବା । ପ୍ରାଣ ଖୋଲି କଥା ହେବା ପାଇଁ ତମକୁ ଏଠାକୁ ଡକାଇ ଆଣିଛି ।

ଦୀପଙ୍କର ସାମ୍ନାରେ ଗୋଟିଏ ଗଦି ଚେଆର ଉପରେ ବସିଲା । ପଣ୍ଡିତଜୀ ଟେବୁଲକୁ ଭରା ଦେଇ ଠିଆହୋଇଥିଲେ ।

ରାୟବାହାଦୁର କହିଲେ : କୁହ ବାବା, ତମ ଘରେ ସମସ୍ତେ ଭଲ ତ ? ତମ ପରିବାର ସହିତ ମୋର ସଂପର୍କ ପ୍ରାୟ କୋଡ଼ିଏ ବାଇଶି ବର୍ଷ ହେବ ତୁଟି ଯାଇଛି । ତମର ବୟସ କେତେ ହେବ ? ତେଇଶି ଚବିଶ ନା ?

ଦୀପଙ୍କର କହିଲା : ପଚିଶ ବର୍ଷ ।

: ହଁ ସେଇଆ ହେବ । ତମର ଚାରି ପାଞ୍ଚ ବର୍ଷ ବୟସ ଯାଏ ମୁଁ ତୁମକୁ ଦେଖିଛି । ତମ ବାପା ଥିଲେ ମୋର ପରମ ବନ୍ଧୁ । ତାଙ୍କ ସହିତ ତୁମେ ପ୍ରାୟ ଆମ ଘରକୁ ଆସୁଥିଲ । ତା'ପରେ ମୁଁ ଚାଲି ଆସିଲି କଲିକତା ଛାଡ଼ି । ତମ ବାପା କିନ୍ତୁ ଅନେକ ଥର ରାଞ୍ଚି ଆସିଥିଲେ । ତାଙ୍କ ମୃତ୍ୟୁର ପନ୍ଦର ଦିନ ପୂର୍ବରୁ ସେ ଥରେ ଆସିଥିଲେ । ସେତିକିବେଳେ ତାଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା । ମୋର ସେ ପରମ ଆତ୍ମୀୟ ଥିଲେ । ନା, ନା ବାବା, ମୁଁ ତାଙ୍କ କଥା ଭାଙ୍ଗି ପାରିବି ନାହିଁ । ମୁଁ ସବୁ କରିପାରେ କିନ୍ତୁ କାହାରିକୁ କଥା ଦେଇ ଖିଲାପ୍ କରି ପାରେ ନାହିଁ କ'ଣ କହୁଛନ୍ତି ପଣ୍ଡିତଜୀ ?

ରାୟବାହାଦୁର ପଣ୍ଡିତଜୀଙ୍କ ମୁହଁକୁ ଅନାଇଲେ । ପଣ୍ଡିତଜୀ କ'ଣ କହିବାକୁ ଯାଉଥିଲେ.......।

କିନ୍ତୁ ଟେଲିଫୋନ୍‌ଟା ହଠାତ୍ ବାଜିଉଠିବାରୁ, ରାୟବାହାଦୁର ରିସିଭରଟା ଉଠାଇ କାନରେ ଦେଲେ ।

: ହ୍ୟାଲୋ, ରାୟବାହାଦୁର ସ୍ପିକିଂ । ଇଏସ୍, ରାଇଟ୍ ।

ତା'ପରେ ରିସିଭରଟା ଯଥା ସ୍ଥାନରେ ରଖିଦେଇ ଦୀପଙ୍କର ମୁହଁକୁ ଚାହିଁ କହିଲେ : କୋଡ଼ିଏ ବର୍ଷ ପରେ ବି ଆଜି ତମକୁ ଦେଖି ମୁଁ ଚିହ୍ନିପାରିଛି ବାବା । ମୋର ମନେହେଉଛି ତୁମେ ଆଜି ବି ସେହି ପାଞ୍ଚ ବର୍ଷର ଶିଶୁ । ଯାଅ, ବିଶ୍ରାମ କର । ଗୋଟାଏ ଜରୁରୀ କାମରେ ମୁଁ ଟିକିଏ ବାହାରକୁ ବାହାରୁଛି, ଫେରି ଆସିଲେ ରାତିରେ କଥାବାର୍ତ୍ତା ହେବା । ସେ ଅନେକ କଥା, ଧୀରେ ଧୀରେ ଗୋଟି ଗୋଟି କରି ମନେ ପକାଇ ମୁଁ ତମକୁ ସବୁ କହିବି । ତମେ ବୁଝି ପାରିବ ତମ ବାପାଙ୍କ ସହିତ ମୋର ସଂପର୍କ କେତେ ନିବିଡ଼ ଥିଲା, କେତେ ଘନିଷ୍ଠ ଥିଲା ।

: କିନ୍ତୁ ସାର୍...

ଦୀପଙ୍କର କ'ଣ କହିବାକୁ ଯାଇ ବାଧା ପାଇଲା ।

ପଣ୍ଡିତଜୀ କହିଲେ : ଆପଣ ବର୍ତ୍ତମାନ ଆସନ୍ତୁ ଶର୍ମାଜୀ । ରାୟବାହାଦୁର ବାହାରକୁ ବାହାରୁଛନ୍ତି । ସେ ଫେରି ଆସନ୍ତୁ, ଆପଣଙ୍କର ଯାହା କହିବାର କଥା କହିବେ ।

ରାୟବାହାଦୁର ଉଠି ଠିଆହୋଇଥିଲେ ।

ଦୀପଙ୍କର ତାଙ୍କର ପ୍ରଶାନ୍ତ ମୁଖମଣ୍ଡଳ ଆଡ଼େ ଚାହିଁ ମନେ ମନେ ଭାବୁଥିଲେ- ରାୟବାହାଦୁରଙ୍କ ସହିତ ତା' ପରିବାରର ସମ୍ପର୍କ ସତେ କ'ଣ ଅନେକ ଦିନର ! କିନ୍ତୁ ବାପାଙ୍କ ମୁହଁରୁ କେବେ ଥରେ ବି ତ ସେ ରାୟବାହାଦୁରଙ୍କ ନାଁ ଶୁଣି ନଥିଲେ । ଅବଶ୍ୟ ଦୀପଙ୍କର ବାପା ପ୍ରାୟ ସାତ ଆଠ ବର୍ଷ ହେବ ମଲେଣି; ତଥାପି ଦୀପଙ୍କର ସେତେବେଳକୁ ଯଥେଷ୍ଟ ବଡ଼ ହୋଇଥିଲା ।

ପଣ୍ଡିତଜୀଙ୍କ କଣ୍ଠସ୍ୱର ଶୁଣାଗଲା : ଚାଲନ୍ତୁ ଶର୍ମାଜୀ । ରାୟବାହାଦୁରଙ୍କର ଡେରି ହେଉଛି ।

ଦୀପଙ୍କର ରାୟବାହାଦୁରଙ୍କର ମୁହଁଆଡ଼େ ଅସହାୟ ଆଖିରେ ଚାହିଁ ଧୀରେ ଧୀରେ ଘରୁ ବାହାରିଗଲା ।

ସେ ଖୁବ୍ ଚିନ୍ତିତ ଆଉ ଅନ୍ୟମନସ୍କ ହୋଇପଡ଼ିଥିଲା ।

ପଣ୍ଡିତଜୀ କହିଲେ : ଆପଣ ଏଠାରେ କେତେଦିନ ରହିବାକୁ ପ୍ରସ୍ତୁତ ହୋଇ ଆସିଛନ୍ତି ?

: ମାନେ ?

: ମାନେ ଆପଣ ତ ଛୁଟିଫୁଟି କିଛି ଆଣିଥିବେ, ନା ଏଇ ପୂଜାଛୁଟି କେଇଦିନ କଟେଇ ଯିବେ ଭାବୁଛନ୍ତି ।

ଦୀପଙ୍କର ନୀରବରେ ଆଗେଇ ଯାଉଥିଲା ।

ପଣ୍ଡିତଜୀ ମଧ ଆଉ କିଛି ପଚାରିଲେ ନାହିଁ ।

ଦୀପଙ୍କର ପୁଣି ତା' ପୂର୍ବ ରୁମ୍‌କୁ ଫେରିଗଲା ।

ପଣ୍ଡିତଜୀ ଦୁଆର ମୁହଁରେ ଦୀପଙ୍କରକୁ ଛାଡ଼ିଦେଇ କହିଲେ, : ଆପଣ ଟିକିଏ ବିଶ୍ରାମ କରନ୍ତୁ । ମୁଁ କିଛି ସମୟ ଛାଡ଼ି ଆସିବି । ଆପଣଙ୍କୁ ଏଠାକାର ଦର୍ଶନୀୟ ସ୍ଥାନଗୁଡ଼ିକ ବୁଲାଇ ଦେଖାଇବି ।

ପଣ୍ଡିତଜୀ ଚାଲିଯିବା ପରେ ଦୀପଙ୍କର ଘର ଭିତରେ ପଶି କବାଟ କିଳିଦେଲା; କିନ୍ତୁ ଭିତରେ ଯାଇ ଦେଖିଲା, ରତନ ଅପେକ୍ଷା କରି ବସିଛି ।

: ବାବୁଜୀ, ରତନର ସ୍ୱରରେ ବିନୟ ପୂରି ରହିଥିଲା ।

: ଆଚ୍ଛା ରତନ, ଗୋଟିଏ କଥା ପଚାରିବି କହି ପାରିବୁ ?

: କ'ଣ ପଚାରନ୍ତୁ ବାବୁଜୀ ।

: ଆଚ୍ଛା, ଏଇ ରାଜ୍ୟରେ କେଉଁଠି ପାଗଳ ଗାରଦ ଅଛିନା ?

: ଅଛି ବାବୁଜୀ, କାଙ୍କେରେ ।

: କାଙ୍କେ ଏଠାକୁ କେତେ ବାଟ ?

: ଖୁବ୍ ବେଶିବାଟ ନୁହେଁ ବାବୁଜୀ, କାହିଁକି ? ଆପଣ ଯିବେ ଯଦି କୁହନ୍ତୁ, ମୁନିବ୍‌ଜୀଙ୍କୁ କହିବି ସେ ଆପଣଙ୍କୁ ସଙ୍ଗରେ ନେଇ ଯିବେ ।

: ତମ ମୁନିବ୍‌ଜୀ କ'ଣ ପାଗଳ ଗାରଦକୁ ଯାଆନ୍ତି ?

: ଯାଆନ୍ତି ବାବୁଜୀ, ପ୍ରାୟ ଯାଆନ୍ତି ।

: ଆଉ ପଣ୍ଡିତଜୀ ?

: ସେ ବେଳେ ବେଳେ ଯାଆନ୍ତି ।

: ଆଉ ତମେ ?

ରତନ ଏଥର ବଲ ବଲ କରି ଦୀପଙ୍କର ମୁହଁକୁ ଅନାଇଲା । ସେ ବୋଧହୁଏ ଦୀପଙ୍କର ଇଙ୍ଗିତଟା ବୁଝିପାରୁ ନଥିଲା ।

ଦୀପଙ୍କର ପୁଣି କହିଲା : ତମ ମୁନିବ୍‌ଜୀ, ପଣ୍ଡିତଜୀ ଯେଉଁଠି ରୁହନ୍ତି । ଆଉ ମୋତେ ଆଣି ଯେଉଁ ଘରେ ରଖାହୋଇଛି, ସେଇ ଘରଟା ପାଗଳ ଗାରଦ ନୁହେଁ ତ ?

ରତନ ଗମ୍ଭୀର ହୋଇ କହିଲା : ଏ କ'ଣ ଆପଣ କହୁଛନ୍ତି ବାବୁଜୀ । ମୁନିବ୍‌ଜୀ ଶୁଣିଲେ ଅସନ୍ତୁଷ୍ଟ ହେବେ ।

ଦୀପଙ୍କର ଆଉ କିଛି କହିଲା ନାହିଁ । ନୀରବରେ ଆଖି ବୁଜି କ'ଣ ଯେପରି ଚିନ୍ତା କରିବାରେ ଲାଗିଲା ।

ଦୀପଙ୍କର ନାନା ପ୍ରକାର ଭାବନା ଦୁର୍ଭାବନା ଭିତରେ ସେଦିନର ନିତ୍ୟକର୍ମ ଶେଷ କଲା । ଯେତେବେଳେ ସେ ମଧ୍ୟାହ୍ନଭୋଜନ ଶେଷ କଲା, ସେତେବେଳକୁ ଦିନ ବାରଟା ବାଜିଯାଇଥିଲା ।

ରତନ ଦୀପଙ୍କର ଗୋଡ଼େ ଗୋଡ଼େ ରହି ତାର ସବୁ ଖବର ଅନ୍ତର ବୁଝୁଥିଲା । ଦୀପଙ୍କରର ଖିଆ ଶେଷ ହେବା ପରେ ତାକୁ ଭାରି କ୍ଳାନ୍ତି ଲାଗିଲା । ଟ୍ରେନ୍‌ରେ ଗତ ରାତିରେ ପ୍ରାୟ ତାକୁ ଉଜାଗର ହୋଇ ଭିଡ଼ ଭିତରେ ଅତି କଷ୍ଟରେ ଆସିବାକୁ ପଡ଼ିଥିଲା । ତେଣୁ ସେ ଖାଇସାରିବା ପରେ ଟିକିଏ ବିଶ୍ରାମ କିରିବା ପାଇଁ ବିଛଣା ଉପରେ ଗଡ଼ିପଡ଼ିବା ମାତ୍ରକେ ନିଘୋଡ଼ ନିଦରେ ଶୋଇ ପଡ଼ିଲା ।

ଦୀପଙ୍କର ଅନେକ ବେଳଯାଏ ଶୋଇପଡ଼ିଲା ।

ଯେତେବେଳେ ତାର ନିଦ ଭାଙ୍ଗିଲା ଦେଖିଲା ତା' ବିଛଣା ପାଖରେ ଗୋଟିଏ ଚେଆର ଉପରେ ଜଣେ ତରୁଣୀ ବସି କ'ଣ ଯେପରି ପଢୁଛି ।

ଦୀପଙ୍କର ଆଖିମଳି ପୁଣି ଚାହିଁଲା ।

ଜଣେ ସୁନ୍ଦରୀ, ସୁବେଶା ତରୁଣୀ ।

ଦୀପଙ୍କର ଆଉ କିଛି ସମୟ ଆଖିବୁଜି ପଡ଼ିରହିଲା । ମନେ ମନେ ଚିନ୍ତା କରୁଥିଲା, କିଏ ଏହି ତରୁଣୀ ! ଦୀପଙ୍କର ସହିତ ତା'ର ପ୍ରୟୋଜନ କ'ଣ ?

ଦୀପଙ୍କର ଆଉ ସ୍ଥିର ହୋଇ ଶୋଇପାରିଲା ନାହିଁ ।

ଶେଷରେ ସେ ବିଛଣା ଉପରେ ଉଠିବସିଲା ।

ତରୁଣୀଟି ହାତର ପତ୍ରିକାଟି ତଳେ ରଖି ଉଠି ଠିଆହେଲା ।

ଦୀପଙ୍କର ଆଡ଼କୁ ଆଗେଇ ଯାଉ ଯାଉ କହିଲା : ମୋ ନାଁ ଚନ୍ଦନା । ମୁଁ ରାୟବାହାଦୁରଙ୍କର ଝିଅ । ଆପଣ ଆସିଛନ୍ତି ଶୁଣି ଦେଖିବାକୁ ଆସିଲି ।

ଦୀପଙ୍କର କି ଉତ୍ତର ଦେବ ଖୋଜି ନପାଇ ହାତଯୋଡ଼ି ନମସ୍କାର କଲା ।

ଚନ୍ଦନା ପ୍ରତି ନମସ୍କାର କରି କହିଲା : ଆପଣ ନିରାପଦରେ ଆସି ପହଞ୍ଚିଛନ୍ତି ତ ! ବାଟରେ କିଛି ଅସୁବିଧା ହୋଇ ନାହିଁ ?

ଦୀପଙ୍କର ଟିକିଏ ହସିବାକୁ ଚେଷ୍ଟାକରି ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ଚନ୍ଦନା କହିଲା : ମୋ ସମ୍ବନ୍ଧରେ ଆପଣଙ୍କର କିଛି ଧାରଣା ଅଛି ? ମୋ କଥା ଆଗରୁ ଆପଣ କାହାଠାରୁ ଶୁଣିଛନ୍ତି ?

ଦୀପଙ୍କର କହିଲା : ନା ଚନ୍ଦନା ଦେବୀ ମୁଁ ତ ଆପଣଙ୍କୁ ଏଇ ପ୍ରଥମ ଦେଖୁଛି ।

ଚନ୍ଦନା ହସିଲା । କହିଲା : କିପରି ଲାଗୁଛି ?

: ମାନେ ?

: ଏଇ ମୋତେ ଦେଖି । ମୋର ଆଚରଣ, କଥାବାର୍ତ୍ତା, ରୂପ ଭେକ- ସବୁ ଦେଖି ମୋତେ ଆପଣଙ୍କର କ'ଣ ମନେ ହେଉଛି ?

ଦୀପଙ୍କର ଯେପରି ପୁଣି ଏକ ସମସ୍ୟାରେ ପଡ଼ିଯାଇଥିଲା ।

ଏତ ଆଉ ଏକ ଯନ୍ତ୍ରଣା । ସେ ମନେ ମନେ ଭାବୁଥିଲା, ଏମାନଙ୍କର ସମସ୍ତଙ୍କର କ'ଣ କିଛି ମୁଣ୍ଡ ଦୋଷ ଅଛି ?

ଦୀପଙ୍କରର ନୀରବତା ଦେଖି ଚନ୍ଦନା ପୁଣି ପଚାରିଲା : ଆପଣ ମୋ ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ ଯେ !

ଦୀପଙ୍କର ଶାନ୍ତ ସ୍ୱରରେ କହିଲା : ଆପଣ ମୋତେ ଏପରି ପ୍ରଶ୍ନ କାହିଁକି ପଚାରୁଛନ୍ତି ଚନ୍ଦନା ଦେବୀ ?

: ମୋର ପ୍ରୟୋଜନ ଅଛି । ମୁଁ କେବଳ ଏହିପରି କେତୋଟି ପ୍ରଶ୍ନ ପଚାରିବା ପାଇଁ ଆପଣଙ୍କ ପାଖକୁ ଆସିଛି । ଆପଣ ଆଧୁନିକ ଯୁଗର ଜଣେ ଶିକ୍ଷିତ ଯୁବକ । ଆପଣ କ'ଣ ଚିନ୍ତା କରି ପାରୁ ନାହାନ୍ତି ଜଣେ ଝିଅର ଏକ ସ୍ୱତନ୍ତ୍ର ସତ୍ତା ଅଛି ବୋଲି ?

ଦୀପଙ୍କର ଆହୁରି ଦ୍ୱନ୍ଦ୍ୱରେ ପଡ଼ିଗଲା । ଚନ୍ଦନା କ'ଣ କହିବାକୁ ଚାହେଁ? କାହିଁକି ବା ସେ ଆସି ଦୀପଙ୍କରକୁ ଏପରି ଅସଂଲଗ୍ନ ପ୍ରଶ୍ନ ସବୁ ପଚାରୁଛି ?

ଦୀପଙ୍କର ଶାନ୍ତ ସ୍ୱରରେ କହିଲା : ଆପଣ ବସନ୍ତୁ ଚନ୍ଦନା ଦେବୀ । ମନେହେଉଛି ଆପଣ ଖୁବ୍ ଉତ୍ତେଜିତ । କିନ୍ତୁ କାରଣଟା କ'ଣ କହିଲେ ଚନ୍ଦନା ଦେବୀ ।

ଚନ୍ଦନା ହସିଲା । କହିଲା : ସବୁ ଜାଣି ଆପଣ ଯଦି କିଛି ନ ଜାଣିବାର ଛଳନା କରନ୍ତି, ତା'ହେଲେ ଆପଣଙ୍କୁ ଜାଣିଚତୁର ଛଡ଼ା କ'ଣ କହିବି ?

ଦୀପଙ୍କର ସତରେ ବଡ଼ ସମସ୍ୟାରେ ପଡ଼ିଯାଇଥିଲା । ତା'ର ମନେ ହେଉଥିଲା ତାକୁ ଯେପରି ଆଣି ପାଗଳ ଗାରଦ ମଧ୍ୟରେ ଭରିଦିଆ ଯାଇଛି ଏବଂ ଜଣେ ଜଣେ ପାଗଳ ଆସି ତାକୁ ଦଳକୁ ଟାଣିବାକୁ ଚେଷ୍ଟା କରୁଛନ୍ତି ।

ଦୀପଙ୍କର ଟିକିଏ ପ୍ରକୃତିସ୍ଥ ହୋଇ ପଚାରିଲା : ଆଚ୍ଛା ଚନ୍ଦନା ଦେବୀ, ମୋତେ ଦେଖି ଆପଣଙ୍କର କ'ଣ ମନେହେଉଛି ?

: ଗୋଟିଏ ସ୍ୱାର୍ଥପର, ଅର୍ଦ୍ଧପାଗଳ ମଣିଷ । ଚନ୍ଦନା କହିଲା ।

: କାହିଁକି ? ଏପରି ମନେ ହେବାର କାରଣ ? ଦୀପଙ୍କର ପଚାରିଲା ।

ଚନ୍ଦନା କହିଲା : ତା'ର ଉତ୍ତର ମୋତେ ଆହୁରି ଦେବାକୁ ହେବ ? ଆପଣ ନିଜ ମନକୁ ପଚାରନ୍ତୁ, ଉତ୍ତର ପାଇଯିବେ । ତେବେ ମୋ ମତରେ ଆପଣ ଏଠାକୁ ନ ଆସିଥିଲେ ଭଲ ହୋଇ ଥାଆନ୍ତା ।

: କିନ୍ତୁ ଚନ୍ଦନା ଦେବୀ, ଆପଣ ଭଲ୍ ବୁଝନ୍ତୁ ନାହିଁ । ମୁଁ ଇଚ୍ଛାକରି ଏଠାକୁ ଆସି ନାହିଁ ।

: ଆଉ ଛଳନା କରନ୍ତୁ ନାହିଁ । ଛଳନା କରି ମୋତେ ଭୁଲାଇ ପାରିବେ ନାହିଁ । ତେବେ ସେ ଯାହାହେଉ, ଆପଣ ଆସିଛନ୍ତି ଭଲ କରିଛନ୍ତି, ଏଥର ଆପଣଙ୍କ ମତ ବଦଳାନ୍ତୁ । ତା'ହେଲେ ଆପଣ ମୋର ବନ୍ଧୁ ହୋଇ ଚିରଦିନ ରହିଯିବେ ।

: ମତ ବଦଳାଇବି, ମାନେ ? ଆପଣ କ'ଣ କହିବାକୁ ଚାହାନ୍ତି ?

: ମୁଁ କହିବାକୁ ଚାହେଁ ଯେ, ଆପଣ ବାପାଙ୍କୁ କହିବେ, ଆପଣଙ୍କ ପ୍ରସ୍ତାବରେ ମୁଁ ରାଜି ନୁହେଁ ।

: ବାପାଙ୍କ ପ୍ରସ୍ତାବ, କେଉଁ ପ୍ରସ୍ତାବ ?

ଦୀପଙ୍କର କଥା ଶୁଣି ଚନ୍ଦନା ହୋ ହୋ ହୋଇ ହସିଉଠିଲା । କହିଲା : ଆପଣ ଆଉ ଏତେ ପିଲାଙ୍କ ପରି ଛଳନା କରନ୍ତୁ ନାହିଁ । ତେବେ ମୁଁ କହି ରଖୁଛି, ଆପଣ ଯଦି ମୋ ପ୍ରସ୍ତାବରେ ରାଜି ନ ହୁଅନ୍ତି, ତା'ହେଲେ...

ହଠାତ୍ ଦରଜା ଖୋଲିବାର ଶବ୍ଦ ଶୁଣି ଚନ୍ଦନା ଚଞ୍ଚଳ ହୋଇଉଠିଲା । ଚାହିଁ ଦେଖିଲା ପଣ୍ଡିତ୍‌ଜୀ ଧୀରେ ଧୀରେ ଆଗେଇ ଆସୁଛନ୍ତି ।

ପଣ୍ଡିତଜୀଙ୍କୁ ଦେଖିବା କ୍ଷଣି ଚନ୍ଦନା ବ୍ୟସ୍ତ ହୋଇ ଉଠିଲା ଏବଂ ଚଞ୍ଚଳ ପାଦରେ ଘରୁ ବାହାରି ଚାଲିଗଲା ।

ପଣ୍ଡିତଜୀ ଚନ୍ଦନାର ଯିବା ପଥକୁ କିଛି ସମୟ ଅନାଇ ରହି ଧୀରେ ଧୀରେ ଚାହାଣିଟା ଦୀପଙ୍କର ମୁହଁ ଆଡ଼େ ବୁଲେଇ ନେଇ କହିଲେ : ଚନ୍ଦନା କ'ଣ କହୁଥିଲା ?

: ସେ କହୁଥିଲା, ମୁଁ ଏଠାକୁ କେମିତି ଆସିଲି, କାହିଁକି ଆସିଛି ଏବଂ...

ପଣ୍ଡିତଜୀ ହସିଉଠି କହିଲେ : ଚନ୍ଦନା ରାୟବାହାଦୁରଙ୍କର ଦ୍ୱିତୀୟା କନ୍ୟା । ତା'ର ଟିକେ ମୁଣ୍ଡଦୋଷ ଅଛି । ତା'କଥା ଆପଣ ମୋଟେ କାନକୁ ନେବେ ନାହିଁ ।

ହଠାତ୍ ଯେପରି ଦୀପଙ୍କରର ଦେହଟା କମ୍ପିଉଠିଲା ।

ସେ ପଣ୍ଡିତଜୀଙ୍କ ମୁହଁକୁ ସନ୍ଦେହୀ ଆଖିରେ ଚାହିଁ ଭାବୁଥିଲା, ହେ ପଣ୍ଡିତଜୀ, ଆପଣଙ୍କର କିଛି ମୁଣ୍ଡଦୋଷ ନାହିଁ ତ !

ପଣ୍ଡିତଜୀ ପୁଣି କହିଲେ : ଯେଉଁମାନେ ଆସି ଆପଣଙ୍କୁ ଯାହା କହିବେ ଆପଣ କାହାରି କଥା ଶୁଣିବେ ନାହିଁ, ଏପରିକି ମୋ କଥା ମଧ୍ୟ । କାରଣ ରାୟବାହାଦୁରଙ୍କର ଇଚ୍ଛା ସେଇଆ । ସେ ଚାହାନ୍ତି ଆପଣଙ୍କ ସହିତ ନିଜେ ସେ କଥାବାର୍ତ୍ତା କରିବେ । ନିଜେ ସେ ଆପଣଙ୍କୁ ମନର କଥା କହିବେ । ନିଜେ ସେ ଆପଣଙ୍କୁ...



ହଠାତ୍ ଘର ଭିତରକୁ ଝଡ଼ବେଗରେ ପଶି ଆସିଲା ରତନା, ପଣ୍ଡିତଜୀଙ୍କ ଆଡ଼େ ଚାହିଁ କହିଲା : ଆପଣଙ୍କର ଫୋନ୍ ଆସିଛି । ମୁନିବ୍‌ଜୀ ଆପଣଙ୍କୁ ଡାକୁଛନ୍ତି ।

ପଣ୍ଡିତଜୀଙ୍କ ପଛେ ପଛେ ଘରୁ ବାହାରି ଚାଲିଗଲେ ।

ଦୀପଙ୍କର ବୋକାଙ୍କ ପରି ସେମାନଙ୍କ ଯିବା ପଥକୁ ଚାହିଁ ରହିଥିଲା ।

ନା, ଏଠାରେ ଆଉ ମୁହୂର୍ତ୍ତେ ନୁହେଁ । ଯେକୌଣସି ଉପାୟରେ ହେଉ, ଏଇ ପାଗଳଖାନାରୁ ବାହାରି ପଳାଇବାକୁ ହେବ ।

ଦୀପଙ୍କର ଉଠି ଠିଆହେଲା ।

ହୁଏତ ଏହି ସୁଯୋଗ । ଏହାପରେ ଆଉ ସୁଯୋଗ ଆସି ନ ପାରେ । ଏଠାରୁ ତା'ର ମୁକ୍ତି ଆବଶ୍ୟକ ।

ଦୀପଙ୍କର ପୁଣି ଭାବିଲା, କିନ୍ତୁ କ'ଣ ଏମାନଙ୍କର ଉଦ୍ଦେଶ୍ୟ । କାହିଁକି ଏମାନେ ଦୀପଙ୍କରର ଚତୁଃପାର୍ଶ୍ୱରେ ଦଳ ବାନ୍ଧି ଭିଡ଼ କରୁଛନ୍ତି ? ସେମାନଙ୍କର ଉଦ୍ଦେଶ୍ୟ ଯାହାହେଉ, ସେ କିନ୍ତୁ ଏଠାରୁ ମୁକ୍ତି ଚାହେଁ ।

ଦୀପଙ୍କର ଉଠି ଠିଆହେଲା ।

କିନ୍ତୁ...

ପୁଣି ରତନ ଘର ଭିତରେ ପ୍ରବେଶ କଲା । ହାତରେ ଗୋଟାଏ ଟ୍ରେ, ଟ୍ରେ'ରେ କିଛି ଖାଦ୍ୟ ଏବଂ ପାନୀୟ ।

ଦୀପଙ୍କର ପୁଣି ନଥିକିନା ସେଇଠି ବସିପଡ଼ିଲା ।

ତା'କପାଳରେ ଅଶେଷ ଦୁର୍ଭୋଗ ଅଛି ।

ରତନ ଗୋଟିଏ ଟେବୁଲ୍ ଉପରେ ଟ୍ରେ' ରଖୁ ରଖୁ କହିଲା : ମୁନିବ୍‌ଜୀ ଆପଣଙ୍କ ପାଇଁ ନିଶ୍ଚୟ ସବୁ ବ୍ୟବସ୍ଥା କରି ଆସିବେ ।

: କି ବ୍ୟବସ୍ଥା ? ଦୀପଙ୍କରର ସ୍ୱର କମ୍ପିଉଠିଲା ।

ପଣ୍ଡିତଜୀ ଘର ଭିତରେ ପଶୁ ପଶୁ କହିଲେ : ହଁ, ସେ ଆଜି ସବୁ ବ୍ୟବସ୍ଥା କରି ସାରିଛନ୍ତି । ଆଜି ଗାଡ଼ି ପଠାଇବା ପାଇଁ କହୁଥିଲେ । ପୁଣି କ'ଣ ଭାବି କହିଲେ, ନା ଥାଉ । ଆଜି ଅନେକ ଡେରି ହୋଇଗଲାଣି । ଗାଡ଼ି ଫେରୁ ଫେରୁ ସନ୍ଧ୍ୟା ହୋଇପାରେ । କାଲି କିନ୍ତୁ ସକାଳ ଆଠଟା ବେଳକୁ ଆପଣ ପ୍ରସ୍ତୁତ ହୋଇଥିବେ ଶର୍ମାଜୀ ।

: ପ୍ରସ୍ତୁତ ହୋଇ ଥିବି ମାନେ ? କୁଆଡ଼େ ଯିବାପାଇଁ ?

ପଣ୍ଡିତଜୀ ହସି ହସି ଦୀପଙ୍କର ସାମ୍‌ନାରେ ଗୋଟିଏ ସୋଫା ଉପରେ ବସି ପଡ଼ିଲେ । କହିଲେ : ପାଗଳା ଗାରଦ ଯିବେ ନାହିଁ ? ରାୟବାହାଦୁରତ ମୋତେ ଫୋନ୍ କରି କହିଲେ । ମ୍ୟାନେଜିଂ କମିଟିର ମିଟିଂ ଥିଲା । ରାୟବାହାଦୁର ସେଇଠିକି ଯାଇଛନ୍ତି ।

ସେ ଆପଣଙ୍କ ପାଇଁ ସମସ୍ତ ବ୍ୟବସ୍ଥା କରି ଦେଇଛନ୍ତି ବୋଲି ମୋତେ ଫୋନ୍‌ରେ କହିଲେ । ତା'ପରେ କହିଲେ, ଆଜି ମୁଁ ପାଗଳା ଗାରଦର ଗାଡ଼ି ପଠାଇ ଦେଉଛି । ପୁଣି କ'ଣ ଭାବି କହିଲେ, ନା ଥାଉ କାଲି ଆସିବେ ।

ଦୀପଙ୍କରର ସାରା ଦେହଟା ଯେପରି ଥଣ୍ଡା ହୋଇ ଆସୁଥିଲା ।

ସେ ବୋଧହୁଏ ନିଜର ଚେତନା ଶକ୍ତି ଧୀରେ ଧୀରେ ହରାଇ ବସୁଥିଲା ।

ରାୟବାହାଦୁର ପାଗଳ ଗାରଦରେ ତା'ପାଇଁ ସମସ୍ତ ବନ୍ଦୋବସ୍ତ କରି ସାରିଛନ୍ତି । କିନ୍ତୁ ସେ ପାଗଳ ଗାରଦକୁ ଯିବ କାହିଁକି ? ଏମାନେ କ'ଣ ସତରେ ଭାବିଛନ୍ତି ଦୀପଙ୍କର ପାଗଳ ଗାରଦରେ ରହିବା ପାଇଁ ରାଞ୍ଚିକୁ ଆସିଛି ?

ପଣ୍ଡିତଜୀ ଦୀପଙ୍କରର ଶଙ୍କିତ ମୁହଁଆଡ଼େ ଚାହିଁ କହିଲେ : ଆପଣ କିଛି ଚିନ୍ତା କରନ୍ତୁ ନାହିଁ ଶର୍ମାଜୀ । ଆପଣ ମୋଟେ ଭୟ କରିବେ ନାହିଁ । ଆପଣ ରାୟବାହାଦୁରଙ୍କର ଲୋକ । ତେଣୁ ସେଠାରେ ଆପଣଙ୍କୁ ସ୍ପେସାଲ କେଆରରେ...

ରତନ ଆଣି ଚା' ଥୋଇଲା ଟେବୁଲ୍ ଉପରେ ।

ଦୀପଙ୍କର ଯେପରି ରତନ ହାତରୁ ଚା' କପ୍‌ଟା ଛଡ଼େଇ ନେଇ ଢକ ଢକ କରି ସେଇ ଗରମ ଚା'କୁ ଏକାଥରକେ ପିଇଦେଲା ।

ନା, ନା ସତରେ ସେ ପାଗଳ ହୋଇଯିବ ।

ଏମାନେ ସମସ୍ତେ ମିଶି ତାକୁ ପାଗଳ କରିଦେବେ ।

ପଣ୍ଡିତ୍‌ଜୀ କହିଲେ : ଆପଣ ଜଳଖିଆ ଖାଇ ପ୍ରସ୍ତୁତ ହୋଇଯାଆନ୍ତୁ । ମୁଁ ଆପଣଙ୍କୁ କିଛି ସମୟ ବୁଲେଇଆଣିବି । ରାୟବାହାଦୁର ଫୋନ୍‌ରେ ମୋତେ କହିଲେ, ତାଙ୍କର ଫେରୁ ଫେରୁ ଟିକେ ଡେରି ହୋଇପାରେ । ତେବେ ରାତି ଆଠଟା ଭିତରେ ସେ ନିଶ୍ଚୟ ଫେରି ଆସିବେ । ତା'ପରେ ନିରୋଳାରେ ବସି ସେ ଆପଣଙ୍କ ସହିତ ଗଳ୍ପ କରିବେ ।

ଦୀପଙ୍କର ଗରମ ଚା'କୁ ହଠାତ୍ ପିଇ ଦେଇ ତା'ପାଟି ଭିତରଟା ଫୋଟକା ହୋଇଯାଇଥିଲା । ସେ ଯନ୍ତ୍ରଣା ଅନୁଭମ କରୁଥିଲା । କିନ୍ତୁ ତା'ର ମନେହେଉଥିଲା, ଯଦି ସେ ସେଇ ଗରମ ଚା'ତକ ଏକା ସଙ୍ଗରେ ପିଇଦେଇ ନଥାନ୍ତା, ତା'ହେଲେ ହୁଏତ ତା'ର ଶରୀରଟା ଥଣ୍ଡା ହୋଇଯାଇଥା'ନ୍ତା । ସେ କୋଲାପ୍‌ସ କରି ଯାଇଥାଆନ୍ତା ।

ଅନେକ ସମୟ ପରେ ଦୀପଙ୍କର କହିଲା : ବର୍ତ୍ତମାନ ଆମେ କୁଆଡ଼େ ଯିବା ପଣ୍ଡିତଜୀ ?

ପଣ୍ଡିତଜୀ କହିଲେ : ଏଇ ଅଳ୍ପ ଦୂରରେ ରାଞ୍ଚି ହିଲ୍ ଅଛି । ସେଇ ହିଲ୍‌କୁ ଲାଗି ଏକ ବିରାଟ ଲେକ୍ । ସନ୍ଧ୍ୟାବେଳେ ସେହି ଦୃଶ୍ୟ ଅତ୍ୟନ୍ତ ମନୋରମ । ଆମେ ହିଲ୍ ଉପରକୁ ଉଠି ଲେକ୍‌ର ଶୋଭା ଦେଖିବା ।

: ତାପରେ ? ଦୀପଙ୍କର ପଚାରିଲା ।

ପଣ୍ଡିତଜୀ କହିଲେ ତା'ପରେ ଆଜି ଆଉ କେଉଁ ଆଡ଼େ ଯିବା ସମ୍ଭବ ନୁହେଁ । କାରଣ ରାୟବାହାଦୁର ଫେରିଆସିବେ, ତାଙ୍କ ସହିତ ଆପଣଙ୍କର ଆପଏଣ୍ଟମେଣ୍ଟ ଅଛି ।

: ଆଚ୍ଛା, ପଣ୍ଡିତ୍‌ଜୀ ! ଦୀପଙ୍କର ଟିକିଏ ଚିନ୍ତାକରି କହିଲା, ଏଠାରେ ଆଉ ସବୁ ଦର୍ଶନୀୟ ସ୍ଥାନ କ'ଣ ଅଛି ?

ପଣ୍ଡିତଜୀ କହିଲେ : ହୁଡ୍ରୁ ଜଳପ୍ରପାତ ଗୋଟିଏ ଦର୍ଶନୀୟ ସ୍ଥାନ । କିନ୍ତୁ ବର୍ତ୍ତମାନ ସେଠାକୁ ଯାଇ କିଛି ଲାଭ ହେବ ନାହିଁ ସେଠାକୁ ଯିବାକୁ ହେଲେ ଦୁଇଟା ତିନିଟା ବେଳେ ବାହାରି ପଡ଼ି ଥିଲେ ଭଲ ହୋଇ ଥାଆନ୍ତା ।

: ହୁଁ, ଦୀପଙ୍କର ଧୀରେ ଧୀରେ ଜଳଖିଆ ଖାଉଥିଲା । ରତନ ଖଣ୍ଡେ ଦୂରରେ ଠିଆ ହୋଇ ଲକ୍ଷ୍ୟ କରୁଥିଲା । ପଣ୍ଡିତ୍‌ଜୀ ଚା' କପ୍‌ରୁ ଧୀରେ ଧୀରେ ଚା' ପିଉଥିଲେ ।

କିଛିକ୍ଷଣର ନୀରବତା ପରେ ଦୀପଙ୍କର କହିଲା : ଆଜି କିନ୍ତୁ କୁଆଡ଼େ ବାହାରିବା ପାଇଁ ମୋର ମୋଟେ ଇଚ୍ଛା ନାହିଁ ପଣ୍ଡିତ୍‌ଜୀ । ଆପଣ ବରଂ ଚାଲି ଯାଆନ୍ତୁ । ଆପଣଙ୍କର ଅନ୍ୟ କିଛି କାମ ଥାଇପାରେ । ମୋ ପାଇଁ ଅଯଥାରେ ସମୟ ନଷ୍ଟ କରି ଲାଭ ନାହିଁ ।

ପଣ୍ଡିତଜୀ କହିଲେ : ମୋର କାମତ ଆପଣଙ୍କ ପାଖରେ । ଆପଣଙ୍କର ତତ୍ତ୍ୱାବଧାନ ପାଇଁ ରାୟ ବାହାଦୁର ମୋତେ ଦାୟିତ୍ୱ ଦେଇଛନ୍ତି । ତେଣୁ ଆପଣଙ୍କ ସୁବିଧା ଅସୁବିଧା...

: ନା, ନା ପଣ୍ଡିତଜୀ । ମୋର ଆଉ ଅସୁବିଧା କ'ଣ ! ମୁଁ ତ ଆରାମରେ ଅଛି । ରତନ ମୋର ସବୁ ଖବର ବୁଝୁଛି । ଆଜି ଆପଣ ଯାଆନ୍ତୁ; ବରଂ ଆଉଦିନେ ସୁବିଧା ଦେଖି ରାଞ୍ଚି ହିଲ୍ ଆଉ ଲେକ୍ ଦେଖି ଆସିବା ।

: ସେଇଟା ଆପଣଙ୍କର ଇଚ୍ଛା । କିନ୍ତୁ ରାୟବାହାଦୂର ଜାଣିଲେ ମୋ ଉପରେ ଅସନ୍ତୁଷ୍ଟ ହେବେ ।

: ମୁଁ ମୋଟେ ରାୟବାହାଦୂରଙ୍କୁ ତାହା ଜଣାଇ ଦେବି ନାହିଁ । ଆପଣ ବରଂ ଯାଆନ୍ତୁ । ମୁଁ ଟିକିଏ ବିଶ୍ରାମ କରେ । କାଲିର ରାତି ଅନିଦ୍ରାଭାବ ଏଯାଏ କଟି ନାହିଁ ।

: କିନ୍ତୁ...ପଣ୍ଡିତ୍‌ଜୀ କ'ଣ ଭାବି କିଛି ସମୟ ନୀରବ ହୋଇ ପୁଣି କହିଲେ, ଆଚ୍ଛା ଠିକ୍ ଅଛି । ମୁଁ ତେବେ ଆସୁଛି । ଝିଅଟିର ଦେହ ଭଲ ନାହିଁ । ତାକୁ ଟିକେ ଡାକ୍ତରଖାନାକୁ ନେଇଯିବାକୁ ହେବ । ସେ ଯାହାହେଉ, ଆପଣ ମୋର ଗୋଟାଏ କଥା ମନେରଖିବେ ଶର୍ମାଜୀ, ହୁଏତ ମୋ ଅନୁପସ୍ଥିତିରେ କେହି କେହି ଆପଣଙ୍କ ପାଖକୁ ଆସିପାରନ୍ତି । ସେମାନେ ଆପଣଙ୍କୁ ନାନାପ୍ରକାର କଥା କହିପାରନ୍ତି, ପ୍ରଲୋଭନ ଦେଖାଇପାରନ୍ତି, ଭୟ ବି ଦେଖାଇପାରନ୍ତି । ଆପଣ କିନ୍ତୁ କାହାରି କଥା ଶୁଣିବେ ନାହିଁ । ସବୁ ଏକାନରେ ପୂରାଇ ସେ କାନରେ ବାହାର କରିଦେବେ ।

ଦୀପଙ୍କର କିନ୍ତୁ ମହା ଭାବନାରେ ପଡ଼ିଯାଇଥିଲା । ସେ ପଣ୍ଡିତ୍‌ଜୀଙ୍କ କଥାକୁ ମଧ୍ୟ ଏକାନରେ ପୂରାଇ ସେ କାନରେ ବାହାର କରି ଦେଉଥିଲା । ତା'ର ଏକମାତ୍ର ଚିନ୍ତା ହୋଇଥିଲା, ରାୟବାହାଦୁର ତା'ପାଇଁ ପାଗଳ ଗାରଦରେ ସବୁ ପ୍ରକାର ବ୍ୟବସ୍ଥା କରି ରଖି ସାରିଛନ୍ତି । କାଲି ସକାଳ ଆଠଟା ବେଳକୁ ପାଗଳ ଗାରଦରୁ ଗାଡ଼ି ଆସି ଦୀପଙ୍କରକୁ ନେଇଯିବ ।

ତା'ପରେ ?

ତା'ପରେ ସେ କ'ଣ ଆଉ ସେଠାରୁ ମୁକ୍ତିପାଇପାରିବ ?

ପଣ୍ଡିତ୍‌ଜୀ ପୁଣି କହିଲେ : ମୁଁ ତା'ହେଲେ ଆସୁଛି ଶର୍ମାଜୀ ।

: ଆପଣ ଥାଆନ୍ତୁ । ରତନ ତ ଅଛି । ମୁଁ ଝିଅଟାକୁ ଡାକ୍ତର ଦେଖାଇ ସାରି ପୁଣି ଫେରିଆସିବି ।

ପଣ୍ଡିତଜୀ ଚାଲିଗଲେ ।

ରତନ ମଧ୍ୟ କପ୍ ପ୍ଲେଟ୍ ଉଠାଇ ନେଇ ଘରୁ ବାହାରି ଚାଲିଗଲା ।

ଦୀପଙ୍କରର ମୁଣ୍ଡଟା ଗୋଳମାଳ ହୋଇଯାଇଥିଲା । ସେ ତା'ର ପରିଣତି ସମ୍ବନ୍ଧରେ କିଛି ଭାବିପାରୁ ନଥିଲା ।

ରାୟବାହାଦୁର ଲୋକ ପଠାଇ ଷ୍ଟେସନ୍‌ରୁ ତାକୁ କାହିଁକି ଧରି ଆଣିଲେ ।

ସେ'ବା ଜାଣିଲେ କିପରି ମୁଁ ଭୁବନେଶ୍ୱରକୁ ଯିବା ଲୋକ, ଭୁଲ୍ ଗାଡ଼ିରେ ଚଢ଼ି ରାଞ୍ଚିଯାଏ ଚାଲିଆସିଛି ।

ଆଉ କ'ଣ ମୂଳରୁ ରାୟବାହାଦୁର ଚକ୍ରାନ୍ତ କରି ତାକୁ ଏଠାକୁ ଘେନିଆସିଛନ୍ତି? ହାବଡ଼ା ଷ୍ଟେସନ୍‌ରେ ଯେଉଁ କୁଲି ତାଙ୍କୁ ପୁରି ଏକ୍ସପ୍ରେସ୍ ବଦଳରେ ରାଞ୍ଚି ଏକ୍ସପ୍ରେସ୍‌ରେ ବସାଇଦେଲା, ସେ କ'ଣ ରାୟବାହାଦୁରଙ୍କର ଲୋକ ? କିନ୍ତୁ ଏହାଦ୍ୱାରା ତାଙ୍କର ଲାଭ କ'ଣ ହେଲା ? ମୋତେ ପାଗଳ ଗାରଦକୁ ପଠାଇ ସେ କ'ଣ ପାଇବେ ।

ଦୀପଙ୍କର ଉଠି ଠିଆହେଲା ।

ନା, ଏଇ ହେଉଛି ଉପଯୁକ୍ତ ସମୟ । ଏଇ ମୁହୂର୍ତ୍ତରେ ଏଠାରୁ ବାହାରି ଯାଇ ସେ ପୁଲିସ୍‌ର ସାହାଯ୍ୟ ନ ନେଲେ; ସେ ଆଉ କୌଣସି ଦିନ ଦୀପଙ୍କର ଶର୍ମା ହୋଇ ମୁକ୍ତ ଆକାଶ ତଳେ ସ୍ୱାଧୀନ ଭାବରେ ବୁଲିପାରିବ ନାହିଁ ।

ଦୀପଙ୍କର ଧୀରେ ଧୀରେ ଯାଇ ତା'ଚମଡ଼ା ସୁଟ୍‌କେଶ୍‌ଟିକୁ ଚାହିଁଲା । ନାଁ ଏପର୍ଯ୍ୟନ୍ତ ତା' ସୁଟ୍‌କେସ୍‌ଟି ତା'ର ହୋଇଅଛି ।

ସେ ନଇଁପଡ଼ି ସୁଟ୍‌କେଶ୍‌ଟି ଉଠାଇବାକୁ ଯିବ, ପୁଣି କିଏ କବାଟ ଖୋଲିବାର ଶବ୍ଦହେଲା ।

ଦୀପଙ୍କର ଚମକି ଉଠି ପଛକୁ ଅନାଇଲା ।

ଯେପରି ସେ ଗୋଟାଏ ବିରାଟ ଅପରାଧ ସଂଘଟିତ କରିବାକୁ ଯାଇ ହଠାତ୍ ଧରା ପଡ଼ିଯାଇଛି ।

ଦୀପଙ୍କର ଦେଖିଲା ସେ ସ୍ୱାସ୍ଥ୍ୟବାନ୍ ଯୁବକଟି, ପାନିଆରେ ମୁଣ୍ଡକୁଣ୍ଡାଇ କୁଣ୍ଡାଇ ଭିତରକୁ ପଶୁଛି ।

ଏଥର ସେ ପିନ୍ଧିଛି ଗୋଟାଏ ସ୍ପୋର୍ଟିଂ ଗଞ୍ଜି । ଗଞ୍ଜିଟା ଏପରି ଚିତ୍ର ବିଚିତ୍ର ଯେ, ଦୀପଙ୍କର ଦେଖିବା ମାତ୍ରେ ଶିହରୀ ଉଠିଲା । ଯୁବକଟି ଆଖିରେ ଗୋଟାଏ ହିଂସ୍ର ଚାହାଣିରେ ଧୀରେ ଧୀରେ ଆଗେଇ ଆସୁଥିଲା ।

ପକେଟରୁ କ'ଣ ଗୋଟାଏ ଛୋଟ ପୁଡ଼ିଆ ବାହାର କରି କାଗଜ ଚିରି ଗୋଟାଏ ଟାବଲେଟ୍ ପରି ଜିନିଷ ପାଟିରେ ଭରିଲା ।

ପୁଣି ହିପ୍ ପକେଟରୁ ପାନିଆଟା ବାହାର କରି ମୁଣ୍ଡ କୁଣ୍ଡାଉ କୁଣ୍ଡାଉ କହିଲା : ଶର୍ମାଜୀ, ବାହାରେ ଗାଡ଼ି ଅପେକ୍ଷା କରିଛି, ଆପଣ ଇଚ୍ଛାକଲେ ମୋ ସହିତ ଏଇ ମୁହୂର୍ତ୍ତରେ ବାହାରି ଯାଇପାରନ୍ତି ।

: ମାନେ ?

ଯୁବକଟି ମୁହଁରେ ବିଦ୍ରୂପର ହସ ଖଣ୍ଡେ ଫୁଟିଉଠିଲା । ସେ କହିଲା : ମାନେ ଫାନେ ସବୁ ମୁଁ ଗାଡ଼ିରେ ବୁଝେଇ ଦେବି । ଚନ୍ଦନା ବି ଆପଣଙ୍କୁ ଗାଡ଼ିରେ ଅପେକ୍ଷା କରିଛି । ଆମେ ଆପଣଙ୍କର ଭଲ ପାଇଁ କହନ୍ତୁ । ଆମ ସହିତ ଆସିଲେ ଆପଣଙ୍କର ମଙ୍ଗଳ ଛଡ଼ା ଅମଙ୍ଗଳ ହେବ ନାହିଁ ।

ଯୁବକଟି ଦୀପଙ୍କରକୁ ଆଉ କିଛି ଭାବିବାର ସୁଯୋଗ ନ ଦେଇ ତଳେ ଥୁଆହୋଇଥିବା ଚମଡ଼ା ସୁଟ୍‌କେଶ୍‌ଟିକୁ ଉଠାଇଲା ।

କିନ୍ତୁ ଠିକ୍ ସେଇ ମୁହୂର୍ତ୍ତରେ ପଛରୁ ପଣ୍ଡିତଜୀଙ୍କର ପାଟିଶୁଣାଗଲା ।

: ହଁ ଶର୍ମାଜୀ, ଆଉ ଗୋଟାଏ କଥା ଭୁଲିଯାଇଥିଲି ରାୟବାହାଦୁର କହିଛନ୍ତି...

ପଣ୍ଡିତଜୀଙ୍କର କଥା ଅଧା ରହିଗଲା । ଯୁବକଟି ଦୀପଙ୍କରର ଲେଦର ସୁଟ୍‌କେଶ୍‌କୁ ତଳେ କଚାଡ଼ି ଦେଇ ଏକ ପ୍ରକାର ଘରୁ ଦଉଡ଼ି ପଳାଇଗଲା ।

ପଣ୍ଡିତଜୀ କହିଲେ : ଚନ୍ଦ୍ରକାନ୍ତ କାହିଁକି ଆସିଥିଲା ?

ଦୀପଙ୍କର ହତଭମ୍ଭ ହୋଇ ଠିଆ ହୋଇ ପଡ଼ିଥିଲା ।

ପଣ୍ଡିତଜୀ ପୁଣି କହିଲେ : ଚନ୍ଦ୍ରକାନ୍ତ କାହିଁକି ଆସିଥିଲା ଶର୍ମାଜୀ ?

: ସେ ଆସିଥିଲା ମୋତେ ସଙ୍ଗରେ ନେବା ପାଇଁ ।

ପଣ୍ଡିତଜୀ ପଚାରିଲେ : କେଉଁଆଡ଼େ ?

: ମୁଁ ଜାଣିନାହିଁ ।

: ଆପଣ କ'ଣ ତା' ସଙ୍ଗରେ ଯାଇ ଥାଆନ୍ତେ ?

: ସେ ମୋତେ ବାଧ କରୁଥିଲା ଯିବାପାଇଁ ।

: ମୁଁ ଜାଣେପରା ! ନା ନା, ମୁଁ ଆପଣଙ୍କୁ ଏଇ ପାଗଳମାନଙ୍କ ହାତରେ ଛାଡ଼ି ଦେଇ ଚାଲିଯିବା ସମ୍ଭବ ନୁହେଁ । ଏଇକ୍ଷଣା ସର୍ବନାଶ ହୋଇଯାଇଥାଆନ୍ତା ।

: ସର୍ବନାଶ ମାନେ ? ଦୀପଙ୍କର ସ୍ୱରରେ ଆତଙ୍କ ଫୁଟିଉଠିଲା ।

ପଣ୍ଡିତଜୀ ଶାନ୍ତ ସ୍ୱରରେ କହିଲେ : ମୁଁ ଆସିଲିଣି, ଆପଣଙ୍କର ଆଉ ଭୟର କିଛି କାରଣ ନାହିଁ । ଚନ୍ଦ୍ରକାନ୍ତକୁ ଆପଣ ଚିହ୍ନନ୍ତି ?

: ନା ।

: ସେ ତା'ର ପରିଚୟ ଦେଇ ନାହିଁ ?

: ନା ।

: ଚନ୍ଦ୍ରକାନ୍ତ ରାୟବାହାଦୁରଙ୍କର ପୁତ୍ର । ରାୟବାହାଦୁର ତା'ପାଇଁ ବହୁତ ଚେଷ୍ଟା କଲେ । ପାଣି ପରି ପଇସା ଖର୍ଚ୍ଚ କଲେ; କିନ୍ତୁ ଫଳ ବିଶେଷ କିଛି ହେଲା ନାହିଁ । ପିଲାଟା ବେଳେ ବେଳେ ଏମିତି ଭଲ । ଖୁବ୍ ଭଦ୍ର; କିନ୍ତୁ ଆଉ ବେଳେ ବେଳେ, ଯେତେବେଳେ ତା' ମୁଣ୍ଡରେ ପୋକଉଠେ, ସେ ଠିକ୍ ତା'ପଥରେ ଆଗେଇଯାଏ ।

: ତା' ପଥରେ ଆଗେଇ ଯାଏ ମାନେ ?

: ସେ ଅନେକ କଥା ଶର୍ମାଜୀ । ସେଇଟା ସମସ୍ତଙ୍କ ଆଗରେ କହିବା ଉଚିତ ନୁହେଁ । ତେବେ ଏଇ ଚନ୍ଦ୍ରକାନ୍ତର ଟେଣ୍ଡେନ୍‌ସିଟା ସବୁବେଳେ କିପରି ଅସ୍ୱାଭାବିକ । ଆପଣ ଲକ୍ଷ୍ୟ କରିବେ, ସବୁବେଳେ ତା' ଆଖିରେ କିପରି ଗୋଟାଏ ହିଂସ୍ରଭାବ ଲାଗିରହିଥିବ ।

ଦୀପଙ୍କର ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି କେତୋଟି ମୁହୂର୍ତ୍ତ ଆଖି ବନ୍ଦ କରି ନୀରବରେ ବସିରହିଲା ।

ପଣ୍ଡିତଜୀ ନୀରବତା ଭାଙ୍ଗି କହିଲେ : କିନ୍ତୁ ଆପଣଙ୍କର ଭୟର କିଛି କାରଣ ନାହିଁ । ଆପଣ ରାୟବାହାଦୁରଙ୍କର ଖାସ୍ ଅତିଥି । ସେଥିପାଇଁ ଆପଣଙ୍କ ଗତିବିଧି ପ୍ରତି ସଚେତନ । ତେବେ ଆପଣ ଖୁବ୍ ବେଶି ବାହାରକୁ ନ ବାହାରିବା ଉଚିତ ।

ଦୀପଙ୍କର ମନରେ ଏଥର ସତରେ ଝଡ଼ଉଠୁଥିଲା । ଏହା ପୂର୍ବରୁ ଯେଉଁ କୌତୁହଳ ଟିକକ ତା'ର ଥିଲା, ତାହା ଧୀରେ ଧୀରେ ଆତଙ୍କରେ ପରିଣତ ହୋଇଥିଲା ।

ସେ ପଚାରିଲା ରାୟବାହାଦୁରଙ୍କ ପରିବାରର ସମସ୍ତଙ୍କର ତା'ହେଲେ ମୁଣ୍ଡଦୋଷ ଅଛି ?

ପଣ୍ଡିତଜୀ ହଠାତ୍ କହି ଉଠିଲେ: ନା, ନା । ସମସ୍ତଙ୍କର କାହିଁକି ହେବ ? କାହାରି କାହାରି ଟିକେ ଟିକେ ଅଛି । ଯେପରି ଧରନ୍ତୁ ରାୟବାହାଦୁର, ତାଙ୍କର ବଡ଼ଝିଅ । ଏମାନେ ସମସ୍ତେ ନରମାଲ । କେବଳ ଏଇ ପୁଅ ଆଉ ସାନଝିଅଟା ବେଳେ ବେଳେ ଆବ୍‌ନରମାଲ୍ ମନେ ହୁଅନ୍ତି । ସେ କିଛି ନୁହେଁ ।

: ତା'ହେଲେ ରାୟବାହାଦୁରଙ୍କର କ'ଣ ଏଇଟା ବଂଶଗତ ବ୍ୟାଧି ।

: ମୁଁ ଠିକ୍ କହିପାରିବି ନାହିଁ । ତେବେ ରାୟବାହାଦୁରଙ୍କ ବାପାଙ୍କ ବାପା କୁଆଡ଼େ ଶେଷ ଜୀବନରେ ବଦ୍ଧପାଗଳ ହୋଇଯାଇଥିଲେ । ଯା'ହେଉ ସେ ସବୁ କିଛି ନୁହେଁ; ଆପଣ ସେଥିପାଇଁ କିଛି ଚିନ୍ତା କରନ୍ତୁ ନାହିଁ ।

: କିନ୍ତୁ ମୋର ଚିନ୍ତା କ'ଣ ଜାଣନ୍ତି ପଣ୍ଡିତଜୀ ?

: କ'ଣ ?

: ମୁଁ ଏଠାକୁ କାହିଁକି ଆସିଛି ତାହା ଏପର୍ଯ୍ୟନ୍ତ ଜାଣିପାରିଲି ନାହିଁ ।

ପଣ୍ଡିତଜୀଙ୍କ ମୁହଁରେ ଯେପରି ହସର ଫୁଲ ଫୁଟିଉଠିଲା । ସେ ଏକ ଅପୂର୍ବ ଅଙ୍ଗଭଙ୍ଗୀ କରି କହିଲେ ସେ କଥା ଆପଣଙ୍କୁ ସ୍ୱୟଂ ରାୟବାହାଦୁର କହିବେ । ଆପଣ ଯେତେବେଳେ ଏଠାକୁ ଆସିବାର ଅସଲ କାରଣଟା ଜାଣିପାରିବେ ବୁଝିପାରିବେ ଆପଣ କେତେ ବଡ଼ ସୌଭାଗ୍ୟର ଅଧିକାରୀ ।

: ଆଚ୍ଛା ପଣ୍ଡିତଜୀ, ଆପଣ ମୋ ସମ୍ବନ୍ଧରେ କିଛି ଜାଣିଛନ୍ତି ?

: କାହିଁ ? ନାଁ'ତ !

: ରାୟବାହାଦୁର କିଛି କହୁ ନଥିଲେ ?

: ନା ନା, ସେ ମୋତେ ଆପଣଙ୍କ ସମ୍ବନ୍ଧରେ କିଛି କହି ନାହାନ୍ତି, କେବଳ ଏତିକି କହୁଥିଲେ, ଆପଣଙ୍କୁ ନିଜର ପୁଅ ପରି ସ୍ନେହ କରନ୍ତି ।

: ଆଚ୍ଛା ଆଉ ଗୋଟାଏ କଥା ପଣ୍ଡିତଜୀ । ଆପଣ ରାୟବାହାଦୁରଙ୍କ ପାଖରେ କେତେ ବର୍ଷ ହେବ ଅଛନ୍ତି ?

: କାହିଁକି କୁହନ୍ତୁ ତ ?

: ନା, ଏମିତି ପଚାରୁଥିଲି ।

ପଣ୍ଡିତଜୀ ଏକ ସ୍ୱତନ୍ତ୍ର ଚାହାଣିରେ ଆଉଥରେ ଦୀପଙ୍କର ମୁହଁକୁ ଚାହିଁ ଧୀରେ ଧୀରେ କହିଲେ : ଏଠାରେ ପ୍ରାୟ ସାତ ଆଠ ବର୍ଷ ହେବ ଅଛି; କିନ୍ତୁ ରାୟବାହାଦୁରଙ୍କ ସହିତ ମୋର ପରିଚୟ ଅନେକ ଦିନର ।

: ଖୁବ୍ ଭଲ । ଆପଣ ତା'ହେଲେ ତାଙ୍କ ଜୀବନର ଅନେକ ଗୋପନ କଥା ଜାଣିଥିବେ ।

: ନା, ନା । ପଣ୍ଡିତଜୀଙ୍କ ସ୍ୱର ଯେପରି କ୍ଷିପ୍ର ହୋଇ ଉଠିଲା ସେ କହିଲେ : ତାଙ୍କ ସହିତ ମୋର ସେପରି ଘରୁଆ ସମ୍ପର୍କ କିଛି ନ ଥିଲା । ତେଣୁ ତାଙ୍କ ଜୀବନର କୌଣସି ଗୋପନ ଘଟଣା ଜାଣିବା ମୋ ପକ୍ଷରେ ସମ୍ଭବ ହୋଇ ନାହିଁ ।

: ନା, ମୁଁ କ'ଣ କହୁଥିଲି କି, ଅତୀତରେ ରାୟବାହାଦୁରଙ୍କର କୌଣସି ମୁଣ୍ଡଦୋଷ କେବେ ଦେଖାଦେଇଥିଲା କି ?

: ନା, ନା, ନା । ରାୟବାହାଦୁରଙ୍କୁ ଆପଣ ସେପରି ଭାବିଲେ ଅନ୍ୟାୟ ହେବ । ରାୟବାହାଦୂର ସବୁଦିନ ସୁସ୍ଥ ସବଳ ଓ ଆତ୍ମ ସଚେତନ ମଣିଷ । ଅନ୍ତତଃ ମୁଁ ଯେତେଦିନ ହେବ ତାଙ୍କ ସମ୍ପର୍କରେ ଆସିଛି, ତାଙ୍କ କାର୍ଯ୍ୟକଳାପ, କଥାବାର୍ତ୍ତାରେ କୌଣସି ଆସ୍ୱାଭାବିକତା ଲକ୍ଷ୍ୟ କରି ନାହିଁ ।

: କ'ଣ, କ'ଣ ଆପଣ ଲକ୍ଷ୍ୟ କରିଛନ୍ତି ? ପଣ୍ଡିତଜୀଙ୍କ ସ୍ୱର ଚଞ୍ଚଳ ହୋଇ ଉଠିଲା ।

ଦୀପଙ୍କର କ'ଣ ଗୋଟାଏ କିହି ଥାଆନ୍ତା, କିନ୍ତୁ ରତନ ଘର ଭିତରକୁ ପଶି ଆସି କହିଲା : ମୁନିବ୍‌ଜୀ ଫେରି ଆସିଲେଣି । ଆପଣଙ୍କୁ ଡାକୁଛନ୍ତି

ପଣ୍ଡିତଜୀ ଯେପରି ଏପରି ଏକ ଡାକରାକୁ ପ୍ରତୀକ୍ଷା କରି ରହି ଥିଲେ । ସେ ସଙ୍ଗେ ସଙ୍ଗେ ଉଠିପଡ଼ି କହିଲେ : ମୁଁ ରାୟବାହାଦୁରଙ୍କ ପାଖରୁ ଶୁଣି ଆସୁଛି ଶର୍ମାଜୀ, ଆପଣ ପ୍ରସ୍ତୁତ ହୋଇ ଥାଆନ୍ତୁ । ଆଉ ଟିକକ ପରେ ହୁଏତ ରାୟବାହାଦୁର ଆପଣଙ୍କୁ ଡକେଇ ପଠେଇବେ ।

ପଣ୍ଡିତଜୀ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ସେଠାରୁ ଉଠି ଚାଲିଗଲେ ।

ଦୀପଙ୍କର ତାଙ୍କ ଚାଲିଯିବା ପଥକୁ ଚାହିଁ ଚିନ୍ତା କରୁଥିଲା, କ'ଣ ସେ କରିବ ? କାହାକୁ ସେ ସାହାଯ୍ୟ ପାଇଁ ନିବେଦନ କରିବ ? ଆଉ ମୁହୂର୍ତ୍ତକ ପରେ ହୁଏତ ରାୟବାହାଦୁର ତାକୁ ଡାକି ପଠାଇବେ । ତା'ପରେ, ତାପରେ...

ଦୀପଙ୍କର କିଛି ଚିନ୍ତା କରି ପାରୁ ନଥିଲା ।

ସେ ପଣ୍ଡିତଜୀଙ୍କର ଫେରିଆସିବାକୁ ଅପେକ୍ଷା କରୁଥିଲା ।

କିନ୍ତୁ ପଣ୍ଡିତଜୀ କାହାନ୍ତି ? ପ୍ରାୟ ଏକଘଣ୍ଟା ଶେଷହେବାକୁ ବସିଲାଣି; ପଣ୍ଡିତଜୀ ଗଲେ କୁଆଡ଼େ ?

ଦୀପଙ୍କର ମନରୁ ସମସ୍ତ ପ୍ରକାର ଉତ୍ତେଜନାକୁ ଥଣ୍ଡା କରିବା ପାଇଁ ଚେଷ୍ଟା କରୁଥିଲା । ସେ ଆହୁରି ଭାବୁଥିଲା ଧୀରସ୍ଥିର ଚିତ୍ତରେ ଘଟଣାର ସମ୍ମୁଖୀନ ହେବ । ଶେଷ ପର୍ଯ୍ୟନ୍ତ କ'ଣ ହେବ, ତା'ର ସମ୍ମୁଖୀନ ହେବା ପାଇଁ ଦୀପଙ୍କର ଧୈର୍ଯ୍ୟ ଧରି ବସିରହିବ ।

ତଥାପି ପଣ୍ଡିତଜୀଙ୍କର ଦେଖା ନାହିଁ ।

ଶେଷରେ ରତନ ଆସିଲା । ହାତରେ ଖାଦ୍ୟ ସାମଗ୍ରୀ ।

ରତନ କହିଲା : ଆଜି ମୁନିବ୍‌ଜୀଙ୍କ ସଙ୍ଗରେ ଆପଣଙ୍କର ଦେଖାହେବ ନାହିଁ । କେତେକ ପାରିବାରିକ ଘଟଣା ନେଇ ସେ ତାଙ୍କର ପୁଅ, ଝିଅମାନଙ୍କ ସହିତ ବସି ଆଲୋଚନା କରୁଛନ୍ତି । ସେ କହିଲେ ଆପଣ ଖାଇ ଶୁଅନ୍ତୁ । କାଲି ସକାଳେ ଯାହା ହେବ ।

ଦୀପଙ୍କର କିଛି ଉତ୍ତର ଦେଲା ନାହିଁ ।

ସେ ନୀରବରେ ବସି ଖଣ୍ଡିଏ ପତ୍ରିକା ଉପରେ ଆଖି ବୁଲାଉଥିଲା ।

ରତନ ଖାଦ୍ୟ ସାମଗ୍ରୀ ଗୋଟିଏ ଟେବୁଲ୍ ଉପରେ ସଜାଇ ରଖିସାରି କହିଲା : ଆପଣ ଖାଇ ଶୋଇପଡ଼ନ୍ତୁ ।

ଦୀପଙ୍କର ନୀରବରେ ଉଠିଯାଇ, ହାତ ମୁହଁ ଧୋଇ ଆସି ଖାଇବସିଲା ।

ରତନ ପାଖରେ ଠିଆ ହୋଇ ଲକ୍ଷ୍ୟକରୁଥିଲା ।

ଦୀପଙ୍କର ପଚାରିଲା : ତମ ମୁନିବ୍‌ଜୀ ଆଉ ତାଙ୍କ ପରିବାରର ସମସ୍ତେ ବସି କ'ଣ ଆଲୋଚନା କରୁଛନ୍ତି ?

ରତନ ହସିଲା । କହିଲା : ସେସବୁ ବଡ଼ ଘରର ବଡ଼କଥା ଆଜ୍ଞା । ଆମେ ଚାକର ବାକର ଲୋକ । ଆମକୁ ସେ ଘରକୁ ଯିବାକୁ ମନା । ତେବେ ପଣ୍ଡିତଜୀ ସେଠି ଅଛନ୍ତି । ସେ ଆସିଲେ ଆପଣ ତାଙ୍କୁ ପଚାରିବେ । ସେ ହୁଏତ ସବୁ କଥା କହି ପାରିବେ; କିନ୍ତୁ ଆଲୋଚନା ଯାହାହେଉ, ଗୋଟାଏ କିଛି ଗରମାଗରମ ଚାଲିଛି ।

: ଗରମାଗରମ ମାନେ ?

ରତନ କହିଲା : ମୁନିବ୍‌ଜୀ କାହା ଉପରେ ଖୁବ୍ ରାଗିଯାଇଛନ୍ତି । ବାହାରୁ ଥାଇ ମୁଁ ତାଙ୍କର ଗରମ କଣ୍ଠ ଶୁଣିଛି ।

: କାହା ଉପରେ ରାଗିଛନ୍ତି ? ଦୀପଙ୍କର ପଚାରିଲା ।

: ତାଙ୍କରି ପିଲାମାନଙ୍କ ଉପରେ ରାଗିଥିବେ । ପଣ୍ଡିତଜୀଙ୍କ ଛଡ଼ା ସେଠାରେ ବାହାର ଲୋକ ତ ଆଉ କେହି ନାହାନ୍ତି ।

: ହୁଁ, ଦୀପଙ୍କର ନୀରବରେ ଖାଇଚାଲିଥିଲା । ହଠାତ୍ ଏକ ସମୟରେ ଦୀପଙ୍କର କହିଲା, ଆଚ୍ଛା ରତନ, ତମ ଚନ୍ଦନା ଦିଦି ଲୋକ କେମିତିକା ?

ରତନ କିଛି ସମୟ ନୀରବରେ ଦୀପଙ୍କର ମୁହଁକୁ ଅନାଇରହି ସ୍ମିତହସି କ'ଣ କହିବାକୁ ଯାଉଥିଲା, ସେତିକିବେଳେ ଦରଜା ଠେଲି ଘର ଭିତରେ ପଣ୍ଡିତଜୀ ପ୍ରବେଶ କଲେ ।

ରତନ ନୀରବ ହୋଇଗଲା ।

ପଣ୍ଡିତଜୀ ରତନକୁ ଇଂଗିତରେ ବାହାରି ଯିବା ପାଇଁ କହିଲେ ।

ରତନ ଘରୁ ବାହାରି ଚାଲିଯିବା ପରେ ଦୀପଙ୍କର ପଣ୍ଡିତଜୀଙ୍କୁ ପଚାରିଲା, ଶୁଣିଲି ରାୟବାହାଦୁର ଆଜି ଖୁବ୍ ରାଗିଯାଇଛନ୍ତି, କାରଣ କ'ଣ ?

ପଣ୍ଡିତଜୀ ଟିକିଏ ହସିବାକୁ ଚେଷ୍ଟାକରି କହିଲେ : ଆପଣଙ୍କୁ ରତନ କହିଛି ବୋଧେ ! ନା ନା, ସେ କିଛି ନୁହେଁ । ସେମାନଙ୍କ ପାରିବାରିକ ଘଟଣା । ରାୟବାହାଦୁର ଭୀଷଣ କ୍ଳାନ୍ତ ହୋଇ ଫେରିଥିଲେ । ସେତିକିବେଳେ ତାଙ୍କ ପୁଅ ଚନ୍ଦ୍ରକାନ୍ତ ଯାଇ କ'ଣ ତାଙ୍କୁ କହିଲା । ସେଇଥିରୁ ପାଟିଗୋଳ ହେଲା । ରାୟବାହାଦୁରଙ୍କର ଟିକିଏ ପ୍ରେସର ଅଛି । ସେ ଉତ୍ତେଜିତ ହୋଇପଡ଼ିଲେ ପ୍ରେସରଟା ବଢ଼ିଯାଏ । ଆଜି ବଢ଼ିଯାଇଛି । ସେ ଶୋଇଛନ୍ତି । ଆପଣ ବର୍ତ୍ତମାନ ଯିବେ ?

ଦୀପଙ୍କର କହିଲା : ସେ ମୋତେ କ'ଣ ଡାକୁଛନ୍ତି ?

: ନାଁ, ଡାକୁ ନାହାନ୍ତି ଯେ, ତେବେ...

: କ'ଣ କୁହନ୍ତୁ ।

: ରାୟବାହାଦୁର କହିଲେ କାଲି ଆପଣଙ୍କ ସହିତ ସକାଳେ କଥାବାର୍ତ୍ତା କରିବେ ।

: ଭଲକଥା । ମୋର କିଛି ଆପତ୍ତି ନାହିଁ । କିନ୍ତୁ ପଣ୍ଡିତଜୀ, ମୁଁ ଗୋଟିଏ କଥା ପଚାରିବି ।

: ନା ନା ଶର୍ମାଜୀ, ମୋତେ କିଛି କଥାଫଥା ପଚାରିବା ଦରକାର ନାହିଁ । ମୁଁ ଆପଣଙ୍କୁ ମୋଟେ ସନ୍ତୋଷଜନକ ଉତ୍ତର ଦେଇପାରିବି ନାହିଁ । ଆପଣଙ୍କର ଯାହା ମନେହେଉଛି, ସବୁ ଗୋଟିଏ କାଗଜରେ ଟିପି ରଖନ୍ତୁ । କାଲି ସକାଳେ ରାୟବାହାଦୁରଙ୍କୁ ଗୋଟି ଗୋଟି କରି ପଚାରିବେ । ସେ ଆପଣଙ୍କର ସବୁ ପ୍ରଶ୍ନର ଟିକିନିଖି ଉତ୍ତର ଦେଇପାରିବେ ।

ପଣ୍ଡିଜୀ ବସିବା ଜାଗାରୁ ଉଠିପଡ଼ିଥିଲେ ।

ଦୀପଙ୍କର ମଧ ହାତ ଧୋଇବା ପାଇଁ ଉଠି ଠିଆହୋଇଥିଲା ।

ପଣ୍ଡିତଜୀ କହିଲେ : ମୁଁ ଆପଣଙ୍କୁ ଗୋଟିଏ କଥା କହିବା ପାଇଁ ଆସିଥିଲି । ରାୟବାହାଦୁର ଆପଣଙ୍କୁ କହିଯିବା ପାଇଁ ମୋତେ କହିଥିଲେ । କଥା ହେଉଛି, ତେବେ ଆପଣ ସେମାନଙ୍କର କଥା ଶୁଣିବେ ନାହିଁ । ସେମାନେ ଯାହା କହିବେ ସବୁ ମିଛ କଥା କହିବେ । କାଲି ସକାଳେ ରାୟବାହାଦୁରଙ୍କର ସହିତ ଆପଣଙ୍କର ଦେଖାହେବା ପର୍ଯ୍ୟନ୍ତ ଆପଣ କାହାରି କଥା ଶୁଣିବେ ନାହିଁ । କିମ୍ଵା କାହାରି କଥାକୁ ସତ ମଣିବେ ନାହିଁ । ଆଜି ମୁଁ ଆସୁଛି, ଗୁଡ୍ ନାଇଟ୍ ।

ପଣ୍ଡିତଜୀ ଆଉ ମୁହୂର୍ତ୍ତେ ଡେରି ନକରି ଘରୁ ବାହାରି ଚାଲିଗଲେ ।

ଖିଆ ପିଆ ଶେଷକରି ଦୀପଙ୍କର ସେଦିନ ଶୋଇଲା ସତ, କିନ୍ତୁ ତା' ଆଖିକୁ ମୋଟେ ନିଦ ଆସିଲା ନାହିଁ ।

ନାନାପ୍ରକାର ଅସଂଲଗ୍ନ ଭାବନା ତା'ମନଟାକୁ ବିବ୍ରତ କରି ପକାଇଥିଲା । ସେ ଏତେବେଳଯାଏ ବୁଝିପାରୁ ନଥିଲା, ସେ ଯେଉଁଠି ଅଛି, ସେଠାରେ ତାକୁ କାହିଁକି ରଖା ହୋଇଛି ?

ଦୀପଙ୍କର ଏତକ ବୁଝି ପାରିଥିଲା ଯେ ତାକୁ ଏଠାକୁ ଯେ କୌଣସି ପ୍ରକାର ଜୋର୍ କରି ଅଣାହୋଇଛି ଏବଂ ଏକ ପ୍ରକାର ନଜର ବନ୍ଦୀ କରି ରଖାହୋଇଛି । ପଳାଇ ଯିବାକୁ ଚେଷ୍ଟା କଲେ ମଧ ପଳାଇଯିବାର ଉପାୟ ନାହିଁ ।

କିନ୍ତୁ ଏମାନଙ୍କର ଉଦ୍ଦେଶ୍ୟ କ'ଣ ?

ରାୟବାହାଦୁର, ପଣ୍ଡିତଜୀ, ରତନ, ଚନ୍ଦନା, ଚନ୍ଦ୍ରକାନ୍ତ ଏଇ ଯେଉଁ କେତେଜଣଙ୍କ ସହିତ ତା'ର ପରିଚୟ ହୋଇଛି ସେମାନଙ୍କ ସହିତ କଥାବାର୍ତ୍ତା କରିଲା ବେଳେ ଦୀପଙ୍କରର ମନେହୋଇଛି, ସେମାନେ ଯେପରି ଆବନତମାଲ । ଅନେକ ତା' ସହିତ ଏକ ଉଦ୍ଦେଶ୍ୟପୂର୍ଣ୍ଣ ଆଖିରେ ଚାହିଁଛନ୍ତି । କିନ୍ତୁ କ'ଣ ସେଇ ଉଦ୍ଦେଶ୍ୟ ?

କେଉଁଠି ଗୋଟାଏ କିଆଲ ଘଡ଼ିରେ ବାରଟା ବାଜିବାର ଶବ୍ଦ ହେଲା ।

ଦୀପଙ୍କର ଆଉ ବିଛଣାରେ ପଡ଼ିରହିପାରିଲା ନାହିଁ ।

ନା, ତାକୁ ଏଥର ମୁକ୍ତି ପାଇଁ ଶେଷ ଚେଷ୍ଟା କରିବାକୁ ହେବ । ରାତ୍ରିର ଅନ୍ଧକାର ମଧରେ ଆତ୍ମଗୋପନ କରି ନ ପାରିଲେ, ହୁଏତ ଆଉ ଏଠାରୁ ପଳାଇ ଯିବା ସହଜ ହେବ ନାହିଁ ।

ଦୀପଙ୍କର ଧୀରେ ଧୀରେ ବିଛଣାରୁ ଉଠି ଠିଆହେଲା ।

ଲେଦର ସୁଟ୍‌କେଶ୍‌ଟି ତଳୁ ଉଠାଇ ଆଣି, ଅନ୍ଧକାର ଭିତରେ ପାଦ ଚିପି ଚିପି ଆସ୍ତେ ଆସ୍ତେ ଯାଇ ଦରଜା ଖୋଲିଲା । ତା'ପରେ ପାଦେ, ଦୁଇପାଦ,ତିନିପାଦ...

ଆଉ ପାଦେ ଉଠାଇବା ଆଗରୁ ଦୀପଙ୍କର ଦେଖିଲା, କିଏ ଯେପରି ଜଣେ ତାରି ଆଡ଼କୁ ଆଗେଇ ଆସୁଛି ।

ଦୀପଙ୍କର ପୁଣି ପଛକୁ ପାଦଫେରାଇ, ଘର ଭିତରେ ପଶି ଦରଜା ବନ୍ଦ କରି ଦେଲା ।

ଦରଜା ଏପାଖରେ ଚୁପ୍‌ଚାପ୍ ଠିଆ ହୋଇ ରୁଦ୍ଧଶ୍ୱାସରେ ସେ ପରବର୍ତ୍ତୀ ଘଟଣାକୁ ଅପେକ୍ଷା କରୁଥିଲା ।

କିନ୍ତୁ ମୁହୂର୍ତ୍ତକ ପରେ ମନେହେଲା ଯେପରି କିଏ ଜଣେ ଆସି ବାହାରେ ତାରି ଦରଜା ପାଖରେ କାନଡେରି ଠିଆହୋଇଛି । ବୋଧହୁଏ ସେ ଦୀପଙ୍କରର ଗତିବିଧି ଲକ୍ଷ୍ୟ କରୁଛି। ଲୋକଟାକୁ ନିଶ୍ଚୟ ରାୟବାହାଦୁର ନିଯୁକ୍ତ କରିଛନ୍ତି ।

ତା'ହେଲେ, ଦୀପଙ୍କରକୁ କ'ଣ ସଂପୂର୍ଣ୍ଣରୂପେ ନଜର ବନ୍ଦୀରେ ରଖାହୋଇଛି ?

ଦୀପଙ୍କର କବାଟ ପାଖରେ କାନଡେରି ଠିଆହୋଇଥିଲା ।

ସେପାଖରେ ସେଇ ଲୋକଟା ବୋଧହୁଏ ଚୁପ୍‌ଚାପ୍ ଠିଆହୋଇଥିଲା । ଦୀପଙ୍କର ଦରଜା ଖୋଲିବାକୁ ଆଉ ସାହସ କରିପାରୁ ନଥିଲା । ସେ ଭାବୁଥିଲା ଫେରିଯିବ ପୂର୍ବ ସ୍ଥାନକୁ ଏବଂ ସୁଟ୍‌କେଶ୍‌ଟି ଯଥା ସ୍ଥାନରେ ରଖି ଦେଇ ବିଛଣାରେ ଶୋଇପଡ଼ିବ । ତେଣିକି ଯାହାଥିବ କପାଳରେ ।

କିନ୍ତୁ...

ଦରଜାର ଅପର ପାର୍ଶ୍ୱରୁ ଧୀରେ ଧୀରେ କିଏ ଯେପରି ଟିପାମାରିବାର ଶବ୍ଦହେଲା ।

କିଏ ?

ଦୀପଙ୍କର କାନଡେରି ଶୁଣିଲା ।

ହଁ, କିଏ ଯେପରି ଖୁବ୍ ଧୀରେ ଧୀରେ ଦୀପଙ୍କରକୁ ଡାକୁଛି ।

ଏତେ ରାତିରେ ଗୋପନରେ କିଏ ଆଉ ଆସିପାରେ ତା' ରୁମକୁ ?

ଦୀପଙ୍କର ସୁଟ୍‌କେସଟି ତଳେ ଥୋଇ ଦେଇ ଆସ୍ତେ ଦରଜା ଖୋଲିଲା ।

ଗୋଟିଏ ଛାୟାମୂର୍ତ୍ତି ତଡ଼ିତ୍ ବେଗରେ ଘର ଭିତରକୁ ପଶିଆସିଲା ଏବଂ ସେହି ଛାୟାମୂର୍ତ୍ତିଟି ସଙ୍ଗେ ସଙ୍ଗେ ଦରଜାଟି ଭିତରୁ ବନ୍ଦ କରିଦେଲା ।

ଧୀରେ ଧୀରେ ଦୀପଙ୍କରକୁ କହିଲା : ଆପଣ ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କ ବନ୍ଧୁ । ଆସିଛି ଆପଣଙ୍କର ମୁକ୍ତି ପାଇଁ ।

ଦୀପଙ୍କର ଲୋକଟିକୁ ଦେଖିପାରୁ ନଥିଲା ।

ସେ ଭାବୁଥିଲା ଘରର ଲାଇଟ୍ ଜଳାଇବ କି ନାହିଁ । କିନ୍ତୁ ଆଗନ୍ତୁକଟି ଯେପରି ଦୀପଙ୍କରର ମନକଥା ବୁଝିପାରି କହିଲା : ଆପଣ ଲାଇଟ୍ ଜଳାନ୍ତୁ ନାହିଁ । ତା'ହେଲେ ଦରବାନ ସବୁ ଜାଣିପାରିବ । ଆପଣ ଏଠାରୁ ପଳାଇ ଯିବା ସମ୍ଭବ ହେବ ନାହିଁ ।

ଦୀପଙ୍କର କହିଲା ଆପଣ କିଏ ? ଆପଣ ରାୟବାହାଦୁରଙ୍କର କ'ଣ ହୁଅନ୍ତି ?

ମୁଁ ଆପଣଙ୍କର ବନ୍ଧୁ । ରାୟବାହାଦୁରଙ୍କର ଚକ୍ରାନ୍ତକୁ ବ୍ୟର୍ଥ କରିବା ପାଇଁ ପ୍ରାଣ ବିସର୍ଜନ କରି ଆଗେଇ ଆସିଚି ।

: ରାୟ ସାହେବଙ୍କର ଚକ୍ରାନ୍ତ, ମାନେ ?

ଲୋକଟି ବୋଧହୁଏ ହସୁଥିଲା । ହସୁ ହସୁ କହିଲା, : ରାୟ ବାହାଦୂର ଜଣେ ବଡ଼ ଚକ୍ରାନ୍ତକାରୀ । ଆପଣ ବର୍ତ୍ତମାନ ବୁଝି ନପାରିଲେ ବି ଆଉ ଦିଇଦିନ ପରେ ବୁଝିପାରିବେ ।

: କିନ୍ତୁ ମୋ ବିରୋଧରେ ସେ କାହିଁକି ଚକ୍ରାନ୍ତ କରୁଛନ୍ତି ? ଦୀପଙ୍କର ପଚାରିଲା ।

ଆଗନ୍ତୁକଟି କହିଲା : ଆପଣ ବୋଲି କିଛି କଥା ନାହିଁ । ରାୟବାହାଦୁର ଗୋଟିଏ ଅର୍ଦ୍ଧପାଗଳ ଲୋକ । ବେଳେ ବେଳେ ତାଙ୍କ ମନରେ ସବୁ ଅଦ୍ଭୁତ ଖିଆଲ ଦେଖାଦିଏ । ସେ ସେହି ଖିଆଲ ଚରିତାର୍ଥ କରିବା ପାଇଁ ଏପରି କୌଣସି କାମ ନାହିଁ, ଯାହା କରିବାକୁ ପଛାନ୍ତି ନାହିଁ । ମୋର ମନେହୁଏ ଆପଣ ରାୟବାହାଦୁଙ୍କର ସେଇ ଖିଆଲର ଶିକାର ହୋଇଛନ୍ତି । ବାହାରେ ସେ ଆପଣଙ୍କୁ ଯେତେ ପ୍ରକାର ପ୍ରଲୋଭନ ଦେଖାଇଲେ ମଧ୍ୟ, ପିଠିରେ ହାତ ବୁଲାଇ ଯେତେ ପ୍ରକାର ସାନ୍ତ୍ୱନାବାଣୀ ଶୁଣାଇଲେ ମଧ୍ୟ, ମନ ଭିତରେ ତାଙ୍କର ଏକ ଗଭୀର ଚକ୍ରାନ୍ତର ଚକ ଘୂରୁଛି । ସେ ଆପଣଙ୍କର ସର୍ବନାଶ ନକରି ଛାଡ଼ିବେ ନାହିଁ ।

: କିନ୍ତୁ...

: ନା ନା, ଆଉ କିନ୍ତୁଫିନ୍ତୁ କିଛି ନୁହେଁ । ଆପଣ ଯଦି ମୁକ୍ତିଚାହାନ୍ତି ତେବେ ଏଇ ମୁହୂର୍ତ୍ତରେ ମୋ ସହିତ ବାହାରି ଆସନ୍ତୁ । ରାତ୍ରିର ଏହି ଗଭୀର ଅନ୍ଧକାର ମଧ୍ୟରେ ମୁଁ ଆପଣଙ୍କୁ ନେଇ ମୁକ୍ତ ଆକାଶ ତଳେ ଛାଡ଼ିଦେଇ ଆସିବି ।

ଦୀପଙ୍କର ଆଗରେ ଏହା ଆଉ ଏକ ନୂଆ ସମସ୍ୟା ହୋଇ ଦେଖା ଦେଇଥିଲା । ଅନ୍ଧକାରରେ ଆତ୍ମଗୋପନକାରୀ କିଏ ଏହି ଆଗନ୍ତୁକଟି ? କାହିଁକି ସେ ଦୀପଙ୍କରକୁ ସାହାଯ୍ୟ ଅଥବା ନିଜର କାମନା ଚରିତାର୍ଥ କରିବା ପାଇଁ ?

ଦୀପଙ୍କରର ନୀରବତା ଲକ୍ଷ୍ୟକରି ଆଗନ୍ତୁକଟି ପୁଣି କହିଲା : ଆପଣ ରାୟବାହାଦୁରଙ୍କର ସ୍ୱରୂପ ଦେଖି ନାହାନ୍ତି ଶର୍ମାଜୀ । ମୁଁ ତାଙ୍କ ସମ୍ବନ୍ଧରେ ଦୁଇଟି ଗୋଟାଏ ଘଟଣା କହିଲେ ଆପଣ ହୁଏତ ତାଙ୍କ ସମ୍ବନ୍ଧରେ ଗୋଟାଏ ଧାରଣା କରି ପାରିବେ । ଥରେ, ମାନେ ମୁଁ ଏଇ ବର୍ଷକ ତଳର କଥା କହୁଛି ।

ରାୟବାହାଦୁର କାଶ୍ମୀର ଭ୍ରମଣରେ ଯାଇଥିଲେ ।

ଫେରିଲେ ସଙ୍ଗରେ ଜଣେ ସୁନ୍ଦର ଯୁବକ ଧରି ।

ବୟସ ଆପଣଙ୍କ ପରି । ଏଇ ପଚିଶ ଛବିଶ ହେବ । ବେଶ୍ ସ୍ୱାସ୍ଥ୍ୟବାନ । ସୁନ୍ଦର ମିଷ୍ଟଭାଷୀ ।

ଯୁବକଟି ମଧ ଦୁଇ ଚାରିଦିନ ଏଠାରେ ରହିବା ପରେ ପରିବାରର ସମସ୍ତଙ୍କ ସହିତ ବେଶ୍ ଆତ୍ମୀୟତା ହୋଇଗଲା । ରାୟବାହାଦୁରଙ୍କର ପିଲାମାନଙ୍କର ମଧ ସେହି ଯୁବକଟି ସହିତ ଘନିଷ୍ଠତା ବଢ଼ିଉଠିଲା ।

ରାୟବାହାଦୂର ଯୁବକଟିକୁ ନାନା ପ୍ରକାର ପ୍ରଲୋଭନ ଦେଖାଇ ସଙ୍ଗରେ ଘେନି ଆସିଥିଲେ । ତାଙ୍କୁ କହିଥିଲେ, ଉଚ୍ଚଶିକ୍ଷା ପାଇଁ ସେ ନାନା ପ୍ରକାର ସୁଯୋଗ ସୁବିଧା କରେଇ ଦେବେ । ଇତ୍ୟାଦି ଇତ୍ୟାଦି ।

ଯୁବକଟି କିନ୍ତୁ ଏଠାରେ ରହି ଖୁବ୍ ସ୍ୱଚ୍ଛନ୍ଦରେ ବୁଲାଚଲା କରୁଥିଲା । ରାୟବାହାଦୁରଙ୍କର ପୁଅ ଝିଅମାନେ ତାକୁ ଜଣେ ବନ୍ଧୁ ହିସାବରେ ଗ୍ରହଣ କରିଥିଲେ ଏବଂ ବେଳେ ବେଳେ ସେମାନେ ସମସ୍ତେ ମିଶି ବିଭିନ୍ନ ଆଡ଼େ ବୁଲାଚଲା କରିବାକୁ ବାହାରି ଯାଉଥିଲେ ।

ଏହିପରି ପ୍ରାୟ ପନ୍ଦର ଦିନ କଟିଗଲା ।

ଦିନେ ରାୟବାହାଦୁର ସଂନ୍ଧ୍ୟାବେଳେ ସେହି ଯୁବକଟିକୁ ଡାକି ସଙ୍ଗରେ ଧରି ବୁଲି ବାହାରିଲେ । ଗାଡ଼ିରେ ଥିଲେ ରାୟବାହାଦୂର ଆଉ ସେଇ ଯୁବକଟି ।

ନିଜେ ରାୟବାହାଦୂର ଗାଡ଼ି ଡ୍ରାଇଭିଂ କରି ଯାଉଥିଲେ ।

ଫେରିଆସିଲେ ପ୍ରାୟ ରାତି ଆଠଟାରେ । ଏକା ।

ପରଦିନ ସ୍ଥାନୀୟ ସଂବାଦପତ୍ରରେ କ'ଣ ବାହାରିଲା ଜାଣନ୍ତି ?

ଗୋଟିଏ ଅପରିଚିତ ଯୁବକ ହୁଡୁ ଫଲସ୍ ଦେଖିବାକୁ ଯାଇ ଗୋଡ଼ ଖସି ଶହ ଶହ ଫୁଟ ଉପରୁ ତଳକୁ ଖସିପଡ଼ି ଆତ୍ମବଳି ଦେଇଛି ।

କିନ୍ତୁ ପରେ ଆମେ ଜାଣିପାରିଲୁ, ରାୟବାହାଦୁର ନିଜେ ସେହି ଯୁବକଟିକୁ ହୁଡୁ ଫଲ୍‌ସ ଦେଖାଇବାକୁ ନେଇ, ଠିକ୍ ପାହାଡ଼ର ଝର ପାଖରେ, ରାୟବାହାଦୂର ସେଇ ଯୁବକଟିକୁ ଠେଲିଦେଇଛନ୍ତି । ଅବଶ୍ୟ ଜଣେ ପ୍ରତ୍ୟକ୍ଷଦର୍ଶୀ ଏ ଖବର ଆମକୁ ଦେଇଥିଲା ।

ଦୀପଙ୍କର ବୋଧହୁଏ ସେଇ ଅନ୍ଧକାର ଭିତରେ ଅସ୍ପଷ୍ଟ ଚିତ୍କାର କରି ଉଠିଥିଲା ।

କିନ୍ତୁ ଆଗନ୍ତୁକଟି କହି ଚାଲିଥିଲା : ଅତୀତରେ ଏହିପରି ନାନା ପ୍ରକାର ଦୁର୍ଘଟଣା ଘଟାଇଛନ୍ତି ରାୟବାହାଦୁର । ମଣିଷର ଜୀବନ ନେଇ ଥରକୁ ଥର ସେ ଅଭିନବ ଉପାୟରେ ଖେଳ ଖେଳିଛନ୍ତି ଏବଂ ତାହା ଏତେ ସହଜ ଭାବରେ ସେ ସଂପନ୍ନ କରିଛନ୍ତି, ଯାହା ଲୋକ ଆଖିକୁ ସହଜରେ ଆସି ନାହିଁ ।

କିନ୍ତୁ ଆମେ ସବୁ ଏଗୁଡ଼ା ଆଉ ସହ୍ୟକରି ପାରୁ ନାହୁଁ । ରାୟବାହାଦୁରଙ୍କର ଏହି ସବୁ ଚକ୍ରାନ୍ତ ବ୍ୟର୍ଥ କରିବା ପାଇଁ ଆମେ କମରଭିଡ଼ି ଅଲକ୍ଷ୍ୟରେ ଲାଗି ପଡ଼ିଛୁ । ଆମର ଏହି ଅଭିଯାନରେ ରାୟବାହାଦୁରଙ୍କର ପୁଅ ଝିଅମାନେ ଅଗ୍ରଣୀ । ଆମେ ଲକ୍ଷ୍ୟ କରିଛୁ, ଆପଣ ରାୟବାହାଦୂରଙ୍କର ସେହି ବୁଢ଼ିଆଣୀ ଜାଲରେ ପଡ଼ିଛନ୍ତି । ଆଉ ସହଜରେ ଏହି ଫାନ୍ଦରୁ...

ହଠାତ୍ ବାହାରୁ କିଏ ଯେପରି ଜୋର୍‌ରେ କବାଟ ବାଡ଼େଇବାର ଶବ୍ଦ ହେଲା ଆଗନ୍ତୁକଟି ଚଞ୍ଚଳ ହୋଇ ଠିଆ ହୋଇପଡ଼ିଲା ଏବଂ ମୁହୂର୍ତ୍ତେ ଡେରି ନକରି ସେ ଦରଜା ଆଡ଼କୁ ଛୁଟିଗଲା । ବୋଧହୁଏ ଦରଜା ଖୋଲିଦେଲା ଓ ସେହି ଅନ୍ଧକାର ମଧ୍ୟରେ ଅନ୍ୟ କେହି ଜଣେ ଭିତରକୁ ପଶି ଆସିବା ମାତ୍ରକେ ଏହି ଆଗନ୍ତୁକଟି ଛୁଟି ବାହାରି ପଳାଇଲା ।

ଦୀପଙ୍କର ଏଥର ସଚେତନ ହୋଇ ଉଠିଲା ଏବଂ ସଙ୍ଗେ ସଙ୍ଗେ ଘରର ଲାଇଟ୍‌ଟା ଜଳାଇଦେଲା ।

ଦୀପଙ୍କର ଦେଖିଲା ସର୍ଦ୍ଦାରଜୀ ଜ୍ୱଳନ୍ତ ଆଖିରେ ଦୀପଙ୍କର ଆଡ଼େ ଅନାଇ ଠିଆ ହୋଇଛି ।

: ବହ କୌନ ଥା? ସର୍ଦ୍ଦାରଜୀର କଣ୍ଠରେ କର୍କଶତା ଭରି ଉଠିଥିଲା ।

: ମୁଝେ ମାଲୁମ୍ ନାହିଁ । ଦୀପଙ୍କର କହିଲା ।

ସର୍ଦ୍ଦାରଜୀ କିନ୍ତୁ ହିନ୍ଦୀ, ପଞ୍ଜାବୀ ଓ ଓଡ଼ିଆଭାଷା ସମିଶ୍ରଣରେ ସେଠାରେ ଏକ ଛୋଟ ଭାଷଣ ଦେଲେ, ଯାହାର ସାରମର୍ମ ହେଲା, ତୁମେ କାହାରି କଥାରେ କାନ ଦେବେନାହିଁ ବାବୁଜୀ । ରାୟବାହାଦୂରଙ୍କର ଏଠାରେ ଅନେକ ଶତ୍ରୁ । ଏପରିକି ରାୟବାହାଦୁରଙ୍କର ପିଲାମାନେ ମଧ୍ୟ ତାଙ୍କ ବାପାଙ୍କର ଶତ୍ରୁତା କରୁଛନ୍ତି । ଆପଣ ରାୟବାହାଦୂରଙ୍କର ମେହେମାନ କିନ୍ତୁ ସେମାନେ ଆପଣଙ୍କୁ ଅପମାନିତ କରିବା ପାଇଁ ଏବଂ ଏଠାରୁ ତଡ଼ିଦେବା ପାଇଁ ନାନା ପ୍ରକାର ଷଡ଼ଯନ୍ତ୍ର କରୁଛନ୍ତି । ସେଇମାନଙ୍କ ଭିତରୁ ଜଣେ କେହି ବୋଧହୁଏ ଆସିଥିଲା । ତମେ ବାବୁଜୀ ଖବରଦାର ସେମାନଙ୍କର କଥା ଶୁଣିବ ନାହିଁ । ଯଦି ଶୁଣିବ ବିପଦରେ ପଡ଼ିବ । ମୁଁ ବି ଏଇ ଦରଜା ସାମ୍‌ନାରେ ଖଟିଆ ପକେଇ ଶୋଉଛି, ଦେଖିବି ଆଉ କିଏ ଆସିବ ତମ ପାଖକୁ । ରାତି ଅନେକ ହେଲାଣି ତମେ ଏଥର ଶୋଇପଡ଼ ବାବୁଜୀ ।

ସର୍ଦ୍ଦାରଜୀ ଏତକ ଉପଦେଶ ଦେଇ ଘରୁ ବାହାରି ଚାଲିଗଲା ।

ଦୀପଙ୍କରର ଚେତନା ଶକ୍ତି ଧୀରେ ଧୀରେ ଯେପରି ବିଲୋପ ହେବାକୁ ବସିଥିଲା

ନା, ସେ ଏକ ପାଗଳ ଗାରଦରେ ବନ୍ଦୀ ହୋଇଛି ।

ଯେଉଁମାନେ ତା' ଚାରିପାଖରେ ଘୂରିବୁଲୁଛନ୍ତି, ସମସ୍ତେ ଗୋଟିଏ ଗୋଟିଏ ପାଗଳ । ତାକୁ ଦଳକୁ ଟାଣିବା ପାଇଁ ସମସ୍ତେ ଆପ୍ରାଣ ଚେଷ୍ଟା କରୁଛନ୍ତି । ତା'ର ଆଉ ଏଠାରୁ ନିସ୍ତାର ନାହିଁ ।

ଦୀପଙ୍କର ଲାଇଟ୍ ଲିଭାଇ ଦେଇ ଭଲ ପିଲାଟି ପରି ବିଛଣାରେ ଶୋଇପଡ଼ିଲା । ଦେଖାଯାଉ, ଯାହାଥିବ କପାଳରେ । ସକାଳ ହେଉ ।

ସେଦିନ ନାନ ଭାବନା ଦୁର୍ଭାବନା ଭିତରେ ଦୀପଙ୍କର ଆଖିକୁ କେତେବେଳେ ନିଦ ଆସିଯାଇଥିଲା, ସେ ଆଉ କିଛି ଜାଣିପାରି ନଥିଲା ।

କିନ୍ତୁ ସକାଳୁ ଗୋଟାଏ ପ୍ରଚଣ୍ଡ ଗୋଳ ଶୁଣି ତା'ର ନିଦ ଭାଙ୍ଗିଗଲା ।

ତା'ର ମନେ ହେଲା ଦ୍ୱାରରୁ ଠିକ୍ ତାର ରୁମ୍‌ର ପଛ ପଟରୁ କିଏ ଯେପରି ଚିତ୍କାର କରି କହୁଛି ଖୁଣ୍ ଖୁଣ୍...

ଦୀପଙ୍କର ଚମକି ପଡ଼ି ବିଛଣାରୁ ଉଠି ଠିଆ ହୋଇ ପଡ଼ିଲା । ଦେଖିଲା ସକାଳ ହୋଇଯାଇଛି ।

କିନ୍ତୁ ଖୁଣ୍ କିଏ ହେଲା ?

ଦୀପଙ୍କର ଦଉଡ଼ି ଯାଇ ଦରଜା ଖୋଲି ବାହାରକୁ ଚାହିଁ ଦେଖିଲା ଗୋଟାଏ ପୋଲିସ୍ ଭ୍ୟାନ୍ ରାୟବାହାଦୁରଙ୍କ ଲନ୍ ଭିତରକୁ ପଶି ଆସୁଛି ।

ତା'ହେଲେ, ତା'ହେଲେ....

ଦୀପଙ୍କରର ସମସ୍ତ ଶରୀରଟା କମ୍ପି ଉଠିଲା ।

ସେ ଦରଜାଟା ବନ୍ଦ କରି ଭିତରକୁ ଫେରି ଆସୁ ଆସୁ ଦେଖିଲା ତା' ସୁଟ୍‌କେଶ୍‌ଟା ଖୋଲା ।

କିନ୍ତୁ......

ଏ ଯେ ରକ୍ତ । ସୁଟ୍‌କେଶ୍ ଭିତରେ ଥିବା ତା'ର ସମସ୍ତ ଲୁଗାପଟା ରକ୍ତାକ୍ତ ଏବଂ ଗୋଟାଏ ରକ୍ତବୋଳା ଛୁରୀ....

ଦୀପଙ୍କର ଆଉ ଆତ୍ମ ସମ୍ବରଣ କରିପାରିଲା ନାହିଁ ।

କିନ୍ତୁ କିପରି କେଜାଣି ଚିତ୍କାର କରିବାକୁ ଯାଇ ମଧ୍ୟ ତା' ପାଟିରୁ କୌଣସି ଶବ୍ଦ ବାହାରିଲା ନାହିଁ ।

ସେ କେତୋଟି ମୁହୂର୍ତ୍ତ ଏକ ଲୟରେ ତା' ସୁଟ୍‌କେସ୍ ଭିତରେ ଥିବା ରକ୍ତବୋଳା ଲୁଗାପଟା ଓ ଛୁରିଟା ଆଡ଼କୁ ଚାହିଁ ମନପ୍ରାଣରେ ସଞ୍ଚିତ ସମସ୍ତ ସାହସ ହରାଇ ବସିଥିଲା ।

ହୁଏତ ଆଉ ମୁହୂର୍ତ୍ତକ ପରେ ପୋଲିସ ଆସି ପହଞ୍ଚିବ ଦୀପଙ୍କର ଘରେ । ଦୀପଙ୍କରର ଏହି ରକ୍ତବୋଳା ଲୁଗାପଟା ଆଉ ଛୁରିଟା ପାଇ ସୁଦ୍ଧା ସେ କ'ଣ ଦୀପଙ୍କରକୁ କ୍ଷମା କରି ପାରିବ ?

କିନ୍ତୁ ଖୁଣ୍ ହେଲା କିଏ ?

ସ୍ୱୟଂ ରାୟବାହାଦୂର ସାହେବ କ'ଣ କାଲି ରାତିରେ ଖୁଣ୍ ହୋଇଛନ୍ତି ? ଯେଉଁ ଲୋକଟା କାଲି ରାତ୍ରିର ଅନ୍ଧକାର ମଧ୍ୟରେ ତା' ଘରେ ପଶି ରାୟବାହାଦୁରଙ୍କ ବିରୋଧରେ ନାନା ଅଭିଯୋଗ କରୁଥିଲା, ସେହି ଲୋକଟା କ'ଣ ରାୟବାହାଦୁରଙ୍କୁ ଖୁଣ୍ କରିଛି ? ନା ରାୟବାହାଦୂର ସ୍ୱୟଂ....

ହଠାତ୍ ଦୀପଙ୍କରର ଭାବନା ଥମିଗଲା ଏବଂ ତା'ର ମନେହେଲା ଏଇ ହୁଏତ ସୁବର୍ଣ୍ଣ ସୁଯୋଗ । କାରଣ ଲାସ୍ ପାଖରେ ବର୍ତ୍ତମାନ ସମସ୍ତେ ଯାଇ ଜଡ଼ହୋଇଥିବେ ଏବଂ ପୋଲିସ୍ ଗୋଟି ଗୋଟି କରି ସମସ୍ତଙ୍କଠାରୁ ଜମାନବନ୍ଦୀ ନେଉଥିବ ।

ହଁ, ହଁ ଏହାପରେ ଆଉ ହୁଏତ ଏ ଘର ଛାଡ଼ିବାର ସୁଯୋଗ ମିଳିବ ନାହିଁ ।

ଆଉ ମୁହୂର୍ତ୍ତେ ନୁହେଁ । ଦୀପଙ୍କର ସାର୍ଟଟା ପିନ୍ଧି ପକାଇ ସଙ୍ଗେ ସଙ୍ଗେ ଘରୁ ବାହାରି ପଡ଼ିଲା ।

ହଁ, ଏ ପାଖଟାରେ କୌଣସି ଜନମାନବର ଦେଖା ନାହିଁ, ପାଦେ, ଦୁଇପାଦ....
ଦୀପଙ୍କର ଧୀରେ ଧୀରେ ତଳକୁ ଓହ୍ଲେଇଗଲା ।
ତା'ପରେ ଲନ୍ ।
ତା'ପରେ ରାଜରାସ୍ତା ।
ତା'ପରେ ଦୀପଙ୍କର ଦୌଡ଼ିବାକୁ ଲାଗିଲା ।

ଦୀପଙ୍କର ଦ୍ରୁତ ଗତିରେ ଛୁଟିଥିଲା ।

ତା'ର ମନେହେଉଥିଲା, ଯେପରି କେହି ଦଳେ ଲୋକ ତାକୁ ଧରିବା ପାଇଁ ତା' ପଛରେ ଧାଇଁଛନ୍ତି ।

ସେ ପଛକୁ ଚାହିଁବାକୁ ବି ସାହସ କରୁ ନଥିଲା ।

ତା' ସାମ୍‌ନାରେ ଗୋଟାଏ ବସ୍ ଧୀର ଗତିରେ ଆଗେଇ ଯାଉଥିଲା ।

ଦୀପଙ୍କର ସେଇ ବସ୍ ଉପରକୁ ଡେଇଁପଡ଼ି ଯେପରି ସ୍ୱସ୍ତିର ନିଶ୍ୱାସ ପକାଇଲା ।

ବସ୍‌ରେ ପ୍ରଚଣ୍ଡ ଭିଡ଼ । ତଥାପି ଦୀପଙ୍କର ଭାଗ୍ୟ ଭଲ ଯେ ସେ ବସ୍‌ର ହ୍ୟାଣ୍ଡଲଟା ଧରି ଉପରକୁ ଉଠି ପାରିଥିଲା ।

ବସ୍ କେଉଁଠିକୁ ଯାଉଥିଲା ତାକୁ ଜଣା ନାହିଁ । ଏଇ ମୁହୂର୍ତ୍ତରେ ତା'ର ସେକଥା ଜାଣିବାର ବି ଆବଶ୍ୟକ ନାହିଁ ।

କିନ୍ତୁ ଦୀପଙ୍କର ବସ୍ ଉପରକୁ ଉଠିଯାଇ ଯେପରି ନିଜକୁ ନିରାପଦ ମନେ କରିଲା । ତା'ର ମନେହେଲା ସେ ରାୟବାହାଦୁରଙ୍କର ସେହି ପାଗଳ ଗାରଦ ଭିତରୁ ଖସି ଆସି ପାରିଛି । ଏଥର ବସ୍ ତାକୁ ଯୁଆଡ଼େ ନେଉଛି ନେଉ । ସେ ମୁକ୍ତ ।

ଦୀପଙ୍କର ବସର ଭିଡ଼ଠେଲି ଧୀରେ ଧୀରେ ଭିତରକୁ ପଶୁଥିଲା । ଗୋଟିଏ ହେଲେ ସିଟ୍ ଖାଲି ନାହିଁ ।

କିନ୍ତୁ ଗୋଟିଏ ଲେଡିସ୍ ସିଟ୍‌ରେ ଜଣେ ତରୁଣୀ ଏକା ବସିଛି । ହେଲେ ସେ ଆଖି ବୁଜି ଶୋଇ ଯାଇଛି । ତା' ପାଖରେ ଗୋଟିଏ ସିଟ୍ ଖାଲି ଅଛି ।

ଦୀପଙ୍କର କିନ୍ତୁ ଭୀଷଣ କ୍ଳାନ୍ତ ହୋଇପଡ଼ିଥିଲା ।

ରାୟବାହାଦୁରଙ୍କ ଘରୁ ବାହାରି ସେ ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ଦଉଡ଼ିଛି । ଏପରି କ୍ଷିପ୍ର ଗତିରେ ଦୌଡ଼ିବାର ଅଭ୍ୟାସ ତା'ର ଅନେକ ଦିନରୁ ନାହିଁ ନାକରୁ ତା'ର ଖରଶ୍ୱାସ ବାହାରୁ ଥିଲା । ଛାତିର ସ୍ପନ୍ଦନ ବଢ଼ିଯାଇଥିଲା ଅନେକ ଗୁଣ ।

ସେ ଲୋଡୁଥିଲା ଟିକିଏ ବିଶ୍ରାମ । ଅନ୍ତତଃ ଟିକିଏ ବସି ପାରିଲେ ହୁଏତ ସାମାନ୍ୟ ସ୍ୱସ୍ତି ବୋଧ କରନ୍ତା ।

ଆହୁରି ଅନେକ ଲୋକ ରଡ଼ଧରି ଠିଆହୋଇଥିଲେ । କେହି ଯେତେବେଳେ ସେହି ଖାଲି ସିଟ୍‌କୁ ଅଧିକାର କରିବା ପାଇଁ ଆଗେଇ ଯାଇନାହାନ୍ତି, ଦୀପଙ୍କର ରିକ୍‌ସ ନେବ କାହିଁକି ? ଏକେ ତ ବିଦେଶୀ ଭୂଇଁ । ତା'ପରେ ଭାଗ୍ୟଦେବୀ ତା' ଉପରେ ସୁପ୍ରସନ୍ନ

ନୁହନ୍ତି । ସେ ବି ରଡ଼ଧରି ଠିଆହେଲା; କିନ୍ତୁ ସେହି ଖାଲି ସିଟ୍‌ଟା ଉପରେ ତା'ର ଦୁଇଟା ଆଖି ସ୍ଥିର ହୋଇ ରହିଥିଲା ।

କଣ୍ଡକ୍ଟର ଆସି ଟିକେଟ୍ ମାଗିଲା ।

ଦୀପଙ୍କର ତା' ଛାତି ପକେଟ୍‌ରେ ହାତଭରି ଦେଖିଲା, କିଛି ଟଙ୍କା ତା'ପାଖରେ ଅବଶିଷ୍ଟ ଅଛି ।

ଦୀପଙ୍କର ଗୋଟିଏ ଦଶଟଙ୍କିଆ ନୋଟ୍ କଣ୍ଡକ୍ଟର ହାତକୁ ବଢ଼ାଇଦେଲା । କୁଆଡ଼କୁ ଯିବେ, ଟିକେଟ୍ କୋଉଠିକି ହେବ ଇତ୍ୟାଦି କିଛି ନ ପଚାରି କଣ୍ଡକ୍ଟର ଗୋଟିଏ ଟିକେଟ୍ ସହ ବାକି ପଇସା ଦୀପଙ୍କର ହାତକୁ ଫେରାଇଦେଲା । ଦୀପଙ୍କର ହାତବଢ଼ାଇ ପଇସା ନେଲା ବେଳେ କଣ୍ଡକ୍ଟର ଦୀପଙ୍କରର ଅସହାୟ ଅବସ୍ଥା ଦେଖି ଇଙ୍ଗିତରେ ଖାଲି ସିଟ୍‌ଟି ଆଡ଼େ ଆଙ୍ଗୁଳି ଦେଖାଇଦେଲା ।

ଦୀପଙ୍କର ଏଥର କୌଣସି ଦ୍ୱିଧାବୋଧ ନ କରି ବସିପଡ଼ିଲା ।

ଠିଆହୋଇଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଦି'ଜଣ ଦୀପଙ୍କରର ମୁହଁଆଡ଼କୁ ଚାହିଁଲେ । ସେ କିନ୍ତୁ ନୀରବରେ ତଳକୁ ମୁହଁପୋତି ବସିରହିଥିଲା ।

ବସ୍ ଚାଲିଥିଲା ।

କୁଆଡ଼େ ସେ ଯାଉଛି ?

କଣ୍ଡକ୍ଟରକୁ ହୁଏତ ପଚାରିଥିଲେ ହୋଇଥାଆନ୍ତା । କିନ୍ତୁ ସେ ଯଦି ସନ୍ଦେହ କରେ ?

ଦରକାର ନାହିଁ ।

ବସ୍ ଯୁଆଡ଼େ ଯାଉଛି ଯାଉ । ରାୟବାହାଦୁରଙ୍କ ପାଗଳା ଗାରଦରୁ ସେ ମୁକ୍ତିପାଇଛି ।

ଏହିପରି ନାନା ଭାବନା ଦୁର୍ଭାବନା ମଧ୍ୟରେ ଦୀପଙ୍କରର ଆଖି ଦୁଇଟା ଧୀରେ ବୁଜି ହୋଇଆସୁଥିଲା ।

ଏକ ସମୟରେ ସେ ସେହି ବସ୍‌ରେ, ଏକ ଅପରିଚିତା ସୁନ୍ଦରୀ ତରୁଣୀ ପାଖରେ ଆଖିବୁଜି ଶୋଇପଡ଼ିଲା ।

କିନ୍ତୁ ଏକ ସମୟରେ କାହାର ସ୍ପର୍ଶ ଓ ଡାକରେ ଦୀପଙ୍କରର ନିଦଭାଙ୍ଗିଗଲା ।

ସେ ଦେଖିଲା ପାଖରେ ବସିଥିବା ତରୁଣୀଟି ଦୀପଙ୍କରର ଦେହରେ ହାତ ମାରି ଡାକୁଛି ଏବଂ ଦୀପଙ୍କରର ମୁଣ୍ଡଟା ତରୁଣୀଟିର ଛାତି ଉପରେ ରହିଛି ।

ଦୀପଙ୍କର ସଚେତନ ହୋଇ ଲଜ୍ଜିତ ହେଲା ।

କ୍ଷିପ୍ର ବେଗରେ ମୁଣ୍ଡଟା ଉଠାଇ ଆଣିଲା ।

ତରୁଣୀଟି ଦୀପଙ୍କର ଆଡ଼େ ଚାହିଁ କହିଲା : ଟିକିଏ ସୋଜା ହୋଇ ବସନ୍ତୁ । ଚଳନ୍ତା ବସ୍‌ରେ ଶୋଇଲେ ଅନ୍ୟର ଅସୁବିଧା ହୁଏ ।

ଦୀପଙ୍କର ତରୁଣୀଟି ମୁହଁକୁ ଚାହିଁଲା । ସେ ଭାବୁଥିଲା କହିବାକୁ ଅନ୍ୟକୁ ଉପଦେଶ ଦେବା ଆଗରୁ ନିଜ ଆଡ଼କୁ ଚାହିଁବା ପାଇଁ ।

କିନ୍ତୁ ନୀରବ ହୋଇଗଲା ।

ବସ୍ ଚାଲିଥିଲା ।

ତରୁଣୀଟି ରହି ରହି ଲୁଚେଇ ଲୁଚେଇ ଦୀପଙ୍କର ମୁହଁଆଡ଼େ ଚାହୁଁଥିଲା । ଚାରି ଆଖିର ମିଳନ ହୋଇଯିବା କ୍ଷଣି, ତରୁଣୀଟି ବାହାର ଆଡ଼କୁ ମୁହଁ ବୁଲାଇ ନେଉଥିଲା ।

ଦୀପଙ୍କର ମଧ୍ୟ ଖୁବ୍ ସ୍ୱସ୍ତି ଅନୁଭବ କରୁଥିଲା ।

ଧୀରେ ଧୀରେ ତା'ର ସମସ୍ତ କ୍ଳାନ୍ତି ଓ ଅନୁଶୋଚନା ଏହି ତରୁଣୀଟିର ସାନିଧ୍ୟରେ ଆସି ଯେପରି ଶେଷ ହୋଇଯାଇଥିଲା ।

ଦୀପଙ୍କର ମନେ ମନେ ଭାବୁଥିଲା, ତରୁଣୀଟି ସହିତ କଥାବାର୍ତ୍ତା କରିବା ପାଇଁ; କିନ୍ତୁ କ'ଣ କହି ସେ କଥା ଆରମ୍ଭ କରିବ ? ତା'ର ହୁଏତ କେହି ଆପଣାର ଲୋକ ଆଖପାଖର କୌଣସି ଆସନରେ ବସିଥିବେ । ହୁଏତ ତୀକ୍ଷ୍ଣ ନଜର ରଖିଥିବେ ତା' ଉପରେ ।

ତଥାପି ଅନେକ ସମୟ ପରେ ବସ୍ ଗୋଟାଏ ବାଙ୍କ ବୁଲିବା ବେଳେ, ଦୀପଙ୍କର ସମସ୍ତ ଦେହ ଭାର ତରୁଣୀଟି ଉପରେ ନଦି ହୋଇ ପଡ଼ିଲା ।

ମୁହୂର୍ତ୍ତକ ମଧ୍ୟରେ ଦୀପଙ୍କର ସହଜ ହୋଇ ବସୁ ବସୁ କହିଲା, : ମୁଁ ଏଠି ବସିବା ଦ୍ୱାରା ଆପଣଙ୍କର ଅସୁବିଧା ହେଉଛି ?

ତରୁଣୀଟି ସାମାନ୍ୟ ହସିଲା, କହିଲା : କିନ୍ତୁ ଉପାୟ କ'ଣ ଅଛି ? ଇଏତ ଆଉ ପ୍ରାଇଭେଟ୍ କାର୍ ନୁହେଁ ?

ଦୀପଙ୍କର ଏଥର ମନେ ମନେ ଟିକିଏ ଖୁସିହେଲା । ଭାବିଲା ତରୁଣୀଟିର ତା'ହେଲେ ବିବେଚନା ଶକ୍ତି ଅଛି; ଆଉ ପରିସ୍ଥିତ ସହିତ ଖାପଖୁଆଇ ଚଳିବାର ଅଭ୍ୟାସ ମଧ୍ୟ ଅଛି ।

ପୁଣି କିଛି ସମୟର ନୀରବତା ।

ଏଥର ତରୁଣୀଟି ପଚାରିଲା : ଆପଣ କେଉଁଠିକି ଯିବେ ?

: ଉଁ ।

ଦୀପଙ୍କର ମହା ଚିନ୍ତାରେ ପଡ଼ିଗଲା ।

ସେ ତରୁଣୀଟିର କଥା ନ ଶୁଣିଲା ପରି ଛଳନା କରି ଆଖିବୁଜି ଶୋଇବାକୁ ଚେଷ୍ଟାକଲା ।

ତରୁଣୀଟି କିନ୍ତୁ ଚୁପ୍ ହେଲା ନାହିଁ । ସେ କହିଲା : ପୁଣି ଆପଣ ଢୋଳେଇଲେ । ଆପଣ ନିଶ୍ଚୟ ଜାଣନ୍ତି ଜଣେ ଲୋକ ଢୋଳେଇ ଆଉ ଜଣକ ଉପରେ ପଡ଼ିଲେ ତା'ର କ୍ଷତିହୁଏ ।

ଦୀପଙ୍କର ଆଖି ମେଲି ଚାହିଁଲା । ମନେ ମନେ ଖୁସିହେଲା, ଧୀରେ ଧୀରେ ତରୁଣୀଟି ତା'ପାଖରେ ସହଜ ହୋଇଉଠୁଛି ।

ସେ କହିଲା : ମୁଁ ଜାଣେ । କିନ୍ତୁ ପରିସ୍ଥିତି ବେଳେ ବେଳେ ମଣିଷକୁ ତା' ନୀତିରୁ ଟାଣି ଓଟାରି ନିଏ ।

ତରୁଣୀଟି ଏଥର ହସି ହସି କହିଲା : ଆପଣଙ୍କର କିନ୍ତୁ ସବୁବେଳେ ମନେରହିବା ଉଚିତ ଆପଣ ଜଣେ ଭଦ୍ରମହିଳା ପାଖରେ ବସିଛନ୍ତି ।

ଦୀପଙ୍କର କ'ଣ ଉତ୍ତର ଦେବାକୁ ଯାଉଥିଲା କିନ୍ତୁ ହଠାତ୍ ତା'ମୁହଁରୁ ଏକ ଯନ୍ତ୍ରଣାର ଧ୍ୱନି ଫୁଟିଉଠିଲା ।

ସେ ସାମ୍ନାକୁ ଚାହିଁ ଦେଖିଲା ଜଣେ ସୁସ୍ଥ ସବଳ ଯୁବକ ତା' ଆଡ଼େ ଏକ ଅଦ୍ଭୁତ ହସହସି କହୁଛି: ସରି । ବସ୍‌ରେ ଯାହା ଭିଡ଼ତ ଦେଖୁଚନ୍ତି । ଆପଣଙ୍କ ଗୋଡ଼ଟା ଟିକିଏ ଭିତରକୁ ଟାଣିବସିଥିଲେ ଏହି ଦୁର୍ଘଟଣା ଘଟି ନଥାନ୍ତା ।

ସେହି ଯୁବକଟି ଇଚ୍ଛାକରି ଯେ ଦୀପଙ୍କରର ଗୋଡ଼ଟା ମାଡ଼ିଦେଇଥିଲା, ତାହା ଜାଣି ପାରି ମଧ୍ୟ ଦୀପଙ୍କର ଯୁବକଟିକୁ କିଛି କହି ପାରିଲା ନାହିଁ । ନୀରବରେ ଝରକା ବାଟେ ବାହାରକୁ ଚାହିଁବାକୁ ଯାଇ ଦେଖିଲା, ତରୁଣୀଟି ମୁହଁରେ ମଧ୍ୟ ସମବେଦନା ଫୁଟିଉଠିଛି, ସେ ଧୀରେ ଧୀରେ କହିଲା : ଆଜିକାଲି ଲୋକମାନେ ଦିନକୁ ଦିନ କିପରି ଅସହିଷ୍ଣୁ ହୋଇ ଉଠୁଛନ୍ତି ।

ଦୀପଙ୍କର ବୁଲି ଅନେଇଲା, ସେହି ଯୁବକଟିର ଆଖି ଦୁଇଟା ସ୍ଥିର ହୋଇ ରହିଛି ତରୁଣୀଟି ଉପରେ ।

ବସ୍ ଚାଲିଥିଲା ।

କିଛି ସମୟର ନୀରବତା ପରେ ତରୁଣୀଟି ପୁଣି ପଚାରିଲା : ଆପଣ କୁଆଡ଼କୁ ଯିବେ ତ କହିଲେ ନାହିଁ ?

ଦୀପଙ୍କର ପୁଣି ଚମକି ଉଠିଲା ।

: ମୁଁ, ହଁ, ମୁଁ ଶେଷଯାଏ ଯିବି ।

: ଶେଷଯାଏ ମାନେ ?

: ମାନେ ବସ୍ ଯେତେବାଟ ଯାଏ ଯିବ ।

: ବସ୍ ତ ନେତାରହାଟ ଯିବ । ତରୁଣୀଟି କହିଲା ।

: ମୁଁ ବି ନେତାରହାଟ ଯିବି ।

: ଆପଣ କ'ଣ ବୁଲିବାକୁ ଯାଉଛନ୍ତି ?

: ହଁ, ବୁଲିବାକୁ ଯାଉଛି । ଶୁଣିଛି ନେତାରହାଟ ଖୁବ୍ ଭଲ ଜାଗା । ଆଉ ଆପଣ ? ଆପଣ କେଉଁଠିକୁ ଯିବେ ?

: ମୁଁ ବି ସେଇଠିକି ଯାଉଛି ।

: ବୁଲିବାକୁ ?

: ନା, ଠିକ୍ ବୁଲିବାକୁ ନୁହେଁ । ମୋର ଜଣେ ବାନ୍ଧବୀ ସେଠି ରହନ୍ତି । ଅନେକ ଦିନରୁ ତାଙ୍କ ସହିତ ଦେଖାହୋଇନାହିଁ । ଦି'କାମ ହେବ । ବୁଲିବା ବି ହେବ ଦେଖା ସାକ୍ଷାତ ବି ହେବ ।

: ହୁଁ, ଦୀପଙ୍କର ଆଉ କ'ଣ ପଚାରିବ ମନେ ମନେ ଚିନ୍ତା କରୁଥିଲା ।

: ଆପଣ କ'ଣ ଏଇ ପ୍ରଥମ ଆସୁଛନ୍ତି ନେତାରହାଟକୁ? ତରୁଣୀଟି ପୁଣି ପଚାରିଲା ।

: ହଁ ପ୍ରଥମ । ଆପଣ ଅନେକ ଥର ଆସିଥିବେ ।

: ହଁ ।

: ନେତାରହାଟରେ ବିଶେଷ ଦର୍ଶନୀୟ ସ୍ଥାନ କ'ଣ ?

: ପ୍ରାକୃତିକ ସୌନ୍ଦର୍ଯ୍ୟ । ତା'ଛଡ଼ା ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ସବୁଠାରୁ ଭଲ ଦେଖାଯାଏ ।

ବସ୍ ଚାଲିଥିଲା ।

ପୁଣି କିଛି ସମୟର ନୀରବତା ।

ଆମେ କିନ୍ତୁ ଆଉ ଅଳ୍ପ ସ‌ମୟ ପରେ ପାହାଡ଼ ଉପରକୁ ଉଠିବା । ତରୁଣୀଟି କହିଲା ।

: ପାହାଡ଼ ଉପରକୁ ମାନେ ?

: ଆରେ ଆପଣଙ୍କର ନେତାରହାଟ ସମ୍ବନ୍ଧରେ କିଛି ଧାରଣା ନାହିଁ ?

ପ୍ରକୃତରେ ଦୀପଙ୍କରର ନେତାରହାଟ ସମ୍ବନ୍ଧରେ ଧାରଣା ତ ଦୂରର କଥା, ନେତାର ହାଟର ନାମ ସେ ଏଇ ପ୍ରଥମ ଶୁଣିଲା ।

ତରୁଣୀଟି କହିଲା : ନେତାରହାଟରେ କିନ୍ତୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଅପୂର୍ବ । ଆପଣ ଯଦି 'ପାଲାମଉ' ଡାକବଙ୍ଗ୍ଲୋରେ ରହନ୍ତି, ତେବେ ଦୂର ପାହାଡ଼ର ଅପୂର୍ବ ଶୋଭା ଦେଖି ଆପଣ ନିଶ୍ଚୟ ମୁଗ୍ଧ ହେବେ; ଆଉ ଯଦି କବି ପ୍ରକୃତି ସାମାନ୍ୟ ଆପଣଙ୍କର ଥାଏ, ତେବେ ତ ଆଉ କହିବାର କିଛି ନାହିଁ ।

ଦୀପଙ୍କର ଲକ୍ଷ୍ୟକଲା, ତରୁଣୀଟି ଧୀରେ ଧୀରେ ତା' ପାଖରେ ସହଜ ହୋଇ ଆସୁଛି । ଏଥର ଟିକିଏ ଆନ୍ତରିକତା ଅର୍ଜନ ପାଇଁ ଚେଷ୍ଟା ନକଲେ ଅନ୍ୟାୟ ହେବ । ତା'ଛଡ଼ା ଦୀପଙ୍କରର ମଧ୍ୟ ନିଜର ସୁରକ୍ଷା ପାଇଁ ଜଣେ ସ୍ଥାନୀୟ ଲୋକର ପ୍ରୟୋଜନ ।

ଦୀପଙ୍କର କହିଲା : ପ୍ରକୃତରେ ଏହି ବିଦେଶରେ ଆପଣଙ୍କ ପରି ଜଣେ 'ଗାଇଡ୍' ପାଇ ମୁଁ କୃତଜ୍ଞ । ଅବଶ୍ୟ ଗାଇଡ୍ ଅର୍ଥର ଆପଣ ଯେପରି ଅନର୍ଥ ନକରନ୍ତି । ମୁଁ କହୁଛି ଗାର୍ଡ଼ିଆନ୍ ସେନ୍ସରେ ।

ଏଥର ତରୁଣୀଟି ଫେଁ ଫେଁ ହୋଇ ହସିଉଠିଲା । କହିଲା : ନିଜେ ପଛେ ମୁଁ ଅସହାୟ ହୋଇଥାଏ । ଆପଣ ମୋତେ ଗାର୍ଡ଼ିଆନ୍ ରୂପେ ମନେ ମନେ ଧରିନେଇ ନିଶ୍ଚିନ୍ତ ରୁହନ୍ତୁ ।

ଦୀପଙ୍କର କହିଲା : ଆପଣ ବିଶ୍ୱାସ କରିବେ ନାହିଁ, ମୁଁ ଏଇ ବସ୍‌ରେ ଉଠିବା ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଜକୁ ଏପରି ଅସହାୟ ମନେ କରୁଥିଲି, ଯାହା କହିବାର ଭାଷା ବି ଖୋଜିଲେ ମିଳିବ ନାହିଁ । କିନ୍ତୁ ଆପଣଙ୍କ ପାଖରେ ଏଇ ସିଟ୍‌ରେ ବସିବା ପରଠାରୁ ମୁଁ ଯେପରି ଧୀରେ ଧୀରେ ଆତ୍ମସତ୍ତା ଫେରିପାଉଛି, ଏବଂ ମୋର ମନେ ହେଉଛି...

: ଏଇ ଦେଖନ୍ତୁ, ଦେଖନ୍ତୁ । ତରୁଣୀଟି ହଠାତ୍ ଚିତ୍କାର କରି ଉଠିଲା ।

ଦୀପଙ୍କର ଦେଖିଲା କେତେ ଗୁଡ଼ାଏ ଘଞ୍ଚ ଗଛ-ଲତାର ଏକ ଜଙ୍ଗଲ ମଧ୍ୟରେ ସେମାନଙ୍କର ବସ୍‌ଟା ଧୀରେ ଧୀରେ ପ୍ରବେଶ କରୁଛି ।

ତରୁଣୀଟି କହିଲା : ଏଉଠୁ ପାହାଡ଼ ଆରମ୍ଭ ହୋଇଗଲା । ଆମେ ଏହିଠାରୁ କେତେ ଉପରକୁ ଉଠିବା ଜାଣନ୍ତି ? ପ୍ରାୟ ତିନି ହଜାର ସାତଶହ ଫୁଟ୍ ।

ସେମାନଙ୍କର ବସ୍‌ଟା ଧୀରେ ଧୀରେ ବୁଲି ବୁଲି ଉପରକୁ ଉଠୁଥିଲା ।

ଦୁଇ ପାଖର ପ୍ରାକୃତିକ ଶୋଭା ବଡ଼ ଚମତ୍କାର ମନେ ହେଉଥିଲା । ଦୀପଙ୍କରର ମନଟା ଧୀରେ ଧୀରେ ସେହି ଆଡ଼କୁ ଆକୃଷ୍ଟ ହୋଇ ଉଠିଥିଲା ।

ତରୁଣୀଟି କହିଲା : ଏଇ ନେତାରହାଟକୁ କହନ୍ତି ବିହାରର "କୁଇନ୍ ଅଫ୍ ବିଉଟି ସ୍ପଟସ୍" । ପ୍ରକୃତରେ ଅପୂର୍ବ । ମୁଁ ଯେତେଥର ଏଠାକୁ ଆସିଛି, ଏହାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଛି; ନହେଲେ ମୁଁ ଏଇଠି ପାଟିବୁଜି ଚୁପ୍‌ଚାପ ବସିରହି ଖାଲି ବନଲତା ଦେଖୁ ଥାଆନ୍ତି ।

: କିନ୍ତୁ ଚୁପ୍‌ଚାପ୍ ବସି ରହିଲେ ପ୍ରକୃତରେ ଶୋଭା ଉପଭୋଗ କରିହୁଏ ।

: ନା, ନା, ମୁଁ କିନ୍ତୁ ଆପଣଙ୍କ ସହିତ ଏକମତ ନୁହେଁ । ହୁଏତ କବି ବା ଭାବୁକମାନଙ୍କ ପାଖରେ ଏହି ଚୁପ୍‌ଚାପ୍ ରହିବାର ମୂଲ୍ୟ ଢେର ହୋଇପାରେ, ମୋତେ କିନ୍ତୁ ଜଣେ ଗଳ୍ପସଂଗୀ ନ ପାଇଲେ କିଛି ଭଲ ଲାଗେ ନାହିଁ ।

ତରୁଣୀଟି ହସିଲା । କହିଲା : ତା'ହେଲେ ଆପଣ ସଂଗୀବିହୀନ ହୋଇ ଏକା ଭ୍ରମଣରେ ବାହାରି ପଡ଼ିଛନ୍ତି କିପରି?

ଏଥର ଦୀପଙ୍କର ବି ହସିଲା । କହିଲା : ସଙ୍ଗୀ ବା ସହଯାତ୍ରୀ ଯାହା କୁହନ୍ତୁ, ଏଇ ସଭ୍ୟ ଜଗତରେ ସେତକର ଅଭାବ ହୁଏ ନାହିଁ । ଏଇ ଧରନ୍ତୁ ଆପଣଙ୍କ ସହିତ ପୂର୍ବରୁ କ'ଣ ମୋର ପରିଚୟ ଥିଲା ନା ମୋ ସହିତ ଆପଣଙ୍କର ? ସବୁ ଆପେ ଆପେ ହୋଇଯାଏ ଏବଂ ଏହିପରି ଆକସ୍ମିକ ବନ୍ଧୁତ୍ୱରେ ଯେତେ ଆନନ୍ଦ ଥାଏ, ପରିଚିତ ବନ୍ଧୁମାନଙ୍କୁ ଧରି ବୁଲିଲେ ସେ ଆନନ୍ଦ ଆସିବ କେଉଁଠୁ କହିଲେ !

ତରୁଣୀଟି ଦୀପଙ୍କର ମୁହଁଆଡ଼େ ମୁଗ୍ଧ ଆଖିରେ ଚାହିଁ ରହିଥିଲା ।

କିନ୍ତୁ ପୁଣି ହଠାତ୍ ଚିତ୍କାର କରି ଉଠିଲା ଦୀପଙ୍କର ।

ଏଥର ସେଇ ଯୁବକଟା ଦୀପଙ୍କର ବେକରେ ଜ୍ୱଳନ୍ତ ସିଗାରେଟ୍‌ର ଚିଆଁ ଲଗେଇ ଦେଇଛି ।

ଦୀପଙ୍କର ତା'ଆଡ଼େ ଚାହିଁବା କ୍ଷଣି ଯୁବକଟି କହିଉଠିଲା : ଏକ୍ସକିଉଜ୍ ମି । ବସ୍‌ଟା ବେଳେ ବେଳେ ଏପରି ଜାର୍କିଂ କରୁଛି ଯେ, ଇଚ୍ଛା ନ କରି ମଧ୍ୟ ଦୁର୍ଘଟଣା ଘଟି ଯାଉଛି ।

ପାଖ ସିଟ୍‌ର ଆଉ ଦୁଇଜଣ ଯୁବକ ହୋ ହୋ ହୋଇ ହସିଉଠିଲେ ।

ଦୀପଙ୍କର ନୀରବ ରହିବାକୁ ବାଧହେଲା ।

ତରୁଣୀଟି ଦୀପଙ୍କରର ଦୃଷ୍ଟି ବାହାର ଆଡ଼େ ଆକର୍ଷଣ କରି କହିଲା : ଦେଖୁଛନ୍ତି, ତଳର ସେଇ ଧାନ କିଆରି, କେତେ ତଳେ ରହିଗଲାଣି, ଗୋଟାଏ ଗୋରୁ ସେଠି ଠିଆ ହୋଇଛି ବୋଧେ; କିନ୍ତୁ ମନେ ହେଉଛି ଗୋଟାଏ କୁକୁର ପରି, ନା ?

: ହୁଁ ଦୀପଙ୍କର କହିଲା : ଆମେ ତା'ହେଲେ ଅନେକ ଉପରକୁ ଉଠି ଆସିଲେଣି । ନିର୍ଦ୍ଦିଷ୍ଟ ଜାଗାରେ ପହଞ୍ଚିବାକୁ ଆଉ କେତେ ସମୟ ଲାଗିବ ?

ପ୍ରାୟ ପଇଁଚାଳିଶ ମିନିଟ୍‌ରୁ ଘଣ୍ଟାଏ ଲାଗେ । ତଳୁଉଠି ଉପରେ ପହଞ୍ଚିବା ପାଇଁ ଏହିପରି ସମୟ ଲାଗିଥାଏ । ଆମ ବସ୍‌ଟା ବୋଧହୁଏ ଅଧଘଣ୍ଟା ହେବ ଉପରକୁ ଉଠୁଛି ।

: ହଁ ସେଇପରି ହେବ । ଦୀପଙ୍କର ହାତଘଡ଼ି ଆଡ଼କୁ ଚାହିଁ କହିଲା ।

ତରୁଣୀଟି ପୁଣି ପଚାରିଲା : ଆପଣ ଏଠି କେତେ ଦିନ ରହିବେ ?

: କିଛି ଠିକ୍‌ନାହିଁ ।

: ତଥାପି ?

: ମୁଁ ଏଇ ବସ୍‌ରେ ବି ଫେରିଆସିପାରେ ।

: ନା ନା, ଆପଣ ତା'ହେଲେ କିଛି ଦେଖି ପାରିବେ ନାହିଁ । ଅନ୍ତତଃ ଗୋଟିଏ ସୂର୍ଯ୍ୟାସ୍ତ ଓ ଗୋଟିଏ ସୂର୍ଯ୍ୟୋଦୟ ନ ଦେଖିଲେ ଆପଣଙ୍କର ନେତାରହାଟ ଆସିବାର ସାର୍ଥକତା ରହିବନି ।

ଆପଣଙ୍କ ଉପଦେଶ ମାନେ ? ଆପଣ ଭାବୁଛନ୍ତି ଏଠାରେ ଅଧିକ ଦିନ ରହିବା ପାଇଁ ଆପଣଙ୍କୁ ମୁଁ ବାଧ କରୁଛି ।

: ନା, ନା, ନା । ମୁଁ ସେ କଥା କହୁନାହିଁ । ଛାଡ଼ନ୍ତୁ । ମୁଁ ଗୋଟାଏ ନୂଆ ଜାଗାକୁ ଆସିଛି ଯେତେବେଳେ, ଏଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଏଠାକାର କିମ୍ବଦନ୍ତୀର ସ୍ଥାନ, ଏଠାକାର ପ୍ରାଚୀନ କୀର୍ତ୍ତିକଳାପ ସବୁ ଦେଖି ଏତେ ସହଜରେ ଫେରିଯିବି ଭାବିଛନ୍ତି ? ଏ'ତ ଗଲା ମୋ କଥା । ଏଥର ଆପଣ ଏଠି କେତେଦିନ ରହିବେ କୁହନ୍ତୁ ।

ହଠାତ୍ ଯେପରି ତରୁଣୀଟିର ମୁହଁ ମଉଳି ପଡ଼ିଲା । ସ୍ୱରରେ ଫୁଟିଉଠିଲା ହତାଶା ।

: ମୁଁ, ମୋର କିଛି ଠିକ୍ ନାହିଁ; ବରଂ ମୁଁ ଏଇ ବସ୍‌ରେ ପୁଣି ଫେରିପାରେ ।

: କାହିଁକି, ହଠାତ୍...

: ନା, ହଠାତ୍ ନୁହେଁ । ମାନେ ମୋର ଠିକ୍ ନାହିଁ । ମୁଁ ଗୋଟାଏ ଉଦ୍ଦେଶ୍ୟରେ ଆସିଛି । ମୁଁ ତ ଆଉ ଏଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବା ପାଇଁ ଆସି ନାହିଁ । ତେଣୁ...

ଦୀପଙ୍କର ତରୁଣୀଟିର କଥାରେ ବାଧାଦେଇ କହିଲା : ମୁଁ ଦେଖୁଛି ଅନେକ ସମୟରେ ଆପଣ ମୋରି ମନକଥାଗୁଡ଼ା କହି ପକାଉଛନ୍ତି ।

: ଆପଣଙ୍କର ମନକଥା ମାନେ ? ତରୁଣୀଟିର ସ୍ୱରରେ କିପରି ଚଞ୍ଚଳତା ଫୁଟିଉଠିଲା ।

ଦୀପଙ୍କର ମୁହୂର୍ତ୍ତେ ଚୁପ୍‌ରହି ତା'ପରେ ଧୀରେ ଧୀରେ କହିଲା, : ନା, ମାନେ ସତ କହିବାକୁ ଗଲେ, ମୁଁ ବି ଏଠାକାର ପ୍ରାକୃତିକ ଶୋଭା ଦେଖିବା ପାଇଁ ଛୁଟି ଆସିନାହିଁ ।

: ତା'ହେଲେ ? ତା'ହେଲେ ଆପଣ କ'ଣ ଆସିଛନ୍ତି କୌଣସି ବ୍ୟବସାୟ ସଂକ୍ରାନ୍ତରେ ?

: ନା, ତା ବି ନୁହେଁ ।

: ତା'ହେଲେ ?

: ମୁଁ ଆସିଛି ଏଠାକୁ ବାଧହୋଇ । ଦୀପଙ୍କର ସ୍ୱରରେ ଏତେ ହତାଶା ଥିଲା ଯେ, ତରୁଣୀଟି ଏଥର ହୋ ହୋ ହୋଇ ହସିଉଠିଲା ।

: ଆପଣ ବାଧହୋଇ ଆସିଛନ୍ତି ମାନେ ? ଆପଣ ତ ଆଉ ପିଲାଛୁଆ ନୁହଁନ୍ତି, ଆପଣଙ୍କୁ କେହି ଜୋର୍ ଜବରଦସ୍ତ ଏଠାକୁ ଘେନି ଆସିଛି । ସତରେ ମୁଁ ଆପଣଙ୍କ କଥାର କିଛି ଅର୍ଥ ବୁଝିପାରୁ ନାହିଁ ।

: ଆପଣ ପାରିବେ ନାହିଁ । ଆପଣଙ୍କ ପକ୍ଷରେ ମୋର ଏହି ବାଧହୋଇ ଏଠାକୁ ଆସିବାର ଅର୍ଥ ବୁଝିବା ସମ୍ଭବ ନୁହେଁ । ତେବେ ଏହାଦ୍ୱାରା ମୋର ଗୋଟିଏ ଲାଭ ହୋଇଛି ।

: କିପରି ?

: ଆପଣଙ୍କ ପରି ଜଣେ ବନ୍ଧୁ ପାଇ ।

: ଆପଣ ଆମର ଏଇ କେଇ ଘଣ୍ଟାର ପରିଚୟକୁ ବନ୍ଧୁତା ବୋଲି ଧରି ନେଉଛନ୍ତି ? ଜାଣନ୍ତି ଏତେବେଳଯାଏ ମୁଁ ଆପଣଙ୍କର ନାମ ମଧ ଜାଣିନାହିଁ ।

ସେଇଠି ତ ବନ୍ଧୁତ୍ୱର ପବିତ୍ର ପ୍ରକାଶ । ଆପଣ ମୋତେ ଜାଣି ନାହାନ୍ତି, ମୁଁ ଆପଣଙ୍କୁ ଜାଣିନାହିଁ, ଅଥଚ ଆମେ ପରସ୍ପରର ଅନେକ ନିକଟରେ । ହୁଏତ ଆଉ କେତୋଟି ମିନିଟ୍ ପରେ ଆମ ଗାଡ଼ି ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆହେବ । ଆମର ଯାତ୍ରା ପଥ ଶେଷହେବ । ଆପଣ ଆଗେଇ ଯିବେ ବାଁକୁ; ଆଉ ମୁଁ ଆଗେଇ ଯିବି ଡାକହାଣକୁ । ଖାଲି ଏକ ସ୍ମୃତି କିଇ

ରହିବ ବର୍ଷ ବର୍ଷ ଧରି । ହୁଏତ ଶେଷ ଜୀବନଯାଏ । ସେଇ ପବିତ୍ର ସ୍ମୃତି ହିଁ ଜୀବନ ଉପବନରେ ବେଳେବେଳେ ଫୁଟିଉଠି ସୁବାସ ବିତରଣ କରିବ । ଏଇତ ଜୀବନ ।

ତରୁଣୀଟି ଏଥର ଅଳ୍ପ ହସି କହିଲା : ଆପଣ ଖାଲି କବି ନୁହନ୍ତି, ଜଣେ ଦାର୍ଶନିକ ମଧ୍ୟ । ମୋର ଆପଣଙ୍କ କଥା ଅନେକଦିନ ଯାଏ ମନେରହିବ ।

ଦୀପଙ୍କର ବ୍ୟସ୍ତ ହୋଇପଡ଼ି କହିଲା : ନା, ନା, ମୁଁ କବି ନୁହେଁ କିମ୍ବା ଦାର୍ଶନିକ ନୁହେଁ । ଜଣେ ବାସ୍ତବବାଦୀ, ସଂଗ୍ରାମୀ ମଣିଷ । ସବୁ ମଣିଷ ପରି ମୋ ଜୀବନରେ ସମସ୍ୟା ଅଛି, ସମସ୍ୟା ସମାଧାନ ପାଇଁ ସଂଗ୍ରାମ ଅଛି; କିନ୍ତୁ ଏସବୁ ପରେ ବି ମୋ ଜୀବନରେ ଆଜି ଯାହା ଘଟିଯାଇଛି, ଏହା ଖାଲି ଆକସ୍ମିକ କହିଲେ ଠିକ୍ ହେବ ନାହିଁ ଅଭାବିତ ମଧ୍ୟ ।

: ଆପଣ ଯେ କି ଧରଣର ପଳାତକ ମୁଁ ବୁଝିପାରୁନାହିଁ । ତେବେ ଅଧିକ ଜାଣିବାର ମଧ୍ୟ ଆଗ୍ରହ ନାହିଁ । କାରଣ ଆମେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଗଲେଣି । ହେଇ, ବାଁ ପାଖରେ ଏ ଯେଉଁ କୋଠାଟା, ଏଇଟା ଟୁରିଷ୍ଟ ଅଫିସ । ତା' ପାଖକୁ କୋ-ଅପରେଟିଭ ଷ୍ଟୋରସ୍ । ସେଇଠି ବସ୍ ଠିଆହେବ । ଆପଣ ଯାହା କହୁଥିଲେ, ସତରେ ମୁଁ ବାଁ ଆଡ଼କୁ ଚାଲିଯିବି । ଆପଣ ଡାହାଣ ଆଡ଼େ ନ ଯାଇ ନାକସିଧା ଗଲେ ପି : ଡବ୍ଲ୍ୟୁଡ଼ି, ଇନିସ୍‌ପେକ୍‌ସନ ବଂଗ୍ଲ, ପାଲାମଉ ଡାକବଂଗ୍ଲୁ ପାଇବେ । ଅନ୍ତତଃ ସେଇଠି ରହିବାର ବ୍ୟବସ୍ଥା କରି ଆପଣ ଆରାମରେ ନେତାର ହାଟ ଦେଖି ପାରିବେ ।

ତରୁଣୀଟିର କଥା ଶେଷ ହେବା ବେଳକୁ ବସ ଆସି ଠିଆହୋଇପଡ଼ିଲା ।

ଯାତ୍ରୀମାନେ ଠେଲାପେଲା ହୋଇ ବସ୍‌ରୁ ବାହାରିବାକୁ ଲାଗିଲେ ।

ଦୀପଙ୍କର କହିଲା : ତା'ହେଲେ ଏଇଠୁ ଆମର ଯାତ୍ରା ଶେଷ ହେଲା ।

ତରୁଣୀ କହିଲା : କାହାର ଶେଷ, ପୁଣି କାହାର ଆରମ୍ଭ ।

: ମାନେ ?

ତରୁଣୀଟି ଏକ ଇଙ୍ଗିତପୂର୍ଣ୍ଣ ଚାହାଣିରେ ଦୀପଙ୍କରଆଡ଼େ ଚାହିଁ କହିଲା : ସବୁକଥାର ମାନେ ଖୋଜିବସିଲେ, ସବୁବେଳେ ମିଳେ ନାହିଁ । ଏଥର ଉଠନ୍ତୁ । ଗାଡ଼ି ପ୍ରାୟ ଖାଲି ହୋଇଗଲାଣି ।

ଦୀପଙ୍କର ହଠାତ୍ ଯେପରି ସଚେତନ ହୋଇ ଉଠିପଡ଼ି ଧୀରେ ଧୀରେ ତଳକୁ ଓହ୍ଲାଇଗଲା ।

ପଛେ ପଛେ ତରୁଣୀଟି ହାତରେ ଗୋଟିଏ ଚମଡ଼ା ସୁଟ୍‌କେସ୍ ଧରି ଓହ୍ଲାଇଲା ।

: ତା'ହେଲେ...

ଦୀପଙ୍କର କଥା ଅସମାପ୍ତ ରଖି କିପରି ଏକ ଅସହାୟ ଚାହାଣିରେ ତରୁଣୀଟିଆଡ଼େ ଚାହିଁ ନୀରବରେ ଠିଆହୋଇଥିଲା ।

: ଆରେ, ଆପଣ ଖାଲି ହାତ ଯେ, ଆପଣ ଜିନିଷପତ୍ର କ'ଣ କିଛି ଆଣି ନାହାନ୍ତି ?

ଦୀପଙ୍କର ହସିଲା । କହିଲା : ଆଣିଥିଲି କିନ୍ତୁ ସବୁ ହରାଇଛି । ଦୁଃଖ ମୋର କେଉଁଠି ଜାଣନ୍ତି ? ସବୁ ହରାଇ ମଧ୍ୟ ଯାହା ପାଇଥିଲି, ତାକୁ ବି ହରାଇବାକୁ ପଡୁଛି । ଆଚ୍ଛା, ଆପଣ ତା'ହେଲେ.....

: ହଁ, ମୋତେ ତ ଚାଲିଯିବାକୁ ହେବ । ଆପଣ ତ ଜାଣିଛନ୍ତି, ଆପଣଙ୍କ ପଥ ଆଉ ମୋ ପଥ ଅଲଗା ।

: କିନ୍ତୁ ମଣିଷ ବଡ଼ ଆଶାବାଦୀ । ଆପଣଙ୍କ ସଙ୍ଗରେ ଆଉ ତା'ହେଲେ ଦେଖାହେବ ନାହିଁ? ଦୀପଙ୍କର ପଚାରିଲା ।

: ଆଶା ତ ଖୁବ୍ କମ୍ । ତେବେ ପୃଥିବୀଟା ବିରାଟ ବଡ଼ । କିଏ ଜାଣେ ଅକସ୍ମାତ କେବେ କେଉଁଠି ହୁଏତ....

ତରୁଣୀଟି କଥା ଅସମାପ୍ତ ରଖି ହସିଲା ।

: ହଁ, ଆପଣ ତା'ହେଲେ ଆସନ୍ତୁ । କିନ୍ତୁ ଆପଣଙ୍କ ନାଁଟା ତ ମୁଁ ଜାଣିପାରିଲି ନାହିଁ ।

: ମୁଁ ବି ତ ଜାଣି ନାହିଁ ଆପଣଙ୍କ ନାଁ । ତା'ଛଡ଼ା ଜାଣି ଆଉ ଲାଭ କ'ଣ ? ଦୁଇଜଣଙ୍କର ପଥ ଯେତେବେଳେ ଅଲଗା...

: ତଥାପି...

: ମୋ ନାଁ ସୁନନ୍ଦା । ଆଚ୍ଛା ନମସ୍କାର ।

: ମୋ ନାଁ ଦୀପଙ୍କର ।

ଦୀପଙ୍କର ନିଜର ନାଁ କହି ହାତଉଠାଇ ପ୍ରତି ନମସ୍କାର କଲା ।

ସୁନନ୍ଦା ଚାଲିଯାଉଥିଲା ।

ଦୀପଙ୍କର ଠିଆ ହୋଇ ଚାହିଁ ରହିଥିଲା ସୁନନ୍ଦାର ଯିବା ପଥକୁ ।

ମାତ୍ର କେତୋଟି ଘଣ୍ଟାର ପରିଚୟ । କିନ୍ତୁ ସେଇ କେତୋଟି ଘଣ୍ଟାର ସ୍ମୃତି ଦୀପଙ୍କରର ହୁଏତ ଜୀବନଭରି ମନେରହିବ ।

: କି ଦାଦା, ହୋଲ କି ?

ଦୀପଙ୍କର ପଛଆଡ଼େ କାହାର କଣ୍ଠସ୍ୱର ଶୁଣି ବୁଲି ଅନେଇଲା ।

ସେଇ ଯୁବକଟି । ଯିଏ ବସ୍‌ରେ ତା' ଗୋଡ଼କୁ ଦୁଇଥର ମାଡ଼ିଦେଇଥିଲା ।

ଯୁବକଟି ପୁଣି କହିଲା : ଭଦ୍ରମହିଳା ଚାଲିଗଲେ ଯେ । ସେ ଆପଣଙ୍କର....

: ନା ନା, ମୋର ସେ କିଛି ନୁହନ୍ତି । ବସ୍‌ରେ ପରିଚୟ ହୋଇଥିଲା ।

ଦୀପଙ୍କର ବାଟଭାଙ୍ଗି ଅନ୍ୟଆଡ଼େ ଚାଲିଯାଉଥିଲା ।

ସେହି ଯୁବକଟି କିନ୍ତୁ ବାଟଓଗାଳି କହିଲା : ଆପଣ ଗୋଟେ ନିହାତି ବେରସିକ ଲୋକ । ଏମିତି ଗୋଟାଏ ସୁନ୍ଦର ଚାନ୍ସ ପାଇବ...

: ମାନେ ?

ଯୁବକଟି ହସି ହସି ତା'ର ଜଣେ ବନ୍ଧୁ ଆଡ଼କୁ ଚାହିଁଲା ।

: ଶୁଣୁଛ ପ୍ରବୀର ।

: ଦାଦା ଏକଟି କ୍ୟାବଲାକାନ୍ତ । ପ୍ରବୀର ମନ୍ତବ୍ୟ କଲା ।

ଦୀପଙ୍କର ସେମାନଙ୍କ କବଳରୁ ଖସି ଯିବା ପାଇଁ ବାଟଭାଙ୍ଗି ଅନ୍ୟତ୍ର ଚାଲିଯାଉଥିଲା ।

ସେହି ଯୁବକଟି କହିଲା : ସତରେ ଆପଣ ଗୋଟାଏ ଚାନ୍ସ ମିସ୍ କଲେ ।

ଦୀପଙ୍କର ଆଉ ଅପେକ୍ଷା କଲା ନାହିଁ ।

ତାକୁ ଅନ୍ତତଃ ଆଜି ରାତିକ ପାଇଁ ଗୋଟାଏ ଆଶ୍ରୟ ସଂଗ୍ରହ କରିବାକୁ ପଡ଼ିବ ।

ଦୀପଙ୍କର ଆଉ ଟିକିଏ ଆଗେଇ ଯାଇ ଜଣେ ସ୍ଥାନୀୟ ଲୋକଙ୍କୁ ଆଶ୍ରୟର ସଂଧାନ ପଚାରିଲା ।

ଲୋକଟି ତାକୁ ହାତ ବଢ଼ାଇ ପଥ ଦେଖାଇଦେଲା ।

ଦୀପଙ୍କର ଆଗେଇ ଗଲା ସେଇଆଡ଼େ ।

କିନ୍ତୁ ସେ ଯେତେବେଳେ ଯାଇ ଡାକବଂଲୁ ପାଖରେ ପହଞ୍ଚିଲା, ପ୍ରକୃତିର ଅପୂର୍ବ ଶୋଭାରେ ସେ ବିମୋହିତ ହୋଇପଡ଼ିଲା ।

ପ୍ରକୃତିର ଏତେ ସୌନ୍ଦର୍ଯ୍ୟ କେବେ ତ ସେ ଉପଲବ୍ଧି କରି ନାହିଁ । ଡାକବଂଗଲୋ ସାମନାରେ ଠିଆ ହୋଇ ସେ ଦେଖିଲା, ଦୂରରେ ପାହାଡ଼ ପରେ ପାହାଡ଼, ଯେପରି ଅସୀମ । ଯେତେ ଦୂରଆଖିପାଏ ଏକ ବିଶାଳ ଉପତ୍ୟକା ସ୍ପଷ୍ଟଦେଖା ପୃଥିବୀର କୌଣସି ଏକ ସୀମାରେଖାରେ ଆକାଶ ଆସି ମିଶିଯାଇଛି । ପାହାଡ଼ଗୁଡ଼ିକ ମୁଣ୍ଡରେ ଖଣ୍ଡ ଖଣ୍ଡ ଧଳା ମେଘ । ଆଃ ! ସେ ଦୃଶ୍ୟ ଅବର୍ଣ୍ଣନୀୟ, ସେ ଦୃଶ୍ୟର ତୁଳନା ହୁଏନା ।

ଦୀପଙ୍କର ମୁଗ୍ଧ ଚକିତ ଆଖିରେ ସେଇଆଡ଼େ ଚାହିଁଥିଲା ।

ବାସ୍ତବିକ୍ ଅପୂର୍ବ ।

କିଏ ଜଣେ ପଛଆଡୁ ଆସି ଦୀପଙ୍କର ଧ୍ୟାନ ଭଙ୍ଗକଲା ।

: ଆପଣ ଆଜି ବସ୍‌ରେ ଆସିଲେ ବୋଧେ ?

: ହଁ ।

: କେଉଁଠି ରହିବେ ଠିକ୍ କରିଛନ୍ତି ?

: ନା, ତେବେ ଏଇ ଡାକବଂଲୋରେ ଉଠିବାର ଇଚ୍ଛା ଅଛି ।

: ଆସନ୍ତୁ : ଆସନ୍ତୁ । ମୋ ରୁମ୍‌ରେ ରହିବେ; କିନ୍ତୁ ମୁଁ ଯେଉଁ ଡାରମେଟିରେ ଅଛି ସେଥିରେ ଚାରିଟା ସିଟ୍ । ଦୁଇଟା ଖାଲି ଅଛି । ଆପଣ ଗୋଟାଏ ନେଲେ ଆହୁରି ବି ଗୋଟାଏ ଖାଲି ରହିବ ।

: କିନ୍ତୁ...

: ଆପଣ ମୋ କଥା ଭାବୁଛନ୍ତି ? ନା, ନା ମୋର କିଛି ଉଦ୍ଦେଶ୍ୟ ନାହିଁ । ଖାଲି ଜଣେ ବନ୍ଧୁ ପ୍ରୟୋଜନ । ମୋ ରୁମ୍‌ରେ ଯେଉଁ ଭଦ୍ରଲୋକ ଜଣକ ଅଛନ୍ତି, ସେ ଖୁବ୍ ବୟସ୍କ, ଭୀଷଣ ଗମ୍ଭୀର, ତାଙ୍କ ସହିତ ମୁଁ ପହରଦିନଠାରୁ ଆଜିଯାଏ ପଦେ ହେଲେ କଥା ହୋଇପାରିନାହିଁ ।

ଦୀପଙ୍କର ଯୁବକଟିର କଥାବାର୍ତ୍ତାରେ ଆକୃଷ୍ଟ ହୋଇଥିଲା ।

ପଚାରିଲା ଆପଣଙ୍କ ନାଁ ।

: ମୋ' ନାଁ ମାନସ ।

: ମୋ' ନା ଦୀପଙ୍କର; କିନ୍ତୁ ମୋର ଗୋଟାଏ ଅସୁବିଧା ହୋଇଯାଇଛି ।

: କ'ଣ ?

: ମୋର ଜିନିଷପତ୍ର ସବୁ ବାଟରେ ଚୋରି ହୋଇଯାଇଛି ।

ମାନସ ଉତ୍ସାହିତ ହୋଇ କହିଲା : ସେଥିପାଇଁ ଚିନ୍ତାର କିଛି ନାହିଁ । ଡାରମେଟରୀରେ ବିଛଣାପତ୍ରର କିଛି ପ୍ରୟୋଜନ ହୁଏ ନାହିଁ । ସବୁ ସୁନ୍ଦର ବ୍ୟବସ୍ଥା । ଆଉ ଲୁଗାପଟା ? ମୋର ପ୍ରଚୁର ଅଛି । ଆପଣ ଚାଲି ଆସନ୍ତୁ । ମୁଁ ଆପଣଙ୍କର ସବୁ ବ୍ୟବସ୍ଥା କରି ଦେଉଛି ।

ଦୀପଙ୍କରଠାରେ କିନ୍ତୁ କିପରି ଜଡ଼ତା ଫୁଟିଉଠିଥିଲା ।

ମାନସ୍ ଦୀପଙ୍କର ହାତଧରି ଟାଣିନେଇ କହିଲା : ଆପଣ ଭାବୁଛନ୍ତି କ'ଣ ? ମୋତେ ସନ୍ଦେହ କରୁଛନ୍ତି ?

: ଆରେ ନା, ନା ମାନସ ବାବୁ, ଚାଲନ୍ତୁ ।

ଦୀପଙ୍କର ମାନସ ପଛେ ପଛେ ଆଗେଇ ଗଲା ।

ମାନସ ବଂଗ୍ଲୋର ଗୋଟାଏ ନିର୍ଦ୍ଦିଷ୍ଟ ରୁମ୍‌ଆଡ଼େ ହାତବଢ଼େଇ କହିଲା : ଆପଣ ଯାଆନ୍ତୁ, ଏଇ ଘରେ ଯାଇ ଅପେକ୍ଷା କରନ୍ତୁ । ମୁଁ ଆପଣଙ୍କ ନାଁଟା ରେଜିଷ୍ଟ୍ରି କରି ଦେଇ ଆସୁଛି । ଆପଣଙ୍କର ପୂରା ନାଁଟା କ'ଣ ?

: ଦୀପଙ୍କର ଶର୍ମା ।

ମାନସ ଚାଲିଯାଉଥିଲା । ଦୀପଙ୍କର ପଛରୁ ଡାକି କହିଲା : ଟଙ୍କା ନେଇ ଯାଆନ୍ତୁ ।

: ମାନସ ଶୁଣିପାରିଲା କି ନାହିଁ କେଜାଣି । ସେ କିନ୍ତୁ ଆଉ ପଛକୁ ଫେରି ଚାହିଁ ନଥିଲା ।

ଦୀପଙ୍କର ବଂଲୋର ବାରଣ୍ଡାରେ ଠିଆହୋଇ ଦୂରର ସେହି ପ୍ରାକୃତିକ ସୌନ୍ଦର୍ଯ୍ୟ ଆଡ଼େ ପୁଣି ଚାହିଁ ରହିଲା ।

ଆଃ... ଖଣ୍ଡ ଖଣ୍ଡ ଧଳାମେଘ, ଅଗଣନ ପାହାଡ଼ ଶ୍ରେଣୀ, ଉପତ୍ୟକାର ଶ୍ୟାମଶ୍ରୀ, ସବୁ ମିଶି ଅପୂର୍ବ । ସୁନନ୍ଦା ଠିକ୍ କହିଥିଲା । ବାସ୍ତବରେ ଜାଗାଟା " କୁଇନ୍ ଅଫ୍ ବିଉଟି ସ୍ପଟ"।

ଦୀପଙ୍କର ଚିନ୍ତା କରୁଥିଲା ।

ଘଟଣାଚକ୍ରରେ ପଡ଼ି ଅନେକ ଦୂର ସେ ଆଗେଇ ଆସିଛି । ଏହାପରେ କେଉଁଆଡ଼େ ଯିବ ଏବଂ କେଉଁଠି ତା'ର ଯାତ୍ରା ଶେଷହେବ କିଏ ଜାଣେ ?

ଦୂରଦିଗ୍‌ବଳୟ ଆଡ଼େ ଚାହିଁ ସେ ଭାବୁଥିଲା, ରାୟବାହାଦୁରଙ୍କ ଘରେ ଗୋଟାଏ ଖୁଣ୍ ହୋଇଛି; କିନ୍ତୁ ଖୁଣ୍‌ଟା କିଏ କାହାକୁ କରିଛି ? ରାୟବାହାଦୂର ନିଜେ କ'ଣ ଶିକାର ନା ଶିକାରୀ ?

ପୋଲିସଗାଡ଼ି ରାୟବାହାଦୁରଙ୍କ ହତା ଭିତରେ ପ୍ରବେଶ କରିବାର ସେ ଦେଖି ଆସିଥିଲା । ବର୍ତ୍ତମାନ ସେମାନେ ହୁଏତ ଆସାମୀକୁ ଖୋଜୁଥିବେ । କିଏ ସେ ଆସାମୀ ?

ଦୀପଙ୍କରର ସମସ୍ତ ଦେହଟା ଶୀତେଇ ଉଠିଲା ।

ପୋଲିସ ଯେତେବେଳେ ଯାଇ ଦୀପଙ୍କରର ଘର ତଲାସ କରିଥିବ ଏବଂ ତା' ସୁଟ୍‌କେଶ୍ ଭିତରୁ ରକ୍ତବୋଳା ଲୁଗାପଟା ଏବଂ ଖୁଣ୍‌କରା ଛୁରିଟା ଆବିଷ୍କାର କରିଥିବ...

ଆଉ ତେଣିକି ଭାବିପାରିଲା ନାହିଁ ଦୀପଙ୍କର ।

ଆଖି ଦୁଇଟା ତା'ର ବୁଜି ହୋଇ ପଡ଼ିଲା ।

ପଛରୁ କାହାର ଡାକ ଶୁଣିଲା : ଆସନ୍ତୁ ଦୀପଙ୍କରବାବୁ ।

ଦୀପଙ୍କର ବୁଲି ଅନେଇଲା, ମାନସ । ଦୀପଙ୍କର ପାଇଁ ରହିବାର ସମସ୍ତ ବ୍ୟବସ୍ଥା କରି ଫେରିଆସିଛି ।

ମାନସ କହିଲା : ଆପଣ ଏମିତି ମନ ଖରାପ କରି ରହିଲେ ଚଳିବ ନାହିଁ । କହିଲି ତ, ଲୁଗାପଟା ମୋ' ପାଖରେ ପ୍ରଚୁର ଅଛି, ଆପଣଙ୍କର କିଛି ଅସୁବିଧା ହେବ ନାହିଁ । ଆପଣ ଭିତରକୁ ଆସନ୍ତୁ । ମୁଁ ଚା' ଜଳଖିଆର ଅର୍ଡ଼ର ଦେଇ ଆସିଛି ।

ଦୀପଙ୍କର ମାନସ ପଛେ ପଛେ ରୁମ୍ ଭିତରେ ପଶିଲା ।

ସୁନ୍ଦର ସୁସଜ୍ଜିତ ରୁମ୍ ।

ଚାରିଟି ବେଡ୍ । ବିଛଣାପତ୍ର ପରିଷ୍କାର ପରିଚ୍ଛନ୍ନ ।

ମାନସ ବାଁ ପାଖ ଖଟଆଡ଼େ ଆଙ୍ଗୁଳି ଦେଖାଇ କହିଲା, : ଆପଣଙ୍କର ସେଇ ବେଡ୍‌ଟା ।

ଦୀପଙ୍କର ବିଛଣା ଉପରେ ଥରେ ଆଖି ବୁଲେଇ ନେଇ କହିଲା : ଆପଣଙ୍କ ରୁମ୍‌ମେଟ୍‌କୁ ତ ଦେଖୁ ନାହିଁ ?

: ଭଦ୍ରଲୋକ ପ୍ରାୟ ଘଣ୍ଟାଏ ହେବ କୁଆଡ଼େ ବାହାରି ଯାଇଛନ୍ତି । ତାଙ୍କ ସହିତ ଦେଖା ନ ହେବା ହିଁ ଭଲ । ମୁଁ ତ ଦୁଇଦିନ ହେବ ଖାଲି ତାଙ୍କୁ ଦେଖୁଛି, ଆପଣ ଆଶ୍ଚର୍ଯ୍ୟ ହେବେ ଦୀପଙ୍କର ବାବୁ, ସେ ମୋତେ ହୁଏତ ଦେଖୁ ବି ନାହାନ୍ତି । ଅଦ୍ଭୁତ ଲୋକ । ସବୁବେଳେ ଚୁପ୍‌ଚାପ୍ ବସି ରହି କ'ଣ ଯେ ଚିନ୍ତା କରନ୍ତି ଆପଣ ତାଙ୍କୁ ନ ଦେଖିଲେ, ସେ ଦେହ ମନର ଲକ୍ଷଣ ମୁଁ ଆପଣଙ୍କୁ ବୁଝାଇପାରିବି ନାହିଁ ।

ଦୀପଙ୍କର କହିଲା : ଭଦ୍ରଲୋକ ହୁଏତ କବି ବା ଦାର୍ଶନିକ ହୋଇଥିବେ । ଅଥବା କିଛି ଗବେଷଣା ପାଇଁ ଏହି ନିର୍ଜନ ସ୍ଥାନକୁ ଆସିଥିବେ ।

ଦୀପଙ୍କର ତା'ପାଇଁ ନିର୍ଦ୍ଧାରିତ ଖଟଟି ଉପରେ ବସିପଡ଼ିଥିଲା ।

ମାନସ ଦୀପଙ୍କର ଆଡ଼କୁ ଗୋଟାଏ ଲୁଙ୍ଗି ଆଉ ଗୋଟାଏ ଟାୱେଲ ବଢ଼େଇ ଦେଇ କହିଲା : ଆପଣ ଆଗ ଧୁଆଧୋଇ ହୋଇ ପଡ଼ନ୍ତୁ ତ ! ଏଇ ବାଁ ପାଖରେ ବାଥ୍‌ରୁମ୍ । ଶୀଘ୍ର ଆସନ୍ତୁ, ତା'ପରେ କୁଆଡ଼େ ଟିକେ ବାହାରିବା ।

ଦୀପଙ୍କର ନୀରବରେ ମାନସ ହାତରୁ ଲୁଙ୍ଗି ଓ ଟାୱେଲଟି ନେଇ ଲୁଗା ବଦଳାଇଲା ।

ମାନସ କହିଲା : ମୁଁ ସତ କହୁଛି ଦୀପଙ୍କରବାବୁ, ଆପଣଙ୍କୁ ପାଇ ମୋର ଗୋଟାଏ ବଡ଼ ଅଭାବ ପୂରଣ ହେଲା । ମୁଁ ଏ କେତେଦିନ ହେବ ମନମାଫିକ ଜଣେ ବନ୍ଧୁ ଖୋଜି ପାଉ ନ ଥିଲି ।

ତଥାପି ଦୀପଙ୍କର ନୀରବରେ ଲୁଗାପାଲଟୁଥିଲା ।

ମାନସ କହିଲା : ଆପଣଙ୍କ ଜିନିଷପତ୍ର ସବୁ କ'ଣ ଷ୍ଟେସନରୁ ହଜିଗଲା ?

: ଏଁ, ଦୀପଙ୍କର ଟିକିଏ ଚମକି ଉଠି କହିଲା । ହଁ, ଷ୍ଟେସନରେ ଯେଉଁ କୁଲିଟା ମୋ ଜିନିଷ ଆଣୁଥିଲା, ଭିଡ଼ ଭିତରେ ସେ ଯେ କୁଆଡ଼େ ଲୁଚିଗଲା, ମୁଁ ତାକୁ ଖୋଜି ପାଇଲି ନାହିଁ ।

: ଆପଣ ଷ୍ଟେସନ୍ ମାଷ୍ଟର ପାଖରେ କମ୍ପ୍ଲେନ୍ କରିଥିଲେ ?

: କରିଥିଲି । ସେ କହିଲେ, ଆପଣଙ୍କ ଠିକଣା ଦେଇଯାଆନ୍ତୁ । ଜିନିଷ ମିଳିଲେ ଆମେ ଚିଠି ଲେଖି ଜଣାଇଦେବୁ ।

: ସୁନ୍ଦର ବ୍ୟବସ୍ଥା । ହଁ, ଆଉ କ'ଣ ଆପଣଙ୍କର ଦରକାର ? ହେଇ ସାବାନ୍ ନିଅନ୍ତୁ, ପେଷ୍ଟ ଲାଗିବ ?

ଦୀପଙ୍କର ଗୋଟି ଗୋଟି କରି ହାତବଢ଼ାଇ ପ୍ରୟୋଜନୀୟ ଜିନିଷସବୁ ମାନସ ହାତରୁ ନେଇ ବାଥ୍ରୁମ୍ ଆଡ଼କୁ ଚାଲିଗଲା ।

ନିଜେ ସେ ବୁଝିପାରୁ ନଥିଲା, ସେ ବର୍ତ୍ତମାନ ଗୋଟିଏ ଯନ୍ତ୍ର ନା ମଣିଷ ?

କିନ୍ତୁ ପୋଲିସ୍ ଖୋଜି ଖୋଜି ଯଦି ଏପର୍ଯ୍ୟନ୍ତ ଛୁଟିଆସେ ?

ବାଥ୍ରୁମ୍ ଭିତରେ ସାଓ୍ୱାର ଖୋଲି ଦେଇ କିଏ ଜଣେ ଗୀତ ଗାଉଥିବାର ଶବ୍ଦ ଦୀପଙ୍କର କାନରେ ବାଜିଲା ।

ବେସିନ୍ ଉପରେ ସାବୁନ୍, ତେଲ ଇତ୍ୟାଦି ରଖି ଦୀପଙ୍କର ଯେତେବେଳେ ଅଇନାଟା ସାମ୍ନାରେ ଯାଇ ଠିଆହେଲା, ନିଜକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ତା' ଚେହେରାରେ ଏତେ ପରିବର୍ତ୍ତନ ହୋଇଛି !

ଦୀପଙ୍କର ବାଥ୍ରୁମ୍ ଭିତରେ ଥିବା ଆଉ ଗୋଟିଏ ବାଥ୍ରୁମ୍ ଭିତରେ ପଶି ନିଜର ନିତ୍ୟକର୍ମ ଶେଷକଲା ।

ଯାହାହେଉ, ଗତି ତା'ର ଯୁଆଡ଼େ ଯାଉ, ଶେଷ ପର୍ଯ୍ୟନ୍ତ ତାକୁ କିଛି ଗୋଟାଏ କରିବାକୁ ତ ହେବ !

ତେବେ ମନେହେଉଛି ଭାଗ୍ୟ ତା'ର ସୁପ୍ରସନ୍ନ । ବାଟରେ ସେ ସୁନନ୍ଦାକୁ ପାଇଲାଣି । ଏଣିକି ତା'ର ଅସୁବିଧା କିଛି ହେବ ନାହିଁ । ଚେଷ୍ଟା କରିବ କାଲି ସେ ଫେରିଯିବା ପାଇଁ; କିନ୍ତୁ ଆଉ ରାଞ୍ଚି ଷ୍ଟେସନ୍‌ବାଟେ ନୁହେଁ ।

ଦୀପଙ୍କର କିପରି ଗୋଟାଏ ଆଚ୍ଛନ୍ନତା ଭିତରେ ନିତ୍ୟକର୍ମ ଶେଷ କରିଲା ।

ଫେରି ଆସି ଦେଖିଲା, ମାନସ ଗୋଟାଏ ଟି'ପଟ୍ ଧରି ବସିଛି । ଟେବୁଲ୍ ଉପରେ ରଖାହୋଇଛି କେଇପିସ୍ ପାଉଁରୁଟି ଆଉ ଗୋଟାଏ ମାମ୍‌ଲେଟ୍ ।

ମାନସ କହିଲା : ଆଉ କିଛି ମିଳିଲା ନାହିଁ ଦୀପଙ୍କରବାବୁ, ମୁଁ ଜାଣେ ଆପଣଙ୍କୁ ଖୁବ୍ ଭୋକକରୁଥିବ କିନ୍ତୁ କିଛି ଉପାୟ ନାହିଁ । ବାହାରେ କୋଉଠି ଖାଇବା ଜିନିଷ କିଛି ମିଳବ ନାହିଁ ।

ଦୀପଙ୍କର ଲୁଗା ବଦଳାଉ ବଦଳାଉ କହିଲା : ଆପଣ ମୋତେ ବ୍ୟସ୍ତ ହୁଅନ୍ତୁ ନାହିଁ ମାନସବାବୁ । ଏଇ ଯାହା ସଂଗ୍ରହ କରିଛନ୍ତି ସେତିକି ଯଥେଷ୍ଟ । ଏହାଠାରୁ ଅଧିକ ଆଉ କିଛି ହୋଇଥିଲେ ନଷ୍ଟ ହୋଇଥାଆନ୍ତା ।

ଦୀପଙ୍କର ତା'ର ଏକମାତ୍ର ପ୍ୟାଣ୍ଟ ଓ ସାର୍ଟଟିକୁ ପିନ୍ଧି ପକାଇ ଖାଇବସିଲା । ଏତେବେଳ ଯାଏ ଦୀପଙ୍କର ଉତ୍ତେଜନା ଓ ଉତ୍କଣ୍ଠା ଭିତରେ ଥାଇ ଖାଇବା କଥା ଭୁଲିଯାଇଥିଲା, ବର୍ତ୍ତମାନ ଖାଦ୍ୟ ପଦାର୍ଥ ସାମ୍ନାରେ ଦେଖି ତା'ପେଟର ଭୋକ ଚଉଗୁଣା ହୋଇ ବଢ଼ିଗଲା । ଏପରିକି ସେ ମାନସକୁ ଗୋଟିଏ ପିସ୍ ପାଉଁରୁଟି ଅଫର କରିବା କଥା ଭୁଲିଗଲା ।

ମାନସ ଚା' ପଟ୍‌ରୁ ଚା' ଢାଳି ତିଆରି କରୁ କରୁ କହିଲା : ଆପଣ ଆଜି ସନ୍‌ସେଟ୍ ଦେଖିବାକୁ ଯିବେ ?

: ସନ୍‌ସେଟ୍ ? ଆପଣ ଦେଖିଛନ୍ତି ?

: ହଁ ମୁଁ ଦେଖିଛି, ଅପୂର୍ବ ଦୃଶ୍ୟ । ନିଜ ଆଖିରେ ନ ଦେଖିଲେ ଆପଣ ବିଶ୍ୱାସ କରି ପାରିବେ ନାହିଁ ।

: କେତେଦୂର ଏଠାକୁ ?

: ପ୍ରାୟ ପାଞ୍ଚ ଛଅ ମାଇଲ୍ ହେବ । ମାଙ୍ଗୋଲିଆ ପଏଣ୍ଟରୁ ଦେଖିବାକୁ ହୁଏ । ମୋର ମନେହେଉଛି, ଆପଣ ଆଜି ଖୁବ୍ କ୍ଳାନ୍ତ, ଯାଇପାରିବେ କି ?

: କ'ଣ ଚାଲି ଚାଲି ଯିବାକୁ ହେବ ?

: ତା'ଛଡ଼ା ଉପାୟ ନାହିଁ । କୌଣସି ଟ୍ରାନ୍ସପୋର୍ଟ ସର୍ଭିସ୍ ନାହିଁ । ଏପରିକି ରିକ୍ସା ଖଣ୍ଡିଏ ବି ଏଠାରେ ନାହିଁ ବ୍ୟବହାର କରିବାକୁ ।

: ତା'ହେଲେ ଥାଉ । ଆଜି ମୁଁ ଟିକିଏ ରେଷ୍ଟ ନେଇ ସୁସ୍ଥ ହୋଇଉଠେ, କାଲିଠାରୁ ଆପଣଙ୍କ ସାଙ୍ଗରେ ଘୂରି ବୁଲିବି । କାଲି ସକାଳୁ ସନ୍‌ରାଇଜ ନିଶ୍ଚୟ ଦେଖିବା, ଦୀପଙ୍କର କହିଲା ।

: ସନ୍‌ରାଇଜ ଆପଣ ତ ଏଇ ଘରେ, ଖଟ ଉପରେ ଶୋଇଶୋଇ ଦେଖିପାରିବେ । ସନ୍‌ରାଇଜ ଏଉଠୁ ଭାରି ସୁନ୍ଦର ଦେଖାଯାଏ । ଅନେକେ କହନ୍ତି ପାଲମୋଉ ବଂଲୋରୁ ସନ୍‌ରାଇଜ ଭଲ ଦିଶେ, ମୋ ମତରେ ଏ ଦୁଇଟିଯାକ ଜାଗାରେ ସମାନ ଭିଉ ।

ଦୀପଙ୍କର ପାଣି ଗ୍ଲାସ୍‌ଟା ତଳେ ଥୋଉ ଥୋଉ କହିଲା : ଏଇ ବିରାଟ ବଂଲୋରେ ଖୁବ୍ ତ ଗୋଟାଏ ଯାତ୍ରୀ ସମାଗମ ଦେଖୁ ନାହିଁ ।

: ଅଛନ୍ତି, ବଂଗ୍‌ଲୋର ପ୍ରତିଟି ରୁମ୍ ପ୍ରାୟ ଫିଲ୍ ଅପ୍ । ବର୍ତ୍ତମାନ ଯିଏ ଯୁଆଡ଼େ ବୁଲି ଯାଇଛନ୍ତି, ସଂଧ୍ୟାବେଳକୁ ଫେରିଲେ ଦେଖିବେ କିପରି ବିଚିତ୍ର ରୂପଧାରଣ କରିବ ଏଇ ବଂଗ୍‌ଲୋ ।

: ଆପଣ କ'ଣ ଅନେକ ଦିନହେବ ଏଠାରେ ଅଛନ୍ତି ?

: ନା, ଅନେକ ଦିନ ନହେଲେ ବି ଚାରି ପାଞ୍ଚ ଦିନ ହେବ ମୁଁ ଏଠାରେ ଅଛି । ଏଇ ଛୋଟ ଜାଗାଟିରେ ଏତେଦିନ କୌଣସି ଟୁରିଷ୍ଟ୍ ରହନ୍ତି ନାହିଁ । ମୁଁ କିନ୍ତୁ ଏଇ ସୁନ୍ଦରୀ ନେତାରହାଟର ପ୍ରେମରେ ପଡ଼ିଯାଇଛି ।

କଥାଟା ଶେଷ କରି ମାନସ ହୋ ହୋ ହୋଇ ହସିଉଠିଲା ।

ଦୀପଙ୍କର କହିଲା : ହସିଲେ ଯେ !

: ନା, ଏମିତି । ସତରେ ମୁଁ ଏଠାରେ ଜଣକ ପ୍ରେମରେ ପଡ଼ି ଯାଇଛି ।

ଦୀପଙ୍କର ମୁଗ୍ଧ ଆଖିରେ କିଛି ସମୟ ମାନସର ହସିଲା ମୁହଁ ଆଡ଼େ ଚାହିଁ କହିଲା : ଆପଣଙ୍କ ପ୍ରେମିକାଟି କ'ଣ ସ୍ଥାନୀୟ ନା...

: ମୁଁ ଠିକ୍ ଜାଣିପାରି ନାହିଁ । ତାକୁ ପଚାରିବାକୁ ସାହସ କରିପାରି ନାହିଁ ।

: ତା'ହେଲେ ?

: ଖାଲି ଦେଖୁଛି, ତିନି ଚାରିଦିନ ହେବ ନିତି ତାକୁ ଦେଖୁଛି । ମୋର ମନେ ହେଉଛି, ତା' ଅନ୍ତରରେ ମୋ ପ୍ରତି କିଛି ମୋହ ସୃଷ୍ଟି ହୋଇଛି ।

: ତା'ସହିତ କଥାବାର୍ତ୍ତା ହୋଇ ନାହିଁ ?

: ନା ।

: ତେବେ କିପରି ଜାଣିଲେ ସେ ଆପଙ୍କୁ ଭଲ ପାଏ ?

: କ'ଣ ଜାଣନ୍ତି ଦୀପଙ୍କରବାବୁ, ମୋର କାହିଁକି ତାକୁ ଦେଖିଲା ଦିନଠାରୁ ତା'ଉପରେ କିପରି ଏକ ଦୁର୍ବଳତା ଆସିଯାଇଛି । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ, ନିର୍ଦ୍ଦିଷ୍ଟ ସମୟରେ ସେ ମୋ' ପାଇଁ ପ୍ରତୀକ୍ଷା କରି ଠିଆହୋଇଥାଏ । ମୋତେ ଦେଖିବାକ୍ଷଣି ତା'ର ସମଗ୍ର ଦେହ ମନରେ

କିପରି ଏକ ଆନନ୍ଦର ବନ୍ୟାମାଡ଼ିଯାଏ । ସେ ହସେ । ଚାହେଁ, ତା'ର ଇଂଗିତ ଆଉ ଭଙ୍ଗୀରୁ ମନେହୁଏ, ସେ ଯେପରି ମୋରି ପାଇଁ ବହୁ କାଳରୁ ପ୍ରତୀକ୍ଷା କରି ଠିଆ ହୋଇଛି ।

: କିନ୍ତୁ ତା' ସହିତ ଆପଣ କଥାବାର୍ତ୍ତା ତ କରି ପାରନ୍ତେ ।

: ପାରନ୍ତି ଯେ, କିନ୍ତୁ ପାରୁ ନାହିଁ । ଟିକିଏ ଅସୁବିଧା ଅଛି । ଯେଉଁଥିପାଇଁ...

: କ'ଣ କୁହନ୍ତୁ ।

: ନା, ଆଗେ ଆପଣ ତାକୁ ଦେଖନ୍ତୁ । ତା'ପରେ କ'ଣ କରିବାକୁ ହେବ ଆପଣ ମୋତେ କହିବେ ।

: ଆଶ୍ଚର୍ଯ୍ୟ କଥା ତ ଆପଣ କହୁଛନ୍ତି । ଝିଅଟିକୁ ଆପଣ ଭଲପାଆନ୍ତି, ସେ ଆପଣଙ୍କୁ ଭଲପାଏ, ଅଥଚ... ବାହାରେ କାହାର ପାଦଶବ୍ଦ ଶୁଣି ଦୀପଙ୍କର ଚୁପ ହୋଇଗଲା ।

ଜଣେ ମଧ୍ୟମ ବୟସ୍କ ବଳିଷ୍ଠ ଭଦ୍ରଲୋକ ଭିତରକୁ ପଶିଲେ ।

ଏଇ ଭଦ୍ରଲୋକ ଯେ ମାନସର ରୁମ୍‌ମେଟ୍, ଦୀପଙ୍କର ତାହା ବୁଝିପାରିଲା ।

ଭଦ୍ରଲୋକ ଘର ଭିତରେ ପଶି, କେଉଁଆଡ଼େ ନ ଚାହିଁ ସିଧା ଯାଇ ତାଙ୍କ ବେଡ୍ ଉପରେ ବସିଲେ ।

ଜ୍ୱଳନ୍ତ ସିଗାରେଟଟାକୁ ଜୋତାତଳେ ଦଳିଦେଇ ଆଉ ଗୋଟିଏ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ ।

ତା'ପରେ ଆଖି ବୁଜି କ'ଣ ଟିକିଏ ଚିନ୍ତାକଲେ ଏବଂ ପୁଣି ଉଠି ମାର୍ଚ୍ଚିଂଭଙ୍ଗୀରେ ବାରଣ୍ଡାକୁ ବାହାରିଗଲେ ।

ବାରଣ୍ଡା ଉପରେ ଠିଆହୋଇ କିଛି ସମୟ ଦୂର ଉପତ୍ୟକା ଆଡ଼େ ଏକ ଦୃଷ୍ଟିରେ ଅନାଇରହି, ବାରଣ୍ଡା ଉପରେ ଗୋଟିଏ ବେତଚେଆର ଉପରେ ବସିଲେ ।

ଏମାନେ ଘର ଭିତରୁ ଭଦ୍ରଲୋକଙ୍କର ଭାବଭଙ୍ଗୀ ଲକ୍ଷ୍ୟ କରୁଥିଲେ ।

ଦୀପଙ୍କର କହିଲା : ଭଦ୍ରଲୋକଙ୍କ ନାମ କ'ଣ ?

ମାନସ କହିଲା : ଜାଣି ନାହିଁ ।

: ହୁଁ, ଆପଣ ଆସିବା ଆଗରୁ ଭଦ୍ରଲୋକ ଏଠାରେ ଥିଲେ ନା ପରେ ଆସିଲେ ?

: ପରେ ଆସିଲେ ।

: ଅତୀତରେ ଭଦ୍ରଲୋକ ବୋଧହୁଏ ମିଲିଟାରୀରେ ଥିଲେ । ଦୀପଙ୍କର କହିଲା ।

ମାନସ କ'ଣ କହିବାକୁ ଯାଉଥିଲା, କିନ୍ତୁ ସେଇ ଭଦ୍ରଲୋକ ପୁଣି ରୁମ୍ ଭିତରକୁ ପଶୁଥିବାର ଦେଖି ସେ ନୀରବ ହୋଇଗଲା ।

ଏଥର ଭଦ୍ରଲୋକ ଘର ଭିତରେ ପଶି, ଦୁଇଜଣଙ୍କ ମୁହଁକୁ ଚାହିଁଲେ । ମୁହଁରେ ହସ ଫୁଟାଇ ଦୀପଙ୍କର ଆଡ଼େ ଆଙ୍ଗୁଳି ଦେଖାଇ କହିଲେ : ଇଉ ଆର ଫ୍ରମ୍...?

: କ୍ୟାଲକାଟା । ଦୀପଙ୍କର କହିଲା ।

: ଭେରି ଗୁଡ୍ । ସିଗ୍ରେଟ୍ ? ଭଦ୍ରଲୋକ ସିଗାରେଟ୍ ପକେଟଟା ଦୀପଙ୍କର ଆଡ଼େ ବଢ଼ାଇଦେଲେ ।

: ନୋ, ଥାଙ୍କ୍ଇଉ ସାର୍ । ମୁଁ ସିଗାରେଟ୍ ଟାଣେ ନାହିଁ ।

: ଭେରି ଗୁଡ୍ । ଭଦ୍ରଲୋକ ସିଗାରେଟ ପକେଟାକୁ ନିଜର ଛାତି ପକେଟ୍‌ରେ ରଖିଦେଇ ପୁଣି ଧ୍ୟାନମୂର୍ତ୍ତି ଧାରଣକଲେ ।

ମାନସ କହିଲା : ଆମେ ଏଥର ଟିକିଏ ବାହାରୁ ବୁଲିଆସିବା ଚାଲନ୍ତୁ । ଘରେ ବସି ରହିଲେ ନେତାରହାଟର ସୌନ୍ଦର୍ଯ୍ୟ ଉପଲବ୍‌ଧି କରି ହୁଏ ନାହିଁ ।

: ଚାଲନ୍ତୁ । ଦୀପଙ୍କର ଉଠିଠିଆହେଲା ।

ସେମାନେ ଘରୁ ବାହାରି ଗଲେ ।

ମାନସ କହିଲା : ସେ ମୋ ପାଇଁ ଅନେକ ବେଳରୁ ଅପେକ୍ଷା କରିଥିବ ।

: ସତେ ! ତା'ହେଲେ ଆପଣଙ୍କର ଏତେ ଡେରିକରିବା ଉଚିତ ହୋଇ ନାହିଁ । କୁହନ୍ତୁ ବର୍ତ୍ତମାନ ଆମେ କୁଆଡ଼େ ଯିବା ?

: ପାଲାମଉ ଡାକବଙ୍ଗଳା ଆଡ଼େ । ସେ ସେଇଠି ରହୁଛି ।

ଦୀପଙ୍କର ଆଉ ମାନସ ଦୁହେଁ ବାହାରିପଡ଼ିଲେ ।

ରୁମ୍‌ର ସେହି ଭଦ୍ରଲୋକ ଗମ୍ଭୀର ହୋଇ ସିଗାରେଟ୍ ଟାଣୁଥିଲେ । ଶାଳ ଓ ପାଇନ୍ ଗଛର ଜଙ୍ଗଲ ଭିତରେ ସରୁ ସରୁ ପଥଗୁଡ଼ିକ ଲମ୍ବିଯାଇଛି । ଏଣେ ତେଣେ, ଅନେକ ଆଡ଼େ ।

ସେମାନେ ସେଇ ସରୁ ଜନପଥରେ ଆଗେଇ ଚାଲିଥିଲେ ।

ଗୋଟାଏ ମୋଡ଼ରେ କେତେଜଣ ଯୁବକ ଯୁବତୀ ଠିଆ ହୋଇ କଥାବାର୍ତ୍ତା ହେଉଥିଲେ । ସେମାନେ ସମସ୍ତେ ଟୁରିଷ୍ଟ ।

ନେତାରହାଟର ଶୋଭା ସମସ୍ତଙ୍କୁ ମୁଗ୍‌ଧ କରିଥିଲା । ସମସ୍ତଙ୍କ ମୁହଁରେ ହସ ଫୁଟିଥିଲା ।

ଦୀପଙ୍କର ଓ ମାନସ ଆଗେଇ ଚାଲିଥିଲେ ।

ଆଉ ଗୋଟାଏ ମୋଡ଼ ପାରହେଲା ବେଳକୁ, ପଛଆଡୁ ସେମାନେ ଶୁଣିଲେ, କିଏ ଜଣେ ଚିତ୍କାର କରି କହୁଛି: ଏ ରବିଦା, ଏଇ ଯେ କ୍ୟାବଲାକାନ୍ତ ଯାଉଛେ ।

ଦୀପଙ୍କର ପଛକୁ ଚାହିଁ ଦେଖିଲା, ବସ୍‌ର ସେହି ଯୁବକଟି ଏବଂ ତା' ସଙ୍ଗୀ ଜଣକ । ସେମାନଙ୍କ ସହିତ ଆଉ କେତେଜଣ ଅପରିଚିତ ଯୁବକ ।

ଦୀପଙ୍କର ମୁହଁବୁଲାଇ ଚାଲିଗଲା । ଲାଭ ନାହିଁ ଏଇମାନଙ୍କ କଥା ପ୍ରତିବାଦ କରି ।

ମାନସ କହିଲା : ଏଇ ମୋଡ଼ଟା ବୁଲିଗଲେ ପାଲାମଉ ଡାକବଂଗଳା ପଡ଼ିବ । ସେ ସେହି ବାରଣ୍ଡାରେ ଗୋଟିଏ ବେତଚେଆର ଉପରେ ମୋରି ପ୍ରତୀକ୍ଷାରେ ବସି ସୁଇଟର ବୁଣୁଥିବ ।

: ମୁଁ ଆପଣଙ୍କ ସଙ୍ଗରେ ଗଲେ କିଛି ଅସୁବିଧା ହେବ ନାହିଁ ତ !

: ନା ନା, କିଛି ଅସୁବିଧା ନୁହେଁ । ମୁଁ ତ ଆପଣଙ୍କ ପରି ଜଣେ ଦରଦୀ ବନ୍ଧୁ ଖୋଜୁଥିଲି । ଯିଏ ମୋର ଓ ତା'ର ମନର କଥା ବିଶ୍ଳେଷଣ କରିପାରିବ ।

: ମୁଁ ଯେ ପାରିବି, ଆପଣ ଜାଣିଲେ କିପରି ?

: ପ୍ରଥମ ଦର୍ଶନରେ ମୁଁ ଆପଣଙ୍କୁ ଚିହ୍ନି ନେଇଛି । ହେଇ, ଦେଖନ୍ତୁ ଦେଖନ୍ତୁ ଦୀପଙ୍କରବାବୁ, ଇଆଡ଼କୁ ପଛ କରି ସେ କାହା ସହିତ ଗପ କରୁଛି ।

ଦୀପଙ୍କର ଓ ମାନସ ଠିଆହୋଇଗଲେ ।

ଅଳ୍ପ ଦୂରରେ, ଗୋଟାଏ ପାଇନ୍ ଗଛର ଆଢୁଆଳରୁ ସେହି ତରୁଣୀଟିର ପଛ ପାଖଟା ଦେଖାଯାଉଥିଲା ।

ମୁହୂର୍ତ୍ତକ ପରେ ତରୁଣୀଟି ଇଆଡ଼େ ବୁଲି ଅନେଇଲା ।

ସତରେ ସେ ମାନସକୁ ଦେଖିବା କ୍ଷଣି ଖୁସିରେ ଉଚ୍ଛୁଳିପଡ଼ିଲା । ମନେହେଲା ଯେପରି ତରୁଣୀଟିର ସମଗ୍ର ଅଙ୍ଗପ୍ରତ୍ୟଙ୍ଗରେ ଆନନ୍ଦର ଜୁଆର ମାଡ଼ିଆସିଛି ।

ଦୀପଙ୍କର ଗୋଟାଏ ଗଛ ଆଢୁଆଳରେ ଲୁଚିଯାଇଥିଲା ।

ତୁରୁଣୀଟି ପ୍ରଲୁବ୍ଧ ଆଖିରେ ଦୀପଙ୍କର ଆଡ଼େ ଅନାଇ ରହି ଭାବଭଙ୍ଗୀରେ ଯେମିତି ଅନେକ କଥା କହି ଯାଉଥିଲା ।

ମାନସ ଉତ୍ତରରେ କି ଇଙ୍ଗିତ କରୁଥିଲା, ଦୀପଙ୍କର ଦେଖିପାରୁ ନଥିଲା ।

କିଛି ସମୟ ପରେ ମାନସ ଦୀପଙ୍କର ପାଖକୁ ଆଗେଇ ଆସି କହିଲା : ଦେଖିଲେ, ମୋର ପ୍ରେମିକା କିପରି ମୋରି ପ୍ରତୀକ୍ଷାରେ ବସି ରହିଛି ?

: ଦେଖିଲି ତ, କିନ୍ତୁ ଆମେ ଡାକବଙ୍ଗଳାକୁ ଯାଇ ତା' ସହିତ ଆଳାପ କରିବା ଚାଲନ୍ତୁ ।

: ନା, ନା, ଦୀପଙ୍କରବାବୁ, ଏତିକିରୁ ଆଉ ଅଧିକ ଆଗେଇବାର ସାହସ ମୋର ନାହିଁ । କାଳେ ଯଦି ତା'ର କିଛି କ୍ଷତିହୁଏ ! କାଳେ ଯଦି ସେ ମୋ ସହିତ ଅପରିଚିତ ପରି ବ୍ୟବହାର କରେ ?

: ତଥାପି, ଦୂରରୁ ଏହିପରି ଆପଣ କେତେ ଦିନ ତା'ର ପ୍ରତୀକ୍ଷା କରିବେ ?

: ଯେତେଦିନ ଯାଏ ସେ ଏଇଠି ଥିବ ।

: ତା'ପରେ ?

ମାନସ କହିଲା : ତା'ପରର କଥା ମୁଁ ଆଉ ଚିନ୍ତାକରି ପାରି ନାହିଁ । ତା'ପରର କଥା ଚିନ୍ତା କରିବା ପାଇଁ ତ ଆପଣଙ୍କର ଆଶ୍ରୟ ଲୋଡ଼ିଛି ।

ଦୀପଙ୍କର ଲକ୍ଷ୍ୟକଲା, ସେତେବେଳଯାଏ ତରୁଣୀଟି ସେହିଆଡ଼େ ଚାହିଁ ହସିଲା ଆଖିରେ ଅନାଇ ରହିଛି ।

ତରୁଣୀଟି ଆଉ ଟିକିଏ ଆଗେଇ ଆସିଲା ।

କିନ୍ତୁ ଇଟା କଂକ୍ରିଟର ବିରାଟ ପାଚେରିଟା ତାଙ୍କ ମଝିରେ ଠିଆହୋଇ ହୁଏତ ହଜାର ହଜାର ମାଇଲ୍‌ର ଦୂରତ୍ୱ ସୃଷ୍ଟି କରିଥିଲା ।

ଦୁଇଜଣଙ୍କ ମୁହଁରେ ପ୍ରଚୁର ପରିତୃପ୍ତିର ଆଭା ।

ତା'ପରେ ତରୁଣୀଟି ପଛକୁ ବୁଲି ଚାହିଁଲା । ସେଇ ଯିଏ ଗଲା, ଅନେକ ବେଳଯାଏ ଆଉ ଫେରିଲା ନାହିଁ ।

ମାନସ ଦୀପଙ୍କର ପାଖକୁ ଫେରି ଆସି କହିଲା : ଚାଲନ୍ତୁ ଯିବା । ସଞ୍ଜ ନଇଁ ଆସିଲାଣି । ଆଉ ସେ ଆସିବ ନାହିଁ ।

ମାନସର କଣ୍ଠରେ ହତାଶା ଫୁଟିଉଠିଥିଲା ।

ଦୀପଙ୍କର କହିଲା : ଆପଣ ନଗଲେ ବି ମୁଁ ପାଲାମଉ ଡାକବଙ୍ଗଳାକୁ ଯିବି । ଆଉ ଜାଣି ଆସିବି ଭଦ୍ରମହିଳାଙ୍କର ଇତିବୃତ୍ତି ।

: ନା, ନା ଦୀପଙ୍କର ବାବୁ । ଆପଣ ଆଉ ଯାହା କରନ୍ତୁ ନ କରନ୍ତୁ ସେଇ କାମଟି କରିବେ ନାହିଁ । ଆପଣଙ୍କ ଆଚରଣରେ ଯଦି ସେ କଷ୍ଟ ପାଏ !

ମାନସର କଥାବାର୍ତ୍ତା ଶୁଣି, ତା'ପ୍ରତି ଦୟା ହେଉଥିଲା ଦୀପଙ୍କରର । ଆହା ବିଚାରୀ ଝିଅଟି ପାଇଁ କେତେ ଦରଦ !

ସେମାନେ ଫେରିଯାଉଥିଲେ ।

ଦୀପଙ୍କରର ମନେପଡ଼ିଲା ସୁନନ୍ଦା କଥା । ତା'ସହିତ ନେତାରହାଟରେ ଆଉ କ'ଣ ଦେଖା ହେବନାହିଁ ?

ତା'ର ପରିଚୟ ବି ଦୀପଙ୍କର ପାଖରେ ଅଜ୍ଞାତ ରହିଗଲା; କିନ୍ତୁ ସୁନନ୍ଦାକୁ ଭାରି ଭଲ ଲାଗିଥିଲା ଦୀପଙ୍କରର । ଲଜ୍ଜା ନାହିଁ, ସଂକୋଚ ନାହିଁ । ବେଶ୍ ଷ୍ଟ୍ରେଟ୍; ଫରଓ୍ୱାଡ୍ ଅଥଚ ଅଭଦ୍ର ନୁହେଁ, ଉଶୃଙ୍ଖଳ ନୁହେଁ । ଆଜିକାଲି ସୁନନ୍ଦା ପରି ଚରିତ୍ର ଆଖିରେ କ୍ୱଚିତ୍ ପଡ଼ିଥାଏ ।

ମାନସ ପଚାରିଲା : ଆପଣ କ'ଣ ଭାବୁଛନ୍ତି ଦୀପଙ୍କରବାବୁ ?

: ଭାବୁଛି ଆପଣଙ୍କ ମାନସୀ କଥା ।

: ତାକୁ ଦେଖି ଆପଣଙ୍କର କ'ଣ ମନେହେଲା ?

: ଏତେ ଶୀଘ୍ର ଆପଣ ମୋର ମତାମତ ଚାହୁଛନ୍ତି ? ଯେଉଁ ଝିଅଟିକୁ ଆପଣ ଏତେ ଦିନରୁ ନିତି ଦେଖି ଦେଖି କିଛି ଷ୍ଥିର କରିପାରୁ ନାହାନ୍ତି, ସେଇ ଝିଅଟି ସମ୍ବନ୍ଧରେ...

ମାନସ ହଠାତ୍ ଦୀପଙ୍କରର ହାତଟାକୁ ଚିପିଦେଇ କହିଲା : ଆରେ, ଏ ଯେ ଆମର ସେହି ରୁମ୍‌ମେଟ୍ ଭଦ୍ରଲୋକ ନା ?

ଦୀପଙ୍କର ଚାହିଁ ଦେଖିଲା, ଗୋଟିଏ ଗଛ ଉହାଡ଼ରେ ଜଣେ ଭଦ୍ରଲୋକ ବସିଛନ୍ତି । ସିଗାରେଟ୍ ଟାଣୁଛନ୍ତି । ତାଙ୍କ ପାଖରେ ଜଣେ ବୟସ୍କା ଭଦ୍ରମହିଳା ।

ଦୀପଙ୍କର କିଛି ସମୟ ଅନାଇ ରହି କହିଲା : ହଁ ସେଇ ଭଦ୍ରଲୋକ । କିନ୍ତୁ ଭଦ୍ରମହିଳା ଜଣକ...

ବୁଝିଲେ ମାନସବାବୁ, ମଣିଷ ମନର ଗଭୀର ମନସ୍ତତ୍ତ୍ୱ ବୁଝିବା ମୋଟେ ସହଜ ନୁହେଁ । ଆପଣ ଚାଲିଆସନ୍ତୁ । ଭଦ୍ରଲୋକ ଆମକୁ ଦେଖିପାରିଲେ ହୁଏତ ଅପ୍ରସ୍ତୁତ ହୋଇଉଠିବେ ।

: ସେମାନେ ବାଟଭାଙ୍ଗି ଚାଲିଗଲେ ।

ମାନସ କହିଲା : ଆପଣଙ୍କୁ ନପାଇ ଥିଲେ ମୁଁ କିନ୍ତୁ ମୋଟେ ଉତ୍ସାହ ପାଇ ନଥାନ୍ତି । କେତେଦିନ ହେବ ନିଜକୁ ବଡ଼ ଅସହାୟ ମନେକରୁଥିଲି । ମନର କଥା କହିବାକୁ ଜଣେ ଦରଦୀ ବନ୍ଧୁ ନ ମିଳିଲେ ଯାହା ହୋଇଥାଏ ।

: ଆଚ୍ଛା, ମାନସବାବୁ, ଆଉ ଏଠାରେ ବା ଆଖ ପାଖରେ ଦର୍ଶନୀୟ ସ୍ଥାନସବୁ କ'ଣ ଅଛି ? ଦୀପଙ୍କର ପଚାରିଲା ।

: ଦର୍ଶନୀୟ ସ୍ଥାନ କିଛି ନାହିଁ । କେବଳ ଏଇଟା ପ୍ରକୃତିର ଲୀଳାଭୂଇଁ । ଏହାକୁ ଏକ ସ୍ୱାସ୍ଥ୍ୟ ନିବାସ ଆପଣ କହି ପାରନ୍ତି । ଏଇ ସ୍ଥାନଟା ଲମ୍ବାରେ ଚାରି ମାଇଲ୍, ଆଉ ଚଉଡ଼ାରେ ଅଢ଼େଇ ମାଇଲ୍ । ଏଠାରେ ଗୋଟିଏ ପବ୍‌ଲିକ୍ ହାଇସ୍କୁଲ୍ ଅଛି । ବଙ୍ଗଲୋ, ରେଷ୍ଟହାଉସ୍ ଛଡ଼ା ଟିକିଏ ଦୂରରେ ଅଛି ଓ୍ୱାଟର ଫଲ୍‌ସ । ମୁଁ ଆପଣଙ୍କୁ ସବୁ ବୁଲେଇ ଦେଖେଇ ଦେବି । ଆପଣ ଆନନ୍ଦ ପାଇବେ ।

ଆଉ ଟିକିଏ ଆଗେଇ ଯିବା ପରେ ସେମାନେ ପୁଣି ସେଇ ଯୁବକମାନଙ୍କୁ ଭେଟିଲେ, ରବିଦା, ପ୍ରବୀର ଏବଂ ସେମାନଙ୍କର ଆହୁରି ସାଙ୍ଗସାଥୀ ।

ପ୍ରବୀର କହିଲା : ରବିଦା, ଭଦ୍ରଲୋକ ଆମାଦେର ଓପରେ ରାଗ୍ କରେଛେନ୍ । ଏକଟୁ ବୁଝିଏ ବଲେଦାଓ । ଆମରା ସବାଇ ଏସେଛି ଆନନ୍ଦ କର୍‌ତେ, ଫୁର୍ତ୍ତି କର୍‌ତେ । ଉନିଯେନ...

ରବିଦା ଦୀପଙ୍କରକୁ କିଛି କହିବା ପୂର୍ବରୁ ଦୀପଙ୍କର ଆଗତୁରା କହି ଉଠିଲା : ନା ନା, ମୁଁ କିଛି ଭାବି ନାହିଁ । ଆପଣମାନଙ୍କ ବିରୋଧରେ ମୋର କିଛି ଅଭିଯୋଗ ନାହିଁ । ଆପଣମାନେ କେଉଁଠି ରହିଲେ ?

: ଆମେ ଏଇଠି ଇଉଥ୍ ହଷ୍ଟେଲରେ ଉଠିଛୁ । ଆଉ ଆପଣ ?

: ମୁଁ ଏଇ ପି : ଡବ୍ଲ୍ୟୁଡ଼ି ବଂଲୋରେ ।

ପ୍ରବୀର ଚିତ୍କାର କରି ଉଠିଲା : ତବେ ତ ସନ୍‌ରାଇଜ୍ ଭିଉ ସୁନ୍ଦର ଉପଭୋଗ କରାଯାବେ । ଆମରା ଭେବେଛିଲାମ ଭୋରେ ଉଠେ ପାଲାମଉର ଦିଗେ ଯାବୋ । ନା ରବିଦା ଆମି କିନ୍ତୁ ରାତ୍ରେ ଏସେ ଦାଦାର ବଂଲୋୟେ ଘୁମୋବୋ । କି ବଲେନ ଦାଦା? ପ୍ରବୀର ଦୀପଙ୍କର ମୁହଁକୁ ଚାହିଁ ପ୍ରଶ୍ନ କଲା ।

: ହଁ, ହଁ ନିଶ୍ଚୟ । ମୋର କିଛି ଆପତ୍ତି ନାହିଁ ।

ରବିଦା କିନ୍ତୁ ଦୀପଙ୍କରକୁ ଟିକିଏ ଦୂରକୁ ଡାକିନେଇ ଚୁପି ଚୁପି ପଚାରିଲେ : ବସ୍‌ରେ ଯେଉଁ ଝିଅଟି ସହିତ ଆପଣ ଆଳାପ କରୁଥିଲେ, ସେ ଗଲା କୁଆଡ଼େ ?

: ତା' ବାଟରେ ସେ ଚାଲିଯାଇଛି । ଦୀପଙ୍କର ଉତ୍ତର ଦେଲା ।

: ସେ ଆପଣଙ୍କର ପରିଚିତା ନୁହେଁ ?

: ନା ।

: ମୁଁ କିନ୍ତୁ ଝିଅଟାକୁ ପୂର୍ବରୁ କେଉଁଠି ଦେଖିଲା ପରି ମନେ ହେଉଥିଲା । ମୋର ମନେ ହେଉଛି ଝିଅଟା ସଙ୍ଗରେ ଯେତେବେଳେ କେହି ଆତ୍ମୀୟ ସ୍ୱଜନ ନାହାନ୍ତି ନିଶ୍ଚୟ ତା' ବ୍ୟାକ୍‌ଗ୍ରାଉଣ୍ଡରେ କିଛି ରହସ୍ୟ ଅଛି ।

: ରହସ୍ୟ ମାନେ ? ଦୀପଙ୍କର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ରବିଦା ହସି ହସି କହିଲା: ମୁଁ ତ ପ୍ରଥମେ ଭାବିଥିଲି ଆପଣ ତାକୁ ଉଡ଼େଇ ଆଣିଛନ୍ତି ।

: ଛି, ଏ ଆପଣ କ'ଣ କହୁଛନ୍ତି ରବିଦା ? ଜଣେ ଭଦ୍ରମହିଳା ବିପକ୍ଷରେ ଏପରି ମନ୍ତବ୍ୟ.....

ରବିଦା ହୋ ହୋ ହୋଇ ହସି ଉଠିଲା । କହିଲା : ଆପଣ ତା'ହେଲେ ଲାଇନ୍‌ର ଲୋକ ନୁହନ୍ତି । ଆପଣ ତ ଏଠାରେ ଅଛନ୍ତି ଦି'ଚାରିଦିନ, ଦେଖିବେ ମୁଁ ସେହି ଭଦ୍ରମହିଳାଙ୍କର ସ୍ୱରୂପ ଆପଣଙ୍କ ଆଗରେ ପ୍ରକାଶ କରିବି । ନେତାରହାଟ ପରି ଏତେ ଛୋଟ ଜାଗାରେ ସେ କେଉଁଠି ଲୁଚିଯାଇପାରିବ ନାହିଁ ।

ଦୀପଙ୍କର କହିଲା ସୁନନ୍ଦା ସମ୍ବନ୍ଧରେ ମୋର କୌଣସି ଅନୁସନ୍ଧିତ୍ସା ନାହିଁ । ତେଣୁ....

ଦୂରରୁ ପ୍ରବୀର ପାଟିକରି ଉଠିଲା : କିସବ୍ ଚୁପି ଚୁପି କଥା ହଛେ ବରିଦା । ଆମରା କିନ୍ତୁ ଆପନାଦେର ପ୍ଲାନ୍ ପ୍ରୋଗ୍ରାମ୍ ସବ୍ ଫାଁସ୍ କରେଦେବୋ ।

ସେମାନେ ଫେରିଆସୁଥିଲେ ।

ପ୍ରବୀର ଆଗେଇ ଯାଇ ଦୀପଙ୍କରର ହାତଧରି ଟିକିଏ ଦୂରକୁ ଟାଣିନେଇ ଚୁପି ଚୁପି କରି କହଲା : ଆପନି କିନ୍ତୁ ରବିଦା ଥେକେ ଦୂରେ ଥାକ୍‌ବେନ ।

: କାହିଁକି ? ଦୀପଙ୍କର ପଚାରିଲା ।

: ରବିଦାର ଆସଲ ପରିଚୟଟା ଜାନେନ ? ସେ ଏକଜନ ଗୋୟେନ୍ଦା ।

: ଗୋଏନ୍ଦା ? ଦୀପଙ୍କର ଯେପରି ଅସ୍ପଷ୍ଟ ଚିତ୍କାର କରି ଉଠିଲା ।

: ହଁ ରବିଦା କୋଲକାତାୟେ ରବି ଗୋଏନ୍ଦା ନାମେ ଖ୍ୟାତ । ଏଖାନେ ଏକଟା କେସେର୍ ସନ୍ଧାନେ ଏସେଛେ ।

ପ୍ରବୀର ଫେରିଗଲା ଦଳକୁ ।

ଦୀପଙ୍କର ମଧ୍ୟ ସାମିଲ ହେଲା ସେମାନଙ୍କ ଦଳ ସହିତ ।

କିନ୍ତୁ ଗୁଇନ୍ଦା ନାଁ ଶୁଣି, ଦୀପଙ୍କର ଭିତରେ କିପରି ଏକ ଆଲୋଡ଼ନ ସୃଷ୍ଟି ହୋଇଗଲା । ତା'ର ମନେହେଲା, ସେ ଏମାନଙ୍କୁ ଏଡ଼େଇ ଚଳିବ । କାରଣ ଅପରାଧୀମାନଙ୍କର ଗୋଏନ୍ଦା ଆଖିରେ ଧୂଳି ଦେବା ଏତେ ସହଜ ହୁଏ ନାହିଁ । ତା'ଛଡ଼ା ରବିଦା ତାକୁ ଏବଂ ଝିଅଟାକୁ ସସ୍‌ପେକ୍‌ଟ କରି ସାରିଲେଣି ।

କିଛିବାଟ ଆଗେଇ ଯାଇ ଦୀପଙ୍କର କହିଲା : ଆଜି ରାତିକ ପାଇଁ ଆମକୁ ବିଦାୟ ଦିଅନ୍ତୁ ରବିଦା । ପୁଣି କାଲି ସକାଳେ ଦେଖାହେବ ।

ପ୍ରବୀର କହିଲା : ସକାଳେ ଟକାଳେ ନୟ । ଆଜ୍ ରାତ୍ରେ ଆମି ଆପନାର ଓଖାନେ ଯାଛି ।

: ଠିକ୍ ଅଛି । ଆପଣ ଆସିବେ ।

ଦୀପଙ୍କର ମାନସକୁ ଡାକି ବାଟଭାଙ୍ଗି ଆଗେଇ ଚାଲିଗଲା ।

ପଛରୁ କେଜାଣି କାହିଁକି ସେଇ ଦଳଟା ହୋ ହୋ ହୋଇ ହସିଉଠିଲେ ।

ମାନସ କହିଲା : ଏମାନଙ୍କ ସହିତ ଆପଣଙ୍କର ପୂର୍ବରୁ ପରିଚୟ ଅଛି ଦୀପଙ୍କରବାବୁ ।

: ନା ନା, ଏକା ବସ୍‌ରେ ଆସିଥିଲୁ ।

ସେମାନେ ଫେରିଲା ବେଳକୁ ସଂଧ୍ୟା ନଇଁ ଆସିଥିଲା ।

ଡାକବଙ୍ଗଳାରେ କୋଳାହଳ ଭରିଉଠିଥିଲା ।

ରୁମ୍ ଭିତରେ ସେଇ ଭଦ୍ରଲୋକ ବେଡ୍ ଉପରେ ବସି ସିଗାରେଟ୍ ଟାଣୁଥିଲେ ।

ଦୀପଙ୍କର ମନଟା ବି କିପରି କାହିଁକି ମଉଳି ପଡ଼ିଥିଲା । ମାନସ କହିଲା : ଆସନ୍ତୁ କଫି ଖାଇ ଆସିବା ।

: କେତେବାଟ ଯିବାକୁ ହେବ ?

: ନା, ନା ଏଇ ଡାକ ବଙ୍ଗଳାରେ ଗୋଟିଏ ଆଟାଚ ରେଷ୍ଟୁରେଣ୍ଟ ଅଛି ।

ଦୀପଙ୍କର ଖଟ ଉପରେ ବସୁ ବସୁ ପୁଣି ଠିଆହୋଇପଡ଼ିଲା ।

ସଙ୍ଗେ ସଙ୍ଗେ ଠିଆହୋଇପଡ଼ିଲେ ସେମାନଙ୍କର ରୁମ୍‌ମେଟ୍ ସେହି ଭଦ୍ରଲୋକ ଜଣକ ।

ସେମାନେ ରେଷ୍ଟୁରେଣ୍ଟ ଆଡ଼କୁ ଆଗେଇ ଗଲେ । ସେହି ଭଦ୍ରଲୋକ ଜଣକ ମଧ୍ୟ ସେମାନଙ୍କର ପଥ ଅନୁସରଣ କଲେ ।

ରେଷ୍ଟୁରେଣ୍ଟରେ ଅନେକ ଲୋକ ।

ମାନସ ଓ ଦୀପଙ୍କର ଯାଇ ଗୋଟିଏ ଟେବୁଲ୍ ଅଧିକାର କରି ବସିଲେ ।

ଦୀପଙ୍କର ମାନସ ମୁହଁକୁ ଏବଂ ମାନସ ଦୀପଙ୍କର ମୁହଁକୁ ଅନାଇଲା ।

ଭଦ୍ରଲୋକ ପୁଣି ନୀରବରେ ଚୁପ୍‌ଚାପ୍ ବସି ରହିଲେ ।

ଦୀପଙ୍କର ଲକ୍ଷ୍ୟକରୁଥିଲା ଅନ୍ୟାନ୍ୟ ସହଯାତ୍ରୀମାନଙ୍କୁ । ସବୁ ବୟସର ଅଛନ୍ତି । ସମସ୍ତଙ୍କ ମୁହଁରେ ପ୍ରାଣଚାଞ୍ଚଲ୍ୟର ଭାବ ଫୁଟିଉଠିଛି । ଦେଖାଯାଉଛି ଯେପରି ଜୀବନଟାକୁ ଅତି ସହଜ ଭାବରେ ଉପଭୋଗ କରି କଟାଇ ଦେବାପାଇଁ ପ୍ରତିଯୋଗିତା ଲାଗିଯାଇଛି ।

ବୟଟି ଆଣି କଫି ଦେଇଗଲା ।

ଭଦ୍ରଲୋକ ନିଜ ହାତରେ ଦୁଇଜଣଙ୍କ ଆଡ଼େ ଦୁଇକପ୍ ରଖିଦେଇ, ନିଜ କପ୍‌ଟି ମୁହଁ ପାଖକୁ ଉଠାଇନେଲେ ।

ଦୀପଙ୍କର କହିଲା : ସାର୍ ଆପଣ କ'ଣ ମିଲିଟାରୀରେ କାମ କରନ୍ତି ?

ଭଦ୍ରଲୋକ ଆଖିଖୋଲି ଦୀପଙ୍କର ମୁହଁକୁ ଚାହିଁଲେ । ତାଙ୍କ ମୁହଁରୁ କାଠିନ୍ୟ ଯେପରି ସାମାନ୍ୟ ଘୁଞ୍ଚିଗଲା । ସେ ଶାନ୍ତ ସ୍ୱରରେ ପଚାରିଲେ : ଆପଣଙ୍କର ମୋ ସମ୍ବନ୍ଧରେ ଏପରି ଧାରଣା ଜନ୍ମିଲା କାହିଁକି ?

: ନା ସାର୍, ମୋର କାହିଁକି ସେମିତି ମନେହେଲା । ଆପଣ କିନ୍ତୁ କିଛି ମନେ କରିବେ ନାହିଁ ସାର୍ ।

ଭଦ୍ରଲୋକ କଣ୍ଠସ୍ୱର ଆଉ ଟିକିଏ କୋମଳ କରିବାକୁ ଚେଷ୍ଟାକରି କହିଲେ : ଅରିଜିନାଲି ମୁଁ ଜଣେ ଫରେଷ୍ଟ ଅଫିସର । ଅବଶ୍ୟ ବର୍ତ୍ତମାନ ରିଟାଏଡ୍ । ଆପଣଙ୍କର ବିଶ୍ୱାସ ହେଉଛି ?

: ହଁ ସାର୍, ଦୀପଙ୍କର କହିଲା । କିନ୍ତୁ ଆପଣ କ'ଣ ଏଠାକୁ ବୁଲିବାକୁ ଆସିଛନ୍ତି ?

: ନିଶ୍ଚୟ, ବୁଲିବା କହିପାରନ୍ତି, ରେଷ୍ଟନେବାକୁ ବି କହିପାରନ୍ତି ।

: କିନ୍ତୁ ସାର୍, ଆପଣଙ୍କର ବୁଲିବା ପାଇଁ ବା ରେଷ୍ଟ ନେବା ପାଇଁ ଏଇ ସ୍ପଟ୍‌ଟା କିପରି ଅସଂଗତ ମନେ ହେଉନାହିଁ କି ?

: କାହିଁକି, କାହିଁକି ?

: ନା, ଆଉ କିଛି ନୁହେଁ ଯେ, ଆପଣ ଜଣେ ଫରେଷ୍ଟ ଅଫିସର ବୋଲି ଏକଥା କହିଲି । ଜୀବନଭରି ଆପଣ ଜଙ୍ଗଲ ଭିତରେ କଟାଇ ଆସିଲେ । ଆଉ ଆଜି ଅବସର ନେବା ପରେ ପୁଣି ଆପଣ ସେଇ ଜଙ୍ଗଲକୁ ବିଶ୍ରାମ ପାଇଁ ଫେରିଆସିଛନ୍ତି, ଘଟଣାଟା କିପରି ଟିକିଏ ଅସ୍ୱାଭାବିକ...

ଦୀପଙ୍କର କଥା ଅସମାପ୍ତ ରଖି ନୀରବ ହୋଇଗଲା ।

ଭଦ୍ରଲୋକ ମଧ୍ୟ ଧୀରେ ଧୀରେ ଧ୍ୟାନସ୍ଥ ହୋଇ ପଡ଼ିଥିଲେ ।

ମାନସ କଫି ଶେଷ କରି ସାରିଥିଲା ।

ସେ ଦୀପଙ୍କରର ହାତଧରି ଟାଣୁ ଟାଣୁ କହିଲା : ଆସନ୍ତୁ ବାହାରେ ବସ ଯାତ୍ରୀମାନଙ୍କୁ ଦେଖିବା ।

ଦୀପଙ୍କର କଫି କପ୍‌ରୁ ଶେଷ କଫିତକ ଶେଷ କରି ଦେଇ ମାନସ ସହିତ ବାହାରକୁ ବାହାରିଗଲା ।

ଛୋଟ ଛୋଟ ପିଲାମାନେ ବାରଣ୍ଡାରେ ଖେଳୁଥିଲେ ।

ଦୀପଙ୍କର ଗୋଟିଏ ସାନ ଝିଅକୁ ପାଖକୁ ଡାକି ପଚାରିଲା, : ତୋ ନାଁ କ'ଣ ?

ଝିଅଟି ହସି ହସି କହିଲା : ମୁନିଆଁ । ଓଲଟି ପ୍ରଶ୍ନକଲା, ତମ ନାଁ କ'ଣ ?

: ମୋନାଁ ? ମୋନାଁ ଦୀପୁ । ତମେ ମୋ ସଙ୍ଗରେ ଖେଳିବ?

: ତମର ହାଣ୍ଡି, ମାଠିଆ ଅଛି ?

: କି ହାଣ୍ଡି ମାଠିଆ ?

: ଏଇ ମିଛି ମିଛି, ଭାତରାନ୍ଧିବା, ଡାଲିକରିବା ।

ଦୀପଙ୍କର ସେଇ ଝିଅଟିକୁ କୋଳକୁ ଉଠାଇ ନେଉଥିଲା । ସେ କିନ୍ତୁ ଡିଆଁମାରି ପଳାଇଲା ପାଖର ଗୋଟାଏ ରୁମ୍‌କୁ ।

ମାନସ କହିଲା : ବର୍ତ୍ତମାନ କ'ଣ କରିବା, ରାତିରେ ତ ଆଉ କୁଆଡ଼େ ବାହାରି ହେବ ନାହିଁ ।

: ଚାଲନ୍ତୁ ବାରଣ୍ଡାରେ ବସି ବସି ପ୍ରତିବେଶୀମାନଙ୍କର କଥା ଶୁଣିବା । ସେମାନଙ୍କ ସଙ୍ଗରେ ଆଳାପ କରିବା । ଯେମିତି ହେଲେ ରାତିଟା ତ କଟାଇବାକୁ ହେବ ।

: କିନ୍ତୁ ଦୀପଙ୍କରବାବୁ, ସମସ୍ୟାତ ଗୋଟିଏ ରାତିର ନୁହଁ; ରାତି ପରେ ପୁଣି ରାତି ଆସିବ, ଅନେକ ରାତି, ତା'ର ହିସାବ ଆଜିଠାରୁ କରିବା କ'ଣ ସହଜ କଥା ?

: ସତରେ ମାନସବାବୁ, ଆପଣଙ୍କର ପ୍ରାଣଟାକୁ ସେହି ମୋହମୟୀ ତରୁଣୀ ଆଚ୍ଛନ୍ନ କରି ରହିଛି । ଚାଲନ୍ତୁ ଏଇ ରାତ୍ରିର ଅନ୍ଧକାରରେ ଆମେ ପାଲାମାଉ ଯାଇ ସେହି ତରୁଣୀଟି ସମ୍ବନ୍ଧରେ ସମସ୍ତ ତଥ୍ୟ ସଂଗ୍ରହ କରି ଆଣିବା ।

ମାନସ ହସିଲା । ହସରେ କାରୁଣ୍ୟ ଭରିଥିଲା । ସେ ଚିନ୍ତା ମୁଁ ଅନେକଥର କରିଛି, କିନ୍ତୁ ଆଗଇବାକୁ ଭରସା କରିପାରିନାହିଁ । କାଳେ ଯଦି ଭଲମନ୍ଦ କିଛି ଘଟିଯାଏ !

: ତା'ହେଲେ ଗୋଟାଏ, କାମ କରିବା ?

: କ'ଣ ?

: ସେ ଯେଉଁ ରବିଦା, ଯାହା ସହିତ ଆମର ବାଟରେ ଦେଖାହେଲା ସେ ଜଣେ ଗୋଏନ୍ଦା, ତାକୁ ଲଗେଇଦେବା ତଥ୍ୟ ସନ୍ଧାନରେ ?

ମାନସ ହସି ହସି ଗଡ଼ିଗଲା । କହିଲା : ଆପଣ ହସେଇଲେ ଦୀପଙ୍କରବାବୁ । ମୁଁ ହଲପ କରି କହିପାରେ ଯେ, ଝିଅଟା ଆଉ ଯାହା ହେଉ ନହେଉ, ସେ ନିଶ୍ଚୟ ଚୋର ଡକେଇତ ନୁହେଁ, କିମ୍ବା ଖୁଣୀ ଆସମୀ ନୁହେଁ ।

ଖୁଣୀ ଆସାମୀ ନାଁ ଶୁଣି ଦୀପଙ୍କର ଚମକି ଉଠିଲା ।

ହଠାତ୍ ଯେପରି ତା'ମନର ସମସ୍ତ ସରସତା ମିଳେଇଗଲା ।

ସେ ଏକ ଅଜ୍ଞ ନାବାଳକ ପରି ପଚାରିଲା : ଗୋଏନ୍ଦାମାନେ ପ୍ରକୃତରେ କ'ଣ ଖୁଣୀ ଆସାମୀମାନଙ୍କୁ ଖୋଜି ବାହାର କରି ପାରନ୍ତି ?

: ନିଶ୍ଚୟ, ମାନସ କଣ୍ଠରେ ଦୃଢ଼ତା ଫୁଟିଉଠିଲା ।

ଦୀପଙ୍କର ବାରଣ୍ଡାର ଘର ଭିତରକୁ ଉଠିଗଲା ।

କିପରି ତା'ର ଦେହ, ମନରେ ଭାବାନ୍ତର ସୃଷ୍ଟି ହୋଇଥିଲା ।

ମାନସ ପଚାରିଲା : ହଠାତ୍ ଆପଣଙ୍କର କ'ଣ ହେଲା ଦୀପଙ୍କରବାବୁ ?

: ନା କିଛି ହୋଇନାହିଁ । ଆଚ୍ଛା ଏଠି ପୋଲିସ୍ ଷ୍ଟେସନ କେତେଦୂରରେ ?

ମାନସ କହିଲା : ମୁଁ ଦେଖିନାହିଁ, ତେବେ ଏଇଠି କୋଇଠି ହୋଇଥିବ ନିଶ୍ଚୟ । ଆପଣଙ୍କର ପୋଲିସ୍ ଷ୍ଟେସନ ସହିତ କିଛି ପ୍ରୟୋଜନ ଅଛି ?

: ନା, ନା । ଦୀପଙ୍କର ହସିବାକୁ ଚେଷ୍ଟାକଲା । ମୁଁ ଏମିତି ପଚାରୁଥିଲି । କେତେବେଳେ କିଛି କ'ଣ ଭଲ ମନ୍ଦ ଘଟିପାରେ ତ ! ଆଗରୁ ପୋଲିସ୍ ଷ୍ଟେସନଟା ଜାଣିରଖିଥିଲେ ଭଲ ।

ଦୀପଙ୍କର ବିଛଣା ଉପରେ ଶୋଇ ପଡ଼ିଲା ।

ମାନସ ଦୀପଙ୍କର ପାଖରେ ବସିପଡ଼ି କହିଲା : କ'ଣ ଦେହ ଖରାପ ଲାଗୁଛି ।

: ନା, ନା ଦେହ ଭଲ ଅଛି । ତେବେ କେମିତି ଟିକିଏ କ୍ଲାନ୍ତ ଲାଗୁଛି । ବାହାରକୁ ବାହାରିବେ ନା' କ'ଣ?

: ନା, ଏଇକ୍ଷିଣା ଆଉ କୁଆଡ଼େ ଯିବା । ତେବେ ମୁଁ କ'ଣ କହୁଥିଲି କି ସେଇ ଝିଅଟି କଥା ଆପଣଙ୍କର କ'ଣ ମନେହେଲା ?

: ଓଃ, ସେଇ ଝିଅଟି କଥା ! ହଁ, ହଁ ତା'ର ଆଚରଣ ଦେଖି ତ ମନେହେଲା ସେ ଆପଣଙ୍କୁ ଖୁବ୍ ଚାହେଁ । ତେବେ ଦୂରରୁ ଥାଇ ଏହିପରି ଲୁଚକାଳି ଖେଳ ଖେଳିଲେ ଚଳିବ ନାହିଁ । ସାମ୍‌ନାକୁ ଆଗେଇଯିବାକୁ ହେବ ।

: ଯିବି ? କିଛି ବିପଦ ଆପଦ ଘଟିବ ନାହିଁ ତ ?

: ବିପଦ ଆପଦ ପୁଣି କ'ଣ ? ଆପଣ କ'ଣ ସେଠାରେ ଯାଇ ତା' ସହିତ କିଛି ଅଭଦ୍ରୋଚିତ ଆଚରଣ କରୁଛନ୍ତି ? ଯିବେ କଥାବାର୍ତ୍ତା କରିବେ । ଆମେ ଏଇ ବିଦେଶ ଭୂଇଁରେ ସମସ୍ତେ ତ ପରସ୍ପରର ବନ୍ଧୁ ।

: କିନ୍ତୁ ଘଟଣା ଆଉ ଟିକିଏ ଅଛି ଦୀପଙ୍କରବାବୁ । ଯେଉଁଟା ମୁଁ ଆପଣଙ୍କୁ କହିନାହିଁ ।

: ସତେନା କ'ଣ ? ଦୀପଙ୍କର ଉତ୍ସାହ ପ୍ରକାଶ କରି ବିଛଣାରୁ ଉଠିବସିଲା । ଆପଣ ତା'ହେଲେ...

: ନା, ନା । କଥାବାର୍ତ୍ତା ଆଜିଯାଏ ହୋଇନାହିଁ । ତେବେ ଦୁଇଦିନ ତଳେ ମୁଁ ସାହସ କରି ପାଲାମଉ ବଂଲୋକୁ ଯାଇଥିଲି ।

: ତା'ପରେ ?

: କିନ୍ତୁ ଗୋଟାଏ ଦୁର୍ଘଟଣା ଘଟିବା ଭୟରେ, ମୋତେ ଅଣନିଶ୍ୱାସୀ ହୋଇ ଧାଇଁ ପଳାଇ ଆସିବାକୁ ହୋଇଥିଲା ।

: କିପରି ?

: ଲୋକଟା ବୋଧହୁଏ ତା'ର ଭାଇ ହେବ । ଗୋଟାଏ ଷଣ୍ଢମାର୍କା ଲୋକ । ଲମ୍ବା ଲମ୍ବା ଗାଲମୁଛି ରଖିଛି । ପ୍ୟାଣ୍ଟ ଉପରେ ଡୋରିଆ ଗଞ୍ଜି ପିନ୍ଧିଛି ।

: ସେଉଠୁ କ'ଣ ହେଲା ?

: ମୁଁ ଆଗେଇ ଯାଇଥିଲି । ସେ ବି ହସି ହସି ଘର ଭିତରୁ ବାହାରି ଆସିଥିଲା । ଆଉ ଠିକ୍ ସେତିକିବେଳେ ଆଉ ଗୋଟାଏ ରୁମ୍‌ରୁ ବାହାରି ଆସିଲା ସେଇ ଲୋକଟା । ସେ ତାକୁ ଦେଖିବା ମାତ୍ରେ ଆତଙ୍କିତ ହୋଇ ଛୁଟିପଳାଇଲା । ଆଉ ମୁଁ ? ମୋ ଅବସ୍ଥା କ'ଣ ହେଲା ଜାଣନ୍ତି ? ଲୋକଟା ମୋ ଆଡ଼କୁ ମାଡ଼ିଆସିଲା । ତା' ଆଖି ମୁହଁରେ ଫୁଟିଉଠିଥିଲା କିପରି ଏକ ଭୟଙ୍କର ହିଂସ୍ରତା । ତା'ପରେ ଯେ କେଉଁବାଟେ ଦଉଡ଼ି, କେଉଁବାଟେ ଆସି ଏଠାରେ ପହଞ୍ଚିଲି, ମୋର ଆଉ ହୋସ୍ ନଥିଲା ।

ଦୀପଙ୍କର କଣ୍ଠରେ ସମ୍ବେଦନା ଫୁଟାଇ କହିଲା : ଆହା, ତା'ହେଲେ...

ବାରଣ୍ଡାରେ କାହାର ଭାରି ପାଦଶବ୍ଦ ଶୁଣି ଦୀପଙ୍କର ଚୁପ୍ ହୋଇଗଲା । ଭଦ୍ରଲୋକ ତାଙ୍କର ରୁମ୍‌ମେଟ୍, ରିଟାଏଡ଼ ଫରେଷ୍ଟ ଅଫିସର ।

ଚୁପ୍‌ଚାପ୍ ସେ ଯାଇ ତାଙ୍କ ଖଟଟି ଉପରେ ବସିପଡ଼ିଲେ ।

ମାନସ ଧୀରେ ଧୀରେ କହିଲା : ଲୋକଟା ନିହାତ୍ ବେରସିକ ଦୀପଙ୍କରବାବୁ । ସକାଳୁ ଉଠି ତା' ମୁହଁଚାହିଁଲେ ଅମଙ୍ଗଳ ଛଡ଼ା ମଙ୍ଗଳ ନାହିଁ ।

ଦୀପଙ୍କର କହିଲା : ନା ମାନସବାବୁ, ମୋର ମନେ ହେଉଛି ଆପଣଙ୍କଠାରୁ ତାଙ୍କର ସମସ୍ୟା ଆହୁରି ଗଭୀର ।

ମାନସ ଆଉ କିଛି କହିଲା ନାହିଁ । ଉଠିଯାଇ ଘରର ଲାଇଟ୍‌ଟା ଜଳେଇଦେଲା । ଘରେ ଆଲୋକର ବନ୍ୟା ଖେଳିଗଲା ।

ଫରେଷ୍ଟ ଅଫିସର ଜଣକ ଟିକିଏ ବିବ୍ରତ ବୋଧକଲେ ।

ଛାତି ପକେଟ୍‌ରୁ ସିଗାରେଟ୍ ପକେଟ୍‌ଟା ବାହାର କରି ସିଗାରେଟ୍ ଲଗାଇଲେ ।

ମାନସ କହିଲା : ବାରଣ୍ଡାରେ ବସିବା ଚାଲନ୍ତୁ । ଘର ଭିତରଟା ଆଉ ଭଲ ଲାଗିବ ନାହିଁ ।

ସେଦିନ ରାତିରେ ସେମାନେ ଅନେକ ବେଳଯାଏ କଥାବାର୍ତ୍ତା ହେଲେ ।

ତା'ପରେ ଶୋଇପଡ଼ିଲେ ସମସ୍ତେ ।

ଗୋଟାଏ ଦୁଃସ୍ୱପ୍ନ ଦେଖି ହଠାତ୍ ଦୀପଙ୍କରର ନିଦ ଭାଙ୍ଗିଗଲା । ସେ ଦେଖିଲା ରାୟବାହାଦୁର ଶଙ୍କର ପ୍ରସାଦ ଗୋଟାଏ ଘୋଡ଼ାରେ ଚଢ଼ି, କାନ୍ଧରେ ଗୋଟାଏ ଦୋ'ନଳି ବନ୍ଧୁକ ପକାଇ ସଦଳବଳ ବାହାରିଛନ୍ତି । ବଣ ଜଙ୍ଗଲରେ ଲତାପତ୍ର ଆଡ଼େଇ କାହାକୁ ଯେପରି ଖୋଜୁଛନ୍ତି ।

ଦୀପଙ୍କର ଦେଖିଲା ସେମାନଙ୍କୁ । ଲୁଚି ଲୁଚି ପଳେଇବାକୁ ଲାଗିଲା । କିନ୍ତୁ ହଠାତ୍ ଗୋଟାଏ ଫାଙ୍କା ଜାଗାରେ ଦୀପଙ୍କର ଧରାପଡ଼ିଗଲା ।

ରାୟବାହାଦୁରଙ୍କ ଦୋ'ନଳି ବନ୍ଧୁକଟା ଗର୍ଜିଉଠିଲା ଦୁଇଥର ।

ଦୀପଙ୍କର ନିଦ ଭାଙ୍ଗିଗଲା । ଭୟରେ ତା'ର ସମସ୍ତ ଦେହଟା କମ୍ପିଉଠିଲା । କିନ୍ତୁ ଧୀରେ ଧୀରେ ତା'ର ମନେପଡ଼ିଲା, ସେ ନେତାରହାଟର ଏକ ବଂଲୋରେ ନିରାପଦରେ ଶୋଇଛି ।

ଅନ୍ଧକାର ଘର ଭିତରେ କିଛି ସମୟ ସେ ଚୁପ୍‌ଚାପ୍ ବସିରହିଲା । ପାଖ ଦୁଇ ଖଟରେ ମାନସ ଓ ଫରେଷ୍ଟ ଅଫିସର ଶୋଇ ଯାଇଥିଲେ । ହୁଏତ ଗଭୀର ନିଦରେ ଅଚେତନ ହୋଇପଡ଼ିଥିଲେ ସେମାନେ ।

କିନ୍ତୁ ଦୀପଙ୍କର ଆଖିରେ ଯେ ଆଉ ନିଦ ନାହିଁ !

କ'ଣ କରିବ ସେ ? ସେ ଯେ ଏଠାରେ ଥାଇ ମଧ୍ୟ ନିଜକୁ ନିରାପଦ ମନେକରି ପାରୁ ନାହିଁ । ତେଣେ ତା' ବିରୋଧରେ ଖୁଣ୍ ଅଭିଯୋଗ ହୋଇଛି, ପୋଲିସ୍ ହୁଏତ ଖୋଜୁଛି ଚାରିଆଡ଼େ ।

ଦୀପଙ୍କର ଦେହରୁ କିପରି ଗମ୍ ଗମ୍ ହୋଇ ଝାଳବାହାରିବାକୁ ଲାଗିଲା । ସେ ବିଛଣାରୁ ଉଠିଆସିଲା ବାହାରକୁ । ବାରଣ୍ଡାରେ ଟିକିଏ ନିରୋଳାରେ ବସି ଚିନ୍ତା କରିବ ସେ କିପରି ଜୀବନ ଯନ୍ତ୍ରଣାରୁ ମୁକ୍ତି ପାଇପାରେ !

କିନ୍ତୁ ବାରଣ୍ଡାରେ ଆସି ଦେଖିଲା, ତା'ରି ରୁମ୍‌ମେଟ୍, ରିଟାଏଡ୍ ଫରେଷ୍ଟ ଅଫିସର ଚୁପ୍‌ଚାପ୍ ବସି ସିଗାରେଟ୍ ଟାଣୁଛନ୍ତି ।

ସେ ଦିପଙ୍କରର ପାଦଶବ୍ଦ ଶୁଣି ବୁଲିପଡ଼ି ଅନାଇଲେ । ଇଙ୍ଗିତରେ ଚେଆର ଦେଖାଇ ବସିବାକୁ କହିଲେ ।

ଦୀପଙ୍କର ବସିଲା ଚେଆର ଉପରେ ।

ଭଦ୍ରଲୋକ ହଠାତ୍ ପ୍ରଶ୍ନ କଲେ : ଆପଣ ବିବାହ କରିଛନ୍ତି ?

ଦୀପଙ୍କର ସେହି ଭଦ୍ରଲୋକଙ୍କ ମୁହଁରୁ ଏପରି ପ୍ରଶ୍ନ ଆଶା କରି ନଥିଲା ।

ତଥାପି ସେ ସଂଯତ ସ୍ୱରରେ କହିଲା : ନା ।

ତା'ପରେ ପୁଣି ଭଦ୍ରଲୋକ ପଚାରିଲେ : ଆପଣ ପ୍ରେମ କରିଛନ୍ତି ?

ଦୀପଙ୍କର ଆଶ୍ଚର୍ଯ୍ୟ ହୋଇ ଭଦ୍ରଲୋକଙ୍କ ମୁହଁକୁ ଚାହିଁଲା । କହିଲା : ଆପଣ ମୋତେ ଏପରି ପ୍ରଶ୍ନ କାହିଁକି ପଚାରୁଛନ୍ତି ?

ଭଦ୍ରଲୋକ ବୋଧହୁଏ ହସିଲେ । ଦୀପଙ୍କର ଅନ୍ଧକାରେ ତାଙ୍କ ମୁହଁ ଦେଖିପାରୁ ନଥିଲା । ପୁଣି ସେ କହିଲେ : ପ୍ରେମ ମଣିଷ ଜୀବନକୁ କିପରି ସର୍ବନାଶ କରିପାରେ ମୁଁ ତା'ର ଗୋଟିଏ ଜ୍ୱଳନ୍ତ ପ୍ରମାଣ ।

ଦୀପଙ୍କର ଅବିଶ୍ୱାସ ଦୃଷ୍ଟିରେ ଭଦ୍ରଲୋକଙ୍କ ମୁହଁକୁ ଅନାଇଲା ।

କିନ୍ତୁ ଭଦ୍ରଲୋକ କହି ଚାଲିଥିଲେ : ଆପଣ ମୋତେ କଫି ପିଇଲା ବେଳେ ସନ୍ଦେହ କରିଥିଲେ, ପ୍ରଶ୍ନ କରିଥିଲେ ଜଣେ ଫରେଷ୍ଟ ଅଫିସର ତାର ରିଟାଏଡ୍ ଲାଇଫ୍‌ରେ ଅବସର ଯାପନ ପାଇଁ କୌଣସି ଜଙ୍ଗଲକୁ ଯାଇପାରେନା । ଯିବା ଅସ୍ୱାଭାବିକ । ମୁଁ କିନ୍ତୁ ଆସିଛି, କାହିଁକି ଆସିଛି ଜାଣନ୍ତି ? ମୋର ପ୍ରେମିକାକୁ ଦେଖିବା ପାଇଁ ।

ଭଦ୍ରଲୋକ ଗୋଟିଏ ଦୀର୍ଘଶ୍ୱାସ ପକାଇ, ଆଉ ଗୋଟିଏ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ ।

ପୁଣି କିଛି ସମୟ ନୀରବତା ପରେ କହିଲେ : ଆପଣ ବର୍ତ୍ତମାନ ୟଙ୍ଗ୍, ଜୀବନର ଆୟମାରମ୍ଭ । ସେଇଥିପାଇଁ ମୁଁ କହୁଛି, ଆପଣ ମୋ ପରି ଭୁଲ୍ କରିବେ ନାହିଁ । ମୋର ବୟସ ବର୍ତ୍ତମାନ କେତେ ହେଲାଣି ଜାଣନ୍ତି ? ପ୍ରାୟ ପଞ୍ଚଷଠି ବର୍ଷ, ପଚିଶରୁ ପଞ୍ଚଷଠି, ଚାଳିଶଟି ବର୍ଷ, ଯେଉଁ ଚାଳିଶଟି ବର୍ଷ ମଣିଷ ଜୀବନର ଉନ୍ନତି, ପ୍ରତିପତ୍ତି, ଆଉ ସ୍ୱପ୍ନରେ ଭରି ରହିଥାଏ, ମୋର ସେହି ଚାଳିଶଟି ବର୍ଷ କେବଳ ଦୁଃସ୍ୱପ୍ନର ଶିହରଣରେ ଥରି ଥରି ଉଠିଛି । ମୁଁ ବାଧହୋଇ ଜନବସତି ଛାଡ଼ି, ଲୁଚି ଲୁଚି ଜୀବନ କଟାଉଛି ବଣ ଜଙ୍ଗଲରେ, ବାଘ ଭାଲୁମାନଙ୍କ ସଙ୍ଗରେ, ଜୀବନକୁ ବିପନ୍ନ କରି, ସମସ୍ତ ସଂଭାବନାକୁ ନାରଖାର କରି । ଶେଷରେ ମୋ ଜୀବନରେ କ'ଣ ହୋଇଛି ଜାଣନ୍ତି ? ମୁଁ ଗୋଟିଏ ମୂକ ହୋଇଛି, ବଧିର ହୋଇଛି । ଆପଣ ବିଶ୍ୱାସ କରିବେ ନାହିଁ ଆଜିକାଲି ବାହାରର କୌଣସି କଥା ମୋ କାନ ମଧ୍ୟରେ ପ୍ରବେଶ କରେ ନାହିଁ, ମୁଁ ଧ୍ୟାନଗମ୍ଭୀର ହୋଇ ସବୁବେଳେ ଚିନ୍ତାକରେ ମୋର

ହେଲା କ'ଣ, ମୁଁ କଲି କ'ଣ ? ମୁଁ ତ ଗୋଟିଏ ସୁନ୍ଦର ସଂସାର ରଚନା କରି ପାରି ଥାଆନ୍ତି । ସ୍ତ୍ରୀ ପିଲା ଧରି ଗୋଟିଏ ସୁଖୀ ପରିବାର ଗଠନ କରି ପାରିଥାଆନ୍ତି ।

କିନ୍ତୁ...

ଭଦ୍ରଲୋକ ପୁଣି କିଛି ସମୟ ନୀରବ ହୋଇଗଲେ ।

ଦୀପଙ୍କର କହିଲା : ଆପଣ ତା'ହେଲେ ବିବାହ କରି ନାହାନ୍ତି ?

: ସେଇକଥା ତ ମୁଁ ତୁମକୁ କହୁଛି ୟଙ୍ଗମ୍ୟାନ । ବିବାହ ମୁଁ କରି ନାହିଁ । ବିବାହର ଶତ ସହସ୍ର ସୁନେଲି ସମ୍ଭାବନା ହରେଇଛି । ବାପା, ମା'ଙ୍କର ଅପ୍ରିୟ ହୋଇଛି । ବନ୍ଧୁ ବାନ୍ଧବମାନେ ମୋର ସଂସର୍ଗ ତ୍ୟାଗ କରିଛନ୍ତି । ମୁଁ କିନ୍ତୁ ଅନ୍ଧଙ୍କ ପରି ଧାଇଁଛି ତା'ରି ପଛେ ପଛେ । ତା'ରି ଇଙ୍ଗିତରେ ।

ଶେଷରେ ଦିନେ ମୁଁ ଜାଣିପାରିଲି ଯେ, ସେ ବିବାହ କରିନ୍ତି । ସ୍ୱାମୀ ସଂସାର କରି ଆନନ୍ଦରେ ଜୀବନ ଯାପନ କରୁଛି ।

: ତା'ପରେ ? ଦୀପଙ୍କର ପଚାରିଲା ।

: ତା'ପରେ ଆଉ କ'ଣ? ତା'ପରେ ମୋ ମନରେ ଏକ ଜିଦି ବଢ଼ିଲା । ମୁଁ ଠିକ୍ କଲି, ବିବାହ ମୁଁ ଆଉ କରିବି ନାହିଁ । ନାରୀଜାତି ପ୍ରତି ମନଟା ମୋର ଘୃଣା ଆଉ ଅବିଶ୍ୱାସରେ ଭରିଗଲା । ମୁଁ ସେଇ ଜନବସତିର ସମସ୍ତ ମାୟା ମମତା ତୁଟେଇ, ଚାଲିଗଲି ଜଙ୍ଗଲକୁ- ଭାବିଥିଲି ସେଇଠି ମୋର ଏକକ ଜୀବନ ଯାପନ କରିବି -ବାଘ, ଭାଲୁଙ୍କ ମେଳରେ । ବଣ୍ୟଜନ୍ତୁ ହିଂସ୍ର ହେଲେ ବି ମାୟାବୀ ନୁହନ୍ତି, ଶଠ, ଲମ୍ପଟ ନୁହନ୍ତି ।

ବେଶ୍ ଥିଲି ସେଠାରେ, ଆରାମରେ । ଭୁଲି ଆସୁଥିଲି ମୋର ଅତୀତ ଜୀବନର କଥା । ବଣଜଙ୍ଗଲର ଗଛ ଲତା ସହିତ ଜୀବନର ଦିନଗୁଡ଼ିକ ସବୁଜ କରି କଟାଇବାକୁ ଚେଷ୍ଟା କରୁଥିଲି ।

କିନ୍ତୁ ସେ ବାଟରେ ବି ସେ ମୋତେ ଆଗେଇବାକୁ ଦେଲା ନାହିଁ । ନା, ନା, ସେ ଇଚ୍ଛା କରି, ସେ ଜାଣି ଶୁଣି, ମୋ ଜୀବନକୁ ଜାଳିପୋଡ଼ି ପାଉଁଶ କରିଦେବାର ଶପଥ ଗ୍ରହଣ କରିଥିଲା । ସେ ତା'ର ଉଦ୍ଦେଶ୍ୟ ସାଧନ କଲା ମଧ୍ୟ । ମୁଁ କିନ୍ତୁ ତାକୁ ସହଜରେ ଛାଡ଼ିବି ନାହିଁ । ପ୍ରତିଶୋଧ ନେବି, ଏକ ହିଂସ୍ର ପ୍ରତିଶୋଧ ।

ଦୀପଙ୍କର ଅନୁଭବ କଲା ଭଦ୍ରଲୋକଙ୍କ ଶ୍ୱାସପ୍ରଶ୍ୱାସ କିପରି ଖର ହୋଇ ଉଠୁଛି । ମୁହଁର ଭାବ ଯେ ହିଂସ୍ର ହୋଇଉଠିଛି, ସେ କଥା ମଧ୍ୟ ସେ ଅନୁଭବ କଲା । କହିଲା : ସେ ବିବାହ କରି ସାରିବା ପରେ ମଧ୍ୟ ଆପଣଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ?

: ମୁଁ କିନ୍ତୁ ଚାହିଁ ନଥିଲି ୟାଙ୍ଗମ୍ୟାନ୍ । ସେ ମୋତେ ଇଚ୍ଛା କରି ତା' ପାଖକୁ ଟାଣି ନେଇଥିଲା । ତା'ର ବିବାହ ପରେ ପ୍ରାୟ ପାଞ୍ଚବର୍ଷ ପର୍ଯ୍ୟନ୍ତ ମୁଁ ତା'ର କୌଣସି ଖବର ରଖି ନଥିଲି । ଧୀରେ ଧୀରେ ମନପ୍ରାଣରୁ ତା'ର ସମସ୍ତ ସ୍ମୃତି ମୋର ପୋଛି ହୋଇଯାଉଥିଲା । ହୁଏତ ଆଉ କିଛିଦିନ ପରେ ମୁଁ ପୁଣି ବିବାହ କରି ପାରିଥାଆନ୍ତି । ଗୋଟିଏ ସୁଖର ନୀଡ଼ ରଚନା ପାଇଁ ମୋ ପ୍ରାଣରେ ହୁଏତ ଆଉଥରେ ସମ୍ଭାବନା ଜାଗିଥାଆନ୍ତା, କିନ୍ତୁ ସେ ତାହା ମଧ୍ୟ ମୋତେ କରାଇ ଦେଲା ନାହିଁ । ପାଞ୍ଚବର୍ଷ ପରେ, ଦିନେ ବିଭିନ୍ନ ଜାଗାରୁ ବୁଲି, ଖାମ ଉପରେ ବହୁ ନାଲିନେଳି କଟା କଟିର ଦାଗ ବହନ କରି ଏଇ ଚିଠି ଶେଷରେ ଆସି ଠିକ୍ ଜାଗାରେ ପହଞ୍ଚିଲା ।

ଚିଠି ଖୋଲି ମୁଁ ଆଶ୍ଚର୍ଯ୍ୟ ହେଲି ।

ଶକୁନ୍ତଳାର ହସ୍ତାକ୍ଷର ଦେଖି ମୁଁ ଆଉ ଥରେ ରୋମାଞ୍ଚିତ ହୋଇଉଠିଲି । ଶକୁନ୍ତଳା ମୋତେ ପୁଣି ଚିଠି ଲେଖିବ ଏକଥା ମୁଁ ବିଶ୍ୱାସ କରି ପାରି ନଥିଲି ।

: ହଁ, ଶକୁନ୍ତଳା ହିଁ ମୋତେ ଲେଖିଥିଲା ।

ତା' ବିବାହ ପରେ ଏଇ ତା'ର ମୋ ପାଖକୁ ପ୍ରଥମ ଚିଠି ।

ଚିଠି ଲେଖାର ତାରିଖରୁ ଜାଣିଲି ପ୍ରାୟ ଚାରିମାସ ପରେ ଚିଠିଟି ମୋ ପାଖରେ ପହଞ୍ଚିଛି । ବିଭିନ୍ନ ଠିକଣାରେ ବୁଲିବାଲି ଶେଷରେ ଆସି ଠିକ୍ ଜାଗାରେ ପହଞ୍ଚିଛି ।

ଶକୁନ୍ତଳା ଏକ ଦୀର୍ଘ ଚିଠି ଲେଖିଥିଲା । ଚିଠିଟି ପଢ଼ିସାରି ମୋର ମନେ ହେଲା, କାଳିରେ ନୁହେଁ, ଲୁହରେ ସେ ଚିଠିଟି ଲେଖିଚି ଶକୁନ୍ତଳା । ସେ ଲେଖିଥିଲା, ସେ କାହିଁକି ବିବାହ କଲା ? ଏ ବିବାହରେ ତା'ର ମୋଟେ ଇଚ୍ଛା ନଥିଲେ ବି, ତା'ର ବାପା, ଭାଇମାନେ ତାକୁ ବାଧ କରି ବିବାହ ଦେଇଥିଲେ । ବିବାହ ପୂର୍ବରୁ ସେ ମୋତେ ଅନେକ ଖୋଜିଥିଲା । ଯଦି ସେତିକିବେଳେ ମୁଁ ଯାଇ ପହଞ୍ଚିପାରିଥାଆନ୍ତି, ତା'ହେଲେ ଏ ବିବାହ ହୁଏତ ସମ୍ଭବ ହୋଇନଥାନ୍ତା । ବିବାହ ଦିନ ତା'ର ବାପ, ଭାଇମାନେ ତାକୁ ବେହୋସ କରି ବିବାହ ବେଦିରେ ବସାଇ ବିଭା କରେଇ ଦେଇଥିଲେ....। ଇତ୍ୟାଦି ଇତ୍ୟାଦି ଅନେକ କଥା ସେ ଲେଖିଥିଲା । ତା'ପରେ ଲେଖିଥିଲା, ଏହାପରେ ଆଉ ତ କରଣୀୟ କିଛି ନାହିଁ । ସେ କିନ୍ତୁ ତା'ର ସ୍ୱାମୀକୁ ସ୍ୱାମୀ ରୂପରେ ବରଣ କରି ପାରୁ ନାହିଁ । ଯଦିଓ ଜଡ଼ଦେହଟା ନେଇ ବିବାହିତ ସ୍ୱାମୀ ତା'ର ମାତିରହିଛି, ମନଟା କିନ୍ତୁ ତା'ର ପଡ଼ିରହିଛି ମୋରି ପାଖରେ । ଏପରି ଅବସ୍ଥାରେ ସେ କ'ଣ କରିବ ? କେମିତି ବଞ୍ଚିବ ? ଅନ୍ତତଃ ମଝିରେ ମଝିରେ ମୋର ଦର୍ଶନ ଟିକେ ଟିକେ ନ ପାଇଲେ, ତା'ର ଜୀବନ ଧାରଣ ସମ୍ଭବ ହେବ ନାହିଁ । ଏଇ ଚିଠି ପାଇବାର ଛଅମାସ ମଧ୍ୟରେ ମୁଁ ଯଦି ଯାଇ ତାକୁ ଦେଖା ନଦିଏ, ତା'ହେଲେ ସେ ଭାବିବ ମୁଁ ତା'ଠାରୁ ସମସ୍ତ ସଂପର୍କ ତୁଟେଇ ଦେଇଛି । ତା'ପରେ ସେ ଯାହା କରିବାର କରିବ । ଅର୍ଥାତ୍ ତା'ର ଶେଷକଥା ଥିଲା, ସେ ଆତ୍ମହତ୍ୟା କରିବ ।

ଆହୁରି ସେ ଲେଖିଥିଲା, ମୁଁ ଯଦିଯାଏ, ସେଠାରେ ତା'ର ଅଯତ୍ନ ହେବ ନାହିଁ । ସ୍ୱାମୀ ତା'ର ଲୋକ ହିସାବରେ ଖୁବ୍ ଭଲ । ସେ ତାଙ୍କର ସିରସ୍ତା ନେଇ ବ୍ୟସ୍ତ ଥାଆନ୍ତି । ଶ୍ୱଶୁର ଘର ଲୋକମାନେ ଖୁବ୍ ସମ୍ମାନ ଦିଅନ୍ତି । ତେଣୁ ମୁଁ ଯଦି ଯାଇ ସେଠାରେ ମାସେ ପନ୍ଦର ଦିନ ରୁହେ; ତଥାପି ସ୍ୱାମୀ ତା'ର କିଛି ମନେ କରିବେ ନାହିଁ ।

ଏହିପରି ଆହୁରି ଅନେକ, ଅନେକ କଥା ଲେଖିଥିଲା ।

ଚିଠିଟା ମୁଁ ପଢ଼ିଲି । ଅନେକ ଥର ।

ବହୁତ ଦିନଯାଏ କିଛି ସିଦ୍ଧାନ୍ତ ଗ୍ରହଣ କରିପାରିଲି ନାହିଁ ।

କିନ୍ତୁ ଯେତେବେଳେ ମୋର ମନେହେଉଥିଲା, ମୁଁ ନଗଲେ ଶକୁନ୍ତଳା ଆତ୍ମହତ୍ୟା କରିବ, ସେତେବେଳେ ମୋ ମନଟା ଭୀଷଣ ଦୁର୍ବଳ ହୋଇଉଠୁଥିଲା । ସେତେବେଳେ ମୋର ମନେହେଉଥିଲା, ଏଥିରେ ବିଚାରୀ ଶକୁନ୍ତଳାର ଦୋଷ ବା କ'ଣ । ଆମର ସମାଜ ବ୍ୟବସ୍ଥା ଯାହା, ସେଥିରେ ଆମ ଦେଶର ତରୁଣ ତରୁଣୀମାନେ ଅନେକ କ୍ଷେତ୍ରରେ ନିଜର ଇଚ୍ଛା ଅନୁସାରେ ଜୀବନ ସାଥୀ ବାଛିପାରନ୍ତି ନାହିଁ । ଶକୁନ୍ତଳା ବାଧ ହୋଇ ବିବାହ କରିଛି ।

ଆହୁରି କିଛି ଦିନ ମୁଁ ଏହି ଚିଠି କଥା ଚିନ୍ତାକଲି । ଶକୁନ୍ତଳା ସହିତ ଦେଖା କରିବି ନାହିଁ ଭାବିଲି । ଶେଷରେ ସ୍ଥିର ନିଶ୍ଚୟ ହେଲି ଯେ ନା, ଶକୁନ୍ତଳା ବିବାହ କରିଛି । ତା' ସ୍ୱାମୀ ସଂସାର ଧରି ସେ ସୁଖରେ ରହୁ । ମୁଁ ପୁଣି ତା'ମନରେ ରଙ୍ଗ ମଶାଲ ଜଳାଇବି କାହିଁକି ?

କିନ୍ତୁ ସେ ଯଦି ପ୍ରକୃତରେ ମୋ ପାଇଁ ଆତ୍ମହତ୍ୟା କରେ ?

ନା, ନା, ନା । ମଣିଷ ପାଖରେ ତା' ଜୀବନ ବହୁ ମୂଲ୍ୟବାନ । ଏତେ ସହଜରେ, ଗୋଟାଏ ତୁଚ୍ଛ କାରଣ ପାଇଁ ସେ ତାକୁ ବିସର୍ଜନ ଦେଇ ନ ପାରେ ।

ମୋ ସିଦ୍ଧାନ୍ତରେ ମୁଁ ଦୃଢ଼ ହୋଇ ବସିଲି ।

ପୁଣି କିଛିଦିନ ପରେ ଆଉ ଖଣ୍ଡିଏ ଚିଠିପାଇଲି । ଏଥର ଠିକଣା ଭୁଲ୍ ନଥିଲା । ନିର୍ଦ୍ଦିଷ୍ଟ ସମୟରେ ମୁଁ ଚିଠିଟି ପାଇଲି ।

ଶକୁନ୍ତଳା ଲେଖିଥିଲା, ତା' ବିବାହର ପ୍ରାୟ ପାଞ୍ଚବର୍ଷ ବିତିଗଲାଣି । କିନ୍ତୁ ସେ ପାଞ୍ଚଟି ଦିନ ବି ନିଶ୍ଚିନ୍ତରେ ଶୋଇପାରି ନାହିଁ । ସବୁବେଳେ ତା'ର ମୋରି କଥା ମନେପଡୁଛି । ବହୁ ଖୋଜାଖୋଜି କରିବା ପରେ ସେ ଏଇ ଠିକଣାଟି ଯୋଗାଡ଼ କରି ମୋ ପାଖକୁ ଚିଠି ଲେଖିଛି । ଅବଶ୍ୟ ଏହା ପୂର୍ବରୁ ସେ ଅନେକ ଚିଠି ମୋତେ ଲେଖିଲାଣି, କିନ୍ତୁ କୌଣସିଟାର ଉତ୍ତର ସେ ମୋଠାରୁ ପାଇନାହିଁ । ତା'ର ସନ୍ଦେହ ଯେ ତା'ର ମୁଁ ସବୁ ଚିଠି ପାଇ ମଧ କୌଣସିଟିର ଉତ୍ତର ଦେଉନାହିଁ । ଏଇ ଚିଠିଟି ତା'ର ଶେଷ ଚିଠି । ଏଇ ଚିଠିଟି ପାଇବାର ଏକମାସ ମଧ୍ୟରେ ମୁଁ ଯଦି ଯାଇ ତାକୁ ଦେଖା ନକରେ, ତା'ହେଲେ ସେ ନିଶ୍ଚୟ ଆତ୍ମହତ୍ୟା କରିବ ।

ଏହି ପର୍ଯ୍ୟନ୍ତ କହିସାରି ଭଦ୍ରଲୋକ ପୁଣି ନୀରବ ହୋଇଗଲେ ।

ଦୀପଙ୍କର ଅପେକ୍ଷା କରୁଥିଲା, ଏହାପରେ ଭଦ୍ରଲୋକ ପରବର୍ତ୍ତୀ ଘଟଣା କହିବେ ବୋଲି: କିନ୍ତୁ ଅନେକ ବେଳଯାଏ ସେ ନୀରବ ହୋଇ ବସି ରହିଲେ । ମନେ ହେଲା । ଭଦ୍ରଲୋକ ବୋଧହୁଏ ଶୋଇପଡ଼ିଲେ ।

ଦୀପଙ୍କର ଡାକିଲା : ସାର୍...

ଭଦ୍ରଲୋକ ସଚେତନ ହୋଇ ଉଠି କହିଲେ : ହଁ କ'ଣ କହୁଥିଲି ? ଶକୁନ୍ତଳାର ସେଇ ଶେଷ ଚିଠି କଥା ନା...

: ହଁ ସାର୍ । ତା'ପରେ ଆପଣ କ'ଣ ଯାଇଥିଲେ ?

: ମୁଁ ଯାଇ ନଥିଲି । ନ ଯିବାପାଇଁ ସିଦ୍ଧାନ୍ତ କରି ବସିଥିଲି । କିନ୍ତୁ କିଛିଦିନ ପରେ ପୁଣି ଗୋଟାଏ ଚିଠି ପାଇଲି । ଏଥର ସେ ଲେଖିଥିଲା, ଆଜି ତମକୁ ଚିଠି ଲେଖି ବସିଲା ବେଳେ ମୋର ମନେହେଉଛି, ତୁମେ ମୋ ଉପରେ ଭୀଷଣ ଅଭିମାନ କରିଛ । ତା' ନ ହେଲେ ମୋର କୌଣସି ଗୋଟିଏ ଚିଠିର ଉତ୍ତର ଦିଅନ୍ତ ନାହିଁ ?

ତମେ ବିଶ୍ୱାସ କରିବ କି ନାହିଁ ଜାଣେ ନାହିଁ, ଦିନପରେ ଦିନ ଯେତେ ଗଡ଼ିଯାଉଛି, ମୋ ମନଟା ତମ ପାଖକୁ ସେତେ ଛୁଟି ଯାଉଛି । ମୁଁ ତ ତମଠାରୁ ଆଜି କିଛି ଚାହୁଁ ନାହିଁ, କେବଳ ଲୋଡୁଛି ଥରଟିଏ ତମର ଦର୍ଶନ । ତମଠାରୁ ସେତିକି ଆଶାକରିବାର ଅଧିକାର କ'ଣ ମୋର ନାହିଁ ?

ତମୁକୁ ମୁଁ କେତେ ମନେ କରେ, ଆଉ କିପରି ମନେ କରେ, ତମେ ଯଦି ଥରଟିଏ ଏଠାକୁ ଆସିପାରନ୍ତ, ତା'ହେଲେ ତା'ର ପ୍ରମାଣ ତମ ନିଜ ଆଖିରେ ଦେଖିପାଆନ୍ତ । ଯେଉଁ ଖବରଟା, ମୁଁ ତମକୁ ଆଜି ଯାଏ ନ ଦେଇ, ଏକାଥରେ ତମକୁ ଚମକେଇ ଦେବା ପାଇଁ ପାଇଁ ସ୍ଥିର କରିଥିଲି, ଆଜି ଦେଖୁଛି, ସେ ଖବରଟା ତମକୁ ନିହାତି ଦେବାକୁ ହିଁ ହେବ ।

ପ୍ରାୟ ଛଅମାସ ତଳେ ମୋର ଗୋଟିଏ ପୁଅ ହୋଇଛି । ତା' ନାଁ ମୁଁ ରଖିଛି ବାବ୍‌ଲୁ । ତମର ଡାକନା ବି ଥିଲା ବାବ୍‌ଲୁ; କିନ୍ତୁ ଆହୁରି ଆଶ୍ଚର୍ଯ୍ୟର କଥା କ'ଣ ଜାଣ ? ପିଲାଟିର ଆଶ୍ଚର୍ଯ୍ୟ ମେଳ ତମ ସହିତ ଅଛି । ତା'ର ନାକ, ଆଖି ଠିକ୍ ଦେଖିବାକୁ ତମର ନାକ ଆଖି ପରି । ଏପରିକି କାନ ଦୁଇଟା ଅଦ୍ଭୁତ ଭାବରେ ତୁମରି କାନ ପରି ଲମ୍ବା ।

ଆଶ୍ଚର୍ଯ୍ୟ ହେଉଛ ? ବିଶ୍ୱାସ ହେଉନି ?

ଭାବୁଛ ମୁଁ ମିଛ କହୁଛି ?

କିନ୍ତୁ ତମେ ନିଜେ ଆସି ଦେଖି ନ ଗଲେ ବିଶ୍ୱାସ କରିପାରିବ ନାହିଁ । ବୋଧହୁଏ ମୁଁ ସବୁବେଳେ ତମକୁ ମନେ କରୁ ଥିବାର ପ୍ରତିଫଳନ ଫୁଟି ଉଠିଛି ବାବ୍‌ଲୁଠାରେ । ବାବ୍‌ଲୁକୁ ମୁଁ ଗର୍ଭରେ ଧାରଣ କରିଥିବା ବେଳେ ସବୁଠାରୁ ମୋର ତମ କଥା ମନେପଡୁଥିଲା ବେଶି । କାରଣ ତମେ ଏମିତି ଗୋଟିଏ ଶିଶୁ ଚାହିଁଥିଲ । ବାପାହେବାର ଆକାଂକ୍ଷା ତମ ମନରେ ପ୍ରବଳ ହୋଇ ଉଠିଥିଲା । ସେଇଥି ପାଇଁ ବାବ୍‌ଲୁକୁ ମୁଁ ଦେହରେ ଧରିଥିବା ବେଳେ ତମେ ମୋ' ଉପରେ ସବୁଠାରୁ ବେଶି ପ୍ରଭାବ ବିସ୍ତାର କରିଥିଲ ଯାହାର ପ୍ରତିଛବି ହୁଏତ ଫୁଟିଉଠିଛି ବାବ୍‌ଲୁ ଦେହରେ ।

ତମେ ବିଶ୍ୱାସ କର, ବାବ୍‌ଲୁକୁ ଦେଖିଲେ କିନ୍ତୁ ତମେ ଭାରି ଖୁସିହେବ । ମୁଁ କଥା ଦେଉଛି, ତୁମେ ଯଦି ଚାହଁ ବାବୁଲକୁ ତୁମ ହାତରେ ମୁଁ ସମର୍ପଣ କରିଦେବି । ସ୍ୱାମୀ ମୋର ଭାରି ଭଲ ଲୋକ । ସେ ମୋକଥା ମୋଟେ ଭାଙ୍ଗିବେ ନାହିଁ ।

ଆହୁରି ଗୋଟିଏ ମଜାକଥା ମୁଁ ତମକୁ କହୁଛି । ମୋ ସ୍ୱାମୀଙ୍କୁ ଦିନେ କଥା ପ୍ରସଙ୍ଗରେ ମୁଁ ତମ କଥା କହିଥିଲି । ସେ ମନଦେଇ ସବୁ ଶୁଣିଲେ । ଅବଶ୍ୟ ମୁଁ କହି ନଥିଲି, ତମ ସହିତ ମୋର ସଂପର୍କଟା କ'ଣ ଥିଲା । ତେବେ ଏତିକି କହିଥିଲି ଯେ, ତମେ ମୋର ଖୁବ୍ ଅନ୍ତରଙ୍ଗ । ମୋର ମଙ୍ଗଳ କାମନା କରି ତମେ, ଦିନ ରାତି ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଥିଲ ।

ସେ ମଧ୍ୟ ତମକୁ ଦେଖିବା ପାଇଁ ଖୁବ୍ ଆଗ୍ରହୀ । ତମେ ଥରେ ନିଶ୍ଚୟ ଆସ । ନ ହେଲେ ମୁଁ ବଞ୍ଚିବି କେମିତି ? ମୋର ଆଜି ସବୁଥାଇ ବି କିଛି ନଥିଲା ପରି ମୁଁ କାଙ୍ଗାଳ ହୋଇ ବସିଛି । କେବଳ ତମରି ପ୍ରତୀକ୍ଷାରେ, ତମ ସହିତ ଥରଟିଏ ଦେଖା କରିବା ପାଇଁ ।

ମୁଁ ଜାଣେ ଏ ଚିଠି ତମେ ନିଶ୍ଚୟ ପାଇବ । ଏ ଚିଠିରେ ମୁଁ ତମକୁ ବାବ୍‌ଲୁର ରାଣ ପକାଇ କହୁଛି, ତମେ ନିଶ୍ଚୟ ଆସିବ ।

ଏତିକି କହି ଭଦ୍ରଲୋକ ନୀରବ ହୋଇଗଲେ ।

ଦୀର୍ଘ ସମୟର ନୀରବତା ପରେ ଦୀପଙ୍କର ଡାକିଲା : ସାର୍...

ଭଦ୍ରଲୋକ ଆତ୍ମସଚେତନ ହୋଇ ଉଠିଲେ । ଆଉ କିଛି ଶୁଣିବା ସମ୍ଭବ ହୋଇ ନଥିଲା ।

ଦୂରରୁ ଦଳେ ଲୋକଙ୍କର ପାଟିଗୋଳ ଶୁଣାଗଲା ।

ଖୁବ୍ ଚିତ୍କାର, ଡକା ହକା । ଶେଷରେ ଦେଖାଗଲା ଦଳେ ଲୋକ ତାଙ୍କର ବଂଲୋରେ ଆସି ପହଞ୍ଚିଲେ ।

ସେମାନେ ରବିଦା, ପ୍ରବୀର ଏବଂ ଆହୁରି ଅନେକେ ।

ସୂର୍ଯୋଦୟ ଦେଖିବା ପାଇଁ ସେମାନେ ସବୁ ଆସିଛନ୍ତି । ଆଉ ଅଳ୍ପ ସମୟ ପରେ ସୂର୍ଯ୍ୟୋଦୟର ଦୃଶ୍ୟ ଦୂର ଦିଗ୍‌ବଳୟରେ ଫୁଟିଉଠିବ । ଯେଉଁ ଦୃଶ୍ୟ ଏଇ ନେତାରହାଟରେ ଏକାନ୍ତ ଉପଭୋଗ୍ୟ । ଏକାନ୍ତ ଦର୍ଶନୀୟ ।

ଦୀପଙ୍କର ଉଠି ଠିଆହେଲା । କହିଲା : ଆସନ୍ତୁ ରବିଦା, ଆସନ୍ତୁ ପ୍ରବୀରବାବୁ ।

ପ୍ରବୀର କହିଲା : ଆପନାର ଚୋଖେ ଯେ ଘୁମ୍ ନେଇ, କି ବ୍ୟାପାର ?

ରବିଦା ହସି ହସି କହିଲେ : ତୋର ବି ଦିନ ଆସିବ ପ୍ରବୀର, ଯେଉଁଦିନ ତୁ ମଧ ରାତିରେ ଶୋଇପାରିବୁ ନାହିଁ, ଦିନରେ କାମ କରି ପାରିବୁ ନାହିଁ ।

: ସେଦିନ୍ କବେ ଆସ୍‌ବେ ରବିଦା ?

ରବିଦା କହିଲେ : ଚୁପ୍ କରି ବସି ପୂର୍ବାକାଶ ଆଡ଼େ ଦେଖ୍ । ଲକ୍ଷ୍ୟ କର ଦୂର ଦିଗ୍‌ବଳୟ ଆଡ଼େ । ଯାହା ଦେଖିବୁ ସବୁ କେବଳ ଉପଭୋଗର କଥା, ସେ ଦୃଶ୍ୟ ମୁହଁରେ ପ୍ରକାଶ କରି ହେବ ନାହିଁ ।

ପାଟିଗୋଳ ଶୁଣି ମାନସର ନିଦ ଭାଙ୍ଗିଯାଇଥିଲା ।

ସେ ଆସି ଦେଖିଲା, ବାରଣ୍ଡାରେ ଅନେକ ଭିଡ଼ । ସମଗ୍ର ବଂଲୋରେ କିପରି ଏକ ଜାଗରଣ ଦେଖାଯାଇଛି । ସୂର୍ଯ୍ୟୋଦୟ ଦେଖିବା ପାଇଁ ପ୍ରତିଟି ମଣିଷ ଚଞ୍ଚଳ ହୋଇ ଉଠିଛନ୍ତି । ଡାକବଂଲୋର ବାରଣ୍ଡା ଲୋକଗହଳିରେ ଭରିଉଠିଛି ।

କିନ୍ତୁ ବିଚରା ଫରେଷ୍ଟ ଅଫିସର ?

ଦୀପଙ୍କର ବୁଲି ଅନେଇଲା, ସେ ଯାଇ ଘର ଭିତରେ ନିଜ ବେଡ୍ ଉପରେ କମ୍ବଳ ତଳେ ଆତ୍ମଗୋପନ କରିଛନ୍ତି ।

ରବିଦା କହିଲା : ଦେଖ ଦେଖ, ପୂର୍ବାକାଶରେ ଖେଳ ଏତିକିବେଳୁ ଆରମ୍ଭ ହୋଇ ଗଲାଣି । ପ୍ରତି ମୁହୂର୍ତ୍ତରେ ଆକାଶ କିପରି ରଙ୍ଗ ବଦଳାଇବ ତାହା ହିଁ ଏଠାରେ ଲକ୍ଷଣୀୟ ।

ଦୀପଙ୍କର କହିଲା : ଆପଣ ବୋଧହୁଏ ଆଗରୁ ଅନେକଥର ଦେଖିଛନ୍ତି ରବିଦା ।

: ଅନେକଥର ନୁହେଁ, ଏହା ଆଗରୁ ମୁଁ ମାତ୍ର ଥରେ ଆସିଥିଲି ଏଠାକୁ । ସେଥର ପ୍ରବୀର ବି ମୋ ସଂଗରେ ଆସିଥିଲା ।

: ପ୍ରବୀରବାବୁ ତା'ହେଲେ ସବୁବେଳେ ଆପଣଙ୍କ ପାଖେ ପାଖେ ଅଛନ୍ତି ।

: ପ୍ରବୀର ମୋର ଶିଷ୍ୟ, ଆପଣ ଜାଣି ନାହାନ୍ତି ?

: ଜାଣି ନ ଥିଲି, ଆଜି ଜାଣିଲି । ତା'ମାନେ ରବିଗୋଏନ୍ଦାର ପ୍ରବୀର ଆସିଷ୍ଟାଣ୍ଟ । ଦୀପଙ୍କର ହସି ହସି କହିଲା ।

ରବିଦା ହସି ହସି ଗଡ଼ିଗଲା । କହିଲା : ଆପଣ କହିଛନ୍ତି ଠିକ୍; କିନ୍ତୁ ପ୍ରବୀରଟାକୁ ଯେତେ ଚେଷ୍ଟାକଲେ ବି ସେ ଠିକ୍, ମାନେ ଆଶାନୁରୂପ ଗଢ଼ିଉଠିପାରୁ ନାହିଁ ।

: ଅନ୍ୟଲୋକେର ସାମ୍‌ନେ ଆବାର ଆମାର ନିନ୍ଦା ରବିଦା । ଆମିଯେ ବଲେଛି, ଧୀରେ ଧୀରେ ସବ୍ ଠିକ୍ ହଏଯାବେ ।

ରବିଦା କହିଲା : ଏଥର ଅସଲ ଦୃଶ୍ୟ ଦେଖ ।

ଦୀପଙ୍କର ଓ ଅନ୍ୟ ସମସ୍ତେ ଚାହିଁ ଦେଖିଲେ, ଦୂର ପାହାଡ଼ର ଦିଗ୍‌ବଳୟ ତଳୁ ଗୋଟିଏ ଅଗ୍ନି ପେଣ୍ଡୁଳା ଧୀରେ ଧୀରେ ଉପରକୁ ଉଠୁଛି ।

ସୂର୍ଯ୍ୟୋଦୟ ଦେଖା ଶେଷହେବା ପରେ, ଦୀପଙ୍କର ବିଛଣାରେ ଯାଇ ଶୋଇପଡ଼ିଥିଲା ।

ଯେତେବେଳେ ମାନସ ତାକୁ ଡାକି ଉଠାଇଲା, ଦୀପଙ୍କର ଦେଖିଲା ସେତେବେଳକୁ ଦଶଟା ବାଜିଯାଇଛି ।

ଦୀପଙ୍କର ଉଠିବସିଲା । ଦେଖିଲା, ପାଖ ବେଡ୍‌ରେ ଫରେଷ୍ଟ ଅଫିସର ଭଦ୍ରଲୋକ ଏ ପର୍ଯ୍ୟନ୍ତ କମ୍ବଳ ତଳେ ଶୋଇଛନ୍ତି ।

ମାନସ କିଛି ସମୟ ତେଣେ ଚାହିଁଲା, ମନେ ମନେ ଟିକିଏ ହସିଲା । ବୋଧହୁଏ ସହାନୁଭୂତିରେ ଭରିଯାଇଥିଲା ମନଟା ।

ମାନସ କିନ୍ତୁ ଟାଓ୍ୱେଲ ସାବୁନ ଧରି ପହଞ୍ଚିଗଲା ଆସି । ଆଉ ଡେରି ନୁହେଁ; ଆପଣ ଶୀଘ୍ର ନିତ୍ୟକର୍ମ ଶେଷ କରି ଆସନ୍ତୁ ।

ଦୀପଙ୍କର ବିଛଣାରୁ ଉଠି, ମାନସ ହାତରୁ ତେଲ, ସାବୁନ୍ ନେଇ ସିଧା ଚାଲିଗଲା ବାଥ୍‌ରୁମ୍‌କୁ ।

ଶୀତଲାଗୁଥିଲା ଟିକିଏ ।

ଅଳ୍ପ ସମୟ ପରେ ବାଥ୍‌ରୁମ୍‌ରୁ ଫେରି ଆସି ଦୀପଙ୍କର ଦେଖିଲା, ମାନସ ତା'ପାଇଁ ଇସ୍ତ୍ରୀକରା ପ୍ୟାଣ୍ଟ, ସାର୍ଟ ଦୁଇଟା ବାହାର କରି ବିଛଣା ଉପରେ ରଖିଛି ।

ଦୀପଙ୍କର ମାନସ ମୁହଁକୁ ଅନେଇଲା ।

ମାନସ କହିଲା : ଆପଣ ଶୀଘ୍ର ପିନ୍ଧନ୍ତୁ, ମୋ ମାପ ଆପଣଙ୍କ ମାପ ପ୍ରାୟ ଏକ; ତେଣୁ କିଛି ଅସୁବିଧା ହେବ ନାହିଁ ।

ଦୀପଙ୍କର ମାନସର ପୋଷାକ ପିନ୍ଧି ସାରି ଦେଖିଲା ପ୍ରାୟ ଠିକ୍ ହୋଇଛି । ତା'ପରେ ମାନସ ଗୋଟାଏ ଫେଲ୍‌ଟ ହ୍ୟାଟ୍ ଦୀପଙ୍କର ଆଡ଼କୁ ବଢ଼ାଇ ଦେଇ କହିଲା ଏଇଟା ମୁଣ୍ଡରେ ଲଗାନ୍ତୁ ।

ଦୀପଙ୍କର ଅବାକ୍ ହୋଇ ମାନସ ମୁହଁକୁ ଚାହିଁଲା ।

ମାନସ ଦୀପଙ୍କର ହାତରୁ ଫେଲ୍‌ଟହ୍ୟାଟ୍‌ଟା ଟାଣିନେଇ, ନିଜେ ସେ ଦୀପଙ୍କର ମୁଣ୍ଡରେ ପିନ୍ଧାଇ ଦେଇ କହିଲା : ଫାଇନ୍ । ଆପଣ ଆଇନାରେ ଦେଖିଲେ !

: କିନ୍ତୁ ଆଜି ହଠାତ୍ ଆପଣ ଏତେ ଫୁର୍ତ୍ତି ହୋଇଉଠିଲେ କାହିଁକି? କ'ଣ କିଛି...

: ଆପଣ ଆସନ୍ତୁ ତ । ଶୀଘ୍ର ବାହାରି ଆସନ୍ତୁ । ଆଜି ଏପରି ଗୋଟାଏ ଜାଗାକୁ ଆପଣଙ୍କୁ ନେଇଯିବି, ଆରେ ଆସନ୍ତୁନା...

ମାନସ ଦୀପଙ୍କରର ହାତ ଧରି ଟାଣି ଟାଣି ଘରୁ ବାହାର କରି ନେଇଗଲା ।

ରେଷ୍ଟୁରେଣ୍ଟରେ ଜଳଯୋଗ ଶେଷ କରି ସେମାନେ ବାହାରିପଡ଼ିଲେ ।

ସେମାନେ କିଛିଦୂର ଆଗେଇ ଯାଇ ଶାଳ, ପାଇନ୍‌ର ଜଙ୍ଗଲ ମଧ୍ୟରେ ଏକ ସରୁ ଜନପଥ ଧରି ଆଗକୁ ଚାଲିଲେ ।

ଦୀପଙ୍କର କହିଲା : ଆମେ କୁଆଡ଼େ ଯାଉଛେ ମାନସବାବୁ ?

: କିଛି ଦୂରରେ ଗୋଟାଏ ପିକ୍‌ନିକ୍ ସ୍ପଟ୍ ଅଛି ।

: ସେଠାରେ ଯାଇ କ'ଣ ଦେଖିବା ?

: ଆପଣ ଚାଲନ୍ତୁ ନା, ମୁଁ ଶୁଣିଛି ସେମାନେ ପିକ୍‌ନିକ୍ କରିବାକୁ ଯାଇଛନ୍ତି ।

: ସେମାନେ ମାନେ ? ଦୀପଙ୍କର ଉତ୍ସାହିତ ହୋଇ ପଚାରିଲା ।

: ସେମାନେ ମାନେ ପାଲାମଉ ଡାକବଂଲୋର...

: ଓଃ, ବୁଝିଲି ବୁଝିଲି । ଆପଣଙ୍କର ସେହି ମୋହିନୀ ନାୟିକା । ଆଜି ତ ଚମତ୍କାର ସୁଯୋଗ । ଦୀପଙ୍କର କଣ୍ଠରେ ଉତ୍ସାହ ଫୁଟିଉଠିଥିଲା ।

ମାନସ କହିଲା : ମୁଁ କିନ୍ତୁ ଭରସା କରିପାରୁ ନାହିଁ । ଯଦି ସେହି ଷଣ୍ଡମାର୍କା ଲୋକଟା ସେମାନଙ୍କ ସଙ୍ଗରେ ଯାଇଥାଏ ତା'ହେଲେ କିଛି ଲାଭ ହେବ ନାହିଁ ।

: ଆରେ ଚାଲନ୍ତୁନା, ଆଗରୁ ଏତେ ଡରିଲେ ଚଳିବ କିପରି ? ଆପଣ ଆଗରୁ କହିଥିଲେ ଆମେ ରବିଦାର ଦଳଟାକୁ ଆମର ସଂଗରେ ଘେନି ଆସିଥାଆନ୍ତେ ।

: ମୋତେ କିନ୍ତୁ ସେମାନଙ୍କୁ ମୋଟେ ଭଲଲାଗୁ ନାହିଁ । ସେମାନେ କିପରି ଟିକିଏ ଅନ୍ୟରକମର ।

ସେମାନେ ଆଗେଇଥିଲେ ।

ଏକ ସମୟରେ ସେମାନେ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲେ ।

ମାନସ କହିଲା : ମୁଁ ଏଇଠି ଅପେକ୍ଷା କରୁଛି । ଏଇ ମୋଡ଼ ଘୁରିଗଲେ ସେଇ ଯେଉଁ ଜଙ୍ଗଲଟା ଦିଶୁଛି, ସେଇ ଜଙ୍ଗଲ ସେପାଖକୁ ଗୋଟାଏ ଢାଲୁ ଜାଗା ଅଛି । ତା'ମଧ୍ୟରେ ଅନେକ ଛୋଟ ଛୋଟ ଜଙ୍ଗଲ । ସେଇଟା ପିକ୍‌ନିକ୍ ସ୍ପଟ୍ । ସେଠାରେ ଅନେକ ଛୋଟବଡ଼ ଦଳଙ୍କୁ ଆପଣ ଭେଟିବେ ।

: ତା'ପରେ ?

ମାନସ ହସି ହସି କହିଲା : ତା'ପରେ ଆଉ କ'ଣ ? ଆପଣ ଯଦି ପରିସ୍ଥିତି ଭଲ ବୁଝନ୍ତି, ତେବେ ମୋତେ ଡାକି ନେଇଯିବେ ।

ଦୀପଙ୍କର କହିଲା : ତା'ହେଲେ ଆପଣ ଏଇଠି ଅପେକ୍ଷା କରି ଥାଆନ୍ତୁ । ଆପଣଙ୍କର ଡର ସେହି ଗାଲମୁଛିବାଲା ଷଣ୍ଢାମାର୍କା ଲୋକଟାକୁ ତ ! ସେ ଯଦି ନଥାଏ ତା'ହେଲେ ଆପଣ ଯିବେ ତ !

ମାନସ କିଛି ଉତ୍ତର ଦେଲା ନାହିଁ । କେବଳ ହସିଲା ।

ଦୀପଙ୍କର ଆଗେଇଗଲା ।

ସତରେ ସେ ମୋଡ଼ ବୁଲିଯିବା ପରେ ଦେଖିଲା, ଦଳ ଦଳ ହୋଇ ଅନେକ ତରୁଣତରୁଣୀ ।

ଛୋଟ ଛୋଟ ବୁଦା ଜଙ୍ଗଲ । କିନ୍ତୁ ତା'ରି ଭିତରେ ପ୍ରଜାପରି ପରି ସେମାନେ ସାଲୁବାଲୁ ହେଉଛନ୍ତି । ରନ୍ଧା ବଢ଼ା ଠାରୁ ଆରମ୍ଭ କରି ଗାନ ବାଜଣାର ସ୍ରୋତ ଚାଲିଛି ଅବିରାମ ଗତିରେ ।

କିନ୍ତୁ ଦୀପଙ୍କର କାହାକୁ ଖୋଜୁଛି ?

ହଠାତ୍ ଦୀପଙ୍କରର ଆଖିପଡ଼ିଲା ଗୋଟିଏ ଜଙ୍ଗଲିଆ ଜାଗାରେ । ଧନୁକ ପରି କ'ଣ ଗୋଟାଏ ବଙ୍କା ହୋଇ ରହିଛି ।

ଦୀପଙ୍କର ଆଉ ଟିକିଏ ଆଗେଇ ଯାଇ ଦେଖିଲା ଗୋଟିଏ ତରୁଣୀ ଅଧା ଶୁଆ ହୋଇ କ'ଣ ଗୋଟାଏ ମାଗାଜିନ୍ ପଢୁଛି । ଗୋଡ଼ଟା ଧନୁ ପରି ବଙ୍କା ହୋଇ ରହିଛି । ଆଉ ଟିକିଏ ଆଗକୁ ଆହୁରି ଦୁଇ ଚାରିଜଣ ଯୁବତୀ ରନ୍ଧା-ବଢ଼ାରେ ବ୍ୟସ୍ତ ଅଛନ୍ତି ।

ଦୀପଙ୍କର ଠିଆହୋଇପଡ଼ିଲା । ଚିନ୍ତା କରୁଥିଲା ଆଉ ଆଗେଇବ କି ନାହିଁ ।

ହଠାତ୍ ସେ ଦେଖିଲା, ସେଇ ତରୁଣୀଟି ମାଗାଜିନ୍‌ଟିକୁ ତଳେ ଥୋଇ ଦୀପଙ୍କର ଆଡ଼େ ଚାହିଁ ଠିଆ ହୋଇ ପଡ଼ିଲା ।

: ଆରେ ଆପଣ ଯେ !

ଦୀପଙ୍କର କିନ୍ତୁ ସେଠାରେ ସୁନନ୍ଦାକୁ ଆଦୌ ଆଶା କରି ନଥିଲା । ପୁଣି ଏପରି ଏକ ଅତି ଆଧୁନିକା ବେଶରେ ।

ଦୀପଙ୍କର କହିଲା : ଆପଣ କ'ଣ ଏଠାରେ...

: ହଁ, ଆମେ ପିକ୍‌ନିକ୍ କରିବାକୁ ଆସିଛୁ । ଏମାନେ ସବୁ ମୋର ବାନ୍ଧବୀ । ଆସନ୍ତୁ ଏମାନଙ୍କ ସହିତ ଆପଣଙ୍କର ପରିଚୟ କରାଇ ଦେବି ।

ସୁନନ୍ଦା ସେଉଠୁ ଥାଇ ଡାକ ଛାଡ଼ିଲା ତା'ର ବାନ୍ଧବୀମାନଙ୍କୁ । ସେମାନେ ଛୁଟି ଆସିଲେ ।

ଦୀପଙ୍କର କିନ୍ତୁ ଭୀଷଣ ଅସୁବିଧାରେ ପଡ଼ିଯାଇଥିଲା ।

ସୁନନ୍ଦା ଗୋଟି ଗୋଟି କରି ତା'ର ବାନ୍ଧବୀମାନଙ୍କ ସହିତ ଦୀପଙ୍କରର ପରିଚୟ କରାଇ ଦେଲା । କହିଲା : ଭଦ୍ରଲୋକଙ୍କ ସହିତ ପରିଚୟ ମୋର ଅଳ୍ପ, କିନ୍ତୁ ଖୁବ୍ ଗଭୀର । ଅଳ୍ପ କେତୋଟି ଘଣ୍ଟାର ପରିଚୟ ମଧ୍ୟରେ ଆମେ ଖୁବ୍ ଅନ୍ତରଙ୍ଗ ହୋଇପାରିଥିଲୁ । କିନ୍ତୁ ତମେମାନେ ସମସ୍ତେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ, ଆମ ମଧ୍ୟରେ ଆଉ ଦେଖାସାକ୍ଷାତର କୌଣସି ସମ୍ଭାବନା ନଥିଲା । ଅଥଚ...

ଦୀପଙ୍କର ବିବ୍ରତ ବୋଧକରୁଥିଲା ।

ସୁନନ୍ଦା ପୁଣି ପଚାରିଲା : ଆପଣ ଏକା ନା ସଙ୍ଗରେ ଆଉ କିଏ ଅଛନ୍ତି ?

: ଜଣେ ବଂଧୁ । ସେ ବୋଧହୁଏ...

ଦୀପଙ୍କର ଆଗେଇ ଯାଉଥିଲା ।

ସୁନନ୍ଦାର ବାନ୍ଧବୀମାନେ ପୁଣି ନିଜ ନିଜ କାମରେ ଚାଲିଯାଇଥିଲେ ।

ସୁନନ୍ଦା କହିଲା : ଆପଣ ମୋ ମଧ୍ୟରେ ଆଉ ଦେଖାସାକ୍ଷାତର ସମ୍ଭାବନା ନଥିଲା, କିନ୍ତୁ ପୁଣି ଦେଖାହେଲାଣି ଯେତେବେଳେ, ଆଉ ସହଜରେ ଆପଣଙ୍କୁ ଛାଡ଼ିବି ନାହିଁ ।

: ମାନେ ?

: ଆପଣଙ୍କୁ ଆଜି ଆମର ଆତିଥେୟତା ସ୍ୱୀକାର କରିବାକୁ ହେବ ।

ଦୀପଙ୍କର କହିଲା : କିନ୍ତୁ ମୋର ବଂଧୁ ଜଣକୁ ଯେ...

: ତାଙ୍କୁ ଡାକି ଆଣନ୍ତୁ । ଅବଶ୍ୟ ତାଙ୍କର ଯଦି ଆପତ୍ତି ନଥାଏ । ବୁଝିଲେ ଦୀପଙ୍କର ବାବୁ, ଆପଣ କାଲି ଚାଲିଯିବା ପରେ ମୁଁ କିନ୍ତୁ ଖୁବ୍ ଫିଲ୍ କରିଥିଲି ।

: କାହିଁକି ?

: କେଜାଣି କାହିଁକି କାଲି ମୁଁ ରାତିରେ ଶୋଇବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଆପଣଙ୍କ କଥା ମନେପଡ଼ିଥିଲା ।

: ମୋର ସୌଭାଗ୍ୟ । ଦୀପଙ୍କର ସ୍ମିତ ହସି କହିଲା ।

ସୁନନ୍ଦା କହିଲା : ବସନ୍ତୁ । ଆପଣଙ୍କ ସଙ୍ଗରେ ଆଜି ବସି ବସି କେବଳ ଗଳ୍ପ କରିବି । ନିଶ୍ଚୟ ଆପଣଙ୍କର ଅନ୍ୟ କୌଣସି ଏନ୍‌ଗେଜ୍‌ମେଣ୍ଟ ନାହିଁ ।

: ନା, ତେବେ...

: ଆହା, ଆପଣଙ୍କ ବଂଧୁଙ୍କ କଥା ଭାବୁଛନ୍ତି ତ ! ସେ ଆପଣଙ୍କୁ ଖୋଜି ଖୋଜି ବଳେ ଏଠାକୁ ଆସିବେ ।

: କିନ୍ତୁ ମୋ ପ୍ରତି ହଠାତ୍ ଆପଣଙ୍କର ଏତେ ବିଶ୍ୱାସ ଆସିଲା କେଉଁଠୁ ?

ସୁନନ୍ଦା ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲା : ଜାଣନ୍ତି ଦୀପଙ୍କର ବାବୁ, ମଣିଷର ମନ ବଡ଼ ବିଚିତ୍ର । ସେ କେତେବେଳେ ଯେ କ'ଣ ଚାହେଁ ଯେମିତି ଏଇ ମୁହୂର୍ତ୍ତରେ ମୋର ମନହେଉଛି ମୁଁ ଆପଣଙ୍କ ସଙ୍ଗରେ ଖୁବ୍ ବୁଲନ୍ତି, ଗିରି, ଗହ୍ୱର, ବଣ, ଜଙ୍ଗଲ, ମାନେ ମଣିଷ ବସିତିର ବାହରେ ଆମେ ଘୂରି ବୁଲନ୍ତେ, ପ୍ରକୃତିର ଶୋଭା ଦେଖନ୍ତେ ଏବଂ ହିଂସ୍ର ଜନ୍ତୁମାନଙ୍କ ସହିତ ମିଳିମିଶି ବନ୍ଧୁତା କରନ୍ତେ ।

ଦୀପଙ୍କର ଏଥର ହସି ଉଠି କହିଲା : ହଠାତ୍ ଆପଣଙ୍କ ମନରେ ଏପରି ଏକ ଚିନ୍ତାଧାରା ଜନ୍ମିଲା କାହିଁକି ସୁନନ୍ଦା ଦେବୀ !

: ନା ଦୀପଙ୍କରବାବୁ, ମୋତେ ଆଉ କିଛି ଭଲଲାଗୁ ନାହିଁ । ନିଜର ଆତ୍ମୀୟ ସ୍ୱଜନ, ଏପରି ବାପା, ମା'ମାନେ ନିଜର ସନ୍ତାନର ସ୍ୱାଧୀନ ଚିନ୍ତାଧାରାର କୌଣସି ମୂଲ୍ୟ ଦେବାକୁ ପ୍ରସ୍ତୁତ ନୁହନ୍ତି । ଦୁନିଆଟା ଖୁବ୍ ସ୍ୱାର୍ଥପର, ନା ?

ଦୀପଙ୍କର କହିଲା : ଦୁନିଆରେ ମଣିଷ ସମସ୍ତେ ସ୍ୱାର୍ଥପର । ଆପଣ ମୁଁ, ବାପା, ମା', ଭାଇ ଭଉଣୀ ସମସ୍ତେ । ଯେ ଯାହାର ମତ ଓ ସ୍ୱାର୍ଥ ନେଇ ବ୍ୟସ୍ତ ! କିନ୍ତୁ ତା'ରି ଭିତରେ ଊଣା ଅଧିକେ ସମସ୍ତେ କିଛି ନା କିଛି ସ୍ୱାର୍ଥ ତ୍ୟାଗ କରି ଚାଲିଛନ୍ତି, ଦେଶ ଜାତି ଓ ସମାଜ ପାଇଁ ଦାନ ବି ଅନେକଙ୍କର ରହିଛି । ଏଇ ମୁହୂର୍ତ୍ତରେ ଏହି ପିକ୍‌ନିକ୍ ମୁଡ୍‌ରେ ସେ ସବୁ ତ ଆଲୋଚ୍ୟ ବିଷୟ ନୁହେଁ । ସୁନନ୍ଦା ଦେବୀ !

: ମୁଡ୍ ମୋର ନଷ୍ଟ ହୋଇଯାଇଛି ଦୀପଙ୍କରବାବୁ । ପ୍ରକୃତରେ ମୋର ମନଟା ବଡ଼ ସୌଖୀନ ଥିଲା । ମୁଡ୍‌ଟା ଥିଲା ଭାରି ଆର୍ଟିଷ୍ଟିକ୍; କିନ୍ତୁ କେହି ତା'ର ମୂଲ୍ୟ ଦେଲେ ନାହିଁ । ମୋରି ନିଜର ଲୋକମାନେ ମୋ ମନଟାକୁ ଦଳିମକଚି ନଷ୍ଟ କରିଦେଲେ । ସୁନନ୍ଦାର କଣ୍ଠସ୍ୱର କରୁଣ ଶୁଣାଯାଉଥିଲା ।

ଦୀପଙ୍କର କହିଲା : ସମସ୍ତଙ୍କ ଜୀବନରେ ସାମୟିକ ଭାବରେ ଆପଣଙ୍କ ଜୀବନ ପରି କିଛି ନା କିଛି ହତାଶା ଜନ୍ମିଥାଏ । ମୁଁ କହିଛିପରା ଏଇ ବିଚିତ୍ର ଦୁନିଆର ଗତି ସହିତ ଗତି ମିଳାଇ ଚଳିବାକୁ ହେଲେ ଅସୀମ ଧୈର୍ଯ୍ୟର ପ୍ରୟୋଜନ ହୋଇଥାଏ । ଦେଖିବେ ଦିନେ ପୁଣି ସବୁ ଠିକ୍ ହୋଇଯିବ । ଆପଣଙ୍କ ମନ, ପ୍ରାଣ, ଏପରିକି ଇଚ୍ଛା ବି ପୂରଣ ହୋଇଯିବ । ଆପଣଙ୍କ ଆର୍ଟିଷ୍ଟିକ୍ ମନଟା ଆର୍ଟରେ ଆର୍ଟରେ ଭରିଯିବ ।

ସୁନନ୍ଦା ଟିକିଏ ଶୁଖିଲା ହସ ହସି କହିଲା : ଆପଣଙ୍କୁ ଧନ୍ୟବାଦ ଦୀପଙ୍କରବାବୁ । ଆପଣ ଯେ ମୋତେ ବଞ୍ଚି ରହିବା ପାଇଁ ଆଶା ଆଉ ଆଶ୍ୱାସନା ଦେଉଛନ୍ତି, ସେଥିପାଇଁ ମୁଁ

ଆପଣଙ୍କ ପାଖରେ କୃତଜ୍ଞ । ଆପଣ ତ ଚାଲିଯିବେ, ଅବଶ୍ୟ ଆପଣଙ୍କ ଚଳନ୍ତା ପଥ ସମ୍ବନ୍ଧରେ ମୋତେ କିଛି ଜଣା ନାହିଁ; ତଥାପି ଆପଣଙ୍କ ସହିତ ସମୟ କଟାଇ ଦେବା ପାଇଁ ମୋତେ ଭାରି ଭଲଲାଗୁଛି ।

ଦୀପଙ୍କର କହିଲା : ଜୀବନ ଦର୍ଶନ ଅବଶ୍ୟ ସମସ୍ତଙ୍କର ସମାନ ନୁହେଁ । ଜୀବନ ଦର୍ଶନଠାରୁ ଜୀବନର ଗତିଧାରା ଏ ଯୁଗରେ ସବୁଠାରୁ ବିଚିତ୍ର । ମୁଁ ଜାଣି ନାହିଁ ଅବଶ୍ୟ ଆପଣଙ୍କର ପାରିବାରିକ ଜୀବନର ଧକ୍କା ଆପଣଙ୍କୁ କେତେଦୂର ଠେଲିଆଣିଛି । ତଥାପି ଆପଣଙ୍କୁ ବଞ୍ଚିବାକୁ ହେବ । ମୋତେ ବି ବଞ୍ଚିବାକୁ ହେବ ଏବଂ ଦୁନିଆର ଅନ୍ୟ ସମସ୍ତଙ୍କୁ ମଧ୍ୟ ବଞ୍ଚିବାକୁ ହେବ । ତେଣୁ ପ୍ରତ୍ୟେକ ମଣିଷର ଜୀବନ ଦର୍ଶନ ଯାହାଥାଉ, ସାମାଜିକ ଜୀବନ ସହିତ ଗୋଟାଏ ମୀମାଂସା କରି ଚଳିବାକୁ ହେବ । ଯାହାହେଉ, ସେସବୁ ଚିନ୍ତା କରିବା ପାଇଁ ଆପଣ ଆଉ ମୋ ହାତରେ ସମୟ ଯଥେଷ୍ଟ ଅଛି, ବର୍ତ୍ତମାନ କହିଲେ, ଆପଣ ଏଠାରେ ଆଉ କେତେଦିନ ରହୁଛନ୍ତି ?

ସୁନନ୍ଦାର ମନଟା କିପରି ଦବି ଯାଇଥିଲା । ମନେହେଉଥିଲା ସମସ୍ତ ଉତ୍ସାହ ଯେପରି ତା'ର ଶେଷ ହୋଇଯାଇଛି । ଧୀରେ ଧୀରେ କହିଲା : ଅଛି ଦି' ଚାରିଦିନ । ଆଉ ଆପଣ ?

ଦୀପଙ୍କର କ'ଣ ଉତ୍ତର ଦେବାକୁ ଯାଉଥିଲା.....। ସୁନନ୍ଦାର ଜଣେ ବାନ୍ଧବୀ ଆସି ଦୀପଙ୍କରକୁ ଲକ୍ଷ୍ୟ କରି କହିଲା : ଆପଣ କିନ୍ତୁ ଆଜି ଆମର ଅତିଥି । ଆମ ଏଠାରେ ଖିଆପିଆ ଶେଷ ନ କରି ଯାଇପାରିବେ ନାହିଁ । ଆପଣ ଗୀତ ଗାଇ ଜାଣନ୍ତି ?

: ଗୀତ ? ନାଁ ତ । ଆପଣଙ୍କୁ କିଏ କହିଲା ?

: ମୁଁ ଜାଣେ । ଆପଣଙ୍କ ଚେହେରା ଦେଖିଲେ ମନେହେଉଛି ।

ଦୀପଙ୍କର ଅବାକ୍ ହୋଇ ସେଇ ଝିଅଟିଆଡ଼େ ଅନେଇ ରହିଲା ।

ସୁନନ୍ଦା କହିଲା : ନା ମାଳା, ଅବଶ୍ୟ ମୁଁ ଜାଣି ନାହିଁ, ତେବେ ଦୀପଙ୍କରବାବୁ ବୋଧହୁଏ ଗୀତ ଗାଇ ଜାଣନ୍ତି ନାହିଁ ।

ମାଳା କହିଲା : ମୁଁ କିନ୍ତୁ ବଡ଼ ଆଶାକରି ଆସିଥିଲି ଆପଣଙ୍କଠାରୁ ଗୋଟିଏ ହିଟ୍ ସଙ୍ଗ ଶୁଣିବା ପାଇଁ ।

ଦୀପଙ୍କର କହିଲା : ହଠାତ୍ ମୋ ପ୍ରତି ଆପଣଙ୍କର ଏପରି ଧାରଣା ଜନ୍ମିଲା କିପରି ?

ମାଳା ହସି ହସି କହିଲା : ଧାରଣାଟା ବ୍ୟକ୍ତିଗତ କଥା । ତେଣୁ ମୋ ମନରେ ଯେଉଁ ଧାରଣା ଜନ୍ମିଲା ତା'ର ଉତ୍ସ ଖୋଜିବା ତ ସହଜ କଥା ନୁହେଁ; ତେବେ ଆପଣ ଯେ ଗୀତ ଗାଇ ଜାଣନ୍ତି ଏକଥା ମୋଟେ ମିଛ ନୁହେଁ ।

ଦୀପଙ୍କର ମନେ ମନେ ବିସ୍ମିତ ହୋଇଥିଲା ।

ମାଳାର ଅନୁମାନ ଶକ୍ତି ତ ଅସମ୍ଭବ । ଅବଶ୍ୟ ସେ ନାମକରା ଗୋଟିଏ ଗାୟକ ନୁହେଁ । ତେବେ ଦୀପଙ୍କର ଗୀତ ଗାଏ । ବେଳେ ବେଳେ କୌଣସି କୌଣସି ଫଙ୍କ୍ସନ୍‌ରେ ମଧ୍ୟ ସେ ଗାଇଛି । ତେବେ ଏସବୁ କଥା ମାଳା ଜାଣିଲା କିପରି ?

ପୁଣି କିଛି ସମୟର ନୀରବତା ପରେ ମାଳା କହିଲା : ଆଚ୍ଛାହେଉ, ଏଠି ନ ହେଲା ନାହିଁ, ଘରେ ଯାଇ ଗୋଟିଏ ଗାଇ ଶୁଣାଇବେ; ନହେଲେ ମୁଁ କିନ୍ତୁ ସହଜରେ ଆପଣଙ୍କୁ ଛାଡୁନାହିଁ ଦୀପଙ୍କରବାବୁ ।

ସୁନନ୍ଦା ବିରକ୍ତ ହୋଇ କହିଲା : ଯା ଯା, ଆସିଲା ଜଣେ ଭଦ୍ରଲୋକଙ୍କୁ ବିରକ୍ତ କରିବା ପାଇଁ, ବୟସ ତ କମ୍ ହେଲା ନାହିଁ, ଏଥର ସ୍ୱଭାବଟା ଟିକିଏ ବଦଳା ।

ମାଳା ହସି ହସି କ'ଣ କହିବାକୁ ଯାଉଥିଲା, ଆଉ ଗୋଟିଏ ଝିଅ ଆସି କହିଲା : ବୁଝିଲ ସୁନନ୍ଦା ଦିଦି, ତମେ ଏଠି ବସି ବସି ଆରାମରେ ଗଳ୍ପ କଲେ ଚଳିବ ନାହିଁ । ତେଣେ ଘଟଣା କ'ଣ ହେଲାଣି ଜାଣିଛ ?

: କ'ଣ ହେଲା ?

: ରୀତିମତ ଝଗଡ଼ା ।

: କାହା ସହିତ ?

: ଓ ! ହେଇ ସେ ପାଖରେ ଯେଉଁ ଦଳଟା ପିକ୍‌ନିକ୍ କରୁଛନ୍ତି । ସେମାନଙ୍କ ସହିତ ତିନି ଚାରିଟା ପୁଅ ଅଛନ୍ତି । ସେମାନେ ବଡ଼ ଅଭଦ୍ର ଆଚରଣ କରୁଛନ୍ତି । ବାଜେ ବାଜେ ଗୀତ, ଅସଭ୍ୟ ଇଙ୍ଗିତ । କେତକୀ ଦିଦି ପ୍ରତିବାଦ କରିବାରୁ, ସେମାନେ ଆମ ସହିତ ଝଗଡ଼ା କରୁଛନ୍ତି । ଅଶ୍ଳୀଳ ଇଙ୍ଗିତ ବି କରୁଛନ୍ତି ।

ସୁନନ୍ଦା ଉଠି ଠିଆହୋଇପଡ଼ିଲା । କହିଲା : କିଏ ସେ, ଦେଖିବା ଚାଲ ତ ! ଏତେ ବଡ଼ ଦୁଃସାହସ ସେମାନଙ୍କର !

ସୁନନ୍ଦା ଆଗେଇ ଯିବା ପୂର୍ବରୁ କିପରି ଏକ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଦୀପଙ୍କର ମୁହଁକୁ ଚାହିଁଲା ।

ଦୀପଙ୍କର ନୀରବରେ ସୁନନ୍ଦାର ପଛେ ପଛେ ଆଗେଇଯାଉଥିଲା ।

ଦୀପଙ୍କର ଯାଇ ଦେଖିଲା, ଆଉ ଗୋଟିଏ ବୁଦା ଉହାଡ଼ରେ ଦଳେ ପୁଅ, ଝିଅ ଖୁବ୍ ହସ-ଥଟ୍ଟାରେ ମାତିଛନ୍ତି । ଗୋଟାଏ ବିଦେଶୀ ସୁର୍‌ର୍ ରେକର୍ଡ଼ ବାଜୁଛି, ସବୁ ପୁଅ, ଝିଅ ମିଶି ନାଚ ଆରମ୍ଭ କରି ଦେଇଛନ୍ତି । କିଏ କ'ଣ କହୁଛି, କିଏ କ'ଣ ଗାଉଛି, ଆଉ କିଏ କିପରି ନାଚୁଛି, ତା'ର କିଛି ଧାରା ନାହିଁ । ସମସ୍ତେ ଯେପରି ଆନନ୍ଦର ଗୋଟିଏ ଗୋଟିଏ ପ୍ରତିମୂର୍ତ୍ତି ।

ସୁନନ୍ଦା ଆଉ ଦୀପଙ୍କର ହଠାତ୍ ଯାଇ ସେଇଠି ଠିଆହୋଇପଡ଼ିଲେ ।

ଦୀପଙ୍କର ଦେଖିଲା, ସେମାନଙ୍କ ଦଳରେ ଗୋଟିଏ ଷଣ୍ଢମାର୍କା, ଗାଲମୁଛିବାଲା ଯୁବକଟି ମଧ୍ୟ ଉନ୍ମତ୍ତ ହୋଇ ନାଚୁଛି ।

ଏ ତା'ହେଲେ ସେଇ ଦଳ । ଯେଉଁ ଦଳକୁ ଖୋଜିବା ପାଇଁ ମାନସ ତାକୁ ଭିଡ଼ି ଆଣିଛି ଏତେବାଟ ।

ଏଇମାନଙ୍କ ଦଳରେ ନିଶ୍ଚୟ ଅଛି ମାନସର ସେଇ ମାନସ ପ୍ରତିମା ।

କିନ୍ତୁ...

ସୁନନ୍ଦା କହିଲା : ଦେଖୁଛନ୍ତି ଦୀପଙ୍କରବାବୁ । ସତରେ ଏମାନଙ୍କର ପ୍ରାଣ ପ୍ରାଚୁର୍ଯ୍ୟରେ ଭରା । ଆନନ୍ଦର ଉଚ୍ଛ୍ୱାସରେ ଏମାନେ ଆତ୍ମହରା ହୋଇଉଠିଛନ୍ତି । କିନ୍ତୁ କ'ଣ ଜାଣନ୍ତି ଦୀପଙ୍କରବାବୁ । ଏଇଟା କେବଳ ବାହାରର, ହେଲେ ସେମାନଙ୍କର ବାସ୍ତବ ଜୀବନ କ'ଣ ଏତେ ସ୍ୱଚ୍ଛନ୍ଦ, ଏତେ ସହଜ ? କାହାରି କୌଣସି ବେଦନା ନାହିଁ ?

ଦୀପଙ୍କର କହିଲା : ପ୍ରତ୍ୟେକଙ୍କର ଦୁଃଖ ଅଛି, ବେଦନା ଅଛି, ଏପରିକି ବ୍ୟର୍ଥତା ବି ଥାଇପାରେ; କିନ୍ତୁ ଜୀବନଟାକୁ ସବୁବେଳେ ସେଇ ବ୍ୟର୍ଥତା ବା ବେଦନାର ଯନ୍ତ୍ରଣା ଭିତରେ ବୁଡ଼େଇ ରଖି ନିଜେ ବୁଡ଼ିରହିବା କ'ଣ ଉଚିତ ହେବ ?

: ନ ହେଲେ ବି, ଏଥିରେ ସାମୟିକ ଆନନ୍ଦ ମିଳିବ ସିନା; ବାସ୍ତବ ଜୀବନର ବ୍ୟର୍ଥତା ତ ଦୂର ହେବ ନାହିଁ ।

ଦୀପଙ୍କର ଅନୁଭବ କଲା, ସୁନନ୍ଦା ଜୀବନରେ ଏପରି ଅଶେଷ ଦୁଃଖ, ଅଶେଷ ଯନ୍ତ୍ରଣା; କିନ୍ତୁ କାହିଁକି ?

ସେ ମନେ ମନେ ଚିନ୍ତାକଲା, ସୁନନ୍ଦାକୁ ସବୁ ପଚାରିବ । ଖୋଜିବ ସୁନନ୍ଦା ଜୀବନ ଯନ୍ତ୍ରଣାର ଉତ୍ସ ।

କିନ୍ତୁ ସୁନନ୍ଦା ଯଦି ଅନ୍ୟ କିଛି ଭାବେ ?

ସୁନନ୍ଦା ଓ ଦୀପଙ୍କର ଦୁହେଁ ଏକ ଦୃଷ୍ଟିରେ ସେଇଆଡ଼େ ଚାହିଁଥିଲେ ।

ଦୀପଙ୍କର କହିଲା : ବର୍ତ୍ତମାନ ଏମାନଙ୍କୁ କିଛି ପଚାରିବା ଆମର ଉଚିତ ହେବ ନାହିଁ ସୁନନ୍ଦା ଦେବୀ । ସେମାନଙ୍କ ଆନନ୍ଦର ଜୁଆର କମୁ । ତା'ପରେ...

: ନା, ଆପଣ ଆସନ୍ତୁ । ସେମାନେ ଆମ ସହିତ ଆଉ କିଛି ଅସଦ୍‌ଆଚରଣ କଲେ ତା'ପରେ ଦେଖିବା ।

ସୁନନ୍ଦା ଓ ଦୀପଙ୍କର ଫେରିଯାଉଥିଲେ । ଦେଖିଲେ, ପ୍ରବୀର, ରବିଦା ଏବଂ ମାନସ ଆଗେଇ ଆସୁଛନ୍ତି ।

ପ୍ରବୀର ଚିତ୍କାର କରି ଉଠିଲା : ଏଇବାର ଆପନି ଧରା ପଡ଼େଗେଛେନ୍ ଦୀପଙ୍କର ଦା ! ଆର ଲୁକୋଚୁରୀ ଖେଲା ଚଲ୍‌ବେନା । ଆପନି ଲୁକିଏ ଲୁକିଏ ଯତଇ ଯା କରୁନ୍, ପ୍ରବୀରେର ଚୋଖେ ଧୂଲୋ ଫେଲା ମୋଟେଇ ସହଜ ବ୍ୟାପାର ନୟ ।

ରବିଦା ହସି ହସି ଆଗେଇ ଆସୁଥିଲା । ସେ ବି କ'ଣ କହିଥାଆନ୍ତା; କିନ୍ତୁ ଦୀପଙ୍କର ହଠାତ୍ କହି ଉଠିଲା : ଏଇମାନେ ମୋର ବନ୍ଧୁ । ସୁନନ୍ଦା ଦେବୀ; ଆସନ୍ତୁ ଏମାନଙ୍କ ସହିତ ଆପଣଙ୍କର ପରିଚୟ କରାଇଦିଏ ।

ରବିଦା କହିଲା : ପରିଚୟ କରାଇ ଦେବା ଆବଶ୍ୟକ ନାହିଁ ଦୀପଙ୍କରବାବୁ । ସୁନନ୍ଦା ଦେବୀଙ୍କୁ ଆମେ ଆଗରୁ ଚିହ୍ନିଚୁ । ଆମେ ସମସ୍ତେ ଏକା ବସ୍‌ରେ ଆସିଥିଲେ ନା ସୁନନ୍ଦା ଦେବୀ ?

ସୁନନ୍ଦା ମୁଣ୍ଡହଲାଇ ସମ୍ମତି ଜାଣାଇଲା ।

ଦୀପଙ୍କର କହିଲା : ଏ ହେଉଛନ୍ତି ଆମର ରବିଦା, ସିଏ ପ୍ରବୀର ଆଉ ସେଇ ଯେଉଁ ଲାଜୁରା ଭଦ୍ରଲୋକ ଜଣକ ଦେଖୁଛନ୍ତି, ସେ ମାନସ ।

ସୁନନ୍ଦା ସମସ୍ତଙ୍କୁ ହାତଯୋଡ଼ି ନମସ୍କାର ଜଣାଇଲା । କହିଲା, ଆଜି ଆପଣମାନେ ସମସ୍ତେ ଆମର ଅତିଥି । ଆପଣମାନଙ୍କୁ ଆମ ଦଳରେ ପାଇ, ବାସ୍ତବିକ୍ ମୁଁ ଭାରି ଖୁସି ।

ପିକ୍‌ନିକ୍ ଶେଷ ହୋଇଥିଲା ।

ପିକ୍‌ନିକ୍ ଶେଷ ହୋଇଥିଲା ମହା ଆନନ୍ଦରେ; ଯେଉଁଟା କେହି ଆଶା କରି ପାରି ନଥିଲେ ।

ଦୀପଙ୍କର ଗୀତ ଗାଇଥିଲା ।

ପ୍ରବୀର ନାଚିଥିଲା ।

ଅନ୍ୟମାନେ ଆନନ୍ଦରେ ଆତ୍ମହରା ହୋଇ କେଇଘଣ୍ଟା ପାଇଁ ଜୀବନର ସମସ୍ତ ଯନ୍ତ୍ରଣା ଭୁଲିଯାଇଥିଲେ ।

ସୁନନ୍ଦାକୁ ସବୁଠାରୁ ବେଶି ପ୍ରଫୁଲ୍ଲ ଦେଖାଯାଉଥିଲା ।

ପିକ୍‌ନିକ୍ ଶେଷରେ ଯେ ଯାହାର ଘରକୁ ଫେରିଯାଇଥିଲେ ।

କିନ୍ତୁ...

ସୁନନ୍ଦା ଦୀପଙ୍କରକୁ କ'ଣ କହିବାକୁ ଯାଇ କହି ପାରି ନଥିଲା । ଭିଡ଼ ଭିତରେ ହୁଏତ ସୁବିଧା ହୋଇ ନଥିଲା । ବିଦାୟ ବେଳରେ ରୁମାଲ ହଲାଇ କହିଥିଲା : ଆଶା କରୁଛି ଆମର ଏହି ଆନନ୍ଦର ଦିନଟି ଆପଣଙ୍କର ମନେରହିବ ।

ଦୀପଙ୍କର କହିଥିଲା : ଆପଣ ଭୁଲି ନଗଲେ ହେଲା ।

ତା'ପରେ ସମସ୍ତେ ଯେ ଯାହା ବାଟରେ ଚାଲିଯାଇଥିଲେ ।

ଦୀପଙ୍କରକୁ ବାଟଯାକ ଥଟ୍ଟା କରିଥିଲେ ରବିଦା ଏବଂ ପ୍ରବୀର ।

ତଥାପି ଦୀପଙ୍କର ନୀରବରେ ସବୁ ଶୁଣି ଯାଇଥିଲା ।

କିନ୍ତୁ ବାଟଯାକ ତା'ର ମନେହେଉଥିଲା, ସେ ଯେପରି ତା' ଜୀବନର ଗୋଟାଏ ବଡ଼ ସମ୍ପଦ କେଉଁଠି ହରାଇ ଆସିଛି ।

ସେ ତାକ ବଂଲୋକୁ ଫେରିଯାଇଥିଲା ।

ମାନସ କିନ୍ତୁ ଫେରି ନଥିଲା ଦୀପଙ୍କର ସହିତ । ଯେଉଁଥିପାଇଁ ସେ ଏତେ ଉତ୍ସାହର ପିକ୍‌ନିକ୍ ସ୍ପଟଯାଏ ଛୁଟି ଯାଇଥିଲା, ସେଠାରେ ସେ ତା ମନର ମଣିଷକୁ ପାଇ ନଥିଲା । ସେଇଥି ପାଇଁ ବୋଧହୁଏ ମନଟା ତା'ର ଛୋଟ ହୋଇଯାଇଥିଲା । ଦଳଛଡ଼ା ହୋଇ ସେ ଏତେ ତେଣେ ଚାହୁଁଥିଲା ।

ଦୀପଙ୍କର କିନ୍ତୁ ବେଶି ଚିନ୍ତିତ ହୋଇ ଉଠୁଥିଲା ।

ସୁନନ୍ଦା ସହିତ ମାତ୍ର ଦୁଇଟି ଦିନର ପରିଚୟ । ତଥାପି ସୁନନ୍ଦା କିପରି ତାକୁ ଅନ୍ୟ ପ୍ରକାର ମନେହେଲା । ସାଧାରଣ ମଣିଷଠାରୁ ସେ ଯେପରି ଟିକିଏ ସ୍ୱତନ୍ତ୍ର ।

ସୁନନ୍ଦା ଭିତରେ ଯେ ଏକ ଗୁପ୍ତ ବେଦନା ଲୁଚି ରହିଛି; ଯେଉଁଥିପାଇଁ ସେ ଯଥେଷ୍ଟ ସ୍ୱଚ୍ଛନ୍ଦ ହୋଇପାରୁନାହିଁ ।

କ'ଣ ସେହି ବେଦନା ?

ସୁନନ୍ଦାର ବୟସ ଖୁବ୍ ବେଶି ହେଲେ ବାଇଶି ତେଇଶି ହେବ ।

ଏତେ ଅଳ୍ପ ବୟସରେ କ'ଣ ତା'ର ଜୀବନ ଯନ୍ତ୍ରଣା ହୋଇପାରେ ?

ଦୀପଙ୍କର ନୀରବରେ ରୁମ୍ ଭିତରକୁ ଯାଇ ଖଟ ଉପରେ ବସିପଡ଼ିଲା । ସେ ଭୁଲି ଯାଇଥିଲା ବାହାର ଦୁନିଆର ଅନ୍ୟାନ୍ୟ କଥା । ଏପରି ତା'ର ରୁମ୍‌ମେଟ୍ ସେହି ରିଟାଏଡ୍ ଫରେଷ୍ଟ ଅଫିସରଙ୍କ କଥା ବି ତା'ର ମନେ ନଥିଲା ।

ହଠାତ୍ ଭଦ୍ରଲୋକଙ୍କୁ ରୁମ୍ ଭିତରେ ପ୍ରବେଶ କରୁଥିବାର ଦେଖି ଦୀପଙ୍କର ଯେପରି ସଚେତନ ହୋଇଉଠିଲା ।

ତା'ର ମନେପଡ଼ିଲା ଗତ ରାତିରେ ତାଙ୍କ ସହିତ କଟାଇଥିବା ସମୟଗୁଡ଼ିକର କଥା । ଦୀପଙ୍କରର ମନେଅଛି ସେ ଯେତେବେଳେ ଆଜି ଏହି ରୁମ୍ ଛାଡ଼ି ବାହାରକୁ ଯାଇଥିଲା, ଭଦ୍ରଲୋକ ସେତେବେଳେଯାଏ କମ୍ବଳ ଘୋଡ଼ାଇ ହୋଇ ଶୋଇଥିଲେ ।

ଦୀପଙ୍କର ଉଠି ଠିଆହେଲା । ଯେମିତି କିଛି ହୋଇ ନାହିଁ: ସେହିଭଳି ଭଙ୍ଗୀରେ କହିଲା, ଆସନ୍ତୁ ସାର୍ ! ଏଇ ଫେରୁଛନ୍ତି ବୋଧ ହୁଏ ?

ଦୀପଙ୍କର ଆଶାକରିଥିଲା ଭଦ୍ରଲୋକ ତା' ପାଖକୁ ଆଗେଇ ଆସିବେ ଏବଂ ଭଲମନ୍ଦ ଦି'କଥା ପଚାରିବେ ।

କିନ୍ତୁ ସେ ଦୀପଙ୍କର କଥା କାନକୁ ନ ନେଲା ଭଳି ବିଛଣା ଉପରେ ବସିପଡ଼ି ସେ ତା'ର ପାଇଜାମା ଫିତା ଖୋଲିବାକୁ ଲାଗିଗଲେ ।

ଦୀପଙ୍କର ଯାଇ ତାଙ୍କ ସାମ୍ନାରେ ବସିଲା । ଚାହିଁଲା ଦି'ଚାରିଥର କିନ୍ତୁ ଭଦ୍ରଲୋକ ଆଜି ଯେପରି ଆହୁରି ଗମ୍ଭୀର, ଆହୁରି ଆତ୍ମହରା ।

ଦୀପଙ୍କର ଆଉ କିଛି ପଚାରିଲା ନାହିଁ ।

ବାହାରକୁ ବାହାରିଗଲା । ଏତେ ବଡ଼ ବଂଗଲୋଟା ଫାଙ୍କା ଫାଙ୍କା ଲାଗୁଥିଲା । କେହି ଫେରି ନ ଥିଲେ ବାହାରୁ ।

ଦୀପଙ୍କର ପୁଣି ବାହାରିଗଲା ବଂଗଲୋରୁ ।

କିଛି ଭଲଲାଗୁନାହିଁ । ତା'ର ଏଠାରେ ଆଉ ବେଶି ଦିନ କଟାଇବା ଉଚିତ୍ ନୁହେଁ । ସେ ଯେଉଁ ପରିସ୍ଥିତିରେ ଆସି ଏଠାରେ ପହଞ୍ଚିଛି ସେହି ପରିସ୍ଥିତିର ପରିଣତି କଥା ଭାବିଲେ ଦୀପଙ୍କରର ଦେହ ଶିହରୀ ଉଠୁଥିଲା; କିନ୍ତୁ ସେସବୁ ପରେ ବି ସୁନନ୍ଦା ଯେପରି ତା' ପ୍ରାଣରେ ଏକ ଆଲୋଡ଼ନ ସୃଷ୍ଟି କରି ଦେଇଥିଲା ।

ସୁନନ୍ଦା କିଏ ?

କ'ଣ ଚାହେଁ ସେ ଦୀପଙ୍କରଠାରୁ ? ନା ଦୀପଙ୍କର କିଛି ଚାହେଁ ସୁନନ୍ଦା ଠାରୁ ?

ସେଇ ମୁହୂର୍ତ୍ତରେ ଦୀପଙ୍କରର ମନେହେଉଥିଲା, ଆଜି ଆଉ ଥରେ ସୁନନ୍ଦା ସହିତ କେଉଁଠି ନିରୋଳାରେ ଦେଖାହେଲେ, ସୁନନ୍ଦାର ଜୀବନ ଦର୍ଶନ ବସି ବସି ସେ ଶୁଣନ୍ତା ।

ଦୀପଙ୍କର ଆଗେଇ ଚାଲିଥିଲା । ଏକା, ଅନ୍ୟମନସ୍କ ଏବଂ ଚୁପ୍‌ଚାପ୍ ।

ସରୁ ସରୁ ବଙ୍କା ବଙ୍କା ପଥରେ, ସେ ଆଗେଇ ଚାଲିଥିଲା ।

ହଠାତ୍...

ଆରେ, ସୁନନ୍ଦା ଯେ ! ସେ ତା'ରି ଆଡ଼କୁ ଆଗେଇ ଆସୁଥିଲା । ଦୁହେଁ ସାମ୍ନା ସାମନି ଠିଆହୋଇ ପରସ୍ପରକୁ ଅବାକ୍ ହୋଇ ଦେଖୁଥିଲେ ।

ସୁନନ୍ଦା କହିଲା : ମୁଁ କିନ୍ତୁ ଆପଣଙ୍କ ବଂଗଲୋକୁ ଯାଉଥିଲି; କିନ୍ତୁ ଆପଣ.....

: ମୁଁ ? ଦୀପଙ୍କର ହସିଲା । କହିଲା, ମୁଁ ବି ଆପଣଙ୍କର ସନ୍ଧାନରେ ବାହାରିଥିଲି ।

: କିନ୍ତୁ ଆପଣ ଯେ ମୋର ଠିକଣାଟା ଜାଣନ୍ତି ନାହିଁ, ତା'ଛଡ଼ା ମୁଁ ତ ବିପରୀତ ଦିଗରେ ରୁହେ । ସୁନନ୍ଦା କହିଲା ।

: ଇଏ ହେଲା ପ୍ରାଣର ଡାକ ସୁନନ୍ଦା ଦେବୀ । ଆପଣ ଯେଉଁଠି ଥିଲେ ବି ପାଦ ମୋତେ ସେଇଠି ନେଇ ପହୁଞ୍ଚାଇ ଦେଇଥାଆନ୍ତା ।

: କିନ୍ତୁ ହଠାତ୍, ଏତେ ଅଳ୍ପ ପରିଚୟ ମଧ୍ୟରେ ଆପଣଙ୍କ ପ୍ରାଣ ମୋ ପ୍ରତି ଏତେ ବ୍ୟାକୁଳ ହୋଇପଡ଼ିଲା କିପରି ? ସୁନନ୍ଦା ହସି ହସି ପଚାରିଲା ।

ଦୀପଙ୍କର କହିଲା : ଠିକ୍ ଏଇ ପ୍ରଶ୍ନଟା ଯଦି ମୁଁ ଆପଣଙ୍କୁ ପଚାରିବସେ ।

: ତା'ହେଲେ ଭାବିଚିନ୍ତି ଗୋଟାଏ କିଛି ଉତ୍ତର ଦେବାକୁ ହେବ । ସେ ଯାହାହେଉ, ଆପଣ ମୋତେ କାହିଁକି ଖୋଜୁଥିଲେ କୁହନ୍ତୁ ।

: ମୁଁ ? ଦୀପଙ୍କର ଟିକିଏ ଚିନ୍ତାକରି କହିଲା, ଖୋଜୁଥିଲି ଆପଣଙ୍କଠାରୁ ବିଦାୟ ନେବା ପାଇଁ ।

: କାହିଁକି ? ଏତେ ଶୀଘ୍ର କ'ଣ ନେତାରହାଟରୁ ଆପଣଙ୍କର ମନ ଛାଡ଼ିଗଲା ?

: ମନ, ମନକଥା ମୋଠାରୁ ଆପଣ ତ ଭଲ ଜାଣନ୍ତି ସୁନନ୍ଦା ଦେବୀ । ତା'ଛଡ଼ା ନେତାରହାଟରୁ ମନଛାଡ଼ିଗଲେ ବି ଆଉ ଏକ ଅମୂଲ୍ୟ ସଂପଦ ମୁଁ ଏଠାରେ ଛାଡ଼ିଯିବାକୁ ପ୍ରସ୍ତୁତ ନୁହେଁ ସୁନନ୍ଦା ଦେବୀ; କିନ୍ତୁ ମୁଁ ବାଧ୍ୟ ହେଉଛି ଏଠାରୁ ଚାଲିଯିବା ପାଇଁ ।

: କିଏ ଆପଣଙ୍କୁ ବାଧ୍ୟ କରୁଛି ? ସୁନନ୍ଦା ଚପଳ ହସ ହସି ପ୍ରଶ୍ନକଲା ।

ଦୀପଙ୍କର ପ୍ରସଙ୍ଗ ଏଡ଼େଇଯାଇ କହିଲା : କିନ୍ତୁ ଆପଣ ତ କହିଲେ ନାହିଁ, ଆମ ବଂଲୋ ଆଡ଼େ କାହିଁକି ଯାଉଥିଲେ ?

ସୁନନ୍ଦା କହିଲା : ଆପଣଙ୍କ ବଂଲୋ ଆଡ଼େ ଯାଉଥିଲି ବୋଲି ଭାବନ୍ତୁ ନାହିଁ ଯେ ଆପଣଙ୍କ ପାଖକୁ ଯାଉଥିଲି । ମୁଁ ଯାଉଥିଲି ମୋର ଜଣେ ବାନ୍ଧବୀ ସହିତ ଦେଖାକରିବାକୁ । ଶୁଣିଲି ସେ ଆସି ସେଇଠି ଉଠିଛି ।

: ନା ସୁନନ୍ଦା ଦେବୀ, ମୁଁ ଏତେ ଆଶା କରିବି କାହିଁକି ? ସାମାନ୍ୟ କେଇଘଣ୍ଟାର ପରିଚୟ ମାତ୍ର, ତା'ଛଡ଼ା.....।

: ତା'ଛଡ଼ା କ'ଣ ?

: ନା କିଛି ନୁହେଁ ।

କିଛି ସମୟର ନୀରବତା ଭିତରେ ଦୁଇଜଣ ଆଗେଇ ଚାଲିଥିଲେ ।

: ସତରେ କ'ଣ ଆପଣ କାଲି ଚାଲିଯିବେ ଦୀପଙ୍କର ବାବୁ? ସୁନନ୍ଦା ନୀରବତା ଭଙ୍ଗକଲା ।

: ନ ଯାଇ ଉପାୟ ନାହିଁ । ଦୀପଙ୍କର କହିଲା ।

: ମୁଁ ଚାଲିଯିବି ଭାବୁଛି । ସୁନନ୍ଦା ଧୀର ସ୍ୱରରେ କହିଲା ।

: ଆପଣ କୁଆଡ଼େ ଚାଲିଯିବେ ?

: ଆଗ ଆପଣଙ୍କ ଗନ୍ତବ୍ୟ ସ୍ଥଳଟା ଶୁଣେ ?

: କିଛି ଠିକ୍ ନାହିଁ ।

: ମାନେ ?

: ମୋର ନିର୍ଦ୍ଦିଷ୍ଟ କିଛି ଠିକଣା ନାହିଁ । ଯୁଆଡ଼େ ମନ ଚାହିଁବ ସିଆଡ଼େ ପାଦ ଚାଲିବ ।

: ଆପଣ କ'ଣ ଯାଯାବର ?

: ନା, ତା'ହେଲେ ତ ବୁଝିଥାଆନ୍ତି ମୁଁ ଧର୍ମ ପାଳନ କରୁଛି ।

: ତା'ହେଲେ ? ସୁନନ୍ଦା ସନ୍ଦେହୀ ଦୃଷ୍ଟିରେ ଦୀପଙ୍କରର ମୁହଁକୁ ଚାହିଁଲା ।

: କୁହନ୍ତୁ, ଆପଣଙ୍କ ଆଖିରେ ମୁଁ କ'ଣ ହୋଇପାରେ ।

: ମୋ ଆଖିରେ, ମୋ ଆଖିରେ ଆପଣ ଆଉ କ'ଣ ହୋଇପାରନ୍ତି । ଅବଶ୍ୟ ଜଣେ ସାଧାରଣ ମଣିଷ ନୁହନ୍ତି ।

ଦୀପଙ୍କର ହସିଲା । କହିଲା : ମୁଁ କିନ୍ତୁ ଜଣେ ପଳାତକ ।

: ପଳାତକ ? ସୁନନ୍ଦା ସନ୍ଦେହୀ ଦୃଷ୍ଟିରେ ଦୀପଙ୍କରର ମୁହଁକୁ ଅନାଇ ରହିଲା ।

: କ'ଣ ବିଶ୍ୱାସ ହେଉନି ?

ସୁନନ୍ଦା କହିଲା : ଆପଣ ଯଦି ପ୍ରକୃତରେ ଜଣେ ପଳାତକ ହୋଇଥାଆନ୍ତି, ତା'ହେଲେ ଆପଣଙ୍କ ସହିତ ମୋର ଠିକ୍ ମତ ମିଳିବ ।

: ମାନେ ? ଦୀପଙ୍କର ପଚାରିଲା ।

ସୁନନ୍ଦା କହିଲା : ସତ କହିବାକୁ ଗଲେ ମୁଁ ଘରଛାଡ଼ି ପଳେଇ ଆସିଛି ।

ଦୀପଙ୍କର ହଠାତ୍ ଠିଆହୋଇପଡ଼ିଲା ସେଇଠି ।

ସ୍ତବ୍ଧ ହୋଇ ଅନେଇ ରହିଲା ସୁନନ୍ଦା ମୁହଁକୁ ।

ସୁନନ୍ଦା ହସି ହସି କହିଲା : ତା'ବୋଲି ମୁଁ ଅସହାୟା ନୁହେଁ ଦୀପଙ୍କରବାବୁ । ମୁଁ ମୋଟେ ଆପଣଙ୍କର ଆଶ୍ରୟପ୍ରାର୍ଥୀ ହେବି ନାହିଁ ।

ଦୀପଙ୍କର କହିଲା : ଆପଣ ଯଦି ପ୍ରକୃତରେ ଘର ଛାଡ଼ି ଚାଲିଆସି ଥାଆନ୍ତି, ତା'ହେଲେ ଖୁବ୍ ଅନ୍ୟାୟ କରିଛନ୍ତି ।

: କାହିଁକି ଆପଣ ପଳାତକ ହୋଇ ବୁଲୁଛନ୍ତି, ଅନ୍ୟାୟ ଆଉ ଆପଣ କଲେ ନାହିଁ, କେବଳ ଅନ୍ୟାୟଟା କରିଲି ମୁଁ ?

: କିନ୍ତୁ ଆପଣ ମୋ ଅବସ୍ଥା କଥା ବୁଝିବେ ନାହିଁ ସୁନନ୍ଦା ଦେବୀ । ମୁଁ କିପରି ବାଧ୍ୟହୋଇ ପଳାତକ ସାଜିଛି, ଆପଣ ଶୁଣିଲେ ମୋତେ ଦୟା କରିବେ ।

: ମୋ ଅବସ୍ଥା ବି ଆପଣଙ୍କଠାରୁ କରୁଣ । ଗୋଟାଏ ସଭ୍ୟ ଦେଶରେ ଏପରି ଯେ ଘଟଣା ଘଟିପାରେ, ଆପଣ ଶୁଣିଲେ ମୋଟେ ବିଶ୍ୱାସ କରି ପାରିବେ ନାହିଁ ।

: କିନ୍ତୁ ଆପଣଙ୍କୁ ଦେଖିଲେ ତ ସେପରି ମନେହୁଏ ନାହିଁ । ଦୀପଙ୍କରର ଚାହାଣିରେ ଜିଜ୍ଞାସା ପୂରିରହିଥିଲା ।

ସୁନନ୍ଦା କହିଲା : ଆପଣଙ୍କର ଯଦି ଶୁଣିବାର ଆଗ୍ରହ ଥାଏ, ତା'ହେଲେ ମୋକଥା ମୁଁ ଆପଣଙ୍କୁ କହିବାକୁ ଦ୍ୱିଧା କରିବି ନାହିଁ; ବରଂ ଭଲ ହେବ, ଆପଣ ମୋ କଥା ଶୁଣିବେ, ମୁଁ ଆପଣଙ୍କ କଥା ଶୁଣିବି । ଆମେ ଆମ କଥା ହେଉ ହେଉ ହୁଏତ ଆଗେଇ ଯିବା ଅନେକ ଦୂର । ନା କ'ଣ କହୁଛନ୍ତି ଦୀପଙ୍କରବାବୁ ?

ଦୀପଙ୍କର କହିଲା : ମୋର ଆପଣଙ୍କ କଥା ଶୁଣିବାର ଆଗ୍ରହ ପ୍ରବଳ । ସକାଳେ, ପିକ୍‌ନିକ୍ ପାର୍ଟିରେ ଆପଣଙ୍କ ସହିତ କଥା ହେଲାବେଳେ ବୁଝିଥିଲି, ଆପଣଙ୍କର ଜୀବନରେ ଯନ୍ତ୍ରଣା ଅନେକ, କିନ୍ତୁ ଭାବି ପାରୁ ନଥିଲି, ଏତେ କମ୍ ବୟସରେ କ'ଣ ଏତେ ଯନ୍ତ୍ରଣା ।

ସୁନନ୍ଦା ଟିକିଏ ହସିବାକୁ ଚେଷ୍ଟାକଲା, କହିଲା : ବସନ୍ତୁ ଏଇଠି । ଏଇ ନିରୋଳାରେ ବସି ମୁଁ ଆପଣଙ୍କୁ ମୋ' ମନର କଥା କହିବି । ଆପଣ ବିଶ୍ୱାସ କରିବେ ତ ?

ସୁନନ୍ଦା ମୁହଁରେ ମଳିନତା ଫୁଟି ଉଠିଥିଲା ।

ଦୀପଙ୍କର କହିଲା : ଧରିବାକୁଗଲେ ଘଟଣାଟା ଏପରି କିଛି ନୁହେଁ; କିନ୍ତୁ ମୁଁ କାହିଁକି ବାପାଙ୍କର ପ୍ରସ୍ତାବକୁ ଗ୍ରହଣ କରି ପାରିଲି ନାହିଁ - ସେ ଯେତେବେଳେ ପ୍ରସ୍ତାବକୁ ଆଦେଶ ରୂପରେ ବ୍ୟବହାର କଲେ, ମୁଁ ମୋଟେ ସହିପାରିଲି ନାହିଁ ।

ଦୀପଙ୍କର କହିଲା : ଘଟଣାଟା ତା'ହେଲେ ଆପଣଙ୍କର ଏକାନ୍ତ ପାରିବାରିକ ନା ?

: ଘଟଣାଟା ଯଦିଓ ପାରିବାରିକ, ତେବେ ସବୁ ମୋତେ କେନ୍ଦ୍ରକରି । ମୋର ବିବାହ ପ୍ରସ୍ତାବ ବାପା ଯେଉଁ ଜଣକ ସହିତ କରିଥିଲେ, ମୁଁ ତାକୁ ଗ୍ରହଣ କରିପାରିଲି ନାହିଁ । ପରିଣାମରେ ମୋତେ ଘର ଛାଡ଼ିବାକୁ ହେଲା ।

: ଓଃ, ଏଇକଥା ! ଦୀପଙ୍କର ହୋ ହୋ ହୋଇ ହସି ଉଠିଲା । କହିଲା, ଇଏତ ଗୋଟାଏ ଘଟଣା ନୁହେଁ, ପ୍ରତିଟି ତରୁଣ ତରୁଣୀ ଜୀବନରେ ଏହିପରି ଘଟଣା ଘଟିଥାଏ ଥରେ ଅଧେ । ଆପଣ ଏଇଥିପାଇଁ ବାପା ମା'ଙ୍କ ଉପରେ ଅଭିମାନ କରି ଘରୁ ବାହାରି ଚାଲି ଆସିଛନ୍ତି ! ମୁଁ ଭାବୁଥିଲି, ବୋଧହୁଏ ଆପଣଙ୍କ ଜୀବନରେ ସିରିଅସ୍ ଗୋଟାଏ କିଛି ଘଟିଛି ।

ଦୀପଙ୍କର ହସ ଦେଖି ସୁନନ୍ଦାର ମୁହଁ କିନ୍ତୁ ନାଲି ପଡ଼ିଯାଇଥିଲା । ମନେ ମନେ ସେ ବିରକ୍ତ ହୋଇ ପଡ଼ିଥିଲା । ରୁଦ୍ଧ ବେଦନାକୁ ଚାପି ରଖି ନ ପାରି ରୁକ୍ଷସ୍ୱରରେ କହିଲା : ଆପଣ ଭାବୁଛନ୍ତି ମୋ ଜୀବନର ଏଇ ଘଟଣାଟା ମୋଟେ ସିରିଅସ୍ ନୁହେଁ ? ଆପଣଙ୍କ ମତରେ ବାପା ମୋତେ ଯେଉଁ ଲୋକଟାକୁ ବିବାହ କରିବା ପାଇଁ କହିବେ, ମୁଁ ସେଇଆକୁ ବିବାହ କରିବି ? ମୁଁ ବଡ଼ ହୋଇଛି, ମୋର ନିଜର ଯେ ଗୋଟାଏ ଇଚ୍ଛା ଅଛି, ଏ ସବୁର ମୂଲ୍ୟ ଆପଣଙ୍କ ପାଖରେ ବି କିଛି ନାହିଁ ?

ଦୀପଙ୍କର ଏତେଟା ଆଶା କରି ନଥିଲା । ସୁନନ୍ଦା ଯେ ତା'କଥା ଶୁଣି ଏପରି ରୁଦ୍ଧ ବେଦନାରେ ଫାଟିପଡ଼ିବ, ଦୀପଙ୍କର ମୋଟେ ଚିନ୍ତା କରି ପାରି ନଥିଲା । ସେ କଥାଟା ଅତି ହାଲ୍‌କା ଭାବରେ କହି ପକାଇଥିଲା; ହେଲେ ଦେଖିଲା, ସୁନନ୍ଦାର ଆଖି ଲୁହରେ ଛଳ ଛଳ ହେଉଛି ।

କଣ୍ଠରେ ସମବେଦନା ଫୁଟାଇ ଦୀପଙ୍କର କହିଲା : ଆପଣ ମୋତେ ଭୁଲ୍ ବୁଝନ୍ତୁ ନାହିଁ ସୁନନ୍ଦା ଦେବୀ ! ମୁଁ କେବଳ ଆପଣଙ୍କୁ ଟିକିଏ ପରିହାସ କରିବା ପାଇଁ ସେପରି କହିଥିଲି । ମୁଁ ଜାଣି ନଥିଲି ଆପଣ ମୋ କଥାରେ କଷ୍ଟ ପାଇବେ । ଆପଣଙ୍କ ମନରେ କଷ୍ଟ ଦେଇଥିବାରୁ ମୁଁ ଖୁବ୍ ଦୁଃଖିତ ସୁନନ୍ଦା ଦେବୀ, ମୋତେ କ୍ଷମା କରନ୍ତୁ ।

ସୁନନ୍ଦା ସେହିପରି ଛଳ ଛଳ ଆଖିରେ ଦୀପଙ୍କର ମୁହଁକୁ କିଛି ସମୟ ଅନାଇ ରହି ପୁଣି ଧୀରେ ଧୀରେ କହିଲା, ବାପାଙ୍କର ସେଇ ଏକା ଜିଦ୍ । ସେ ତାଙ୍କର ଜଣେ ବନ୍ଧୁଙ୍କୁ କଥା ଦେଇଥିଲେ, ତାଙ୍କ ପୁଅ ସହିତ ମୋର ବିବାହ ଦେବେ; ଅଥଚ ଦିନେ ମୁଁ ଯେ ବଡ଼ ହେବି, ମୋର ଏକ ସ୍ୱତନ୍ତ୍ର ମତ ହେବ, ଏକଥା ତ ସେ ପନ୍ଦର କୋଡ଼ିଏ ବର୍ଷ ତଳେ ଚିନ୍ତା କରିପାରି ନଥିଲେ । ଆଜି ତାଙ୍କର ସେଇ ପ୍ରତିଜ୍ଞା ଜୋର୍ କରି ମୋ ଉପରେ ପାଳନ କରିବାକୁ ଚାହାନ୍ତି । ଆପଣ କହିଲେ, ଆପଣ ମୋ ସ୍ଥାନରେ ଥିଲେ କ'ଣ କରି ଥାଆନ୍ତେ ?

ଦୀପଙ୍କର ମହା ଚିନ୍ତାରେ ପଡ଼ିଯାଇଥିଲା । କଣ୍ଠରେ ସମବେଦନା ଫୁଟାଇ କହିଲା : ପ୍ରକୃତରେ ଆପଣଙ୍କ ବାପା ବଡ଼ ଅନ୍ୟାୟ କରୁଛନ୍ତି । ତଥାପି ତ ସେ ଆପଣଙ୍କର ଗୁରୁଜନ ।

ସ୍ନେହ ଦେଇ, ବାତ୍ସଲ୍ୟ ଦେଇ ଆପଣଙ୍କୁ ସେ ବଡ଼ କରିଛନ୍ତି, ଆପଣ ସେଇ ଅଧିକାରରେ ତାଙ୍କ ମତ ତ ବଦଳାଇ ପାରିଥାଆନ୍ତେ ।

ହଠାତ୍ ସୁନନ୍ଦା ଯେପରି କ୍ଷିପ୍ତ ହୋଇଉଠିଲା । କହିଲା, ଆପଣ ତ ବାପାଙ୍କୁ ଦେଖି ନାହାନ୍ତି, ସେଇଥିପାଇଁ ଏହା କହୁଛନ୍ତି । ମୋ ବାପା ସେ ସ୍ନେହ ବାତ୍ସଲ୍ୟପୂର୍ଣ୍ଣ ହୃଦୟର ନୁହନ୍ତି । ତାଙ୍କର ମନଟା ହେଉଛି ସେ ବ୍ରିଟିଶ୍ ବାହାଦୁରଙ୍କର ଖେତାବ ଧାରୀ, ତେଣୁ ତାଙ୍କର ଆଦେଶ ହିଁ ଆଦେଶ । ଯେପରି ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇପାରିବ ନାହିଁ, ସେହିପରି ତାଙ୍କର ଆଦେଶ ବଦଳିବ ନାହିଁ ।

ଦୀପଙ୍କର ନୀରବରେ ସୁନନ୍ଦା ମୁହଁକୁ ଚାହିଁଥିଲା ।

କିଛି ସମୟ ପରେ ସୁନନ୍ଦା ପୁଣି କହିଲା : ଖାଲି ମୁଁ ନୁହେଁ, ଆମେ ସମସ୍ତେ ମିଶି ବାପାଙ୍କୁ ବୁଝାଇବାକୁ ଯଥେଷ୍ଟ ଚେଷ୍ଟା କରିଥିଲୁ । ଦିନ ଦିନ, ମାସ ମାସ, ଏପରିକି ବର୍ଷେଖଣ୍ଡ ହେବ ଆମେ ସମସ୍ତେ ବାପାଙ୍କର ମତ ପରିବର୍ତ୍ତନ ପାଇଁ ଚେଷ୍ଟା କରିଛୁ, କିନ୍ତୁ ତାଙ୍କର ସେହି ଏକାଜିଦ୍ । ମୋତେ ତାଙ୍କର ବନ୍ଧୁପୁତ୍ରଙ୍କ ପାଣିଗ୍ରହଣ କରିବାକୁ ହିଁ ହେବ । ବାପା କୁଆଡ଼େ ତାଙ୍କ ବନ୍ଧୁଙ୍କୁ ମୃତ୍ୟୁ ଶଯ୍ୟାରେ କଥା ଦେଇଛନ୍ତି । ଆଚ୍ଛା କହିଲେ, ଯେଉଁ ବାପା ନିଜର ସନ୍ତାନର ସୁଖ ସ୍ୱାଚ୍ଛନ୍ଦ ଆଡ଼େ ନ ଚାହିଁବ, ନିଜ ସନ୍ତାନର ମଙ୍ଗଳ କାମନା ନ କରିବ, ସେ ବାପାଙ୍କୁ ଆଉ କ'ଣ କରାଯିବ ?

ଦୀପଙ୍କର ସମବେଦନା ସ୍ୱରରେ କହିଲା : ହଁ ଅବଶ୍ୟ ଆପଣଙ୍କ କ୍ଷେତ୍ରରେ ଦ୍ୱିତୀୟ ପଥ ଆଉ କିଛି ନଥିଲା । ତେବେ ବିବାହର ଦିନ କ'ଣ ଠିକ୍ ହୋଇଯାଇଥିଲା ?

: ନା, ବିବାହର ଦିନ ଠିକ୍ ନ ହେଲେ ବି, ବାପାଙ୍କର ସେହି ବନ୍ଧୁପୁତ୍ର ଆସିଥିଲେ ବାପାଙ୍କ ନିମନ୍ତ୍ରଣ ପାଇ । ତା'ମାନେ ସବୁ ଠିକ୍‌ଠାକ୍ କରିବା ପାଇଁ ନା ଆଉ କ'ଣ ।

: ଆପଣ ତାଙ୍କୁ ଦେଖିବା ପରେ, ତାଙ୍କ ସହିତ କଥାବାର୍ତ୍ତା କରିବା ପରେ କ'ଣ ଏଇ ସିଦ୍ଧାନ୍ତ ନେଲେ ?

: ମୁଁ ତାଙ୍କୁ ଦେଖି ନାହିଁ କିମ୍ବା ତାଙ୍କ ସହିତ କଥାବାର୍ତ୍ତା କରି ନାହିଁ; କିନ୍ତୁ ତାଙ୍କ ପ୍ରତି ମୋ ମନରେ ପ୍ରଚଣ୍ଡ ଘୃଣା ଅନେକ ଦିନରୁ ରହିଛି ।

ଦୀପଙ୍କର ସୁନନ୍ଦାକୁ ଆଉ ସେହି ଘୃଣାର କାରଣ ପଚାରିବାକୁ ସାହସ କରି ପାରିଲା ନାହିଁ ।

କହିଲା : ଆପଣ ତା'ହେଲେ ବର୍ତ୍ତମାନ କ'ଣ କରିବେ ?

: ମୁଁ, କରିବି ଆଉ କ'ଣ । କିଛି ଠିକ୍ କରିନାହିଁ । ତେବେ ସିଦ୍ଧାନ୍ତ ନେଇଛି, ବାପା ତାଙ୍କର ମତ ନ ବଦଳେଇଲେ ମୁଁ ଆଉ ଘରକୁ ଫେରିଯିବି ନାହିଁ ।

: ବେଶ୍ ଭଲକଥା । କିନ୍ତୁ ସେ ଯଦି ତାଙ୍କ ମତରେ ଅଟଳ ରୁହନ୍ତି ?

: ମୁଁ ବି ମୋ ମତରେ ଅଟଳ ରହିବି ।

: କିନ୍ତୁ ବାପାଙ୍କ ପଥ ଆଉ ଆପଣଙ୍କ ପଥ ତ ଏକ ନୁହେଁ !

: ତା' ବୋଲି ମୁଁ ମୋର ଆତ୍ମବଳି ଦେବି ?

: ନା ସୁନନ୍ଦା ଦେବୀ, ମୁଁ ସେକଥା କହୁ ନାହିଁ । ଆପଣ ଆତ୍ମବଳି ନ ଦିଅନ୍ତୁ, ଆପଣଙ୍କ ବାପା ତାଙ୍କ ମତରେ ଅଟଳ ରୁହନ୍ତୁ, ଏହାର ଏକ ମୀମାଂସା କରିବାକୁ ହେବ ।

ତେଣୁ ଆପଣ ଟିକିଏ ଚେଷ୍ଟା ନ କଲେ ଘଟଣାଟା ଆହୁରି ଅନେକ ଦୂରକୁ ହୁଏତ ଗଡ଼ିଯାଇପାରେ ।

: କିନ୍ତୁ ମୋର ଯେ ଆଉ କିଛି ଉପାୟ ନାହିଁ ଦୀପଙ୍କରବାବୁ । ମୋ ପାଇଁ ମୋର ଭାଇ ଭଉଣୀମାନେ ଯଥେଷ୍ଟ ଚେଷ୍ଟା କରିଛନ୍ତି, ସେମାନେ ବର୍ତ୍ତମାନ ମଧ ଚେଷ୍ଟା କରୁଛନ୍ତି । ଦେଖାଯାଉ, ମୁଁ ଚାଲିଆସିବା ଫଳରେ ବାପାଙ୍କର ମତିଗତି ଯଦି ବଦଳେ ।

: ଆପଣ ଯଦି କିଛି ମନେ ନ କରିବେ, ତା' ହେଲେ ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବି ।

: ପଚାରନ୍ତୁ । ଆଜି ଆପଣଙ୍କୁ ମୁଁ ବନ୍ଧୁ ଭାବରେ ଗ୍ରହଣ କରି ନେଇଛି ଯେତେବେଳେ, ମନେ କରିବାର କିଛି ନାହିଁ ।

: ମୁଁ କ'ଣ କହୁଥିଲି କି, ଆପଣ ତା'ହେଲେ ଆପଣଙ୍କର ସାଥୀ ବାଛି ନେଇସାରିଛନ୍ତି ?

ସୁନନ୍ଦା ଏଥର ହୋ ହୋ ହୋଇ ହସିଉଠି କହିଲା : ନା, ଦୀପଙ୍କରବାବୁ । ଏପରିକି କୌଣସି ପୁରୁଷ ବନ୍ଧୁ ବି ମୋର ନାହାନ୍ତି କହିଲେ ଚଳେ । ସେ ଦିଗରୁ ବାପାଙ୍କର ଭୟର କିଛି କାରଣ ନାହିଁ ।

: ତା'ହେଲେ ବାପା ଯାହାକୁ ଆପଣଙ୍କ ପାଇଁ ବାଛିଛନ୍ତି ତା' ସହିତ ଅସହଯୋଗ କରିବାର କାରଣ କ'ଣ ?

: ସେ ଲୋକଟି ଆଦୌ ଭଲ ନୁହେଁ । ତା' ସମ୍ବନ୍ଧରେ ବହୁ କଥା ମୋ କାନକୁ ଆସିଛି । ସେ ଚରିତ୍ରହୀନ, ମଦ୍ୟପ, ତା'ଛଡ଼ା...

ହଠାତ୍ ସୁନନ୍ଦାର ମୁହଁ ବନ୍ଦ ହୋଇଗଲା ।

ସୁନନ୍ଦା ଓ ଦୀପଙ୍କର ଦେଖିଲେ, ତାଙ୍କରି ଆଡ଼େ ରବିଦା, ପ୍ରବୀର ଏବଂ ଆଉ ଦୁଇ ଚାରିଜଣ ଆଗେଇ ଆସୁଛନ୍ତି ।

ପ୍ରବୀର ମୁହଁରେ ସେଇ ଚପଳ ହସ ।

: ଆପନି ଆବାର ଧରା ପଡ଼େଛେନ୍ ଦୀପଙ୍କର ଦା' । ଆମରା କିନ୍ତୁ ବେରିଯେ ଛିଲାମ ଆର ଏକ ଜନକେ ଧରତେ । କିନ୍ତୁ ଏଇ ସଂଧ୍ୟା ସମୟେ, ଏଇରକମ ଏକଟା ନିର୍ଜନ ଜାୟଗାୟେ ଆପନାକେ ଆର୍ ସୁନନ୍ଦା ଦେବୀକେ ଆଶା କରିନି ।

ଦୀପଙ୍କର ଉଠି ଠିଆହୋଇପଡ଼ିଲା । କହିଲା, ସୁନନ୍ଦା ଦେବୀଙ୍କ ସହିତ ଗୋଟାଏ ଜରୁରୀ ବିଷୟରେ ଆଲୋଚନା ହେଉଥିଲା । ତା'ପରେ ଆପଣମାନେ କୁଆଡ଼େ ବାହାରିଲେ ?

ପ୍ରବୀର କହିଲା : ରବିଦା ଆର୍ ଆମି କେନ ଏଖାନେ ଏସେଛି ଆପନିତ ଜାନେନ । ଏକଟା କାଜେ ବେରିଯେଛି। ଆପନାରା କିନ୍ତୁ ରାତ୍ ପର୍ଯ୍ୟନ୍ତ ଏଖାନେ ଥାକ୍‌ବେନ୍‌ନା । ଜାୟଗାଟା ବିଶେଷ ଭାଲୋ ନୟ । କି ବଲ ରବିଦା ?

ରବିଦା ହସି ହସି କହିଲେ : ତୋ' ଠାରୁ ସେମାନେ ବେଶି ହୁସିଆର ପ୍ରବୀର । ନିଜ ନିଜର ସଂରକ୍ଷଣ ପାଇଁ ସମସ୍ତଙ୍କର ବୁଦ୍ଧି ବିବେକ ଅଛି । ତା'ପରେ ଟିକିଏ ନୀରବ ରହି ସେ କହିଲେ, ଆପଣ ଆଉ କେତେଦିନ ରହୁଛନ୍ତି ଏଠାରେ ?

: ଖୁବ୍ ସମ୍ଭବ କାଲି ଚାଲିଯିବି ।

: ସୁନନ୍ଦା ଦେବୀ ମଧ ? ସେ ସୁନନ୍ଦା ଆଡ଼କୁ ଚାହିଁଲେ ।

ସୁନନ୍ଦା ଏଥର ତଳୁଉଠିପଡ଼ି କହିଲା : ହଁ, ମୁଁ ବି କାଲି ଚାଲିଯାଇପାରେ । ଆଉ ଆପଣ ?

ରବିଦା ହସି ହସି କହିଲେ : ମୁଁ ତ ଆଉ ଆପଣଙ୍କ ପରି ବୁଲି ବୁଲି ମଉଜ କରିବାକୁ ଆସି ନାହିଁ, ଗୋଟାଏ ବିଶେଷ କାମରେ ଆସିଛି । ତେଣୁ କାମ ଶେଷ ନ ହେବାଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିବ ।

ସୁନନ୍ଦା ଦୀପଙ୍କରକୁ ଉଦ୍ଦେଶ୍ୟ କରି କହିଲା : ମୁଁ ତା'ହେଲେ ଆଜି ଆସୁଛି ଦୀପଙ୍କରବାବୁ । ଆପଣ ତେବେ....

ରବିଦା ବ୍ୟସ୍ତ ହୋଇ କହିଲେ : ନା ନା, ଆପଣମାନେ କଥା ହୁଅନ୍ତୁ । ଆମେ ଚାଲି ଯାଉଛୁ ।

ସେମାନେ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଅନ୍ୟ ବାଟରେ ଚାଲିଗଲେ ।

ସୁନନ୍ଦା ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲା : ଆଜି ପ୍ରାୟ ସଂଧ୍ୟା ହୋଇଆସିଲାଣି । ଆପଣ ଯାଆନ୍ତୁ । ମୁଁ ବି ଫେରିଯାଉଛି । ମାଳା ମୋ ପାଇଁ ଚିନ୍ତା କରୁଥିବ । ଆପଣ ତା'ହେଲେ କାଲି ପ୍ରକୃତରେ ଚାଲିଯିବେ ?

ଦୀପଙ୍କର କହିଲା : କିନ୍ତୁ ଯିବା ପୂର୍ବରୁ ମୋ ପଳାତକ ଜୀବନର ଏକ କରୁଣ କାହାଣୀ ନିଶ୍ଚୟ ଆପଣଙ୍କୁ ଶୁଣାଇ ଯିବି ।

: ଆଉ ଯଦି ଆପଣଙ୍କ ସହିତ ଦେଖା ନ ହୁଏ ?

: କାଲି ନ ହେଲେ ବି ସମଗ୍ର ଜୀବନ କାଳ ମଧ୍ୟରେ ଦିନେ ନା ଦିନେ ହେବ ସୁନନ୍ଦା ଦେବୀ । କାରଣ ପୃଥିବୀଟା ଅନେକ ବଡ଼; ଆଉ ଆମର ଜୀବନକାଳ ବି ଯଥେଷ୍ଟ ଦୀର୍ଘ ।

ଦୀପଙ୍କର ସୁନନ୍ଦା ମୁହଁକୁ ଚାହିଁହସିଲା ।

ସୁନନ୍ଦା କହିଲା : ଆପଣ ଚାଲିଗଲେ କିନ୍ତୁ ମୋତେ ଏଠାରେ ଭଲ ଲାଗିବ ନାହିଁ ।

: ଯଦି ଆପଣ କୁହନ୍ତି, ମୁଁ ଆଉ ଦିନେ ଦି'ଦିନ ରହିଯାଇ ପାରିବି ।

: ସୁନନ୍ଦା କହିଲା : ସମସ୍ୟାଟା ତ ଦିନେ ଦି'ଦିନର ନୁହେଁ ।

କଥାଟା କହିସାରି ସୁନନ୍ଦା ଯେପରି ଆତ୍ମସଚେତନ ହୋଇଉଠିଲା ।

ଦୀପଙ୍କର କିନ୍ତୁ କଥାଟା ଉପରେ ଗୁରୁତ୍ୱ ନ ଦେଇ କହିଲା : ସମସ୍ୟା ଯେତେ ବଡ଼ ହେଲେ ବି, ତା'ର ଗୋଟାଏ ସମାଧାନ ନିଶ୍ଚୟ ହେବ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ସୁନନ୍ଦା ଦେବୀ, ଦେଖିବେ ଆଜି ଯାହାକୁ ଆପଣଙ୍କ ଜୀବନର ଜଟିଳ ସମସ୍ୟା ବୋଲି ମନେ କରୁଛନ୍ତି, କାଲି ସକାଳକୁ ହୁଏତ ତାହା ଅତି ସହଜ ହୋଇଯାଇଥିବ । ଆଚ୍ଛା, ପୁଣି ତା'ହେଲେ ଆମର ଦେଖା ହେବ କେଉଁଠି ?

: ଆପଣ କାଲି ଚାଲିଯିବେ ଯେ !

: ଭାବୁଚି ଆଉ ଦିନେ ଦି'ଦିନ ରହିବି ।

ଦୀପଙ୍କର ଧୀର ସ୍ୱରରେ କହିଲା ।

ନିଦଭାଙ୍ଗିଯାଇଥିଲା ।

କିନ୍ତୁ ଆମେଜ କଟିନଥିଲା । ଦୀପଙ୍କର ରାତିରେ ଶୋଇ ଶୋଇ ଅନେକ ସ୍ୱପ୍ନ ଦେଖିଥିଲା । ଚୂନା ଚୂନା ସ୍ୱପ୍ନ ସବୁ ମାନସପଟ୍ଟରେ ଭାସିଉଠୁଥିଲା ରହି ରହି । ନିଦ ଅନେକ ବେଳୁ ଭାଙ୍ଗିଥିଲେ ବି ଆଖି ଖୋଲିପାରୁ ନଥିଲା ଦୀପଙ୍କର ।

ତା'ର ବେଶି ମନେ ପଡୁଥିଲା ସୁନନ୍ଦା କଥା ।

ଏଇ ପଳାତକ ଜୀବନ କାଳ ଭିତରେ ସେ କିଛି ହରାଇଥିଲା ପରି ତା'ର ମନେ ହେଉ ନଥିଲା; ବରଂ ତାର ଲାଭ ହୋଇଛି ସୁନନ୍ଦାକୁ ସେ ଖୁବ୍ ନିକଟରେ ପାଇଛି ।

ଆଃ...ସୁନନ୍ଦା ତା' ଜୀବନ ଆକାଶରେ ଏକ ନୂତନ ଉଜ୍ଜ୍ୱଳ ନକ୍ଷତ୍ର । କିଏ ଜାଣେ...

ହଠାତ୍ ରୁମ୍ ଭିତରେ କାହାର ପାଦ ଶବ୍ଦ ଶୁଣି, ଦୀପଙ୍କର ବୁଲି ଅନାଇଲା ।

ଆଖିକୁ ସେ ବିଶ୍ୱାସ କରି ପାରୁ ନଥିଲା ।

: ଆରେ ନଅଟା ବାଜିଲାଣି ଯେ, ଆପଣ ଏତେବେଳ ଯାଏ ଶୋଇଛନ୍ତି ?

: ଆପଣ, ଆପଣ ହଠାତ୍...

: କ'ଣ ବିଶ୍ୱାସ କରିପାରୁ ନାହାନ୍ତି ?

: ବସନ୍ତୁ, ବସନ୍ତୁ ।

ଦୀପଙ୍କର ଅନ୍ୟ ଦୁଇଟି ବେଡ୍ ଉପରେ ନଜର ବୁଲାଇ ଦେଖିଲା, ମାନସ ନାହିଁ କିମ୍ବା ଫରେଷ୍ଟ ଅଫିସର ବି ନାହାନ୍ତି । ଭଦ୍ରଲୋକ କାଲି ରାତିରେ ବୋଧହୁଏ ଫେରିନାହାନ୍ତି ।

ଦୀପଙ୍କର ଡ୍ରେସିଂ ଟେବୁଲ୍ ଆଗରେ ଠିଆହୋଇ, ପାନିଆରେ ମୁଣ୍ଡଟା କୁଣ୍ଡାଇ ପକାଇ କହିଲା : ଦୁଇ ମିନିଟ୍ ଅପେକ୍ଷା କରନ୍ତୁ, ମୁଁ ସଙ୍ଗେ ସଙ୍ଗେ ରେଡ଼ି ହୋଇପଡୁଛି ।

ସୁନନ୍ଦା ହସି ହସି କହିଲା : ଆପଣ ଜମା ବ୍ୟସ୍ତହେବାର ଦରକାର ନାହିଁ । ମୁଁ ଆସିଛି ଆପଣଙ୍କଠାରୁ ବିଦାୟ ନେବା ପାଇଁ ।

: ମାନେ ? ଦୀପଙ୍କର ଯେପରି ହଠାତ୍ ସ୍ତବ୍ଧ ହୋଇଗଲା ।

: ମୁଁ କିନ୍ତୁ ଏତେ ଶୀଘ୍ର ଏପରି ଗୋଟାଏ ପରିଣତି ଆଶା କରି ନଥିଲି ଦୀପଙ୍କରବାବୁ । ସମ୍ବାଦଟା ଅବଶ୍ୟ ଦୁଃଖର । କିନ୍ତୁ ମୋ ପାଇଁ ଅନୁକୂଳ । ହେଲେ ଏପରି ଏକ ଦୁର୍ଘଟଣାରେ ମୁଁ ଖୁବ୍ କଷ୍ଟ ପାଇଛି ।

ସୁନନ୍ଦା କ'ଣ କହୁଥିଲା ଦୀପଙ୍କର କିଛି ବୁଝିପାରୁ ନଥିଲା । ସେ ମୂକଙ୍କ ଭଳି ସୁନନ୍ଦା ମୁହଁକୁ ଚାହିଁ ଠିଆହୋଇଥିଲା ।

ସୁନନ୍ଦା ପୁଣି କହିଲା : ଆଜି ସକାଳୁ ମୋର ଭାଇ ଜିପ୍ ଧରି ଆସି ପହଞ୍ଚିଛି, ମୋତେ ନେଇଯିବା ପାଇଁ ।

: ଆପଣଙ୍କ ବାପା କ'ଣ ମତ ବଦଳାଇଛନ୍ତି ?

କହିଲି ପରା, ତାଙ୍କ ମତାମତ ସବୁ ଶେଷହୋଇଯାଇଛି । ତାଙ୍କର ବଂଧୁ ପୁତ୍ରଟିର ଆକ୍‌ସିଡେଣ୍ଟରେ ମୃତ୍ୟୁ ହୋଇଛି ।

: ମୃତ୍ୟୁ ! ଦୀପଙ୍କର ଯେପରି ଶିହରୀ ଉଠିଲା ।

: ହଁ, ଭଦ୍ରଲୋକ ବାପାଙ୍କ ଚିଠି ପାଇ ଆମ ଘରକୁ ଆସୁଥିଲେ ରାସ୍ତାରେ କ'ଣ କିପରି ମୃତ୍ୟୁ ହୋଇଛି ପୋଲିସ ବି ଏ ପର୍ଯ୍ୟନ୍ତ ଟ୍ରେସ୍ କରିପାରି ନାହିଁ । ତେବେ ତାଙ୍କ ପକେଟରୁ କୁଆଡ଼େ ବାପାଙ୍କର ଖଣ୍ଡିଏ ଚିଠି ବାହାରିଥିଲା । ସେଇ ଚିଠି ଧରି ପୋଲିସ୍ ଆସିଥିଲା ଆମ ଘରକୁ । ଅବଶ୍ୟ ଘଟଣାଟା କ'ଣ ଘଟିଛି ମୁଁ ଠିକ୍ ଜାଣି ନାହିଁ । ଆପଣ ଆସନ୍ତୁନା ମୋ ସଙ୍ଗରେ । ଘଟଣାଟା ଦୁଃଖର ହେଲେ ମଧ ଖୁବ୍ ଇଣ୍ଟରେଷ୍ଟିଂ । ମୋ ଭାଇଠାରୁ ସବୁ ଶୁଣିବେ ।

ଦୀପଙ୍କର ବାଥ୍‌ରୁମ୍‌କୁ ଛୁଟିଯାଇ ମୁହଁ, ହାତ ଧୋଇ ଦୁଇ ମିନିଟ୍ ମଧରେ ଫେରି ଆସିଲା ।

ସୁନନ୍ଦା କହିଲା : ବଡ଼ ଅଦ୍ଭୁତ ଘଟଣା ଦୀପଙ୍କରବାବୁ । ମୋତେ କେନ୍ଦ୍ରକରି ଏପରି ଏକ ଦୁଃଖର ଘଟଣା ଘଟିବ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରି ନଥିଲି ।

ଦୀପଙ୍କର କିନ୍ତୁ କିପରି ମୂକପାଲଟି ଯାଇଥିଲା ।

ସୁନନ୍ଦା କଥାର କିଛି ଉତ୍ତର ତ ଦେଉ ନଥିଲା, କିନ୍ତୁ ସୁନନ୍ଦା କ'ଣ କହୁଥିଲା, ତା ବି ସେ ଠିକ୍ ବୁଝିପାରୁ ନଥିଲା ।

ବାଧ ଶିଶୁଟି ପରି ସୁନନ୍ଦା ପଛେ ପଛେ ସେ ବାହାରିଗଲା ଡାକବଂଲୋରୁ । ରାସ୍ତା ଉପରେ ଗୋଟାଏ ଜିପ୍ ଠିଆ ହୋଇଥିଲା ।

ସୁନନ୍ଦା ଡ୍ରାଇଭର ସିଟ୍‌ରେ ବସି, ଦୀପଙ୍କରକୁ ଡାକିଲା ପାଖରେ ବସିବାକୁ । ଜିପ୍‌ରେ ଷ୍ଟାର୍ଟ ଦେଇ କହିଲା : ଆପଣ ମୂକପାଲଟି ଗଲେ ଯେ ଦୀପଙ୍କରବାବୁ । କ'ଣ ମୋର ବିଚ୍ଛେଦ କଥା ଚିନ୍ତାକରି ?

ଦୀପଙ୍କର ଟିକିଏ ହସିବାକୁ ଚେଷ୍ଟାକରି କହିଲା : ନା ମୁଁ ଭାବୁଛି ସେହି ହତଭାଗ୍ୟ ଲୋକଟିର କଥା; ଯିଏ ଅନେକ ଆଶା କରି, ଶେଷରେ ମୃତ୍ୟୁବରଣ କଲା ।

ସୁନନ୍ଦାର କଣ୍ଠଟା କିପରି କରୁଣ ଶୁଣାଗଲା । ସେ କହିଲା : ବାସ୍ତବିକ୍ ଦୀପଙ୍କରବାବୁ, ମୁଁ କିନ୍ତୁ ଏପରି କିଛି ଆଶା କରି ନଥିଲି ।

: ଆପଣଙ୍କ ଭାଇ ତାଙ୍କ ମୃତ୍ୟୁ ସମ୍ବନ୍ଧରେ କିଛି କହୁ ନଥିଲେ ?

: ମୁଁ ବିଶେଷ କିଛି ପଚାରିବାର ସୁଯୋଗ ପାଇଲି କେତେବେଳେ? ସେ'ତ ଆସି ସଙ୍ଗେ ସଙ୍ଗେ ମୋତେ ଫେରିଯିବା ପାଇଁ କହିଲା । ବାପା କୁଆଡ଼େ ଖୁବ୍ ଚିନ୍ତିତ ହୋଇ ପଡ଼ିଛନ୍ତି । ତାଙ୍କର ପ୍ରେସରଟା ମଧ ବଢ଼ିଯାଇଛି । ମୋର ଉପସ୍ଥିତି ଖୁବ୍ ପ୍ରୟୋଜନ । ତେଣୁ ଭାବିଲି ଯିବା ପୂର୍ବରୁ ଆପଣଙ୍କୁ ଥରେ ଦେଖା କରି ନ ଗଲେ, ଖୁବ୍ ଅନ୍ୟାୟ ହେବ । ସେଇଥି ପାଇଁ...

ସୁନନ୍ଦା ଗୋଟାଏ ମୋଡ଼ରେ ଜିପ୍ ବୁଲାଇ, ଗୋଟିଏ ଏକତାଲା କୋଠାଦୁଆରେ ଠିଆକଲା । ଦୁହେଁ ଓହ୍ଲେଇଗଲେ ଜିପ୍‌ରୁ ।

ସୁନନ୍ଦା ପଛେ ପଛେ ଦୀପଙ୍କର ଘର ଭିତରକୁ ପଶୁ ପଶୁ ଦେଖିଲା, ଜଣେ ଯୁବକ ତାଙ୍କ ଆଡ଼କୁ ପଛକରି ଠିଆ ହୋଇ ଚିରୁଣୀରେ ମୁଣ୍ଡ କୁଣ୍ଡାଉଛି ।

ଏମାନଙ୍କର ପାଦଶବ୍ଦ ଶୁଣି ଯୁବକଟି ବୁଲି ଅନେଇଲା ।

କିନ୍ତୁ, ଏ ଯେ....

ଦୀପଙ୍କର ସମଗ୍ର ଦେହଟା ଥରି ଉଠିଲା ।

ଘରୁ ଛୁଟି ପଳାଇବା ପାଇଁ ମନରେ ତା'ର ପ୍ରବଳ ଉତ୍ତେଜନା ଜାଗିଥିଲେ ବି ଗୋଡ଼ ଦୁଇଟା କିନ୍ତୁ ସତେ ଯେପରି ବରଫ ପାଲଟିଯାଇଥିଲା ।

ପ୍ରଥମେ ଯୁବକଟି ଚିତ୍କାର କରି ଉଠିଲା : ଆରେ ଆପଣ, ମାନେ ଆପଣ ଏଠାରେ ଯେ !

ସୁନନ୍ଦା କହିଲା : ତୋର ଦୀପଙ୍କରବାବୁଙ୍କ ସହିତ ଆଗରୁ ପରିଚୟ ଅଛି ନା କ'ଣ ?

ଦୀପଙ୍କର ସେହି ମୁହୂର୍ତ୍ତରେ ଉପସ୍ଥିତ ବୁଦ୍ଧି ହରାଇ ବସିଥିଲା । ସେ ବିଚଳିତ ହୋଇ କହିଲା: ଖୁଣ୍ କିନ୍ତୁ ମୁଁ କରି ନାହିଁ ଚନ୍ଦ୍ରକାନ୍ତବାବୁ । ଆପଣ ବିଶ୍ୱାସ କରନ୍ତୁ । ମୁଁ କିଛି ଜାଣି ନାହିଁ ।

ଚନ୍ଦ୍ରକାନ୍ତ ହିପ୍ ପକେଟ୍‌ରେ ପାନିଆଟା ରଖୁ ରଖୁ ହୋ ହୋ ହୋଇ ହସି ଉଠିଲା ।

ସୁନନ୍ଦା ଅବାକ୍ ହୋଇ ଦୀପଙ୍କର ମୁହଁକୁ ଚାହିଁ ପଚାରିଲା : ଖୁଣ୍ ? କାହାର ଖୁଣ୍ !!

ଚନ୍ଦ୍ରକାନ୍ତ କହିଲା : ସେ ଏକ ମଜାର ବ୍ୟାପାର ଦିଦି । ତୋ'ର ଏହାଙ୍କ ସହିତ କେଉଁଠି ପରିଚୟ ହେଲା ?

ବସ୍‌ରେ, ମାନେ ଯେଉଁ ବସ୍‌ରେ ମୁଁ ନେତାରହାଟ ପଳାଇ ଆସୁଥିଲି, ସେଇ ବସ୍‌ରେ ଦୀପଙ୍କରବାବୁ ଆସିଥିଲେ । କିନ୍ତୁ ଘଟଣା କ'ଣ ?

ଭାରି ମଜାର । ପଣ୍ଡିତ୍‌ଜୀ ଏଇ ଭଦ୍ରଲୋକଙ୍କ ଦିବାକର ଶର୍ମା ମନେକରି ଷ୍ଟେସନ୍‌ରୁ ଧରି ଆଣିଥିଲେ ।

: ଓଃ ! ଆପଣ ତା'ହେଲେ......

ସୁନନ୍ଦା ବି ହସି ହସି ଗଡ଼ିଗଲା । ଭାଇ ଭଉଣୀ ଦୁଇଜଣଯାକ ବେଦମ ହେବାଯାଏ ହସିଲେ ।

ଚନ୍ଦ୍ରକାନ୍ତ କହିଲା : ଆପଣ ବି କିଛି ପ୍ରତିବାଦ କଲେ ନାହିଁ ଦୀପଙ୍କରବାବୁ । ପଣ୍ଡିତ୍‌ଜୀ ଆପଣଙ୍କୁ ଆମ ଘରକୁ ଆଣି ଏତେ କାଣ୍ଡ ହୋଇଗଲା; ଅଥଚ ଆପଣ ନିଜର ପରିଚୟଟା ପର୍ଯ୍ୟନ୍ତ ଦେଲେ ନାହିଁ ।

ଧୀରେ ଧୀରେ ଦୀପଙ୍କର ଆଖି ଆଗରୁ ଯେପରି କୁହୁଡ଼ି ଘୁଞ୍ଚିଯାଇଥିଲା । ସେ କହିଲା : ଘଟଣାଟା ମୁଁ ବି କିଛି ଠିକ୍ ବୁଝିପାରି ନଥିଲି । ଏତେ ବେଳଯାଏ ମୁଁ ବି ବୁଝିପାରି ନାହିଁ ।

ଚନ୍ଦ୍ରକାନ୍ତ ସୁନନ୍ଦାକୁ ଲକ୍ଷ୍ୟ କରି କହିଲା : ତୁ ଯା ରେଡ଼ି ହେଇପଡ଼ ଦିଦି । ଦୀପଙ୍କର ବାବୁଙ୍କୁ ସଂକ୍ଷେପରେ ସବୁକଥା ମୁଁ ବୁଝେଇ ଦେଉଛି । ଭଦ୍ରଲୋକ ଆମ ପାଇଁ ଅନେକ କଷ୍ଟ ପାଇଲେଣି ।

ସୁନନ୍ଦା ଅଳ୍ପ ହସି ଭିତରକୁ ପଶିଗଲା ।

ଚନ୍ଦ୍ରକାନ୍ତ ଦୀପଙ୍କରକୁ ଗୋଟିଏ ଚେଆର ଦେଖାଇ ବସିବାକୁ କହି କହିଲା : ଘଟଣାଟା ହେଉଛି, ବାପା ଦିଦିର ବିବାହ ପାଇଁ ଗୋଟିଏ ପାତ୍ର ଠିକ୍ କରିଥିଲେ । ପାତ୍ରଟି ହେଉଛି, ବାପାଙ୍କର ଜଣେ ବନ୍ଧୁପୁତ୍ର । ଏ ପ୍ରସ୍ତାବରେ ଦିଦି ଅମତ ହେଲା । ଆମେ ସମସ୍ତେ ଅନୁସନ୍ଧାନ କରି ଜାଣିଲୁ ଯେ, ପାତ୍ରଟି ଅସତ୍ ଚରିତ୍ର ଏବଂ ଅସାମାଜିକ । ଯାହାହେଉ ଦିଦି ସେଠାରେ ବିବାହ କରିବା ପାଇଁ ସମ୍ମତ ହେଲା ନାହିଁ । ବାପାଙ୍କର କିନ୍ତୁ ଏକାଜିଦ୍ । ସେ ତାଙ୍କ ବନ୍ଧୁଙ୍କୁ ମୃତ୍ୟୁ ଶଯ୍ୟାରେ କଥା ଦେଇଛନ୍ତି ଯେତେବେଳେ, ନିଶ୍ଚୟ କଥା ରଖିବେ ।

ଆମେ ସମସ୍ତେ କିନ୍ତୁ ବାପାଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରି ବସିଲୁ ।

କିନ୍ତୁ ବାପା ତାଙ୍କ ଭୀଷ୍ମ ପ୍ରତିଜ୍ଞାରେ ଅଟଳ । ସେ ସେହି ଭଦ୍ରଲୋକଙ୍କୁ ଚିଠି ଲେଖିଲେ ଆମ ଘରକୁ ଆସିବା ପାଇଁ ।

ଭଦ୍ରଲୋକ ଜବାବ୍ ଦେଲେ ପୂଜାଛୁଟି ଅବସରରେ ସେ ଆସିବେ ।

ଆମେ ଭଦ୍ରଲୋକଙ୍କୁ ସବୁକଥା ଜଣାଇ ଖଣ୍ଡେ ଚିଠିଦେଲୁ । ନ ଆସିବା ପାଇଁ

ତଥାପି ଆମେ ଜାଣିଲୁ ଯେ ସେ ଆସୁଛନ୍ତି ଏବଂ କେବେ ଆସିବେ ଟେଲିଗ୍ରାମ କରି ଜଣାଇଛନ୍ତି ।

ଯେଉଁ ଟ୍ରେନ୍‌ରେ ରାଞ୍ଚି ଷ୍ଟେସନ୍‌ରେ ଆସି ତାଙ୍କର ପହଞ୍ଚିବା କଥା, ସେ ଟ୍ରେନ୍‌କୁ ବାପା ପଣ୍ଡିତଜୀଙ୍କୁ ପଠାଇଲେ ତାଙ୍କୁ ରିସିଭ୍ କରିବା ପାଇଁ ।

କିନ୍ତୁ ବିଭ୍ରାନ୍ତିଟି କିପରି ଉପୁଜିଲା ଜାଣନ୍ତି ?

ଆପଣଙ୍କ ଲେଦର ସୁଟ୍‌କେସଟି ପାଇଁ । ପଣ୍ଡିତଜୀ କହୁଥିଲେ, ସେ ଦେଖିଲେ ଆପଣ କୁଆଡ଼େ ସୁଟ୍‌କେସଟି ଧରି ପ୍ଲାଟ୍‌ଫର୍ମରେ କାହାକୁ ଯେପରି ଅପେକ୍ଷା କରିଥିଲେ ଏବଂ ଆପଣଙ୍କ ସୁଟ୍‌କେସରେ ଲେଖାହୋଇଥିଲା ଡ଼ି.କେ. ଶର୍ମା ।

ତେଣୁ ପଣ୍ଡିତଜୀଙ୍କର ସନ୍ଦେହ କରିବାର କିଛି କାରଣ ନଥିଲା । ସେ ଯାଇଥିଲେ ଦିବାକର ଶର୍ମାଙ୍କୁ ରିସିଭ୍ କରିବା ପାଇଁ । ଡି.କେ. ଶର୍ମା ଯେ ଦିବାକର ଶର୍ମା ନ ହୋଇ ଦୀପଙ୍କର ଶର୍ମା ହୋଇପାରନ୍ତି ସେତେବେଳେ ପଣ୍ଡିତ୍‌ଜୀଙ୍କର ଭାବିବାର ଅବକାଶ ନଥିଲା । ତା'ଛଡ଼ା ସେ ଟିକିଏ ଡେରିରେ ଆସି ପହଞ୍ଚିଥିଲେ ଷ୍ଟେସନରେ । ତେଣୁ ସେ ଆପଣଙ୍କୁ ବାପାଙ୍କର ମାନ୍ୟଗଣ୍ୟ ଅତିଥିଭାବି ଆପଣଙ୍କ ହାତରୁ ସୁଟ୍‌କେସଟି କାଢ଼ିନେଇ ଛୁଟିଯାଇଥିଲେ ଗାଡ଼ି ପାଖକୁ ।

ତା'ପରର ଘଟଣା ଆପଣ ସବୁ ଜାଣିଛନ୍ତି ।

ଆମେ ଦିବାକର ଶର୍ମାଙ୍କୁ ଆଗରୁ ତ କେବେ ଦେଖି ନ ଥିଲୁ, ତେଣୁ ଭାବି ନେଇଥିଲୁ ଯେ, ଆପଣ ବାପାଙ୍କର ସେହି ବନ୍ଧୁ ପୁତ୍ର । ବହୁ ଆଲୋଚିତ ଦିବାକର ଶର୍ମା । ତେଣୁ

ଆମ ଭିତରେ ଉତ୍ତେଜନା ସୃଷ୍ଟି ହୋଇଯାଇଥିଲା । ଆମେ ଆପଣଙ୍କୁ ତଡ଼ିବା ପାଇଁ ନାନା ପ୍ରକାର ଷଡ଼ଯନ୍ତ୍ରରେ ଲାଗିଯାଇଥିଲୁ । ମୁଁ, ଚନ୍ଦନା, ମୋର ଜଣେ ବନ୍ଧୁ । ସମସ୍ତେ ମିଶି ବିଭିନ୍ନ ପ୍ରକାର ପ୍ଲାନ୍ କରି ଆପଣଙ୍କୁ ଡରେଇ ହରେଇ ବିଦା କରିଦେବା ପାଇଁ ଚେଷ୍ଟା କରୁଥିଲୁ ।

ଶେଷରେ ଦେଖିଲୁ, ବାପା ତାଙ୍କ ପ୍ରତିଜ୍ଞାରେ ଅଟଳ । ଆଉ ଆମର ମନେହେଲା, ଆପଣ ବି ଆପଣଙ୍କ ପ୍ରତିଜ୍ଞାରେ ଅଟଳ । ତେଣୁ ପରିସ୍ଥିତି ଅସମ୍ଭାଳ ହୋଇଉଠିଲା ।

ଶେଷରେ ଆମେ ସିଦ୍ଧାନ୍ତ କଲୁ ଦିଦିକୁ ଏଠାରୁ ଅନ୍ୟତ୍ର ବିଦା କରିଦେବୁ । ଆଉ ଦିବାକର ଶର୍ମାଙ୍କୁ ତଡ଼ିବାର ଶେଷ ଚେଷ୍ଟା କରିବୁ । ସେ ଯେପରି ସକାଳେ ବାପାଙ୍କ ସହିତ କୌଣସି ଆଲୋଚନା କରି ନପାରେ ।

ତାହା ହିଁ ହେଲା । ରାତ୍ରିର ଅନ୍ଧକାରରେ, ଆପଣଙ୍କ ସୁଟ୍‌କେସ୍‌ରେ ଲୁଗାପଟାରେ କିଛି ରକ୍ତ ବୋଳି, ଗୋଟାଏ ରକ୍ତାକ୍ତ ଛୁରି ସେଥିରେ ରଖି, ସକାଳୁ ଖୁଣ୍ ଖୁଣ୍ ବୋଲି ଚିତ୍କାର କରି ଉଠିଲୁ ।

ହଠାତ୍ ଆପଣଙ୍କ ନିଦ ଭାଙ୍ଗିଗଲା ।

କାହାର ଖୁଣ୍ ଇତ୍ୟାଦି ଚିନ୍ତା କରିବା ଆଗରୁ ଆପଣ ଦେଖିଲେ ଆପଣଙ୍କ ସୁଟ୍‌କେସ୍‌ରେ ଗୋଟାଏ ରକ୍ତାକ୍ତ ଛୁରି ଏବଂ ଆପଣଙ୍କ ଲୁଗାପଟା ରକ୍ତରେ ଜୁତୁବୁତୁ ।

ଆପଣ ନିଶ୍ଚୟ ଡରିଯାଇଥିଲେ ।

ଆଉ ସେତିକିବେଳେ ବାହାରକୁ ଛୁଟିଯାଇ ଦେଖିଲେ, ଗୋଟିଏ ପୋଲିସ୍ ଭ୍ୟାନ୍ ଆମ ଲନ୍ ଭିତରକୁ ପଶୁଛି ।

ତା'ପରେ ଆଉ କ'ଣ ଆପଣଙ୍କର ସେଠାରେ ରହିବା ସମ୍ଭବପର ! ଆପଣ ଲୁଚି ଲୁଚି ବାହାରି ପଳାଇଲେ ।

କିନ୍ତୁ ସେଇ ପୋଲିସ୍ ଭ୍ୟାନ୍‌ଟି ଥିଲା ସଂପୂର୍ଣ୍ଣ ଅଭାବିତ । ଜଣେ ପୋଲିସ୍ ଅଫିସର ଆସିଥିଲେ ବାପାଙ୍କ ସହିତ ଦେଖାକରିବା ପାଇଁ ।

ଦିବାକର ଶର୍ମାଙ୍କର ମୃତ୍ୟୁହୋଇଛି କେଉଁଠି ଆକ୍‌ସିଡେଣ୍ଟରେ । ତା'ପକେଟ୍‌ରୁ ବାପାଙ୍କର ଦେଇଥିବା ଗୋଟିଏ ଚିଠି ବାହାରିଛି । ତେଣୁ ପୋଲିସ୍ ଅଫିସର ଆସିଥିଲେ ଇନ୍‌କ୍ୱାରୀରେ ।

ଚନ୍ଦ୍ରକାନ୍ତ ସ୍ମିତ ହସି ନୀରବ ହେଲା ।

ଦୀପଙ୍କର ଏପରି ଏକ କାହାଣୀର ନାୟକ ହୋଇ ଅଜାଣତରେ ନାୟିକାର ପଛେ ପଛେ ଯେ ଘୁରୁଛି, ଜାଣିପାରି ନିଜକୁ ଗୌରବାନ୍ୱିତ ମନେକରୁଥିଲା ।

ସୁନନ୍ଦା ହାତରେ ଗୋଟିଏ ସୁଟ୍‌କେସ୍ ଧରି ହସି ହସି ବାହାରି ଆସିଲା । କହିଲା : ଦୀପଙ୍କର ବାବୁ ! ଆପଣ ଯେ ବୁଡ଼ି ବୁଡ଼ି ଇମିତି ପାଣିପିଉଥିଲେ ମୁଁ ଆଗରୁ ଜାଣିଥିଲେ ଆପଣଙ୍କ ସଂସର୍ଗ ତ୍ୟାଗ କରି ଥାଆନ୍ତି ।

ଦୀପଙ୍କର କହିଲା : ବର୍ତ୍ତମାନ ବି ସମୟ ଅଛି ସୁନନ୍ଦା ଦେବୀ । ପାଣି ବେଶିଦୂର ଗଡ଼ିଯାଇ ନାହିଁ । ତା'ଛଡ଼ା...

ଚନ୍ଦ୍ରକାନ୍ତ ବାହାରକୁ ଯାଇ ଜିପ୍‌ରେ ଷ୍ଟାର୍ଟଦେଇଥିଲା ।

ସୁନନ୍ଦା ହସୁ ହସୁ କହିଲା : ଆସନ୍ତୁ । ଆପଣଙ୍କ ପରି ଗୋଟିଏ ଅସହାୟ ଲୋକକୁ ଏଠାରେ ଏକା ଛାଡ଼ିଯିବାକୁ ମନହେଉ ନାହିଁ ।

: ଆପଣଙ୍କ ଦୟା ମୁଁ ଜୀବନରେ ଭୁଲିପାରିବି ନାହିଁ ।

: ଆରେ ସେ ସବୁ ସୌଜନ୍ୟତା ପରେ ଦେଖାଇଲେ ଚଳିବ, ବର୍ତ୍ତମାନ ଆପଣ ଆସିଲେ ।

ଦୀପଙ୍କର ଗମ୍ଭୀର୍ କଣ୍ଠରେ କହିଲା : ମୁଁ ତ ଆଉ ଆପଣଙ୍କ ପରି ଏଇ ମୁହୂର୍ତ୍ତରେ ଚାଲିଯାଇପାରିବି ନାହିଁ । ମୋତେ ଅନ୍ତତଃ ମାନସଠାରୁ ବିଦାୟ ନେଇ ଆସିବାକୁ ହେବ । ସେ ବିଚରା ଯଥେଷ୍ଟ କରିଛି ।

ଚନ୍ଦ୍ରକାନ୍ତ ବାହାରୁ ଜିପ୍‌ର ହର୍ଣ୍ଣ ବଜାଇଲା : ଆଚ୍ଛା ଲୋକ୍ ତ ଆପଣ ! ଆରେ ଆସନ୍ତୁ !

ଶେଷକୁ ସୁନନ୍ଦା ଦୀପଙ୍କର ହାତ ଧରି ଟାଣିନେଇଗଲା ।

ସୁନନ୍ଦା ଗାଡ଼ିକୁ ଉଠିଗଲା ।

ଦୀପଙ୍କର ତଳେ ଠିଆହୋଇ ରହିଲା ।

ଚନ୍ଦ୍ରକାନ୍ତ କହିଲେ : ଆପଣ ଯିବେ ନାହିଁ ଶର୍ମାଜୀ ! ମୁଁ ଆପଣଙ୍କୁ ସେହି ଶର୍ମାଜୀ ବୋଲି ଡାକିବି । ଆପଣଙ୍କର କିଛି ଆପତ୍ତି ନାହିଁ ତ ?

: ନା, ନା ଦୀପଙ୍କର କହିଲା ।

: ତେବେ ଉଠି ଆସନ୍ତୁ ।

ଦୀପଙ୍କର ଯେପରି ବହୁ ଅନିଚ୍ଛାସତ୍ତ୍ୱେ ଜିପ୍ ଉପରକୁ ଉଠି ସୁନନ୍ଦା ପାଖରେ ବସିଲା ।

ଚନ୍ଦ୍ରକାନ୍ତ ଜିପ୍ ଷ୍ଟାର୍ଟ କରିଦେଲା ।

ସୁନନ୍ଦା କହିଲା : ଟିକିଏ ପି : ଡବ୍ଲ୍ୟୁ : ବଂଲୋ ବାଟେ ଯିବା । ଦୀପଙ୍କରବାବୁଙ୍କର କାମ ଅଛି ।

ଚନ୍ଦ୍ରକାନ୍ତ ଗାଡ଼ି ଚଳେଇଥିଲା ।

ନୀରବତା ଭିତରେ ଗାଡ଼ି ଆଗେଇ ଚାଲିଥିଲା ।

କିଛିଦୂର ଆଗେଇ ଯିବା ପରେ, ଦୀପଙ୍କର ଦେଖିଲା, ମାନସ ଉର୍ଦ୍ଧ୍ୱଶ୍ୱାସରେ ରାସ୍ତା ଉପରେ ଦୌଡ଼ୁଛି ।

ଦୀପଙ୍କର ଚନ୍ଦ୍ରକାନ୍ତକୁ ଗାଡ଼ି ଅଟକେଇବାକୁ କହିଲା ।

ମାନସ୍ର ପାଖରେ ଗାଡ଼ି ଅଟକି ଯିବାକ୍ଷଣି ମାନସ ପ୍ରାଣବିକଳରେ ଯେପରି ଗାଡ଼ିକୁ ଜାବୁଡ଼ି ଧରିଲା ।

ସାମ୍‌ନାରେ ଦୀପଙ୍କରକୁ ଦେଖି ତା' ପିଣ୍ଡରେ ପ୍ରାଣପଶିଲା ।

ମାନସ ନାକରୁ ଉର୍ଦ୍ଧ୍ୱଶ୍ୱାସ ବାହାରୁଥିଲା ।

ଦୀପଙ୍କର କହିଲା : ଘଟଣା କ'ଣ ?

: ଘଟଣା ଗୁରୁତର ଦୀପଙ୍କରବାବୁ । କାଲି ରାତିରେ ପାଲାମଉ ବଂଲୋରେ ଗୋଟାଏ ମସ୍ତବଡ଼ ଖୁଣ୍ ହୋଇଯାଇଛି ।

: ଖୁଣ୍ ?

: ହଁ ଖୁଣ୍ । ଆମ ରୁମ୍‌ର ସେଇ ରିଟାଏଡ୍ ଫରେଷ୍ଟ ଅଫିସର, ଶକୁନ୍ତଳା ଚୌହାନକୁ ଖୁଣ୍ କରିଛି ।

: ଶକୁନ୍ତଳା ଚୌହାନ ? ଦୀପଙ୍କର କାନକୁ ଯେପରି ନାଁଟା ପରିଚିତ ଶୁଣାଗଲା । ସେ ମାନସକୁ ଗାଡ଼ି ଉପରକୁ ଉଠାଇ ଆଣି ବସାଇ, ଗାଡ଼ି ଚଳାଇବାକୁ କହିଲା ।

ଗାଡ଼ି ଆଗେଇ ଚାଲିଲା ।

ମାନସ କହିଲା : ଆମର ରୁମ୍‌ମେଟ୍ ସେଇ ରିଟାଏଡ୍ ଫରେଷ୍ଟ ଅଫିସରଙ୍କର ପ୍ରେମିକା ହେଉଛନ୍ତି ଶକୁନ୍ତଳା ଚୌହାନ ।

ସେ କେବେ ଯୌବନର ପ୍ରାରମ୍ଭରେ ସେମାନଙ୍କ ମଧ୍ୟରେ ପ୍ରେମଥିଲା । ତା'ପରେ କିନ୍ତୁ ଶକୁନ୍ତଳା ଚୌହାନ ଅନ୍ୟତ୍ର ବିବାହ କରି ଯାଇଥିଲେ ।

ଶକୁନ୍ତଳା ଚୌହାନ ଜଣେ ବଡ଼ ଅଫିସରଙ୍କୁ ବିବାହ କରିଥିଲେ ।

ତାଙ୍କର ପୁଅ, ଝିଅ ପ୍ରାୟ ଚାରି ପାଞ୍ଚଟି ।

ବଡ଼ ପୁଅର ବୟସ ତିରିଶ ପଇଁତ୍ରିଶ ।

ତା'ଛଡ଼ା ଏଇ ଫରେଷ୍ଟ ଅଫିସରର ବୟସ ପଚାଶ ପଞ୍ଚାବନ ହେବ ନାହିଁ ?

ଏଇ ବୃଦ୍ଧ ବୟସରେ ସେ ଶକୁନ୍ତଳା ଚୌହାନକୁ ପ୍ରସ୍ତାବ ଦେଇଥିଲେ : ତମେ ତ ତମ ସ୍ୱାମୀର ଘର ସଂସାର ଏତେଦିନଯାଏ କରି ଆସିଲ, ତମର ପିଲାମାନେ ସମସ୍ତେ ସାବାଳକ ହୋଇଯାଇଛନ୍ତି । ସେମାନେ ଯେ ଯାହାର କର୍ତ୍ତବ୍ୟ ବାଛି ନେଇଛନ୍ତି । ଆଉ ଯେଉଁମାନଙ୍କର ଦାୟିତ୍ୱ ଏ ପର୍ଯ୍ୟନ୍ତ ତମ କାନ୍ଧ ଉପରେ, ସେମାନଙ୍କୁ ତୁମ ସ୍ୱାମୀଙ୍କ ତତ୍ତ୍ୱାବଧାନରେ ଛାଡ଼ି, ମୋ ସହିତ ଚାଲିଆସ । ମୁଁ ତମକୁ ଜୀବନ ଭରି ପ୍ରତୀକ୍ଷା କରିଛି । ଅନ୍ତତଃ ମୋର ବୃଦ୍ଧ ବୟସଟା ତମର ସାନିଧ୍ୟ ଲାଭ କରି ଟିକିଏ ମାନସିକ ଶାନ୍ତିରେ କଟୁ ।

ମାନସ ଏତକ କହିସାରି ନୀରବ ହେଲା ।

ସମସ୍ୱରରେ ତିନିଜଣଯାକ ପ୍ରଶ୍ନକଲେ : ତା'ପରେ ?

ମାନସ କହିଲା : ତା'ପରେ ଆଉ କ'ଣ ? ଏ ପ୍ରସ୍ତାବରେ କୌଣସି ସଂଭ୍ରାନ୍ତ ମହିଳା ରାଜି ହୋଇପାରେ ? ଶକୁନ୍ତଳା ଚୌହାନ ମଧ୍ୟ ରାଜି ହେଲେ ନାହିଁ । ଫଳରେ ରିଟାଏଡ୍ ଫରେଷ୍ଟ ଅଫିସରଙ୍କର ପିସ୍ତଲର ଗୁଳି ଭେଦକଲା ଶକୁନ୍ତଳା ଚୌହାନଙ୍କ ବୁକୁରେ । ସେ ସେଇଠି ଟଳିପଡ଼ିଲେ ।

ଗାଡ଼ି ଭିତରେ ଅନେକ ସମୟଯାଏ ନିସ୍ତବ୍ଧତା ଖେଳିଯାଇଥିଲା ।

ସୁନନ୍ଦା କହିଲା : ଭଦ୍ରଲୋକଙ୍କର ଏ ବଡ଼ ଅଦ୍ଭୁତ ଖିଆଲ ତ ! ଏଭଳି କେସ୍ ପୃଥିବୀ ଇତିହାସରେ ବୋଧହୁଏ ଏହା ପ୍ରଥମ ।

ଦୀପଙ୍କର ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି କହିଲା : ନାରୀ ଚରିତ୍ର ବଡ଼ ରହସ୍ୟମୟ ଚରିତ୍ର ସୁନନ୍ଦା ଦେବୀ । ଦିନେ ରାତିରେ ଫରେଷ୍ଟ ଅଫିସର ଭଦ୍ରଲୋକ ତାଙ୍କ ଜୀବନ କଥା କହୁଥିଲେ । ଶକୁନ୍ତଳା ଦେବୀ ତାଙ୍କ ଜୀବନର ସମସ୍ତ ସମ୍ଭାବନା ନଷ୍ଟ କରି ଦେଇଥିଲେ ।

ପୁଣି କିଛି ସମୟର ନୀରବତା ଭିତରେ ଗାଡ଼ି ଆଗେଇ ଚାଲିଥିଲା ।

ଚନ୍ଦ୍ରକାନ୍ତ କହିଲା : ଆମେ କ'ଣ ପି : ଡବ୍ଲ୍ୟୁ ଡିବଂଲୋ ଆଡ଼େ ଯିବା ?

ପ୍ରଥମେ ମାନସ ଚିତ୍କାର କରି ଉଠିଲା: ନା, ନା, ନା । ସେଠାକୁ ଆଉ ଯିବା ନାହିଁ । ପୋଲିସ୍ ଆଉ ଲୋକ ଗହଳିରେ ବଂଲୋଟା ଏକ ପ୍ରକାର ଘେରାଉ ହୋଇ ରହିଛି । ଭଦ୍ରଲୋକ ରୁମ୍‌ରେ ବସି ଚୁପ୍‌ଚାପ ସିଗାରେଟ୍ ଟାଣୁଛନ୍ତି । ଯେପରି କିଛି ହୋଇ ନାହିଁ । ସେ କିଛି ଜାଣି ନାହାନ୍ତି । ନିର୍ବିକାର ପୁରୁଷ ।

ଦୀପଙ୍କର କହିଲା : ଆପଣଙ୍କର ଜିନିଷ ପତ୍ର ?

: ସେଇଠି ଥାଉ । ମୁଁ ଆଉ ବଂଲୋକୁ ଫେରିବି ନାହିଁ । ଶକୁନ୍ତଳା ଚୌହାନଙ୍କ ମୃତ ଦେହ ଦେଖିବା ପରଠାରୁ ମୋର ହୃତ୍‌କମ୍ପ ଆରମ୍ଭ ହୋଇଯାଇଛି । ମୋତେ ଟିକିଏ ଆପଣ ରାଞ୍ଚିରେ ଛାଡ଼ିଦେଲେ ମୁଁ ଉପକୃତ ହେବି ।

ଦୀପଙ୍କର କହିଲା : ଆପଣ କିପରି ଶକୁନ୍ତଳାଙ୍କ ମୃତ ଦେହ ଦେଖିଲେ ?

ମାନସ ଟିକିଏ ନୀରବ ରହି କହିଲା : ମୁଁ ଯାଇଥିଲି । ଆଜି ସାହସ କରି ଯାଇଥିଲି ପାଲାମଉ ବଂଲୋକୁ । ଭାବିଥିଲି ଆଜି ଯାହାହେଉ ପଛକେ ତା'ସହିତ ଦେଖା କରିବି । କିନ୍ତୁ....

ଦୀପଙ୍କର କହିଲା : ଯାଇ ଏହିପରି ଏକ ବିଭ୍ରାଟରେ ପଡ଼ିଗଲେ ?

ମାନସର କଣ୍ଠସ୍ୱର ଥରିଉଠିଲା । କହିଲା : ନା, ଦୀପଙ୍କରବାବୁ । ସେ ଶକୁନ୍ତଳା ଚୌହାନଙ୍କ ଝିଅ । ମା'ର ମୃତ ଦେହ ଉପରେ ମୁଣ୍ଡପିଟି କାନ୍ଦି କାନ୍ଦି ଗଡ଼ିଯାଉଥିଲା ।

ଦୀପଙ୍କର ଆଉ କିଛି ଉତ୍ତର ଦେଇପାରିଲା ନାହିଁ ।

ନୀରବତା ଭିତରେ ଗାଡ଼ି ଧୀରେ ଧୀରେ ପାହାଡ଼ ଉପରୁ ତଳକୁ ଓହ୍ଲାଉଥିଲା ।

ଗାଡ଼ିରେ ଥିଲେ ଚାରିଜଣ ଆରୋହୀ । ଚାରିଜଣଙ୍କର ଚିନ୍ତାଧାରା ଥିଲା ଚାରିପ୍ରକାର । ସବୁ ସେଇ ଜୀବନ ଯନ୍ତ୍ରଣାର ।

ପ୍ରାୟ ନୀରବତା ଭିତରେ ଆହୁରି କିଛି ସମୟ ବିତିଗଲା । ଏକ ସମୟରେ ସୁନନ୍ଦା କହିଲା : ରାଞ୍ଚିରେ ପହଞ୍ଚି ଆପଣ କୁଆଡ଼େ ଯିବେ ଦୀପଙ୍କରବାବୁ !

: ମୁଁ ! ଦୀପଙ୍କର କିଛି ସମୟ ନୀରବ ରହି ଧୀରେ ଧୀରେ କହିଲା, ଆପଣମାନଙ୍କ ସମସ୍ତଙ୍କଠାରୁ ମୋର ଏହି ଯାତ୍ରାଟା ହେଉଛି ରହସ୍ୟମୟ । ଦେଖିବେ ?

ଦୀପଙ୍କର ପକେଟରୁ ଗୋଟିଏ ଟ୍ରେନ୍ ଟିକେଟ କାଢ଼ି ସୁନନ୍ଦା ହାତକୁ ବଢ଼ାଇଦେଲା ।

ସୁନନ୍ଦା ଟିକେଟଟି ହାତକୁ ନେଇ ବଡ଼ ପାଟିରେ ପଢ଼ିଲା : ଭୁବନେଶ୍ୱର । ତା'ପରେ ଟିକିଏ ରହି କହିଲା, ଭୁବନେଶ୍ୱର ମାନେ ?

: ଭୁବନେଶ୍ୱର ମାନେ ଭୁବନେଶ୍ୱର, ଓଡ଼ିଶାର ରାଜଧାନୀ । ଚନ୍ଦ୍ରକାନ୍ତ କହି ଉଠିଲା ।

ଦୀପଙ୍କର କହିଲା : ସବୁଠାରୁ ମଜାର କଥା ହେଉଛି, ମୁଁ ହାବଡ଼ାରୁ ଭୁବନେଶ୍ୱର ଯିବା କଥା, ପହଞ୍ଚିଛି ଆସି ରାଞ୍ଚିରେ ଏବଂ ଖାଲି ସେତିକି ନୁହେଁ; କାଙ୍କେକୁ ଯିବା ପାଇଁ ପଥଟା ବି ସହଜ କରି ଆଣିଛି ।

ଚନ୍ଦ୍ରକାନ୍ତ କହିଲା : ବେଳେ ବେଳେ ସେମିତି ହୋଇଥାଏ ଦୀପଙ୍କରବାବୁ । ତେବେ ଆପଣଙ୍କର ଆଉ ଚିନ୍ତାର କାରଣ ନାହିଁ । ବାପାଙ୍କ ବିରୋଧରେ ସିନା ଆମେ ଅଭିଯାନରେ ବାହାରିଥିଲୁ, ଆମ ବିରୋଧରେ ବାପା କିନ୍ତୁ ଅଭିଯାନ ଚଳେଇପାରିବେ ନାହିଁ ।

ସୁନନ୍ଦା ଧମକ ଦେଇ କହିଲା : ଚୁପ୍‌କର ଚନ୍ଦ୍ର । ଆଜିକାଲି ତୋ'ର ମୁହଁଟା ଭାରି ବଢ଼ିଗଲାଣି ।

ଚନ୍ଦ୍ରକାନ୍ତ କିନ୍ତୁ ଆଉ କଥା କହି ନଥିଲା । ଦୀପଙ୍କର ଓ ସମସ୍ତେ ଲକ୍ଷ୍ୟ କରିଥିଲେ । ଗାଡ଼ିର ସ୍ପିଡ୍ ମିଟରଟା ଧୀରେ ଧୀରେ ବଢ଼ିଚାଲିଥିଲା ।




 ଘଟଣା, ଏକ ବ୍ୟକ୍ତିଗତ ଘଟଣା । ସାଧାରଣତଃ କୌଣସି ବ୍ୟକ୍ତିଗତ ଘଟଣାକୁ କେନ୍ଦ୍ରକରି କେହି ଗଳ୍ପ ଉପନ୍ୟାସ ଲେଖିବାକୁ ଯାଆନ୍ତି ନାହିଁ । ଅନେକ କୌଣସି ଜୀବିତ ବା ମୃତ ଚରିତ୍ର ଉପରେ କାହାଣୀଟିର କାଳେ ଛାୟାପାତ ହୋଇଥିବ ଭାବି ଲେଖି ଦିଅନ୍ତି "ଏ କାହାଣୀଟି ସଂପୂର୍ଣ୍ଣ କାଳ୍ପନିକ, ଯଦି କୌଣସି ଜୀବିତ ବା ମୃତ ଚରିତ୍ର ଉପରେ ଛାୟାପାତ ହେଲାପରି କାହାରି ମନେହୁଏ, ତେବେ ତାହା ସଂପୂର୍ଣ୍ଣ ଆକସ୍ମିକ ।"

ମୋର ଏ କାହାଣୀଟି କିନ୍ତୁ ତା'ର ବିପରୀତ, ମାନେ ଏ କାହାଣୀର ଚରିତ୍ର ଏବେ ବି ଜୀବିତ । ଏବେ ବି ସେହି ଚରିତ୍ରଟି ସହିତ ନି'ତି ମୋ'ର ଦେଖାହୁଏ । ସବୁଠାରୁ ମଜାର କଥା ହେଉଛି, ଆମେ ଏକାଠି ଗୋଟାଏ କୋଠାଘରେ ବାସ କରୁ ।

ଏତେ ଯେଉଁଠି ସାମଞ୍ଜସ୍ୟ, ସେ କ୍ଷେତ୍ରରେ ଏ ଘଟଣାଟିର କଥା-ରୂପ ଦେବାର ଆଗ୍ରହ ମୋର ମୋଟେ ନଥିଲା; କିନ୍ତୁ ଶେଷରେ ଏକ ପାଠିକାଙ୍କ ପ୍ରେମରେ ପଡ଼ି, ମୁଁ ଏ ଘଟଣାଟିର କଥା-ରୂପଦେବାକୁ ବାଧହେଲି । ସେ ମୋ'ଠାରୁ ଏକ ସତ୍ୟ କାହାଣୀ ଶୁଣିବାକୁ ଯାଇ ଏଇ କାହାଣୀଟି ଶୁଣିବା ପରେ, ଏହାକୁ କଥା-ରୂପ ଦେବା ପାଇଁ ଜିଦି କରି ବସିଲେ । ଏପରିସବୁ ପରିସ୍ଥିତି ସୃଷ୍ଟି କଲେ, ଯଦ୍ଵାରା ମୁଁ ବାଧହେଲି ଘଟଣାଟିର କଥା-ରୂପ ଦେବା ପାଇଁ ।

ତଥାପି ମୁଁ ଭାବି ନଥିଲି, ଏଇ କାହାଣୀଟି ଦିନେ ପୁସ୍ତକ ଆକାରରେ ପ୍ରକାଶିତ ହୋଇ ଜନସାଧାରଣରେ ବିତରିତ ହେବ । ଶେଷରେ ତାହା ବି ହେଲା ।

ଏସବୁ ପରେ ମଧ୍ୟ ମୋ'ର ଏତିକି ସାନ୍ତ୍ୱନା ଯେ, ଯେଉଁ ଚରିତ୍ରଟି ବା ଯେଉଁ ପରିବାରଟିକୁ କେନ୍ଦ୍ର କରି ମୋର ଏହି କାହାଣୀଟି ଗଢ଼ିଉଠିଛି, ସେମାନେ କେହି ଆମ ଭାଷା ବୁଝନ୍ତି ନାହିଁ ।

ତଥାପି ମୋର ଅଗଣିତ ପାଠକ-ପାଠିକାଙ୍କ ନିକଟରେ ନିବେଦନ, କେବେ ଯଦି ଏଇ କାହାଣୀର ଚରିତ୍ର ସହିତ ଦୈବାତ୍ କାହାର କେଉଁଠି ଭେଟହୋଇଯାଏ, ସେମାନେ ଯେପରି ଏଇ କାହାଣୀଟି ତାଙ୍କୁ ନ ଶୁଣାନ୍ତି ।

ଲଳିତା ମାଲହୋତ୍ରା କାହାଣୀର ପ୍ରଧାନ ଚରିତ୍ର ।

ସେଦିନ ସକାଳୁ ଯେତେବେଳେ ପୋଲିସ୍ ଭ୍ୟାନ୍‌ଟା ଆସି ଆମ କୋଠା ସାମ୍ନାରେ ଠିଆହେଲା; ଆଉ ପୋଲିସ୍ କନେଷ୍ଟବଲମାନେ ଆସି କବାଟ ଧଡ଼ ଧଡ଼ କରି ଆମ ନିଦ ଭାଙ୍ଗି ଉଠାଇଲେ । ଆମ ସମସ୍ତଙ୍କ ପରି ଲଳିତା ମାଲହୋତ୍ରା ମଧ୍ୟ ଆଖି ମଳି ଚକିତ ଚାହାଣିରେ ଚାହିଁଥିଲା ।

ଘଟଣାଟା ଘଟିଥିଲା ଆମ କୋଠାର ତଳ ତାଲାରେ । ଅବଶ୍ୟ ସଂବାଦଟା, ଅପ୍ରୀତିକର । ପ୍ରଫେସର ଅରୁଣ ମଜୁମଦାର ରୁହନ୍ତି ତଳ ତାଲାର ଗୋଟିଏ ଫ୍ଲାଟ୍‌ରେ । ତାଙ୍କରି ବଡ଼ପୁଅ ସନତ୍ ମଜୁମ୍‌ଦାର ଆତ୍ମହତ୍ୟା କରିଛି । ଇତିହାସ୍‌ରେ ଏମ୍. ଏ. ଦେବାପାଇଁ ସେ ପ୍ରସ୍ତୁତ ହେଉଥିଲା । ଏଇଟା ତା'ର ଫାଇନାଲ୍ ଇଅର । ପରୀକ୍ଷା ବି ଆଉ ପନ୍ଦର କୋଡ଼ିଏ ଦିନ ବାକି । କିନ୍ତୁ ହଠାତ୍....

ସକାଳୁ ଏପରି ଏକ ଦୁଃସମ୍ବାଦ ପାଇ ମୁଁ ଟିକିଏ ଚିନ୍ତିତ ହୋଇପଡ଼ିଥିଲି । କନେଷ୍ଟବଲଟି ମୋତେ ତଳକୁ ଯିବା ପାଇଁ ଡାକୁଥିଲା । ଆଉ କ୍ଷଣକ ପରେ ବି ମୁଁ ଯାଇଥା'ନ୍ତି, କିନ୍ତୁ ଦେଖିଲି ପୋଲିସ୍ ଅଫିସର ଆମରି ଘରଆଡ଼େ ଆଗେଇ ଆସୁଛନ୍ତି ।

ପୂର୍ବରୁ ମିଷ୍ଟର ଦେବନାଥଙ୍କ ସହିତ ମୋର ପରିଚୟ ଥିଲା । ମୁଁ ତାଙ୍କୁ ଦେଖିବା କ୍ଷଣି କହି ଉଠିଲି : ଆରେ ଦେବନାଥବାବୁ ଯେ ! ଶୁଣୁଲି ଗୋଟାଏ ସୁଇସାଇଡ୍ କେସ୍.......

ଦେବନାଥବାବୁ ମୋ କଥା ପୂର୍ଣ୍ଣ କରିବାକୁ ନଦେଇ ମୁଣ୍ଡହଲାଇ କହିଲେ : ଉଁ ହୁଃ, ସୁଇସାଇଡ୍ ନୁହେଁ, ହୋମିସାଇଡ୍ ।

: ମାନେ ? ମୁଁ ଚମକିପଡ଼ିଲି ।

ଦେବନାଥ ବାବୁ ଯୋର୍ ଗଳାରେ କହିଲେ : ହଁ, ଆତ୍ମହତ୍ୟ । ନୁହେଁ, ହତ୍ୟା । କେହି ତାଙ୍କୁ ହତ୍ୟା କରିଛି । ଅବଶ୍ୟ ଏକଥା ମୁଁ ଅନ୍ୟ କାହାରିକୁ କହି ନାହିଁ । ଆପଣଙ୍କ ଘରୁ ଗୋଟାଏ ଫୋନ୍ କରିବି ଲାଲବଜାରକୁ ।

ଦେବନାଥବାବୁ ଆମ ଘରେ ବସି ଫୋନ୍ କଲେ ।

କିଛି ସମୟ ପରେ ସ୍ପେଶାଲ ବ୍ରାଞ୍ଚରୁ ଦୁଇଜଣ ଅଫିସର ଆସିଲେ । ଫିଙ୍ଗର ପ୍ରିଣ୍ଟ, ଫୁଟ୍ ପ୍ରିଣ୍ଟ ଏକ୍‌ସପର୍ଟ ଫଟୋଗ୍ରାଫର, ଜଣକ ପରେ ଜଣେ ଆସି ପହଞ୍ଚିଲେ । ଶେଷରେ ଆସିଲେ ପୋଲିସ୍ କୁକୁର 'ଲକି' ଆଉ 'ମିତା' ।

ଦିନ ବଢ଼ିବା ସଙ୍ଗେ ସଙ୍ଗେ ଆମ କୋଠା ସାମ୍ନାରେ ଭିଡ଼ ବଢ଼ିଉଠିଲା । ଆମେ ଯେଉଁମାନେ ସେ କୋଠାର ଅଧିବାସୀ କେହି ବାହାରକୁ ବାହାରିପାରିଲୁ ନାହିଁ । ପୋଲିସ୍ ଅଫିସରମାନଙ୍କ ଜେରା, ଅନୁସନ୍ଧାନ, ଗୋଟିକ ପରେ ଗୋଟିଏ ଧାରାବାହିକ ଭାବରେ

ଚାଲିଲା । ଶେଷରେ ପୋଲିସ୍ ଅଫିସରମାନେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ଏ କେସ୍ ଆତ୍ମହତ୍ୟା ନୁହେଁ, ସନତ୍ ମଜୁମଦାରଙ୍କୁ କେହି ହତ୍ୟା କରିଛି ।

କିନ୍ତୁ କିଏ ହତ୍ୟାକାରୀ ? ଏଇ କୋଠାର କେହି ଅଧିବାସୀ, ନା ବାହାରୁ କେହି ଆସି ହତ୍ୟା କରି ପୁଣି ରାତ୍ରିର ଅନ୍ଧକାରେ ମିଶିଯାଇଛି ?

ଆପତତଃ ତା'ର ସମାଧାନ କଲେ 'ଲକି' ଓ 'ମିତା' ।

ଦୁଇଟିଯାକ ପୋଲିସ୍ କୁକୁର । ଏହା ପୂର୍ବରୁ ଏହିପରି କେତୋଟି କେସ୍‌ରେ ସେମାନେ ପୋଲିସ୍‌କୁ ସାହାଯ୍ୟ କରିଛନ୍ତି । ଆତତାୟୀକୁ ଖୋଜି ବାହାର କରିଛନ୍ତି । ଅବଶ୍ୟ କେତେକ କ୍ଷେତ୍ରରେ କୋର୍ଟରେ ସେମାନଙ୍କ ଭିତରୁ କେହି କେହି ବେକସୁର ଖଲାସ ହୋଇଯାଇଛନ୍ତି । ତଥାପି ଅନ୍ଧକାର ଭିତରୁ ଆତତାୟୀକୁ ଟାଣି ଆଣି 'ଲକି' ଆଉ 'ମିତା' ଯଥେଷ୍ଟ ସାହାଯ୍ୟ କରିଛନ୍ତି ପୋଲିସ୍ ଡିପାର୍ଟମେଣ୍ଟକୁ ।

କିନ୍ତୁ ଏ କେସ୍‌ରେ ?

'ଲକି' ଆଉ 'ମିତା' ଶେଷରେ ଯାଇ ଯେ ଲଳିତା ମାଲହୋତ୍ରାର ଲୁଗା କାମୁଡ଼ି ଧରିବେ, ଆଉ କିଏ ଯାହା ଭାବୁ ନ ଭାବୁ, ମୁଁ ଏ କଥା ସ୍ୱପ୍ନରେ ବି ଭାବି ନ ଥିଲି; କାରଣ ଲଳିତା ପ୍ରତି ମୋର ଗୋଟାଏ ଭଲ ଧାରଣା ଥିଲା । ସେ ଯେ ଏପରି ଏକ ଜଘନ୍ୟ କାମ କରିପାରେ 'ଲକି' ଆଉ 'ମିତା' ତା' ଲୁଗାକୁ କାମୁଡ଼ି ଧରିଥିଲେ ମଧ୍ୟ ମୁଁ ବିଶ୍ୱାସ କରି ପାରୁ ନଥିଲି ।

'ଲକି' ଆଉ 'ମିତା' କୁ ପୁଣି ଅନ୍ୟତ୍ର ନିଆହେଲା ।

ଲଳିତାକୁ ବେଶ ବଦଳେଇ ଆମ ପାଖ କୋଠାର ଗୋଟାଏ ଘରେ ଦରଜା ବନ୍ଦ କରି ରଖି ଦିଆହେଲା ।

ପୁଣି 'ଲକି' ଆଉ 'ମିତା'କୁ ଛାଡ଼ି ଦିଆଗଲା ଆତତାୟୀର ସନ୍ଧାନରେ । ସେମାନେ ଗନ୍ଧ ଶୁଙ୍ଘି ଶୁଙ୍ଘି ଲଳିତା ଫ୍ଲାଟ୍‌କୁ ଗଲେ, ତା'ପରେ ରାସ୍ତା । ପାଖ କୋଠା । ସୁଙ୍ଘି ସୁଙ୍ଘି ଶିଡ଼ିରେ ଉଠିଲେ । ଦୋତାଲା, ତିନିତାଲା । ଶେଷରେ ଛାତ ଉପରର ଗୋଟିଏ ଘରର ଦୁଆର ବନ୍ଦ ଥିଲା । 'ଲକି' ଆଉ 'ମିତା' ସେଇ ଦୁଆରକୁ ଯାଇ ଗୋଡ଼ରେ ରାମ୍ପୁଡ଼ିଲେ । ଦରଜା ଖୋଲାହେଲା । ଲଳିତା ବସିଥିଲା ଖଣ୍ଡିଏ ଚେଆର ଉପରେ । 'ଲକି' ଆଉ 'ମିତା' ଏଥର ଲଳିତାର ଗୋଡ଼ ଦୁଇଟାକୁ କାମୁଡ଼ି ଧରିଲେ ।

ଲଳିତାର ମୁହଁ ଫିକା ପଡ଼ିଯାଇଥିଲା । ରକ୍ତ ଶୁଖିଯାଇଥିଲା । ଆଖି କୋଟର ଭିତରେ ପଶିଯିବା ପରି ଦିଶୁଥିଲା ।

ଦୁଇ ତିନିଘଣ୍ଟା ଭିତରେ ଲଳିତାର ଚେହେରାରେ ଯେ ହଠାତ୍ ବାର୍ଦ୍ଧକ୍ୟର ଛାୟା ନଇଁ ଆସିବ, ମୁଁ ଦେଖି ନଥିଲେ ମୋଟେ ବିଶ୍ୱାସ କରିପାରି ନଥାନ୍ତି ।

ଶେଷରେ ଲଳିତାକୁ ପୋଲିସ୍ ଭ୍ୟାନ୍‌ରେ ବସି ଥାନାକୁ ଯିବାକୁ ପଡ଼ିଲା । ପୋଲିସ୍ ଅଫିସରମାନଙ୍କ ଜବାନବନ୍ଦୀର ଉତ୍ତରରେ କ'ଣ କହିଥିଲା କେଜାଣି, ଥାନାକୁ ଯିବା ପୂର୍ବରୁ ମୋତେ ଅତି ବିଚଳିତ କଣ୍ଠରେ କହିଗଲା : ଆପଣ ବିଶ୍ୱାସ କରନ୍ତୁ ମୁଁ ସନତ୍‌ବାବୁଙ୍କୁ ମାରି ନାହିଁ, ମୁଁ ସେ ସମ୍ବନ୍ଧରେ କିଛି ଜାଣେ ନାହିଁ ।

ଲଳିତା ମାଲହୋତ୍ରା ଯେତେବେଳେ ଯାଇ ପୋଲିସ୍ ଭ୍ୟାନ୍‌ରେ ଉଠିଲା, ସେତେବେଳେ ତା' ମୁହଁକୁ ମୁଁ ଚାହିଁପାରିଲି ନାହିଁ । ତା' ଆଖିର ଲୁହ ମୋ ଆଖିରୁ ଲୁହ ନିଗାଡ଼ି ଆଣିଲା । ପୋଲିସ୍ ଭ୍ୟାନ୍ ଚାଲିଗଲା ।

ଶବ ପୋଷ୍ଟମର୍ଟମ ପାଇଁ ପଠାଇଦିଆଗଲା ।

ଧୀରେ ଧୀରେ ଭିଡ଼ ବି କମି ଆସିଲା ।

ମୁଁ କିନ୍ତୁ ସ୍ତବ୍ଧ ହୋଇ ବାରଣ୍ଡା ଉପରେ ତଳକୁ ଚାହିଁ ଠିଆହୋଇଥିଲି ।

ଆମେ ପ୍ରାୟ ଦୁଇବର୍ଷ ହେବ ବାସ କରୁଛୁ ଏଇ କୋଠାରେ । ଲଳିତା ମାଲହୋତ୍ରା ଆମଠୁଁ ଦୁଇ ତିନିମାସ ପୂର୍ବରୁ ଆସିଥିଲା । ଆମ ପରେ ଆସିଥିଲେ ପ୍ରଫେସର ମଜୁମଦାର । ଏ କୋଠାଟିରେ ଆମକୁ ଲଗେଇ ସମୁଦାୟ ପାଞ୍ଚଟି ପରିବାର ବାସ କରନ୍ତି । ଅବଶ୍ୟ ତଳଟା ସମୁଦାୟ ଦଖଲ କରି ରହିଛନ୍ତି ପ୍ରଫେସର ମଜୁମଦାର । ତାଙ୍କର କୁଟୁମ୍ବ ବେଶି । ତିନିତାଲାରେ ଦୁଇଟି ଫ୍ଲାଟ୍‌ରେ ରହନ୍ତି ଦୁଇଟି ପରିବାର । ଜଣେ ଡାକ୍ତର ଆଉ ଜଣେ ବ୍ୟବସାୟୀ । ଦୋତାଲାରେ ରହୁ ଆମେ ଆଉ ଲଳିତାର ପରିବାର ।

ଲଳିତାର ପରିବାର ବୋଇଲେ ଲଳିତାର ମା' ଯମୁନା ଦେବୀ ଆଉ ଲଳିତାର ଗୋଟିଏ ଝିଆରୀ, ସେଲି, ଛଅ ସାତବର୍ଷର ।

ଲଳିତାର ମା' ଯମୁନା ଦେବୀଙ୍କୁ ଦେଖିଲେ, ବୁନିଆଦ ଘରର ମହିଳା ପରି ମନେହୁଏ । ତା' ଛଡ଼ା ସେମାନଙ୍କ ଘରର ଆସବାସପତ୍ର ବହୁ ପୁରୁଣାକାଳର । ସେମାନଙ୍କ ବଂଶ ବୁନିଆଦିର ଯେ ଗୋଟାଏ ପରମ୍ପରା ଅଛି, ସେ କଥା ତାଙ୍କ ଘରେ ପଶିଲେ ହିଁ ବୁଝାପଡ଼େ ।

ଲଳିତାର ବାପା ଜଣେ ଚା' ବ୍ୟବସାୟୀ । ଆସାମରେ ସେମାନଙ୍କର ଚା' ବଗିଚା ଅଛି; କିନ୍ତୁ ଲଳିତାର ବାପା କେବେ ଆସି ନାହାନ୍ତି ଏ ଦୁଇବର୍ଷ ଭିତରେ । ସେମାନେ ପ୍ରଥମେ କଲିକତାରେ ରହୁଥିଲେ । କେତେକ କାରଣରୁ ବ୍ୟବସାୟରେ ଅବନତି ଘଟିବାରୁ ଲଳିତାର ବାପାଙ୍କୁ ବରାବର ଆସାମରେ ରହିବାକୁ ପଡ଼ିଲା । କିନ୍ତୁ ଆସାମର ପାଣି ପବନ ଲଳିତାର ମା'ଙ୍କ ଦେହରେ ଚଳିଲା ନାହିଁ, ଯେଉଁଥି ପାଇଁ ସେ ବାଧ୍ୟ ହୋଇ କଲିକତାରେ ରହିଲେ, ତାଙ୍କ ସଙ୍ଗରେ ରହିଲା ଲଳିତା । ଏମାନେ ମଝିରେ ମଝିରେ ଆସାମ ଯାଆନ୍ତି । ବୁଲିଚାଲି ଆସନ୍ତି ।

ଆଉ ସେଲି, ଲଳିତାର ବଡ଼ ଭଉଣୀର ଝିଅ । ସେଲିକୁ ଯେତେବେଳେ ଚାରିବର୍ଷ, ତା'ର ମା' ମରିଗଲେ । ସେତେବେଳେ ଲଳିତାର ମା' ଘେନି ଆସିଲେ ସେଲିକୁ । ସେଇ ଯେ ସେଲି ରହିଯାଇଛି ଲଳିତା ପାଖରେ, ଆଉ ବାପା ପାଖକୁ ଯାଇ ନାହିଁ । ଲଳିତାର ମା' ସେଲିକୁ ତା' ବାପା ପାଖକୁ ନ ପଠାଇବାର ଆଉ ଏକ ମୁଖ୍ୟ କାରଣ ହେଉଛି, ସେଲିର ବାପା ପୁନର୍ବିବାହ କରିଛନ୍ତି । ସିଏ ବି ଆଉ ଖୋଜନ୍ତିନି ସେଲିକୁ ।

କିନ୍ତୁ ଲଳିତା କାହିଁକି, ଲଳିତା କାହିଁକି......

: ଶୁଣୁଛ ?

ବୁଲି ଅନେଇଲି ସ୍ତ୍ରୀ ଡାକୁଛନ୍ତି । ପାଖକୁ ଆସି ଚୁପ୍ ଚୁପ୍ କାନ ପାଖରେ କହିଲେ : ଲଳିତାର ମା' ଆସିଛନ୍ତି । ତମକୁ ଡାକୁଛନ୍ତି । ବୋଧହୁଏ ଥାନାଫାନାକୁ ଯିବା ପାଇଁ କହିବେ ।

ମୋ ମତରେ ତମେ ସେ ସବୁ ଅଡୁଆରେ ନ ପଶିବା ଭଲ । ଖୁଣ୍ ଖରାପି କେସ୍ । କୋର୍ଟ କଚେରୀ କଥା । କେଉଁ ପାଣି କୁଆଡ଼େ ଗଡ଼ିବ ଠିକ୍ ଅଛି !

ମୁଁ କିଛି ଉତ୍ତର ଦେଇପାରିଲି ନାହିଁ । ସୁତପାଙ୍କ ପଛେ ପଛେ ଆଗେଇଗଲି । ଆମ ବୈଠକଖାନାରେ ଲଳିତାର ମା' ଯମୁନା ଦେବୀ ବସିଥିଲେ । ସେ ସେହିପରି ଶାନ୍ତ, ଗମ୍ଭୀର । ଯେପରି କିଛି ଘଟି ନାହିଁ । ଟାଣ ମନ ତାଙ୍କର ଟିକିଏ ହେଲେ ବି ନରମି ନାହିଁ ।

ଯମୁନା ଦେବୀ କହିଲେ : ତମରି ଆଖି ଆଗରେ ତ ସବୁ ଘଟିଗଲା ବାବା । ଲଳିତାକୁ ତମେ ଦୁଇବର୍ଷ ହେବ ଦେଖୁଛ । ଆଉ ମୁଁ ତା'ର ଜନ୍ମଦାତ୍ରୀ ମା'। ଦୁନିଆରେ ଏମିତି ଅତର୍କିତ ଭାବରେ ଅନେକ ଘଟଣା ଘଟେ । ଯେଉଁଗୁଡ଼ାକୁ ପ୍ରଥମେ ପ୍ରଥମେ ସମ୍ଭାଳି ନେବା ପାଇଁ ଯଥେଷ୍ଟ ଧୈର୍ଯ୍ୟର ଆବଶ୍ୟକ ହୁଏ । ସେ ଧୈର୍ଯ୍ୟ ମୋର ଅଛି । କିନ୍ତୁ ଲୋକବଳ ମୋର ନାହିଁ ବାବା । ଲଳିତା ସତରେ ବି ଯଦି ଖୁଣୀ ଆସାମୀ ହୋଇଥାଏ, ତା' ପ୍ରତି ମୋର ତ ପୁଣି ଗୋଟାଏ କର୍ତ୍ତବ୍ୟ ଅଛି !

ଯମୁନା ଦେବୀ ମୋ ଆଡ଼କୁ ଆଶାୟୀ ଆଖିରେ ଚାହିଁ ଚୁପ୍ ରହିଲେ ।

ମୁଁ କହିଲି : ଆପଣ ମୋତେ କ'ଣ କହୁଛନ୍ତି ?

ଯମୁନା ଦେବୀ କହିଲେ : କହିବାର ମୋର କିଛି ନାହିଁ ବାବା । ଲଳିତା ଯଦି ତମର ଭଉଣୀ ହୋଇଥାନ୍ତା, ତମର ତ ତା' ପ୍ରତି କିଛି କର୍ତ୍ତବ୍ୟ ଥାଆନ୍ତା ! ତମେ ଆସି ମୋତେ ଟିକିଏ.....

ଯମୁନା ଦେବୀ କଥା ଅସମାପ୍ତ ରହିଗଲା । ସୁତପା କହିଲେ : ତାଙ୍କର ତ ବାର ଆଡ଼େ ତେର କାମ ଦେଖୁଚ ମାଉସୀ । ସିଏ ଆଜି କଲିକତା, କାଲି କଟକ, ପହର ଦିନ ବମ୍ବେ । ସେ'ତ ସବୁବେଳେ ଏପାଖ ସେପାଖ ହୁଅନ୍ତି । ତାଙ୍କ ଉପରେ ଭରସା ରଖି ଆପଣଙ୍କର କିଛି ସୁବିଧା ହେବ ନାହିଁ ।

ଯମୁନା ଦେବୀ ସୁତପାଙ୍କ କଥା ଶୁଣିଲେ । ତାଙ୍କ ଆଡୁ ମୁହଁ ଫେରାଇ ମୋ ଆଡ଼େ କିପରି ଅସହାୟ ଆଖିରେ ଚାହିଁ ଗୋଟାଏ ଦୀର୍ଘଶ୍ୱାସ ପକାଇଲେ ।

ଅଳ୍ପ ଦୂରରେ ସେଲି ଆଉ ଲୁସି ଖେଳୁଥିଲେ । ଲୁସି ମୋ ଝିଅ । ସେଲିର ସମବୟସୀ । ଏକା ସ୍କୁଲ୍‌ରେ ପଢ଼ନ୍ତି । ଏକା କ୍ଲାସରେ ବି ।

ଯମୁନା ଦେବୀ କ'ଣ କହିବେ କହିବେ ହେଇ କହିପାରୁ ନଥିଲେ । ସତରେ ତାଙ୍କର ଏ ଦୁଃସମୟରେ ସାହାଯ୍ୟ କରିବାକୁ ଆଉ କେହି ନଥିଲେ । ସୁତପାଙ୍କର ମୁହାଁମୁହିଁ ତାଙ୍କୁ ଏପରି ନିରାଶ କରିଦେବାଟା ବୋଧହୁଏ ଉଚିତ ହୋଇ ନଥିଲା ।

ମୁଁ କହିଲି : ମଉସାଙ୍କୁ ଟେଲିଗ୍ରାମ କରି ଖବରଟା ଜଣେଇ ଦିଅନ୍ତୁ । ଅନ୍ତତଃ ସେ ଆସିଗଲେ ଆପଣଙ୍କ ଦୁର୍ଭାବନାଟା ଅନେକାଂଶରେ ଲାଘବ ହୋଇଯିବ ।

ଯମୁନା ଦେବୀ ଆହୁରି ଜୋର୍‌ରେ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି କହିଲେ : ସେ କିଛିଦିନ ହେବ ଆସାମରେ ନାହାନ୍ତି । କାଲି ଚିଠି ପାଇଛି ।

: ତା'ହେଲେ ତ ସମସ୍ୟା । ଆପଣ ମୋତେ ଏଇକ୍ଷିଣା କ'ଣ କରିବାକୁ କହୁଛନ୍ତି ?

: ଆଉ କିଛି ନୁହେଁ ବାବା, ଜଣେ ଓକିଲଙ୍କ ସହିତ ଟିକିଏ ପରାମର୍ଶ କରିବାକୁ ପଡ଼ିବ । ଲଳିତାକୁ ତ ପୁଣି ଜାମିନ୍‌ରେ ଆଣିବାକୁ ହେବ ।

: କିନ୍ତୁ ମାଉସୀ ! ଗୋଟାଏ କଥା ମୁଁ ବୁଝିପାରିଲି ନାହିଁ । ଏ କୋଠାରେ ଏତେ ଲୋକ ଥାଉ ଥାଉ, କୁକୁର ଦୁଇଟା ଯାଇ ଲଳିତାକୁ କାହିଁକି ଧରିଲେ ? ଲଳିତା କ'ଣ ତଳ ଫ୍ଲାଟ୍‌କୁ ଯିବା ଆସିବା କରେ ?

ଯମୁନା ଦେବୀ ଟିକିଏ ଚିନ୍ତା କରି କହିଲେ : ଲଳିତା ଯଦି ତଳ ଫ୍ଲାଟ୍‌କୁ ଯାଇଥାଏ ବା ଯା'ଆସ କରୁଥାଏ ସେଇଟା କ'ଣ ତା'ର ଅପରାଧ ? ତେବେ ମୁଁ ଭଲ କରି ଜାଣେ ସନତ୍ ସହିତ ତା'ର କିଛି ସମ୍ପର୍କ ନ ଥିଲା ।

ମୁଁ ଆଉ କ'ଣ ହୁଏତ ଯମୁନା ଦେବୀଙ୍କୁ ପଚାରି ଥାଆନ୍ତି; କିନ୍ତୁ ବାହାରେ କବାଟ ଖଡ଼ ଖଡ଼ ଶବ୍ଦ ଶୁଣି ଉଠିଆସିଲି ।

ସ୍ୱୟଂ ପୋଲିସ୍ ଅଫିସର ମିଷ୍ଟର ଦେବନାଥ ।

ମୋତେ ସଙ୍ଗରେ ଡାକିଲେ । କହିଲେ : ତଳକୁ ଆସନ୍ତୁ ।

ଆପଣ ତ ଏସବୁ କେସ୍‌ରେ ବେଶ୍ ଇଣ୍ଟରେଷ୍ଟେଡ, ମୋତେ ଅନେକଥର କହିଛନ୍ତି, କୌଣସି ଇନ୍‌ଭେଷ୍ଟିଗେସନକୁ ସଙ୍ଗରେ ନେଇଯିବା ପାଇଁ । ଆଜି ସେ ସୁଯୋଗ ଆସିଛି, ଏକ ପ୍ରକାର ଆପଣଙ୍କ ଘରେ ମର୍ଡର କେସ୍ କହିଲେ ଚଳେ । ମୁଁ ମିଷ୍ଟର ରାଜଗୁରୁଙ୍କ ସହିତ ଆପଣଙ୍କର ପରିଚୟ କରାଇ ଦେଉଛି । ଇଣ୍ଟେଲିଜେନ୍‌ସ ବ୍ରାଞ୍ଚର ସେ ଜଣେ ଦକ୍ଷ ଅଫିସର । ଏ କେସ୍‌ରେ ଇନ୍‌ଭେଷ୍ଟିଗେସନର ସଂପୂର୍ଣ୍ଣ ଦାୟିତ୍ୱ ତାଙ୍କ ଉପରେ ।

ଶିଡ଼ିରେ ଓହ୍ଲାଉ ଓହ୍ଲାଉ ଦେବନାଥବାବୁଙ୍କୁ ମୁଁ ପଚାରିଲି : ଆପଣଙ୍କର କେସ୍‌ଟା ସମ୍ବନ୍ଧରେ ମତ କ'ଣ ? ଲଳିତା ଆଉ ଯାହା ହେଉ ପଛକେ କାହାକୁ ହତ୍ୟା କରିବାର ଦୁଃସାହସ ତା'ର ଥିଲାପରି ମୋର ମନେ ହେଉ ନାହିଁ ।

ଦେବନାଥବାବୁ ଟିକିଏ ନୀରବ ରହି କହିଲେ : କେସ୍‌ଟା କିନ୍ତୁ ଲଳିତା ମାଲହୋତ୍ରାଙ୍କ ସପକ୍ଷରେ ମୋଟେ ଯାଉ ନାହିଁ । ଏତେ ବେଳଯାଏ ଇନ୍‌ଭେଷ୍ଟିଗେସନରୁ ଯାହା ମନେ ହେଉଛି ଲଳିତା କାଲି ରାତିରେ ସନତ୍ ମଜୁମଦାର.ରୁମ୍‌କୁ ଯାଇଥିଲା ।

: ଆଚ୍ଛା, ଯେକୌଣସି କାରଣରୁ ହେଉ, ସନତ୍ ମଜୁମଦାର ନିଜେ ତ ଆତ୍ମହତ୍ୟା କରି ପାରିଥାଏ ? ମୁଁ କହିଲି ।

ଦେବନାଥବାବୁ କହିଲେ : କେସଟା ଯେ ଆତ୍ମହତ୍ୟା ନୁହେଁ, ସେ କଥା ମୁଁ ପ୍ରଥମେ ଜାଣିପାରିଥିଲି । କାରଣ କେହି ଜଣେ ଆତ୍ମହତ୍ୟା କରିବାର ସିଦ୍ଧାନ୍ତ ନେଲେ ତା ମନର ଅବସ୍ଥା ସଂପୂର୍ଣ୍ଣ ଭିନ୍ନ ପ୍ରକାର ହୋଇ ଯାଇଥାଏ । ଯା' ଫଳରେ ତା'ର ଆତ୍ମହତ୍ୟା ପୂର୍ବର କାର୍ଯ୍ୟ କଳାପଗୁଡ଼ାକୁ ଖାପଛଡ଼ା ହୋଇ ଦେଖାଦେଇଥାଏ । ସନତ୍ ମଜୁମଦାରଙ୍କ କେସଟା କିନ୍ତୁ ସଂପୂର୍ଣ୍ଣ ସୁସ୍ଥ ମନର ପରିଚୟ ଦେଉଛି । ଏପରିକି ସେ ଯେଉଁ ବହି ଖଣ୍ଡିକ ଫିଟାଇ ପଢୁଥିଲେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେହି ବହିରୁ ନୋଟ୍ ସେ ଗୋଟାଏ ଖାତାରେ କରିଛନ୍ତି। ଦୁଧ ଗ୍ଲାସ୍‌ଟା ଟେବୁଲ୍ ଉପରେ ଅଧାପିଆ ହୋଇ ରଖାହୋଇଛି । ଅବଶ୍ୟ ସେହି ଦୁଧଗ୍ଲାସ୍‌ରେ ବିଷ ମିଶାଇ ତାଙ୍କୁ ଯେ ହତ୍ୟା କରାହୋଇଛି ଅପାତତଃ ଆମର ସେଇଆ ଧାରଣା । ବଳକା ଦୁଧତକ ପରୀକ୍ଷା ପରେ ଓ ପୋଷ୍ଟ ମର୍ଟମ ପରେ ସବୁ ଧରାପଡ଼ିବ ।

ମୁଁ କହିଲି : ବର୍ତ୍ତମାନ ଲଳିତାକୁ ଯାମିନ୍‌ରେ ଆଣିବାର ବାଟ କ'ଣ ଅଛି ?

: କିଛି ନାହିଁ । ସେଥିପାଇଁ ଅଯଥା ଚେଷ୍ଟା ନ କରିବା ହିଁ ଭଲ । ଆମେ ତଳ ତାଲାରେ ମୃତ ସନତ୍ କୁମାରଙ୍କ ରୁମ୍‌ରେ ପହଞ୍ଚିଲା ବେଳକୁ ମିଷ୍ଟର ରାଜଗୁରୁ କାମ ଶେଷ କରି, ଦୁଆରେ ତାଲା ଲଗେଇ ବାହାରି ଆସୁଥିଲେ । ଆମକୁ ଦେଖି ଅଟକି ଯାଇ କହିଲେ : ଆପଣ ମିଷ୍ଟର ଦାସ ?

ମୁଁ ଅବାକ ହୋଇ ତାଙ୍କ ମୁହଁକୁ ଚାହିଁଲି ।

ସେ କହିଲେ : ମିଷ୍ଟର ଦେବନାଥ କିଛି ସମୟ ପୂର୍ବରୁ ଆପଣଙ୍କ କଥା କହୁଥିଲେ । ଏ କ୍ଷେତ୍ରରେ ଆମର ଆପଣଙ୍କ ସାହାଯ୍ୟ ମଧ୍ୟ ଆବଶ୍ୟକ । ମୁଁ ଆପଣଙ୍କ ପରିଚୟ ମିଷ୍ଟର ଦେବନାଥଙ୍କଠାରୁ ଶୁଣିଲି । ଆପଣ ଯେ ଜଣେ ଲେଖକ, ଜାଣି ସବୁଠାରୁ ବେଶି ଖୁସି ହେଲି ।

: ମୁଁ ବି ଆପଣଙ୍କ ସମ୍ବନ୍ଧରେ ମିଷ୍ଟର ଦେବାନାଥଙ୍କଠାରୁ କିଛି କିଛି ଶୁଣିଛି ।

ରାଜଗୁରୁ ହସି ଉଠିଲେ । କହିଲେ : ଚୋର ଡକେଇତ, ଦାଗୀ ଖୁଣୀମାନଙ୍କ ସହିତ ମୋର କାରବାର। ମୁଁ ଭଲମଣିଷ ହୋଇଥିବି ବୋଲି ଆପଣ କ'ଣ ଆଶା କରୁଛନ୍ତି ?

ଆମେ ସମସ୍ତେ ଏକା ସଂଗରେ ହସିଉଠିଲୁ ।

ରାଜଗୁରୁ କହିଲେ : ଲଳିତା ମାଲହୋତ୍ରାଙ୍କ ମା'ଙ୍କ ସହିତ ଟିକିଏ ଦେଖା କରିବାର ଥିଲା । ତାଙ୍କ ସହିତ ଦେଖା ହୋଇପାରିବ ?

ଅବଶ୍ୟ ସେ ପ୍ରଶ୍ନଟା ଦେବନାଥଙ୍କୁ କରିଥିଲେ । ମୁଁ କିନ୍ତୁ ଉତ୍ତର ଦେଲି : ଭଦ୍ରମହିଳା ଆମ ଘରେ ଅଛନ୍ତି : ଆପଣ ଆସନ୍ତୁ । ସେ ବି ଆପଣଙ୍କ ସାହାଯ୍ୟ ଆଶା କରୁଥିଲେ ।

: କିଛି ଲାଭ ନାହିଁ, ରାଜଗୁରୁ କହିଲେ । ଆମେ ବିରୋଧୀ ଦଳ । ବର୍ତ୍ତମାନଠାରୁ ଆମର କାମ ହେବ ଲଳିତା ମାଲହୋତ୍ରାଙ୍କୁ ଦୋଷୀ ସାବ୍ୟସ୍ତ କରିବା । ସେଥିପାଇଁ ତାଙ୍କ ବିରୋଧରେ ସବୁ ପ୍ରକାର ଦୋଷ ତ୍ରୁଟି ଆମେ ଖୋଜି ବୁଲିବୁ; ବରଂ ଆପଣ ତାଙ୍କୁ ଗୋଟିଏ ଭଲ ଓକିଲ ଖୋଜି ଦିଅନ୍ତୁ । ଯିଏ ଆମର ଯୁକ୍ତି ଖଣ୍ଡନ କରି ଲଳିତା ମାଲହୋତ୍ରାଙ୍କୁ ନିର୍ଦ୍ଦୋଷରେ ଖଲାସ କରି ଦେଇ ପାରିବେ ।

ଆମେ ତିନିଜଣଯାକ ଉପରକୁ ଉଠିଥିଲୁ । ଦୋତାଲାରେ ଆମ ଘର ସାମ୍‌ନାରେ ଠିଆହୋଇ କହିଲି: ଭିତରକୁ ଆସନ୍ତୁ । ଏଇଠି ଯମୁନା ଦେବୀ ଅଛନ୍ତି ।

ରାଜଗୁରୁ କିନ୍ତୁ ମନାକଲେ । କହିଲେ : ଯମୁନା ଦେବୀଙ୍କୁ କୁହନ୍ତୁ ସେ ତାଙ୍କ ଫ୍ଲାଟ୍‌କୁ ଆସିବେ । ଲଳିତା ଯେଉଁ ରୁମ୍‌ରେ ରୁହନ୍ତି, ମୋର ସେଇ ରୁମ୍‌ଟା ଟିକିଏ ପରୀକ୍ଷା କରିବାର କଥା । ଅବଶ୍ୟ ଯମୁନା ଦେବୀ ଯଦି ବାଧା ଦିଅନ୍ତି, ମୁଁ ତାଙ୍କୁ ବିରକ୍ତ କରିବି ନାହିଁ ।

କିନ୍ତୁ ରାଜଗୁରୁଙ୍କ ପ୍ରସ୍ତାବରେ ଯମୁନା ଦେବୀ ବାଧା ଦେଲେ ନାହିଁ । ମୋ ମୁହଁରୁ ପ୍ରସ୍ତାବଟା ଶୁଣିବା ସଙ୍ଗେ ସଙ୍ଗେ ସେ ଉଠିଆସି ଘର ଖୋଲିଲେ । ତିନି ରୁମ୍‌ର ଫ୍ଲାଟ୍ । ଗୋଟିଏ ରୁମ୍ ଲଳିତାର, ଆଉ ଗୋଟିଏ ରୁମ୍ ଯମୁନା ଦେବୀଙ୍କର ଏବଂ ଅନ୍ୟ ରୁମ୍‌ଟି ଡ୍ରଇଂରୁମ୍ ଭାବରେ ବ୍ୟବହୃତ ହୁଏ ।

ରାଜଗୁରୁ କେବଳ ଲଳିତା ରୁମ୍‌ଟି ଭିତରେ ପ୍ରବେଶ କଲେ । ଖୁବ୍ ସଂକ୍ଷିପ୍ତ ସାଜସଜ୍ଜା । ଗୋଟିଏ ଖଟ, ଗୋଟିଏ ଟେବୁଲ୍, ଗୋଟିଏ ଆଲମାରି, ଦୁଇଟି ଚେଆର, ଏବଂ ଗୋଟିଏ ର୍ୟାକ୍। ର୍ୟାକ୍‌ରେ କେତେଖଣ୍ଡି ବହି । ଟେବୁଲ୍ ଉପରେ ଖାତାପତ୍ର ଓ ବହିପତ୍ର ଅସଜଡ଼ା ହୋଇ ପଡ଼ିଛି ।

ରାଜଗୁରୁ ଟେବୁଲ୍ ଡ୍ରୟାର ଟାଣି ଦେଖିଲେ । ବହି ଗୋଟାଏ ଦି'ଟା ଉଠାଇ ଖେଳେଇଲେ । ଖାତା ଖଣ୍ଡେ ଦିଖଣ୍ଡ ଟାଣି ଖେଳେଇ ପକାଇଲେ । ତା'ପରେ ମୋ ଆଡ଼େ ଚାହିଁ ପଚାରିଲେ : କିଛି ଦେଖିପାରୁଛନ୍ତି ?

ମୁଁ ହସିଲି, କହିଲି : ଆପଣ ଯାହା ଖୋଜୁଛନ୍ତି ପାଉ ନାହାନ୍ତି । ମୋ ଅନୁମାନ ଠିକ୍ ତ ?

ରାଜଗୁରୁ କହିଲେ: ଆପଣ ଠିକ୍ ଧରିଛନ୍ତି । ଏ ଲାଇନ୍‌ରେ ଆପଣ ଉନ୍ନତି କରିବେ ।

ମୁଁ କହିଲି : ଉନ୍ନତି ଅବନତି କଥା ପରେ ଚିନ୍ତା କଲେ ଚଳିବ, ବର୍ତ୍ତମାନ ମୋ'ର ପ୍ରଧାନ ଚିନ୍ତା ହେଉଛି ଲଳିତାର ମୁକ୍ତି ।

ରାଜଗୁରୁ ହସି ହସି କହିଲେ : ମୋ'ର ଠିକ୍ ତା'ର ବିପରୀତ । ତେଣୁ ଆସନ୍ତୁ ଦୁହେଁ ଏକା ସଂଗରେ କାମ କରିବା । ଜୟ-ପରାଜୟ...

ରାଜଗୁରୁ ଡ୍ରୟାର ଭିତରୁ କ'ଣ ଗୋଟାଏ ଦେଖି ହଠାତ୍ ଅଟକି ଗଲେ । ମୁହଁ ବି ତାଙ୍କର ବନ୍ଦହୋଇଗଲା । କିଛି ସମୟ ସେ ଡ୍ରୟାର ଭିତରକୁ ଅନାଇ ରହି ମୋତେ କହିଲେ : ଆପଣଙ୍କ ପଛଆଡ଼େ କିଏ ଦେଖିଲେ ?

ମୁଁ ଭାବିଥିଲି କିଏ ଆସୁଛି ବୋଧେ; କିନ୍ତୁ ପଛଆଡୁ ନିରାଶ ହୋଇ ଯେତେବେଳେ ପୁଣି ରାଜଗୁରୁଙ୍କ ଆଡ଼କୁ ଅନାଇଲି, ଦେଖିଲି ତାଙ୍କ ହାତଟା ପକେଟରୁ ବାହାରି ଆସୁଛି । ବୋଧହୁଏ ସେ ଡ୍ରୟାରରୁ କୌଣସି ଏକ ପଦାର୍ଥ ନେଇ ପକେଟରେ ରଖିଲେ ।

ମୁଁ ହସି ହସି କହିଲି: ଆପଣ ତ ବିପକ୍ଷରେ ଗୋଟି ଗୋଟି କରି ପ୍ରମାଣ ସଂଗ୍ରହ କରିବାରେ ଲାଗିଛନ୍ତି, ସପକ୍ଷରେ ଏତେବେଳଯାଏ ମୁଁ ତ କିଛି ପାଇଲି ନାହିଁ ।

ରାଜଗୁରୁ ହସିଲେ । ତାଙ୍କ ହସଟି ଭାରି ସୁନ୍ଦର । ହସ ଦେଖିଲେ ମନେ ହୁଏନା ସେ ଏପରି ଏକ ସଂସ୍ଥାର ପଦସ୍ଥ ଅଫିସର ।

କହିଲେ : ଚେଷ୍ଟା କଲେ ଆପଣ ସପକ୍ଷରେ ଅନେକ ପ୍ରମାଣ ପାଇବେ । ତେବେ ଏତିକି ମୁଁ ଆପଣଙ୍କୁ କହୁଛି, ଲଳିତା ମାଲହୋତ୍ରାଙ୍କ ବିରୋଧରେ ଆମର ସଂଗୃହୀତ ପ୍ରମାଣ ଖୁବ୍ ଦୁର୍ବଳ । ଅବଶ୍ୟ ଫିଙ୍ଗର ପ୍ରିଣ୍ଟ, ଫୁଟ୍ ପ୍ରିଣ୍ଟ, ଅନ୍ୟ ଏଭିଡେନ୍‌ସ କେତେଗୁଡ଼ାଏ ମିଳିଛି, ତେବେ ସେସବୁ ଲଳିତାଙ୍କ ବିରୋଧରେ ପ୍ରମାଣିତ କରିବାକୁ କେତେଦୂର ସମ୍ଭବ ହେବ, ସେଗୁଡ଼ିକର ପରୀକ୍ଷା ଶେଷ ହେଲେ ଜଣାପଡ଼ିବ ।

ବାହାରେ ଯମୁନା ଦେବୀ ଆସି ଠିଆହେଲେ । ମୁଁ ଆଗେଇ ଯିବାରୁ ସେ ମୋତେ ଚାବି ନେନ୍ଥାଏ ଦେଇ କହିଲେ : ଏହା ଭିତରେ ଏ ଘର ଆଲମାରିର ଚାବି ଅଛି ।

ରାଜଗୁରୁ ମନା କଲେ । କହିଲେ : ଆଲମାରି ଖୋଲିବା କିଛି ଦରକାର ନାହିଁ । ମୋର କାମ ଶେଷ ହୋଇଛି । ଚାଲନ୍ତୁ ।

ଆମେ ବାହାରକୁ ବାହାରି ଆସିଲୁ । ରାଜଗୁରୁ ଯମୁନା ଦେବୀଙ୍କୁ କୌଣସି ପ୍ରଶ୍ନ କଲେ ନାହିଁ; କିନ୍ତୁ ଡ୍ରୟାରରୁ କ'ଣ ବାହାର କରି ପକେଟ୍‌ରେ ରଖିଲେ, ମୁଁ ବହୁ ଚିନ୍ତା କରି ବି କିଛି ଠିକ୍ କରି ପାରୁ ନଥିଲି ।

ଲଳିତା ମାଲହୋତ୍ରା ହତ୍ୟା ଅପରାଧରେ ଅପରାଧିନୀ ।

କୌଣସି ପ୍ରକାର ଜାମିନ୍‌ରେ ଛାଡ଼ପାଇବାର ଉପାୟ ନାହିଁ । ଯମୁନା ଦେବୀ ଖୁବ୍ ଚିନ୍ତିତ । ଝିଅର ମୁକ୍ତିର ପଥ ସେ ଖୋଜି ପାଉ ନାହାନ୍ତି ।

କିନ୍ତୁ ଲଳିତା ମାଲହୋତ୍ରା କ'ଣ ପ୍ରକୃତରେ ଖୁଣୀ ଆସାମୀ ? ମୁହଁ ଦେଖିଲେ ସେପରି ତ ମନେ ହୁଏ ନାହିଁ । ଲଳିତା ମାଲହୋତ୍ରା ଖୁବ୍ ଆଧୁନିକା, ଏ କଥା ଅନସ୍ୱୀକାର୍ଯ୍ୟ; କିନ୍ତୁ ଆଧୁନିକା ହେଲେ ଯେ ଖୁନ୍ କରିବାକୁ ହୁଏ ଏପରି କିଛି ନିର୍ଦ୍ଦିଷ୍ଟ ନିୟମ ତ ନାହିଁ ।

ଅବଶ୍ୟ ପୋଷ୍ଟମର୍ଟମ ରିପୋର୍ଟରୁ ସନତ୍ ମଜୁମଦାରଙ୍କ ପେଟରୁ ବିଷ ବାହାରିଛି । ସେଇ ବିଷ ଧରାପଡ଼ିଛି ଦୁଧ ଗ୍ଲାସରୁ । ଯେଉଁ ଅଧାପିଆ ଦୁଧଗ୍ଲାସ୍‌ଟା ପରୀକ୍ଷା ପାଇଁ ନିଆ ହୋଇଥିଲା, ସେଇ ଗ୍ଲାସ ଭିତରେ ଦୁଧ ସହିତ ବିଷ ମିଶା ହୋଇଥିଲା । ପୋଲିସ୍ ବିଭାଗ ସ୍ଥିର ନିଶ୍ଚିତରେ ପହଞ୍ଚିଛନ୍ତି ଯେ, ସେଇ ଅର୍ଦ୍ଧଗ୍ଲାସ ଦୁଧ ପିଇ ସନତ୍ ମଜୁମଦାରର ମୃତ୍ୟୁ ଘଟିଛି । ଗ୍ଲାସ୍‌ରୁ ଯେଉଁ ଫିଙ୍ଗର ପ୍ରିଣ୍ଟ୍ ମିଳିଛି, ସେ ସନତ୍ ମଜୁମୁଦାରର । ଅନ୍ୟ କାହାରି ଆଙ୍ଗୁଳି ଚିହ୍ନ ସେ ଗ୍ଲାସରେ ନାହିଁ ।

କିନ୍ତୁ ବିଚାରି ଲଳିତା ମାଲହୋତ୍ରାର ଅପରାଧ କେଉଁଠି ? ସନତ୍ ମଜୁମଦାରର ମୃତ୍ୟୁ ପାଇଁ ସେ କାହିଁକି ଦାୟୀ ହେବ ?

ରାଜଗୁରୁଙ୍କ ଧାରଣା କିନ୍ତୁ ବେଳକୁ ବେଳ ଦୃଢ଼ ହେଉଛି । ଯଦିଓ ସେ ସ୍ପଷ୍ଟ ଭାଷାରେ ଲଳିତାକୁ ଅପରାଧୀ ବୋଲି କହୁ ନାହାନ୍ତି, ତାଙ୍କର ଆଚାର, ଇଙ୍ଗିତ୍ ଲଳିତାକୁ ଦୋଷୀ ସାବ୍ୟସ୍ତ କରୁଛି । କେଜାଣି କାହିଁକି ଏ କେତେ ଦିନ ହେବ, ମୁଁ ମୋର ସବୁ କାମଧନ୍ଦା ଛାଡ଼ି ଏଇ କେସ୍ ପଛରେ ଧାଇଁ ବୁଲୁଛି ।

ସବୁଠୁ ବେଶ ମୁଁ ଉତ୍କଣ୍ଠିତ ହୋଇପଡ଼ିଛି ଲଳିତାର ପରିଚୟ ଜାଣିବା ପାଇଁ । ଲଳିତା ଯେ ଯମୁନା ଦେବୀଙ୍କ କନ୍ୟା ଏକଥା ଅନସ୍ୱୀକାର୍ଯ୍ୟ; କିନ୍ତୁ ଲଳିତାର ପିତୃ ପରିଚୟ ସମ୍ବନ୍ଧରେ କେଜାଣି କାହିଁକି ମୋ ମନରେ ସନ୍ଦେହ ଜାଗିଛି ।

ଆଉ ସେ ସନ୍ଦେହ ଦୃଢ଼ କରୁଛି ଯମୁନା ଦେବୀଙ୍କ ଆଚରଣ । ସେ ଯେପରି ତାଙ୍କ ସ୍ୱାମୀଙ୍କ ସମ୍ବନ୍ଧରେ ବହୁତ କଥା ଲୁଚେଇ ରଖିବାକୁ ଚାହୁଁଛନ୍ତି । ଆହୁରି ସେ ଲୁଚେଇବାକୁ ଚାହୁଁଛନ୍ତି ତାଙ୍କର ବଂଶ ପରିଚିତି । ସେଲିର ମା' ଓ ବାବା ସମ୍ବନ୍ଧରେ ମଧ ସେ ସ୍ପଷ୍ଟ କିଛି ପ୍ରକାଶ କରିବାକୁ ଚାହୁଁ ନାହାନ୍ତି ।

ତାଙ୍କର ଏ ଗୋପନତା ଭିତରେ ହୁଏତ ନାନା ପାରିବାରିକ କାରଣ ଥାଇପାରେ । ହୁଏତ ବହୁ ଦ୍ୱନ୍ଦ୍ୱ, ମନୋମାଳିନ୍ୟ ଅନେକ ସମୟରେ ମଣିଷର ମେରୁଦଣ୍ଡ ଭାଙ୍ଗିଦେଇ, ମଣିଷକୁ ବିପଥରେ ପରିଚାଳିତ କରିଥାଏ; ତଥାପି କେଜାଣି କାହିଁକି ଆଜି ଯମୁନା ଦେବୀ ଆଉ ଲଳିତା ମାଲହୋତ୍ରା ମୋ ଆଖି ଆଗରେ ଏକ ରହସ୍ୟର ଆବରଣ ତଳେ ଲୁଚି ରହିଲା ପରି ମନେହେଉଛନ୍ତି ।

ଦୀର୍ଘ ଦୁଇବର୍ଷ ଆମେ ଏକାଠି ବାସ କରିଛୁ । ଗୋଟିଏ କୋଠାରେ, ଗୋଟିଏ ତାଲାରେ । ଆମ ବାରଣ୍ଡାରୁ ତାଙ୍କ ଘରର ଫୁଲଗଛ ଦିଶେ, ତାଙ୍କ ଝରକାକୁ ଆମ ଘରର

ଗୀତ ଶୁଣାଯାଏ । ବାରଣ୍ଡାରେ ଠିଆ ହୋଇ ଆମେ ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତା ହେଉ । ସେଲି ଆଉ ଲୁସି ତ ଦି'ନି ଏ ଘର ସେ ଘର ହୁଅନ୍ତି । ଲଳିତା ବେଳେ ବେଳେ ଆସେ ଆମ ଘରକୁ । ଯମୁନା ଦେବୀ ବି ଆସନ୍ତି ଅକାଳେ ସକାଳେ । ପର୍ବ-ପର୍ବାଣି ଉତ୍ସବ ଅନୁଷ୍ଠାନରେ ପିଠା-ପଣା ବିନିମୟ ହୁଏ । ଆମେ ତାଙ୍କର ଆଉ ସେ ଆମର ବିଶ୍ୱସ୍ତ ପ୍ରତିବେଶୀ ପରି ଦୀର୍ଘ ଦୁଇବର୍ଷ କଟାଇ ଆସିବା ପରେ ଆଜି ହଠାତ୍........

ନା, ହଠାତ୍ ନୁହେଁ । ବହୁ ପୂର୍ବରୁ ଏହିପରି ଏକ ସନ୍ଦେହ ମୋ ମନରେ ଜାଗିବା ଉଚିତ ଥିଲା: କାରଣ ମୋ ସ୍ତ୍ରୀ ବେଳେ ବେଳେ ତାଙ୍କ ସମ୍ବନ୍ଧରେ କିଛି କିଛି ଆପତ୍ତିକର କଥା ମୋ କାନରେ ପହଞ୍ଚାଉଥିଲେ । ମୁଁ ଶୁଣୁ ନଥିଲି । ଉତ୍ତର ବି ହୁଏତ ଦେଉ ନଥିଲି କେବେ ଅଥବା ଉତ୍ତରଦେବାକୁ ଯାଇ କହୁଥିଲି, ପାରିବାରିକ ଜୀବନରେ ନାନା ଦ୍ୱନ୍ଦ୍ୱ, ନାନା ସମସ୍ୟା ରହିଛି । କାହାରି ଘରୋଇ ସମସ୍ୟାରେ ମୁଣ୍ଡଖେଳେଇବା ଆମର ଉଚିତ ନୁହେଁ ।

ଆଉ ବେଳେବେଳେ ସୁତପା ସେମାନଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠୁଥିଲେ ଯଦିଓ ଲଳିତା ତାଙ୍କ ଆଖି ଆଗରେ ଉଗ୍ର ଆଧୁନିକାର ଆଖ୍ୟା ନେଇଥିଲା । ପୋଷାକ ପରିଚ୍ଛଦରେ କିନ୍ତୁ ତା'ର ଆଚରଣ ସୁତପାଙ୍କୁ ମୁଗ୍ଧ କରିଥିଲା । ବେଳେବେଳେ ସେ ମୋତେ କହିବାର ଶୁଣିଛି, ହାଇ ସୋସାଇଟିରେ ମିଶିବାକୁ ହେଲେ ଏହିପରି ପୋଷାକ ପରିଚ୍ଛଦର ଆବଶ୍ୟକ । ଆମ ଦୃଷ୍ଟିକି ସିନା କଟୁ ଲାଗୁଛି, ହେଲେ ଝିଅଟାର ଅନ୍ତର କିନ୍ତୁ ଭାରି ମଧୁର ।

ସୁତପା ଲଳିତା ପରିବାର ସପକ୍ଷରେ ଓ ବିପକ୍ଷରେ ନାନା ସମୟରେ ନାନା କଥା କୁହନ୍ତି । ସେମାନେ ବି ଆମ ସମ୍ବନ୍ଧରେ ମା' ଝିଅ କେତେ କଥା ହେଉଥିବେ । ଦୁନିଆର ରୀତି ଏଇଟା । ସେଇଥି ପାଇଁ ମୁଁ ସବୁ ଶୁଣି ବି କିଛି ନ ଶୁଣିଲା ପରି ନୀରବ ରହେ ।

କିନ୍ତୁ ଆଜି ହଠାତ୍ କାହିଁକି ଲଳିତାର ବଂଶାନୁକ୍ରମିକ ପରିଚିତି ଜାଣିବା ପାଇଁ ମୁଁ ଉତ୍କଣ୍ଠିତ ହୋଇପଡ଼ିଲି ବୁଝିପାରୁ ନାହିଁ ।

ମଝିରେ ମଝିରେ ରାଜଗୁରୁଙ୍କ ସହିତ ଦେଖାହୁଏ । ଦେବନାଥ ବି ଦେଖା ହୁଅନ୍ତି । ସେମାନେ ତାଙ୍କ ପଥରେ ଆଉ ମୁଁ ମୋ ପଥରେ ଯେପରି ଆଗେଇ ଚାଲିଛୁ । ଆମେ ଯେପରି ବିରାଟ ଏକ ଗୋପନ ତଥ୍ୟ ଅବିଷ୍କାର କରିବା ପାଇଁ ସମସ୍ତେ ଲାଗିପଡ଼ିଛୁ; କିନ୍ତୁ କେହି କାହାରି ଆଗରେ ସେହି ସୂତ୍ର ଉନ୍ମୋଚନ କରିବା ପାଇଁ ପ୍ରସ୍ତୁତ ନୋହୁଁ । ଯେ ଯାହାର ବାଟରେ ଆମେ ସଗର୍ବରେ ଆଗେଇ ଚାଲିଛୁ ।

କିନ୍ତୁ ବିଚାରୀ ଲଳିତା.....

ଆମେ ପ୍ରଥମେ ଯେଉଁଦିନ ଏ ଘରକୁ ଆସିଥିଲୁ, ସେ ଦିନର କଥା ମନେ ଅଛି ଆଜି ବି । ଜିନିଷପତ୍ର ଆଣି ସଜାଡୁ ସଜାଡୁ ଆମର ସେଦିନ ଅନେକ ଡେରି ହୋଇ ଯାଇଥିଲା । ଲଳିତା ଇତ୍ୟବସରରେ ଆସି ସୁତପାଙ୍କ ସହିତ ପରିଚୟ କରି ନେଇଥିଲା । ଚା' ଓ ବିସ୍କୁଟ୍ ଆଣି ଆମକୁ ଖୁଆଇଥିଲା । ଲୁସିକି ତାଙ୍କ ଘରକୁ ଡାକିନେଇ ସେଲି ସହିତ ସାଙ୍ଗ କରେଇ ଦେଇଥିଲା । ପ୍ରଥମ ଦୁଇ ତିନିଦିନ ଲୁସି ସହଜରେ ସାଙ୍ଗ ଛାଡ଼ି ଆମ ଘରକୁ ଆସିବାକୁ ମଙ୍ଗି ନ ଥିଲା ।

ସେଦିନ ରାତ୍ରି ଭୋଜନ ହୋଇଥିଲା ଲଳିତାଙ୍କ ଘରେ; କାରଣ ଆମ ଘର ସଜଡ଼ା କାମ ଶେଷ କରି ଆଉ ରୋଷେଇ କରି ଖାଇବା ଭଳି ଅବସ୍ଥାରେ ନଥିଲୁ । ଯମୁନା ଦେବୀ ଆମର ଖୁବ୍ ଯତ୍ନ ନେଇଥିଲେ । ଆଦର କରି ଖୁଆଇଥିଲେ, ମଣିଷର ପରସ୍ପର ପ୍ରତି ସହଯୋଗିତା ନ ରହିଲେ ସମାଜର ମେରୁଦଣ୍ଡ ଭାଙ୍ଗି ପଡ଼ିବ ବୋଲି ଉପଦେଶ ଦେଇଥିଲେ । ଆହୁରି କହିଥିଲେ, ଆମର ପ୍ରତିବେଶୀମାନଙ୍କ କଥା । ଏ କୋଠାରେ ଯେଉଁମାନେ ଅଛନ୍ତି, ସେମାନେ କେହି ସାମାଜିକ ନୁହନ୍ତି । କୌଣସି ସଂପର୍କ ରଖିବାକୁ ଚାହାନ୍ତି ନାହିଁ ଆମ ସହିତ । ଆମେ ବି ଏ କେଇ ମାସରେ କ୍ଳାନ୍ତ ହୋଇପଡ଼ିଥିଲୁ । ଆପଣମାନେ ଆସି ନଥିଲେ ଆମର ଅବସ୍ଥା ଯେ କ'ଣ ହୋଇଥାନ୍ତା....

ଲଳିତା ସ୍ମୃତପାଙ୍କୁ ପ୍ରଥମ ଦିନରୁ ଭାଉଜ ବୋଲି ଡାକିବାକୁ ଆରମ୍ଭ କରି ଦେଇଥିଲା । ମୋତେ ଡାକୁଥିଲା ଭାଇ ।

ଯମୁନା ଦେବୀ ତାଙ୍କ ପରିଚିତି ଆମ ଆଗରେ କହିଥିଲେ । ସେମାନେ ମଧ୍ୟପ୍ରଦେଶର ବ୍ରାହ୍ମଣ । କେବେ ମଧ୍ୟପ୍ରଦେଶରେ କେଉଁଠି ତାଙ୍କର ଘର ଥିଲା, ସେ କଥା ଆଜି ତାଙ୍କୁ ପଚାରିଲେ ସେ ଉତ୍ତର ଦେଇପାରିବେ ନାହିଁ । କାରଣ ଯମୁନା ଦେବୀଙ୍କର ଜନ୍ମ କଲିକତାରେ । ଏଠାକାର ପାଣି, ପବନରେ ସେ ବଡ଼ ହୋଇଛନ୍ତି । ତାଙ୍କର କେଉଁ ପୁରୁଷରୁ କିଏ ଆସି କଲିକତାରେ ସ୍ଥାୟୀ ଆସନ ଜମେଇଥିଲା , ସେ କଥା ହୁଏତ ଯମୁନା ଦେବୀଙ୍କର ମନେଥିବ; କିନ୍ତୁ ସେ ପ୍ରଶ୍ନ ମୁଁ ତାଙ୍କୁ ପଚାରି ନଥିଲି ।

ସେ କହି ଚାଲିଥିଲେ ମନକୁ ମନ ଶଶୁରଘର ଜମିବାଡ଼ି ଓ ଘରଦ୍ୱାର ୟୁ. ପି.ରେ ଥିଲା । ଯମୁନା ଦେବୀ ଥରେ ଯାଇଥିଲେ ଅନେକ ବର୍ଷ ଆଗରୁ । ତା'ପରେ ସେଗୁଡ଼ା ବିକ୍ରି କରିଦେଇଥିଲେ । ଲଳିତାର ଜନ୍ମ ଏଇ କଲିକତାରେ । ତେଣୁ ସେ ମାତୃଭାଷା ଏକ ପ୍ରକାର ଭୁଲିଯାଇଛନ୍ତି ।

ଯମୁନା ଦେବୀ ଉଚ୍ଛ୍ୱସିତ କଣ୍ଠରେ ସେଦିନ ଆହୁରି ଅନେକ କଥା କହିଥିଲେ, ତାଙ୍କ ସ୍ୱାମୀଙ୍କ କଥା, ସ୍ୱାମୀଙ୍କ ଉନ୍ନତି ପଥରେ ଯମୁନା ଦେବୀଙ୍କ ସହଯୋଗିତାର କଥା ।

ଯମୁନା ଦେବୀ ସର୍ବମୋଟ ତିନି ସନ୍ତାନର ଜନନୀ । ଗୋଟିଏ ପୁଅ ଓ ଦୁଇଟି ଝିଅ । ସବୁଠୁ ବଡ଼ ହେଉଛି ପୁଅ । ଯମୁନା ଦେବୀଙ୍କୁ ମାତ୍ର ଅଠରବର୍ଷ, ସେତେବେଳେ ପୁଅ ଜନ୍ମ ହୋଇଥିଲା । ସେ ପୁଅ ବର୍ତ୍ତମାନ ଆମେରିକାରେ, ଉଚ୍ଚ ଶିକ୍ଷା ପାଇଁ ଯାଇ ଆଜିଯାଏ ଫେରି ନାହିଁ । ଲୋକମୁଖରୁ ଶୁଣୁଛନ୍ତି ସେ କୁଆଡ଼େ ସେଇଠି ଗୋଟିଏ ଆମେରିକାନ ଝିଅ ବିବାହ କରି ସୁଖରେ ଅଛି । ଇଣ୍ଡିଆକୁ ଫେରିବାକୁ ତା'ର ଆଉ ଆଗ୍ରହ ନାହିଁ । ଯମୁନା ଦେବୀ କିନ୍ତୁ ଲୋକମୁଖର ସେହି ଶୁଣା କଥା ବିଶ୍ୱାସ କରନ୍ତି ନାହିଁ । ସଞ୍ଜୟତାଙ୍କୁ ମଝିରେ ମଝିରେ ଚିଠିଦିଏ । ତା'ର ପାଠପଢ଼ା ଶେଷ ହୋଇଛି । କ'ଣ ଗୋଟାଏ ଦୁଇବର୍ଷିଆ ଟ୍ରେନିଂରେ ଅଛି ସେଠି । ସେତକ ଶେଷ ହେଲେ ସେ ଇଣ୍ଡିଆକୁ ଫେରିଆସିବ ।

ଆଉ ଦ୍ୱିତୀୟ ସନ୍ତାନ ହେଉଛି କନ୍ୟା । ସେଲିର ମା'। ତାକୁ ସେ ଇଣ୍ଟର ମିଡିଏଟ୍ ଯାଏ ପଢ଼ାଇଥିଲେ । ହଠାତ୍ ଗୋଟିଏ ଭଲ ପାତ୍ର ପାଇ ବିବାହ ଦେଇଥିଲେ । ସୁଖରେ ଥିଲା ସେ । ବିବାହର ଦୁଇବର୍ଷ ପରେ ସେଲିର ଜନ୍ମ । ସେଲି ଜନ୍ମର ଚାରିବର୍ଷ ପରେ ଝିଅର ମୃତ୍ୟୁ ହେଲା । ସେଇଦିନୁ ସେଲି ଯମୁନା ଦେବୀଙ୍କ ଘରେ । କାରଣ ଜ୍ୱାଇଁ ଦ୍ୱିତୀୟ

ବିବାହ କଲେ । ସେଲିକୁ ବି ଆଉ ସେ ଖୋଜିଲେ ନାହିଁ; କାରଣ ଲଳିତା ତାଙ୍କୁ ଛାଡ଼ି ଚାଲିଗଲେ ସେ ଏକା ହୋଇଯିବେ । ତେବେ ଲଳିତାର ଇଚ୍ଛା ଉପରେ ସେ ହସ୍ତକ୍ଷେପ କରିବାକୁ ଚାହାନ୍ତି ନାହିଁ । ତା'ର ସ୍ୱାଧୀନ ଗତିବିଧିରେ ସେ ବାଧା ଦିଅନ୍ତି ନାହିଁ । ଲଳିତା ଯେବେ ବିବାହ କରିବାକୁ କେତେବେଳେ ଇଚ୍ଛା ପ୍ରକାଶ କରେ, ତେବେ ଯମୁନା ଦେବୀ ବାଧାଦେବେ ନାହିଁ । ସେ ତା'ର ବିବାହର ସମସ୍ତ ସରଞ୍ଜାମ ସଜାଡ଼ି ରଖିଛନ୍ତି । ଗହଣାଠାରୁ ଆରମ୍ଭ କରି ବାସନକୁସନଯାଏ ସବୁ ସେ କିଣି ସାରିଛନ୍ତି । ଲଳିତାର ଇଚ୍ଛାରେ ସେ କୌଣସି ଦିନ ବାଧାଦେବେ ନାହିଁ ।

ଆଉ ଲଳିତାର ବାପା ?

ଶ୍ୟାମାନନ୍ଦ ମାଲହୋତ୍ରା । ତାଙ୍କ ସମ୍ବନ୍ଧରେ କିଛି କହିବାକୁ ଯମୁନା ଦେବୀଙ୍କର ଯେପରି ବିଶେଷ ଆଗ୍ରହ ନାହିଁ । ଅବଶ୍ୟ ସେଇ ଅନାଗ୍ରହର କାରଣଟା ଆଜି ମୁଁ ଅନୁଭବ କରୁଛି । ଆଗରୁ କେବେ ମୁଁ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ସମ୍ବନ୍ଧରେ ଯମୁନା ଦେବୀଙ୍କ ପକ୍ଷପାତିତ୍ୱ କଥା ଚିନ୍ତା କରି ପାରି ନଥିଲି ।

ତେବେ ଯମୁନା ଦେବୀ ପ୍ରଥମ ଦିନ ତାଙ୍କ ସ୍ୱାମୀଙ୍କ ସମ୍ବନ୍ଧରେ ଯେଉଁ କଥା କହିଥିଲେ, ଆଜି ସବୁ ନ ହେଲେ ବି କିଛିଟା ମନେ ଅଛି । ସ୍ୱାମୀ ତାଙ୍କର ଖୁବ୍ ଉଦାର । ଅତ୍ୟନ୍ତ ପରୋପକାରୀ ଆଉ ସେଇଥିପାଇଁ ସେ ବୋକା । ଲୋକେ ତାଙ୍କୁ ସେମାନଙ୍କ ଅସହାୟତାର କାହାଣୀ କହି ଠକି ଦିଅନ୍ତି । ଶ୍ୟାମାନନ୍ଦବାବୁ କାହାରି ଦୁଃଖ ସହିପାରନ୍ତି ନାହିଁ । ପରର ଦୁଃଖ କାହାଣୀ ଶୁଣିଲେ ତାଙ୍କ ଆଖିରୁ ଲୁହ ଝରେ । ସଙ୍ଗେ ସଙ୍ଗେ ପକେଟ୍ ବି ଖାଲି ହୋଇଯାଏ ।

ଏହିପରି ଏକ ଭାବପ୍ରବଣ ଲୋକ ସହିତ ଘର ସଂସାର କରିବା ଯେ କେତେ କଷ୍ଟ ଯମୁନା ଦେବୀ ତା'ର ଏକ ସଂକ୍ଷିପ୍ତ ଟିପ୍ପଣୀ ଦେଇଥିଲେ; ଆଉ ତା' ସହିତ ସେ ନିଜ କୃତିତ୍ୱର କାହାଣୀ ମଧ୍ୟ ବ୍ୟାଖ୍ୟା କରିଥିଲେ । ଧୀରେ ଧୀରେ କିପରି ସେ ସ୍ୱାମୀଙ୍କୁ ପଥକୁ ଆଣିଲେ । ତାଙ୍କ ମନ ବଦଳାଇ ଅନ୍ୟର ସଂସାର କଥା ଚିନ୍ତା ନ କରି ନିଜ ସଂସାର ଆଡ଼କୁ ଆକୃଷ୍ଟ କରାଇଲେ । ଫଳରେ ଶ୍ୟାମାନନ୍ଦବାବୁ ଦିନକୁ ଦିନ ସବୁ ଚିନ୍ତା ଛାଡ଼ି କେବଳ ନିଜର ଘର ସଂସାର ଓ ପିଲା କୁଟୁମ୍ବଙ୍କ ଚିନ୍ତାରେ ନିମଗ୍ନ ହୋଇପଡ଼ିଲେ ଇତ୍ୟାଦି ଇତ୍ୟାଦି । ଶେଷରେ ସେମାନଙ୍କ ଜୀବନରେ ଏପରି ଏକ ଦିନ ଆସିଲା, ଶ୍ୟାମାନନ୍ଦବାବୁ ଉନ୍ନତିର ଚରମ ଶିଖରକୁ ଉଠି ଆସାମରେ ଚା' ବଗିଚା କିଣିଲେ । ସେଇଦିନଠାରୁ ସେମାନଙ୍କ ଅବସ୍ଥା ବଦଳିଗଲା ।

ଶ୍ୟାମାନନ୍ଦ ମାଲହୋତ୍ରା କେଜାଣି ବୋଧହୁଏ ସେଇଦିନଠାରୁ ଯମୁନା ଦେବୀଙ୍କ ଅନ୍ତରରୁ ଧୀରେ ଧୀରେ ବିଦାୟ ନେଇଥିଲେ; କାରଣ ଯମୁନା ଦେବୀଙ୍କ ମୁହଁରୁ ମୁଁ ଆଉ ତାଙ୍କ ସ୍ୱାମୀଙ୍କ କଥା ଏକ ପ୍ରକାର ଶୁଣିନଥିଲି କହିଲେ ଚଳେ ।

ଏହି ହେଉଛି ଲଳିତା ମାଲହୋତ୍ରାଙ୍କ ପରିବାରର ଇତିହାସ । ଆଜିଯାଏ ଏତିକି ଜାଣିଥିଲି ମୁଁ । ଅଧିକ ଜାଣିବାର ଆଗ୍ରହ ବି ନଥିଲା ମୋ ମନରେ । କୌଣସି ଅଭାବ ଅନଟନର ସମ୍ମୁଖୀନ ହେବାର କେବେ ମୁଁ ଦେଖି ନ ଥିଲି ସେମାନଙ୍କୁ । ସେଇଥିପାଇଁ କୌଣସି ପ୍ରଶ୍ନ ନଥିଲା ମୋ ମନରେ ।

କିନ୍ତୁ ଆଜି ହଠାତ୍ ! ପ୍ରଫେସର ଅରୁଣ ମଜୁମଦାରଙ୍କ ପୁତ୍ରର ମୃତ୍ୟୁରେ ଲଳିତା ଯେପରି ଭାବରେ ଛନ୍ଦି ହୋଇପଡ଼ିଲା, ସତରେ ମୋ' ମନରେ ଅଶେଷ କରୁଣା ଜାଗିଥିଲା ଲଳିତା ପାଇଁ, ମୁଁ ସବୁବେଳେ ଭାବୁଥିଲି ଲଳିତା ନିରପରାଧିନୀ, ଲଳିତାକୁ ମୁଁ ମୁକ୍ତି ଦେଇ ପାରିଲେ ଆତ୍ମ ସନ୍ତୋଷ ଲାଭ କରିବି ।

ଦିନକୁ ଦିନ ଯମୁନା ଦେବୀଙ୍କ ଆଚରଣ ମୋ ମନରେ ଏକ ମାୟା କୁହେଳିକା ସୃଷ୍ଟି କରି ଚାଲିଲା । କିଏ ଯମୁନା ଦେବୀ ? କିଏ ଲଳିତା ? ସେମାନଙ୍କର ବଂଶଗତ ପରିଚୟ ଯାହା ପାଇଥିଲି ଯମୁନା ଦେବୀଙ୍କ ମୁହଁରୁ, ତହିଁର ସତ୍ୟତା ସମ୍ବନ୍ଧରେ ମୋର ସନ୍ଦେହ ସୃଷ୍ଟି ହୋଇଥିଲା ।

ଯମୁନା ଦେବୀ କିନ୍ତୁ ମୋ ଉପରେ ଯଥେଷ୍ଟ ଭରସା ରଖିଥିଲେ । ଲଳିତାର ମୁକ୍ତି ସମ୍ବନ୍ଧରେ ପ୍ରତିଟି ପଦକ୍ଷେପରେ ସେ ମୋର ପରାମର୍ଶ ଲୋଡୁଥିଲେ; କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଥିଲି ସେ କାହିଁକି ଶ୍ୟାମାନନ୍ଦ ମାଲହୋତ୍ରାଙ୍କୁ ଲଳିତାର ସମ୍ବାଦଟା ଦେଉ ନାହାନ୍ତି । ସେ ସମ୍ବନ୍ଧରେ ପ୍ରଶ୍ନ କଲେ, ଏଡ଼େଇ ଯିବାକୁ ଚେଷ୍ଟା କରି କହୁଥିଲେ, ଚିଠି ଦେଇଛି, କେବେ କହୁଥିଲେ, ତାଙ୍କୁ ଜଣେଇ ଲାଭ କ'ଣ ? ଆଉ କେବେ କହୁଥିଲେ, ସେ ହୁଏତ ଫେରି ନଥିବେ । ଏହିପରି ପ୍ରତିଥର ଅସାମଞ୍ଜସ୍ୟ, ଅସଂଲଗ୍ନ ତାଙ୍କର ଉତ୍ତର; କେବଳ-ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଆଲୋଚନା ବେଳେ ।

ଅନ୍ୟ ବେଳେ କିନ୍ତୁ ଯମୁନା ଦେବୀ ଖୁବ୍ ସ୍ପଷ୍ଟ, ଖୁବ୍ ସଂଯମ । ତାଙ୍କ ସହିତ ଆଲୋଚନା ବେଳେ ମନେ ହୁଏନା ଯେ ସେ ଜଣେ ଅସହାୟା ରମଣୀ । ମନେ ହୁଏନା ଯେ ସେ ଏକ ଅଲଙ୍ଘନୀୟ ବିପଦ ମୁଣ୍ଡେଇ ଚାଲିଛନ୍ତି । ସେତେବେଳେ ଯମୁନା ଦେବୀଙ୍କର ସେହି ସଂଯମ ଓ ଧୈର୍ଯ୍ୟ ଦେଖି ତାଙ୍କ ପାଖରେ ମୁଣ୍ଡ ନଇଁପଡ଼େ । ଆମ ଦେଶର ମାତୃଶକ୍ତି ଯଦି ଏହିପରି ସର୍ବସଂହା ହୋଇପାରନ୍ତେ......!!

ମୁଁ ସେଦିନ ସନ୍ଧ୍ୟାବେଳେ ଘରକୁ ଫେରିବା ପରେ ସୁତପା ମୋତେ ଆସି କହିଲେ ପ୍ରଫେସର ମଜୁମଦାର ତମ୍ଭକୁ ଖୋଜୁଥିଲେ । କହିଛନ୍ତି ତାଙ୍କୁ ଟିକେ ଦେଖା କରିବ ।

ମୁଁ ସୁତପାଙ୍କ ମୁହଁକୁ ଚାହିଁଲି । ସେ ମୋ' ଉପରେ ପ୍ରସନ୍ନ ଥିଲାପରି ମନେହେଉ ନଥିଲା; ଖାଲି କର୍ତ୍ତବ୍ୟ ଦୃଷ୍ଟିରୁ ଖବରଟା ଦେଇ ବୋଧହୁଏ ଫେରିଯାଉଥିଲେ ।

ପଛରୁ ଡାକିଲି : ଶୁଣ ।

ସେ ବୁଲି ଅନେଇଲେ ।

: କ'ଣ ?

: ମୋ ଉପରେ ଖୁବ୍ ରାଗିଛ, ନା ?

: ରାଗି ଲାଭ କ'ଣ ? କାହିଁକି ବା ରାଗିବି !

ମୁଁ ଅଧିକ ଆଉ କିଛି କହିଲି ନାହିଁ । ମୁଁ ସୁତପାଙ୍କୁ ଚିହ୍ନିଛି । ସେ ସବୁବେଳେ ତାଙ୍କର ଆଧିପତ୍ୟ ମୋ ଉପରେ ବିସ୍ତାର କରି ରହିବାକୁ ଚାହାନ୍ତି । ସାମାନ୍ୟତମ ବ୍ୟତିକ୍ରମ ସେ ସହିପାରନ୍ତି ନାହିଁ । ବର୍ତ୍ତମାନ ପରିସ୍ଥିତିରେ ତାଙ୍କ କଥାର ଯେ ବ୍ୟତିକ୍ରମ ଘଟୁଛି, ମୁଁ ବୁଝିଥିଲେ ବି ନିଜକୁ ସୁଧାରି ପାରୁ ନ ଥିଲି ।

ସୁତପା ଚାଲିଗଲେ । ଅବଶ୍ୟ ମୋ ପାଇଁ ଚା' ଜଳଖିଆ ଆଣିବାକୁ ।

ହଠାତ୍ ଅରୁଣ ମଜୁମଦାର କାହିଁକି ମୋତେ ମନେପକାଇଲେ, ସେଇ କଥା ମୁଁ ଚିନ୍ତା କରୁଥିଲି। ସନତ ସହିତ ମୋର ପରିଚୟ ଅଳ୍ପ ହେଲେ ବି ହାର୍ଦ୍ଦିକତା ଥିଲା । କେବେ କେବେ ବିଭିନ୍ନ ବିଷୟରେ ଆଲୋଚନା ହେଉଥିଲା ତା' ସହିତ । କିନ୍ତୁ ପ୍ରଫେସର ଅରୁଣ ମଜୁମଦାରଙ୍କୁ କେବଳ କେତୋଟି ନମସ୍କାର କରିବା ଛଡ଼ା ଏ ଦୁଇ ବର୍ଷ ଭିତରେ ମୁହଁଖୋଲି କଥା ପଦେ କହି ନଥିଲି । ତାଙ୍କ ପରିବାରର ଲୋକ ସଂଖ୍ୟା ଅନେକ ବେଶି । ପ୍ରଫେସରଙ୍କ ପୁଅ, ଝିଅ, ବୋହୂ, ନାତି, ନାତୁଣୀ ମିଶି କେତେ ଜଣ, ଅବଶ୍ୟ ସେ କଥା ମୁଁ କହିପାରିବି ନାହିଁ; ତେବେ ତାଙ୍କର ପୁଅମାନଙ୍କ ଭିତରୁ ଜଣେ ଦି'ଜଣଙ୍କ ସହିତ ମୋର ମୁହଁ ଚିହ୍ନା ଥିଲା ।

ଜଳଖିଆ ଖାଇସାରିବା ପରେ ସୁତପା ମୋତେ ପ୍ରଫେସରଙ୍କ କଥା ଆଉ ଥରେ ମନେ ପକାଇଦେଲେ । ମୁଁ ଧୀରେ ଧୀରେ ଉଠି ତଳକୁ ଓହ୍ଲେଇଗଲି ।

ପ୍ରଫେସର ମଜୁମଦାର ତାଙ୍କ ଲାଇବ୍ରେରୀ ରୁମ୍‌ରେ କ'ଣ ଖଣ୍ଡେ ବହି ଖେଳାଉଥିଲେ । ମୋତେ ଦେଖି ଭିତରକୁ ଡାକିଲେ । ଖାଲି ଚେଆରରେ ବସିବା ପାଇଁ ଆଙ୍ଗୁଳି ଦେଖାଇ କହିଲେ : ସନତ୍ ସହିତ ଆପଣଙ୍କର ଆଳାପ ଥିଲା ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି; ଆଉ ସଙ୍ଗେ ସଙ୍ଗେ କହିଲି : ମୋତେ ଆପଣ ନ କହିଲେ ସୁଖୀ ହେବି ।

ପ୍ରଫେସର ମଜୁମଦାର ଚିନ୍ତିତ ମନେହେଉଥିଲେ । ଟିକିଏ ପରେ କହିଲେ : ସନତ୍ ତମ ସହିତ କେବେ ଲଳିତା କଥା ଆଲୋଚନା କରିଥିଲା ?

ମୁଁ ଆଶ୍ଚର୍ଯ୍ୟ ହୋଇ ପ୍ରଫେସରଙ୍କ ମୁହଁକୁ ଅନାଇଲି ।

ପ୍ରଫେସର ମଜୁମଦାର ପୁଣି କହିଲେ : ଅରୁଣ ତ ମରିଛି, ସେଇଟା ଯେ କାହାର କୃତ କର୍ମର ଫଳ ମୁଁ କହି ପାରିବିନାହିଁ; କିନ୍ତୁ ତା' ପାଇଁ ଆଉ ଗୋଟିଏ ଝିଅର ଜୀବନ ନଷ୍ଟ ମୁଁ ଚାହେଁ ନାହିଁ ।

ମୁଁ ପ୍ରଫେସର ମଜୁମଦାରଙ୍କ କଥା ପ୍ରଥମେ କିଛି ବୁଝିପାରିଲି ନାହିଁ । ସେଇଥି ପାଇଁ କିଛି ଉତ୍ତର ଦେଇପାରିଲି ନାହିଁ ।

ପ୍ରଫେସର ମଜୁମଦାର ନିଜ କଥା କହି ଚାଲିଥିଲେ : ଦେବନାଥବାବୁ ରାଜଗୁରୁ ବାବୁଙ୍କୁ ଏକଥା ମୁଁ କହିଛି । ଯିଏ ମରିଗଲା ସେ ଆଉ ଫେରିବ ନାହିଁ । ଗୋଟିଏ ମୃତ ଲୋକ ପାଇଁ ଆଉ ଜଣକ ଜୀବନ ନଷ୍ଟହେଉ, ମୋର ଇଚ୍ଛା ନୁହେଁ । ଅବଶ୍ୟ ସେମାନେ କହୁଛନ୍ତି, ଅପରାଧୀ ଶାସ୍ତି ନ ପାଇଲେ, ଦେଶରେ ଅପରାଧର ସଂଖ୍ୟା ବୃଦ୍ଧିପାଇବ । କଥାଟା ସତ । ମୋର କିନ୍ତୁ ଯୁକ୍ତି ହେଉଛି, ପ୍ରକୃତ ଯେଉଁମାନେ ଅପରାଧୀ, ଏ ଦେଶରେ ସେମାନଙ୍କ ଭିତରୁ କେତେଜଣ ଶାସ୍ତି ପାଆନ୍ତି ? ମୁଁ ଜାଣେ ଏ ଦେଶରେ ଶତକଡ଼ା ପଚସ୍ତରି ଜଣ ନିରପରାଧୀ ପ୍ରମାଣିତ ହୋଇ ଶାସ୍ତି ଭୋଗ କରନ୍ତି । ସନତ୍ କେସ୍‌ରେ ଯେ ତାହା ହିଁ ନ ଘଟିବ ତା'ର ନିର୍ଭର ପ୍ରତିଶ୍ରୁତି ଆପଣମାନେ କେହି ମୋତେ ଦେଇପାରିବେ ?

ପ୍ରଫେସର ମଜୁମଦାର ସାମାନ୍ୟ ଉତ୍ତେଜିତ ହୋଇଉଠିଥିଲେ ।

ମୁଁ ଶାନ୍ତ କଣ୍ଠରେ କହିଲି : ସେ ଦାୟିତ୍ୱ ଯେଉଁମାନଙ୍କ ହାତରେ ସେମାନେ ତ ଏଠାରେ କେହି ନାହାନ୍ତି । ମୁଁ ବା ଆପଣଙ୍କୁ କି ଉତ୍ତର ଦେବି ?

: ନା, ନା ୟଙ୍ଗମ୍ୟାନ୍, ମୁଁ ଶୁଣିଛି ପୋଲିସ୍ ଅଫିସରମାନେ ତମର ବନ୍ଧୁ । ସେମାନଙ୍କୁ ବୁଝାଇ ସୁଝାଇ ସନତ୍ ପରି ଆଉ ଗୋଟିଏ ଅମୂଲ୍ୟ ପ୍ରାଣକୁ ରକ୍ଷା କରିବାର ଦାୟିତ୍ୱ ତମେ ନିଅ । ଏଇଥିପାଇଁ ମୁଁ ତୁମକୁ ଡାକିଥିଲି ।

: ଆପଣ କ'ଣ କହୁଛନ୍ତି ଲଳିତା ଏ କ୍ଷେତ୍ରରେ ଦୋଷୀ ନୁହେଁ, ସେ.....

ପ୍ରଫେସର ମଜୁମଦାର ମୋ କଥା ଶେଷକରିବାକୁ ନ ଦେଇ କହିଲେ : ଦୋଷୀ ନିର୍ଦ୍ଦୋଷ ବିଚାର କରିବାର ଭାର ମୁଁ ନେଇ ନାହିଁ; କିନ୍ତୁ ଲଳିତା ପରି ଗୋଟିଏ......

ହଠାତ୍ ତାଙ୍କ ହାତରୁ ବହିଟା ତଳେ ଖସିପଡ଼ିବାରୁ ସେ ନୀରବ ହୋଇଗଲେ । ତା'ପରେ ବହୁ ସମୟ ନୀରବତା ଭିତରେ କଟିଗଲା । ମୁଁ ତାଙ୍କୁ ଆଉ କିଛି ପଚାରିବାକୁ ସାହସ କରି ପାରିଲି ନାହିଁ କିମ୍ବା ସେ ମଧ୍ୟ ମୋତେ ଆଉ କିଛି କହିଲେ ନାହିଁ । ଆଖି ବୁଜି ସେ କ'ଣ ଚିନ୍ତା କରୁଥିଲେ । କପାଳର ରେଖାଗୁଡ଼ିକ କୁଞ୍ଚିତ ହୋଇ ଉଠୁଥିଲା ।

କିଛି ସମୟ ପରେ ଅପେକ୍ଷା କରିବା ପରେ ଧୀରେ ଧୀରେ ମୁଁ ଉପରକୁ ଉଠିଆସିଥିଲି ।

ବୁଝିପାରି ନଥିଲି ପ୍ରଫେସର ମଜୁମଦାରଙ୍କ ମନୋଭାବ । ମନେ ମନେ ବିଶ୍ଳେଷଣ କରୁଥିଲି କେବଳ । ମଣିଷ ପ୍ରତିହିଂସାପରାୟଣ ହୋଇଉଠୁଛି କାଳକ୍ରମେ; କିନ୍ତୁ ପ୍ରଫେସର ମଜୁମଦାର......

ସୁତପା ମୋତେ ଦୁଆର ମୁହଁରେ ଅପେକ୍ଷା କରିଥିଲେ । କାଳେ ମୁଁ ଆହୁରି ଜଟିଳ ସମସ୍ୟା ଭିତରକୁ ଖସିଯିବି, ସେଥିପାଇଁ ତାଙ୍କ ମନରେ ସବୁବେଳେ ଚିନ୍ତା ପୂରି ରହିଥିଲା ।

କିନ୍ତୁ ମୋ' ଠାରୁ ପ୍ରଫେସର ମଜୁମଦାରଙ୍କ ମୁହଁର କଥା ଶୁଣି ସାରିବା ପରେ, ସୁତପାଙ୍କ ମୁହଁର ରଙ୍ଗ ବଦଳିବାର ମୁଁ ଦେଖିଲି ନାହିଁ; ବରଂ ଆଖିରେ ଅଳ୍ପ ବିସ୍ମୟ ଫୁଟିଥିଲା ।

ସାମାନ୍ୟ ନୀରବତା ପରେ ମୁଁ କହିଲି : ପ୍ରଫେସର ମଜୁମଦାର ଜ୍ଞାନୀଲୋକ । ତାଙ୍କ ପାଇଁ ଅନ୍ୟ କାହାର କ୍ଷତିସାଧନ ହେଉ, ତାହା ସେ ଚାହାନ୍ତି ନାହିଁ । ସେଇଥିପାଇ ବୋଧହୁଏ........

ସୁତପାଙ୍କ ମୁହଁରେ ବିଦ୍ରୂପର ହସ ଦେଖିଥିଲି ।

ତା'ପରେ ସେ ମୋ ପାଖରୁ ଚାଲି ଯାଉ ଯାଉ କହିଲେ : ତମର ଆଉ କୁଆଡ଼େ ଯିବାର ଅଛି ?

ମୁଁ ଆଖିରେ ପ୍ରଶ୍ନବାଚୀ ଫୁଟାଇ ତାଙ୍କ ଆଡ଼େ ଅନାଇ ରହିଲି । ସୁତପା ପୁଣି କହିଲେ:
: ଯଦି ବାହାରକୁ ନ ଯାଅ ତେବେ ଯମୁନା ଦେବୀଙ୍କ ସମ୍ବନ୍ଧରେ ମୁଁ ତମକୁ ଏପରି ଏକ ସମ୍ବାଦ ଦେବି ଶୁଣିଲେ ତମେ ମୋତେ ବିଶ୍ୱାସ କରିବ ନାହିଁ ।

: ତଥ୍ୟ ନା ଗଳ୍ପ ? ମୋ କଣ୍ଠରେ ପରିହାସ ମିଶିଥିଲା ।

: ଗଳ୍ପ ନୁହେଁ କି ତଥ୍ୟ ନୁହେଁ ।

: ତେବେ ?

: ସତ୍ୟ ।

ମୁଁ ସୁତପାଙ୍କ ହାତଧରି ପାଖକୁ ଟାଣି ଆଣି କହିଲି : ତା'ହେଲେ ଏହି ଲୋଭନୀୟ ସର୍ତ୍ତରେ ମୁଁ ଆଜି ବାହାରର ସମସ୍ତ ଆପଏଣ୍ଟମେଣ୍ଟ କ୍ୟାନସେଲ କରିଦେଲି ।

ସୁତପା ମୋ' ସାମ୍ନା ସୋଫା ଉପରେ ବସୁ ବସୁ କହିଲେ : ଆଜି ଯମୁନା ଦେବୀଙ୍କ ମା' ଆସିଥିଲେ ।

ହଠାତ୍ ମୋ' ପାଟିରୁ କଥା ବାହାରିଲା ନାହିଁ ।

ସୁତପା ପୁଣି କହିଲେ : ମୁଁ ଜାଣେ ତମେ ବିଶ୍ଵାସ କରିବ ନାହିଁ; କାରଣ ଆମେ କେବେ ଯମୁନା ଦେବୀଙ୍କ ମୁହଁରୁ ତାଙ୍କ ମା' ବଞ୍ଚିଥିବା କଥା ଶୁଣି ନଥିଲେ ।

ମୁଁ ଉଦ୍‌ବିଗ୍ନ ହୋଇ ପଚାରିଲି : ତମେ କ'ଣ ତାଙ୍କ ସହିତ କଥାବାର୍ତ୍ତା କରିଥିଲ ?

: ସେ ଆମରି ଘରକୁ ଆସିଥିଲେ,୭୪ ସୁତପା ସହଜ କଣ୍ଠରେ କହିଲେ ।

: କିପରି ?

: ସେତେବେଳେ ଯମୁନା ଦେବୀ ଘରେ ନଥିଲେ । ମୁଁ ତାଙ୍କ ହାତ ଧରି ଶିଡ଼ିରେ ଉଠାଇ ଆଣିଥିଲି ।

: ତା'ପରେ ?

ସେ କହିଲେ : ଚାରି ପାଞ୍ଚ ବର୍ଷ ପରେ ଝିଅ ସହିତ ଦେଖାକରିବାକୁ ଆସିଛନ୍ତି । ଅବଶ୍ୟ ଏହା ଭିତରେ ଯମୁନା ଦେବୀ ମଝିରେ ମଝିରେ ଯାଇ ତାଙ୍କ ସହିତ ଦେଖା କରି ଆସନ୍ତି; କିନ୍ତୁ ଯମୁନା ଦେବୀଙ୍କଠାରୁ ସ୍ଵାମୀ ବିଚ୍ଛେଦହେବା ପରଠାରୁ ସେ ଆଉ ଆସି ନଥିଲେ ।

: ମାନେ ? ଆକାଶରୁ ଖସିଲାପରି ମୁଁ ଉଠି ଠିଆହୋଇପଡ଼ିଲି ।

ସୁତପା ଅଳ୍ପ ଅଳ୍ପ ହସୁଥିଲେ । ବୋଧହୁଏ ମୋର ଅତ୍ୟଧିକ ଆଗ୍ରହ ପାଇଁ । ସେ ପୁଣି ଧୀରେ ଧୀରେ କହିଲେ: ହଁ, ଯମୁନା ଦେବୀଙ୍କର ପାଞ୍ଚ ଛଅ ବର୍ଷ ହେବ ସ୍ଵାମୀଙ୍କଠାରୁ ବିଚ୍ଛେଦ ହୋଇଛି ।

: କିନ୍ତୁ ଯମୁନା ଦେବୀ.......

ମୁଁ କ'ଣ କହିବାକୁ ଯାଇ ଅଟକି ଗଲି । ଦେଖିଲି, ଯମୁନା ଦେବୀ ବ୍ୟସ୍ତ ହୋଇ ଆମ ଘର ଭିତରକୁ ପଶିଆସୁଛନ୍ତି । ତାଙ୍କୁ ଦେଖି ସୁତପା ଠିଆହୋଇପଡ଼ିଲେ ।

ମୁଁ ଶାନ୍ତକଣ୍ଠରେ କହିଲି : ଆପଣ ଖୁବ୍ ଚିନ୍ତିତ ମନେହେଉଛନ୍ତି ଯେ, କାରଣ କ'ଣ ?

ଯମୁନା ଦେବୀ ମୋ ସାମ୍ନା ସୋଫା ଉପରେ ବସିପଡ଼ି କହିଲେ : ଯେତେବେଳେ ବିପଦ ଆସେ ବାବା, ସାଙ୍ଗ ସାଥୀଧରି ଆସେ ।

: ପୁଣି କ'ଣ ହେଲା କି ?

: ସେ ଭୀଷଣ ଅସୁସ୍ଥ । ମା' ଆସିଥିଲା, କହିଗଲା । ଅବଶ୍ୟ କେଇ ବର୍ଷ ହେବ ତାଙ୍କ ସହିତ ମୋର ଟିକିଏ ମନୋମାଳିନ୍ୟ ହୋଇଛି, ସେଇଟା ଆମର ଖୁବ୍ ବ୍ୟକ୍ତିଗତ କାରଣରୁ, ଯେଉଁଟା ବାହାରେ ପ୍ରକାଶ କରିହେବ ନାହିଁ । ସେଇଦିନଠାରୁ ସେ ଯଦିଓ ମୋ ସହିତ ଚିଠି ପତ୍ରର ଆଦାନ ପ୍ରଦାନ କରନ୍ତି ନାହିଁ, ତଥାପି ଦରକାରୀ କଥା ଥିଲେ ଆମ ଭିତରେ ଚିଠି ଦିଆନିଆ ହୁଏ । ସେ କିନ୍ତୁ ମା'କୁ ସବୁ କଥା ଜଣେଇ ଚିଠି ଦିଅନ୍ତି । ସେ ବିଶେଷ ଭାବରେ ମା' ଭକ୍ତ; କିନ୍ତୁ ଏଇକ୍ଷିଣା କିଛି ଉପାୟ ନାହିଁ ବାବା । ଲଳିତାର କେସ୍ ଛାଡ଼ି ମୁଁ ଏବେ ତାଙ୍କ ପାଖକୁ ଯାଉଛି କେମିତି !!

ଯମୁନା ଦେବୀଙ୍କ ମୁହଁରୁ ତାଙ୍କ ସ୍ୱାମୀଙ୍କ ସମ୍ବନ୍ଧରେ ଏକ ଗୋପନ ସତ୍ୟ ଶୁଣିବା ପରେ, ହଠାତ୍ ତାଙ୍କୁ ସାନ୍ତ୍ୱନା ଦେବା ବା ତାଙ୍କ କଥାର ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ମୁଁ ପଚାରିଲି : ଆପଣ ତା' ହେଲେ ମଉସାଙ୍କ ପାଖକୁ ଲଳିତା ଖବର କିଛି ଲେଖି ନାହାନ୍ତି ?

ସେ ମୋ ମୁହଁକୁ ଥରେ ଚାହିଁଲେ । ତା'ପରେ ଦୃଷ୍ଟିଟା ତଳକୁ ନୁଆଁଇ ନେଇ ଶାନ୍ତ କଣ୍ଠରେ କହିଲେ : କିଛି ଲାଭ ହୋଇ ନ ଥାନ୍ତା । କେବଳ ଟଙ୍କା କେତେଟା ପଠାଇବା ଛଡ଼ା, ସେ ଆମ ସହିତ ସମସ୍ତ ସଂପର୍କ ତୁଟାଇ ଦେଇଛନ୍ତି । ସେଇଟା ଆମର ଏକାନ୍ତ ଘରୋଇ ସମସ୍ୟା ହେଲେ ମଧ୍ୟ ତମ ଆଗରେ ସମୟ ହେଲେ କେବେ ସବୁ କଥା କହିବି । କିନ୍ତୁ ବର୍ତ୍ତମାନ ତାଙ୍କର ଏହି ଅସମୟରେ....

ଯମୁନା ଦେବୀ ନୀରବ ହୋଇଗଲେ । ଆଖିରେ ତାଙ୍କର ବୋଧହୁଏ ପାଣି ଜକେଇ ଆସିଥିଲା । କାନିରେ ଆଖି ଢାଙ୍କିଲେ ।

ସୁତପା କହିଲେ : ଏଇକ୍ଷିଣା ତ କୋର୍ଟରେ କେସ୍ ଉଠିବାକୁ ଡେରିଅଛି, ଆପଣ ବରଂ ଥରେ ଯାଇ ମଉସାଙ୍କୁ ଦେଖି ଆସନ୍ତୁ । ଦୁଇ ତିନି ଦିନର ତ କଥା, ପ୍ଲେନ୍‌ରେ ଯାଇ ପ୍ଲେନ୍‌ରେ ଫେରି ଆସିବେ । ଏ ଦୁଇ ତିନି ଦିନର ଯାହା ସୁବିଧା ଅସୁବିଧା ବରଂ ଏ ସମ୍ଭାଳି ନେବେ ।

ଯମୁନା ଦେବୀ ଏଥର ମୁହଁ ତଳୁଉଠାଇ ଥରେ ସୁତପାଙ୍କ ମୁହଁକୁ ଓ ଥରେ ମୋ ମୁହଁକୁ ଚାହିଁ କହିଲେ : ଏ ଦୁର୍ଦ୍ଦିନରେ ମୋର ତମ ଛଡ଼ା କେହି ସହାୟ ନାହିଁ ବାବା । ସୁସମୟରେ ଅନେକ ବନ୍ଧୁ ଆସି ରୁଣ୍ଡ ହୁଅନ୍ତି, କିନ୍ତୁ ଦୁଃସମୟରେ......

କଥା ଅସମାପ୍ତ ରଖି ଯମୁନା ଦେବୀ ଉଠିଠିଆହେଲେ ।

ମୁଁ କହିଲି : ଆପଣଙ୍କ ମା' ଆସିଥିଲେ ଶୁଣିଲି । କେବେ ତାଙ୍କ ସମ୍ବନ୍ଧରେ ଆପଣଙ୍କ ମୁହଁରୁ କିଛି ଶୁଣି ନଥିଲି ।

ଯମୁନା ଦେବୀ ମୁହଁରେ ସାମାନ୍ୟ ହସ ଫୁଟାଇବାକୁ ଚେଷ୍ଟା କରି କହିଲେ : ଝିଅ ଶାଶୂ ଘରକୁ ଆସିଲେ ବାପ, ଭାଇ ପର ହୋଇ ଯାଆନ୍ତି, ଆଉ ସେମାନଙ୍କର କୌଣସି ପ୍ରୟୋଜନ ଆବଶ୍ୟକ ହୋଇ ନ ଥାଏ ।

ତଥାପି ମୁଁ କହିଲି : ଆପଣଙ୍କ ମା' ଆଜିଯାଏ ବଞ୍ଚି ରହିଛନ୍ତି ଜାଣି ଖୁସି ହେଲି ।

ଯମୁନା ଦେବୀ ଏକ ଦୀର୍ଘଶ୍ୱାସ ପକାଇ କହିଲେ : ନା, ବାବା ଅନେକ ଦିନରୁ ଆମକୁ ଛାଡ଼ିଯାଇଛନ୍ତି ।

ଯମୁନା ଦେବୀ ପଣତ କାନିରେ ଆଖି ପୋଛୁ ପୋଛୁ ଚାଲିଯାଉଥିଲେ । ମୁଁ କହିଲି ଆପଣ ତା'ହେଲେ କ'ଣ ଠିକ୍ କଲେ ? ମଉସାଙ୍କୁ ଦେଖିବାକୁ ଯିବେ ?

ଯମୁନା ଦେବୀ ଲେଉଟି ଠିଆହୋଇ କହିଲେ : ମୋତେ ଟିକିଏ ଭଲକରି ଚିନ୍ତା କରିବାକୁ ଦିଅ ବାବା । ମଉସା ତମର ଭାରି ଟାଣ ଲୋକ । ଭାଙ୍ଗିଯିବେ ପଛେ ଓହରେଇ ହେବେ ନାହିଁ । ମୋତେ ସେ ହଠାତ୍ ଦେଖି ଯଦି ଅନ୍ୟ କିଛି କରି ବସନ୍ତି, ମୁଁ କେବଳ ସେଇ କଥା ଚିନ୍ତା କରୁଛି ।

: ଅନ୍ୟ ଆଉ କ'ଣ କରି ବସିବେ ? ମୁଁ ପଚାରିଲି ।

ଯମୁନା ଦେବୀ କହିଲେ : ତମେ ବାବା ତାଙ୍କୁ ଚିହ୍ନି ନାହଁ ତ, ସେଇଥିପାଇଁ ଅତି ସହଜରେ ତାଙ୍କ ପାଖକୁ ଯିବା ପାଇଁ କହି ଦେଉଛ; କିନ୍ତୁ ବାବା, ସେ ମୋତେ.....ନା ଥାଉ, ଆଉ ଦିନେ ସମୟ ପାଇଲେ ସବୁ କଥା କହିବି । ଓକିଲବାବୁ କହିଥିଲେ ଛଅଟା ବେଳକୁ ତାଙ୍କ ପାଖକୁ ଯିବା ପାଇଁ, ମୁଁ ଆସୁଛି ବାବା, ତମେ ବରଂ ଟିକିଏ ବିଶ୍ରାମ କର ।

ଯମୁନା ଦେବୀ ଚାଲିଗଲେ । ମୁଁ ସୁତପାଙ୍କ ମୁହଁକୁ ଅନେକ ସମୟଯାଏ ଅନାଇ ରହିଲି ।

ସୁତପା ଆସି ମୋ ପାଖରେ ଦିହକୁ ଲାଗି ବସିଲେ । କହିଲେ : ମୋର କିନ୍ତୁ ଏମାନଙ୍କ ସମ୍ବନ୍ଧରେ ଆଉ କାହିଁକି ଭଲ ଧାରଣା ହେଉ ନାହିଁ । ଯମୁନା ଦେବୀଙ୍କ ମା' ସିଧା ସଳଖ ଆମ ଘରକୁ ଚାଲିଆସିବାରୁ ହୁଏତ ଯମୁନା ଦେବୀ ତାଙ୍କ ମା'ଙ୍କ କଥା ଓ ସ୍ୱାମୀଙ୍କ ସହିତ ମନୋମାଳିନ୍ୟର କଥା କହିଲେ । ତା' ନ ହୋଇଥିଲେ ବୋଧହୁଏ .......

: ଯମୁନା ଦେବୀଙ୍କ ମା' ଆଉ କ'ଣ କହୁଥିଲେ ?

: କହି ଥାଆନ୍ତେ, ମୁଁ ତାଙ୍କ ଠାରୁ ଅନେକ କଥା ଆଦାୟ କରି ପାରିଥାଆନ୍ତି; କିନ୍ତୁ ସେ ଚା' ଖାଇବାକୁ ମାଗିଲେ । ଚା'କରି ଆସି ପହଞ୍ଚିଲା ବେଳକୁ ଦେଖିଲି ଯମୁନା ଦେବୀ ଆସି ଯାଇଛନ୍ତି । ମା' ଝିଅ ଦୁହେଁ ବସି କ'ଣ ଫୁସ୍‌ଫାସ୍ ହେଉଛନ୍ତି ।

ମୋତେ ଦେଖି ଯମୁନା ଦେବୀ ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲେ : ଜାଣ ମା', ଏମାନେ ଜଗନ୍ନାଥ ଦେଶର ଲୋକ । ଖୁବ୍ ଭଲ ମଣିଷ । ଏମାନେ ନ ଥିଲେ ମୋର ଅବସ୍ଥା ଯେ କ'ଣ ହୋଇଥାନ୍ତା !

ଯମୁନା ଦେବୀଙ୍କ ମା, ସଙ୍ଗେ ସଙ୍ଗେ ମୋ' ମୁଣ୍ଡ ଆଉଁଶି ଦେଇ କହିଲେ : ମୁଁ ଦେଖିବା ମାତ୍ରକେ ବୁଝିପାରିଛି, ତୋତେ ଆଉ ବେଶି କହିବାକୁ ହେବ ନାହିଁ ।

ତା'ପରେ ଚା' ପିଇ ମା' ଓ ଝିଅ ଦୁହେଁ ତାଙ୍କ ଫ୍ଲାଟ୍‌କୁ ଚାଲିଗଲେ ।

ମୁଁ କହିଲି : ସେ କୋଉଠି ରୁହନ୍ତି ଠିକଣା ପଚାରିଥିଲ ?

ସୁତପା ଜିଭ କାମୁଡ଼ି ପକାଇ କହିଲେ : ନାଁ ତ ! ହେ, ଦେଖିଲ କେଡ଼େ ଭୁଲ୍‌ଟାଏ ହୋଇଗଲା !

ମୁଁ ସୁତପାଙ୍କୁ କୋଳକୁ ଟାଣି ଆଣି କହିଲି : ଭୁଲ୍ ତ ତମ ଜାତିର ସନ୍ତକ । ବିଶେଷତଃ.....

ମୁଁ ସୁତପାଙ୍କ ମୁହଁ ଉପରକୁ ମୋ ମୁହଁ ନୁଆଁଇ ନେଉଥିଲି । ସେ ତାଙ୍କ ହାତରେ ଠେଲି ଦେଇ କହିଲେ : ହେଦ୍, ବୁଢ଼ାଦିନେ ଆହୁରି ସୋହାଗ ଝରି ପଡୁଛି ! ସେ ଘରେ ଲୁସି ଆଉ ସେଲି ଖେଳୁଛନ୍ତି ପରା !!

ସୁତପାଙ୍କୁ ମୁଁ ଛାଡ଼ିଦେଲି । ସେ ପୁଣି ସଜାଡ଼ି ହୋଇ ବସୁ ବସୁ କହିଲେ : ତମେ ଯାଅ ଟିକିଏ ବିଶ୍ରାମ କର । ଦିନଯାକ ଖାଲି ରଣପାଙ୍କ ପରି ପର ପାଇଁ ବୁଲୁଛ । ନିଜ ଚେହେରା କେବେ ଅଇନାରେ ଦେଖୁ ନାହଁ ବୋଧେ ?

ସେ ଉଠିଠିଆ ହେଲେ ।

ମୁଁ ବି ଉଠିଲି । ସତରେ ବଡ଼ କ୍ଳାନ୍ତି ଲାଗୁଥିଲା । ବିଶ୍ରାମ ଟିକିଏ ଏକାନ୍ତ ପ୍ରୟୋଜନ ।

କିନ୍ତୁ ବିଶ୍ରାମ ଆଉ କରିପାରିଲି କେଉଁଠି ? ଖଟ ଉପରେ ଦେହଟାକୁ ନଦି ଦେଇ ଆଖି ବୁଜିବାକୁ ଚେଷ୍ଟା କରିଥିଲି । ପାରିଲି ନାହିଁ । ଲଳିତାର ହସିଲା ମୁହଁଟି ଭାସିଉଠିଲା ଆଖି ଆଗରେ । ତା’ ପଛେ ପଛେ ଯମୁନା ଦେବୀ । ଠିକ୍ ତା’ପରେ ପରେ ସୁତପା ମୋ ଦେହରେ ହାତମାରି ଡାକିଲେ ।

: ଶୁଣୁଛ ?

ସୁତପା କହିଲେ : ସେମାନେ ଆସିଛନ୍ତି ।

: କେଉଁମାନେ ?

: ଦେବନାଥ ଆଉ ରାଜଗୁରୁବାବୁ । ଦୁଇଜଣଙ୍କର ତମ ସହିତ ଖୁବ୍ ପ୍ରୟୋଜନ । ମୁଁ ଅବଶ୍ୟ କହିଥିଲି ତମେ କ୍ଲାନ୍ତ, ଟିକିଏ ବିଶ୍ରାମ କରୁଛନ୍ତି । ସେମାନେ କିନ୍ତୁ ବସିରହିଲେ ।

ମୁଁ ସଙ୍ଗେ ସଙ୍ଗେ ସୁତପାଙ୍କ ଗାଲରେ ସ୍ନେହର ଆଙ୍ଗୁଳି ବୁଲାଇ କହିଲି : ସେମାନେ ଆଉ କ’ଣ ମୋ’ ପାଇଁ ତମପରି ଏତେ ଦରଦୀ ?

ସାର୍ଟଟା ଦେହରେ ଗଳେଇ ବାହାରି ଯାଉଥିଲି । ସୁତପା କହିଲେ : ତମେ କିନ୍ତୁ ସେମାନଙ୍କ ସହିତ କୁଆଡ଼େ ଯିବ ନାହିଁ ।

: ମୁଁ ହସିଲି । କହିଲି : ତମେ ସ୍ପେଶାଲ କଫି ତିନିକାପ୍ ପଠାଇ ଦିଅ ତ ! ତା ପରେ ତମ କଥା ବିବେଚନା କରାଯିବ ।

ମୁଁ ଡ୍ରଇଂ ରୁମ୍‌ରେ ପହଞ୍ଚିବାକ୍ଷଣି ରାଜଗୁରୁ କହିଲେ : ବୌଦିଙ୍କ ମୁହଁରୁ ଶୁଣିଲୁ ଆପଣ ଭୀଷଣ କ୍ଲାନ୍ତ, ଆମେ କିନ୍ତୁ ଅଧିକ ସମୟ ବିରକ୍ତ କରିବୁ ନାହିଁ ।

ଲଜ୍ଜିତ ହେଲି । କହିଲି : ଆପଣଙ୍କ ବୌଦିଙ୍କର ମୋ ପ୍ରତି ଟିକିଏ ଅଧିକ ଦରଦ ତ, ସେଇଥି ପାଇଁ.....

ସେମାନେ ହସିଉଠିଲେ । ମୁଁ ବସୁ ବସୁ କହିଲି : ହଠାତ୍ ଆପଣମାନଙ୍କର ମୋତେ କାହିଁକି ମନେପଡ଼ିଗଲା ?

ରାଜଗୁରୁ ସ୍ମିତହସି କହିଲେ : ବିନା ସ୍ୱାର୍ଥରେ ଆମର ପ୍ରବେଶ କ୍ୱଚିତ କେଉଁଠି ହୋଇଥାଏ । ତେଣୁ ସେ ଦିଗରୁ ଆପଣ ନିଶ୍ଚିନ୍ତ ରୁହନ୍ତୁ ।

ମୁଁ କହିଲି : ମୁଁ କୃତାର୍ଥ ହେଲି ।

ମୋର ଏହି ସଂକ୍ଷେପିତ ଉତ୍ତରରେ ରାଜଗୁରୁଙ୍କ ଆଖି ଦୁଇଟାରେ ବିସ୍ମୟ ଫୁଟି ଉଠିଥିଲା ।

ମୁଁ ହସି ହସି ଉତ୍ତର ଦେଲି : ମୋପରି ଏକ ଅକିଞ୍ଚନ ଲୋକ ସହିତ ଆପଣ ଓ ଦେବନାଥ ବାବୁଙ୍କପରି ଦୁଇଜଣ ଷଣ୍ଢାମାର୍କା ପୋଲିସ ଅଫିସରଙ୍କର ସ୍ୱାର୍ଥଜଡ଼ିତ ରହିଛି, ଏ କଥା ଏହି ସୂର୍ଯ୍ୟସେନ ଷ୍ଟ୍ରୀଟ୍‌ରେ ଜନସାଧାରଣ ଜାଣିପାରିଲେ, ମୋତେ ଯାଉଣୁ ଆସୁଣୁ ସାଲାମ୍ ଠୁକିବେ ।

ଏଥର ଏକା ସଙ୍ଗରେ ଆମେ ସମସ୍ତେ ହସିଉଠିଲୁ ।

ଦେବନାଥ ବାବୁ ହାତରେ ଥିବା ଫାଇଲ୍‌ଟି ରାଜଗୁରୁଙ୍କ ହାତକୁ ବଢ଼ାଇ ଦେଇ କହିଲେ: ଏଥର କେସ୍‌ଟା ଆପଣ ବୁଝାଇ ଦିଅନ୍ତୁ । ରାଜଗୁରୁ ମୋ ମୁହଁକୁ ଅନାଇ ଫାଇଲ୍‌ଟା ଖୋଲୁ ଖୋଲୁ କହିଲେ ।

: ଆପଣଙ୍କ କ୍ଲାଏଣ୍ଟ ବିରୋଧରେ ଆମର ସମସ୍ତ ସାକ୍ଷ୍ୟ ସଂଗ୍ରହ ଶେଷ ହୋଇଛି । ଖାଲି କୋର୍ଟରେ କେସ୍ ଉଠିବାକୁ ଅପେକ୍ଷା । ଆପଣ କିନ୍ତୁ ଲଳିତା ମାଲହୋତ୍ରାଙ୍କୁ ରକ୍ଷାକରି ପାରିଲେ ନାହିଁ ।

ଯଦିଓ ସେମାନେ ସମସ୍ତେ ଜାଣିଥିଲେ ମୁଁ ତୃତୀୟ ପକ୍ଷ । ଲଳିତାର ଶାସ୍ତିବିଧାନ ସହିତ ମୋର କିଛି ସମ୍ପର୍କ ନାହିଁ; ତଥାପି ରାଜଗୁରୁଙ୍କ ସ୍ୱରଟା ମୋ ପ୍ରାଣରେ ଯଥେଷ୍ଟ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ମୁଁ ହଠାତ୍ କିଛି ଉତ୍ତର ଦେଇପାରି ନଥିଲି ।

ରାଜଗୁରୁ ଫାଇଲ୍‌ଟି ଖୋଲିସାରି ମୋ ହାତକୁ ଛଅଟି ଫଟୋଗ୍ରାଫ୍ ବଢ଼ାଇ ଦେଇଥିଲେ । ସବୁଗୁଡ଼ିକ ଫୁଟ୍ ପ୍ରିଣ୍ଟ୍ ।

ମୁଁ ଦେଖିଲି, ଦେଖିବାରେ ଯେପରି ବିଶେଷ ଆଗ୍ରହ ନାହିଁ, ସେହିପରି ଫଟୋଗ୍ରାଫ୍‌ଗୁଡ଼ିକ ପୁଣି ଫେରାଇଦେଲି ରାଜଗୁରୁଙ୍କ ହାତକୁ ।

ସେ ସବୁଗୁଡ଼ିକ ହାତରେ ଧରି କହିଲେ : ଯେଉଁଦିନ ରାତିରେ ସନତ୍ ମଜୁମଦାରର ମୃତ୍ୟୁ ହେଲା, ସେହି ରାତିପାହିଲେ ଗୁରୁବାର । ସେଇଥି ପାଇଁ ବୁଧବାର ରାତିରେ ସମସ୍ତେ ଖାଇ ଶୋଇବା ପରେ ଚାକରାଣୀ ସବୁଘର ଧୋଇପୋଛି, ତା'ପରେ ଶୋଇଥିଲା । ପ୍ରଫେସର ମଜୁମଦାରଙ୍କ ଘରର ଏହା ଚିରାଚରିତ ପ୍ରଥା । ସେଦିନ ବୁଧବାର ରାତି ହୋଇଥିବାରୁ ଚାକରାଣୀ ସବୁଯାକ ଘର ଧୁଆପୋଛା କରିଥିଲା । ଶେଷରେ ପୋଛିଥିଲା, ସନତ୍ ଯେଉଁ ଘରେ ପଢୁଥିଲା । ସେତେବେଳକୁ ରାତି ଏଗାରଟା ହେବ । ସେହି ରାତି ଏଗାରଟା ପରେ ସନତ୍ ଘରକୁ ଏହି ତିନିଜଣ ଯାଇଥିଲେ । ରାଜଗୁରୁ ଫଟୋଗ୍ରାଫ୍‌ଗୁଡ଼ିକ ମୋ ଆଡ଼କୁ ବଢ଼ାଇ ଦେଇ ନୀରବ ରହିଲେ ।

ଏଥର ମୋ ମନରେ ଆଗ୍ରହ ଦେଖାଦେଲା । ମୁଁ ଫଟୋଗ୍ରାଫଗୁଡ଼ିକ ଆଡ଼େ ହାତ ବଢ଼ାଇଲି ।

ରାଜଗୁରୁ ସେଥିଭିତରୁ ଦୁଇଖଣ୍ଡ ମୋ ଆଡ଼କୁ ବଢ଼ାଇ ଦେଇ କହିଲେ : ଏଇ ଦୁଇଟି ଖାଲିପାଦ ଏବଂ ପୁରୁଷର । ତେଣୁ ଆପଣ ସହଜରେ ବୁଝିପାରୁଛନ୍ତି ଯେ, ଏଇ ପାଦ ଦୁଇଟି ମୃତ ସନତ୍ ମଜୁମଦାରଙ୍କର ।

ତା'ପରେ ଆଉ ଦୁଇଖଣ୍ଡ ଫଟୋଗ୍ରାଫ୍ ବଢ଼ାଇ ଦେଇ କହିଲେ : ଏ ଦୁଇଟା ବି ଖାଲିପାଦ ଓ ନାରୀର । ଆମେ ମିଳାଇ ଦେଖିଛୁ ଏ ପାଦ ଦୁଇଟା ଲଳିତା ମାଲହୋତ୍ରାର ।

ଲଳିତା ମାଲହୋତ୍ରାଙ୍କର ନାମ ଶୁଣିବା କ୍ଷଣି ମୋ ଦେହରେ ସାମାନ୍ୟ କମ୍ପନ ସୃଷ୍ଟି ହୋଇଥିଲା, ମୁଁ ଫୁଟ୍‌ପ୍ରିଣ୍ଟ୍ ଦୁଇଟି ଦେଖି ନ ଦେଖିଲା ପରି ଫେରାଇଦେଲି ।

ରାଜଗୁରୁ ମୋ ମନୋଭାବ ବୁଝିପାରିଲେ ବୋଧହୁଏ । ସେଇଥି ପାଇଁ ସ୍ମିତହସି ଅନ୍ୟ ଫଟୋଗ୍ରାଫ୍ ଦୁଇଖଣ୍ଡ ମୋ ହାତକୁ ବଢ଼ାଇ ଦେଉ ଦେଉ କହିଲେ ।

: ଏଇ ପାଦ ଯୋଡ଼ିକ କିନ୍ତୁ ଆମେ ଚିହ୍ନିପାରିଲୁ ନାହିଁ । ଆପଣ କାଳେ ଚିହ୍ନି ପାରିବେ, ସେଇଥି ପାଇଁ ଛୁଟି ଆସିଲୁ ଆପଣଙ୍କ ପାଖକୁ । ଏଥର ଅତି ଆଗ୍ରହରେ ଫଟୋଗ୍ରାଫ୍

ଦୁଇଟି ମୁଁ ହାତରେ ଧରିଲି । ମୋ ମନରେ ଏକ ଆଶ୍ୱାସ ଜନ୍ମିଥିଲା ଯେ, ରାତି ଏଗାରଟା ପରେ ଲଳିତା ଛଡ଼ା ଅନ୍ୟ ଜଣେ ବି ସନତ୍ ଘରକୁ ଯାଇଥିଲା ।

କିନ୍ତୁ.... ପାଦ ଦୁଇଟା ଠିକ୍ ପାଦ ତ ନୁହେଁ, ହଳେ ଜୋତାର ତଳ ଅଂଶ । କ'ଣ ବୁଝିବି ମୁଁ ସେଥିରୁ ? ଅସହାୟ ଆଖିରେ ରାଜଗୁରୁଙ୍କ ମୁହଁକୁ ଚାହିଁଲି ।

ସେ କହିଲେ: ଏ ଯେଉଁ ତୃତୀୟ ଜଣକର ପାଦଚିହ୍ନ ଆପଣଙ୍କ ହାତରେ, ସେ ନାରୀର କିମ୍ବା ପୁରୁଷର ଆମର ଜାଣିବାର କିଛି ଉପାୟ ନାହିଁ । ତେବେ ଯେଉଁ ତୃତୀୟ ଜଣକର ଏହି ପାଦଚିହ୍ନ, ସେ ଏକ ରବରସୋଲ୍ ଜୋତା ପିନ୍ଧି ସନତ୍ ଘରକୁ ଯାଇଥିଲା । ଆମେ କିନ୍ତୁ ସେହି ଜୋତା ଯୋଡ଼ାକର କିମ୍ବା ଜୋତାର ମାଲିକର କିଛି ସନ୍ଧାନ ପାଉ ନାହୁଁ ।

ମୁଁ ଅତ୍ୟନ୍ତ ଆଗ୍ରହ ସହକାରେ ପ୍ରଶ୍ନ କଲି : ସନତ୍‌ର ହତ୍ୟାକାରୀ ଏହି ରବରସୋଲ୍ ଜୋତା ଯୋଡ଼ାକର ମାଲିକ ତ ହୋଇପାରେ ।

ରାଜଗୁରୁ ମୋ ମୁହଁକୁ କିଛି ସମୟ ରହସ୍ୟମୟ ଦୃଷ୍ଟିରେ ଅନାଇ ରହି କହିଲେ, : ହୋଇପାରେ, କିନ୍ତୁ.......

: ପୁଣି କିନ୍ତୁ କ'ଣ ?

: କିନ୍ତୁ ସେଇ ଜୋତା ଯୋଡ଼ାକୁ ବି ଲଳିତା ମାଲହୋତ୍ରା ବ୍ୟବହାର କରିପାରିଥାଏ ।

: କିପରି ?

: ଥରେ ଖାଲି ଗୋଡ଼ରେ ଓ ଆଉ ଥରେ ଜୋତାପିନ୍ଧି ସେ ସନତ୍ ମଜୁମଦାର ଘରକୁ ଯାଇପାରିଥାଏ ।

: ଉଦ୍ଦେଶ୍ୟ ?

: ଆମକୁ ଗୋଲକଧନ୍ଧାରେ ପକାଇବା ପାଇଁ ।

: ଏତେ ବୁଦ୍ଧି କିନ୍ତୁ ଲଳିତାର ଥିବା ପରି ମୋର ମନେହେଉ ନାହିଁ । ମୁଁ ସହଜ ଓ ବିଶ୍ୱସ୍ତ ସ୍ୱରରେ କହିଲି ।

: ଆପଣଙ୍କ ପରି ଦୃଷ୍ଟିଭଙ୍ଗିଟା ଯଦି ସମସ୍ତଙ୍କର ଏତେ ସରଳ ହୋଇଥାନ୍ତା.....

ମୁଁ କଥା କାଟି କହିଲି : ଲଳିତା ଯେ ଜୋତା ପିନ୍ଧି ଆଉ ଥରେ ସନତ୍ ଘରକୁ ଯାଇପାରିଥାଏ, ଏଇଟା ଆପଣଙ୍କର ସନ୍ଦେହ ତ !

: ତା'ଛଡ଼ା ଖାଲିପାଦରେ ଯାଇଥିବା କଥା କିନ୍ତୁ ପ୍ରମାଣ ରହିଛି । ରାଜଗୁରୁ ସହଜ ସ୍ୱରରେ କହିଲେ ।

ମୁଁ ନୀରବ ହୋଇଗଲି ।

ରାଜଗୁରୁ ମୋତେ ପଚାରିଲେ : ଲଳିତା ଟେନିସ୍ ଖେଳେ ?

: ହଠାତ୍ ଏ ପ୍ରଶ୍ନ କାହିଁକି ? ମୁ ପଚାରିଲି ।

: ଯେଉଁମାନେ ଟେନିସ୍ ଖେଳନ୍ତି ସେମାନେ କାନଭାସ୍ ଜୋତା ବ୍ୟବହାର କରନ୍ତି, ଏବଂ ଟେନିସ୍ ଜୋତା ତଳେ ସାଧାରଣତଃ ରବରସୋଲ୍ ଥାଏ ।

: ଏତେବଡ଼ କଲିକତା ସହରରେ କ'ଣ ଏକା ଲଳିତା ଟେନିସ୍ ଖେଳେ ?

ରାଜଗୁରୁ ହସିଲେ । କହିଲେ : ନ ହେଲେ ବି ଶହେ ଖେଳୁଆଡ଼ଙ୍କ ଭିତରୁ ସେ ତ ଜଣେ ହୋଇଥିବ ।

ମୁଁ କହିଲି : ମୁଁ ଜାଣି ନାହିଁ । ଆପଣ ଲଳିତାକୁ ପଚାରିଲେ ନାହିଁ ?

: ପଚାରିଥିଲି । ସେ କହିଲା ମୁଁ ଆଗେ ଖେଳୁଥିଲି, ଏବେ ଅନେକ ଦିନରୁ ଛାଡ଼ିଛି । ରାଜଗୁରୁ କହିଲେ ।

: ତା' ହେଲେ ? ମୋତେ ଆଉ କ'ଣ କହୁଛନ୍ତି ?

: ଆମେ ଟିକିଏ ତାଙ୍କ ଘରେ ଦେଖିବା, ଟେନିସ୍ ଜୋତା କେଉଁଠି ହଲେ ଅନାଦୃତ ହୋଇ ପଡ଼ିରହଛି କି ନାହିଁ । ତା'ହେଲେ ଅନେକାଂଶରେ ଆମ ସମସ୍ୟା ସମାଧାନ ହୋଇଯିବ ।

: ଆପଣ ଯାଆନ୍ତୁ, ଯମୁନା ଦେବୀ ବୋଧହୁଏ ଘରେ ଥିବେ ।

: ନା ନ ଥିଲେ, ଆସିଲେଣି । ତେବେ ସେ କହିଲେ ଆପଣଙ୍କୁ ଡାକି ନେବା ପାଇଁ, ଆପଣ ତାଙ୍କର ସବୁଖବର ବୁଝୁଛନ୍ତି ଯେତେବେଳେ..........

ମୋତେ କାହିଁକି ରାଜଗୁରୁଙ୍କ ପ୍ରତିଟି କଥା ପରିହାସ ପରି ଲାଗୁଥିଲା କିମ୍ବା ମୁଁ ସେମାନଙ୍କୁ ସହ୍ୟ କରି ପାରୁ ନଥିଲି । ତଥାପି ମୁଁ ଉଠୁ ଉଠୁ କହିଲି : ଲଳିତା ଘରୁ ଯଦି କାନଭାସ୍ ଜୋତା ନ ମିଳେ ?

: ତା' ହେଲେ ନିଶ୍ଚୟ ଅସୁବିଧା ହେବ । ରାଜଗୁରୁ କହିଲେ କିନ୍ତୁ ମୋର ବିଶ୍ୱାସ ଆମେ ହଳେ ସଦ୍ୟବ୍ୟବହୃତ କାନଭାସ୍ ଜୋତା ପାଇବା ।

ଆମେ ସମସ୍ତେ ଉଠୁଥିଲୁ । କିନ୍ତୁ ହଠାତ୍ ସୁତପାଙ୍କର ଆବିର୍ଭାବ ଆମ ସମସ୍ତଙ୍କୁ ପୁଣି ବସାଇବାକୁ ବାଧକଲା । ଚାକର ହାତରେ କଫି ଟ୍ରେ ଧରାଇ ଦେଇ ନିଜେ ସେ ପଛେ ପଛେ ଆସୁଥିଲେ ।

ଖାଲି କଫି ତ ନୁହେଁ, ପକୋଡ଼ି ଆଉ ପିଆଜି ତିନି ପ୍ଲେଟ୍ ଆସିଥିଲା । ଅତି ସ୍ୱାଭାବିକ ଭାବରେ ପ୍ଲେଟ ତିନିଟି ସେ ଆମ ହାତକୁ ବଢ଼ାଇ ଦେଇ କହିଲେ : ପକୋଡ଼ି ଭାଜୁ ଭାଜୁ ଟିକିଏ ଡେରିହୋଇଗଲା ।

: ଆପଣ ଆମପାଇଁ କାହିଁକି ଏତେ କଷ୍ଟ କଲେ ବୌଦି ! ଖାଲି ଚା' କପେ କପେ ହୋଇଥିଲେ ଚଳି ଥାଆନ୍ତା । ଦେବନାଥ ପକୋଡ଼ି ଚୋବାଉ ଚୋବାଉ କହିଲେ ।

ସୁତପା ଦେବନାଥ କଥାର କିଛି ଉତ୍ତର ନ ଦେଇ କହିଲେ : ଆଗାମୀ ରବିବାର ଦିନକୁ ନିମନ୍ତ୍ରଣ ରହିଲା, ଆପଣମାନେ ଆସିବେ ।

ଆଉ କାହାରି କିଛି ଉତ୍ତରକୁ ଅପେକ୍ଷା ନ କରି ସୁତପା ଘରୁ ବାହାରି ଚାଲିଗଲେ ।

ପକୋଡ଼ି ଖାଉ ଖାଉ ମୋର ମନେପଡ଼ିଲା ପ୍ରଫେସରଙ୍କ କଥା । ମୁଁ କହିଲି : ପ୍ରଫେସର ମଜୁମଦାର ଆପଣଙ୍କୁ ଲଳିତା ସମ୍ବନ୍ଧରେ କିଛି କହିଥିଲେ ?

: ଓଃ, ହଁ, ଆପଣଙ୍କୁ କହିବାକୁ ଭୁଲିଯାଇଥିଲି । ପ୍ରଫେସରଙ୍କର ବକ୍ତବ୍ୟ ହେଉଛି ତାଙ୍କର ଯାହା କ୍ଷତି ସାଧନ ହେବାର ତ ହୋଇ ସାରିଛି, ତାଙ୍କ ପାଇଁ ଆଉ ଗୋଟିଏ ଅମୂଲ୍ୟ ପ୍ରାଣକୁ ନଷ୍ଟ କରିବାକୁ ସେ ଚାହାନ୍ତି ନାହିଁ । ସେଥିପାଇଁ ଆମ ପାଖରେ ସେ ଲଳିତାର ମୁକ୍ତି କାମନା କରୁଥିଲେ । ରାଜଗୁରୁ କହିଲେ ।

: ମୋତେ ବି ସେଇକଥା କହୁଥିଲେ । ଖାଲି ସେତିକି ନୁହେଁ ଆପଣମାନଙ୍କୁ ଅନୁରୋଧ କରି ଏଥିରୁ ନିବର୍ତ୍ତଇବା ପାଇଁ ମଧ କହିଥିଲେ ।

: କିନ୍ତୁ ପ୍ରଫେସର ମଜୁମଦାର ଆଉ ଆଇନ୍ ଦୁଇଟି ଭିନ୍ନ ଜିନିଷ । ମୁଁ ସେଇଆ ଭଦ୍ରଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲି, ଆପଣ ବି କହିବେ । ଯଦି ଆଇନ୍ ଲଳିତାକୁ ନିର୍ଦୋଷ ପ୍ରମାଣିତ କରେ, ତେବେ ଆମେ ତ ବାଟଭାଙ୍ଗି ଚାଲିଯିବୁ । ରାଜଗୁରୁ କହିଲେ ।

ଆଚ୍ଛା ମି: ରାଜଗୁରୁ ! ସତ କହିଲେ ଆପଣଙ୍କର ଲଳିତା ପ୍ରତି ଏତେ ଆକ୍ରୋଶ କାହିଁକି? କେଜାଣି ହଠାତ୍ ମୁଁ ପଚାରି ବସିଲି ।

ରାଜଗୁରୁ କଫି କପ୍‌ଟା ଡିସ୍ ଉପରେ ରଖି ମୋ ମୁହଁକୁ ଚାହିଁ ଟିକିଏ ହସିଲେ । କହିଲେ : ଖାଲି ଲଳିତା ନୁହେଁ; ବିନତା, ସଞ୍ଚୟିତା, ସଂଯୁକ୍ତା ସମସ୍ତଙ୍କ ଉପରେ ମୋର ଆକ୍ରୋଶ । ଅବଶ୍ୟ ଯେଉଁମାନେ ଲଳିତା ପରି ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିଛନ୍ତି । ଆପଣ ତ ଜାଣନ୍ତି ଆମେ ଦେଶରୁ ଅନ୍ୟାୟ, ଅନାଚାର ଦୂର କରି, ଦୋଷୀକୁ ଶାସ୍ତି ଦେବାର ଦାୟିତ୍ୱ ଗ୍ରହଣ କରିଛୁ । ଦାୟିତ୍ୱରେ ଅବହେଳା କରିବା କ'ଣ ଉଚିତ ହେବ ?

ମୁଁ ରାଜଗୁରୁଙ୍କୁ ଆଉ କିଛି ପଚାରିବା ପୂର୍ବରୁ ଦେଖିଲି ସୁତପା ପୁଣି ଆମ ଡ୍ରଇଁରୁମ୍‌ରେ ଆବିର୍ଭାବ ହୋଇଛନ୍ତି । ପଚାରିଲି : କୁଆଡ଼େ ଯାଇଥିଲେ କି ?

: ଯମୁନା ଦେବୀଙ୍କ ଘରକୁ, ସୁତପା କହିଲେ ।

: ସେ ଘରେ ଅଛନ୍ତି ?

: ହଁ, ଶୋଇ ଶୋଇ କାନ୍ଦୁଛନ୍ତି । ଆଜି ମୁଁ ପ୍ରଥମେ ତାଙ୍କୁ କାନ୍ଦୁଥିବାର ଦେଖିଲି । ସୁତପା ଘର ଭିତରକୁ ଚାଲିଗଲେ ।

ମୁଁ ଟିକିଏ ଗୁମ୍‌ମାରି ବସିପଡ଼ିଲି । ଯମୁନା ଦେବୀ କାନ୍ଦୁଛନ୍ତି । ସେଭଳି ନାରୀ ଚରିତ୍ର ମୋ ଆଖିରେ ଏହା ଆଗରୁ କେବେ ପଡ଼ି ନଥିଲା । ଦୃଢ଼, ସଂଯତ ଓ ସାହସୀ; ତଥାପି ତାଙ୍କ ଆଖିରେ ଅଶ୍ରୁ !

ତାଙ୍କର ଏହି ମାନସିକ ଅସୁସ୍ଥତା ସମୟରେ ତାଙ୍କୁ ଯାଇ ବିରକ୍ତ କରିବା କ'ଣ ଉଚିତ ହେବ ? ଦେବନାଥ ବା ରାଜଗୁରୁ କେହି ସେ କଥା ବୁଝିବେ ନାହିଁ । ମଣିଷର ସବୁ ପରେ ଯେ ଗୋଟାଏ ଅନ୍ତର ଅଛି, ତାହା ବୋଧହୁଏ ଏଇ ପୋଲିସ୍ ଲୋକମାନେ ବୁଝିବାକୁ ପ୍ରସ୍ତୁତ ନୁହନ୍ତି ।

ମୁଁ କହିଲି : ଆଚ୍ଛା ମିଷ୍ଟର ରାଜଗୁରୁ ! ଆପଣଙ୍କ କଣ୍ଠ ସ୍ୱରରୁ ମନେହେଉଛି ଯେ, ଆପଣ ଯମୁନା ଦେବୀଙ୍କ ଘରୁ ହଳେ ଟେନିସ୍ ସୁ ପାଇବାକୁ ଦୃଢ଼ ବିଶ୍ୱାସ କରି ଆସିଛନ୍ତି ।

ରାଜଗୁରୁ କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ମୁଁ କହିଲି : କାହିଁକି ଆପଣ ଏପରି ଦୃଢ଼ନିଶ୍ଚିତ ?

ରାଜଗୁରୁ ପୁଣି ହସିଲେ । କହିଲେ : ତା' ନହେଲେ ମୋର ଅନୁ ସନ୍ଧାନର ଧାରା ବାଧାପ୍ରାପ୍ତ ହେବ । ମୋତେ ଲଳିତାକୁ ଅଦାଲତରେ ଦୋଷୀ ସାବ୍ୟସ୍ତ କରିବାକୁ ସହଜ ହେବ ନାହିଁ ।

: ତା'ହେଲେ ଲଳିତା ଯେ ଦୋଷୀ ସେ ସମ୍ବନ୍ଧରେ ଆପଣ ଆହୁରି ନିଶ୍ଚୟ କିଛି ପ୍ରମାଣ ସଂଗ୍ରହ କରିଛନ୍ତି ?

ରାଜଗୁରୁ କିଛି ଉତ୍ତର ନ ଦେଇ କେବଳ ହସିଲେ । ମୋର ମନେହେଲା ସେ ଯେପରି ସମ୍ମତିର ହସ । ମାନେ ମୋ ପ୍ରଶ୍ନକୁ ସେ ସମର୍ଥନ କଲେ । ମୁଁ ବି ଆଉ ଅଧିକ କିଛି ପଚାରିବାକୁ ବାଟ ଖୋଜି ପାଇଲି ନାହିଁ ।

ଦେବନାଥବାବୁ ହାତଘଡ଼ିକୁ ଚାହିଁ ଉଠି ଠିଆହେଲେ । କହିଲେ : ମୋତେ ଟିକିଏ ଶୀଘ୍ର ଫେରି ଯିବାକୁ ହେବ । ତା' ପୂର୍ବରୁ......

ରାଜଗୁରୁ ଦେବନାଥଙ୍କୁ ସମର୍ଥନ କରି ଉଠିପଡ଼ିଲେ । ମୁଁ ବି ଉଠିଲି । ଆମେ ସମସ୍ତେ ଆଉ ଥରେ ଯାଇ ଯମୁନା ଦେବୀଙ୍କ ଫ୍ଲାଟ୍‌ରେ ପହଞ୍ଚିଲୁ । ତନ୍ନ ତନ୍ନ କରି ପ୍ରତିଟି ଘର, ପ୍ରତିଟି ଆସବାସପତ୍ର ଖୋଜା ହେଲା । କିନ୍ତୁ କାହିଁ କାନଭାସ୍ ଜୋତା ?

ଗୋଟାଏ ଆଲମାରି ଭିତରୁ ଲଳିତାର ଟେନିସ୍ ରାକେଟ୍ ମିଳିଲା, ଟେନିସ୍ ବଲ ବି ତିନି ଚାରିଟା ମିଳିଲା, କିନ୍ତୁ ଟେନିସ୍ ସୁ ? ନା, ଟେନିସ୍ ସୁ ନାହିଁ ।

ଯମୁନା ଦେବୀ ଲଳିତାର ଟେନିସ୍ ଖେଳ ସମ୍ବନ୍ଧରେ କହିଲେ : ଲଳିତା ସପ୍ତମ ଅଷ୍ଟମ ଶ୍ରେଣୀରେ ପଢୁଥିବାବେଳେ ଖେଳ ଆରମ୍ଭ କରିଥିଲା । ମାତ୍ର ଦୁଇ ତିନି ମାସ ଟେନିସ୍ କ୍ଲବକୁ ଯିବା ପରେ ସେ ଭୀଷଣ ଭାବରେ ଅସୁସ୍ଥ ହୋଇପଡ଼ିଲା । ତା'ପରେ ସେ ଆଉ ଟେନିସ୍ ରାକେଟ୍ ଧରି ନାହିଁ କିମ୍ବା ଟେନିସ୍ କ୍ଲବକୁ ଯାଇ ନାହିଁ ।

ଦେବନାଥ ଓ ରାଜଗୁରୁ ଟେନିସ୍ ସୁ ନ ପାଇ ନିଶ୍ଚୟ ହତାଶ ହୋଇଥିଲେ । ମୁଁ କିନ୍ତୁ ମନେ ମନେ ଖୁସିହୋଇଥିଲି । ମୋ' ମନରେ ଲଳିତା ସପକ୍ଷରେ ଏଇ ଗୋଟିଏ ମାତ୍ର ପଏଣ୍ଟ ଦୃଢ଼ ହୋଇଥିଲା । ମୁଁ ଦ୍ରୁତ ଚିନ୍ତା କରୁଥିଲି । ସନତ୍‌ର ମୃତ୍ୟୁଦିନ ରାତ୍ରିରେ ଲଳିତା ଯଦିଓ ତା' ଘରକୁ ଯାଇଥିଲା; ତଥାପି ଆଉ ଜଣେ ଯାଇଥିଲା ଦ୍ୱିତୀୟ ବ୍ୟକ୍ତି । ଟେନିସ୍ ସୁ ପିନ୍ଧି, ହୁଏତ ହାତରେ ବି ଗ୍ଲୋଭ୍‌ସ ଲଗାଇ; ତା' ନହେଲେ ଦୁଧ ଗ୍ଲାସରୁ ଅନ୍ୟ କାହାରି ଫିଙ୍ଗର ପ୍ରିଣ୍ଟ୍ ମିଳି ନଥାନ୍ତା କିପରି ?

ରାଜଗୁରୁ ମୌନ ହୋଇ ଯାଇଥିଲେ । ବୋଧହୁଏ ତାଙ୍କ ସନ୍ଧାନର ଧାରାରେ ବ୍ୟତିକ୍ରମ ଘଟିଥିବାରୁ ।

ଯମୁନା ଦେବୀ ଓ ଆମେ ତିନିଜଣ ତାଙ୍କ ଡ୍ରଇଁ ରୁମ୍‌ରେ ବସିଥିଲୁ । କାହାରି ମୁହଁରେ ଭାଷା ନଥିଲା ।

ହଠାତ୍ ରାଜଗୁରୁ ଉଠି ଠିଆହୋଇପଡ଼ି, ଡ୍ରଇଂ ରୁମ୍‌ର କାଚ ଆଲମାରିଟା ଖୋଲି ପକାଇଲେ । ଆଲମାରି ଭିତରେ କେତେଗୁଡ଼ିଏ ମାଟି କଣ୍ଢେଇ ଓ ଶିଙ୍ଗ କାମର ଖେଳଣା ଥିଲା । ରାଜଗୁରୁ ସେଗୁଡ଼ିକ ଭିତରୁ ମାଟିରେ ତିଆରି ହୋଇଥିବା ଗୋଟିଏ ପେଟୁଆ ବୁଢ଼ା ବାହାର କରି, ସେଇଟିକୁ ଭଲ ଭାବରେ ଏପାଖ ସେପାଖ କରି ଦେଖି କହିଲେ : ବୁଢ଼ା ତ ଏଠି, ବୁଢ଼ୀ କୁଆଡ଼େ ଗଲା ?

ତା'ର ଉତ୍ତର ଯମୁନା ଦେବୀଙ୍କର ଦେବାର କଥା; କିନ୍ତୁ ସେ ନୀରବରେ ନିଶ୍ଚଳ ହୋଇ ବସିଥିଲେ । ରାଜଗୁରୁଙ୍କ କାର୍ଯ୍ୟଧାରା ଆଡ଼େ ତାଙ୍କର ଦୃଷ୍ଟି ନ ଥିଲା, ତେଣୁ ଉତ୍ତର ସେ ଦିଅନ୍ତେ କଅଣ ?

ଶେଷରେ ରାଜଗୁରୁଙ୍କ ପ୍ରଶ୍ନର ଉତ୍ତର ମୋତେ ଦେବାକୁପଡ଼ିଲା ।

ମୁଁ କହିଲି : ହୁଏତ ପିଲାମାନେ କେହି ଭାଙ୍ଗିଦେଇଛନ୍ତି ।

ରାଜଗୁରୁ ଆଉ କିଛି କହିଲେ ନାହିଁ । ଯେଉଁଠୁ କଣ୍ଢେଇଟି ଉଠେଇଥିଲେ, ସେଇଠି ପୁଣି ରଖିଦେଇ ନିଜ ଚେଆର ଉପରକୁ ଫେରିଆସିଲେ । ବସୁ ବସୁ କହିଲେ : ଏଇଭଳିଆ ଗୋଟିକିଆ ପେଟୁଆ ବୁଢ଼ୀଟିଏ ମୃତ ସନଦ୍ ମଜୁଦାରର ଟେବୁଲ୍ ଉପରେ ମୁଁ ଦେଖିଥିଲି ।

ମୋ ମନ ଭିତରେ ଯଦିଓ କଥା ପଦକ ଆଲୋଡ଼ନ ସୃଷ୍ଟି କଲା; ତଥାପି ମୁଁ ନୀରବ ରହିଲି ।

ଯମୁନା ଦେବୀ ସେତିକିବେଳୁ ଯିଏ ତଳକୁ ମୁହଁକରି ବସିଥିଲେ, ତାଙ୍କର ଆଉ ଅନ୍ୟ କେଉଁଆଡ଼େ ନିଘା ନଥିଲା ।

ଆଉ କିଛି ସମୟ ପରେ ଆମେ ଯମୁନା ଦେବୀଙ୍କଠାରୁ ବିଦାୟ ନେଇ ବାହାରି ଆସିଲୁ ।

ରାଜଗୁରୁ ଘରର ଲାଇଟ୍ ଜଳାଇ ଦେଇ ଯେମିତି ଅବାକ୍ ହୋଇଗଲେ, ତାଙ୍କ ଆଖି ଦୁଇଟା କପାଳକୁ ଉଠିଗଲା ।

ଦେବନାଥ ଓ ମୁଁ ରାଜଗୁରୁଙ୍କର ହଠାତ୍ ଏପରି ଅବାକ୍ ହେବାର କାରଣ କିଛି ବୁଝି ନ ପାରି ଘର ଭିରତରକୁ ପଶିଯାଉଥିଲୁ । ସେ ପାଟି କରି କହି ଉଠିଲେ : ଭିତରକୁ ପଶନାହିଁ ।

ଆମେ ଦୁହେଁ ଦୁଆର ମୁହଁରେ ଅଟକି ଗଲୁ ।

ରାଜଗୁରୁ ପକେଟରୁ ଗୋଟାଏ ମାଗ୍ନିଫାଇଂ ଗ୍ଲାସ ବାହାର କରି, ନଇଁପଡ଼ି ଚଟାଣ ଉପରେ ଯେପରି କ'ଣ ସବୁ ପରୀକ୍ଷା କରିବାରେ ଲାଗିଲେ, ତା'ପରେ ଦେବନାଥଙ୍କୁ ଉଦେଶ୍ୟ କରି କହିଲେ : ଲାଲବଜାରକୁ ଫୋନ୍ କରି ଜଣେ ଫଟୋଗ୍ରାଫର ଡାକ । ଆଉଥରେ ଫୁଟ୍ ପ୍ରିଣ୍ଟ୍ ନେବାକୁ ହେବ ।

ଦେବନାଥ ସଙ୍ଗେ ସଙ୍ଗେ ଆଦେଶ ପାଳନ କଲେ ।

ମୁଁ କିନ୍ତୁ କାରଣଟା କିଛି ବୁଝିପାରିଲି ନାହିଁ । କହିଲି : ଘଟଣା କ'ଣ ?

ରାଜଗୁରୁ କହିଲେ : ତାଜୁବ ଘଟଣା । ମୋ' ପାଖରେ ଏ ଘରର ଚାବି; ଅଥଚ ମୋ ଅନୁପସ୍ଥିତିରେ ଯେକୌଣସି ଭାବରେ ହେଉ ଏ ଘରେ ଅନ୍ୟ କେହି ପଶିଥିଲା ।

: କିପରି ଜାଣିଲେ ?

ରାଜଗୁରୁ ସାମ୍ନାରେ ଥିବା ଗୋଟେ ଛୋଟ ଟେବୁଲ୍ ଆଡ଼େ ଆଙ୍ଗୁଳି ଦେଖାଇ କହିଲେ: ଏଇ ଟେବୁଲ୍ ଉପରେ ଯେଉଁ ବହି କେତେଖଣ୍ଡ ପଡ଼ିଥିବାର ଦେଖୁଛନ୍ତି, ସେଇ ବହି ପାଖରେ ସେ ମାଟି କୁଣ୍ଢେଇଟି ଥିଲା । ଯେଉଁଟାକୁ ଦେଖେଇବା ପାଇଁ ମୁଁ ଆପଣଙ୍କୁ ଏଠାକୁ ଡାକିଥିଲି । ଅଥଚ....

: ଆଶ୍ଚର୍ଯ୍ୟ କଥା ତ !

: ହଁ, ନିଶ୍ଚୟ ଆଶ୍ଚର୍ଯ୍ୟର କଥା; କିନ୍ତୁ......

: ପୁଣି କିନ୍ତୁ କ'ଣ ?

ରାଜଗୁରୁ ଗମ୍ଭୀର ହୋଇ କହିଲେ : ଏହା ଦ୍ୱାରା ମୋ ପଏଣ୍ଟ ଲାଇଟ୍ ହୋଇଗଲା ।

ମୁଁ ହସି ହସି କହିଲି : ଆପଣଙ୍କର ଲାଇଟ୍ ହେଲେ ଆଉ ଜଣକର ଷ୍ଟ୍ରଂ ହେଲା ।

ରାଜଗୁରୁ ମୋ ମନକଥା ବୁଝିପାରି ସଙ୍ଗେ ସଙ୍ଗେ ହସିଦେଲେ ।

ରାତି ପାହି ସେଦିନ କେତେବେଳେ ସକାଳ ହେଲା ମୁଁ ବୁଝିପାରି ନଥିଲି । ସୁତପା ତାଙ୍କର ନିତ୍ୟକର୍ମ ଶେଷ କରି ମୋତେ ଆସି ଦି'ଥର ଡାକିଯାଇଥିଲେ; ତଥାପି ମୁଁ କଡ଼ ଲେଉଟାଇ, ଉଠୁଛି କହି ଶୋଇପଡ଼ିଥିଲି ।

କିନ୍ତୁ ଏଥର ଆଉ ସୁତପା ଛାଡ଼ିଲେ ନାହିଁ ।

ତାଙ୍କର ଆଜି ଜଣେ ବନ୍ଧୁଙ୍କ ଘରକୁ ଯିବାର କଥା । ମୋତେ ସେ ଆଠଦିନ ଆଗରୁ କହି ରଖିଥିଲେ । ଲୁସିକୁ ଖୋଇପେଇ ସ୍କୁଲକୁ ପଠାଇ ସାରିଥିଲେ । ଲୁଗାପଟା ପିନ୍ଧି ସେ ରେଡି । ମୁଁ ଖାଲି ତାଙ୍କୁ ଟ୍ୟାକ୍ସିରେ ବସାଇ ନେଇ ବନ୍ଧୁଙ୍କ ଦୁଆରେ ଛାଡ଼ିଦେଇ ଆସିବି । କାରଣ କଲିକତା ସହରରେ ସୁତପା ଏକା ଟ୍ୟାକ୍ସି ଚଢ଼ି କୁଆଡ଼େ ଯାଆନ୍ତି ନାହିଁ ।

ବାଧହୋଇ ମୁଁ ଉଠିଲି । ସୁତପା ଭାରିସୁନ୍ଦର ଦେଖା ଯାଉଥିଲା । ଲୋଭ ସମ୍ଭରଣ କରି ନ ପାରି ଟାଣିନେଲି ଖଟ ଉପରକୁ । ସେ ଚିଡ଼ି ଉଠିଲେ ।

ମୁଁ ଉଠି ବସିଲି । ହସି ହସି କହିଲି : ଜାଣ, ମୁଁ ଆଜି କେତେ ଖୁସି ?

ସୁତପା ଅଭିମାନ ସ୍ୱରରେ କହିଲେ, : ଯେତେ ଖୁସି ତମର ସବୁ ତ ପର ପାଇଁ । ପର ତମ ଘର କରିଦେବେ ଆଉ କେତେ ଦିନ ପରେ......।

ମୁଁ କହିଲି : ଆରେ ସେ କଥା ନୁହେଁ; ଲଳିତା ଯେ ସନତ୍‌କୁ ମାରି ନାହିଁ, ଧୀରେ ଧୀରେ ତା'ର ପ୍ରମାଣ ମିଳିଯାଉଛି । କାଲି ରାତିର ଘଟଣା ତମେ କିଛି ଜାଣିଛ ?

: ଜଣେଇବା ଆଉ ଦରକାର ନାହିଁ । ତମେ ଉଠିଲ । ତମେ ତ ଶୁଣେଇବ ଲଳିତାର ନିର୍ଦୋଷତାର କାହାଣୀ; କିନ୍ତୁ ମୁଁ ତମକୁ କାଲିରାତିର ଏପରି ଏକ ସମ୍ବାଦ ଶୁଣାଇବି ଯେ.....

ସୁତପା କଥା ଅସମାପ୍ତ ରଖି, ଅଳ୍ପ ଅଳ୍ପ ହସି, ମୋ ଆଡ଼କୁ ଚାହିଁ ଚାହିଁ ଘରୁ ବାହାରି ଚାଲିଗଲେ ।

ମୁଁ ତାଙ୍କ ପଛେ ପଛେ ଉଠିଯାଇ କହିଲି : କ'ଣ ଆଉ କିଛି ଶୁଣିଛ ?

ସୁତପା କହିଲେ: ଶୁଣି ନାହିଁ ଦେଖିଛି, ଆଗ ତମେ ନିତ୍ୟକର୍ମ ଶେଷ କର, ତା'ପରେ କହିବି ।

ମୁଁ ସୁତପାଙ୍କ ପିଛା ଛାଡ଼ି ସିଧା ବାଥରୁମ୍ ଆଡ଼େ ମୋହିଁଲି । ଯଥାସମ୍ଭବ ଶୀଘ୍ର ନିତ୍ୟକର୍ମ ଶେଷ କରି ଫେରିଆସିଲି ସୁତପାଙ୍କ ପାଖକୁ ।

ସୁତପା ମୋତେ ଜଳଖିଆ ଟେବୁଲ୍‌ରେ ବସେଇ କହିଲେ : ଯମୁନା ଦେବୀଙ୍କ ଘରେ କାଲି ଗୋଟିଏ ନୂଆଲୋକ ଦେଖିଲି ।

: ପୁଣି ନୂଆଲୋକ କିଏ ?

ଅବଶ୍ୟ ଯମୁନା ଦେବୀ କହିଲେ : ସେ ତାଙ୍କର ଜଣେ ଆତ୍ମୀୟଙ୍କର ପୁଅ ।

: ବୟସ ?

: ଏଇ ବାଇଶ୍ ତେଇଶ୍ ବର୍ଷ ହେବ ।

: ସେ କାହିଁକି ଆସିଥିଲା ?

: ମୁଁ ଅବଶ୍ୟ ଜାଣି ନାହିଁ । କିନ୍ତୁ ତମେମାନେ ଯେତେବେଳେ ତଳକୁ ଚାଲିଗଲ, ମୁଁ ଯାଇଥିଲି ଯମୁନା ଦେବୀଙ୍କ ଘରକୁ । ଭାବିଥିଲି ତାଙ୍କ ସାଙ୍ଗରେ ବସି ଗଳ୍ପ କରିବି । ଯମୁନା ଦେବୀଙ୍କ ମନଟା ଟିକିଏ ପରିବର୍ତ୍ତନ ହେବ; କିନ୍ତୁ ମୁଁ ଭିତରକୁ ପଶିଯାଇ ଫେରି ଆସୁଥିଲି ।

: କାହିଁକି ?

ମୁଁ ଦେଖିଲି ସେ ପିଲାଟା ଖଟ ଉପରେ ଶୋଇଛି । ଯମୁନା ଦେବୀ ନଇଁପଡ଼ି ତା' ମୁଣ୍ଡ ଆଉଁଶି ଦେଉଛନ୍ତି । ମୋ ଉପରେ ଆଖି ପଡ଼ିବାକ୍ଷଣି ସେଇ ଅବସ୍ଥାରେ ସେ ମୋତେ ପାଖକୁ ଡାକିଲେ । ମୁଁ ଆଗେଇଗଲି ।

ମୋତେ ପଚାରିଲେ : ରଜତକୁ ତମେ ଚିହ୍ନି ନାହଁ ?

ମୁଁ ନାହିଁ କଲି ।

ଯମୁନା ଦେବୀ ଆଶ୍ଚର୍ଯ୍ୟ ହେଲେ । କହିଲେ : ରଜତ ତ ଅନେକ ସମୟରେ ଆମ ଘରକୁ ଆସେ । ମୋର ଜଣେ ଆତ୍ମୀୟଙ୍କର ପୁତ୍ର । ତା'ଛଡ଼ା ରଞ୍ଜନର କ୍ଲାସ୍‌ମେଟ୍ ଥିଲା ।

ରଜତ ଉଠିବସି ମୋତେ ହାତଯୋଡ଼ି ନମସ୍କାରକଲା ।

ମୁଁ ପ୍ରତି ନମସ୍କାର ଜଣାଇ ଫେରି ଆସୁଥିଲି । ଯମୁନା ଦେବୀ କିନ୍ତୁ ମୋତେ ବସି ରଜତ ସହିତ ଗଳ୍ପ କରିବାକୁ କହିଲେ । ନିଜେ ସେ ଉଠିଗଲେ ଆମ ପାଇଁ ଚା' କରି ଆଣିବାକୁ ।

ରଜତ ସହିତ ମୁଁ କି ଗଳ୍ପ କରିବି ଭାବି ଠିକଣା କରି ପାରିଲି ନାହିଁ । ସେ ବି ନୀରବରେ ବସିଥିଲା । ଅନେକ ସମୟ ପରେ ମୁଁ ପଚାରିଲି : ଆପଣ କ'ଣ କରନ୍ତି ?

ସେ କହିଲା : ମୁଁ ପଢ଼େ ।

ପୁଣି ପଚାରିଲି : ଏମାନଙ୍କ ସହିତ ଆପଣଙ୍କର କେତେଦିନର ପରିଚୟ ?

ସେ ଅଳ୍ପ ହସିଲା, କହିଲା : ଅନେକ ଦିନର ।

: କାହିଁ ଏହା ଆଗରୁ ତ ମୁଁ ଆପଣଙ୍କୁ କେବେ ଦେଖି ନଥିଲି ?

ରଜତ ତଳକୁ ମୁହଁପୋତି କହିଲା : ହଁ ମୁଁ ଆସେ; ବିଶେଷତଃ ପ୍ରତି ଶନିବାର ଦିନ ଆସି ଏଠି ରହେ । ଆପଣ ହୁଏତ ଲକ୍ଷ୍ୟ କରି ନାହାନ୍ତି ।

ମୁଁ ନୀରବ ରହିଲି ।

ଅଳ୍ପ ସମୟ ପରେ ଯମୁନା ଦେବୀ ଚା' କାପ୍ ଧରି ଆସିଲେ । ମୁଁ ଚା' କପେ ପିଇ ଚାଲି ଆସିଲି ।

ସୁତପା କଥା ଶେଷ କରି ରହସ୍ୟମୟ ଦୃଷ୍ଟିରେ ମୋ ଆଡ଼କୁ ଚାହିଁ ଅଳ୍ପ ଅଳ୍ପ ହସିଲେ ।

ମୁଁ କହିଲି: ଏଇଟା କିନ୍ତୁ ଗୋଟାଏ ଫାଲ୍‌ତୁ ଖବର ଦେଲ । ତମେ କ'ଣ କହିବାକୁ ଚାହଁ, ସେମାନଙ୍କର କେହି ଆତ୍ମୀୟ ତାଙ୍କ ଘରକୁ ଆସିବେ ନାହିଁ ?

ସୁତପା ଏଥର ବଙ୍କା ହସ ହସି କହିଲେ : ମୋ କଥା କିନ୍ତୁ ଶେଷ ହୋଇ ନାହିଁ । ତମେ ଚା' ପିଇସାର ମୁଁ ବାକିତକ କହୁଛି ।

ମୁଁ ଚା' କପଟା ନିଃଶେଷ କରି ପୁଣି ସୁତପାଙ୍କ ମୁହଁକୁ ଅନାଇଲି ।

ସେ ଉତ୍ସାହିତ ହୋଇ କହିଲେ : କାଲି ରାତିରେ, ଯେତେବେଳେ ଦେବନାଥ ଆଉ ରାଜଗୁରୁ ଚାଲିଗଲେ : ତମେ ଖାଇ ପିଇ ସାରି ବିଛଣା ଧରିଲ ।

: ହଁ, ତା'ପରେ କ'ଣ ହେଲା ?

: ମୁଁ ଖିଆପିଆ ଶେଷ କରି ଉଠିଲା ବେଳକୁ ଏଗାରଟା ବାଜି ଯାଇଥିଲା । କିନ୍ତୁ ମୋ ମନ ଯାଇ ପଡ଼ିରହିଲା ଯମୁନା ଦେବୀଙ୍କ ଘରେ । ମୁଁ ଏଗାରଟା ପରେ ଧୀରେ ଧୀରେ ପାଦ ଚିପି ଚିପି ଯମୁନା ଦେବୀଙ୍କ ଘରକୁ ଗଲି । ଦରଜା ବନ୍ଦ ହୋଇଥିଲା; କିନ୍ତୁ ଫାଙ୍କରେ ଆଖି ରଖି ଦେଖିଲି.......

: କ'ଣ ଦେଖିଲ ?

: ଘର ଭିତରେ ଧୀର ସବୁଜ ଆଲୋକ ଜଳୁଛି ।

: ଆଉ ?

: ସେଲି ତଳେ ଶୋଇଛି ।

: ଆଉ ?

: ଯମୁନା ଦେବୀ ଖଟ ଉପରେ ରଜତ କୋଳରେ ମୁଣ୍ଡ ରଖି ଶୋଇଛନ୍ତି । ରଜତ ତାଙ୍କ ମୁଣ୍ଡ ଆଉଁଶି ଦେଉଛି ।

ସୁତପା ଏତିକି କହି ସାରିବା ବେଳକୁ କପାଳରେ ତାଙ୍କର ଝାଳ ଜମିଯାଇଥିଲା । ସେ ଯେପରି ଉତ୍ୟକ୍ତ ହୋଇ ପଡ଼ିଥିଲେ ।

ହଠାତ୍ ମୋ ପାଟିରୁ କିଛି ଉତ୍ତର ବାହାରିଲା ନାହିଁ । ରଜତ ଆଉ ଯମୁନା ଦେବୀଙ୍କ ଅନ୍ତର୍ନିହିତ ସଂପର୍କ ସମ୍ବନ୍ଧରେ ମୁଁ କିଛି ଭାବିବା ପୂର୍ବରୁ ସୁତପା ପୁଣି କହିଲେ : ଯମୁନା ଦେବୀ ଆମର ମାତୃ ସ୍ଥାନୀୟା । ତାଙ୍କ ସମ୍ବନ୍ଧରେ ମୋ ମନରେ ଯଥେଷ୍ଟ ଶ୍ରଦ୍ଧା ଭକ୍ତି ଏବେ ବି ରହିଛି । କିନ୍ତୁ....

ମୁଁ ସୁତପାଙ୍କର କଥା ଶେଷ କରିବାକୁ ନ ଦେଇ କହିଲି : ଏହାପରେ ତ ତମର ଶ୍ରଦ୍ଧା ଭକ୍ତି କମିଯିବାର କିଛି କାରଣ ନାହିଁ । ରଜତ ଯମୁନା ଦେବୀଙ୍କ ପୁତ୍ର ବୟସର । ତେଣୁ କବାଟ ଫାଙ୍କରୁ ତମେ ଯାହା ଦେଖିଲ ତାହା ବାତ୍ସଲ୍ୟ ଯେ ନ ହୋଇପାରେ କିଏ କହିବ ? ସେ ଯାହା ହେଉ, ତମେ ଉଠିଲ । ତମକୁ ପହଞ୍ଚାଇ ଆସିଲେ, ମୋର ଆହୁରି କେତେ ଜାଗାକୁ ଯିବାର ଅଛି ।

ସୁତପା କହିଲେ ମୋ ପ୍ରୋଗ୍ରାମ କ୍ୟାନ୍‌ସେଲ ।

: ମାନେ ?

: ମୋ ବଂଧୁଟି କିଛି ସମୟ ଆଗରୁ ଫୋନ୍ କରିଥିଲା । ଗୋଟାଏ ଜରୁରୀ କାମରେ ବାହାରିଯାଇଛି ।

: ତା' ହେଲେ ମୋର ଛୁଟି । ମୁଁ ଚେଆରରୁ ଉଠିପଡ଼ି ଆରଘରକୁ ଚାଲିଯାଉଥିଲି । ପୁଣି ଲେଉଟି ଆସି ସୁତପାଙ୍କ କାନ ପାଖରେ କହିଲି : ରଜତ ଅଛି ନା ଚାଲି ଗଲାଣି ?

ସୁତପା ମୋ ମୁହଁକୁ ଚାହିଁ ହସି ହସି କହିଲେ : ତମ ମନରେ ପୁଣି ସନ୍ଦେହର କଳା ଛାଇ ଦେଖାଦେଲାଣି ନା କ'ଣ ?

: ନା, ତା' ନୁହେଁ ଯେ, ତେବେ......

ସୁତପା ଆଉ ମୋ କଥା ଶୁଣିବାକୁ ଅପେକ୍ଷା ନ କରି ଉଠିଚାଲିଗଲେ ବୋଧହୁଏ ଯମୁନା ଦେବୀଙ୍କ ଘରକୁ । କାଲି ରାତିଠାରୁ ରଜତକୁ ଦେଖିବା ପରଠାରୁ ଯେଉଁ ଏକ ଭୟଙ୍କର ପ୍ରଶ୍ନ ତାଙ୍କ ମନରେ ଉଦୟ ହୋଇଛି, ସେ ପ୍ରଶ୍ନର ସମାଧାନ ନ ହେବାଯାଏ ସେ ହୁଏତ ସ୍ଥିର ରହି ପାରିବେ ନାହିଁ ।

ମୋ ମନରେ ମଧ୍ୟ ଏକ ପ୍ରହେଳିକା ସୃଷ୍ଟି ହୋଇଥିଲା । ସୁତପାଙ୍କ ପଛେ ପଛେ ମୁଁ ଛୁଟିଗଲି ଯମୁନା ଦେବୀଙ୍କ ଘରଆଡ଼େ ।

ଦେଖିଲି, ସୁତପା ଫେରିଆସୁଛନ୍ତି । ମୁହଁରେ ତାଙ୍କର ହସ ଫୁଲ । ମତେ ମଝିବାଟରେ ଦେଖି, ମୋ ହାତଧରି ଟାଣି ନେଉ ନେଉ କହିଲେ, ଦେଖିବ ଆସ । ରଜତ ତାଙ୍କ ଘରେ ଅଛି, ଯମୁନା ଦେବୀ ତାଙ୍କୁ କେତେ ଆଦର କରି ଖୁଆଉଛନ୍ତି ।

ଆମେ ଦୁହେଁ ସାଙ୍ଗହୋଇ ତାଙ୍କ ଘରକୁ ଯିବା ଉଚିତ ହେବ କି ନାହିଁ ଭାବିପାରୁ ନ ଥିଲି; କିନ୍ତୁ ସୁତପା ମୋତେ ନେଇ ଯେତେବେଳେ ସେମାନଙ୍କ ଆଗରେ ଠିଆ କରେଇ ଦେଲେ ଯମୁନା ଦେବୀ ଆମ ଆଡ଼କୁ ଚାହିଁ ଅଳ୍ପ ଟିକିଏ ଶଙ୍କିଗଲେ, ତା'ପରେ ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲେ : ଆସ ବାବା । ତମେ ତ ରଜତକୁ ଚିହ୍ନିଥିବା ସେ ସଞ୍ଜୟର କ୍ଲାସମେଟ୍ ଥିଲା । ମଝିରେ ବର୍ଷେ ଦି' ବର୍ଷ ଅସୁସ୍ଥତା ପାଇଁ ସଞ୍ଜୟଠାରୁ ଦୁଇବର୍ଷ ପଛେଇ ଯାଇଛି । ଅନେକ ଦିନରୁ ରଜତର ଆମ ଘର ସହିତ ସଂପର୍କ । ନିଜ ଘରପରି ଆସେ, ଯାଏ, ରହେ । ସଞ୍ଜୟ ବିଦେଶ ଚାଲିଯିବା ପରଠାରୁ ଅନେକ ସମୟରେ ମୁଁ ରଜତକୁ ଆମ ଘରେ ଅଟକାଏ, କାଲି ରାତିରେ ତମେ ସବୁ ଚାଲିଯିବା ପରେ ସେ ଆସିଥିଲା ।

ରଜତ ଆମ କଥାବାର୍ତ୍ତା ଆଡ଼େ କାନଦେଇଥିଲା କି ନାହିଁ କେଜାଣି, ସେ ତା'ର ଏକ ଧନରେ ଖାଇ ଚାଲିଥିଲା । ଉପରେ ଫ୍ୟାନ୍ ଘୂରୁଥିବା ସତ୍ତ୍ୱେ ଯମୁନା ଦେବୀ ଗୋଟାଏ ତାଳପତ୍ର ପଙ୍ଖାରେ ବିଞ୍ଚି ଦେଉଥିଲେ ।

ମୁଁ କହିଲି : ଆମେ ଆସିଥିଲୁ, ଆପଣ ମଉସାଙ୍କ ପାଖକୁ ଯିବେ କି ନାହିଁ ଜାଣିବା ପାଇଁ । ଆପଣ କ'ଣ ଠିକ୍ କଲେ ?

ଯମୁନା ଦେବୀ ବୋଧହୁଏ ସେଇ ମୁହୂର୍ତ୍ତରେ ସେ ସମ୍ବନ୍ଧରେ କିଛି ଉତ୍ତର ଦେବାକୁ ପ୍ରସ୍ତୁତ ନ ଥିଲେ । ମୋ ପ୍ରଶ୍ନ ଶୁଣି ମଧ୍ୟ ରଜତ ପ୍ଲେଟକୁ ଆଉ ଦୁଇଟି ସନ୍ଦେଶ ବଢ଼ାଇ ଦେଉ ଦେଉ କହିଲେ : ଖାଇଦିଏ ବାବା । ଭାତ ଖାଉ ଖାଉ ତ ବାରଟା ଗୋଟାଏ ହେବ । ଭୋକ କରିବ ଯେ !

ରଜତ ସନ୍ଦେଶ ଦୁଇଟି ଆଡ଼େ ଅନାଇ, ତଳେଇ କରି ଆମ ମୁହଁକୁ ଚାହିଁ ନୀରବରେ ଖାଇବାକୁ ଲାଗିଲା ।

ଯମୁନା ଦେବୀ ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ : ମୁଁ ଏତେବେଳଯାଏ କିଛି ଠିକ୍ କରିପାରିନାହିଁ ବାବା ! ତାଙ୍କ ପାଖକୁ ଯିବାକୁ ହେଲେ ବହୁତ ଭାବିଚିନ୍ତି ଯିବାକୁ ହେବ। ତା'ଛଡ଼ା ଏଣେ କେସ୍‌ଟା ଯେ ଶୀଘ୍ର କୋର୍ଟରେ ଉଠିବ ।

ଆମେ ଦୁଇଜଣ ସେହିପରି ଠିଆହୋଇଥିଲୁ । ରଜତର ଖିଆ ଶେଷ ହେଲା । ଯମୁନା ଦେବୀ ପ୍ଲେଟ୍‌ରେ ପାଣି ଢାଳି ରଜତର ହାତ ଧୋଇ ଦେଲେ । ପଣତରେ ହାତ ପୋଛି ଦେଲେ ।

ରଜତ ଉଠି ଠିଆହେଲା ।

ଯମୁନା ଦେବୀ କହିଲେ : ପୁଣି କେବେ ଆସିବ ବାବା !

ରଜତ ତଳକୁ ମୁହଁପୋତି କହିଲା : ପରୀକ୍ଷା ଆଉ ଅଳ୍ପଦିନ ରହିଲା । ପଢ଼ାପଢ଼ିର ପ୍ରେସର୍ ଟିକିଏ ବଢ଼ିଯାଇଛି । ସୁବିଧା ପାଇଲେ ଚାଲି ଆସିବି ।

ଯମୁନା ଦେବୀଙ୍କ ଆଖି ଯୋଡ଼ାକ ଯେପରି ଆକୁଳ ହୋଇଉଠିଲେ । ସେ ଆଉ ଟିକିଏ ରଜତ ପାଖକୁ ଘୁଞ୍ଚିଯାଇ, ପଣତ କାନିରେ ରଜତର ମୁହଁଟା ପୋଛିଦେଇ କହିଲେ: ଏଇକ୍ଷିଣା ମୋର ଦୁଃସମୟ ବାବା, ମନମିଜାଜ୍ ଠିକ୍ ରହୁ ନାହିଁ । ତୁମେ ବରଂ ଏଇଠିକି ଚାଲିଆସି ପଢ଼ାପଢ଼ି କର । କିଛି ନ କଲେ ବି, ମୋର ଗୋଟାଏ ଭରସା ! ନାଁ କ'ଣ କହୁଛ ବାବା ? ଯମୁନା ଦେବୀ ମୋ ଆଡ଼େ ଚାହିଁ ମତାମତ ଲୋଡ଼ିଲେ ।

ମୁଁ କହିଲି : ନିଶ୍ଚୟ, ନିଶ୍ଚୟ । ଆପଣଙ୍କର ଯଦି ବିଶେଷ କିଛି ଅସୁବିଧା ନ ଥିବ, ଆପଣ ଚାଲି ଆସନ୍ତୁ ।

ରଜତ ମୁହଁଟେକି ଆମ ଆଡ଼େ ଚାହିଁଲା । କହିଲା : ଚେଷ୍ଟା କରିବି ।

ତା'ପରେ ସେ ଘରୁ ଗୋଡ଼ କାଢ଼ି ବାହାରିଗଲା ।

ଯମୁନା ଦେବୀ ତା'ପଛେ ପଛେ ଶିଡ଼ିଯାଏ ଆଗେଇଗଲେ । ଫେରି ଆସି କହିଲେ : ପିଲାଟା ଭାରି ଅଭିମାନୀ ବାବା ! ଅତି ସାନଟି ଦିନରୁ ବାବା ମାଙ୍କୁ ହରାଇ, ହଷ୍ଟେଲ ମେସ୍‌ରେ ମଣିଷ ହୋଇଛି ତ ! ସେଇଥି ପାଇଁ କିପରି ଏକବାଗିଆ ହୋଇଯାଇଛି । ଠିଆ ହେଲ କାହିଁକି, ବସ !

ଏତେବେଳକେ ଯମୁନା ଦେବୀଙ୍କର ଆମ କଥା ମନେପଡ଼ିଲା ରଜତ ଏଠାରେ ଥିବା ପର୍ଯ୍ୟନ୍ତ ସେ ସମସ୍ତଙ୍କର ଅସ୍ତିତ୍ୱ ଭୁଲି ଯାଇଥିଲେ, ଏପରି କି ନିଜର ମଧ୍ୟ ।

ମୁଁ କହିଲି : ନା, ମୋର ଟିକିଏ କାମ ଅଛି । ଖାଲି ବୁଝିବାକୁ ଆସିଥିଲି । ଆପଣ ମଉସାଙ୍କ ପାଖକୁ ଯିବେ କି ନାହିଁ ।

ଯମୁନା ଦେବୀ କହିଲେ : ତମେ ଲଳିତା ପାଖକୁ ଯିବ କହୁଥିଲ, ଆଜି ଯିବ ।

: ଚେଷ୍ଟା କରିବି । ଯଦି ସମୟ ପାଏ ଯିବି ।

ମୁଁ ଦେଖିଲି ଯମୁନା ଦେବୀଙ୍କ ଦେହଟା କ୍ଳାନ୍ତିରେ ଯେପରି ପୂରିରହିଛି । ହାତ ଉଠେଇ ଘନ ଘନ ହାଇମାରୁଛନ୍ତି ।

ଆଗରୁ ସୁତପା ଚାଲିଯାଇଥିଲେ ଏଥର ମୁଁ ଚାଲିଯିବା ପାଇଁ ବ୍ୟସ୍ତ ହୋଇ ଉଠିଥିଲି । ମୁଁ ମନେ ମନେ ଭାବୁଥିଲି ରଜତ କଥା । ସେ ହୁଏତ ଟ୍ରାମ ରାସ୍ତା ପାଖରେ ଯାଇ ପହଞ୍ଚି ନଥିବ । ତା'ସହିତ କଥାବାର୍ତ୍ତା ହେଲେ, ଯମୁନା ଦେବୀଙ୍କ ପରିବାର ସମ୍ବନ୍ଧରେ ହୁଏତ ବହୁ ତଥ୍ୟ ସଂଗ୍ରହ କରିହେବ ।

ଆଉ ଠିଆ ହୋଇପାରିଲି ନାହିଁ । ଆସୁଛି କହି ଯମୁନା ଦେବୀଙ୍କ ଉତ୍ତରକୁ ଅପେକ୍ଷା ନ କରି ଘରୁ ବାହାରି ଆସିଲି । କ୍ଷିପ୍ରପଦରେ ଶିଡ଼ିବାଟେ ତଳକୁ ଓହ୍ଲେଇ ଯାଉଥିଲି । ଶିଡ଼ିର

ଶେଷ ପାହାଚ ଅତିକ୍ରମ କରି ରାସ୍ତାରେ ପାଦଦେବି, ଦେଖିଲି ପ୍ରଫେସର ମଜୁମଦାର ମୋ ସାମ୍ନାରେ । ବୋଧହୁଏ ବାହାରୁ କୁଆଡୁ ଫେରୁଥିଲେ ।

ମୋତେ କହିଲେ : କାଲି ସେମାନେ ଆସିଥିଲେ । ମୋ' କଥା ସେମାନଙ୍କୁ କହିଥିଲ ?

: କେଉଁମାନେ ? ହଠାତ୍ ଯେପରି ମୋର ତାଳଭଙ୍ଗ ହେଲା । ମୋର ଗତିବେଗ ସ୍ଥିର ହୋଇ ଯିବାରୁ ମୁଁ ବିବ୍ରତ ବୋଧ କଲି ।

ପ୍ରଫେସର ମଜୁମଦାର କହିଲେ : ପୋଲିସ୍ ଅଫିସରମାନେ । ସେମାନେ ଆପଣଙ୍କର ବନ୍ଧୁ। ଆପଣ ଇଚ୍ଛାକଲେ ଲଳିତାର ଜୀବନ ରକ୍ଷା କରି ପାରନ୍ତେ ।

ମୁଁ କିଛି ଉତ୍ତର ନ ଦେଇ ବାଁ ପାଖ ରାସ୍ତାକୁ ପାଦ ବଢ଼ାଉଥିଲି; କିନ୍ତୁ ପ୍ରଫେସର ମଜୁମଦାର ମୋତେ ଛାଡ଼ିଲେ ନାହିଁ । କହିଲେ : ଆମ ଘରକୁ ଆସନ୍ତୁ । ଆପଣଙ୍କ ସହିତ ମୋର କଥା ଅଛି ।

ବାଧ ହୋଇ ଅନିଚ୍ଛାସତ୍ତ୍ୱେ ମୋତେ ପ୍ରଫେସର ମଜୁମଦାରଙ୍କ ସହିତ ତାଙ୍କ ଡ୍ରଇଂରୁମ୍‌କୁ ଫେରିଯିବାକୁ ପଡ଼ିଲା ।

ସେ ମୋତେ ବସିବାକୁ କହି ଘର ଭିତରକୁ ଚାଲିଗଲେ । ଅଳ୍ପ ସମୟ ପରେ ଫେରି ଆସି, ମୋ ସାମ୍ନାରେ ଗୋଟାଏ ଚେଆର ଉପରେ ବସପଡ଼ି କହିଲେ : ଆପଣଙ୍କର ଏମାନଙ୍କ ସହିତ କେତେ ଦିନର ପରିଚୟ ?

ହଠାତ୍ ଏପରି ଏକ ପ୍ରଶ୍ନରେ ପ୍ରଥମେ ଟିକିଏ ସ୍ତବ୍ଧ ହୋଇଯାଇଥିଲି । ତା'ପରେ ଧୀରେ ଧୀରେ କହିଲି : ଏଇଠି ଆମ ପରିଚୟ । ଏଇ ଘରକୁ ଆସିଲା ଦିନରୁ ।

: ହୁଁ, ପ୍ରଫେସର ମଜୁମଦାର କିଛି ସମୟ ପାଇଁ ଗମ୍ଭୀର ହୋଇଯାଇଥିଲେ । ତା'ପରେ ଧୀରେ ଧୀରେ କହିଲେ: ଏମାନେ ଅବଙ୍ଗାଳୀ । ଏମାନଙ୍କ ସମ୍ବନ୍ଧରେ ସହଜରେ କିଛି ଗୋଟାଏ ଧାରଣା କରିନେବା ଉଚିତ ନୁହେଁ । ତେବେ କଥା ହେଉଛି, ମୁଁ ଚାହେଁନା......

ପ୍ରଫେସର ମଜୁମଦାରଙ୍କର କଥାଗୁଡ଼ାକ ମୋତେ ଖୁବ୍ ଖାପଛଡ଼ା ମନେହେଲା । କ'ଣ ସେ କହୁଛନ୍ତି, ବୋଧହୁଏ ସେ ସମ୍ବନ୍ଧରେ ନିଜେ ସେ ସଚେତନ ନୁହନ୍ତି ।

ମୁଁ କହିଲି : କେସ୍‌ଟା ତ ଆଉ ଆମ ହାତରେ ନାହିଁ । ତେଣୁ ଆମର ସେ ସମ୍ବନ୍ଧରେ ଚିନ୍ତା କରି ଲାଭ କ'ଣ ହେବ ।

ପ୍ରଫେସର ମଜୁମଦାର ପୁଣି ଟିକିଏ ଚିନ୍ତା କରି, ମୋ କାନପାଖକୁ ମୁହଁ ଆଣି କହିଲେ : କିନ୍ତୁ କେସ୍‌ଟା ଯଦି ପ୍ରମାଣିତ ହୁଏ ଗୋଟିଏ ଅମୂଲ୍ୟ ପ୍ରାଣ ନଷ୍ଟ ହୋଇଯିବ ।

: ମାନେ ? ମୋ କଣ୍ଠରେ ବିସ୍ମୟ ଫୁଟିଉଠିଲା ।

ପ୍ରଫେସର ମଜୁମଦାର ସେହିପରି କରୁଣ କଣ୍ଠରେ କହିଲେ: ସେଦିନ ଅନେକ ରାତିରେ ଲଳିତାକୁ ମୁଁ ତଳକୁ ଆସିଥିବାର ଦେଖିଥିଲି; କିନ୍ତୁ.......

: ପୁଣି କିନ୍ତୁ କ'ଣ ? ମୋ କଣ୍ଠରେ କିପରି ଏକ ଅସ୍ୱାଭାବିକ ଚଞ୍ଚଳତା ଫୁଟିଉଠିଲା ।

ପ୍ରଫେସର ମଜୁମଦାର କହିଲେ : ନା, ଅବଶ୍ୟ ଲଳିତାର ଏତେ ରାତିରେ ଆମ ଘରକୁ ଆସିବା ଘୋର ଅନ୍ୟାୟ । ତେବେ ଏତିକି ଅନ୍ୟାୟ ପାଇଁ ଜଣକର ପ୍ରାଣଦଣ୍ଡ ବା ଆଜୀବନ କାରାଦଣ୍ଡ ମୁଁ ମୋଟେ ସହିପାରିବି ନାହିଁ ।

: ତା' ଅର୍ଥ ଲଳିତା ଆପଣଙ୍କ ଘରେ ପଶି ଗୋଟିଏ ଅମୂଲ୍ୟ ପ୍ରାଣ ନଷ୍ଟ କରି ଚାଲିଯିବ, ବଦଳରେ.......

: ନୋ, ନୋ ୟଙ୍ଗମ୍ୟାନ, ପ୍ରାଣନଷ୍ଟ କରିବା ଭଳି ସତ୍‌ସାହସ ଲଳିତାର ନାହିଁ।

ସେଇଥି ପାଇଁ ଅନୁଶୋଚନା। ମୋର ତ ମନେହୁଏ ସନତ୍ ଆତ୍ମହତ୍ୟା କରିଛି; ଯଦି ତାହା ନ ହୋଇଥାଏ, ତେବେ ସନତ୍‌ର ହତ୍ୟାକାରୀ ଅନ୍ୟ କେହି ହୋଇପାରେ, କିନ୍ତୁ ଲଳିତା ନୁହେଁ।

ମୁଁ ପ୍ରଫେସର ମଜୁମଦାରଙ୍କର ଲଳିତା ପ୍ରତି ଏହି ପକ୍ଷପାତିତ୍ୱର କାରଣ କିଛି ଖୋଜି ପାଉ ନଥିଲି। ତାଙ୍କର ବା ଲଳିତା ପ୍ରତି ଏପରି ଏକ ସରଳ ଧାରଣା ଜନ୍ମିଲା କାହିଁକି ?

ମୋର ନୀରବତାରେ ପ୍ରଫେସର ମଜୁମଦାର ବୋଧହୁଏ ଟିକିଏ ବିଚଳିତ ହୋଇ ପଡ଼ିଥିଲେ। କହିଲେ : ବୟସର ଗୋଟାଏ ମୂଲ୍ୟ ଅଛି ୟଙ୍ଗମ୍ୟାନ୍। ଏ ବୟସରେ ମଣିଷ ଚିହ୍ନିବାରେ କ'ଣ ଭୁଲ୍ ହୋଇପାରେ ?

ମୁଁ କହିଲି : ଆଜିକାଲି ଯୁଗରେ ମଣିଷର ରୂପ ଆଉ ମଣିଷର ମନ ଦୁଇଟା ଅଲଗା ହୋଇଯାଇଛି। ସମୟ ଥିଲା, ଯେତେବେଳେ ମଣିଷ ମନର ପ୍ରତିଚ୍ଛବି ତା' ରୂପ ଉପରେ ପ୍ରତିଫଳିତ ହେଉଥିଲା। ସେଇ ଯୁଗର ମଣିଷ ଆପଣ; ତେଣୁ ଏ ଯୁଗରେ ଆପଣଙ୍କର ସେ ଯୁଗର ଦୃଷ୍ଟିଭଙ୍ଗିର ଯେ ବିଶେଷ କିଛି ମୂଲ୍ୟ ଅଛି, ମୁଁ କାହିଁକି ଧାରଣା କରିପାରୁ ନାହିଁ।

ପ୍ରଫେସର ମଜୁମଦାରଙ୍କ ମୁହଁ ପୂର୍ବପରି କରୁଣ ଦେଖାଯାଉଥିଲା। ମୁଁ ପଚାରିଲି : ତା' ହେଲେ ଆପଣଙ୍କର ଧାରଣା ସନତ୍ ଆତ୍ମହତ୍ୟା କରିଛି ?

ସେ ଟିକିଏ ଚଞ୍ଚଳ ହୋଇ ଉଠିଲେ। ସ୍ୱରଟା ହାଲ୍‌କା କରି କହିଲେ :

: ହୁଏତ ତାହା ହିଁ। ନ ହେଲେ ସନତ୍‌କୁ ହତ୍ୟାକରିଲା ଭଳି କୌଣସି ଶତ୍ରୁ ତା'ର ଅଛି ବୋଲି ମୋର ମନେହୁଏନାହିଁ ପୋଲିସ ଅଫିସରଙ୍କୁ ଆପଣ ସେଇକଥା କହିଲେ ନାହିଁ ?

: ମୁଁ କହିଥିଲି ୟଙ୍ଗମ୍ୟାନ୍ ! ପ୍ରଫେସରଙ୍କ ଗଳା ଭାରି ହୋଇଆସୁଥିଲା। ସେମାନେ କେହି ଶୁଣିଲେ ନାହିଁ, ହୁଏତ ମୋ କଥା ଉପରେ ସେମାନେ ଗୁରୁତ୍ୱ ଦେଲେ ନାହିଁ।

ପ୍ରଫେସର ମଜୁମଦାରଙ୍କୁ ମୁଁ ବୁଝି ।ରୁ ନଥିଲି। ଲଳିତା ପ୍ରତି ତାଙ୍କର ଯେପରି ଏକ ପକ୍ଷପାତିତ୍ୱ ରହିଯାଇଛି। ଅଥବା କୌଣସି କାରଣରୁ ସେ ଲଳିତାର ଶାସ୍ତି ଚାହାନ୍ତି ନାହିଁ। ଅଥବା......

ପ୍ରଫେସର ମଜୁମଦାର ମୋ ଭାବନାରେ ବାଧା ଦେଇ କହିଲେ:

ଲଳିତାର ବାପାଙ୍କୁ ତୁମେ ଚିହ୍ନ ୟଙ୍ଗମ୍ୟାନ୍ ?

: କିଏ ଶ୍ୟାମାନନ୍ଦ ମାଲହୋତ୍ରା ?

: ହଁ ଶ୍ୟାମାନନ୍ଦ। ଅତି ଉତ୍ତମ ଲୋକ।

: ଆପଣଙ୍କର ତାଙ୍କ ସହିତ ପରିଚୟ ହେଲା କିପରି ?

: ବାଏ ଦି ବାଏ। ଏକ ସମୟରେ। ସେ ଅନେକ ଦିନ ତଳେ। ତାଙ୍କର ଝିଅ ଲଳିତା। ତେଣୁ ଲଳିତା ଖୁଣୀ ହୋଇପାରେନା।

ମୁଁ ଆଶ୍ଚର୍ଯ୍ୟ ହୋଇ ପ୍ରଫେସର ମଜୁମଦାଙ୍କ ଗମ୍ଭୀର କଣ୍ଠସ୍ୱର ଶୁଣୁଥିଲି । ମୋର ମନେହୋଇଥିଲା ପ୍ରଫେସର ମଜୁମଦାରଙ୍କ ସହିତ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ପରିବାରର ସମ୍ବନ୍ଧ ଯେପରି ଯୁଗଯୁଗର ।

ମୁଁ କହିଲି : ଶ୍ୟାମାନନ୍ଦବାବୁଙ୍କ ସମ୍ବନ୍ଧରେ ମୁଁ କେବଳ ଶୁଣିଛି ମାତ୍ର, କିନ୍ତୁ ସେ ତ ବର୍ତ୍ତମାନ ଆସାମରେ ।

: ହୁଏତ ହେବେ । ଅନେକ ଦିନରୁ ମୁଁ ତାଙ୍କ ଖବର କିଛି ରଖିନାହିଁ । ପ୍ରଫେସର ମଜୁମୁଦାର ଯେପରି ସଚେତନ ହୋଇ ଉଠିଲେ । ତାଙ୍କର ଜଡ଼ତା ମୁହୂର୍ତ୍ତକରେ କଟିଗଲା ।

ମୁଁ ଉଠି ଠିଆହେଲି । କହିଲି : ଲଳିତାର ନିର୍ଦ୍ଦୋଷତା ସମ୍ବନ୍ଧରେ ମୁଁ ସେମାନଙ୍କୁ କହିବି । ଯଦି ବିଚାରି ମୁକ୍ତିପାଇପାରେ ତା' ହେଲେ ଆନନ୍ଦର କଥା ହେବ ।

: ଚେଷ୍ଟାକର ୟଙ୍ଗମ୍ୟାନ୍; ହୁଏତ ତମେ ପାରିବ । ଯୁଗ ତମର, ଧର୍ମ ତମର । ଆମେମାନେ ଓଲଡ଼ମ୍ୟାନ୍, ରିଟାଏଡ଼ ।

ମୋର ଆଉ ପ୍ରଫେସର ମଜୁମଦାରଙ୍କ କଥା ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ନମସ୍କାର କରି ବାହାରି ଆସିଲି ।

ଥାନାରେ ପହଞ୍ଚି ଶୁଣିଲି, ଦେବନାଥବାବୁ ଲାଲବଜାର ଯାଇଛନ୍ତି । ଶୀଘ୍ର ଫେରି ଆସିବେ । ଅପେକ୍ଷା କରିବା ଛଡ଼ା ଅନ୍ୟବାଟ ନ ଥିଲା । କାରଣ ମୋର ଆଜି ଆଲିପୁର ଯିବା କଥା, ଲଳିତା ସହିତ ଦେଖାକରିବାକୁ । କଥା ଥିଲା ଦେବନାଥବାବୁ ମୋତେ ସଙ୍ଗରେ ନେଇ ସେଠାରେ ଜେଲରଙ୍କ ସହିତ ପରିଚୟ କରାଇଦେବେ । ଦେଖା କରିବାର ପରମିସନ ମଧ୍ୟ କରାଇଦେବେ ।

ଏ କେତେ ଦିନର ବିଭିନ୍ନ ବିକ୍ଷିପ୍ତ ଘଟଣାରୁ ମୋ ମନ ଏକ ରହସ୍ୟମୟ ପରିବେଶ ଭିତରେ ବିଚରଣ କରୁଥିଲା ଯାହା ସମାଧାନ ପାଇଁ ମୁଁ ବ୍ୟଗ୍ର ହୋଇ ଉଠିଥିଲି । ସେଥିପାଇଁ ଲଳିତା ସହିତ ଭେଟିବା ମୋର ପ୍ରଥମ କର୍ତ୍ତବ୍ୟ ହୋଇପଡ଼ିଥିଲା । ଅବଶ୍ୟ ଲଳିତା ଯଦି ମୁହଁ ନ ଖୋଲେ ତା'ହେଲେ ରହସ୍ୟର ସମାଧାନ କରିବା ମୋ ପକ୍ଷରେ ମୋଟେ ସମ୍ଭବ ହେବ ନାହିଁ ।

ମୋର ଏହି ଦୁଶ୍ଚିନ୍ତା ଭିତରେ ଦେବନାଥବାବୁ ଆସି ପହଞ୍ଚିଗଲେ । ମୋତେ ଦେଖିବା କ୍ଷଣି ତାଙ୍କ ଗମ୍ଭୀର ମୁହଁରେ ହସ ଖଣ୍ଡେ ଫୁଟିଉଠିଲା । ସେ ନିଜର ଆସନଟିରେ ବସୁ ବସୁ କହିଲେ : ଜୟ ଆପଣଙ୍କର ସୁନିଶ୍ଚିତ ।

: ମାନେ ?

: ମାନେ କାଲି ଯେଉଁ ନୂତନର ଫୁଟପ୍ରିଣ୍ଟ ନିଆହେଲା, ସେ ସେଇ 'ଟେନିସ୍ ସୁ'ର । ଅବଶ୍ୟ ମିଷ୍ଟର ରାଜଗୁରୁ ସେଥିପାଇଁ ଟିକିଏ ଚିନ୍ତିତ ହୋଇ ପଡ଼ିଛନ୍ତି ।

: କାହିଁକି ?

: ଆମେ ତ ଲଳିତାକୁ ସଂପୂର୍ଣ୍ଣ ରୂପେ ଦୋଷୀ ସାବ୍ୟସ୍ତ କରି ବସିଥିଲୁ । କିନ୍ତୁ ଲଳିତା ତ ଆଠଦିନ ହେବ ହାଜତରେ । ସନତ୍ ଘରେ 'ଟେନିସ୍ ସୁ'ର ଫୁଟପ୍ରିଣ୍ଟ ପୁଣି ଦେଖାଯାଇଛି ଫଳରେ.........

: ସମସ୍ୟା । ମୁଁ ଉତ୍ସାହିତ ହୋଇ କହିଲି ।

: ହଁ ସମସ୍ୟା ନୁହେଁ ତ ଆଉ କ'ଣ ? ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, 'ଟେନିସ୍ ସୁ' ପରିହିତ ନାରୀ ବା ପୁରୁଷ ଜଣକ ଯିଏ ହେଉ ସେ ଲଳିତା ନୁହେଁ । ତେବେ ଏହାଦ୍ୱାରା ସଂପୂର୍ଣ୍ଣ ପ୍ରମାଣିତ ହେଉନାହିଁ ଯେ ଲଳିତା ସନତ୍‌କୁ ହତ୍ୟା କରି ନାହିଁ; କାରଣ ସନତ୍‌ର ମୃତ୍ୟୁଦିନ ରାତିରେ ଲଳିତା ସନତ୍ ଘରକୁ ଯାଇଥିବାର ପ୍ରମାଣ ତ ଆପଣ ପାଇଛନ୍ତି ।

: ତା' ଅବଶ୍ୟ ପାଇଛି; କିନ୍ତୁ ଲଳିତା ହାଜତରେ ରହିଥିବା ସମୟରେ 'ଟେନିସ୍ ସୁ'ର ମୃତ ସନତ୍‌ର ବନ୍ଦ ଘର ଭିତରଯାଏ ଆତଯାତ ମୂଳରେ କିଛି ରହସ୍ୟ ଆପଣ ଅନୁଭବ କରୁ ନାହାନ୍ତି ?

ଦେବନାଥବାବୁ କହିଲେ : ସେଇଥିପାଇଁ ତ ମୁଁ କହୁଛି ଜୟ ଆପଣଙ୍କର । ତେବେ ସବୁ ନିର୍ଭର କରୁଛି ଓକିଲଙ୍କ ଉପରେ । ଅବଶ୍ୟ ଏହି 'ଟେନିସ୍ ସୁ' ଛଡ଼ା ଆଉ କେତୋଟି ଅକାଟ୍ୟ ପ୍ରମାଣ ଲଳିତା ବିରୋଧରେ ମିଷ୍ଟର ରାଜଗୁରୁ ସଂଗ୍ରହ କରିଛନ୍ତି । ସେ ଯା'ହେଉ ସେସବୁ ତ ପରର କଥା, ବର୍ତ୍ତମାନର କଥା ହେଉଛି ଆମେ ଆଲିପୁର ଯିବା ପାଇଁ ପ୍ରସ୍ତୁତ ହେବା ।

ଦେବନାଥବାବୁ ଟେବୁଲ୍ ଉପରେ ଥିବା କେତୋଟି ଫାଇଲ୍ ଦେଖିସାରି ଗୋଟାଏ କନେଷ୍ଟବଲକୁ କହିଲେ ଗାଡ଼ି ପ୍ରସ୍ତୁତ କରିବା ପାଇଁ ।

ଆଲିପୁର ଜେଲ୍‌ର ସେଲ୍ ଭିତରେ ଯେତେବେଳେ ଲଳିତା ସହିତ ମୋର ଦେଖା ହେଲା, ମୁଁ ଲଳିତାକୁ ପ୍ରଥମେ ଚିହ୍ନିପାରିଲି ନାହିଁ । ମାତ୍ର ଏଇ କେତୋଟି ଦିନ ଭିତରେ ଲଳିତାର ଖାଲି ମାନସିକ ନୁହେଁ, ଶାରୀରିକ ଅବନତି ଯେ ଏତେଟା ହୋଇପାରେ ମୁଁ ବିଶ୍ୱାସ କରି ପାରିଲି ନାହିଁ ।

ଲଳିତା ମୋତେ ଦେଖି ହାତଯୋଡ଼ି ନମସ୍କାର କଲା । କହିଲା : ମୁଁ ଜାଣିଥିଲି ଆପଣ ଆସିବେ; କିନ୍ତୁ ନ ଆସିଥିଲେ ଭଲ ହୋଇଥାଆନ୍ତା । ଆପଣଙ୍କୁ ଦେଖିଲେ ଜୀବନ ପ୍ରତି ନୂଆ କରି ମମତା ଜନ୍ମେ; ହେଲେ ମୋର ଜୀବନରେ କୌଣସି ମୂଲ୍ୟ ନାହିଁ ।

ଲଳିତାର ଏ କେତୋଟି ଦିନ ଭିତରେ ଅନେକ ପରିବର୍ତ୍ତନ ହୋଇଛି । ଜୀବନର ମାନ ସମ୍ବନ୍ଧରେ ସେ ଚିନ୍ତା କରି ଶିଖିଛି । ହୁଏତ ତା'ର କିଛିଦିନ ପାଇଁ ଏହିପରି ଏକ ବନ୍ଦୀ ଜୀବନର ପ୍ରୟୋଜନ ଥିଲା ।

ମୁଁ ନୀରବରେ କିଛି ସମୟ ଲଳିତାକୁ ଚାହିଁବା ପରେ କହିଲି : ତମ ସହିତ ମୋର ପରିଚୟ ଯଦିଓ ଦୀର୍ଘ ଦିନର , ତେବେ ଆମ ଭିତରେ ଖୁବ୍ ଗୋଟାଏ ଆନ୍ତରିକତା ନଥିଲା । ପ୍ରୟୋଜନ ନଥିଲା ମଧ୍ୟ । ପୃଥିବୀର ଲକ୍ଷ ଲକ୍ଷ କୋଟି କୋଟି ମଣିଷ ଅଛନ୍ତି, କିନ୍ତୁ ସମସ୍ତେ ସମସ୍ତଙ୍କୁ ଚିହ୍ନିବାର ସୁଯୋଗ ନାହିଁ କିମ୍ବା ଅବକାଶ ନାହିଁ । ଯେ ଯାହା ବାଟରେ ଆଗେଇ ଚାଲିଛନ୍ତି, କର୍ତ୍ତବ୍ୟ କରି ଚାଲିଛନ୍ତି । ଯେକୌଣସି କାରଣରୁ ହେଉ ତମ ଆମ ଭିତରେ ଗୋଟାଏ ସମ୍ବନ୍ଧର ସେତୁ ରଚନା କରାହୋଇଛି । ଯାହା ଫଳରେ ମୁଁ ଟାଣିହୋଇ ଆସିଛି

ଏହି ଦୁର୍ଭେଦ୍ୟ ସେଲ୍ ଭିତରକୁ । ଖାଲି ଯେ ଆକର୍ଷଣ ପଳରେ ତା'ନୁହେଁ; କିଛିଟା କର୍ତ୍ତବ୍ୟ ଦୃଷ୍ଟିରୁ ମଧ୍ୟ ।

ଲଳିତା ମୋ କଥା ଯେପରି ଅତ୍ୟନ୍ତ ଧ୍ୟାନସହକାରେ ଶୁଣୁଥିଲା । ମୁଁ ନୀରବ ହେବାରୁ କହିଲା : ଆପଣଙ୍କ କଥାଗୁଡ଼ିକ ମୋତେ ଆଜି ଶୁଣିବାକୁ ଭଲଲାଗୁଛି, ତା'ଠାରୁ ଆହୁରି ଭଲଲାଗୁଛି ମୋତେ ଏହି ନିର୍ଜନବାସ । ଏ କେତେଦିନ ଭିତରେ ଜୀବନ ସମ୍ବନ୍ଧରେ ଅନେକ କଥା ଭାବିବାକୁ ମୁଁ ଅବକାଶ ପାଇଛି ।

ମୁଁ ପୁଣି ଥରେ ଲଳିତା ମୁହଁକୁ ଚାହିଁଲି । ଆଖି ଦୁଇଟା ତା'ର ସ୍ଥିର । ମୁହଁରେ ଚାଞ୍ଚଲ୍ୟ ନାହିଁ ।

: କିନ୍ତୁ ମୁଁ ଯେଉଁଥି ପାଇଁ ଆସିଛି, ମୋତେ ତା'ର ଉତ୍ତର ସଂଗ୍ରହ କରି ନେଇ ଯିବାକୁ ହେବ ।

ଏଥର ଲଳିତା ବୋଧହୁଏ ଟିକିଏ ହସିବାକୁ ଚେଷ୍ଟାକଲା । କହିଲା : ଆପଣ କ'ଣ ମୋ' ଉପରେ ଭରସା ରଖିପାରୁ ନାହାନ୍ତି ?

: ନା, ନା ଭରସା ମୋର ଅଛି; ଆଉ ଆତ୍ମବିଶ୍ୱାସ ମଧ୍ୟ ।

: ତା' ହେଲେ ?

: ମୁଁ ଏପରି କେତେଗୁଡ଼ିଏ ଟିକିନିଖି ଘଟଣା ଜାଣିବାକୁ ଚାହେଁ, ଯେଉଁଗୁଡ଼ାକ ହୁଏତ ତମର ଏକାନ୍ତ ପାରିବାରିକ । ସେଇଥି ପାଇଁ ମୋ ଭିତରେ ଏକ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । କାଳେ ମୋର ସେଇ ସବୁ ଅନୁସନ୍ଧିତ୍ସାର ଉତ୍ତରଦେବାକୁ ଯାଇ, ତମେ ବ୍ୟଥା ପାଇବ । ସେଇଥି ପାଇଁ....

ଲଳିତା କୌଣସି ଜଟିଳତା ଭିତରକୁ ପ୍ରବେଶ କରିବାକୁ ଚେଷ୍ଟା ନ କରି କହିଲା : ଆପଣ ପଚାରନ୍ତୁ, ଆପଣଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରିବି ।

ମୁଁ ପ୍ରଥମେ ପଚାରିଲି : ତମେ କ'ଣ ପ୍ରକୃତରେ ସନତ୍‌କୁ ହତ୍ୟାକରିଛ ?

ଲଳିତା କିଛି ସମୟ ନୀରବ ରହି ମୋ ମୁହଁକୁ ଚାହିଁ ହସିଲା । କହିଲା : ଆପଣଙ୍କର ଧାରଣା କ'ଣ ?

: ମୋ ଧାରଣା ଉପରେ ତମର ତ ବିଶେଷ କିଛି ସୁବିଧା ହେବ ନାହିଁ; କିନ୍ତୁ ପୋଲିସ୍ ବିଭାଗର ଧାରଣା ତମେ ସନତ୍‌ର ହତ୍ୟାକାରୀ । ତମେ ସନତ୍‌ର ଦୁଧ ସହିତ ବିଷ ମିଶାଇଛ, ତମେ ସେଦିନ ରାତିରେ ସନତ୍ ଘରକୁ ଯାଇଛ, ସନତ୍ ଘରୁ ତମର ଫୁଟ ପ୍ରିଣ୍ଟ୍ ମିଳିଛି । ତମେ ଅସ୍ୱୀକାର କରିପାରିବ ନାହିଁ ।

: ମୁଁ ତ ଅସ୍ୱୀକାର କରୁ ନାହିଁ ? ଲଳିତା ହସି ହସି କହିଲା ।

: କ'ଣ ସ୍ୱୀକାର କରୁଛ ?

: ମୁଁ ସନତ୍ ଘରକୁ ସେଦିନ ରାତିରେ ଯାଇଥିଲି, ଦୁଧ ଗ୍ଲାସରେ ବିଷ ମିଶାଇଥିଲି; ଫଳରେ ସନତ୍‌ର ମୃତ୍ୟୁ ହେଲା ।

ମୁଁ ଅବାକ୍ ହୋଇ ଲଳିତା ମୁହଁକୁ ଅନାଇ ରହିଲି ।

ଲଳିତା କିନ୍ତୁ ହସୁଥିଲା ।

ମୁଁ କହିଲି : ଏଇଟା ପରିହାସର ବେଳ ନୁହେଁ; ଜୀବନ ମରଣର ସମସ୍ୟା । ତମେ ଟିକିଏ ସିରିଅସ୍ ହୁଅ ।

: ସିରିଅସ୍‌ର ଅର୍ଥ ଆଜିଯାଏ ମୁଁ ବୁଝି ନାହିଁ । ଦୁନିଆରେ ବଞ୍ଚିରହିବାକୁ ହେଲେ ମୋ ମତରେ ହାଲ୍‌କା ଭାବରେ ରହିବା ଭଲ ।

: କିନ୍ତୁ ତମେ ଯେ ଖୁଣୀ ଆସାମୀ !

: ସେଇଥିପାଇଁ ତ ଆହୁରି ହାଲ୍‌କା ହେବା ଆବଶ୍ୟକ ।

: ମାନେ ?

: ମାନେ ଆଉ କିଛିଦିନ ପରେ ମୋତେ ଫାଶୀ ହୁକୁମ୍ ହେବ । ମୁଁ ମୋର ମରଣ କଥା ଜାଣି ମଧ୍ୟ ଯଦି ସିରିଅସ୍ ହୋଇ ବସିରହେ ତା'ହେଲେ ଜୀବନ ଯନ୍ତ୍ରଣା ବଢ଼ିଯିବ।

: ନା, ଲଳିତା, ମୁଁ ଆଉ ଥରେ କହୁଛି, ଏଇଟା ପରିହାସର ବେଳ ନୁହେଁ । ତମେ ସତ କହିଲ, ସେଦିନ ସନତ୍ ଘରକୁ ରାତି ଏଗାରଟା ପରେ କାହିଁକି ଯାଇଥିଲ ?

ଲଳିତା କହିଲା : ମୁଁ ରାତି ଏଗାରଟା ପରେ ସନତ୍ ଘରକୁ ଯାଇଥିଲି, ଏଇଟା ଅତ୍ୟନ୍ତ ସତକଥା; କିନ୍ତୁ କାହିଁକି ଯାଇଥିଲି, ସେକଥା କହିବାରେ ମୋର ଆପତ୍ତି ଅଛି । ହୁଏତ କୌଣସି ଦିନ ମୋ ମୁହଁରୁ କେହି ସେ କଥା ଆଦାୟ କରିପାରିବ ନାହିଁ; କିନ୍ତୁ ଯାଇ କ'ଣ ଦେଖିଥିଲି, ସେ ଖବର ଯଦି ପଚାରନ୍ତି, ତା'ହେଲେ ମୁଁ ଆପଣଙ୍କୁ କହିପାରେ ।

: ହଉ ସେଇ କଥା କୁହ ।

ଲଳିତା ଟିକିଏ ଗଳା ସଫା କରି ନେଇ କହିଲା : ସତକଥା କହିବାକୁ ଗଲେ, ସନତ୍ ସହିତ ମୋର କୌଣସି ଆନ୍ତରିକତା କେବେ ନ ଥିଲା । ବନ୍ଧୁତ୍ୱ ନ ଥିଲା କହିଲେ ଭୁଲ୍ ହେବ । କୌଣସି ଏକ କାରଣରୁ ସନତ୍ ସହିତ ଗଭୀର ରାତ୍ରିରେ ମଝିରେ ମଝିରେ ମିଳିତ ହେଉଥିଲି ଏବଂ ସନତ୍‌ର ମୃତ୍ୟୁ ସେହିପରି ଏକ ଶେଷରାତିର ଘଟଣା । ମୁଁ ସେଦିନ ଯାଇଥିଲି ରାତି ସାଢ଼େ ବାରଟା ପରେ ।

ଦରଜା ପାଖରେ ଠିଆହୋଇ ଦେଖିଥିଲି, ଭିତରେ ଲାଇଟ୍ ଜଳୁଥିଲା । ବୁଝିପାରିଥିଲି ସନତ୍ ଶୋଇନାହିଁ । ମୋତେ ଅପେକ୍ଷା କରିଛି । ମୁଁ ଦରଜା ଠେଲି ଭିତରେ ପଶିଥିଲି । ଦେଖିଲି ସନତ୍ ଟେବୁଲ୍ ଉପରେ ମୁହଁମାଡ଼ି ଶୋଇଛି । ଭାବିଥିଲି ବୋଧହୁଏ ତନ୍ଦ୍ରାଚ୍ଛନ୍ନ ହୋଇପଡ଼ିଛି ସେ । ଦରଜାଟା ପୁଣି ବନ୍ଦ କରି ଆଗେଇ ଯାଇଥିଲି । ଦେହ ସ୍ପର୍ଶ କରିବା ପୂର୍ବରୁ ଡାକିଥିଲି ଅନେକ ଥର । କିନ୍ତୁ ସନତ୍ କିଛି ଉତ୍ତର ଦେଇ ନଥିଲା । ବୋଧହୁଏ ଶୋଇ ପଡ଼ିଥିଲା ନିଦରେ !

ତା'ପରେ ମୁଁ ତା' ଦେହ ସ୍ପର୍ଶ କରିଥିଲି । ଟେବୁଲ୍ ଉପରୁ ଦୁଇ ହାତରେ ଧରି ମୁଁ ତା ମୁଣ୍ଡଉଠାଇ ଦେଲାବେଳକୁ, ସନତ୍ ଚେୟାର ଉପରୁ ଖସିପଡ଼ିଥିଲା । ମୁଁ ସଙ୍ଗେ ସଙ୍ଗେ ନଇଁପଡ଼ି ନାକରେ ହାତଦେଇ ଦେଖିଲି; କିନ୍ତୁ ସେତେବେଳେ ସନତ୍‌ର ନିଷ୍ପ୍ରାଣ ଦେହ ତଳେ ଗଡୁଥିଲା ।

ମୁଁ ଡରିଯାଇଥିଲି । ମୁଁ କର୍ତ୍ତବ୍ୟବୋଧ ଭୁଲିଯାଇଥିଲି ହଠାତ୍ ଘରର ଲାଇଟ୍‌ଟା ଲିଭେଇ ଦେଇ ଜଡ଼ଙ୍କ ପରି କେତୋଟି ମୁହୂର୍ତ୍ତ ଚୁପ୍‌ଚାପ୍ ଠିଆହୋଇଥିଲି । ମୋ' ପ୍ରାଣରେ କିପରି ଏକ କମ୍ପନ ସୃଷ୍ଟି ହୋଇଯାଇଥିଲା ।

ଲଳିତା ଏତିକି କହିସାରି ବହୁତ ସମୟଯାଏ ନୀରବ ହୋଇଯାଇଥିଲା । ବୋଧହୁଏ ସେଦିନ ରାତ୍ରିର ସେଇ ଜଡ଼ତା ତା' ଦେହରେ ପ୍ରକାଶ ପାଇଥିଲ ।

: ହୁଁ, ତା'ପରେ କ'ଣ ହେଲା ? ମୁଁ ଟିକିଏ ଉଚ୍ଚ କଣ୍ଠରେ ପ୍ରଶ୍ନ କଲି ।

: ହଁ ତା'ପରେ ! ତା'ପରେ ଆଉ କିଛି ହୋଇ ନଥିଲା । ମୁଁ ସେହି ଅନ୍ଧକାରେ ପଥ ଅଣ୍ଡାଳି ଅଣ୍ଡାଳି ବହୁ କଷ୍ଟରେ ଆମ ଘରଯାଏ ଯାଇଥିଲି । ବିଛଣାରେ ମୁଁ ଯେତେବେଳେ ଯାଇ ମୋ ଅବଶ ଦେହଟାକୁ ଲମ୍ୱାଇ ଦେଇଥିଲି, ମୋର ମନେହୋଇଥିଲା ଯେପରି ଧୀରେ ଧୀରେ ମୋର ପ୍ରାଣବାୟୁଟା ବି ଉଡ଼ିଯିବାକୁ ବସିଛି । ସେହି ରାତିରେ ଘରଛାଡ଼ି ଅନ୍ୟତ୍ର କେଉଁଠାକୁ ପଳାଇ ଯିବା ପାଇଁ ମୁଁ ଦୁଇ ତିନିଥର ଚେଷ୍ଟା କରିଥିଲି; କିନ୍ତୁ ମୋ ଦେହର ଅବଶତା ମୋର ପ୍ରତିବନ୍ଧକ ହୋଇଥିଲା । ତା'ପରେ କେତେବେଳେ ମୋ ଆଖିକି ନିଦ ଆସିଥିଲା, ମୁଁ କେତେବେଳେ ଶୋଇପଡ଼ିଥିଲି, ମୋର କିଛି ମନେ ନଥିଲା । ସକାଳୁ ଯେତେବେଳେ ନିଦଭାଙ୍ଗିଲା, ଜାଣିଲି ପୋଲିସ୍ ଆସିଯାଇଛି । ତା'ପରେ ଘଟଣା ତ ଆପଣ ସବୁ ଜାଣନ୍ତି ।

ପୁଣି କିଛି ସମୟର ନୀରବତା ପରେ ମୁଁ କହିଲି: ତମେ କାହିଁକି ସନତ୍ ଘରକୁ ଯାଇଥିଲ ସେ କଥା କହିବ ନାହିଁ; କିନ୍ତୁ ମୋ ଆଗରେ କହିଲେ ତମର କିଛି କ୍ଷତି ହୁଅନ୍ତା ନାହିଁ ।

ଲଳିତା ପୁଣି ବିଦ୍ରୂପର ହସ ହସିଲା । କହିଲା : ମୋର କ୍ଷତି ପାଇଁ ମୁଁ କୌଣସି କଥା ଅନ୍ତତଃ ଆପଣଙ୍କ ପାଖରେ ଗୋପନ କରିବି ନାହିଁ; କିନ୍ତୁ ଯେଉଁଥିରେ ଅନ୍ୟ କାହାରି କ୍ଷତି ହେବ, ସେ ତଥ୍ୟ ମୋ ଜୀବନ ଥାଉଁ ଥାଉଁ ମୁଁ ପ୍ରକାଶ କରିବି ନାହିଁ ।

ମୁଁ ଦେଖିଲି ବର୍ତ୍ତମାନ କିଛି ହେବ ନାହିଁ । ସେଇଥି ପାଇଁ ସେ ପ୍ରସଙ୍ଗ ଏଡ଼େଇ ଯାଇ ମୁଁ କହିଲି, : ତମେ ତା'ହେଲେ ସନତ୍ ଘରେ ପହଞ୍ଚି ଦେଖିଲ ସେ ମରିଶୋଇଛି । ଆଚ୍ଛା, ତମେ ଯେତେବେଳେ ପଳାଇ ଆସିଲ, ସେତେବେଳେ ସନତ୍ ରୁମ୍‌ରୁ କିଛି ଜିନିଷପତ୍ର ଉଠାଇ ଆଣିଥିଲ କି ?

ଲଳିତା ଟିକିଏ ଚିନ୍ତା କଲା । କହିଲା : ହୁଏତ ଆଣିଥିବି । ମୋର କିଛି ମନେ ନାହିଁ । ତେବେ ସନତ୍ ଘରୁ ବାହାରି ଆସିଲା ବେଳେ ଗୋଟାଏ ଘଟଣା କିନ୍ତୁ ଘଟିଥିଲା । ମୁଁ ଯେତେବେଳେ ଅନ୍ଧକାରେ ଠିଆହୋଇ ଗୋଟିପଣ ଥରୁଥିଲି, ସେତିକିବେଳେ ମନେ ହୋଇଥିଲା, କିଏ ଯେପରି କବାଟ ଖୋଲି ଧୀରେ ଧୀରେ ସେ ଘରେ ପ୍ରବେଶ କରୁଛି । ସେତେବେଳେ ମୁଁ ଆତ୍ମରକ୍ଷା କରିବା ପାଇଁ ସନତ୍‌ର ଟେବୁଲ୍ ଉପରୁ କ'ଣ ଗୋଟାଏ ଉଠାଇ ହାତରେ ଧରିଥିଲି । କିଛି ସମୟ ପରେ ବୋଧହୁଏ ସେଇଟାକୁ ଧରି ଆମ ଘରକୁ ଛୁଟି ପଳାଇ ଆସିଥିଲି । ତେବେ ସେଇ ଘଟଣାଟା ବର୍ତ୍ତମାନ ମୋର ଠିକ୍ ମନେପଡୁ ନାହିଁ । ଏଇକ୍ଷିଣା ଅବଶ୍ୟ ମନ ଆଉ ଦେହରେ ମୁଁ ବଳିଷ୍ଠ ହୋଇ ଉଠିଛି । ବର୍ତ୍ତମାନ ଯେକୌଣସି ସମସ୍ୟାର ସମ୍ମୁଖୀନ ହେବା ପାଇଁ ମୁଁ ପ୍ରସ୍ତୁତ ହୋଇ ରହିଛି । ଏପରିକି ମୃତ୍ୟୁକୁ ଆଲିଙ୍ଗନ କଲାବେଳେ ମୋ ପ୍ରାଣରେ କୌଣସି କମ୍ପନ ଆଉ ସୃଷ୍ଟି ହୋଇପାରିବ ନାହିଁ ।

: କିନ୍ତୁ ଏଇ ସୁନ୍ଦର ସଂସାର ଛାଡ଼ି, ମୃତ୍ୟୁ ଆଡ଼କୁ ଆଗେଇ ଯିବାକୁ ତୁମର ଏତେ ଆଗ୍ରହ କାହିଁକି ?

ଲଳିତା ପୁଣି ହସିଲା । କହିଲା : ମୁଁ ଜାଣେ ଆପଣ କେବଳ ମୋତେ ସାନ୍ତ୍ୱନା ଦେଉଛନ୍ତି । ଏଇ ସୁନ୍ଦର ସଂସାରରେ ରଙ୍ଗିନ୍ ପ୍ରଜାପତିର ମନନେଇ ଯେଉଁ କେତୋଟି ବର୍ଷ ମୁଁ କଟାଇ ଦେଇପାରିଥିଲି, ସେ କେତୋଟି ବର୍ଷର ସ୍ମୃତି ମୋତେ ଏବେ ବି ଦଗ୍ଧ କରେ; କିନ୍ତୁ ଯେଉଁଦିନଠାରୁ ସଂସାରର ରୂଢ଼ ବାସ୍ତବତା ସହିତ ସଂଘର୍ଷ କରିବାକୁ ଓହ୍ଲେଇ ପଡ଼ିଲି, ସେହିଦିନଠାରୁ ଧୀରେ ଧୀରେ ବୁଝିପାରିଛି, ଦୁନିଆ ସୁନ୍ଦର ନୁହେଁ କିମ୍ବା ପ୍ରଜାପତିର ମନ, ମନ ନୁହେଁ । ସେ କେବଳ ଗୋଟାଏ ଆବରଣ । ଦୁନିଆରେ ବଞ୍ଚି ରହିବାକୁ ହେଲେ ପ୍ରଜାପତିର ଆବରଣ ତଳେ ଲୁଚି ଲୁଚି ରହି, ଦାନ୍ତୁଆ ଅସ୍ତ୍ର ସାହାଯ୍ୟରେ ଶିକାର କରିବାକୁ ହେବ ।

ଅବଶ୍ୟ ଏ କ୍ଷେତ୍ରରେ ମୁଁ ମୋ' କଥା କହୁଛି । ଦୁନିଆରେ ମୋ' ଭଳି ଯେଉଁମାନେ ସେମାନଙ୍କ କଥା କହୁଛି । ଆପଣଙ୍କ ଜୀବନର ଧାରା ସହିତ ଆମକୁ ତୁଳନା କରିବେ ନାହିଁ । ଏ ସଂସାର ବିରାଟ ବଡ଼ । ଏ ସଂସାରରେ ବହୁ ଲୋକଙ୍କର ଭିଡ଼ । କିନ୍ତୁ ଜୀବନର ଗତିଧାରା ସମସ୍ତଙ୍କର ସମାନ ନୁହେଁ । ଆପଣଙ୍କ ପରି ସରଳ ଲୋକମାନଙ୍କ ଆଖିରେ ଦୁନିଆ ସ୍ୱପ୍ନମୟ । ମୋ ଆଖିରେ ବି ଦିନେ ସେହି ମୋହାଞ୍ଜନ ବୋଳାହୋଇଥିଲା । କିନ୍ତୁ କାଳର କରାଳ ଗତିଧାରା ଧୀରେ ଧୀରେ ସେ ମୋହାଞ୍ଜନ ଧୋଇ ଧୋଇ ବର୍ତ୍ତମାନ ପରିଷ୍କାର କରି ଦେଇଛି । ଆପଣ ଚାହାନ୍ତୁ ମୋ ଆଖି ଆଡ଼େ । ସାତଦିନ ତଳର ଲଳିତା ଆଉ ଆଜିର ଲଳିତା ଆପଣଙ୍କ ଆଖିରେ ନିଶ୍ଚୟ ବିଭେଦ ସୃଷ୍ଟି କରିବ ।

ମୁଁ ଚାହିଁଲି ଲଳିତା ମୁହଁକୁ । ଦେଖିଲି ଆଜିର ଲଳିତା ଆଉ ସେ ଦିନର ଲଳିତା ମଧ୍ୟରେ ବହୁ ତଫାତ୍ ।

ଲଳିତା ପୁଣି କହିଲା : କ'ଣ ଆଜି ପରିବର୍ତ୍ତନ ମନେହେଉ ନାହିଁ ?

: ଢେର, କିନ୍ତୁ ଆଉ କ'ଣ ମନେ ହେଉଛି ଜାଣ ? ମନେ ହେଉଛି ତମେ ଏକ ରହସ୍ୟମୟୀ । ତମ ଜୀବନର ବହୁ ରହସ୍ୟ ଯେପରି ଲୁଚେଇ ରଖି ଦେଇଛ; ଯାହାର ସନ୍ଧାନ କରିବାକୁ ହେଲେ ମୋ ପରି ଏକ ଅକିଞ୍ଚନକୁ ଯୁଗ ଯୁଗ ଲାଗିଯିବ ।

ଲଳିତା ଏଥର ହୋ ହୋ ହୋଇ ହସିଉଠିଲା । ହସୁ ହସୁ କହିଲା : ଆପଣ ହେଲେ ସାଧାରଣ ମଣିଷ । ଆମେ ହେଲୁ ଉପର ମହଲର ମଣିଷ । ଆମର ଆଭିଜାତ୍ୟ ଅଛି, ସମାଜରେ ସମ୍ମାନ ଅଛି, ଆମ ଆରିଷ୍ଟୋକ୍ରେସିର ଚେର ଖୋଜି ବାହାର କରିବାକୁ ଆପଣଙ୍କୁ ଯୁଗ ଯୁଗ କାହିଁକି, କାଳ କାଳ ଲାଗିଯିବା କିଛି ଅସମ୍ଭବ ନୁହେଁ । ମୋ ମତରେ ଆପଣ ସେ ପ୍ରଚେଷ୍ଟା ନ କରିବା ହିଁ ଭଲ ।

ମୁଁ ଲଳିତା ମୁହଁକୁ ଅବାକ୍ ହୋଇ ଅନାଇ ଥିଲି । ସେ ଏତେ ସରଳ ଭାବରେ ଆଉ ସହଜରେ, ମୋତେ ହିଟ୍ କରିବ, ମୋତେ ବିଶ୍ୱାସ କରିପାରି ନଥିଲି ।

ଲଳିତା କହିସାରି ହସି ହସି ବେଦମ୍ ହୋଇପଡ଼ିଲା । ଶେଷରେ ପାଗଳୀ ହୋଇଯିବ ନା କ'ଣ ! କିନ୍ତୁ ହସ ଅମେଇ ପୁଣି ସେ କଥା ଆରମ୍ଭ କଲା, ଆପଣ ମୋ ମା'ଙ୍କୁ ଦେଖିଛନ୍ତି ?

: ହଁ ।

: ତାଙ୍କ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ସେ ଜଣେ ସମ୍ଭ୍ରାନ୍ତ ମହିଳା ।

: ଖାଲି ସମ୍ଭ୍ରାନ୍ତ ମହିଳା କହିଲେ ଭୁଲ୍ ହେବ । ସେ ଏକ ଆଭିଜାତ୍ୟ ଘରର ଝିଅ । ବାପା ତାଙ୍କର ବ୍ରିଟିଶ୍ ବାହାଦୁରଙ୍କ ଘରେ ବଡ଼ ଚାକିରିଆ ଥିଲେ । ଫଳରେ ରକ୍ତ କଣିକାରେ ତାଙ୍କର ଆରିଷ୍ଟୋକ୍ରେସିର ମଞ୍ଜି ପୋତାହୋଇଥିଲା । ସେହି ମଞ୍ଜିର ଅଙ୍କୁର ଆମେମାନେ । ତେଣୁ ବୁଝିପାରୁଥିବେ ଆମ ସହିତ ଅଭିଜାତର ସମ୍ପର୍କ କେତେ ନିଗୂଢ଼ ।

କିନ୍ତୁ ଲଳିତା ଏଇସବୁ କଥା କାହିଁକି କହୁଥିଲା, ମୁଁ ବୁଝିପାରୁ ନ ଥିଲି । ତା' ଅଭିଜାତ ସହିତ ମୋର ସମ୍ପର୍କ କ'ଣ ? ମୁଁ କହିଲି : ମୁଁ ତମ ଅଭିଜାତର କାହାଣୀ ଶୁଣିବାକୁ ଆସି ନାହିଁ ଲଳିତା । ମୁଁ ଯେଉଁଥି ପାଇଁ ଆସିଛି, ସେ କଥା ମୋତେ କୁହ । ତମ ମା' ମୋ ଉପରେ ପୂର୍ଣ୍ଣ ଭରସା କରି ବସି ରହିଛନ୍ତି । ତମେ ନିର୍ଦ୍ଦୋଷୀ ତଥାପି ତମର ନିର୍ଦ୍ଦୋଷ ପ୍ରମାଣ କରିବା ପାଇଁ ଆମକୁ ଯଥେଷ୍ଟ ପ୍ରମାଣ ସଂଗ୍ରହ କରିବାକୁ ପଡ଼ିବ । ତମର ଅଭିଜାତ ବା ଆରିଷ୍ଟୋକ୍ରେସି, କେଉଁଟା ତମର ନିର୍ଦ୍ଦୋଷତା ପ୍ରମାଣ ପାଇଁ ସହାୟକ ହୋଇପାରିବ ନାହିଁ ।

: ମୁଁ ସେ କଥା ଜାଣେ । ଅତି ସହଜ ଓ ସରଳ ସ୍ୱରରେ ଲଳିତା ଉତ୍ତରଦେଲା ।

: କ'ଣ ତମେ ଜାଣ ? ମୋ' ସ୍ୱର ଟିକିଏ କଠିନ ହୋଇପଡ଼ିଥିଲା ।

: ମୁଁ ଜାଣେ ଯେ ଖାଲି ମୋ ଆରିଷ୍ଟୋକ୍ରେସି କିମ୍ବା ଅଭିଜାତ ନୁହେଁ, ଆପଣମାନେ କେହି ମୋତେ ସାହାଯ୍ୟ କରିପାରିବେ ନାହିଁ ।

: କାହିଁକି ?

: ତା'ର କାରଣ ଆପଣମାନେ କେହି ଆମର ସ୍ୱରୂପ ଦେଖି ନାହାନ୍ତି । କେହି ଆମର ସାମାଜିକ ଚଳଣି ସହିତ ପରିଚିତ ନୁହନ୍ତି । ଆମ ଅଭିଜାତ ଆମକୁ ବଡ଼ କରିଛି । ପାର୍ଟି, ସୋସାଇଟି, କ୍ଲବ ସବୁଠି ଆମେ ସମ୍ମାନ ପାଇଛୁ । ଆପଣମାନେ ସେ ଆଲୋକର ରଶ୍ମି ଦେଖି ନାହାନ୍ତି । ତେଣୁ ଆମ ସମ୍ବନ୍ଧରେ ଅନ୍ଧକାରେ ଅଛନ୍ତି; କିନ୍ତୁ ମୁଁ ଚାହେଁ ନାହିଁ ଆଉ ସେହି ଆଲୋକକୁ ଫେରିଯିବା ପାଇଁ । ଆପଣମାନଙ୍କଠାରୁ ଆହୁରି ଅନ୍ଧକାରେ ପଡି ପଡି ଯଦି ମରିବାକୁ ହୁଏ; ତଥାପି ମୁଁ ସେଇଆଡ଼େ ଆଗେଇ ଯିବି । ମୁଁ ନିର୍ଦ୍ଦୋଷ । ମୁଁ ସନତ୍‌କୁ ହତ୍ୟା କରି ନାହିଁ । ଏ କଥା ଆପଣ କୋର୍ଟରେ ପ୍ରମାଣିତ କରିବା ପାଇଁ ଯେତେ ଚେଷ୍ଟା କଲେ ମଧ, ମୁଁ ଅସ୍ୱୀକାର କରିବି । ଉଚ୍ଚ କଣ୍ଠରେ କହିବି ଦୋଷୀ ମୁଁ । ସନତ୍‌କୁ ହତ୍ୟା କରିଛି ମୁଁ । ହଜୁର ଧର୍ମାବତାର ମୋତେ ପ୍ରାଣଦଣ୍ଡରେ ଦଣ୍ଡିତ କରନ୍ତୁ ।

ଲଳିତା ଟିକିଏ ଉତ୍ତେଜିତ ହୋଇପଡ଼ିଥିଲା ।

ମୁଁ ପ୍ରସଙ୍ଗ ବଦଳାଇବାକୁ ଯାଇ କହିଲି : ପ୍ରଫେସର ମଜୁମଦାର କିନ୍ତୁ ଚାହାନ୍ତି ନାହିଁ ତମେ ଶାସ୍ତି ଭୋଗକର ।

: କାହିଁକି ? ତାଙ୍କ ପୁଅକୁ ମୁଁ ହତ୍ୟା କରିଛି; ଅଥଚ ସେ ଚାହାନ୍ତି ନାହିଁ ତାଙ୍କର ପୁତ୍ରହନ୍ତା ଶାସ୍ତି ପାଉ ?

: ନା, ସେ ଚାହାନ୍ତି ନାହିଁ; ପ୍ରଫେସର ମଜୁମଦାର ମୋତେ ଡାକି କହୁଥିଲେ । ପୋଲିସ୍ ଅଫିସରମାନଙ୍କୁ ମଧ କହିଛନ୍ତି । ଲଳିତା ହସିଲା । କିଛି କହିଲା ନାହିଁ ।

ମୁଁ ପଚାରିଲି : ପ୍ରଫେସର ମଜୁମଦାରଙ୍କର ତମ ପ୍ରତି ଅସୀମ ଦୟା ?

ତଥାପି ଲଳିତା ନୀରବ ରହିଲା ।

ମୁଁ କହିଲି ପ୍ରଫେସର ମଜୁମଦାର ତମ ବାପାଙ୍କ କଥା କହୁଥିଲେ ।

ଲଳିତା କିନ୍ତୁ ଅନ୍ୟ ପ୍ରସଙ୍ଗ ଉଠାଇଲା । କହିଲା : ମୋତେ ଭାରି ନିଦମାଡୁଛି । କାଲି ରାତିଭରି ଛାରପୋକମାନଙ୍କ ଦୟାରୁ ମୁଁ ଶୋଇପାରି ନାହିଁ । ଦୟା କରି ମୋତେ ଯଦି ଟିକିଏ ଛୁଟି ଦିଅନ୍ତେ ।

ମୁଁ ଆଶ୍ଚର୍ଯ୍ୟ ହୋଇ ଲଳିତା ମୁହଁକୁ ଅନାଇଲି । ମୁଁ ଆସିଛି ତା'ର ମୁକ୍ତି କାମନା କରି; ଅଥଚ ସେ ମୋ ପାଖରୁ ମୁକ୍ତି ଚାହୁଁଛି !!

ତଥାପି କହିଲି: ପରେ ତୁମେ ଶୋଇବା ପାଇଁ ଯଥେଷ୍ଟ ସମୟ ପାଇବ । ବର୍ତ୍ତମାନ ମୋର ଆଉ କେତୋଟି ପ୍ରଶ୍ନର ଉତ୍ତର ଦିଅ ।

ଲଳିତା ମୋ ଆଡ଼େ ଜିଜ୍ଞାସୁ ଦୃଷ୍ଟିରେ ଅନାଇଲା ।

କହିଲି : ମୁଁ ଜାଣିଛି ଯେ, ସନତ୍‌କୁ ତମେ ହତ୍ୟା କରି ନାହଁ; କିନ୍ତୁ ସନତ୍‌କୁ ହତ୍ୟା କରି ପାରିଥାଏ, ଏପରି କୌଣସି ଜଣେ ଦୁଇଜଣ ଲୋକର ନାମ ତୁମେ କହିପାରିବ ?

: ନା ଲଳିତା ସଙ୍ଗେ ସଙ୍ଗେ ଉତ୍ତର ଦେଲା ।

: ତା'ହେଲେ ସନତ୍‌ର ହତ୍ୟା ମୂଳରେ କି କାରଣ ଥାଇପାରେ, ସେ ସମ୍ବନ୍ଧରେ ତମର ନିଶ୍ଚୟ କିଛି ଧାରଣା ଅଛି ।

: ନା, ମୁଁ କିଛି ଜାଣି ନାହିଁ, କିଛି କହିପାରିବି ନାହିଁ ।

: ହୁଁ, ମୁଁ ନୀରବରେ କିଛି ସମୟ ବସିବା ପରେ କହିଲି : ମୁଁ କିନ୍ତୁ ତମଠାରୁ ଅନେକ କଥା ଜାଣିବା ପାଇଁ ଆଶାକରି ଆସିଥିଲି । ଅବଶ୍ୟ ସବୁଯାକ ତମରି ଉପକାରରେ ଲାଗି ଥାଆନ୍ତା ।

ଉଠି ଠିଆହେଲି । ଲଳିତାର ମନ ହୁଏତ ଭଲ ନଥିଲା ସେଇଥି ପାଇଁ ମୋ' କଥାଗୁଡ଼ା ସେ ଭଲଭାବରେ ଗ୍ରହଣ କରିପାରୁ ନଥିଲା । ଯା'ହେଉ, ଆଜି ଆଉ ଲଳିତାକୁ ବିରକ୍ତ କରି କିଛି ଲାଭ ହେବ ନାହିଁ । ମୁଁ ଲୁହା ଦରଜା ବାହାରକୁ ବାହାରିଯିବା ପୂର୍ବରୁ କହିଲି: ଆଜି ମୁଁ ଯାଉଛି; କିନ୍ତୁ ପୁଣି ଆସିବି । ସେଦିନ ଆଉ ମୋତେ ଏପରି ନିରାଶ କରି ଫେରେଇ ଦେଲେ ଚଳିବ ନାହିଁ ।

ଲଳିତା ହସିଲା । କହିଲା : ଏଥର ଆସିଲା ବେଳେ ଭାଉଜଙ୍କୁ ସଙ୍ଗରେ ଆଣିବେ । ତାଙ୍କୁ ଦେଖିବା ପାଇଁ ମୋର କାହିଁକି ଦୁଇଦିନ ହେବ ପ୍ରବଳ ଇଚ୍ଛା ହେଉଛି ।

ମୁଁ ଲୁହା ଦରଜା ସେପାଖକୁ ବାହାରିଗଲି । ରକ୍ଷୀ ଦ୍ୱାର ବନ୍ଦ କଲା । ଲଳିତା ପୁଣି କହିଲା: ପାରିବେ ଯଦି ଲୁସି ଆଉ ସେଲିକୁ ସଙ୍ଗରେ ଆଣିବେ । ସେମାନଙ୍କୁ ଅନେକ ଦିନ ହେବ ଦେଖି ନାହିଁ ।

ବୁଲି ଅନେଇଲି । ଲଳିତା ମୁହଁଟା ମୋତେ କାହିଁକି ଭାରି ଭାରି ମନେହେଲା । ଆଖି ଯୋଡ଼ାକରେ ଯେପରି ସେ ଅଜସ୍ର ଅଶ୍ରୁ ସଞ୍ଚୟ କରି ରଖିଛି । ଯେ କୌଣସି ମୁହୂର୍ତ୍ତରେ ଭସାଇ ଦେବ ।

ମୁଁ ପୁଣି ଲେଉଟି ଯାଇ କହିଲି : ବାବା, ମା ଏମାନଙ୍କୁ କାହାରିକୁ ଦେଖିବାକୁ ମନ ହେଉ ନାହିଁ ?

ପ୍ରଥମ କରି ମୁଁ ଲଳିତା ଆଖିରେ ଲୁହ ଦେଖିଲି । ସେ ମୁହଁ ବୁଲାଇ ନେଉ ନେଉ କହିଲା : ବାବାଙ୍କୁ ଦେଖିବାକୁ ଭାରି ଇଚ୍ଛା ହେଉଛି, କିନ୍ତୁ ସେ ଆସିବେ ନାହିଁ ।

ଲଳିତା ଭିତରକୁ ଚାଲିଗଲା । ମୁଁ ଲେଉଟି ଆସିଲି ।

ଜେଲରଙ୍କ ଅଫିସ୍‌ରେ ଯାଇ ଦେଖିଲି, ଦେବନାଥବାବୁ ମୋ ପାଇଁ ଅପେକ୍ଷା କରି ବସିଛନ୍ତି । ତାଙ୍କ ପାଖରେ ଆଉ ଜଣେ ଅପରିଚିତ ଯୁବକ। ଜେଲର୍‌ଙ୍କ ଆସନ ଖାଲି ।

ଲଳିତା ସମ୍ବନ୍ଧରେ ମୁଁ କେତୋଟି କଥା କହିବାକୁ ଯାଉଥିଲି; କିନ୍ତୁ ଦେବନାଥବାବୁ ମୋତେ ଇଙ୍ଗିତରେ ନୀରବ ରହିବାକୁ କହି ସେହି ଅପରିଚିତ ଯୁବକଟି ଆଡ଼କୁ ହାତ ବଢ଼ାଇ କହିଲେ : ମିଷ୍ଟର ଆନନ୍ଦ । ଲଳିତା ମାଲହୋତ୍ରାଙ୍କ ବନ୍ଧୁ ।

ସେହି ଯୁବକଟି ଚେଆରରୁ ଉଠିପଡ଼ି ମୋ ସହିତ କରମର୍ଦ୍ଦନ କଲେ ।

ମିଷ୍ଟର ଆନନ୍ଦଙ୍କୁ ମୁଁ ଦେଖିଲି । ବୟସ ତିରିଶି ପଇଁତ୍ରିଶରୁ ବେଶି ହେବ ନାହିଁ। ମୁହଁରେ କିନ୍ତୁ ଆନନ୍ଦର ସାମାନ୍ୟତମ ସୂଚନା ନାହିଁ । ସେ ଟେରିଲିନ୍ ଡ୍ରେନ୍‌ଜାଇପ୍ ପ୍ୟାଣ୍ଟ ଓ ହାଓ୍ୱାଇ ପିନ୍ଧିଥିଲେ । ପାଦରେ ପଏଣ୍ଟେଡ୍ ସୁ ।

ଦେବନାଥବାବୁ ପୁଣି କହିଲେ : ମିଷ୍ଟର ଆନନ୍ଦ ଆସିଥିଲେ ଲଳିତା ମାଲହୋତ୍ରାଙ୍କ ସହିତ ଦେଖାକରିବା ପାଇଁ; କିନ୍ତୁ ଆଜି ଆଉ ସମ୍ଭବ ହେବ ନାହିଁ ।

ମିଷ୍ଟର ଆନନ୍ଦ କହିଲେ : ଆଜି ଟିକେ ଦେଖାହୋଇଥିଲେ ଭଲ ହୋଇଥାଆନ୍ତା । ତେବେ ମିଷ୍ଟର ବସୁରାୟ ବାରଣ କଲେ ଯେତେବେଳେ.........

ଠିକ୍ ସେଇ ମୁହୂର୍ତ୍ତରେ ଜେଲର ମିଷ୍ଟର ବସୁରାୟ ଭିତରେ ପ୍ରବେଶ କରି କହିଲେ : ମୁଁ ଅତ୍ୟନ୍ତ ଦୁଃଖିତ ମିଷ୍ଟର ଆନନ୍ଦ । ଆପଣ ଦୁଇଦିନ ପରେ ଆସନ୍ତୁ, ମୁଁ ନିଶ୍ଚୟ ଦେଖା କରାଇବାର ବନ୍ଦୋବସ୍ତ କରାଇଦେବି । ଲଳିତା ମାଲହୋତ୍ରା ଗୋଟାଏ ହତ୍ୟା ସହିତ ଜଡ଼ିତ ହୋଇପଡ଼ିଛନ୍ତି । ଆମର ଅଫିସିଆଲ କେତେକ ନିୟମ କାନୁନ୍ ଅଛି । ଯେଉଁଗୁଡ଼ା ଅତିକ୍ରମ କରିଯିବା ମୋଟେ ସହଜ ନୁହେଁ ।

ମିଷ୍ଟର ଆନନ୍ଦ ଉଠି ଠିଆହେଲେ, କହିଲେ : ତା'ହେଲେ ଦିନେ ଛାଡ଼ି ମୁଁ ଆସିବି ।

ସେହି ଅବସରରେ ଦେବନାଥବାବୁ ମୋତେ ଇଙ୍ଗିତରେ ମିଷ୍ଟର ଆନନ୍ଦଙ୍କୁ ଦେଖାଇଲେ । ମୁଁ ତାଙ୍କର ଉଦ୍ଦେଶ୍ୟ ବୁଝିପାରି, ଉଠି ଠିଆହେଲି ।

ଆମେ ଦୁହେଁ ମିଷ୍ଟର ବସୁରାୟ ଓ ଦେବନାଥଙ୍କଠାରୁ ବିଦାୟ ନେଇ ବାହାରି ଆସିଲୁ ।

ଆଉ କୌଣସି କଥାବାର୍ତ୍ତା ନାହିଁ ।

ବାହାରେ ଆସି ମିଷ୍ଟର ଆନନ୍ଦ ପଚାରିଲେ : ଆପଣ କେଉଁଆଡ଼େ ଯିବେ ?

ମୁଁ କହିଲି : ଆପାତତଃ ଏସପ୍ଲାନେଡ ।

: ମୋ କାର୍‌ରେ ଯିବାକୁ କିଛି ଆପତ୍ତି ଅଛି ?

: ନା, ମୋଟେ ନୁହେଁ ।

ମିଷ୍ଟର ଆନନ୍ଦ ତାଙ୍କ କାର୍‌ର ଦରଜା ଖୋଲିଦେଲେ, ମୁଁ ତାଙ୍କ ପାଖକୁ ଲାଗି ବସିଲି ।

ଗାଡ଼ି ଆଗେଇ ଚାଲିଥିଲା ।

ମିଷ୍ଟର ଆନନ୍ଦ ସାମ୍ନାକୁ ଚାହିଁ ଷ୍ଟିଅରିଂ ମୋଡୁଥିଲେ ।

ମୁଁ ଭାବୁଥିଲି ମିଷ୍ଟର ଆନନ୍ଦ ହୁଏତ ପ୍ରଥମେ ମୋ ସହିତ କଥା ଆରମ୍ଭ କରିବେ । କିନ୍ତୁ ସେପରି କିଛି ଲକ୍ଷଣ ମୁଁ ଦେଖିଲି ନାହିଁ । ମୁଁ ଯେ ଜଣେ ଲୋକ ତାଙ୍କ ପାଖରେ ବସି ରହିଛି, ସେ କଥା ବି ବୋଧହୁଏ ସେ ଭୁଲିଯାଇଥିଲେ ।

ଧୀରେ ଧୀରେ ବାଟ ଆମର ଶେଷ ହୋଇଆସୁଥିଲା । ବାଧ ହୋଇ ପ୍ରଥମେ ମୁଁ କଥା ଆରମ୍ଭ କଲି : ଆଚ୍ଛା ମିଷ୍ଟର ଆନନ୍ଦ !

ସେ ଷ୍ଟିଅରିଂ ଉପରେ ହାତ ରଖି ମୋ ଆଡ଼କୁ ଚାହିଁଲେ ।

: ଆପଣଙ୍କର ଲଳିତା ମାଲହୋତ୍ରାଙ୍କ ସହିତ କେତେଦିନର ପରିଚୟ ?

ମିଷ୍ଟର ଆନନ୍ଦ ମୋ ମୁହଁକୁ କିପରି ଏକ ବେଖାପ ଚାହାଣିରେ ଅନାଇ କହିଲେ : ଅନେକ ଦିନର ।

: ତାଙ୍କ ସହିତ କ'ଣ ଆପଣଙ୍କର କିଛି ରିଲେସନ ଅଛି ?

ମିଷ୍ଟର ଆନନ୍ଦ ମୋ ପ୍ରଶ୍ନର କିଛି ଉତ୍ତର ନ ଦେଇ ମୋତେ ପଚାରିଲେ : ଆପଣଙ୍କର ?

: ନା, ଆମର କିଛି ସମ୍ପର୍କ ନାହିଁ । ଏପରିକି ଆମ ଦେଶ, ଜାତି ସବୁ ଅଲଗା ।

: ମୋର ବି ମିସ୍ ମାଲହୋତ୍ରାଙ୍କ ସହିତ ଆପଣଙ୍କ ପରି ରିଲେସନ ।

ଏହାପରେ ଆଉ କିଛି ପ୍ରଶ୍ନ ପଚାରିବାର ବାଟ ନଥିଲା ।

ଆମେ ଆସି ଏସ୍‌ପ୍ଲାନେଡ଼ ପାଖରେ ପହଞ୍ଚି ଯାଇଥିଲୁ । ମିଷ୍ଟର ଆନନ୍ଦ ଏସ୍‌ପ୍ଲାନେଡ୍ ମ୍ୟାନ୍‌ସନ୍ ତଳେ ଗାଡ଼ି ଠିଆକରି ମୋତେ କହିଲେ : ମୁଁ ଏଇଠି ଉପରେ ରହେ । ଆଶା କରୁଛି ଚା' କପେ ପିଇ ଯିବା ପାଇଁ, ଆପଣ ଆପତ୍ତି କରିବେ ନାହିଁ ।

ମିଷ୍ଟର ଆନନ୍ଦଙ୍କ ମୁହଁରୁ ଏପରି ଏକ ଅନୁରୋଧ ମୁଁ ଆଶା କରୁ ନଥିଲି । ଆଗ୍ରହରେ ତାଙ୍କ ପ୍ରସ୍ତାବରେ ରାଜି ହୋଇଗଲି ।

ମିଷ୍ଟର ଆନନ୍ଦଙ୍କ ଫ୍ଲାଟ୍‌ଟି ଦି'ତାଲାରେ । ମୁଁ ତାଙ୍କ ଡ୍ରଇଂରୁମ୍‌ରେ ପ୍ରବେଶ କରି ଦେଖିଲି, ଅତ୍ୟନ୍ତ ଆଡ଼ମ୍ବର ସହକାରେ ସଜା ହୋଇଛି ।

ମିଷ୍ଟର ଆନନ୍ଦ ମୋତେ ସେଇଠି ବସେଇ ଦେଇ ଭିତରକୁ ଚାଲିଗଲେ ।

ମୁଁ ଗୋଟିଏ ଇଜି ଚେୟାର ଉପରେ ବସି, ଚାରି ଦିଆଲର ରୁଚି-ସମ୍ମତ ପେଣ୍ଟିଂଗୁଡ଼ିକୁ ଦେଖୁଥିଲି ।

ପୂର୍ବରୁ ମିଷ୍ଟର ଆନନ୍ଦଙ୍କ ସମ୍ବନ୍ଧରେ ମୋ ମନରେ ଯେଉଁ ଏକ ଅଦ୍ଭୁତ ଧାରଣା ଜନ୍ମିଥିଲା, ତାହା ତାଙ୍କର ଡ୍ରଇଂରୁମ୍‌ରେ ଯେପରି କେତେକାଂଶରେ କମିଗଲା ।

ମିଷ୍ଟର ଆନନ୍ଦ ଯେ ଜଣେ ଅବସ୍ଥାସମ୍ପନ୍ନ ଲୋକ, ତାହା ଡ୍ରଇଂରୁମ୍‌ର ସାଜସଜ୍ଜାରୁ ମୁଁ ଅନୁମାନ କରୁଥିଲି ।

ଖୁବ୍ ବେଶି ସମୟ ଡେରି ନ କରି ମିଷ୍ଟର ଆନନ୍ଦ ଲୁଗାବଦଳାଇ, ଖଣ୍ଡେ ଢିଲା ପାଇଜାମା ଓ ଗେଞ୍ଜି ପିନ୍ଧି ହସି ହସି ପାଖରେ ଆସି ବସିଲେ ।

ଏହି ପ୍ରଥମ ମିଷ୍ଟର ଆନନ୍ଦଙ୍କ ମୁହଁରେ ମୁଁ ହସ ଦେଖିଲି ।

ସେ କହିଲେ : ମୋତେ ଦେଖିବା ପରଠାରୁ ଆପଣଙ୍କ ମନରେ ଏକ ରହସ୍ୟମୟ ଧାରଣା ଜନ୍ମିଛି, ନୁହେଁ ? ମିଷ୍ଟର ଆନନ୍ଦଙ୍କୁ ଏଥର ଖୁବ୍ ସ୍ୱାଭାବିକ ମନେହେଉଥିଲା ।

: ମୁଁ କହିଲି ନା, ଧାରଣାଟା ରହସ୍ୟମୟ ନୁହେଁ; ତେବେ ଲଳିତା ସମ୍ବନ୍ଧରେ ନୂଆ କିଛି ଜାଣିବାର ଆଗ୍ରହ ।

: ଯଥା ?

ଏଇ ଧରନ୍ତୁ ତା'ର ଗତିବିଧି । ଆଚାର ଆଚରଣ । ସାଙ୍ଗ ସାଥୀ । କାରଣ ଏହା ପୂର୍ବରୁ ଲଳିତାକୁ ତ କେବଳ ମୁଁ ପ୍ରତିବେଶୀ ଆଖିରେ ଦେଖିଥିଲି, ବର୍ତ୍ତମାନ ତା' ପ୍ରତି ଦୃଷ୍ଟିଭଙ୍ଗିଟା କାହିଁକି ବଦଳିଗଲା ପରି ମନେହେଉଛି ।

: ଲଳିତା ସମ୍ବନ୍ଧରେ ମୋ'ଠାରୁ କ'ଣ ଆପଣ କିଛି ଜାଣିବାକୁ ଆଶାକରୁଛନ୍ତି ?

: ଯଦି ଆପଣ କିଛି ଜାଣିଥାନ୍ତି; ଆଉ ସେଇଟା ଅନ୍ୟକୁ ଜଣାଇବାରେ କିଛି ଅସୁବିଧା ନଥାଏ । ଆପଣ ତ ଜାଣନ୍ତି ଲଳିତା ସମ୍ବନ୍ଧରେ ବହୁତ କଥା ଜାଣିବା ପାଇଁ ମୁଁ ଆଗ୍ରହୀ ।

: କ୍ଷମା କରିବେ । ମିଷ୍ଟର ଆନନ୍ଦ ଆଉ ଟିକିଏ ଚିନ୍ତାକରି କହିଲେ, ମିସ୍ ମାଲହୋତ୍ରାଙ୍କ ସମ୍ବନ୍ଧରେ ଆପଣଙ୍କର ଜାଣିବାର ଏଇ ଆଗ୍ରହ ମୂଳରେ ପୋଲିସ ବିଭାଗରୁ....

: ନା, ନା, ମିଷ୍ଟର ଆନନ୍ଦଙ୍କର ମନୋଭାବ ବୁଝିପାରି ମୁଁ ପ୍ରତିବାଦ କଲି; ବରଂ ପୋଲିସ ବିରୋଧରେ ମୋର ଅଭିଯାନ । ଲଳିତାକୁ ନିର୍ଦ୍ଦୋଷ ପ୍ରମାଣ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରୁଛି । ଅବଶ୍ୟ ଆପଣଙ୍କ ସହିତ ଲଳିତାର ରିଲେସନ ମୋତେ ଜଣାନାହିଁ ।

: ସିମ୍ପଲି ବିଜନେସ୍ । ମିଷ୍ଟର ଆନନ୍ଦ ସହଜ ସ୍ୱରରେ କହିଲେ ।

: ବିଜନେସ୍ । ମାନେ ? ମୁଁ ପଚାରିଲି ।

: ବିଜନେସ ମାନେ ବ୍ୟବସାୟ ।

: ତା'ବୁଝିଛି ଯେ ! ତେବେ ସେଇ ବିଜିନେସ୍‌ଟା କେଉଁ ଧରଣର ?

: ହଁ, ସେଇ କଥା ପଚାରନ୍ତୁ । ଆଚ୍ଛା କହିଲେ, ମୋ ପ୍ରତି ଆପଣଙ୍କର ଧାରଣା କ'ଣ ?

: ଭଲ, ମୁଁ ସହଜ ସ୍ୱରରେ ଉତ୍ତର ଦେଲି ।

: ଖାଲି ଭଲ କହିଲେ ତ ଚଳିବ ନାହିଁ । ଆପଣ ମୋତେ ଦେଖିବା ପରଠାରୁ ଏପର୍ଯ୍ୟନ୍ତ, ମାନେ ଏଇ ଘଣ୍ଟାଏ ଦୁଇଘଣ୍ଟା ଭିତରେ ମୋ ପ୍ରତି ଆପଣଙ୍କର ମନରେ କି ଧାରଣା ଜନ୍ମିଛି ?

: ଅବଶ୍ୟ ପ୍ରଥମେ ଦେଖିବାବେଳେ ଧାରଣା ଯାହାଥିଲା, ବର୍ତ୍ତମାନ ଅନେକ ବଦଳିଛି ।

ମିଷ୍ଟର ଆନନ୍ଦ ହସି ହସି କହିଲେ : ପ୍ରଥମେ ମୋତେ ଦେଖି ଆପଣଙ୍କର ମନେ ହୋଇଥିଲା : ମୁଁ ଜଣେ ସ୍ମଗଲର, ଡ୍ରଙ୍କର ଏବଂ......

ନା, ଜଣେ ଭଦ୍ରଲୋକ ।

: କିନ୍ତୁ ମୋର ଏହି ଡ୍ରଇଂରୁମ୍ ଦେଖି ମୋତେ ଜଜ୍ କରିବା କ'ଣ ଉଚିତ ହେଉଛି ? ଆପଣ ଜଣେ ଲେଖକ, ଲୋକ ଚରିତ୍ର ସମ୍ବନ୍ଧରେ ଆପଣଙ୍କର ଗଭୀର ଅନୁଶୀଳନ ଆବଶ୍ୟକ ।

: ମୁଁ ଲେଖକ, ଆପଣ କିପରି ଜାଣିଲେ ? ମିଷ୍ଟର ଆନନ୍ଦଙ୍କ ମୁହଁରୁ ମୋର ପରିଚିତି ଶୁଣି ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ସେ ଅଳ୍ପହସି କହିଲେ : ମିସ୍ ମାଲହୋତ୍ରାଙ୍କ ମୁହଁରୁ ଆପଣଙ୍କ ପରିଚିତି ଜାଣିଥିଲି ଏବଂ ଆଜି ଥାନାରେ ମିଷ୍ଟର ଦେବନାଥଙ୍କ ମୁହଁରୁ ଆପଣଙ୍କ ନାଁ ଶୁଣିଥିଲି ।

: ତା'ହେଲେ ଲଳିତା ଆପଣଙ୍କୁ ମୋ କଥା କହିଥିଲା ?

: ଥରେ ନୁହେଁ, ଅନେକଥର । ଖାଲି ଆପଣଙ୍କ କଥା ନୁହେଁ; ଆପଣଙ୍କ ପରିବାରର କଥା, ମଧୁର ଜୀବନ ଯାପନର କଥା ।

ଟିକିଏ ଚିନ୍ତା କରି ମୁଁ କହିଲି : ଏବେ ଆପଣ ବୁଝିପାରୁଛନ୍ତି ତ ମୁଁ ପୋଲିସ୍‌ର ଲୋକ ନୁହେଁ; ତେଣୁ ଆପଣ ଲଳିତା ସମ୍ବନ୍ଧରେ ସବୁକଥା କହିବାକୁ ବୋଧହୁଏ ଆପତ୍ତି କରିବେ ନାହିଁ ।

ସେତିକିବେଳେ ଗୋଟିଏ ଲୋକ ଟ୍ରେରେ ଚା' ଏବଂ କିଛି ଜଳଖିଆ ଧରି ପହଞ୍ଚିଲା ।

ମିଷ୍ଟର ଆନନ୍ଦ ତା' ହାତରୁ ଚା' ଟ୍ରେ'ଟି ଧରି ଟିପୟ ଉପରେ ରଖୁ ରଖୁ କହିଲେ : ମହାନଗରୀ କଲିକତାକୁ ମୁଁ କୁହେ ମାୟାବିନୀ କଲିକତା । ମତେ ଯେତେବେଳେ ମାତ୍ର ଚଉଦ ବର୍ଷ ବୟସ, ସେତିକି ବେଳେ ମୁଁ ଭାସି ଭାସି ଆସି ଲାଗିଥିଲି ଏଇ ବନ୍ଦରରେ । ସେଇଦିନଠାରୁ ପଡ଼ିଯାଇଛି ମାୟାବିନୀର ମାୟାଜାଲରେ ।

ମିଷ୍ଟର ଆନନ୍ଦ କଥା ଶେଷ କରି ମୋ ମୁହଁକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ।

ମୁଁ ତାଙ୍କ ହାତରୁ ଚା' କପଟି ଧରିଲି ।

ସେ ପୁଣି କହିଲେ : କଲିକତାରେ ମୋର ଜୀବନ ଆରମ୍ଭ ଗୋଟିଏ ହୋଟେଲ ବୟରୁ । ଅବଶ୍ୟ ଆଜି ମୋର ଗର୍ବ ବା ଗୌରବର କାହାଣୀ କିଛି ନାହିଁ । ତେବେ ଯଦି କିଛି ମୋର ଉନ୍ନତି ବା ଅବନତି ହୋଇଥାଏ, ସେ ସବୁ ଏଇ ମାୟାବିନୀ କଲିକତା ଦୟାରୁ ।

ମିଷ୍ଟର ଆନନ୍ଦ ଏତେ ଖୋଲାଖୋଲି ଭାବରେ ମୋ ପାଖରେ ଆତ୍ମ ସମର୍ପଣ କରିବେ, ମୁଁ ମୋଟେ ଚିନ୍ତା କରିପାରି ନଥିଲି । ହୋଟେଲ ବୟରୁ ମିଲିଅନର, ବଡ଼ ଇଣ୍ଟରେଷ୍ଟିଂ ପ୍ରସଙ୍ଗ ତ !

ମୁଁ କହିଲି : ଆପଣ ଭାଗ୍ୟବାନ । ଭଗବାନଙ୍କ ଦୟାରୁ......

: ନା, ମିଷ୍ଟର ଦାସ୍ । ଭଗବାନଙ୍କଠାରୁ ଦୟାଭିକ୍ଷାର ଆବଶ୍ୟକତା ମୋଟେ ପଡ଼ି ନାହିଁ । ବରଂ ଲେଡ଼ି ଲୁଇସ୍ ମୋତେ ଯଥେଷ୍ଟ ଦୟା କରିଥିଲେ । ତାଙ୍କରି ଦୟାରୁ ମୁଁ ଆଜି ମିଷ୍ଟର ଆନନ୍ଦ ।

ଯଦିଓ ଲେଡ଼ି ଲୁଇସ୍‌ଙ୍କ ସହିତ ଲଳିତା ସମ୍ବାଦର କୌଣସି ସୂତ୍ର ମିଳିବାର ସମ୍ଭାବନା ନଥିଲା, ତଥାପି ମନ ଭିତରେ କେଜାଣି କିପରି ଏକ ଆଲୋଡ଼ନ ସୃଷ୍ଟି ହୋଇଥିଲା । କାହା ସମ୍ବାଦ ମୁଁ ଶୁଣିବି, ଲେଡ଼ି ଲୁଇସ୍‌ଙ୍କର ନା ମିସ୍ ମାଲହୋତ୍ରାର ?

ମିଷ୍ଟର ଆନନ୍ଦ ଚା' ଢୋକେ ଶୋଷି ନେଇ, କପ୍‌ଟା ଟେବୁଲ୍ ଉପରେ ରଖି ଆରମ୍ଭ କଲେ : ମିସ୍ ମାଲହୋତ୍ରାଙ୍କ ସହିତ ଆପଣଙ୍କ କଥା ମୋର ଅନେକ ଥର ଆଲୋଚନା ହୋଇଛି । କାହିଁକି ଜାଣନ୍ତି ? କେବଳ ଆପଣ ଜଣେ ଲେଖକ ହୋଇଥିବାରୁ । ଏହି ସଂସାରରେ କେବଳ ମୋର ଲେଖକମାନଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଅଛି । ସେଇଥି ପାଇଁ

ଆପଣଙ୍କ ସହିତ ମୋର ପରିଚୟ ହେବାର ଖୁବ୍ ଇଚ୍ଛାଥିଲା । ମିସ୍ ମାଲହୋତ୍ରା କହିଥିଲେ, ଆପଣଙ୍କୁ ସଙ୍ଗରେ ଧରି ଦିନେ ମୋ ଫ୍ଲାଟକୁ ଆସିବେ । ମୁଁ ଭାବିଥିଲି ସେତିକିବେଳେ ମୁଁ ଆପଣଙ୍କୁ ମୋର ରହସ୍ୟମୟ ଜୀବନର କାହାଣୀ ଶୁଣାଇ ଗୋଟିଏ ବହି ଲେଖିବାକୁ ଅନୁରୋଧ କରିବି । ଛାଡ଼ନ୍ତୁ....ଯେକୌଣସି ଉପାୟରେ ହେଉ ଆଜି ଆପଣଙ୍କ ସହିତ ମୋର ଭେଟ ହୋଇଛି । ଜାଣେନି ଆପଣ ଆଜି ଏଇ ପରିସ୍ଥିତିରେ ମୋ ଜୀବନର କାହାଣୀ ଶୁଣିବା ପାଇଁ ମାନସିକ ପ୍ରସ୍ତୁତ ହୋଇ ପାରିବେ କି ନାହିଁ ।

ମୁଁ କହିଲି : ଆମ ଲେଖକ ଜାତିଟା ସବୁବେଳେ ମଣିଷ ଜୀବନର କାହାଣୀ ଶୁଣିବା ପାଇଁ ଯେମିତି ଟାକି ବସିଥାଏ । ବାଟଘାଟ, ହାଟବଜାର, ଜାଗାଅଜାଗା କିଛି ବାଛବିଚାର ନଥାଏ। ଆପଣ ଆରମ୍ଭ କରନ୍ତୁ ମିଷ୍ଟର ଆନନ୍ଦ, ତେବେ ଘଟଣାଗୁଡ଼ାକୁ ଟିକିଏ ସଂକ୍ଷେପ କରିବେ ।

ମିଷ୍ଟର ଆନନ୍ଦ ଚା' କପରୁ ଆଉ ଢୋକେ ନେଇ ସେହିପରି ଆଖିବୁଜି କହିଲେ : ମୋ ନାଁ ମିଷ୍ଟର ଆନନ୍ଦ ଯେ କିପରି ହେଲା, ଆଜି ମୁଁ ମନେ ପକାଇପାରୁ ନାହିଁ । ତେବେ କୋଡ଼ିଏ ବର୍ଷତଳେ ଯେତେବେଳେ ପ୍ରଥମେ ମୁଁ ଆସି ଏଇ ମାୟାବିନୀ ନଗରୀ ବୁକୁରେ ପାଦଦେଇଥିଲି, ସେଦିନ ଏଇ କର୍ଜନ ପାର୍କରେ ଏଇ ଯେଉଁ ଷ୍ଟାଚୁ ଏ ପର୍ଯ୍ୟନ୍ତ ଝଡ଼ ବର୍ଷା ସହି ଠିଆହୋଇଛି, ତା'ରି ତଳେ ଦିନ ପରେ ଦିନ ବହୁଦିନ ଭୋକ ଉପାସରେ କଟାଇବାକୁ ପଡ଼ିଥିଲା ।

ମିଷ୍ଟର ଆନନ୍ଦଙ୍କ ଫ୍ଲାଟରୁ କର୍ଜନ ପାର୍କ ସ୍ପଷ୍ଟ ଦିଶୁଥିଲା । ସେ ଝରକା ପାଖକୁ ଉଠିଆସି ଆଙ୍ଗୁଳି ବଢ଼ାଇ ମୋତେ ଷ୍ଟାଚୁଟା ଦେଖେଇ ଦେଇଥିଲେ ।

ମୁଁ ସେଇ ଷ୍ଟାଚୁତଳେ ମୋର ଘର କରି ନେଇଥିଲି । ଯେଉଁ ଭ୍ରମଣକାରୀମାନେ ଆସୁଥିଲେ, ହାତ ପତେଇ ସେମାନଙ୍କଠାରୁ ଭିକ୍ଷା ଗ୍ରହଣ କରୁଥିଲି । ଅନ୍ୟ ଉପାୟ କିଛି ନ ଥିଲା ।

ସେ ଜୀବନ ବେଶିଦିନ ଅତିବାହିତ କରିବାକୁ ପଡ଼ି ନଥିଲା ।

ଦିନେ ଜଣେ ଦୟାବାନ୍ ବ୍ୟକ୍ତି ତାଙ୍କ ସହିତ ଡାକିନେଇ ତାଜମହଲ ହୋଟେଲର ମ୍ୟାନେଜରଙ୍କ ପାଖରେ ମୋତେ ଛାଡ଼ିଦେଇଥିଲେ । ମୁଁ ସେଇଦିନ ସେଠାରେ ଆପଏଣ୍ଟମେଣ୍ଟ ପାଇଯାଇଥିଲି ।

ସେତେବେଳେ ତାଜହଲ ହୋଟେଲର ଏହି ସାହେବୀ ବସ୍ତିରେ ଯଥେଷ୍ଟ ସୁନାମ ଥିଲା । ସନ୍ଧ୍ୟା ହେଲେ ଯୁବକ ଯୁବତୀମାନଙ୍କର ଭିଡ଼ ବଢୁଥିଲା ।

ମୋର ସେତେବେଳେ ଏ ସବୁ କିଛି ବୁଝିବାର ବୟସ ହୋଇ ନଥିଲା । ମୁଁ କେବଳ କାମ କରୁଥିଲି ଆଉ ପେଟକୁ ଖାଉଥିଲି । ମଝିରେ ମଝିରେ ବେଶି ରାତିଯାଏ କାମ କରିବାକୁ ହେଲେ ଶୋଇପଡ଼ିଲେ ମାଡ଼ ଖାଉଥିଲି ।

ସେହିପରି ଦିନେ ମାଡ଼ ଖାଇବା ଘଟଣାରୁ ଲେଡ଼ି ଲୁଇସ୍ଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା । ମୋତେ ସେଦିନ ରଖାହୋଇଥିଲା ଚାରିନମ୍ବର ରୁମ୍‌ର ଡିଉଟିରେ । କାରଣ ଚାରି ନମ୍ବରରେ ଯାହାର ସେଦିନ ଡିଉଟି ଥିଲା, ସେ ନ ଆସିବାରୁ ଏବଂ ଅନ୍ୟ କୌଣସି

ଦାୟିତ୍ୱସମ୍ପନ୍ନ ବୟ ନ ମିଳିବାରୁ ବହୁତ ଭାବିଚିନ୍ତି, ମ୍ୟାନେଜର ମୋତେ ଚାରିନମ୍ବରର ଡିଉଟି ଦେଇଥିଲେ ।

ଚାରି ନମ୍ବରରେ ରହୁଥିଲେ ଜଣେ ନବବିବାହିତା ଦମ୍ପତି ।

ହୁଏତ ସେଇ ରାତିକ ପାଇଁ ଭଡ଼ା ନେଇଥିଲେ ସେଇ ରୁମ୍‌ଟି । ଆନନ୍ଦ, ଫୁର୍ତ୍ତି ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା ।

ରାତି ସେତେବେଳେ କେତେ ହେବ ଠିକ୍ ମୁଁ କହିପାରିବି ନାହିଁ । ଚାରି ନମ୍ବର ଦୁଆର ବାହାରେ ମୁଁ ବସୁ ବସୁ କେତେବେଳେ ଶୋଇପଡ଼ିଥିଲି । ଫଳରେ ସେମାନେ କେତେବେଳେ ମୋତେ ଡାକିଥିଲେ ମୁଁ ଶୁଣିପାରି ନଥିଲି ।

ମୋର ନିଦ ଭାଙ୍ଗିଲା ମ୍ୟାନେଜରଙ୍କ ଘସିମାଡ଼ରେ ।

ସଙ୍ଗେ ସଙ୍ଗେ ମୋ ମୁହଁରୁ ଝରଝର ହୋଇ ରକ୍ତ ଝରିପଡ଼ିଥିଲା । ମୁଁ ଅସହାୟ ଭାବରେ ବୋଧହୁଏ କାନ୍ଦି ଉଠିଥିଲି ।

ସେଦିନ ମୋର ସେହି କରୁଣ କାନ୍ଦଣା ଅନ୍ୟ କାହାରି କାନରେ ବାଜିଥିଲା କି ନାହିଁ କେଜାଣି, ପାଞ୍ଚ ନମ୍ବର ରୁମ୍‌ର ଲେଡ଼ି ଲୁଇସ୍ ବାହାରି ଆସି ମୋ ହାତ ଧରି ତାଙ୍କ ରୁମ୍‌କୁ ଟାଣି ଟାଣି ନେଇଥିଲେ, ମ୍ୟାନେଜରଙ୍କୁ ଗାଳି ଦେଇଥିଲେ । ବୋଧହୁଏ ପୋଲିସ୍‌ର ଧମକ ଦେଖାଇଥିଲେ ମଧ୍ୟ ।

ସଙ୍ଗେ ସଙ୍ଗେ ସେ ତାଙ୍କ ରୁମ୍‌ର କବାଟ ଭିତରୁ ବନ୍ଦ କରି ଦେଇଥିଲେ ।

ମୁଁ ଲେଡ଼ି ଲୁଇସ୍‌ଙ୍କ ରୁମ୍‌ରେ ପଶି ଗୋଟାପଣେ ଥରୁଥିଲି । ସେ ମୋତେ ସାନ୍ତ୍ୱନା ଦେଇଥିଲେ, ଅଶ୍ୱାସନା ଦେଇଥିଲେ । ହାତ ଦେଖାଇ ତାଙ୍କ ବିଛଣା ଉପରେ ବସିବାକୁ କହି, ମୋ ଆଖିରୁ ଲୁହପୋଛିଦେଇଥିଲେ ।

ବହୁତ ସମୟ ପେରେ ମୁଁ ସ୍ଥିର ହୋଇଥିଲି ।

ସେ ତାଙ୍କ ଖାଦ୍ୟ ସାମଗ୍ରୀରୁ କିଛି ଅଂଶ ପିଆଇ ମୋ ଆଖିରେ ସେଦିନ ଗଭୀର ନିଦ୍ରା ଟାଣି ଆଣିଥିଲେ ।

ତା'ପରେ ଆଉ କିଛି ମୋର ମନେ ନାହିଁ ।

ସକାଳେ ଯେତେବେଳେ ନିଦ ଭାଙ୍ଗିଲା, ମୁଁ ଦେଖିଲି ଲେଡ଼ି ଲୁଇସ୍‌ଙ୍କ ପାଖକୁ ଲାଗି ତାଙ୍କରି ଶେଯରେ ଶୋଇଛି । ଦୁଃସ୍ୱପ୍ନ ପରି ସବୁ ମୋର ମନେହୋଇଥିଲା । କିନ୍ତୁ ଲେଡ଼ି ଲୁଇସ୍ ମୋ ହାତ ଟାଣି ପୁଣି ତାଙ୍କ ପାଖରେ ଶୁଆଇ ଦେଇଥିଲେ । ମୋ ଗାଲ ଚିପି କହିଲେ : ଡୋଣ୍ଟ ଓରି ମାଇଁ ବୟ । ମୁଁ ତୁମକୁ ସଙ୍ଗରେ ନେଇଯିବି ।

ସକାଳ ଆଠଟାବେଳେ ବୟକୁ ଡାକି ତାଙ୍କର ବିଲ୍ ମେଣ୍ଟେଇ ଦେଇ, ମୋତେ ଧରି ମ୍ୟାନେଜରଙ୍କ ପାଖକୁ ଯାଇଥିଲେ, କହିଥିଲେ : ମୁଁ ଏହାକୁ ସଙ୍ଗରେ ନେଇଯାଉଛି ।

ମ୍ୟାନେଜର କିଛି ଆପତ୍ତି କରି ନଥିଲେ । କେବଳ କିପରି ଏକ ଜ୍ୱଳନ୍ତ ଆଖିରେ ମୋ ଆଡ଼କୁ କିଛି ସମୟ ଅନାଇ ରହି ତା'ପରେ ମୁହଁବୁଲାଇ ନେଇଥିଲେ ।

ମୁଁ ତାଜମହଲ ହୋଟେଲର ନରମ ଗାଲିଚା ଉପରର ସ୍ପର୍ଶ ଅନୁଭବ କରି ଆଗେଇ ଚାଲିଥିଲି । କେତୋଟି ବର୍ଷର ମାୟା ହୁଏତ କଟାଇ ଚିରଦିନ ପାଇଁ ମୋତେ ଏଠାରୁ ଚାଲିଯିବାକୁ

ହେବ । କିନ୍ତୁ ସେଦିନ ମୋ ମନରେ ବିଶେଷ କିଛି ଆଲୋଡ଼ନ ସୃଷ୍ଟି ହୋଇ ନଥିଲା । ମୁଁ ଲେଡ଼ି ଲୁଇସ୍‌ଙ୍କ ହାତ ଧରି ଟ୍ୟାକ୍‌ସିରେ ଯାଇ ବସିଥିଲି ।

ଲେଡ଼ି ଲୁଇସ୍‌ଙ୍କ ପ୍ରକାଣ୍ଡ କୋଠା ପାଖରେ ଯେତେବେଳେ ଯାଇ ଟ୍ୟାକ୍‌ସି ଠିଆ ହୋଇଥିଲା, ଦରବାନ ଆସି ଲୁହା ଫାଟକ ଖୋଲିଦେଇଥିଲା । ବଗିଚା, ଲନ୍, ତିନିତାଲା କୋଠା । ଏ ସବୁର ମାଲିକ ଯେ ଲେଡ଼ି ଲୁଇସ୍ ସେ କଥା ଜାଣିବାକୁ ମୋତେ ବେଶି ସମୟ ଲାଗି ନ ଥିଲା ।

ବୟ, ବବୁର୍ଚ୍ଚି, ଖାନସମା, ମାଳି, ବେହେରା ମିଶି ପ୍ରାୟ ଆଠ ନଅ ଜଣ ଥିଲେ । ଏକମାତ୍ର ମାଲିକ ହେଉଛନ୍ତି ଲେଡ଼ି ଲୁଇସ୍ । ସେଦିନ ଟ୍ୟାକ୍‌ସିରୁ ଓହ୍ଲାଇ ଯେତେବେଳେ ମୁଁ ଲେଡ଼ି ଲୁଇସ୍‌ଙ୍କ ପଛେ ପଛେ ଆଗେଇ ଚାଲିଥିଲି, ଆମ ପଛରେ ଚାକର ବାକର ଦଳ ସତେ ଯେପରି ପ୍ରୋସେସନ୍ କରି ଆଗେଇଥିଲେ ।

ମୋତେ ସ୍ଥିତାବସ୍ଥାରେ ପହଞ୍ଚିବାକୁ ପ୍ରାୟ ଦୁଇ ତିନି ଘଣ୍ଟା ଲାଗିଯାଇଥିଲା; କାରଣ ଲେଡ଼ି ଲୁଇସ୍ ମୋତେ ବୁଲାଇ ବୁଲାଇ ତାଙ୍କ ତିନିତାଲା କୋଠାର ପ୍ରତ୍ୟେକଟି ଘର ଦେଖାଇ ଥିଲେ । ପ୍ରତିଟି ରୁମ୍‌ର ସାଜସଜ୍ଜାର ପରିପାଟି ଦେଖି ମୁଁ ଅବାକ୍ ହୋଇଥିଲି ।

ଶେଷରେ ଲେଡ଼ି ଲୁଇସ୍ ମୋତେ ଗୋଟିଏ ଘର ଦେଖେଇ ଦେଇ କହିଥିଲେ, ଏଇ ଘରେ ତୁମେ ରହିବ । ତୁମ ପାଇଁ ପୋଷାକପତ୍ରର ବ୍ୟବସ୍ଥା ମୁଁ କରାଇ ଦେଉଛି । କ'ଣ ତୁମକୁ କରିବାକୁ ହେବ, ସେ କଥା ମୁଁ ପରେ ଜଣାଇଦେବି ।

ଲେଡ଼ି ଲୁଇସ୍ ଚାଲିଗଲେ । ମୋ ପାଇଁ ନିର୍ଦ୍ଦିଷ୍ଟ ଥିବା ଘର ଭିତରକୁ ପଶି ମୁଁ ଦେଖିଲି, ଗୋଟିଏ ଖଟ, ଗୋଟିଏ ଟେବୁଲ୍, ଦୁଇଟି ଚେଆର, ଗୋଟିଏ କାଚ ଆଲମାରି ରହିଛି । ପ୍ରଥମେ ମୁଁ ବିଶ୍ୱାସ କରି ପାରି ନଥିଲି । ମୋ ଭଳି ଏକ ହୋଟେଲ ବୟ, ଯାହାର ରହିବା ଆଉ ଶୋଇବା ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନଥାଏ, ସେ ପୁଣି ରହିବ ଏହିପରି ଏକ ରାଜମହଲରେ !!

ଖଟ ପାଖକୁ ଯାଇ ବିଛାହୋଇଥିବା ଗଦିକୁ ପ୍ରଥମେ ଆଙ୍ଗୁଳିରେ ଚିପିଲି । ଆଙ୍ଗୁଳି ଭିତରକୁ ପଶିଯାଉଥିଲା । ତା'ପରେ ଧୀରେ ଧୀରେ ଗଦି ଉପରେ ବସିବାକୁ ଚେଷ୍ଟାକଲି । ଆଃ....ମୁଁ ଯେପରି ଇନ୍ଦ୍ରାସନ ପାଇଛି ! ପ୍ରଥମେ ଲମ୍ବହୋଇ ଶୋଇଗଲି ଖଟ ଉପରେ । ଏତେ ନରମ ! ଏତେ ଆରାମ !!

କବାଟରେ ଖଡ଼ ଖଡ଼ ଶବ୍ଦ ଶୁଣି ମୁଁ ଧଡ଼ପଡ଼ ହୋଇ ଉଠିଲି । ବାହାରେ ଗୋଟିଏ ବେହେରା ଠିଆହୋଇଥିଲା । ମୋତେ କହିଲା, ମେମ୍‌ସାହେବ ଡାକୁଛନ୍ତି ।

ମୁଁ ସଙ୍ଗେ ସଙ୍ଗେ ଆଗେଇ ଗଲି ।

ଦେଖିଲି ଲେଡ଼ି ଲୁଇସ୍ ଗୋଟିଏ ଲୋକକୁ ମୋ ଆଡ଼କୁ ହାତ ଦେଖାଇ କ'ଣ କହିଲେ ।

ଲୋକଟି ମୋ ପାଖକୁ ଆସିଲା । ମୋତେ ଠିଆକରାଇ ମୋ ଦେହର ମାପ ନେଲା । ମୁଁ ବୁଝିଲି ମୋ ପାଇଁ ପୋଷାକ ତିଆରି କରିବା ପାଇଁ ଅର୍ଡ଼ର ଗଲା; କିନ୍ତୁ ବୁଝିପାରୁ ନଥିଲି, ଗୋଟାଏ ହୋଟେଲ ବୟ ପ୍ରତି ଜଣେ ବିଦେଶୀ ଭଦ୍ରମହିଳାଙ୍କର ଏତେ ଦରଦ କାହିଁକି !!

ଦରଜି ମାପ ନେଇ ଚାଲିଗଲା ପରେ ଲେଡ଼ି ଲୁଇସ୍ ମୋତେ ପାଖକୁ ଡାକିଲେ । ସେତେବେଳେ ସେ ଗୋଟାଏ ଆରାମ ଚେଆର ଉପରେ ବସି ସିଗାରେଟ ଟାଣୁଥିଲେ ଆଉ ଗୋଟାଏ କ'ଣ ପତ୍ରିକା ଖେଳାଉଥିଲେ ।

ମୁଁ ଯାଇ ତାଙ୍କ ପାଖରେ ଠିଆହେଲି ।

ମୋ ଆଡ଼କୁ ସେ ଚାହିଁ, ମୋ ମୁହଁକୁ ଧୂଆଁରୁ ମେଞ୍ଚାଏ ଛାଡ଼ି କହିଲେ : ଏ ଜାଗା କେମିତି ଲାଗୁଛି ?

ମୁଁ ନୀରବରେ କିଛି ସମୟ ତାଙ୍କ ଆଡ଼େ ଅନାଇ ରହିଲି, କୃତଜ୍ଞତାରେ ବୋଧହୁଏ ମୋର ଆଖି ଛଳ ଛଳ ହୋଇ ଆସିଥିଲା ।

ସେ ମୋ ମୁଣ୍ଡବାଳକୁ ତାଙ୍କ ବାଁ ହାତର ମୁଠା ଭିତରେ ପୂରାଇ ଦୁଇଥର ହଲାଇ ଦେଇ କହିଲେ : ଭୟ କରନି, ମନେକର ଏଇଟା ତମର ନିଜ ଘର ।

ସେ ମୋ' ପିଠିରେ ଦୁଇଟା ଚାପୁଡ଼ା ବସାଇ ଦେଇ ଦୂରକୁ ଠେଲିଦେଲେ । ହସି ହସି କହିଲେ : ଯାଅ, ବିଶ୍ରାମ କର । ତୁମେ ଭୀଷଣ କ୍ଳାନ୍ତ ।

ମୁଁ ଆଉ ଦୁଇ ପାହୁଣ୍ଡ ଆଗେଇ ଯାଇ ପୁଣି ପଛକୁ ଫେରିଆସିଲି । ଲେଡ଼ି ଲୁଇସ୍ ବହି ଉପରେ ଦୃଷ୍ଟିନିବଦ୍ଧ କରିଥିଲେ । କିଛି ସମୟ ପରେ ମୋ ଆଡ଼େ ଚାହିଁ କହିଲେ : କ'ଣ କହୁଛ ?

ମୁଁ ଜଡ଼ିତ କଣ୍ଠରେ କହିଲି : ମୋତେ କ'ଣ କରିବାକୁ ହେବ କହିଲେ ନାହିଁ ତ !

ମେମ୍‌ସାହେବ ହୋ ହୋ ହୋଇ ହସିଉଠିଲେ : ଆଚ୍ଛା ଆଚ୍ଛା ତମେ ବସ ଏଇଠି । ମୁଁ କହୁଛି ।

ମୁଁ ତାଙ୍କରି ପାଖରେ, ଫ୍ଲୋର ଉପରେ ବିଛାହୋଇଥିବା ଗାଲିଚା ଉପରେ ବସି ପଡ଼ିଲି । ସେତେବେଳେ ସେ ପୁଣି ପତ୍ରିକା ପଠନରେ ମନୋନିବେଶ କରିଥିଲେ ।

ଅନେକ ସମୟ ପରେ, ଯେତେବେଳେ ସେ ପଢ଼ାଶେଷକଲେ, ଚାହିଁ ଦେଖିଲେ ମୁଁ ତଳେ ଗାଲିଚା ଉପରେ ବସିଛି। ନିଜେ ସେ ଉଠି ଠିଆହୋଇପଡ଼ି କହିଲେ: ମୋ ସାଙ୍ଗରେ ଆସ ।

ମୁଁ ତାଙ୍କ ପଛେ ପଛେ ଚାଲିଲି । ଏଥର ମୋତେ ସେ ଯେଉଁ ଘରକୁ ନେଇଗଲେ, ସେ ଘରଟା ମୋତେ ସେ ଦେଖାଇ ନଥିଲେ । ସେଇଟା ଥିଲା ଲେଡ଼ି ଲୁଇସ୍‌ଙ୍କର ବେଡ୍‌ରୁମ୍ । ଲଗାଲଗି ହୋଇ ଦୁଇଟି ବହୁମୂଲ୍ୟ ପଲଙ୍କ ପଡ଼ିଥିଲା । ସେ ଘରର ଆସବାସପତ୍ର, ସାଜସଜ୍ଜା ଦେଖି ସେଦିନ ମୋ ମୁଣ୍ଡ ବୁଲାଇ ଦେଇଥିଲା । ମୋ ବିସ୍ଫାରିତ ଆଖି ଯୋଡ଼ାକ ଆଡ଼େ ଚାହିଁ ମେମ୍‌ସାହେବ ବୋଧହୁଏ ହାସ୍ୟ ସମ୍ବରଣ କରି ପାରି ନ ଥିଲେ ।

ମୋତେ ସେ ଗୋଟାଏ ବିରାଟ ଫୋଟ ପାଖରେ ନେଇ ଠିଆକରେଇ କହିଲେ : ଏ ହେଉଛନ୍ତି କର୍ଣ୍ଣେଲ ଲୁଇସ୍ । ବର୍ତ୍ତମାନ ଇଂଲଣ୍ଡରେ ଅଛନ୍ତି । ଆଉ ଏ ଘରଟା ହେଲା ମୋର ବେଡ୍‌ରୁମ୍ । ତମର କାମ ହେଲା, ତମେ ମୋର ବେଡ୍‌ରୁମ୍ ଚାର୍ଯରେ ରହିଲ। ଏ ଘରର ସାଜସଜ୍ଜା, ପରିପାଟୀ ସବୁର ଦାୟିତ୍ୱ ତମ ଉପରେ ରହିଲା । ଆଉ କର୍ଣ୍ଣେଲ ଲୁଇସ୍‌ଙ୍କର ଫୋଟ ପରିଷ୍କାର କରି ଫୁଲ ଇତ୍ୟାଦି ସଜେଇବାର ଭାର ମଧ୍ୟ ତମ ଉପରେ ରହିଲା ।

ଲେଡ଼ି ଲୁଇସ୍ ମୋ କାମର ଦାୟିତ୍ୱ ମୋତେ ବୁଝାଇ ଦେଇ, ମୋରି ଆଗରେ ତାଙ୍କ ବେଡରୁମ୍‌ର ଗୋଟିଏ ପଲଙ୍କ ଉପରେ ଗଡ଼ିପଡ଼ିଲେ ।

ମୁଁ କିଛି ସମୟ ତାଙ୍କ ଆଡ଼େ ଚାହିଁ ଠିଆହେବା ପରେ ଧୀରେ ଧୀରେ ସେ ଘରୁ ବାହାରି ଆସିଲି । ସେତେବେଳେ ମୋ ମନ ଭିତରଟା ଆନନ୍ଦ ଆଉ ଆଶଙ୍କାରେ ପୂରି ରହିଥିଲା । ମୁଁ ବୁଝିପାରୁ ନଥିଲି ମୋର ସ୍ଥିତି ଆଉ ଅବସ୍ଥିତିର କଥା; କାରଣ ଏତେ ବୁଝିବାର ବୟସ ମଧ୍ୟ ମୋର ହୋଇ ନଥିଲା । ମୁଁ ଯେପରି ଏକ ସ୍ରୋତମୁଖର ତୃଣ ପରି ଭାସି ଭାସି ଚାଲିଥିଲି ।

ଲେଡ଼ି ଲୁଇସ୍‌ଙ୍କର ଆଚାର ବ୍ୟବହାର, ତାଙ୍କର କୌଣସି ଚାକର ବାକରଙ୍କ ପ୍ରତି ଖରାପ ନଥିଲା । ବିଶେଷ କରି ମୁଁ ଲକ୍ଷ୍ୟ କଲି, ମୋ ପ୍ରତି ତାଙ୍କର ବ୍ୟବହାର ଆଉ ଟିକିଏ ଉଚ୍ଚରେ । ଠିକ୍ ସେ ମୋତେ ଚାକର ବାକର ପରି ବ୍ୟବହାର କରୁ ନାହାନ୍ତି ।

ଦୁଇ ତିନିଦିନ ପରେ ମୋର ପୋଷାକପତ୍ର ଚାଲି ଆସିଲା । ପ୍ୟାଣ୍ଟ୍ କୋଟ୍ ପିନ୍ଧି ମୁଁ ଯେତେବେଳେ ଅଇନା ଆଗରେ ଠିଆ ହୋଇ ମୋର ଚେହେରା ଦେଖିଲି, ପ୍ରଥମେ ଲାଜରେ ଝାଉଁଳି ପଡ଼ିଥିଲି; କିନ୍ତୁ ଲେଡ଼ି ଲୁଇସ୍ ମୋତେ ପାଖକୁ ଟାଣିନେଇ, ମୋ ମୁହଁରେ ଚୁମା ଦେଇ ମୋତେ କହିଥିଲେ : ଭେରି ନାଇସ୍ ।

ସେଦିନ ମୁଁ ସ୍ତବଧ୍ ହୋଇଯାଇଥିଲି । କାରଣ ଲେଡ଼ି ଲୁଇସ୍ ସେଦିନ ଯୁଆଡ଼େ ଯାଇଥିଲେ, ମୋତେ ତାଙ୍କର  କାର୍‌ରେ ବସାଇ ନେଇଥିଲେ । ହୋଟେଲ, ପାର୍ଟି, ସିନେମା ସବୁ ଜାଗାକୁ ମୁଁ ତାଙ୍କ ସଙ୍ଗରେ ଯାଇଥିଲି । ଘରକୁ ଫେରିଥିଲୁ ଅନେକ ରାତିରେ । ପ୍ରାୟ ଗୋଟାଏ କି ଦୁଇଟା ହେବ । ସେତେବେଳକୁ ଲେଡ଼ି ଲୁଇସ୍ ଆଉ ହୋସ୍‌ରେ ନଥିଲେ । ଡ୍ରିଙ୍କ କରି କରି ତାଙ୍କର ଚେତନା ଶକ୍ତି ଲୋପପାଇଥିଲା । ଗାଡ଼ି ଉପରେ ସେ ତାଙ୍କର ସମସ୍ତ ଦେହଭାର ନଦି ଫେରିଥିଲେ ।

ମୁଁ ତାଙ୍କ ହାତ ଧରି ତାଙ୍କୁ ଗାଡ଼ିରୁ ଓହ୍ଲେଇବାକୁ ଚେଷ୍ଟାକରିଥିଲି । କିନ୍ତୁ ଡ୍ରାଇଭର ମୋତେ ବାରଣ କରିଥିଲା । କହିଥିଲା : ତମେ ଏକା ପାରିବ ନାହିଁ, ଅନ୍ୟମାନଙ୍କୁ ଡାକ । ମୁଁ ଆଉ ଦି'ତିନିଜଣ ଚାକରଙ୍କୁ ଡାକିଥିଲି । ସମସ୍ତେ ଆମେ ଧରାଧରି କରି ମେମ୍‌ସାହେବଙ୍କୁ ନେଇ ତାଙ୍କ ବେଡ୍ ଉପରେ ଶୁଆଇ ଦେଇଥିଲୁ । ସମସ୍ତେ ଫେରିଯାଇଥିଲେ, କିନ୍ତୁ ଲେଡ଼ି ଲୁଇସ୍ ମୋତେ ଛାଡ଼ି ନଥିଲେ । ମୋ ହାତଧରି ମୋତେ ତାଙ୍କ ବେଡ୍ ଉପରେ ବସାଇଥିଲେ ।

କିଛି ସମୟ ପରେ ସେ ମୁହଁଟେକି ମୋ ଆଡ଼କୁ ଚାହିଁଥିଲେ । ଅଳ୍ପ ଟିକିଏ ହସିଥିଲେ । ଇଂଗିତରେ ଫ୍ୟାନ୍‌ର ସ୍ପିଡ୍ ଆହୁରି ବଢ଼ାଇ ଦେବାପାଇଁ କହିଥିଲେ ।

ମୁଁ ଫୁଲ୍ ସ୍ପିଡ୍‌ରେ ଫ୍ୟାନ୍ ଚଳେଇ ଦେଇ ଘରୁ ବାହାରି ଯାଉଥିଲି । କିନ୍ତୁ ସେ ପୁଣି ମୋତେ ପାଖକୁ ଡାକିଥିଲେ । ଆଲମିରାରୁ ବୋତଲ ଆଉ ଗ୍ଲାସ ବାହାର କରିବାକୁ ଇଂଗିତରେ କହିଥିଲେ ।

ମୁଁ କିନ୍ତୁ ଡରିଯାଇଥିଲି । ବର୍ତ୍ତମାନ ଅବସ୍ଥା ଯାହା, ଏହାପରେ ଡ୍ରିଙ୍କ୍ କଲେ ହୁଏତ ଆଉ ସମ୍ଭାଳି ହେବ ନାହିଁ ।

କିନ୍ତୁ ହୁକୁମ୍‌ର ଗୋଲାମ ମୁଁ । ବୋତଲ ଆଉ ଗ୍ଲାସ ବାହାରି କରି ଆଣି ଟେବୁଲ୍ ଉପରେ ରଖିଲି ।

ମୋତେ ସେ ବୋତଲରୁ ପାନୀୟ ଗ୍ଲାସରେ ଢାଳିବା ପାଇଁ କହିଲେ ।

ତାଙ୍କ ଆଦେଶ ପାଳନ କଲି ।

ଗ୍ଲାସଟା ତାଙ୍କ ହାତକୁ ବଢ଼ାଇ ଦେଉଁ ଦେଉଁ ସେ ହାତଧରି ମୋତେ ବିଛଣା ଉପରେ ବସାଇ ମୋ ମୁହଁଆଡ଼େ କିପରି ଏକ ଭୋକିଲା ଆଖିରେ ଚାହିଁ କହିଲେ : ଇଉ ବୟ, କେବେ ଟେଷ୍ଟ କରିବାର ସୁଯୋଗ ପାଇଛ ଏହି ଅମୃତର ?

ହଠାତ୍ ମୁଁ ତାଙ୍କ କଥାରୁ କିଛି ବୁଝିପାରିଲି ନାହିଁ । ମୋ ମୁହଁ ପାଖରେ ସେଇ ପାନୀୟ ଗ୍ଲାସଟା ଧରି ସେ କହିଲେ : ଚାଖ ଚାଖ, ଭେରି ସୁଇଟ୍ ଟେଷ୍ଟ ।

ମୁଁ ମୁହଁ ବୁଲାଇ ନେଉଥିଲି ।

ଲେଡ଼ି ଲୁଇସ୍ କିନ୍ତୁ କଣ୍ଠରେ ଗମ୍ଭୀରତା ଫୁଟାଇ କହିଲେ : ପିଇବାକୁ ହେବ। ମୋ ପାଖରେ ଯେଉଁମାନେ ରହିବେ, ସେମାନଙ୍କୁ ମୋ ହୁକୁମ୍ ମାନି ଚଳିବାକୁ ହେବ ।

ସେ ସ୍ୱର ଶୁଣି ମୁଁ ଚକିତ ହୋଇଯାଇଥିଲି । ବାଧ ହୋଇଥିଲି ଗ୍ଲାସଟିଯାକ ପାନୀୟ ନିଃଶେଷ କରିବାକୁ; କାରଣ ଲେଡ଼ି ଲୁଇସ୍ ମୋତେ ନିଜ ହାତରେ ଜୋର୍ କରି ପିଆଇ ଦେଇଥିଲେ ।

ଅବଶ୍ୟ ସେଦିନ ମୋର ସେତକ ଗଳାଧଃକରଣ କରିବା ପାଇଁ ଯଥେଷ୍ଟ କଷ୍ଟ ହୋଇଥିଲା । ତଥାପି ମୁଁ ପଳାଇ ଯାଇ ପାରି ନଥିଲି ।

ଗ୍ଲାସଟି ନିଃଶେଷ କରିବା ପରେ ଅନେକ ସମୟଯାଏ ମୋର ହୋସ୍ ଥିଲା; କିନ୍ତୁ ପାନ କରିବାର କିଛି ସମୟ ପରେ ମୁଁ ମୋର ସମଗ୍ର ଶରୀରରେ କିପରି ଏକ ପରିବର୍ତ୍ତନ ଅନୁଭବ କରିଥିଲି ।

ଆହୁରି କିଛି ସମୟ ପରେ ଲେଡ଼ି ଲୁଇସ୍ ମୋତେ କହିଥିଲେ: ଭୀଷଣ ଗରମ୍ ହେଉଛି ।

ମୁଁ ଯାଇ ଦେଖିଲି ଫ୍ୟାନ୍‌ର ରେଗୁଲେଟର ମୁଁ ଏହା ପୂର୍ବରୁ ଅନ୍ କରି ରଖିଛି, ଆଉ କିଛି ଉପାୟ ନଥିଲା । ହତାଶ ହୋଇ ଫେରିଆସିଥିଲି ।

ଲେଡ଼ି ଲୁଇସ୍ ମୋ ଆଡ଼େ ଚାହିଁ ହସିଥିଲେ । କହିଥିଲେ : ଇଉ ବୟ, ପୁଅର ବୟ । କାମ୍ ଟୁ ମି ।

ମୁଁ ଆହୁରି ଟିକେ ତାଙ୍କ ପାଖକୁ ଆଗେଇ ଯାଇଥିଲି ।

ସେ ମୋତେ କହିଥିଲେ, ତାଙ୍କ ଦେହରୁ ପୋଷାକପତ୍ର ଧୀରେ ଧୀରେ ଗୋଟିକ ପରେ ଗୋଟିଏ ଖୋଲି ଦେବା ପାଇଁ ।

ମୁଁ ଚମକି ଉଠିଥିଲି ।

ସେ କିନ୍ତୁ ମୋ କାନ୍ଧ ଉପରେ ହାତ ରଖି, ମୋତେ କହିଥିଲେ : ମୋର ଆଦେଶ ପାଳନ କରିବା ତମର ଧର୍ମ ହେବା ଉଚିତ ।

ମୁଁ ଟିକିଏ ଇତସ୍ତତଃ ହୋଇଥିଲି ।

କିନ୍ତୁ ସେ ମୋ ହାତ ଧରି ଟାଣି ଟାଣି ନେଇ ତାଙ୍କ ଜାମାର ବୋତାମ ଖୋଲି ଦେବା ପାଇଁ ବାଧ କରିଥିଲେ ।

ମୁଁ ଆଦେଶ ପାଳନ କରିଥିଲି ।

ବୋଧହୁଏ ମୋ ଦେହରେ ପାନୀୟର ପ୍ରତିକ୍ରିୟା ଧୀରେ ଧୀରେ ସୃଷ୍ଟି ହେଉଥିଲା ।

ମୋର ମନେହେଉଥିଲା, ଧୀରେ ଧୀରେ ମୁଁ ଯେପରି ମୋର ଚେତନା ଶକ୍ତିହରାଉଛି ।

ଲେଡ଼ି ଲୁଇସ୍ଙ୍କ ଦେହରୁ ତାଙ୍କର ପୋଷାକପତ୍ର ଗୋଟିକ ପରେ ଗୋଟିଏ ସେ ମୋ ହାତକୁ ବଢ଼ାଇ ଦେଉଥିଲେ । ମୁଁ ବୋଧହୁଏ ସେଗୁଡ଼ିକ ଖଟ ବାଡ଼ ଉପରେ ଥୋଇ ତାଙ୍କର କାର୍ଯ୍ୟକଳାପ ଆଡ଼େ ଅନାଇ ରହିଥିଲି; କିନ୍ତୁ ସ୍ପଷ୍ଟ ମୋର ଆଉ କିଛି ମନେ ନଥିଲା । ମୁଁ କେବଳ ଯନ୍ତ୍ରଚାଳିତ ପରି ବୋଧହୁଏ ଆଦେଶ ପାଳନ କରିଚାଲିଥିଲି ।

ତା'ପରେ କେତେବେଳେ, କିପରି ଭାବରେ ମୁଁ ଆସି ମୋର ନିର୍ଦ୍ଦିଷ୍ଟ ଘରଟି ଭିତରେ ଶୋଇଥିଲି, ସେ ସବୁ ମୋର କିଛି ମନେ ନଥିଲା ।

ଆରଦିନ ଯେତେବେଳେ ମୋର ନିଦ ଭାଙ୍ଗିଲା, ସେତେବେଳକୁ ସକାଳ ଦଶଟା । ଚାରି ଆଡ଼କୁ ଚାହିଁ ମୋର ମନେ ହେଲା, ମୁଁ ଯେପରି କେଉଁ ଏକ ଦୁଃସ୍ୱପ୍ନ ଭିତରେ ରାତିଟା କଟାଇଛି ।

ଧୀରେ ଧୀରେ ଖଟ ଉପରେ ଉଠିବସି ଦେଖିଲି, ମୁଁ ପ୍ୟାଣ୍ଟ, କୋଟ୍, ଜୋତା ସବୁ ପିନ୍ଧି ଶୋଇଛି ।

ମୁଣ୍ଡଟା ଝାଇଁ ଝାଇଁ ହୋଇ ଯାଉଥିଲା ।

ଦେହରୁ ଯେପରି ସବୁ ଶକ୍ତି ନିଃଶେଷ ହୋଇ ଯାଇଥିଲା । ମୁଁ ଉଠିବାକୁ ଚେଷ୍ଟା କରି ପୁଣି ବସିପଡ଼ିଥିଲି ।

ଠିକ୍ ସେତିକିବେଳେ ଦେଖିଲି, ଲେଡ଼ି ଲୁଇସ୍ ହସି ହସି ତାଙ୍କ ଫୁଙ୍ଗୁଳା ଦେହରେ ଗୋଟାଏ ବ୍ରେସିଅର ଗଳାଉ ଗଳାଉ ମୋ ଘର ଭିତରକୁ ପଶି ଆସୁଛନ୍ତି ।

ମୋ ଦେହରେ ଶତସିଂହର ପରାକ୍ରମ ଜାଗିଲା ପରି ମୁଁ ଖଟ ଉପରୁ ତଳକୁ ଓହ୍ଲାଇ ପଡ଼ି ଠିଆହୋଇଗଲି ।

ଲେଡ଼ି ଲୁଇସ୍ ମୋର ଅବସ୍ଥା ଦେଖି ହସିଲେ । କହିଲେ : ରାତିଯାକ ଶୋଇ ଶୋଇ ସ୍ୱପ୍ନ ଦେଖୁଥିଲ ବୋଧେ !!

ମୁଁ କିଛି ଉତ୍ତର ଦେଇପାରି ନଥିଲି । କୋଟ୍ ଖୋଲି ହାଙ୍ଗରରେ ଟଙ୍ଗେଇବାକୁ ଯାଇ ଦେଖିଲି, ଲେଡ଼ି ଲୁଇସ୍ ହାଇ ମାରି ମାରି ଡାହାଣ ହାତ ଆଙ୍ଗୁଠିରେ ଫୁଟ୍‌କି ଫୁଟାଉ ଫୁଟାଉ ଚାଲି ଯାଉଛନ୍ତି ।

ମୁଁ ନଇଁପଡ଼ି ଗୋଡ଼ରୁ ଜୋତା ଖୋଲୁଥିଲି ।

ସେ ପୁଣି ଫେରିଆସି କହିଲେ: ନିତ୍ୟକର୍ମ ଶେଷକରି ମୋ ଘରକୁ ଆସିବ ।

ଯଥା ସମ୍ଭବ ଶୀଘ୍ର ସକାଳର ନିତ୍ୟକର୍ମ ଶେଷ କରି ମୁଁ ଲେଡ଼ି ଲୁଇସ୍ଙ୍କ ବୈଠକଖାନାରେ ଯାଇପହଞ୍ଚିଲି ।

ତାଙ୍କ ଆଗ ଟେବୁଲ୍‌ରେ ଦୁଇକପ୍ ଚା' ଧୂମାୟିତ ହୋଇ ଥୁଆ ହୋଇଥିଲା । ସେ ଖବର କାଗଜ ଉପରେ ଆଖି ରଖି ବୋଧହୁଏ କାହାର ଅପେକ୍ଷା କରୁଥିଲେ ।

ମୁଁ ଘରେ ପ୍ରବେଶ କରିବାମାତ୍ରେ ଖବର କାଗଜ ଉପରୁ ଆଖି ଫେରାଇ କହିଲେ : ବସ ।

ତାଙ୍କ ସାମ୍‌ନା ସୋଫା ଉପରେ ବସିବା ପାଇଁ ମୁଁ ଦ୍ୱିଧାବୋଧ କରୁଥିଲି । ସେ ମୋତେ ଇଙ୍ଗିତରେ ବସିବାକୁ କହି କପେ ଚା' ମୋ ଆଡ଼କୁ ଠେଲିଦେଲେ; ପୁଣି ଖବର କାଗଜ ଉପରେ ଆଖି ରଖି କହିଲେ : ତମେ ଏଠାରେ କିପରି ଅନୁଭବ କରୁଛ ୟଙ୍ଗ୍‌ମ୍ୟାନ ?

ମୁଁ କିଛି ଉତ୍ତର ଦେବା ଆଗରୁ ବେହେରା ଘର ଭିତରେ ପଶିଲା । ଲେଡ଼ି ଲୁଇସ୍ ତା' ଆଡ଼େ ଚାହିଁଲେ । ବେହେରା କହିଲା : ମିସ୍ ଫ୍ଲୋରା ଆସିଛନ୍ତି ।

ମିସ୍‌ଫ୍ଲୋର । ସତର ଅଠର ବର୍ଷର ଗୋଟିଏ ଇଂରେଜ ତରୁଣୀ । ସୁନ୍ଦରୀ, ତନ୍ୱୀ । ମୁହଁରେ ହସଫୁଲ ଫୁଟେଇ ଘରେ ପଶିଲେ ।

ଲେଡ଼ି ଲୁଇସ୍ ମୋ ଆଡ଼େ ଚାହିଁ କହିଲେ : ଏଇ ତମର ଶିଷ୍ୟ । ଯେତେଶୀଘ୍ର ସମ୍ଭବ ଏହାକୁ ପରିପୂର୍ଣ୍ଣ କରି ତମ୍ଭକୁ ଗଢ଼ିତୋଳିବାକୁ ହେବ ।

ମିସ୍ ଫ୍ଲୋରା ମୋ ଆଡ଼େ ଚାହିଁ ହସିଲେ ।

ତା'ପରେ ଦୀର୍ଘ ଦୁଇଟି ବର୍ଷ ମିସ୍ ଫ୍ଲୋରାଙ୍କ ତତ୍ତ୍ୱାବଧାନରେ ମୋତେ ରହିବାକୁ ପଡ଼ିଥିଲା ।

ଲେଡ଼ି ଲୁଇସ୍ ବୋଧହୁଏ ମନପ୍ରାଣରେ ମୋତେ ଇଂରେଜ କରି ଗଢ଼ିତୋଳିବା ପାଇଁ ଚେଷ୍ଟା କରିଥିଲେ । ଅବଶ୍ୟ ତାଙ୍କ ଚେଷ୍ଟା ଯେ ବ୍ୟର୍ଥ ହୋଇଛି, ସେ କଥା ଆଜି ଦୀର୍ଘ ଦିନ ପରେ ମୁଁ ବୁଝିପାରୁଛି ।

କିନ୍ତୁ ସେଦିନ ଲେଡ଼ି ଲୁଇସ୍‌ଙ୍କର ମୋ କାର୍ଯ୍ୟ କଳାପ ପ୍ରତି ଥିଲା ଅସୀମ ଆଗ୍ରହ । ମୋ ସ୍ୱାସ୍ଥ୍ୟ ପ୍ରତି ଥିଲା କଡ଼ା ନଜର ।

ସେଇ ଦୁଇ ଅଢ଼ାଇ ବର୍ଷ ଭିତରେ କର୍ଣ୍ଣେଲ ଲୁଇସ୍ କେବେ ଥରେ ଆସି ନଥିଲେ କଲିକତା ।

ଲେଡ଼ି ଲୁଇସ୍ କିନ୍ତୁ ଦିନରେ ଥରେ କର୍ଣ୍ଣେଲ ଲୁଇସ୍‌ଙ୍କ ଫଟୋ ଆଗରେ ଠିଆହୋଇ ବହୁତ ସମୟ ଫଟୋଟାକୁ ଦେଖନ୍ତି । ହାତ ବୁଲାଇ ସ୍ପର୍ଶ ଅନୁଭବ କଲାପରି ଭାବ କରନ୍ତି । ଅସ୍ପଷ୍ଟ ସ୍ୱରରେ କ'ଣ କୁହନ୍ତି । ତା'ପରେ ନିଜ କାମରେ ବହାରି ପଡ଼ନ୍ତି ।

ଲେଡ଼ି ଲୁଇସ୍ ଗୋଟାଏ ନେଭିଗେସନ କମ୍ପାନୀର ଡାଇରେକ୍ଟର ଥିଲେ । ଜାହାଜ ତାଙ୍କର ଦେଶ ବିଦେଶ ବହୁଆଡ଼େ ଚାଲୁଥିଲା । ସେଥିପାଇଁ ସେ ରୋଜ୍ ଥରେ ଅନ୍ତତଃ ଅଫିସ୍ ଯାଉଥିଲେ । ଡାଲହାଉସୀ ସ୍କୋୟାରରେ ତାଙ୍କର ବିରାଟ ଅଫିସ୍ ।

ମୁଁ ସେ ଖବର ବହୁତ ଦିନପରେ ଜାଣିଥିଲି । ଯେତେବେଳେ ମୁଁ ଇଂରାଜୀରେ କଥାବାର୍ତ୍ତା କରିବାକୁ ସମର୍ଥ ହୋଇଗଲି, ସେତେବେଳେ ଦିନେ ଲେଡ଼ି ଲୁଇସ୍ ତାଙ୍କ ଅଫିସ୍‌କୁ ନେଇ ମୋତେ ବୁଲେଇ ଚଲେଇ ସବୁ ଦେଖେଇ ଦେଇଥିଲେ । ପରିଚିତ କରେଇ ଦେଇଥିଲେ

ତାଙ୍କର ଅନ୍ୟାନ୍ୟ ସହଯୋଗୀମାନଙ୍କ ସହିତ, ପଦସ୍ଥ କର୍ମଚାରୀମାନଙ୍କ ସହିତ । ମୋର ପରିଚୟ ଦେବାକୁ ଯାଇ ସେ କହିଥିଲେ, ମୁଁ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ।

ସେଇଦିନ ସେ ମୋତେ ପରିଚୟ କରାଇ ଦେଇଥିଲେ ଆଉ ଜଣକ ସହିତ । ତାଙ୍କ ନାଁ ଶ୍ୟାମାନନ୍ଦ ମାଲହୋତ୍ରା, ଲଳିତା ମାଲହୋତ୍ରାଙ୍କ ବାପା ।

ବାଟରେ ଆସିଲାବେଳେ ଲେଡ଼ି ଲୁଇସ୍ ମୋତେ କହିଥିଲେ ଶ୍ୟାମାନନ୍ଦ ମାଲାହୋତ୍ରାଙ୍କ କଥା । ସେ ଅନେକ ଦିନ ତଳର କଥା । ସେଦିନଠାରୁ ବୋଧହୁଏ ଦଶ ପନ୍ଦର ବର୍ଷ ହେବ । ସେତେବେଳେ କର୍ଣ୍ଣେଲ ଲୁଇସ୍ ନିଜେ ବ୍ୟବସାୟ ବୁଝୁଥିଲେ । ନେଭିଗେସନ୍ କମ୍ପାନୀରେ ପୂର୍ଣ୍ଣ ଆଧିପତ୍ୟ ତାଙ୍କର ଥିଲା ।

ଦିନେ ସେ ମୋରି ପରି କେଉଁଠୁ ଧରି ଆଣିଥିଲେ ଶ୍ୟାମାନନ୍ଦ ମାଲହୋତ୍ରାଙ୍କୁ । ଅବଶ୍ୟ ସେଦିନ ସେତେବେଳେ ମୋଠାରୁ ଶ୍ୟାମାନନ୍ଦଙ୍କ ବୟସ ଟିକେ ବେଶି ହୋଇଥିଲା । କିନ୍ତୁ ମୋପରି ଦାରିଦ୍ର୍ୟର କଷାଘାତରେ ସେ ନିଃଶେଷିତ ହୋଇ ଆସୁଥିଲେ ।

କର୍ଣ୍ଣେଲ ଲୁଇସ୍ ପ୍ରଥମେ ଆଣି ତାଙ୍କୁ ବଗିଚାରେ କାମ ଦେଇଥିଲେ । ଫୁଲ ଗଛରେ ପାଣି ଢାଳିବାଠାରୁ ଆରମ୍ଭ କରି ବଗିଚାର ଘାସ କାଟିବା ପର୍ଯ୍ୟନ୍ତ ଶ୍ୟାମାନନ୍ଦଙ୍କର କାମ ଥିଲା ।

କର୍ଣ୍ଣେଲ ଲୁଇସ୍ ଶ୍ୟାମାନନ୍ଦଙ୍କର ଏକାଗ୍ରତାରେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ । ଦିନେ ଶ୍ୟାମାନନ୍ଦଙ୍କୁ ପାଖକୁ ଡାକି ଆଉ ଏକ ନୂଆ କାମରେ ସୁଯୋଗ ଦେଲେ ।

ନେଭିଗେସନ କମ୍ପାନୀର ଜାହାଜ ଯେତେବେଳେ ବହାରୁ ଆସି ଡକ୍‌ରେ ଲାଗେ ଏବଂ ବାହାରକୁ ଯିବା ପାଇଁ ଡକ୍‌ରୁ ଛାଡ଼େ, ସେତେବେଳେ ଜାହାଜରୁ ମାଲପତ୍ର ଓହ୍ଲେଇବା ପାଇଁ ଏବଂ ଚଢ଼େଇବା ପାଇଁ ବହୁତ କୁଲିଙ୍କର ପ୍ରୟୋଜନ ହୋଇଥାଏ ।

କର୍ଣ୍ଣେଲ ଲୁଇସ୍ ଶ୍ୟାମାନନ୍ଦ ମାଲହୋତ୍ରାଙ୍କୁ ପ୍ରଥମେ ସେଇ କୁଲିମାନଙ୍କ ଦେଖାଚାହାଁ କରିବାର ଦାୟିତ୍ୱରେ ରଖିଲେ । କିଏ କେତେ କାମ କଲା, କେତେଜଣ କେଉଁଦିନ କେଉଁ ଜାହାଜରେ କି ଧରଣର ମାଲ ଚଢ଼ାଇଲେ, ଇତ୍ୟାଦି ଇତ୍ୟାଦିର ହିସାବ ରଖିଲେ ଶ୍ୟାମାନନ୍ଦ । ଅବଶ୍ୟ ଲେଖାପଢ଼ା ଟିକେ ଶିଖିଥିଲେ ସେ । ତେଣୁ ତାଙ୍କୁ ବିଶେଷ ଅସୁବିଧା ହୋଇ ନଥିଲା । ଧୀରେ ଧୀରେ ସେ ସୂଚାରୁରୂପେ ଦାୟିତ୍ୱ ପାଳନ କରିପାରୁଥିଲେ ।

ଦିନେ କର୍ଣ୍ଣେଲ ଲୁଇସଙ୍କ ମନରେ କି ଧାରଣା ହେଲା କେଜାଣି ସେଦିନ ସେ ଶ୍ୟାମାନନ୍ଦ ମାଲାହୋତ୍ରାଙ୍କୁ ଘରକୁ ଡାକି, ତାଙ୍କ ହାତରେ ପାଞ୍ଚହଜାର ଟଙ୍କା କ୍ୟାସ୍ ଦେଇ କହିଲେ : ଯାଅ, ଆଜିଠାରୁ ତମେ ସ୍ୱାଧୀନ ବ୍ୟବସାୟ କର । ବର୍ଷକ ପରେ ମୋତେ ଏଇ ଟଙ୍କା ଫେରାଇ ଦିଅ ।

ଅବଶ୍ୟ ସେଦିନ ଶ୍ୟାମାନନ୍ଦ ମାଲହୋତ୍ରା ଅବାକ୍ ହୋଇଯାଇଥିଲେ ।

କର୍ଣ୍ଣେଲ ଲୁଇସ୍ ତାଙ୍କୁ ଅଶ୍ୱାସନା ଦେଇ କହିଥିଲେ : ତମର ଭୟ କିରବାର କିଛି ନାହିଁ । ଆମେ ଆଉ କମ୍ପାନୀ ତରଫରୁ ଜାହାଜରେ କୁଲି ଖଟାଇବୁ ନାହିଁ । ତମକୁ କଣ୍ଟ୍ରାକ୍ଟ ଦେଇ ଦେଉଛୁ । ତୁମେ ନିଜ ଦାୟିତ୍ୱରେ କୁଲି ଖଟାଇ ଆମ ଜାହାଜରେ ମାଲ୍ ଲୋଡ୍, ଅନ୍‌ଲୋଡ୍ କରିବ । ତା'ପରେ ଆମଠାରୁ ହିସାବ କରି ସମସ୍ତ ଟଙ୍କା ପଇସା ନେଇନେବ ।

ଅବଶ୍ୟ ପ୍ରଥମେ ପ୍ରଥମେ ଶ୍ୟାମାନନ୍ଦଙ୍କର ଟିକିଏ ଅସୁବିଧା ହୋଇଥିଲା; କିନ୍ତୁ ତା'ପରେ ସେ ଉଠି ବସିଥିଲେ । ନେଭିଗେସନ କମ୍ପାନୀର ଭାଗ୍ୟ ସହିତ ଶ୍ୟାମାନନ୍ଦ ମାଲହୋତ୍ରା

ଦୁଇ ତିନି ବର୍ଷରେ ଉଠିବସିଲେ । ଧୀରେ ଶ୍ୟାମାନନ୍ଦଙ୍କର ରୂପ, ଭେକ ସବୁର ପରିବର୍ତ୍ତନ ହେଲା । ସେତେବେଳେ ଶ୍ୟାମାନନ୍ଦଙ୍କର ପୂର୍ଣ୍ଣ ଯୌବନ । ତାଙ୍କର ଅକ୍ଲାନ୍ତ ପରିଶ୍ରମ ଆଉ ଏକାଗ୍ରତା ବଳରେ ସେ ଲକ୍ଷ୍ମୀଙ୍କୁ ନିଜ ଘରେ ବନ୍ଦି କରି ରଖି ପାରିଥିଲେ ।

ମୋର କିନ୍ତୁ ବହୁତ ପରେ ଭେଟ ହୋଇଥିଲା ମିଷ୍ଟର ମାଲହୋତ୍ରାଙ୍କ ସହିତ । ସେତେବେଳେ ସେ ପୂର୍ଣ୍ଣ ସଂସାରୀ ।

ଲେଡ଼ି ଲୁଇସ୍ ମୋତେ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ସହିତ ଯେଉଁଦିନ ପରିଚୟ କରାଇ ଦେଇଥିଲେ, ଠିକ୍ ତା'ର ଦଶ ପନ୍ଦର ଦିନ ପରେ ମୋର ତାଙ୍କ ସହିତ ଆଉ ଥରେ ଦେଖା ହୋଇଥିଲା, ଗୋଟାଏ ଜାହାଜରେ ଅନ୍‌ଲୋଡ୍ ହେଉଥିବା ସମୟରେ, ଡକ୍‌ୟାର୍ଡ଼ରେ ।

ମୋତେ ଦେଖି ଶ୍ୟାମାନନ୍ଦ ମାଲହୋତ୍ରା ଚିହ୍ନିପାରିଥିଲେ । ବୟସରେ ମୁଁ ତାଙ୍କଠାରୁ ଯଥେଷ୍ଟ ସାନ ହେଲେ ମଧ୍ୟ, ଲେଡ଼ି ଲୁଇସ୍‌ଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ହିସାବରେ ସେ ମୋତେ ସେଦିନ ଖୁବ୍ ଖାତିର କରିଥିଲେ । ଅନୁରୋଧ କରିଥିଲେ ଦିନେ ତାଙ୍କର ଘରକୁ ଯିବା ପାଇଁ ।

ମୁଁ ଯାଇଥିଲି । ପ୍ରଥମେ ସେଇଠି ଭେଟ ହୋଇଥିଲା ମୋର ଲଳିତା ସହିତ । ସେତେବେଳେ କେତେ ବୟସ ହେବ ଲଳିତାକୁ ? ଏଇ ଧରନ୍ତୁ ଆଠ ନଅ ବର୍ଷ ।

ମୋତେ ସେଦିନ ଲଳିତା ଦେଖି ମୋଟେ ଶଂକି ଯାଇ ନଥିଲା । ବରଂ ଆଗେଇ ଆସି, ମୁଁ ତାକୁ କିଛି କହିବା ଆଗରୁ ସେ ମୋର ନାମ ଠିକଣା ପଚାରି ବସିଥିଲା ।

ମିସେସ୍ ମୋଲହୋତ୍ରା ଆସିଥିଲେ । ସୁଖ ଦୁଃଖ ନାନା କଥା ପଚାରିଥିଲେ । ମୋର ପିତୃମାତୃଙ୍କ ପରିଚୟ ପଚାରି ଯେତେବେଳେ ମୋ ମୁହଁରୁ ସମସ୍ତଙ୍କର ବିୟୋଗବାର୍ତ୍ତା ଶୁଣିଥିଲେ, ଆଖିରେ ସେଦିନ ତାଙ୍କର ଲୁହ ଜକେଇ ଆସିଥିଲା । ସେଦିନ ପ୍ରଥମ ଥର ଆତ୍ମୀୟ ସ୍ୱଜନଙ୍କ ପାଇଁ ମନଟା ମୋର କିପରି ଆକୁଳ ହୋଇ ଉଠିଥିଲା; ଆଉ ମିସେସ୍ ମାଲହୋତ୍ରା ମୋ' ପ୍ରାଣରେ ଏକ ବିଶେଷ ସ୍ଥାନ ଅଧିକାର କରି ବସିଥିଲେ ।

ସେଦିନ ମୋତେ ସେମାନେ ସମସ୍ତ ସ୍ନେହ ଓ ଆଦର ଦେଇ ଆପ୍ୟାୟନ କରିଥିଲେ । ଅବଶ୍ୟ ତା' ମୂଳରେ କୌଣସି ଆନ୍ତରିକତା ଥିଲା କି ନାହିଁ , ସେସବୁ ତତ୍ତ୍ୱ ବୁଝିବାକୁ ମୁଁ ଯାଇ ନଥିଲି । ତେବେ ସେମାନଙ୍କର ବ୍ୟବହାର ମୋତେ ମୁଗ୍ଧ କରିଥିଲା । ମୁଁ ଆକର୍ଷିତ ହୋଇଥିଲି ।

ସେଇଥିପାଇଁ ପରବର୍ତ୍ତୀ ସମୟରେ ସେମାନଙ୍କ ନିମନ୍ତ୍ରଣ ନ ପାଇ ମଧ୍ୟ ମୁଁ ମଝିରେ ମଝିରେ ସେମାନଙ୍କ ଘରକୁ ଛୁଟିଯାଇପାରୁଥିଲି ।

କ୍ରମେ ମାଲହୋତ୍ରା ପରିବାର ସହିତ ଆନ୍ତରିକତାଟା ମୋର ଜମି ଉଠିଲା । ମାସରେ ଅନ୍ତତଃ ଥରେ ଦୁଇଥର ତାଙ୍କ ଘରଆଡ଼େ ବୁଲି ନ ଆସିଲେ ମୁଁ ସ୍ଥିର ରହିପାରୁ ନଥିଲି ।

ଲେଡ଼ି ଲୁଇସ୍ ମୋତେ ଏପରି ଏକ ନିଗୂଢ଼ ବନ୍ଧନରେ ବାନ୍ଧିରଖିଥିଲେ, ଆଉ ଦିନପରେ ଦିନ ମୁଁ ତାଙ୍କ ପ୍ରତି ଏପରି କୃତଜ୍ଞ ହୋଇ ଉଠୁଥିଲି ଯେ, ତାଙ୍କର କେତେକ ଆଚରଣରେ ମୋ' ମନ ବିକ୍ଷୁବ୍ଧ ହୋଇ ଉଠିଲେ ମଧ୍ୟ, ତାଙ୍କୁ ଛାଡ଼ି ମୁଁ ଚାଲି ଆସି ପାରୁ ନଥିଲି ।

ଲେଡ଼ି ଲୁଇସ୍‌ଙ୍କ ପାଖରେ ଶନିବାର ରାତିଟା ମୋର ବିଷାକ୍ତ ହୋଇ ଉଠୁଥିଲା । ସେ ମାତ୍ରାଧିକ ପରିମାଣରେ ପାନ କରି ମୋତେ ଏପରି ଭାବରେ ବିରକ୍ତ କରୁଥିଲେ, ସେଇ ମୁହୂର୍ତ୍ତଗୁଡ଼ାକ ମୋ ପାଇଁ ଅସହ୍ୟ ହୋଇଉଠୁଥିଲା ।

ବେଳେ ବେଳେ ବାଉଳି ହୋଇ ସେ କହି ଉଠୁଥିଲେ, : କର୍ଣ୍ଣେଲ୍ ଲୁଇସ୍‌ଙ୍କର ସମସ୍ତସତ୍ତା ମୁଁ ତମଠାରେ ଅନୁଭବ କରୁଛି । ତମେ ଆସିଲା ଦିନଠାରୁ ମୁଁ ହୋଟେଲ, ପାର୍ଟି ସବୁ ଛାଡ଼ିଛି । ଅବଶ୍ୟ ଧୀରେ ଧୀରେ ମୋର ବୟସ ବଢୁଥିଲା । ତା' ସହିତ ଜ୍ଞାନ ମଧ୍ୟ । କିନ୍ତୁ ଲେଡ଼ି ଲୁଇସ୍‌ଙ୍କ ପରି ଏକ ପ୍ରୌଢ଼ ମହିଳାଙ୍କର ଆବ୍‌ଦାର କ୍ରମେ ମୋ ପାଖରେ ଅସହ୍ୟ ହୋଇ ଉଠୁଥିଲା; କିନ୍ତୁ କରଣୀୟ ମୋର କିଛି ନଥିଲା ।

କେବଳ ସେଇ ଶନିବାର ରାତିଟାକୁ ଛାଡ଼ିଦେଲେ, ଲେଡ଼ି ଲୁଇସ୍ ମୋ ଆଖି ଆଗରେ ଏକ ଆଦର୍ଶ ମହିଳା ହୋଇ ଦେଖାଦେଇଥିଲେ । ବେଳେବେଳେ ସେ କର୍ଣ୍ଣେଲ ଲୁଇସ୍‌ଙ୍କ ସମ୍ବନ୍ଧରେ ନାନା କଥା କହୁଥିଲେ । ସେ କିପରି ଡେଆରିଙ୍ଗ୍ ସ୍ପିରିଟର ଲୋକ, ଯୁଦ୍ଧରେ କିପରି କାମ କରିଥିଲେ, ଖବର କାଗଜ ଆଦିରେ ତାଂକର ଫଟୋ ଦେଖି ସେ କିପରି ତାଙ୍କୁ ଭଲପାଇବସିଥିଲେ, ଇତ୍ୟାଦି ଇତ୍ୟାଦି । କିନ୍ତୁ ଏ ସବୁ ପରେ ମୋର ଯେତେବେଳେ ମନେ ପଡ଼ି ଯାଉଥିଲା ଲେଡ଼ି ଲୁଇସ୍‌ଙ୍କର ପୈଶାଚିକ ପ୍ରତିପତ୍ତି କଥା, ମୋ ପ୍ରାଣ ଘୃଣାରେ ଭରି ଉଠୁଥିଲା ।

ତଥାପି ଲେଡ଼ି ଲୁଇସ୍‌ଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ମୁଁ । ବାହାରେ ଅନେକଂକର ମୁଁ ଈର୍ଷାର ପାତ୍ର; କିନ୍ତୁ ମୋ ପ୍ରତି ଲେଡ଼ି ଲୁଇସ୍‌ଙ୍କର ଆଚରଣରେ କୌଣସି ଦିନ କିଛି ବ୍ୟତିକ୍ରମ ଦେଖି ନଥିଲି ।

ଏଣେ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଘରର ଆକର୍ଷଣ ଦିନ ପରେ ଦିନ ମୋ ପ୍ରାଣରେ ଆଶା ସଞ୍ଚାର କରୁଥିଲା । ଅବଶ୍ୟ ସେ ଆଶାର ସଂଜ୍ଞା ସେତେବେଳେ ମୁଁ ବ୍ୟାଖ୍ୟା କରି ପାରି ନଥାନ୍ତି, ଆଜି ବି ପାରିବି ନାହିଁ ।

କିନ୍ତୁ ଶ୍ୟାମାନନ୍ଦ ମାଲହୋତ୍ରାଙ୍କୁ ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ । ଅବଶ୍ୟ ଧୀରେ ଧୀରେ ମୁଁ ତାଙ୍କ ପରିବାରର ଯେତେ ନିକଟ ସମ୍ପର୍କକୁ ଆସିଲି, ଆସ୍ତେ ଆସ୍ତେ ସେମାନଙ୍କର ସ୍ୱରୂପ ଉଦ୍‌ଘାଟନ ହୋଇଉଠିଲା ମୋ ଆଖି ଆଗରେ ।

ଶ୍ୟାମାନନ୍ଦ ମାଲହୋତ୍ରା ତାଙ୍କ ଜୀବନରେ ପର୍ବତ ଆାରୋହଣ କରି ପାରିଥିଲେ, କହିବାକୁ ହେବ; କାରଣ ସେତେବେଳେ ତାଙ୍କ ପରି ଜଣେ ଅତି ସାଧାରଣ ଲୋକ କଲିକତାରେ କୋଠା କିଣିଥିଲେ, ମଟର ଚଢୁଥିଲେ । ଆଉ.....

ମିଷ୍ଟର ଆନନ୍ଦଙ୍କ କଥା ମଝିରେ ବାଧା ଦେଇ ମୁଁ ପଚାରିଲି: ଶ୍ୟାମାନନ୍ଦ ବାବୁ ଯେଉଁ କୋଠା କିଣିଥିଲେ, ସେଇଟା କ'ଣ ପରେ ପୁଣି ବିକ୍ରି କରି ଦେଇଥିଲେ ?

: ନା, ନା, କିଏ ଆପଣଙ୍କୁ କହିଲା ? ସେ କୋଠାରେ ନିଜେ ସେ ଏବେ ବାସ କରୁଛନ୍ତି ।

: ମାନେ ? ମୁଁ ଆକାଶରୁ ପଡ଼ିଲା ପରି ମିଷ୍ଟର ଆନନ୍ଦଙ୍କ ମୁହଁକୁ ଚାହିଁ ପଚାରିଲି ।

ମିଷ୍ଟର ଆନନ୍ଦ ମୋତେ ଅତି ସହଜ ସ୍ୱରରେ କହିଲେ : ମାନେ ଆଉ କ'ଣ ! ଶ୍ୟାମାନନ୍ଦ ମାଲହୋତ୍ରା ଆଜି ବି ସେଇ କୋଠାରେ ବାସ କରୁଛନ୍ତି । ଏଇକ୍ଷଣା ଗଲେ ବି

ଆପଣ ତାଙ୍କର ଦେଖାପାଇବେ; କାରଣ ଏବେ ସେ ଆଉ ବାହାରକୁ କୁଆଡ଼େ ବାହାରନ୍ତି ନାହିଁ ।

ମୁଁ ଆହୁରି ଆଶ୍ଚର୍ଯ୍ୟ ହୋଇଥିଲି ମିଷ୍ଟର ଆନନ୍ଦଙ୍କ କଥା ଶୁଣି । ପଚାରିଲି ସେ କ'ଣ ଏଇ କଲିକତାରେ ଅଛନ୍ତି ?

: ନିଶ୍ଚୟ, ତେବେ ତାଙ୍କର ପରିବାର ସହିତ ଆଉ କୌଣସି ସମ୍ପର୍କ ନାହିଁ । ଅନେକ ଦିନ ହେବ, ପରିବାର ସହିତ ସମସ୍ତ ସମ୍ପର୍କ ତୁଟାଇ ସେ ଏକ ଅଭିଶପ୍ତ ଜୀବନ ଯାପନ କରୁଛନ୍ତି ।

: କିପରି ?

: ଅଭିଜାତର ଗୋଟାଏ ଘୃଣା ସବୁବେଳେ ତାଙ୍କୁ ଦଂଶନ କରୁଛି । ସେ ଯାହା ଚାହିଁ ନଥିଲେ ତାହା ପାଇଥିଲେ; କିନ୍ତୁ ଯାହା ଚାହିଁଥିଲେ, ତାହା ପାଇପାରି ନ ଥିଲେ । ସେଇଥି ପାଇଁ ତାଙ୍କ ଆଚାର ଆଚରଣ ସାଧାରଣ ମଣିଷ ଆଖିରେ ଖାପଛଡ଼ା ଦିଶେ ।

ମୁଁ କହିଲି : ଆପଣ ମୋତେ ଟିକେ ତାଙ୍କ ସହିତ ଭେଟ କରାଇ ଦେଇ ପାରିବେ ?

: ନିଶ୍ଚୟ, ମଝିରେ ମଝିରେ ମୁଁ ତାଙ୍କ ଘରକୁ ଯାଏ । ମୋର କିନ୍ତୁ ଭଦ୍ରଲୋକଙ୍କ ପ୍ରତି ଅଶେଷ ସହାନୁଭୂତି, ଗଭୀର ଶ୍ରଦ୍ଧା ଆଜି ବି ରହିଛି । ତାଙ୍କର ଯଦି ଆଜି ଏପରି ଦୁରବସ୍ଥା ହୋଇଥାଏ, ତେବେ ସେଥିପାଇଁ ମୁଁ ମିସେସ୍ ମାଲହୋତ୍ରାଙ୍କୁ ଦାୟୀ କରିବି ।

: କିପରି ?

: ସେ ଆଉ ଏକ କାହାଣୀ; ବରଂ ସେଇ କାହାଣୀଟା ଆପଣ ମିଷ୍ଟର ମାଲହୋତ୍ରାଙ୍କଠାରୁ ଶୁଣିବେ । ଆହୁରି ଜୀବନ୍ତ ହେବ, ଆହୁରି ତଥ୍ୟପୂର୍ଣ୍ଣ ହେବ ।

ମୁଁ ବସି ବସି କେବଳ ଚିନ୍ତା କରୁଥିଲି ଯମୁନା ଦେବୀଙ୍କ କଥା । କେବେ ଘୃଣାକ୍ଷରରେ ତ ସେ ମୋତେ ଏହାର ଇଙ୍ଗିତ ଦେଇ ନାହାନ୍ତି । ତା'ହେଲେ ଏକ ଭଦ୍ର ଆବରଣ ତଳେ ଯମୁନା ଦେବୀ କ'ଣ......

ମିଷ୍ଟର ଆନନ୍ଦ ହତାଶ ସ୍ୱରରେ କହିଲେ : ମିଷ୍ଟର ମାଲହୋତ୍ରା ପ୍ରାଣପଣେ ଚେଷ୍ଟା କରିଥିଲେ । ଗୋଟିଏ ରୁଚିପୂର୍ଣ୍ଣ ସୁନ୍ଦର ସଂସାର ଗଢ଼ି ତୋଳିବା ପାଇଁ ସେ ତାଙ୍କର ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ । ହେଲେ ବ୍ୟର୍ଥତା ତାଙ୍କ ଜୀବନରେ ଆଣି ଦେଲା ହତାଶ । ଏକ ପ୍ରକାର ସେ ପାଗଳ ହୋଇଗଲେ କହିଲେ ଚଳେ । କିନ୍ତୁ ମିସେସ୍ ମାଲହୋତ୍ରା ତାଙ୍କୁ ଚିହ୍ନିଲେ ନାହିଁ । ସେ ତାଙ୍କ ପଥରେ, ତାଙ୍କ ମତରେ ଆଉ ଗୋଟାଏ ସଂସାର ସୃଜିବା ନିଶାରେ ବାହାରି ପଡ଼ିଲେ ।

: ଅର୍ଥାତ୍ ?

ମିଷ୍ଟର ଆନନ୍ଦ ହଠାତ୍ ଅଟକି ଯାଇ ଟିକିଏ ଚିନ୍ତାକଲେ । ତା'ପରେ ହାତଘଡ଼ିକୁ ଚାହିଁ କହିଲେ : ଆଜି ସମୟ ବହୁତ ହୋଇଗଲାଣି । ତେଣୁ ସବୁକଥା କହି ଶେଷ କରିବା ସମ୍ଭବ ହେବ ନାହିଁ ।

ହଁ ତାଙ୍କ କଥା ଆଡ଼େ କାନ ନ ଦେଇ ପଚାରିଲି : ତା'ହେଲେ ମିଷ୍ଟର ମାଲହୋତ୍ରା କ'ଣ ମିସେସ୍ ମାଲହୋତ୍ରା ଆଉ ତାଙ୍କ ପୁତ୍ର କନ୍ୟାଙ୍କଠାରୁ ସଂପୂର୍ଣ୍ଣ ଅଲଗା ହୋଇ ଯାଇଥିଲେ ।

: ହଁ, ମିଷ୍ଟର ମାଲହୋତ୍ରା ଅଲଗା ହୋଇଯାଇଥିଲେ କହିଲେ ଭୁଲ୍ ହେବ, ବରଂ ମିସେସ୍ ମାଲହୋତ୍ରା ଅଲଗା ହୋଇ ଯାଇଥିଲେ ।

: କାରଣ ?

: ଅବଶ୍ୟ ମୂଳ କାରଣଟା ମୋତେ ଜଣା ନାହିଁ । ତେବେ ଦୁଇଜଣଙ୍କର ମନୋମାଳିନ୍ୟ ଚାଲିଥିଲା ଅନେକ ଦିନଯାଏ । ସେତେବେଳେ ମୁଁ କଲିକତା ଛାଡ଼ି କିଛିଦିନ ପାଇଁ ବମ୍ବେ ଚାଲିଯାଇଥିଲି । ପ୍ରାୟ ତିନି ଚାରିବର୍ଷ କଲିକତା ବମ୍ବେ ହୋଇ ମୋର ସମୟ କଟିଯାଇ ଥିଲା । ସେହି ସମୟରେ ମୁଁ ଆଉ ସେମାନଙ୍କ ପରିବାର ସମ୍ବାଦ ନେବାକୁ ଅବକାଶ ପାଇ ନଥିଲି । ସେ ଅବଶ୍ୟ ଏହି ପାଞ୍ଚ ଛଅ ବର୍ଷ ତଳର ଘଟଣା । ସେତେବେଳକୁ ମୋ ଜୀବନରେ ଓ ମିଷ୍ଟର ମାଲହୋତ୍ରାଙ୍କ ଜୀବନରେ ଯାହା ପରିବର୍ତ୍ତନ ହେବାର ହୋଇ ସାରିଥିଲା ।

: ମାନେ ?

: ତା'ହେଲେ ପୁଣି ଆମକୁ ଆଜିଠାରୁ ଦଶ ବାରବର୍ଷ ତଳକୁ ଫେରିଯିବାକୁ ହେବ । ଯେତେବେଳେ ଲେଡ଼ି ଲୁଇସ୍ ତାଙ୍କ ନେଭିଗେସନ କମ୍ପାନୀର ସମସ୍ତ ସ୍ୱତ୍ୱ ବିକ୍ରି କରିଦେଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେଉଥିଲେ । ସେତେବେଳକୁ ମୋର ବୟସ ଚବିଶ ପଚିଶ ହେବ । ମୁଁ ଲେଡ଼ି ଲୁଇସ୍ଙ୍କର ଅତି ବିଶ୍ୱସ୍ତ ସେକ୍ରେଟାରୀ । ବ୍ୟବସାୟୀ ମହଲରେ ମୋର ଯଥେଷ୍ଟ ପରିଚିତି, ସୁନାମ ମଧ୍ୟ ।

ସେହି ସମୟରେ ଦିନେ ରାତିରେ ଲେଡ଼ି ଲୁଇସ୍ ମୋତେ ତାଙ୍କ ପାଖକୁ ଡାକି ମୋ ହାତକୁ ଗୋଟାଏ କେବଲ୍ ବଢ଼ାଇଦେଲେ । ମୁଁ ପଢ଼ିଲି । ପଢ଼ିସାରିବା ବେଳକୁ ଆଖି ମୋର ଛଳ ଛଳ ହୋଇ ଉଠିଥିଲା ।

ଲେଡ଼ି ଲୁଇସ୍ ମୋ ଆଖିର ଲୁହପୋଛି ଦେଇ କହିଲେ : ମୋର ଇଚ୍ଛାଥିଲା, ତମକୁ ସଙ୍ଗରେ ଧରି ମୁଁ ଇଂଲଣ୍ଡକୁ ଫେରିଯାଇଥାଆନ୍ତି, କିନ୍ତୁ ବହୁତ ଭାବିଚିନ୍ତି ସେ ସିଦ୍ଧାନ୍ତରୁ କ୍ଷାନ୍ତ ହୋଇଛି । ତମେ ତ ଦେଖିଲ କର୍ଣ୍ଣେଲ ଲୁଇସ୍ କେବଲ୍‌ରେ ଜଣାଇଛନ୍ତି ସେ ଖୁବ୍ ଶୀଘ୍ର ଆସି ପହଞ୍ଚିବେ । ଇଣ୍ଡିଆ ଇଣ୍ଡିପେଣ୍ଡେଣ୍ଟ୍ ହୋଇଛି । ଏଠାରେ ଆଉ ବ୍ୟବସାୟ କରିବା ସୁବିଧା ନୁହେଁ ବୋଲି ସେ ମୋତେ ଅନେକ ଆଗରୁ କହିଥିଲେ । ମୁଁ କିନ୍ତୁ ତାଙ୍କ କଥା ଶୁଣି ନଥିଲି । ପ୍ରତିଥର ପ୍ରତିବାଦ କରି ଜଣାଇଥିଲି, ଯେତେଦିନ ଯାଏ ଚଳୁଛି ଚଳୁଥାଉ । ସେ କିନ୍ତୁ ଏଥର ଆଉ କିଛି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ସେ ଆସି ଦୁଇ ଚାରିଦିନ ଭିତରେ ପହଞ୍ଚିବେ । ଆମର ସ୍ୱତ୍ୱ ସବୁ ବିକ୍ରି କରି ଦେଇ ମୋତେ ସଙ୍ଗରେ ଧରି ସେ ଦେଶକୁ ଫେରିଯିବେ । ତୁମେ ବ୍ୟସ୍ତ ହୁଅ ନାହିଁ, ମୁଁ ଯିବା ପୂର୍ବରୁ ତମ ପାଇଁ ଗୋଟାଏ ବିଶେଷ ବନ୍ଦୋବସ୍ତ କରିଦେଇ ଯିବି ।

ସେଦିନ ମୁଁ ଆଉ କିଛି କହିପାରି ନଥିଲି ।

କାରଣ ଲେଡ଼ି ଲୁଇସ୍ ଯେ ଏତେ ଶୀଘ୍ର ଇଣ୍ଡିଆ ଛାଡ଼ି ଚାଲିଯିବେ, ସେ କଥା ମୁଁ ମୋଟେ ଭାବିପାରି ନଥିଲି ।

ଆଗରୁ ଅନେକ ଥର ଏହିପରି କେବଲ୍ ଆସିଛି, କର୍ଣ୍ଣେଲ ଲୁଇସ୍ଙ୍କର ଇଣ୍ଡିଆକୁ ଆଗମନର ବାର୍ତ୍ତା ନେଇ, କିନ୍ତୁ ପ୍ରତିଥର ପୁଣି ଖବର ଆସିଛି କୌଣସି ବିଶେଷ କାରଣରୁ ଯିବା ସମ୍ଭବ ହୋଇପାରିଲା ନାହିଁ ।

ଏଥର ସେହିପରି ଏକ ଆଶ୍ୱାସନା ନେଇ ମୁଁ ଅପେକ୍ଷା କରିଥିଲି ।

କିନ୍ତୁ କର୍ଣ୍ଣେଲ ଲୁଇସ୍ ହଠାତ୍ ଦିନେ ଆସି ହାଜିର୍ ହେଲେ । ନେଭିଗେସନ୍ କମ୍ପାନୀର ସମସ୍ତ ସ୍ୱତ୍ୱ ତାଙ୍କର ଏକ ବନ୍ଧୁଙ୍କୁ ବିକ୍ରୟ କରି ଦେଇ, ପ୍ରାୟ ପନ୍ଦର ଦିନ ଭିତରେ ଲେଡ଼ି ଲୁଇସ୍‌ଙ୍କୁ ସଙ୍ଗରେ ଧରି ଇଂଲଣ୍ଡକୁ ଫେରିଯାଇଥିଲେ ।

ଲେଡ଼ି ଲୁଇସ୍ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବଦିନ ମୋ ହାତକୁ ଏକ ବ୍ୟାଙ୍କ ପାସ୍‌ବୁକ୍ ଏବଂ ଗୋଟିଏ ଚାବି ବଢ଼ାଇ ଦେଇ, ମୋ ଆଖିରୁ ଲୁହପୋଛି ଦେଇ କହିଥିଲେ : ଆଶା କରୁଛି ଜୀବନ ସଂଗ୍ରାମରେ ତୁମେ ଜୟୀ ହେବ । ଏ ଚାବିଟି ଏସ୍‌ପ୍ଲାନେଡ୍ ମ୍ୟାନସନର ଗୋଟିଏ ଫ୍ଲାଟ୍‌ର । ଦରବାନ୍‌କୁ ମୋ ନାଁ କହି ପଚାରିଲେ, ସେ ତୁମକୁ ଘର ଦେଖାଇଦେବ । ଆଉ ଏ ପାସ୍‌ବୁକ୍‌ଟି ହେଉଛି, ତମର ଏହି ଦଶ ବାରବର୍ଷ ଉପାର୍ଜନ ଲବ୍‌ଧ ଅର୍ଥ । ଏଇତକ ତମେ ମୂଳ ପୁଞ୍ଜି କରି ଜୀବନ ଯୁଦ୍ଧରେ ଆଗେଇପାରିବ କାମନା କରୁଛି । ଇଂଲଣ୍ଡରେ ପହଞ୍ଚି ମୁଁ ତୁମକୁ ଚିଠି ଲେଖିବି ।

ଲେଡ଼ି ଲୁଇସ୍‌ଙ୍କୁ ବିଦାୟ ଦେଲାବେଳେ, ମୋ ଆଖିର ଲୁହକୁ ମୁଁ ଅଟାକାଇ ପାରି ନଥିଲି ।

ସେ ଇଂଲଣ୍ଡରେ ପହଞ୍ଚି ମୋତେ ଚିଠି ଲେଖିଥିଲେ । ମୋର ଉନ୍ନତି କାମନା କରିଥିଲେ ।

ତାଙ୍କର ଦୟାରୁ ମୋର ଆଜି ଯେତିକି ଉନ୍ନତି ହୋଇଛି, ତାଙ୍କ ଅନୁପସ୍ଥିତରେ ମିଷ୍ଟର ମାଲହୋତ୍ରା ସେତିକି ତଳେଇ ଯାଇଛନ୍ତି ।

କାରଣ ଲେଡ଼ି ଲୁଇସ୍ ଥିବାଯାଏ ମିଷ୍ଟର ମାଲହୋତ୍ରାଙ୍କ କଣ୍ଟ୍ରାକ୍‌ଟରୀରେ କେହି ହସ୍ତକ୍ଷେପ କରିପାରି ନଥିଲେ । କିନ୍ତୁ ସେ ଚାଲିଯିବାର ପ୍ରାୟ ଗୋଟିଏ ବର୍ଷ ଭିତରେ ମିଷ୍ଟର ମାଲହୋତ୍ରାଙ୍କର କଣ୍ଟ୍ରାକ୍‌ଟରୀ ଚାଲିଯାଇଥିଲା । ପୂର୍ବରୁ ବହୁଲୋକ ନାନା ଭାବରେ ଚେଷ୍ଟାକରିଥିଲେ ମଧ ଲେଡ଼ି ଲୁଇସ୍‌ଙ୍କ ନିଜ ଲୋକ ଭାବି କେହି ହସ୍ତକ୍ଷେପ କରିପାରି ନଥିଲେ ।

ମିଷ୍ଟର ମାଲହୋତ୍ରାଙ୍କ କଣ୍ଟ୍ରାକ୍‌ଟରୀ ଚାଲିଯିବା ପରେ ସେ ଯେତେବେଳେ ବ୍ୟସ୍ତ ବିବ୍ରତ ହୋଇପଡ଼ିଥିଲେ, ଠିକ୍ ସେତିକିବେଳେ ତାଙ୍କର ପାରିବାରିକ ଅଶାନ୍ତି ମୂର୍ତ୍ତିମନ୍ତ ହୋଇ ଉଠିଥିଲା । ନାନା କାରଣରୁ ସେ ତାଙ୍କର ସ୍ତ୍ରୀ ଓ ସନ୍ତାନଦିମାନଙ୍କ ନାମରେ ବ୍ୟାଙ୍କରେ ବହୁ ଟଙ୍କା ଗଚ୍ଛିତ ରଖିଥିଲେ । ମିସେସ୍ ମାଲହୋତ୍ରା ଶେଷରେ ସେଇ ସୁଯୋଗ ନେଇଥିଲେ । ସେ ଭାବିଥିଲେ ଆଉ ଯାହା ହେଉ ନ ହେଉ ଅନ୍ତତଃ ଆର୍ଥିକ ସଂକଟ ତାଂକର କେବେ ପଡ଼ିବ ନାହିଁ ।

କିନ୍ତୁ ଭଗବାନ ହୁଏତ ତାଙ୍କର ଏହି ଅସତ୍ ଚିନ୍ତାକୁ ସହିପାରିଲେ ନାହିଁ । ଗୋଟିଏ ବ୍ୟାଙ୍କରେ ମିଷ୍ଟର ମାଲହୋତ୍ରାଙ୍କର ସବୁ ଟଙ୍କା ଥିଲା । ଦୁର୍ଭାଗ୍ୟ ତାଙ୍କର କି ମିସେସ୍ ମାଲହୋତ୍ରାଙ୍କର କହିହେବ ନାହିଁ, ଦିନେ ସକାଳୁ ଉଠି ସେମାନେ ଖବରକାଗଜରୁ ପଢ଼ିଲେ, ସେ ବ୍ୟାଙ୍କ ଫେଲ୍ ହୋଇଛି ।

ଅବଶ୍ୟ ମୁଁ ଏସବୁ ଘଟଣା ଜାଣିଲି ଅନେକ ଦିନ ପରେ । ଯେତେବେଳେ ବମ୍ବେରୁ ଫେରି ଆସି ସ୍ଥାୟୀ ଭାବରେ କଲିକତାରେ ବ୍ୟବସାୟ ଆରମ୍ଭ କଲି ।

ମୁଁ ଯେତେବେଳେ ମୋ ବ୍ୟବସାୟ ସଂକ୍ରାନ୍ତରେ ଏତେ ବ୍ୟସ୍ତ ଥିଲି ଯେ, ବାହାରେ କୌଣସି ଖବର ରଖିବାକୁ ମୋର ଅବକାଶ ନ ଥିଲା ।

ହଠାତ୍ ଦିନେ ସକାଳୁ ନିତ୍ୟକର୍ମ ଶେଷ କରି, ଏଇ ଘରେ ଏଇ ଟେବୁଲ୍‌ରେ ବସି ଚା' ଖାଉଛି, ଦରଜାରେ କିଏ ନକ୍ କଲା ।

ଦରଜା ଖୋଲିଦେଇ ମୁଁ ସ୍ତବ୍ଧହୋଇଗଲି ।

ଲଳିତା ମାଲହୋତ୍ରା ! ଚାହିଁ ରହିଥିଲି ଅନେକ ବେଳଯାଏ । ଦୀର୍ଘ ପାଞ୍ଚ ଛଅ ବର୍ଷ ପରେ ଦେଖାହେଲେ ବି ଲଳିତାକୁ ମୁଁ ଚିହ୍ନି ପାରିଥିଲି । କିନ୍ତୁ ବେଶପରିପାଟୀ ଦେଖି ମୋର ମନେହୋଇଥିଲା ଯେପରି ସେ ଲଳିତା ଏ ଲଳିତା ନୁହେଁ ।

ଲଳିତା ହସି ହସି ବିନା ଆହ୍ୱାନରେ ମୋ ଘର ଭିତରକୁ ପଶିଥିଲା ।

ପ୍ରଥମେ ସେଇ କଥା ଆରମ୍ଭ କରିଥିଲା : ଆପଣଙ୍କୁ ଆସି ଅନେକ ଥର ଖୋଜି ଗଲିଣି, ଦେଖା ହେଉନାହିଁ, ମା' କହିଛନ୍ତି ଆପଣ ଆଜି ମୋ ସଙ୍ଗରେ ଆମ ଘରକୁ ଯିବେ ।

ଲଳିତାର ଚାହାଣି, ଲଳିତାର ଭାବଭଙ୍ଗୀର, ସବୁଥିରେ ଯେପରି ଏକ ପରିବର୍ତ୍ତନ ମୁଁ ଲକ୍ଷ୍ୟ କଲି; କିନ୍ତୁ ଆଶ୍ଚର୍ଯ୍ୟ ହେଲି ନାହିଁ । ଯୁଗ ସହିତ ଯେଉଁମାନେ ତାଳ ଦେଇ ଚାଲିଛନ୍ତି, ସେମାନଙ୍କର ପରିବର୍ତ୍ତନ ଅତି ସ୍ୱାଭାବିକ ।

ଲଳିତା ମୋର ବିନା ଅନୁରୋଧରେ ଚେଆରରେ ବସିପଡ଼ିଥିଲା । ପଟ୍ରୁ ଚା' ଢାଳି ତିଆରି କରିବାରେ ଲାଗିଯାଇଥିଲା ।

ମୋତେ ପୁଣି ପଚାରିଲା : ଆପଣଙ୍କ ବ୍ୟବସାୟ କିପରି ଚାଲିଛି ? ମୁଁ ଶୁଣିଲି ଆପଣ ବମ୍ବେରେ ବ୍ୟବସାୟ ଆରମ୍ଭ କରିଛନ୍ତି ।

ଏଥର ମୋତେ ଲଳିତା ପ୍ରଶ୍ନର ଉତ୍ତର ଦେବାକୁ ହେଲା । ମୁଁ ପ୍ରକୃତିସ୍ଥ ହେବାକୁ ଚେଷ୍ଟା କରି କହିଲି: ବ୍ୟବସାୟଟା ଠିକ୍ ବମ୍ବେରେ ନୁହେଁ, ତେବେ ଯେଉଁ କମ୍ପାନୀର ସୋଲ୍ ଏଜେନ୍‌ସୀ ମୁଁ ଇଷ୍ଟର୍ଣ୍ଣଜୋନ୍ ପାଇଁ ନେଲି, ସେହି କମ୍ପାନୀଟା ବମ୍ବେରେ ।

ଲଳିତା ଆଖି ଉଠେଇ ମୋ ଆଡ଼େ ଚାହିଁ କହିଲା : ଓଃ ଆଉ ଆପଣଙ୍କ ଖବର କ'ଣ ?

: ମନ୍ଦ ନୁହେଁ । ତମର ବାବା ମା' କିପରି ଅଛନ୍ତି ?

ଲଳିତା ଆଖିରେ ବିସ୍ମୟ ଫୁଟାଇ କହିଲା : ଆପଣ ଜାଣି ନାହାନ୍ତି ବୋଧେ !

: କୋଉ କଥା ?

: ବାବାଙ୍କଠାରୁ ଆମେ ଅଲଗା ହୋଇଯାଇଛୁ । ସେଇଦିନ ମୁଁ ଶୁଣିଲି ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଜୀବନର ବିପର୍ଯ୍ୟୟର କାହାଣୀ । ଆଉ ତା' ସଙ୍ଗେ ସଙ୍ଗେ ଶୁଣିଲି ମିସେସ୍ ମାଲହୋତ୍ରାଙ୍କ ବ୍ୟାଙ୍କ୍ ଫେଲ୍ ହୋଇଥିବା ଯୋଗୁ କିପରି ଦେଉଳିଆ ହୋଇଯାଇଛନ୍ତି ।

ମିସେସ୍ ମାଲହୋତ୍ରା କିପରି ଅଛନ୍ତି, ସେଦିନ ମୁଁ ଲଳିତାକୁ ପଚାରିବାକୁ ସାହସ କରି ପାରି ନଥିଲି । ମୋ ମନରେ ସନ୍ଦେହ ଜାଗିଥିଲା ହୁଏତ ଲଳିତାଠାରୁ ଉତ୍ତରରେ ଏପରି ଏକ କାହାଣୀ ଶୁଣିବି ଯାହା ଶୁଣିବା ମୋର ଉଚିତ ନୁହେଁ ।

ଲଳିତା କିନ୍ତୁ ନୀରବରେ ବସି ରହିପାରି ନଥିଲା । ସେ କଥା ଛଳରେ ତାଙ୍କ ଜୀବନଯାତ୍ରା ସମ୍ବନ୍ଧରେ ଏପରି ସବୁ ଇଙ୍ଗିତ ଦେଲା, ଯାହା ଶୁଣି ବୁଝିପାରିଲି ଲଳିତା କାହିଁକି ମୋ ପାଖକୁ ଛୁଟି ଆସିଛି ।

ସେଦିନ ମୁଁ ଲଳିତାକୁ ଖୁଆଇ ପିଆଇ ବିଦାୟ ଦେଇଥିଲି । ସେ ମୋ' ଠାରୁ ପ୍ରତିଶ୍ରୁତି ନେଇଯାଇଥିଲା ଯେ, ସେଇଦିନ ଅଫିସ୍ ଫେରନ୍ତା ମୁଁ ଯାଇ ନିଶ୍ଚୟ ମିସେସ୍ ମାଲହୋତ୍ରାଙ୍କ ସହିତ ଦେଖାକରିବି ।

କିନ୍ତୁ ଇଚ୍ଛାକରି ମୁଁ ସେଦିନ ଯାଇ ନଥିଲି ।

ଘରକୁ ମଧ୍ୟ ଫେରି ନଥିଲି ଦଶଟା ପୂର୍ବରୁ ।

ଘରେ ଆସି ଶୁଣିଲି, ସାତଟାରୁ ନଅଟାଯାଏ ଆସି ବସି ବସି ଫେରି ଯାଇଛି ଲଳିତା । କହି ଯାଇଛି ଆଜି ଯେତେ ରାତିରେ ଫେରିଲେ ମଧ୍ୟ ତାଙ୍କ ଘରକୁ ଯାଇ ମା'ଙ୍କ ସହିତ ଦେଖାକରିବାକୁ ହେବ ।

ମୁଁ ଲେଖାଟା ପଢ଼ି ବ୍ୟସ୍ତ ହୋଇଥିଲି, ହସିଥିଲି ମଧ୍ୟ; କିନ୍ତୁ ଖାଇପିଇ ଶୋଇ ପଡ଼ିଥିଲି ।

ଆରଦିନ ଖୁବ୍ ସକାଳୁ ଉଠି ଘରଛାଡ଼ି ଚାଲିଯାଇଥିଲି । ମୋର ଇଚ୍ଛା ଥିଲା, ପ୍ରଥମେ ମୁଁ ମିଷ୍ଟର ମାଲହୋତ୍ରାଙ୍କ ସହିତ ଦେଖା କରି ସବୁ ଘଟଣା ଜାଣିଲା ପରେ ମିସେସ୍ ମାଲହୋତ୍ରାଙ୍କ ପାଖକୁ ଯିବି; କିନ୍ତୁ ସେଇଟା ସମ୍ଭବ ହେଲାନାହିଁ । ସେଇଦିନ ଦଶଟାବେଳେ ମୁଁ ଅଫିସ୍‌ରେ ପହଞ୍ଚି ଯାଇଦେଖିଲି, ଲଳିତା ମୋ ଚେମ୍ବରରେ ମୋରି ପାଇଁ ଅପେକ୍ଷା କରି ବସିଛି ।

ମୁଁ ତାକୁ ଚାହିଁଲି, ସେ ମୋତେ ଚାହିଁଲା । ଆମ କାହାରି ମୁହଁରୁ ଭାଷା ଫୁଟି ନଥିଲା । ଚେଆରରେ ବସି ଟେବୁଲ୍ ଉପରୁ ଦୁଇ ଚାରିଟା ଫାଇଲରେ ଦସ୍ତଖତ କରି ବେହେରାକୁ ଡାକି ଫେରାଇ ଦେଇଥିଲି ।

ଲଳିତାର କିନ୍ତୁ ଅସୀମ ଧୈର୍ଯ୍ୟ । ସେ ନୀରବରେ ମୋ ସାମ୍ନା ଚେଆରରେ ବସି ରହିଥିଲା ।

ଅନେକ ସମୟ ପରେ ଆଉ ଦୁଇ ତିନିଟା ଫାଇଲ୍ ଘାଣ୍ଟିସାରି କହିଲି : ମୁଁ ଖୁବ୍ ଦୁଃଖିତ ମିସ୍ ମାଲହୋତ୍ରା, ଆପଣଙ୍କ ଘରକୁ ଯାଇପାରି ନାହିଁ । ଇଚ୍ଛା ଅଛି ଆଜି ଅଫିସ୍ ଫେରନ୍ତା ସେଇବାଟ ହୋଇ ଯିବି ।

ଲଳିତା କିନ୍ତୁ ପାଟିବୁଜି ନୀରବରେ ବସିଥିଲା ।

ମୁଁ ଆହୁରି ଗୋଟାଏ ଫାଇଲ୍ ଉଠାଇ ତହିଁରେ ଥିବା ଚିଠିଟି ପଢ଼ିସାରି କହିଲି : ତମେ କେତେବେଳୁ ଅପେକ୍ଷା କରିଛ ?

: ସେ କଥା ପରେ ଶୁଣିବେ, ଆପଣ ଆଗ ନିଜର କାମ ଶେଷ କରନ୍ତୁ । ଲଳିତା କଣ୍ଠରେ ଅଭିମାର ସ୍ୱର ଶୁଣିଲି ।

କିନ୍ତୁ ମୋ ସହିତ ଲଳିତାର ସମ୍ବନ୍ଧ କ'ଣ ? ତା' ମାନ ଅଭିମାନର ମୂଲ୍ୟ ମୋ ପାଖରେ କିଛି ନୁହେଁ । ତେଣୁ ମୁଁ ଆଉ କିଛି ନ କହି, କଲିଂବେଲ୍ ଟିପି ବେହେରାକୁ ଡାକିଲି ।

ବେହେରା ଘର ଭିତରକୁ ଆସିବାକ୍ଷଣି ଦୁଇ କପ ଚା' ଆଣିବାକୁ କହି, ଟେବୁଲ୍ ଉପରେ ଜମାହୋଇଥିବା ଚିଠିଗୁଡ଼ିକରୁ ଗୋଟିକ ପରେ ଗୋଟିଏ ପଢ଼ିବାକୁ ଆରମ୍ଭ କରିଦେଲି । ଏଥର ଲଳିତା ଉଠିଠିଆହେଲା । ଟେବୁଲ୍ ଉପରେ ଥୋଇଥିବା ଗ୍ଲାସଟା ନେଇ ଆଖିରେ ଲଗାଇଲା । ମୋତେ ଉଦ୍ଦେଶ୍ୟ କରି କହିଲା: ମୁଁ ଆସୁଛି ।

ମୁଁ ଚଞ୍ଚଳ ହୋଇ ଚିଠି ଉପରୁ ଆଖି ଫେରାଇ ଆଣି ଲଳିତା ଆଡ଼େ ଚାହିଁଲି । ଆଖି ସ୍ଥିର ରହିଗଲା । କେତୋଟି ମୁହୂର୍ତ୍ତ । ଚିପା ପୋଷାକ ପିନ୍ଧି, ଆଖିରେ ଗ୍ଲାସ ଲଗେଇ ମୋ ସାମ୍ନାରେ ଯିଏ ଠିଆହୋଇଛି ସେ କିଏ ? ଏକ ମୂର୍ତ୍ତିମନ୍ତ ଉଦ୍ଧତ ଯୌବନା ।

ମୁଁ ଆଖି ଲେଉଟାଇ ପାରିଲି ନାହିଁ ।

ଲଳିତା ଚାଲିଯାଉଥିଲା ।

ଶେଷରେ ମୁଁ କହିଲି : ଚା' ଆସୁଛି ଆଉ ଟିକିଏ ଅପେକ୍ଷା କର ।

ଲଳିତା ମୁହୂର୍ତ୍ତେ ଠିଆ ହୋଇ କହିଲା : ଏଗାରଟାରେ ମୋର ଗୋଟାଏ ଆପଏଣ୍ଟମେଣ୍ଟ ଅଛି । ମୋତେ ସେଠାରେ ନିଶ୍ଚୟ ପହଞ୍ଚିବାକୁ ହେବ । ଆଉ ମାତ୍ର ପନ୍ଦର ମିନିଟ୍ ରହିଲା, ଏ ସମୟରେ ଟ୍ରାମ୍ ବସ୍‌ରେ ଯାହା ଭିଡ଼......

ମୁଁ ପଚାରିଲି କେଉଁଠାକୁ ଯିବ ?

: ଚୌରଙ୍ଗି, ତାଜମହଲ ହୋଟେଲ ।

ତାଜମହଲ ହୋଟେଲ ନାଁ' ଶୁଣିବା ପୂର୍ବରୁ ବେହେରା ଚା' ଟ୍ରେ ଧରି ଘର ଭିତରେ ପ୍ରବେଶ କରିଥିଲା ।

ଲଳିତାକୁ କହିଲି : ଚା' ଖାଇଦିଅ । ମୁଁ ବରଂ ତମକୁ ତାଜମହଲ ହୋଟେଲରେ ଛାଡ଼ିଦେଇ ଆସିବି ।

ଆଉ ଲଳିତା ମୁହଁରେ ପ୍ରତିବାଦର ଚିହ୍ନ ଦେଖିଲି ନାହିଁ । ସେ ଲେଉଟି ଆସି, ପୁଣି ସେଇ ଚେଆରଟି ଉପରେ ବସି, ଗ୍ଲାସ୍‌ଟା ଆଖିରୁ ଖୋଲିଦେଇ, ଚା' କପ୍ ଉଠାଇ ମୁହଁରେ ଲଗାଇଲା ।

ପୂର୍ଣ୍ଣ ନୀରବତା ଭିତରେ ଆମେ ଚା' କପ୍‌ଗୁଡ଼ିକ ନିଃଶେଷ କଲୁ; ପୁଣି ଲଳିତା ଉଠି ଠିଆହେଲା । ଗ୍ଲାସ ନେଇ ଆଖିରେ ଲଗାଇଲା ।

ମୁଁ ବାଧ ହୋଇ ଲଳିତା ପଛରେ ଉଠିଲି । କଥା ଦେଇଛି ଯେତେବେଳେ ଲଳିତାକୁ ତାଜମହଲ ହୋଟେଲରେ ଛାଡ଼ି ଆସିବାକୁ ହେବ; କିନ୍ତୁ ତାଜମହଲ ହୋଟେଲରେ ଲଳିତାର କାହା ସହିତ ଆପଏଣ୍ଟମେଣ୍ଟ ଅଛି ? ସେଠାରେ ଯେ କେହି ଭଲ ଲୋକ ଆସି ରୁହନ୍ତି ନାହିଁ ସେ କଥା ନୁହେଁ; ତେବେ କେଜାଣି କାହିଁକି ମୋ ମନ ଭିତରେ ଏକ ସଂକୀର୍ଣ୍ଣ ଭାବନା ସେଦିନ ଉଦୟ ହୋଇଥିଲା ।

ମୁଁ ଲଳିତାକୁ କାର୍‌ରେ ବସାଇ ତାଜମହଲ ହୋଟେଲଯାଏ ନେଇ ଯାଇଥିଲି । କାର୍‌ରେ ଲଳିତା ମୋ ବାଁ ପାଖରେ ବସିଥିଲା । ସେ ପାଟି ଖୋଲି ନଥିଲା କିମ୍ବା ମୁଁ କଥା କହି ନଥିଲି । ଏଗାରଟା ବାଜିବାର ତିନି ମିନିଟ୍ ପୂର୍ବରୁ ଆମେ ତାଜମହଲ ହୋଟେଲରେ ପହଞ୍ଚିଥିଲୁ ।

ଲଳିତା ଦରଜା ଖୋଲି କ୍ଷିପ୍ରପାଦରେ କାରରୁ ଓହ୍ଲେଇ ପଡ଼ିଲା । ମୁଁ ଭାବିଥିଲି ସେ କିଛି ନ କହି ସିଧା ଚାଲିଯିବ; ଆଗେଇ ଯାଇଥିଲା ମଧ୍ୟ ଦୁଇ ପାହୁଣ୍ଡ । ପୁଣି ଫେରି ଆସି କହିଲା : ଆପଣ ମୋ ପାଇଁ ପାଞ୍ଚ ମିନିଟ୍ ଅପେକ୍ଷା କରିବେ । ଏଗାରଟା ପାଞ୍ଚ୍ ଭିତରେ ଯଦି ମୁଁ ଫେରି ନ ଆସେ ଆପଣ ଚାଲିଯିବେ ।

ଲଳିତା ହଠାତ୍ ଏଇ କଥା ଦି'ପଦ କହି ଅଦୃଶ୍ୟ ହୋଇଯାଇଥିଲା ।

ମୋ ମନରେ କିନ୍ତୁ ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା, ମୁଁ କାହିଁକି ଅପେକ୍ଷା କରିବି ଲଳିତା ପାଇଁ ? ତା' ସହିତ ମୋର ସଂପର୍କ କ'ଣ ?

ଅନ୍ତର ଭିତରର ଏହି ସମସ୍ତ ପ୍ରତିବାଦ ସତ୍ତ୍ୱେ ବି ମୋ ଗାଡ଼ି ଲେଉଟାଇ ଫେରି ଯାଇ ପାରି ନଥିଲି; ବରଂ ମୋ' ମନରେ କୌତୂହଳ ଜନ୍ମିଥିଲା । ଲଳିତା ଏଠାରେ କାହା ସହିତ କାହିଁକି ସାକ୍ଷାତ କରିବାକୁ ଆସିଛି ? ଗାଡ଼ିରୁ ଓହ୍ଲେଇ ଯାଇ ତାଜମହଲ ହୋଟେଲରେ ଅନୁସନ୍ଧାନ କରିବା ପାଇଁ ମୁଁ ଚଞ୍ଚଳ ହୋଇପଡ଼ିଥିଲି ।

କିନ୍ତୁ ଗାଡ଼ିରୁ ମୁଁ ଓହ୍ଲେଇବା ପୂର୍ବରୁ ଲଳିତା ପୁଣି ଫେରିଆସିଥିଲା । ଦରଜା ଖୋଲି ମୋ ପାଖରେ ବସିପଡ଼ି କହିଲା: ମିଷ୍ଟର ହାଜରା ପାଞ୍ଚମିନିଟ୍ ପୂର୍ବରୁ ଚାଲିଯାଇଛନ୍ତି । ଚିଠି ଲେଖି ଯାଇଛନ୍ତି ତାଙ୍କ ଅଫିସରେ ଦେଖାକରିବା ପାଇଁ । ମୋତେ ଟିକେ ପହୁଞ୍ଚାଇ ଦେଲେ ଉପକୃତ ହେବି ।

ମୁଁ ଗାଡ଼ିରେ ଷ୍ଟାର୍ଟ ଦେଇ ପଚାରିଲି : ତାଙ୍କ ଅଫିସ୍‌ଟା କେଉଁଠି ?

: ପାର୍କ ଷ୍ଟ୍ରୀଟ୍‌ରେ ।

ଗାଡ଼ି ମୁହାଁଇଲା ପାର୍କଷ୍ଟ୍ରୀଟ୍ ଆଡ଼େ ।

ପାର୍କଷ୍ଟ୍ରୀଟ୍‌ରେ ଏକ ସମୟରେ ଲଳିତା ଚିତ୍କାର କରି ଉଠିଲା : ଏଇଠି ରଖନ୍ତୁ ।

ମୁଁ ଗାଡ଼ି ଅଟକାଇଲି ।

ଲଳିତା ଓହ୍ଲେଇ ଦ୍ରୁତପଦଚାଳି ଆଗେଇ ଗଲା ।

ବାଁ ପାଖରେ "ଲାଇଟ୍ ଆଣ୍ଡ ସେଡ୍",ଏକ ବିଖ୍ୟାତ ଫଟୋ ଷ୍ଟୁଡିଓ ।

ଲଳିତା ଟିକିଏ ହେଲେ ଦ୍ୱିଧାବୋଧ ନ କରି ସେହି ଷ୍ଟୁଡିଓ ଭିତରେ ପଶିଗଲା । କେତୋଟି ମୁହୂର୍ତ୍ତ ମୁଁ ଅନାଇ ରହିଲି ସେଇଆଡ଼େ । ତା'ପରେ ଚାଲି ଆସିଲି ମୋ ପଥରେ । କିଛି ଭଲ ଲାଗିଲା ନାହିଁ । ଲଳିତାର ବ୍ୟବହାରରେ ଅନ୍ତତଃ ଆଉ ଟିକିଏ ଭଦ୍ରତା ମୁଁ ଆଶା କରୁଥିଲି ।

ମୋତେ ଗୋଟାଏ ଜରୁରୀ କାମରେ ହଠାତ୍ ସେଇଦିନ ପୁଣି ବମ୍ବେ ଚାଲିଯିବାକୁ ପଡ଼ିଲା । ଫଳରେ ମୁଁ ଆଉ ସେମାନଙ୍କ ଘରକୁ ଯାଇପାରିଲି ନାହିଁ କିମ୍ବା ମିଷ୍ଟର ମାଲହୋତ୍ରାଙ୍କ ସହିତ ଦେଖାକରବା ସମ୍ଭବ ହେଲାନାହିଁ ।

ଛଅ ସାତଦିନ ପରେ ଫେରିଆସି, ଲଳିତା କଥା ଆଉ ମନେ ପକାଇ ପାରି ନ ଥିଲି । ମୋ ସଙ୍ଗରେ ବମ୍ବେରୁ କମ୍ପାନୀର ଜଣେ ଡାଇରେକ୍ଟର ଆସିଥିଲେ । ତାଙ୍କୁ ଆପ୍ୟାୟିତ କରିବା ପାଇଁ ମୁଁ ସେଦିନ ତାଜମହଲ ହୋଟେଲକୁ ନେଇଯାଇଥିଲି ।

ହଠାତ୍ ପୁଣି ମୋର ସେଦିନ ଦେଖାହେଲା ଲଳିତା ସହିତ; କିନ୍ତୁ ଅନ୍ୟ ଏକ ଲଳିତା । ଅସଂଯତ ବେଶ-ବାସ । ଅସମ୍ଭାଳ ଦେହଭାର । ଆଉ ଜଣେ ଯୁବକ କାନ୍ଧରେ ଭରା ଦେଇ ଲଳିତା ଶିଡ଼ିରୁ ଓହ୍ଲାଉଥିଲା ।

ମୋତେ ଦେଖିବାକ୍ଷଣି ଠିଆହୋଇଗଲା । ନିଜକୁ ସାମାନ୍ୟ ପ୍ରକୃତିସ୍ଥ କରିବାକୁ ଯାଇ ତା'ର ବୟ ଫ୍ରେଣ୍ଡଟି ସହିତ ମୋର ପରିଚୟ କରାଇଦେଲା । ମିଷ୍ଟର ହାଜରା ।

ମୁଁ ମିଷ୍ଟର ହାଜରାଙ୍କ ସହିତ କର ମର୍ଦ୍ଦନକଲି ।

ଲଳିତା ତା' ହାତଟାକୁ ମୋ ଆଡ଼େ ବଢ଼ାଇ କହିଲା : ମା' ଆପଣଙ୍କୁ ଭୀଷଣ ଖୋଜୁଛନ୍ତି । ସେ ନିଜେ ଦୁଇ ଚାରିଥର ଆପଣଙ୍କ ଅଫିସକୁ ଯାଇଥିଲେ ।

ଲଳିତା ହୁଏତ ଆଉ କ'ଣ କହିଥାଆନ୍ତା, କିନ୍ତୁ ମିଷ୍ଟର ହାଜରା ଅପେକ୍ଷା କରିବା ପାଇଁ ପ୍ରସ୍ତୁତ ନଥିଲେ । ଲଳିତା ତାଙ୍କ ପଛେ ପଛେ ଆଗେଇ ଗଲା ।

ସେଦିନ ରାତିରେ ମୁଁ ଶୋଇବାବେଳେ ଲଳିତା କଥା ବହୁତ ବେଳଯାଏ ଚିନ୍ତା କରିଥିଲି । ଚିନ୍ତା କରିଥିଲି ଶ୍ୟାମାନନ୍ଦ ମାଲହୋତ୍ରାଙ୍କ କଥା ଏବଂ ତା' ସହିତ ଯମୁନା ଦେବୀଙ୍କ କଥା । ବାପ ମା' ଦୁଇଜଣଙ୍କ ସ୍ୱଭାବ ଯଦିଓ ଭିନ୍ନମୁଖୀ କିନ୍ତୁ କାହା ପ୍ରଭାବ କେତେ ପରିମାଣରେ ସନ୍ତାନ ଉପରେ ପଡ଼େ, ମୁଁ ସେଦିନ ଠିକ୍ କରିପାରି ନଥିଲି ।

ପରଦିନ ସକାଳୁ ମୁଁ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଘରକୁ ଯାଇଥିଲି । ଭଦ୍ରଲୋକ ହିଟର୍‌ରେ ତା' ବସେଇ ଖବରକାଗଜ ପଢୁଥିଲେ । ବୋଧହୁଏ ମୋତେ ସେ ଏତେ ସକାଳୁ ଆଶା କରି ନ ଥିଲେ । ତା'ଛଡ଼ା ଦୀର୍ଘ କେତୋଟି ବର୍ଷ ପରେ ବୋଧହୁଏ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ; କିନ୍ତୁ ଯେତେବେଳେ ସେ ପ୍ରକୃତିସ୍ଥ ହେଲେ, ଚେଆରରୁ ଉଠି ଆସି ମୋତେ ଦୁଇ ହାତରେ କୁଣ୍ଢେଇ ଧରି କହିଲେ : ମିଷ୍ଟର ଆନନ୍ଦ ! ଆଜି ସତରେ ମୋର ଆନନ୍ଦର ଦିନ ।

ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ମୁହଁରୁ ତାଙ୍କର ପାରିବାରିକ ଦ୍ୱନ୍ଦ୍ୱର କାରଣ ଶୁଣିଥିଲି । ସ୍ତ୍ରୀଙ୍କ ସହିତ କାଙ୍କର କୌଣସି ଦିନ ମନ ମିଳିଲା ନାହିଁ । ତା'ଛଡ଼ା ଯମୁନା ଦେବୀ ଯେଉଁ ଆଭିଜାତ୍ୟର ମୋହରେ ନିଜକୁ ଏବଂ ନିଜର ସନ୍ତାନମାନଙ୍କୁ ଗଢ଼ିବାକୁ ଚାହୁଁଥିଲେ, ସେହି ଅଭିଜାତ ପ୍ରତି ଶ୍ୟାମାନନ୍ଦଙ୍କର ମୂଳରୁ ବିଦ୍ୱେଷ ଥିଲା । ସେତେବେଳେ ସେ ସ୍ତ୍ରୀଙ୍କ କଥାର ପ୍ରତିବାଦ କରିବାକୁ ଅବକାଶ ପାଉ ନଥିଲେ । ସକାଳ ସାତଟାରୁ ଘରୁ ବାହାରି, ରାତି ଦଶଟାରେ ଘରକୁ ଫେରିବା ଯାହାର ଥିଲା ନିତ୍ୟନୈମିତିକ କାର୍ଯ୍ୟ, ଘରର ଚଳଣି ଦେଖିବାକୁ ତାକୁ ବେଳ ମିଳୁଥିଲା କେତେବେଳେ !! ଫଳରେ ଯମୁନା ଦେବୀଙ୍କର ଥିଲା ଏକଚାଟିଆ ସ୍ୱାତନ୍ତ୍ର୍ୟ । ଶ୍ୟାମାନନ୍ଦବାବୁ ସବୁ ଦେଖି ବି କିଛି ନ ଦେଖିଲା ପରି ନିଜ କାମରେ ମାତିରହିଥିଲେ ।

ଯେତେବେଳେ ତାଙ୍କର ବ୍ୟବସାୟ ବନ୍ଦ ହୋଇଗଲା, ପ୍ରଚୁର ଅବସର ମିଳିଲା । କେବଳ ଘରେ ବସି ରହିବା ଛଡ଼ା ଅନ୍ୟ କେଉଁଠିକୁ ବାହାରିବାର ଆବଶ୍ୟକତା ପଡ଼ିଲା ନାହିଁ, ସେତେବେଳେ ସେ ଦେଖିଲେ, ଯମୁନା ଦେବୀଙ୍କ ଚଳଣି, ତାଙ୍କର ପିଲାମାନଙ୍କର ଶିକ୍ଷା ଦୀକ୍ଷା, ଯେପରି ସ୍ୱତନ୍ତ୍ର ଏକ ଦିଗରେ ଆଗେଇ ଚାଲିଛି । ଯେଉଁ ଦିଗ ସହିତ ତାଙ୍କର ପରିଚୟ ନାହିଁ, ସେତେବେଳେ ପ୍ରତିବାଦ କରିଥିଲେ; କିନ୍ତୁ ଫଳ ହେଲା ବିସ୍ଫୋରଣ ।

କିଛିଦିନ ପରେ ଯମୁନା ଦେବୀ ତାଙ୍କ ସହିତ ସମସ୍ତ ସମ୍ପର୍କ ତୁଟେଇ ଚାଲିଗଲେ । ଏ ଦୀର୍ଘ ଦିନ ହେବ ଆଉ ସେ କେବେ ଫେରି ନାହାନ୍ତି ଏ ଆଡ଼େ । ଭଲ ମନ୍ଦ କିଛି ଖବର ନେଇ ନାହାନ୍ତି ଶ୍ୟାମାନନ୍ଦ ମାଲହୋତ୍ରାଙ୍କର ।

ସେଦିନ ଅଶ୍ରୁଳ ନୟନରେ ଶ୍ୟାମାନନ୍ଦବାବୁ ଅନ୍ତର ଖୋଲି ମୋ ପାଖରେ ସବୁ କହିଲେ। ଆହୁରି ମଧ୍ୟ କହିଲେ, ବ୍ୟାଙ୍କ ଫେଲ ହୋଇଯିବା ପରେ, ସେମାନଙ୍କ ଦୁରାବସ୍ଥା କଥା ଚିନ୍ତା କରି ଘରକୁ ଫେରିଆସିବା ପାଇଁ ସେ ଖବର ପଠାଇ ଥିଲେ; କିନ୍ତୁ ଯମୁନା ଦେବୀ ସଙ୍ଗେ ସଙ୍ଗେ ସେ ପ୍ରସ୍ତାବ ପ୍ରତ୍ୟାଖାନ କରିଥିଲେ । ସେଇଦିନୁ ଶ୍ୟାମନନ୍ଦବାବୁ ଆଉ ସେମାନଙ୍କର ଖବର କିଛି ନେଇ ନାହାନ୍ତି ।

ତା'ପରେ ମୁଁ ଫେରି ଆସିଥିଲି ଘରକୁ । ଘରେ ଆସି ଦେଖିଥିଲି ଯମୁନା ଦେବୀ ଓ ଲଳିତା ମୋରି ପ୍ରତୀକ୍ଷାରେ ବସି ରହିଛନ୍ତି ।

ମୁଁ ଆଶ୍ଚର୍ଯ୍ୟ ହୋଇ ନଥିଲି, ବିଚଳିତ ହୋଇ ନଥିଲି । ଧୀର ପାଦ ଚାଳି, ମୁହଁରେ ସ୍ମିତହସ ଫୁଟାଇ ଯମୁନା ଦେବୀଙ୍କୁ ନମସ୍କାର ଜଣାଇଥିଲି ।

ମୋ ନମସ୍କାର ଉତ୍ତରରେ ଯମୁନା ଦେବୀ କାନ୍ଦି ପକାଇଥିଲେ । କହିଥିଲେ : ତମେ ତ ଲଳିତା ମୁହଁରୁ ସବୁ କଥା ଶୁଣିଥିବ ବାବା । ମୁଁ ସର୍ବସ୍ୱାନ୍ତ ହୋଇଛି । ପଥର ଭିକାରୀ ହେବାକୁ ଆଉ ବେଶିଦିନ ବାକି ନାହିଁ । ମୋର ଯେତେଗୁଡ଼ିଏ ଗହଣା ଥିଲା, ସବୁଗୁଡ଼ିକ ଆସି ଶେଷହୋବାକୁ ବସିଲାଣି । ତମେ ତ ମୋର ପୁଅ ସମାନ । ତମ ପାଖରେ ପେଟ ଲୁଚେଇ କିଛି ଲାଭ ଅଛି ? ଲଳିତାର ବାବା ତ ଆମକୁ ଆଉ ପଚାରିଲେ ନାହିଁ । ଘର ସଂସାର କରି ରାଗ ରୋଷ, ମାନ ଅଭିମାନ କେତେ କ'ଣ ହୋଇଥାଏ; କିନ୍ତୁ ପରେ ପୁଣି ତା'ର ଗୋଟାଏ ସମାଧାନ ହୁଏ । ସେ କିନ୍ତୁ ଏକଜିଦିଆ ଲୋକ । ଭାଙ୍ଗିବେ ପଛେ ଓରେଇ ହେବେ ନାହିଁ ।

ପ୍ରକୃତରେ ସେଦିନ ସେଇ ମୁହୂର୍ତ୍ତରେ ଯମୁନା ଦେବୀଙ୍କୁ ଦେଖି ମୋ ମନରେ କରୁଣା ଜାଗିଥିଲା । କ୍ଷଣକ ପୂର୍ବରୁ ତାଙ୍କ ପ୍ରତି ଉଦୟ ହୋଇଥିବା କ୍ଷୋଭ କେଉଁଆଡ଼େ କିପରି ଭାବରେ ଯେ ଲିଭିଯାଇଥିଲା, ମୁଁ ଚିନ୍ତା କରି ପାରି ନଥିଲି । ସେତେବେଳେ କ'ଣ କହି ଯମୁନା ଦେବୀଙ୍କୁ ସାନ୍ତ୍ୱନା ଦେବି ପଥ ଖୋଜି ପାଇ ନ ଥିଲି ।

ଯମୁନା ଦେବୀ ପୁଣି କହିଥିଲେ : ଅନେକ ଦିନରୁ ମୁଁ ତମକୁ ଖୋଜୁଛି ବାବା । ତମ ଛଡ଼ା ଦୁନିଆରେ ମୋର କେହି ଆଶାଭରସା ନାହିଁ । ଲଳିତା ମୋର ଝିଅ ନ ହୋଇ ଯଦି ପୁଅ ହୋଇଥାଆନ୍ତା.......

ଯମୁନା ଦେବୀ ଆଉ କଥା ଶେଷ କରି ପାରି ନ ଥିଲେ ।

ମୁଁ ସେଦିନ ବହୁତ ବୁଝେଇ ସୁଝେଇ ସେମାନଙ୍କୁ ଘରକୁ ବିଦା କରି ଦେଇଥିଲି । ନିର୍ଭର ପ୍ରତିଶ୍ରୁତି ଦେଇଥିଲି ଯେ ମୋର ସାଧ୍ୟ ଅନୁସାରେ ସେମାନଙ୍କ ଘରକୁ ଯାଇ କିଛି ଗୋଟାଏ କରିବି ।

ତା'ପରେ ଆହୁରି କିଛିଦିନ ଅତିବାହିତ ହୋଇ ଯାଇଥିଲା । ମଝିରେ ଥରେ ଦୁଇଥର ମୁଁ ସେମାନଙ୍କ ଘରକୁ ଯାଇ କିଛି ଆର୍ଥିକ ସାହାଯ୍ୟ ଦେଇ ଆସିବା ଛଡ଼ା ସ୍ଥାୟୀ ବନ୍ଦୋବସ୍ତ କିଛି ଗୋଟାଏ କରି ପାରି ନଥିଲି ।

ଦିନେ ହଠାତ୍ ଗୋଟାଏ ନାଇଟ୍ କ୍ଲବ୍‌ରେ ମୋର ଲଳିତା ସହିତ ଭେଟ ହୋଇଗଲା ।

ହଲ୍‌ର ଗୋଟାଏ କୋଣକୁ ସେ ଚୁପ୍‌ଚାପ୍ ବସିଥିଲା; ବୋଧହୁଏ କାହାରି ପ୍ରତୀକ୍ଷାରେ ।

ମୋ ଆଖି ସହିତ ତା' ଆଖି ମିଶିଯିବା ପରେ ମୁଁ ଚଞ୍ଚଳ ହୋଇ ଉଠିଥିଲି । କିନ୍ତୁ ସେ ସେହିପରି ନୀରବରେ ମୋ ମୁହଁକୁ ଅନାଇ ବସି ରହିଥିଲା । ସାମାନ୍ୟତମ ପରିବର୍ତ୍ତନ ଲକ୍ଷ୍ୟ କରି ନ ଥିଲି ତା' ଦେହ ମୁହଁରେ ।

ମୁଁ ବସିଲି । ପଚାରିଲି : ଏତେ ରାତିରେ ଏଠି ?

ଲଳିତା ଅଳ୍ପ ହସିବାକୁ ଚେଷ୍ଟା କରିଥିଲା । କହିଲା : ଜଣକୁ ପ୍ରତୀକ୍ଷା କରିଛି । ଆପଣ ହେଲେ ବି ଚଳିଯିବ ।

: ମାନେ ? ସ୍ୱର ମୋର କମ୍ପିଉଠିଥିଲା ।

ଲଳିତା ଆହୁରି ଜୋର୍‌ରେ ହସି ଉଠିଥିଲା । କହିଥିଲା : ଯେତେବେଳେ ଅନ୍ୟକୁ ପ୍ରତୀକ୍ଷା କରିବା ପେସା ରୂପେ ଗ୍ରହଣ କରି ନେଇଛି, ସେତେବେଳେ ଚିହ୍ନା ଅଚିହ୍ନାରେ କିଛି ଭେଦାଭେଦ ନାହିଁ ।

: ଲଳିତା ! ମୁଁ ଚିତ୍କାର କରି ଉଠିଥିଲି । ପାଖ ଟେବୁଲ୍‌ର ଯୁବକ ଯୁବତୀ ଦୁଇଜଣ ବିରକ୍ତ ହୋଇଥିଲେ ।

କିନ୍ତୁ ଲଳିତା ନିର୍ବିକାର ଚିତ୍ତରେ ସେଦିନ ମୋତେ କହିଥିଲା : ଆଉ ଉପାୟ ନଥିଲା ମିଷ୍ଟର ଆନନ୍ଦ । ମା'ଙ୍କର ଆଭିଜାତ୍ୟ, ଆମ ସମସ୍ତଙ୍କର ଦାନାକନା, ଭଦ୍ର ସମାଜରେ ଆମର ଉଚ୍ଚ ଶିର ନତ ନ କରିବାର ଅନ୍ୟ କିଛି ବାଟ ନଥିଲା । ତା'ଛଡ଼ା ମା'ର ତ ମୁଁ ଝିଅଟିଏ ପୁଅ ହୋଇଥିଲେ ତ ମୁଁ ମା'କୁ ପୋଷିଥାଆନ୍ତି !

ଲଳିତା କଥା ଶେଷ କରି ବିଦ୍ରୂପର ହସ ହସିଥିଲା ।

ମୁଁ କହିଲି : ମା'କୁ ପୋଷିବାର କ'ଣ ଅନ୍ୟ କୌଣସି ବାଟ ନ ଥିଲା, ଶେଷରେ....

: କଲଗାର୍ଲ ପରି ଆଜିକାଲି ଏତେ ପେଇଙ୍ଗ୍ ବିଜ୍‌ନେସ୍ ଆଉ କିଛି ନାହିଁ ମିଷ୍ଟର ଆନନ୍ଦ । ଏହା ପୂର୍ବରୁ ମୁଁ ଗୋଟାଏ ଅଫିସ୍‌ରେ ଟାଇପିଷ୍ଟର କାମ ପାଇଥିଲି । ମାତ୍ର ସେଥିରେ ଟଙ୍କା ଏତେ କମ୍ ମିଳିଲା ଯେ, ଆମର ଥାଟ ବଜାୟ ରଖିବା ସମ୍ଭବ ହେଲା ନାହିଁ । ଫଳରେ ଆମର ଆରିଷ୍ଟୋକ୍ରେସିରେ ଆଞ୍ଚ ଆସିଲା । ମା' ମନମରା ହୋଇ ରହିଲେ । ଆମେ ଆପଣଙ୍କ ଶରଣାପନ୍ନ ହେଲୁ । ଆପଣ ବି ନିରାଶ କଲେ । ଆଉ ମୁଁ କ'ଣ କରିଥାନ୍ତି ?

ଲଳିତାର କଥା ମୋ ମନକୁ ଏପରି ଭାବରେ ହିଟ୍ କରିଥିଲା ଯେ, ମୁଁ ହଠାତ୍ କିଛି ଉତ୍ତର ଦେଇପାରିଲି ନାହିଁ ।

ସେ ପୁଣି ହସିଲା । ହସି ହସି କହିଲା : ଆପଣ ଏ ଦୁନିଆରେ ଶିଶୁ ମିଷ୍ଟର ଆନନ୍ଦ । ବିଶେଷ କରି ଆମ ପରି ଏକ ବିଶେଷ ଅଭିଜାତ ଶ୍ରେଣୀକୁ ଚିହ୍ନିବା ପାଇଁ ଆପଣଙ୍କର ଏହି ଅଭିଜ୍ଞତା ସାମାନ୍ୟତମ । ତେଣୁ.......

ଲଳିତା କଥା ଅସମାପ୍ତ ରଖି ଅନ୍ୟ ଆଡ଼କୁ ଚାହିଁଲା ।

ଦୁଇ ଚାରିଟା ଟେବୁଲ୍ ଛାଡ଼ି ଜଣେ ଯୁବକ ହାତଠାରି ଲଳିତାକୁ ଡାକୁଥିଲା । ତା' ଉପରେ ଦୃଷ୍ଟି ପଡ଼ିବା କ୍ଷଣି ଲଳିତା କହିଲା : ନାଦିର୍ ଶା', ଏ ଲାଇନ୍‌ର ଓସ୍ତାଦ୍ ଲୋକ ।

ମତେ ଖୁବ୍ ଭଲପାଏ । ଟଙ୍କା ବି ଦିଏ ପ୍ରଚୁର । ସ୍ମଗଲର ହେଲେ କ'ଣ ହେବ, ଲୋକଟାର ହୃଦୟ ଅଛି । ଆଚ୍ଛା, ଆଜି ଆସୁଛି । ଯେଉଁଦିନ ସମୟ ପାଇବି, ଯିବି ଆପଣଙ୍କ ପାଖକୁ ।

ଲଳିତା ଉଠି ଠିଆହେଲା ।

ନାଦିର୍ ଶା' ତା'ର ଅନ୍ତରଙ୍ଗ ବନ୍ଧୁ । ତାକୁ ପଇସା ଦେଇ, ହୃଦୟ ଦେଇ ବଞ୍ଚେଇ ରଖିଛି । ଏଇ ମାୟାବିନୀ କଲିକତା ବକ୍ଷରେ ଶହ ଶହ ନାଦିର୍ ଶା' ଏହିପରି ହଜାର ହଜାର ତଥାକଥିତ ଅଭିଜାତ ପରିବାରକୁ ହୁଏତ ବଞ୍ଚାଇ ରଖିଛନ୍ତି ।

ଲଳିତା ଯିବାବେଳେ କହିଗଲା : ମୋର ଏହି ପରିଣତି କଥା ଆପଣଙ୍କୁ ଜଣାଇବାର ଇଚ୍ଛା ନଥିଲା । ପ୍ରଥମେ ଯେତେବେଳେ ମୁଁ ଆପଣଙ୍କ ପାଖକୁ ଯାଇଥିଲି, ମନ ଭିତରେ ବହୁ ସମ୍ଭାବନା ନେଇ ଯାଇଥିଲି । ସେତେବେଳେ ଆଖି ଆଗରେ ଆଉ ଗୋଟିଏ ଦୁନିଆର ଚିତ୍ର ଫୁଟି ଉଠିଥିଲା । କିନ୍ତୁ ସେ ଚିତ୍ର ଅନେକ ଦିନରୁ ଲିଭିଯାଇଛି । ଆଜି ଯେଉଁ ଚିତ୍ର ଫୁଟି ଉଠିଛି ତା' ବଦଳରେ ଆପଣଙ୍କ ପରି ଜଣେ ସାଧାରଣ ଲୋକ ତା'ର କଳ୍ପନା ମଧ କରି ପାରିବେ ନାହିଁ ।

ଲଳିତା ଚାଲିଗଲା । ଚାଲିଗଲା ସେ ଅଦିନ ବିଜୁଳି ପରି । ପଦପାତରେ ତା'ର ଫୁଟି ଉଠୁଥିଲା ଅଭିନବଭଙ୍ଗୀ । ଦେହ ମୁହଁରେ ତା'ର ଫୁଟିଥିଲା ଗଡ଼ ଜିତିବାର ଗୌରବ ।

ଲଳତିତାକୁ ମୁଁ ଡାକିପାରିଲି ନାହିଁ ।

ଅଟକାଇ ପାରିଲି ନାହିଁ ।

ପଦେ କଥା ବି କହିପାରିଲି ନାହିଁ ।

କିନ୍ତୁ ବହୁତ ସମୟ ଯାଏ ବସି ବସି ଚାହିଁଥିଲି ଲଳିତା ଆଉ ନାଦିର୍ ଶା'ଙ୍କ ଟେବୁଲ୍ ଆଡ଼କୁ ।

ବୟ ଆଣି ଖାଦ୍ୟ ଆଉ ପାନୀୟ ଦେଇଯାଇଥିଲା । ଲଳିତା ବୋତଲରୁ ପାନୀୟ ଢାଳି ନାଦିର୍ ଶା'କୁ ପିଆଇ ଥିଲା, ନିଜେ ପିଇଥିଲା ।

ମୁଁ ସେଇଠି, ଗୋଟାଏ ଜାଗାରେ ବସି ରହିଥିଲି ସେମାନେ ସେହି ଟେବୁଲ ଛାଡ଼ି ଅଦୃଶ୍ୟ ହୋଇଯିବାଯାଏ ।

ମିଷ୍ଟର ଆନନ୍ଦ ତା'ପରଦିନ ମୋତେ ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ପାଖକୁ ନେଇ ଯାଇଥିଲେ । ପରିଚୟ କରାଇ ଦେଇଥିଲେ ଜଣେ ଲେଖକ ହିସାବରେ ।

ମିଷ୍ଟର ଆନନ୍ଦଙ୍କର ମୋ ସହିତ ବସି ରହି ଶ୍ୟାମାନନ୍ଦ ମାଲହୋତ୍ରାଙ୍କର ଜୀବନ କାହାଣୀ ଶୁଣିବାକୁ ସମୟ ନଥିଲା । ସେ ମୋତେ ଛାଡ଼ିଦେଇ ଚାଲିଯାଇଥିଲେ ।

ଶ୍ୟାମାନନ୍ଦ ମାଲହୋତ୍ରା କିନ୍ତୁ ଧୀରେ ଧୀରେ ତାଙ୍କ ଜୀବନ ଚକ ଗଡ଼ାଇଥିଲେ ମୋ ଆଗରେ ।

ଯେତେବେଳେ ଶ୍ୟାମାନନ୍ଦବାବୁଙ୍କର ପରିପୂର୍ଣ୍ଣ ବର୍ୟସ, ଭାଗ୍ୟ ଲକ୍ଷ୍ମୀ ସେତେବେଳେ ସୁପ୍ରସନ : ଠିକ୍ ସେତିକିବେଳେ ତାଙ୍କର ଭେଟ ହୋଇଥିଲା ଯମୁନା ଦେବୀଙ୍କ ସହିତ ।

ଶ୍ୟାମାନନ୍ଦବାବୁ ସେତେବେଳେ ରହୁଥିଲେ ଭବାନୀପୁରରେ । ଘର ତାଙ୍କ ନିଜର । ବାପା କାମ କରୁଥିଲେ ବ୍ରିଟିଶ ସରକାରଙ୍କ ଅଧୀନରେ । ତେଣୁ ସେମାନଙ୍କ ଘରର ଚାଲିଚଳଣ, ହାବଭାବ ସବୁ କିପରି ସ୍ୱତନ୍ତ୍ର ଥିଲା । ସ୍ଥାନୀୟ ଅଧିବାସୀ ବି ସେମାନଙ୍କୁ ସମ୍ଭ୍ରମ କରି ଚଳୁଥିଲେ ।

ପ୍ରଥମେ ଯେଉଁଦିନ ଯମୁନା ଦେବୀଙ୍କ ସହିତ ଶ୍ୟାମାନନ୍ଦଙ୍କର ଦେଖାହେଲା, ସେ କଥା ଏବେ ବି ଭୁଲି ନାହାନ୍ତି ଶ୍ୟାମାନନ୍ଦବାବୁ । ସେ ଏକ ବିଶେଷ ଘଟଣା ।

କେଉଁଠି ଗୋଟାଏ ଏକ୍‌ଜିବିସନ ହେଉଥାଏ ସେ ସମୟରେ । ରାତି ସେତେବେଳକୁ ଦଶ କି ଏଗାର ହେବ । ଶ୍ୟାମାନନ୍ଦବାବୁ ଯାଇଥିଲେ ସେଇ ଏକ୍‌ଜିବିସନ ଦେଖିବା ପାଇଁ ।

ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇଉଠିଲା । ସଙ୍ଗେ ସଙ୍ଗେ ବର୍ଷା ଆରମ୍ଭ ହୋଇଗଲା । ତା'ପରେ ପରେ ମାଡ଼ିଆସିଲା ଅସମ୍ଭବ ଝଡ଼ ।

ସେଦିନର ସେହି ସମୟର ଅବସ୍ଥା ଯେ କି ପ୍ରକାର ରୂପ ଧାରଣକଲା, କେବଳ ଅନୁଭବୀ ଛଡ଼ା ଅନ୍ୟ କେହି ବୁଝିପାରିବେ ନାହିଁ । ସେହି ଝଡ଼ର ଏକ ବିପନ୍ନ ମୁହୂର୍ତ୍ତରେ ଶ୍ୟାମାନନ୍ଦବାବୁ ଯମୁନା ଦେବୀଙ୍କୁ ରକ୍ଷା କରିଥିଲେ ।

ଆଉ ଟିକିଏ ଡେରି ହୋଇଥିଲେ, ଗଛର ଗୋଟାଏ ଡାଳ ତଳେ ଯମୁନା ଦେବୀଙ୍କ ଜୀବନାବସାନ ହୋଇ ଯାଇଥାଆନ୍ତା । ଶ୍ୟାମାନନ୍ଦବାବୁ ଟାଣିଆଣିଥିଲେ ଯମୁନା ଦେବୀଙ୍କୁ । ଯମୁନା ଦେବୀ ଭୟରେ ଦୁଇହାତରେ ଜାବୁଡ଼ିଧରିଥିଲେ ଶ୍ୟାମାନନ୍ଦ ମାଲହୋତ୍ରାଙ୍କୁ ।

ଆଉ ଯମୁନା ଦେବୀଙ୍କର କିଛି ମନେ ନଥିଲା ।

ସେଦିନ ଝଡ଼ର ତାଣ୍ଡବ ଚାଲିଥିଲା ବହୁ ସମୟ ଧରି । କିନ୍ତୁ ଶ୍ୟାମାନନ୍ଦବାବୁ କୌଣସି ପ୍ରକାର ଏହି ବିପନ୍ନ ମହିଳାଙ୍କୁ ଧରି ନିଜ ଘରକୁ ଫେରିଆସିଥିଲେ ।

ଏତେ ରାତିରେ । ଜଣେ ପୂର୍ଣ୍ଣ ଯୌବନା, ଅପରିଚିତା ଯୁବତୀକୁ ନିଜ ଘରକୁ ନେଇଯିବେ କି ନାହିଁ, ଠିକ୍ କରି ପାରି ନ ଥିଲେ । ଶେଷରେ ସେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ଜଣକର ଜୀବନ ରକ୍ଷା କରିବାକୁ ଯାଇ ଯଦି କୌଣସି ବିପଦର ସମ୍ମୁଖୀନ ହେବାକୁପଡ଼େ, ତା' ହେଲେ ସେତେବେଳେ ଭଗବାନ ନିଶ୍ଚୟ ସହାୟ ହେବେ ।

ଶ୍ୟାମାନନ୍ଦ ଯମୁନା ଦେବୀଙ୍କୁ ନେଇଯାଇଥିଲେ ନିଜ ଘରକୁ । ଡାକ୍ତର ଡାକିଥିଲେ । ଚିକିତ୍ସା କରେଇଥିଲେ । ସେଦିନ ସମଗ୍ର ରାତି ଶ୍ୟାମାନନ୍ଦବାବୁଙ୍କର ଯମୁନା ଦେବୀଙ୍କ ଶେଯପାଖରେ ବସି କଟିଯାଇଥିଲା । ସେ ଆଖି ଖୋଲିଥିଲେ ଯାଇ ଶେଷପ୍ରହରରେ ।

ଯମୁନା ଦେବୀ ଚାରିଆଡ଼କୁ ଚାହିଁଥିଲେ । ଅପରିଚିତ ଜାଗା । ଅପରିଚିତ ଲୋକ । ସେ କେଉଁଠି ?

ଶ୍ୟାମାନନ୍ଦବାବୁ ଧୀରେ ଧୀରେ ଗତ ରାତିର ଘଟଣା ସବୁ ମନେ ପକାଇ ଦେଇଥିଲେ ଯମୁନା ଦେବୀଙ୍କୁ । ତାଙ୍କର ମନେପଡ଼ିଥିଲା । ବାପା ମା'ଙ୍କ ସହିତ ସେ ଯାଇଥିଲେ ଏକ୍‌ଜିବିସନ୍ ଗ୍ରାଉଣ୍ଡକୁ । ତା'ପରେ ଝଡ଼, ବୃଷ୍ଟି । ଲୋକମାନଙ୍କର କରୁଣ ଚିତ୍କାର । ପାଭିଲିଅନ୍‌ଗୁଡ଼ାକ ଗୋଟାକ ପରେ ଗୋଟାଏ ରଡ଼ମଡ଼ ହୋଇ ଭାଙ୍ଗିପଡ଼ିବାର ଶବ୍ଦ । ତା'ପରେ, ଆଉ କିଛି ମନେନାହିଁ ଯମୁନା ଦେବୀଙ୍କର ।

ଆରଦିନ ସକାଳୁ ଯମୁନା ଦେବୀ ଜାଣିପାରିଥିଲେ, ସେ ତାଙ୍କ ଘର ପାଖରେ ଅଛନ୍ତି । ଶ୍ୟାମାନନ୍ଦବାବୁଙ୍କୁ ସେ କହିଥିଲେ ତାଙ୍କର ପିତୃ ପରିଚୟ; ଆଉ ଅନୁରୋଧ କରିଥିଲେ ସେମାନଙ୍କୁ ସମ୍ବାଦଟା ଦେଇ ଆସିବା ପାଇଁ ।

ଶ୍ୟାମାନନ୍ଦବାବୁ ପ୍ରଥମେ ଯାଇ ବାଧାପ୍ରାପ୍ତ ହୋଇଥିଲେ ଦରବାନ୍‌ଠାରୁ । ତା'ପରେ ଚିତ୍କାର କରି ଛୁଟି ଆସିଥିଲା ଗୋଟାଏ ଆଲ୍‌ସିସିଆନ୍ କୁକୁର । ତା'ପରେ ଯାହାଙ୍କର ଆବିର୍ଭାବ ହୋଇଥିଲା ସେ ସ୍ୱୟଂ ସତ୍ୟନାରାୟଣ ମୁଖାର୍ଜୀ । ଯମୁନା ଦେବୀଙ୍କ ବାପା । ସେଦିନ ସେଇ ଷଣ୍ଢାମାର୍କା ଚେହେରା ଦେଖି ପ୍ରଥମେ ଶ୍ୟାମାନନ୍ଦବାବୁଙ୍କ ମୁହଁରୁ କଥା ବାହାରି ନଥିଲା । ସେ ଡରିଯାଇଥିଲେ । ଯମୁନା ଦେବୀଙ୍କ ସମ୍ବାଦ ଜଣାଇବେ କି ନାହିଁ ଚିନ୍ତା କରି ପାରି ନଥିଲେ ।

କିନ୍ତୁ ପରମୁହୂର୍ତ୍ତରେ ସତ୍ୟନାରାୟଣବାବୁଙ୍କ ପାଖରେ ସବୁକଥା କହିବାକୁ ସେ ବାଧ୍ୟ ହୋଇଥିଲେ । ଯମୁନା ଦେବୀ ବାପାଙ୍କୁ ଦେଖି ଡେଇଁପଡ଼ିଥିଲେ ଶେଯଉପରୁ ।

ତା'ପରେ ସତ୍ୟନାରାୟଣ ପଚାରିଥିଲେ ଶ୍ୟାମାନନ୍ଦଙ୍କ ପରିଚିତି । ବ୍ୟବସାୟ ସଂପର୍କରେ ସବୁକଥା ଶୁଣି, ଶ୍ୟାମାନନ୍ଦଙ୍କ ପିଠି ଥାପୁଡ଼େଇ ପ୍ରଶଂସା କରଥିଲେ । ଯୁବ ସଂପ୍ରଦାୟର ଉନ୍ନତି କାମନା କରି ଶ୍ୟାମାନନ୍ଦଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ ।

ସେହି ଯେଉଁ ପରିଚିତି ଶ୍ୟାମାନନ୍ଦଙ୍କର ଯମୁନା ଦେବୀଙ୍କ ସହିତ ସେ ପରିଚିତିର ମୁହୂର୍ତ୍ତଗୁଡ଼ାକୁ ଶ୍ୟାମାନନ୍ଦ ଭୁଲିଯିବାକୁ ଚେଷ୍ଟା କରିଥିଲେ ବି, ଯମୁନା ଦେବୀ ବୋଧହୁଏ ଭୁଲିପାରି ନଥିଲେ ।

ସତ୍ୟନାରାୟଣ ମୁଖାର୍ଜୀ ମନପ୍ରାଣରେ ସାହେବ ହେବାକୁ ଚେଷ୍ଟା କରୁଥିଲେ । ତାଙ୍କର ଯମୁନା ଦେବୀଙ୍କୁ ଲଗେଇ ପାଞ୍ଚ କନ୍ୟା, ଏକ ପୁତ୍ର । ଯମୁନା ଦେବୀଙ୍କ ନମ୍ବର ଥିଲା ତିନ୍ । ମାତ୍ର ଗୋଟିଏ ଝିଅର ବିବାହ ଦେଇପାରିଥିଲେ ସତ୍ୟନାରାୟଣବାବୁ ।

ଆୟ ତାଙ୍କର ଯାହା ଥିଲା, ସେଥିରେ ସାଧାରଣ ଭାବରେ ଜୀବନ ଯାପନ କରୁଥିଲେ ବେଶ୍ ଚଳି ଯାଇ ପାରୁଥାଆନ୍ତେ, କିନ୍ତୁ ବୟ ବବୁର୍ଚ୍ଚିଙ୍କ ମେଳରେ, ସାହେବାନା ଚଳଣିରେ ତାଙ୍କର ଆର୍ଥିକ ସଙ୍କଟ ଆରମ୍ଭ ହୋଇ ଯାଇଥିଲା । କିନ୍ତୁ ବାହାରକୁ ସେ ଥାଟ୍ ବଜାୟ ରଖିବାକୁ ଆପ୍ରାଣ ଚେଷ୍ଟା କରୁଥିଲେ ।

ସେହି ଘଡ଼ିସନ୍ଧିବେଳରେ ତାଙ୍କର ଭେଟହୋଇଥିଲା ଶ୍ୟାମାନନ୍ଦଙ୍କ ସହିତ । ଶ୍ୟାମାନନ୍ଦଙ୍କ ବ୍ୟବସାୟରେ ସେତେବେଳେ ଜୁଆର ଉଠିଥିଲା । ଲକ୍ଷ୍ମୀଙ୍କୁ ସେ ନିଜ ଘରେ ବନ୍ଦୀ କରି ରଖିଥିଲେ ।

ସତ୍ୟନାରାୟଣ ବୁଝିପାରିଥିଲେ ସବୁ । ସେଇଥି ପାଇଁ ଶ୍ୟାମାନନ୍ଦଙ୍କର ଅବାଧ ଗତିର କୌଣସି ନିୟନ୍ତ୍ରଣ ନ ଥିଲା । ଚାକର ବାକରମାନେ ସ୍ତବ୍ଧ ହୋଇଯାଇଥିଲେ । କାରଣ ସତ୍ୟନାରାୟଣଙ୍କ ମେଜାଜ୍ ବୁଝନ୍ତି ସମସ୍ତେ । କାଉଟିଏ ପର୍ଯ୍ୟନ୍ତ ଆସି ତାଙ୍କ ଘର ଭିତରର କୌଣସି ପଦାର୍ଥରେ ଥଣ୍ଟମାରିବାକୁ ସାହସ କରିପାରେ ନାହିଁ । ଅଥଚ ଶ୍ୟାମାନନ୍ଦଙ୍କର ଅନ୍ଦର ମହଲ ଯାଏ......

ଆଶ୍ଚର୍ଯ୍ୟ ହେଲେ ବି ମୁହଁ ଖୋଲି କେହି କାହାକୁ କହିପାରନ୍ତିନି କିଛି । ଏପରି କି ଯମୁନା ଦେବୀ ଯେତେବେଳେ ଇଚ୍ଛା ସେତେବେଳେ ବାହାରି ଯାଆନ୍ତି ଶ୍ୟାମାନନ୍ଦଙ୍କ ସହିତ ।

ଯେତେଦିନ ଇଚ୍ଛା ସେତେଦିନ ଚାଲିଯାଆନ୍ତି ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଦାର୍ଜିଲିଂ, ପୁରୀ, କାଲିମ୍ପଙ୍ଗ୍ । ଅବଶ୍ୟ ସେତେବେଳେ ଯମୁନା ଦେବୀଙ୍କ ମାଆ ଯାଆନ୍ତି ତାଙ୍କ ସହିତ । ସେତିକି ଯାହା ବ୍ୟତିକ୍ରମ : ନହେଲେ ଶାସନର ଗଣ୍ଡି ବାହାରେ ରହିଯାଉଥିଲେ ଯମୁନା ଦେବୀ ।

ଏହି ସବୁ ଘଟଣାର ଶେଷ ପରଣତି ଯାହା ହୋଇଥାଏ ତାହାହିଁ ହୋଇଥିଲା । ଯମୁନା ଦେବୀ ଅନ୍ତଃସତ୍ତ୍ୱା ହୋଇଥିଲେ । ଶ୍ୟାମାନନ୍ଦ ବାବୁ ବାଧ ହୋଇ ରେଜେଷ୍ଟ୍ରି ବିବାହ କରିଥିଲେ ଯମୁନା ଦେବୀଙ୍କ ସହିତ ।

ତା'ପରେ ବି ନିଜର ଘର ସଂସାର କରିବାର ସ୍ୱାଧୀନତା ପାଇ ନ ଥିଲେ ଶ୍ୟାମାନନ୍ଦବାବୁ ।

କାରଣ ଯମୁନା ଦେବୀ ଅଧିକାଂଶ ସମୟ କଟାଉଥିଲେ ପିତ୍ରାଳୟରେ । ଅବଶ୍ୟ ସେତେବେଳେ ସେଇଟାକୁ ପ୍ରଶ୍ରୟ ଦେଉଥିଲେ ଶ୍ୟାମାନନ୍ଦବାବୁ । କୌଣସି ଦାୟିତ୍ୱ ଆସି ପଡୁ ନ ଥିଲା ତାଙ୍କ ମୁଣ୍ଡ ଉପରେ । ଖାଲି କେତେଗୁଡ଼ିଏ ଆର୍ଥିକ ଅପଚୟ ଛଡ଼ା ଆଉ କିଛି ଅସୁବିଧା ନ ଥିଲା ତାଙ୍କର ।

ଶ୍ୟାମାନନ୍ଦବାବୁଙ୍କ ପ୍ରଥମ ସନ୍ତାନ ଭୂମିଷ୍ଠ ହେବା ପୂର୍ବରୁ ନଷ୍ଟ ହୋଇଯାଇଥିଲା । ଫଳରେ କିଛିଦିନ ଅସୁସ୍ଥ ହୋଇ ପଡ଼ିଥିଲେ ଯମୁନା ଦେବୀ । ସେତିକିବେଳେ ଶ୍ୟାମାନନ୍ଦବାବୁ ଯମୁନା ଦେବୀଙ୍କ ମା'ଙ୍କ ସହିତ ଅତ୍ୟନ୍ତ ଘନିଷ୍ଠ ହୋଇଉଠିଥିଲେ ।

ତା'ପରେ ଦୁଇ ତିନିବର୍ଷ ଭିତରେ ସତ୍ୟନାରାୟଣଙ୍କ ପରିବାର ଭିତରେ ବହୁ ବିପର୍ଯ୍ୟୟ ଘଟିଗଲା । ସବୁ ଝିଅ, ପୁଅଙ୍କୁ ସ୍ତ୍ରୀଙ୍କ ମାରଫତରେ ଛାଡ଼ିଦେଇ ନିଜେ ସେ ଆଖିବୁଜିଲେ ।

ଅବଶ୍ୟ ସତ୍ୟନାରାୟଣଙ୍କ ପରବର୍ତ୍ତୀ ସମୟରେ କେତୋଟି ବର୍ଷ ତାଙ୍କ ପରିବାରରେ ଶ୍ୟାମାନନ୍ଦବାବୁଙ୍କୁ ମୁଖ୍ୟ ଭୂମିକା ଗ୍ରହଣ କରିବାକୁ ପଡ଼ିଥିଲା । ତା'ପରେ ଯମୁନା ଦେବୀଙ୍କ ମନ ପରିବର୍ତ୍ତନ ହୋଇଥିଲା । ଏଥର ସେ ନିଜ ଘର କରିବା ପାଇଁ ଆଗେଇ ଆସିଥିଲେ । ତା'ର ବର୍ଷକ ପରେ କୋଠା କିଣାହୋଇଥିଲା । ଲଳିତା ବି ଆସିଥିଲା ତାଙ୍କ ସଂସାରକୁ ।

କିନ୍ତୁ ଯେଉଁ ସଂସାର ମୁହଁରେ ହସ ଫୁଟାଇବାକୁ ଶ୍ୟାମାନନ୍ଦବାବୁ ତାଙ୍କର ସମସ୍ତ ଶକ୍ତି ଖଟେଇ, ଦିନ ରାତି ଭୁଲି ଅର୍ଥ ଉପାର୍ଜନ କରିବା ପାଇଁ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ, ପରେ ପୁଣି ସେ ବୁଝିପାରିଥିଲେ ଯେ, ସଂସାର ମୁହଁରେ ହସଫୁଟାଇବା ପାଇଁ ଏକମାତ୍ର ଅର୍ଥ ହିଁ ଯଥେଷ୍ଟ ନୁହେଁ । ସେଥିପାଇଁ ଆହୁରି ବହୁତ ଉପାଦାନର ଆବଶ୍ୟକ ।

ସେ କଥା ଶ୍ୟାମାନନ୍ଦବାବୁ ଅନେକ ପଛରେ ବୁଝିଥିଲେ । ସେତେବେଳକୁ ଆଉ ଅବଶିଷ୍ଟ କିଛି ନ ଥିଲା ।

ଯମୁନା ଦେବୀ ଯେ ତାଙ୍କ ସରଳତାର ସୁଯୋଗ ନେଇ ତାଙ୍କୁ ଏପରି ଠକିଦେବେ, ଶ୍ୟାମାନନ୍ଦବାବୁ ମୋଟେ ଚିନ୍ତା କରିପାରି ନଥିଲେ । ସେ ଜାଣିଥିଲେ, ସ୍ୱାମୀ ହିଁ ସଂସାରର ଅଧିନାୟକ । ତାଙ୍କରି ଅଧୀନରେ ଚଳିବ ତାଂକର ସଂସାର । ଆଦେଶ ନିର୍ଦ୍ଦେଶ ସବୁ ତାଙ୍କର ପାଳନ କରିବେ ଅନ୍ୟମାନେ । ଖାଲି ଆଦେଶ ନିର୍ଦ୍ଦେଶ ନୁହେଁ; ଏକ ବନ୍ଧୁତ୍ୱର ବନ୍ଧନରେ ବାନ୍ଧିହୋଇ ଚଳିବେ ସମସ୍ତେ ।

ସେହିପରି ଏକ ଧାରଣା ମନ ଭିତରେ ପୋଷଣ କରି କାର୍ଯ୍ୟବ୍ୟସ୍ତ ଶ୍ୟାମାନନ୍ଦ ଦିନ କଟାଉଥିଲେ ।

କିନ୍ତୁ ଯେତେବେଳେ ତାଙ୍କର କାମ ଶେଷହୋଇଗଲା, ଯେତେବେଳେ ସେ ତାଙ୍କର ମନର ମଣିଷଠାରୁ ଘର ଭିତରେ ଖୋଜିଲେ ଟିକିଏ ସାନ୍ତ୍ୱନା, ଟିକିଏ ଆଶ୍ୱାସନା ପାଇବା ପାଇଁ ମନପ୍ରାଣରେ କାମନା କଲେ, ବଦଳରେ ପାଇଲେ କ'ଣ ?

ଆଘାତ । ଭର୍ତ୍ସନା ଆଉ ଲାଞ୍ଛନା ।

ଘର ତାଙ୍କର ନୁହେଁ, ତାଙ୍କର ଶାସନ ଅଧୀନରେ କେହି ରହିବାକୁ ଚାହାନ୍ତି ନାହିଁ ।

ସେତେବେଳେ ଶ୍ୟାମାନନ୍ଦ ପ୍ରତିବାଦ କଲେ । ଫଳରେ ହେଲା ବିସ୍ଫୋରଣ ।

ଯାହାର ଶେଷ ପରିଣତି ହେଲା......

ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଆଖି ଛଳ ଛଳ ହୋଇ ଆସିଲା । କଣ୍ଠ ବେଦନାର୍ତ୍ତ ହୋଇ ଉଠିଲା; ତଥାପି ସେ ନିଜକୁ ସଂଯତ କରି ମୁହଁରେ ହସଫୁଟାଇବାକୁ ଚେଷ୍ଟା କରି କହିଲେ, ମୁଁ କିନ୍ତୁ ଆଜି ଖୁବ୍ ଆନନ୍ଦରେ ଅଛି ମିଷ୍ଟର ଦାସ୍ । ସେମାନେ ମୋ ପାଖରେ ଥିଲେ ମୁଁ ଏତେ ଖୁସିରେ ରହି ପାରି ନଥାନ୍ତି । ଦେଖନ୍ତୁ ତ ମୋ ସଂସାର ! ଏଇ କୁକର୍, ଏଇ ହିଟର । ଆଉ କ'ଣ ଆବଶ୍ୟକ ! ସେମାନେ ଥିଲେ ମୋତେ ଚିନ୍ତା କରିବାକୁ ହେଉଥାଆନ୍ତା, ଦାନା କନାର ଯୋଗାଡ଼ରେ ପୁଣି ମୋତେ ଅନ୍ୟର ଦ୍ୱାରସ୍ଥ ହେବାକୁ ପଡୁଥାଆନ୍ତା । ସେ ଦୁଶ୍ଚିନ୍ତା ନାହିଁ, ମୁଁ ଆଜି ନିଶ୍ଚିନ୍ତ ।

: କିନ୍ତୁ ମିଷ୍ଟର ମାଲହୋତ୍ରା , ଆପଣ ମୁହଁରେ ଏହି ନିଶ୍ଚିନ୍ତ ଶବ୍ଦଟି ଯେତେ ସହଜରେ ଉଚ୍ଚାରଣ କରିପାରୁଛନ୍ତି, ମନପ୍ରାଣରେ କିନ୍ତୁ ବେଦନାବୋଧ ସେତିକି ଫୁଟି ଉଠୁଛି । ଆପଣ ଦୁନିଆକୁ ଫାଙ୍କିଦେଇ ପାରନ୍ତି; କିନ୍ତୁ ନିଜକୁ ଫାଙ୍କିଦେବା ଏତେ ସହଜ ନୁହେଁ । ମୁଁ କଥାଗୁଡ଼ା କହିଲାବେଳେ ମୋ କଣ୍ଠଟା ମଧ୍ୟ କମ୍ପିଉଠୁଥିଲା ।

ଶ୍ୟାମାନନ୍ଦବାବୁ ହସିବାକୁ ଚେଷ୍ଟା କଲେ । ସେ ହସ ବେଦନାର ହସ । କହିଲେ : ମଣିଷ ସବୁବେଳେ ସବୁ ପରିସ୍ଥିତିରେ ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ । ଯିଏ ଯାହା ଚାହେଁ, ସିଏ କ'ଣ ତା' ପାଏ ମିଷ୍ଟର ଦାସ ? ଯିଏ ପାଇଲା ସିଏ ତ ସୁଖୀ; ଆଉ ଯିଏ ନ ପାଇଲା, ମୋ ମତରେ ସିଏ ମଧ୍ୟ ସୁଖୀ ରହିବା ଉଚିତ୍ ।

ମୁଁ କହିଲି : ସତ କହିଲେ, ଆପଣ ସମସ୍ତଙ୍କୁ ହରେଇ ଆଜି କ'ଣ ସୁଖୀ ହୋଇ ପାରିଛନ୍ତି ?

: ମୁଁ ଅବଶ୍ୟ ସୁଖୀ ହୋଇପାରିନାହିଁ । କିନ୍ତୁ ଅତୀତଟାକୁ ଭୁଲିଯିବା ପାଇଁ ସବୁବେଳେ ଚେଷ୍ଟା କରୁଛି ।

: ପାରିବେ ?

: ମଣିଷ ସବୁ ପାରେ ମିଷ୍ଟର ଦାସ୍ । ସେମାନେ ଯାହା ପାରିଲେ, ମୁଁ ତାହା ପାରିବି ନାହିଁ କାହିଁକି ?

: ଆପଣ ଭାବୁଛନ୍ତି ସେମାନେ କ'ଣ ସବୁ ଭୁଲିପାରିଛନ୍ତି ?

: ନିଶ୍ଚୟ ପାରିଛନ୍ତି । ନହେଲେ ମୋ ପ୍ରସ୍ତାବରେ ରାଜି ହୋଇ ଥାଆନ୍ତେ, ମୋ ପାଖକୁ ଫେରିଆସିଥାନ୍ତେ ।

: ଏଇଟା ଅବଶ୍ୟ ଆପଣଙ୍କର ଅଭିମାନର କଥା । ଆପଣ କ'ଣ ଶପଥ କରି କହି ପାରିବେ, ଆପଣ ସେମାନଙ୍କର କିଛି ଖବର ରଖି ନାହାନ୍ତି ?

: ରଖିଛି ବୋଲି ତ ମୋର ଦୁଃଖ ମିଷ୍ଟର ଦାସ । ନ ରଖି ଥିଲେ, ଦେଶାନ୍ତରୀ ହୋଇ ଯାଇଥିଲେ ବରଂ ଭଲ ହୋଇଥାଆନ୍ତା ।

: କାହିଁକି ?

: ଯେତେହେଲେ ବି ଲଳିତା ମୋର ସନ୍ତାନ । ମୋର ରକ୍ତ, ସେ ମା' କଥାରେ ପଡ଼ି, ଅଧୁନା ଅଭିଜାତ ମୋହରେ ଭୁଲି : ସ୍ୱାମୀ ଛାଡ଼ିଛି, ସଂସାର ଛାଡ଼ିଛି, ଶେଷରେ ଖୁଣୀ ଆସାମୀ ହୋଇ ଆଶ୍ରୟ ନେଇଛି ଜେଲ୍‌ରେ । ଗୋଟିଏ ବାପ ପକ୍ଷରେ ଏହାଠାରୁ ଆଉ ଦୁଃସମ୍ବାଦ, ଏହାଠାରୁ ହୃଦୟ ବିଦାରକ ସଂବାଦ କ'ଣ ଥାଇପାରେ ମୋତେ କହି ପାରିବେ ମିଷ୍ଟର ଦାସ ?

ଶ୍ୟାମାନନ୍ଦ ମାଲହୋତ୍ରଙ୍କ ମୁହଁକୁ ଚାହିଁ ମୁଁ ଏଥର ମୂକ ପାଲଟିଯାଇଥିଲି ।

: ଲଳିତା ସ୍ୱାମୀ ଛାଡ଼ିଛି, ସଂସାର ଛାଡ଼ିଛି : କ'ଣ କହୁଛନ୍ତି ଶ୍ୟାମାନନ୍ଦବାବୁ?

: ହଁ, ହଁ, ଶ୍ୟାମାନନ୍ଦ ମାଲହୋତ୍ରା ଦୃଢ଼କଣ୍ଠରେ କହିଥିଲେ । ଲଳିତାର ମୁଁ ବିବାହ ଦେଇଥିଲି, ଷୋ'ଳ ବର୍ଷ ବୟସରେ । ଯେତେବେଳେ ଝିଅମାନଙ୍କୁ ବିବାହ ଦେବା ଉଚିତ୍ । ସୁପାତ୍ର, ଉଚ୍ଚ ବଂଶ, ସ୍ୱଜାତି । ଭାବିଥିଲି ସଂସାର ତା'ର ସୁଖର ହେବ । ମୋର ବା ଅଭାବ ଅଛି କେଉଁଥିରେ, ଯଦି କେବେ ଲଳିତାର ସଂସାର ଚକ ଅଚଳ ହୁଏ, ସେତେବେଳେ ମୁଁ ତ ଦେଖିବାକୁ ରହିଯାଇଛି ।

କିନ୍ତୁ ଲଳିତାର ବିବାହ ଯେଉଁଠି ହେଲା, ସେମାନେ ଭୀଷଣ ରକ୍ଷଣଶୀଳ; ଯେଉଁଟାକୁ ଲଳିତା ପସନ୍ଦ କରି ପାରିଲା ନାହିଁ । କାରଣ ଲଳିତାର ଗତିଧାରା ଓ ଲଳିତାର ଅଭିଜାତ ସହିତ ସେମାନଙ୍କର ଅଭିଜାତର ଗତିଧାରାର ସଂଘର୍ଷ ହେଲା । ଫଳରେ ଶାଶୂ ଶଶୁରଙ୍କ ଗହଣରେ ଲଳିତାର ଜୀବନ ଦୁର୍ବିସହ ହୋଇଉଠିଲା ।

ମୁଁ ବୁଝେଇଥିଲି । ଲଳିତାକୁ କାନେ କାନେ କହି ବହୁତ ଶିଖାଇଥିଲି । ଯା' ଫଳରେ ଲଳିତା ସ୍ୱାମୀ ଶଶୁରଙ୍କ ମେଳରେ ଦୁଇ ତିନି ବର୍ଷ ବହୁ କଷ୍ଟରେ ସଂସାର କରିଥିଲା ।

କିନ୍ତୁ ମୋ ସ୍ତ୍ରୀ, ଝିଅର ସେହି ଜୀବନ ଯାତ୍ରାକୁ ଦୁର୍ବିସହ ଆଖ୍ୟାଦେଇ, ସ୍ୱାମୀଙ୍କୁ ଡାଇଭୋର୍ସ କରି ଚାଲି ଆସିବା ପାଇଁ ଲଳିତାକୁ ଶିକ୍ଷାଦେଲେ, ସାହସ ଦେଲେ ।

ଶେଷରେ ଦିନେ ଲଳିତା ସ୍ୱାମୀ, ଶଶୁରଙ୍କଠାରୁ ସମସ୍ତ ସମ୍ପର୍କ ତୁଟେଇ ଦେଇ, ଆମ ଘରକୁ ଫେରିଆସିଲା ।

ମୁଁ ମନେ ମନେ ରକ୍ତ ଚାଉଳ ଚୋବେଇ ନୀରବ ରହିଲି । କାରଣ କରଣୀୟ ବୋଲି ମୋର କିଛି ନଥିଲା ।

ସେହିଦିନଠାରୁ ଆମ ସଂସାରରେ ଧୀରେ ଧୀରେ ଅଶାନ୍ତିର ନିଆଁ କୁହୁଳିଲା । ସେମାନେ ମା'ଝିଅ ମିଶି ମୋର ସମସ୍ତ ଉପଦେଶକୁ ଉପେକ୍ଷା କଲେ ।

ତା'ପରେ ହଠାତ୍ ଦିନେ ସେମାନେ ମୋ'ଠାରୁ ଅଲଗା ହୋଇ ଘରୁ ବାହାରି ଚାଲିଗଲେ ।

ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ମୁହଁରୁ ଲଳିତାର ଏଇ ଶେଷ ସଂବାଦ ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି; କାରଣ ଯମୁନା ଦେବୀ ଆମ ଆଗରେ ତାଙ୍କ ପରିବାରର ଯେଉଁ ପରିଚିତି ଦେଇଥିଲେ, ମୋର ମନେହୋଇଥିଲା ସେ ଯେପରି ଏକ କଳ୍ପିତ କାହାଣୀ । କେବଳ ସମ୍ମାନକୁ ବଞ୍ଚେଇ ରଖିବା ପାଇଁ ଏକ ଛଦ୍ମ ଆବରଣ । ତା'ହେଲେ ସେଲି କିଏ ? ମନ ଭିତରେ ମୋର ଆହୁରି ଜଟିଳ ପ୍ରଶ୍ନ କେତୋଟି ଉଦୟ ହୋଇଥିଲା ।

ମୁଁ ମୋ ମନର କୌତୂହଳ ମେଣ୍ଟେଇବା ପାଇଁ ଶ୍ୟାମାନନ୍ଦବାବୁଙ୍କୁ ପଚାରିଥିଲି : କିଛି ମନେ କରିବେ ନାହିଁ ଆଜ୍ଞା, ଆପଣଙ୍କର ମୋଟ ସନ୍ତାନସନ୍ତତି କେତୋଟି ?

ମୁଁ ଆଉ ଥରେ ଶ୍ୟାମାନନ୍ଦଙ୍କ ଆଖିରେ ଲୁହ ଦେଖିଥିଲି । ସେ ମୋତେ ତିନିଟି ଆଙ୍ଗୁଳି ଦେଖାଇ ମୁହୂର୍ତ୍ତେ ନୀରବ ରହି କହିଥିଲେ : କିନ୍ତୁ ବର୍ତ୍ତମାନ ଲଳିତା ଛଡ଼ା, ଟା' ତଳେ ଝିଅ; କିନ୍ତୁ ସେମାନେ କେହି ମୋ ହୃଦୟରେ ବିଷ ତୀର ଲାଛିବା ପାଇଁ ବଞ୍ଚି ରହିଲେ ନାହିଁ ।

ତା'ହେଲେ ? ଯମୁନା ଦେବୀଙ୍କ ବଡ଼ ପୁଅ ସଞ୍ଜୟ, ଯିଏ ବିଦେଶରେ ଅଧ୍ୟୟନ ରତ, ସେଲିର ମା' ଅବଶ୍ୟ ଯାହାଙ୍କର ମୃତ୍ୟୁ ଘଟିଛି କେତୋଟି ବର୍ଷ ପୂର୍ବରୁ, ସବୁ କ'ଣ ଯମୁନା ଦେବୀଙ୍କର ପରିକଳ୍ପିତ କାହାଣୀ ?

ମୁଣ୍ଡ ମୋର ଝାଇଁମାରି ଯାଇଥିଲା ।

ମୁଁ ନୀରବ ହୋଇ ବସିପଡ଼ିଥିଲି ।

ଶ୍ୟାମାନନ୍ଦବାବୁ କପାଳରେ ହାତମାରି କହିଥିଲେ : ବୁଝିଲେ ମିଷ୍ଟର ଦାସ, ସବୁ ଭାଗ୍ୟ । ଭାଗ୍ୟର ଲିଖନକୁ କେହି ବଦଳାଇପାରିବେ ନାହିଁ ।

ମୋର ମନରେ ବଳ ନ ଥିଲେ ବି, ସେଦିନ ମୁଁ ପ୍ରତିବାଦ କରିଥିଲି । କହିଥିଲି : ଆପଣ କିନ୍ତୁ ଇଚ୍ଛା କରିଥିଲେ ପାରିଥାଆନ୍ତେ, ଆପଣଙ୍କ ଛୋଟ ପରିବାରଟିକୁ ସୁଖ ସମୃଦ୍ଧିର ପଥରେ ଆଗେଇ ନେଇ ପାରିଥାନ୍ତେ ।

ଶ୍ୟାମାନନ୍ଦ ମାଲହୋତ୍ରା ମୋ' ମୁହଁକୁ କିଛି ସମୟ ନୀରବରେ ଅନାଇ ରହି କହିଲେ, ମୋର ସବୁ କଥା କହି ସାରିବା ପରେ, ଆପଣ ଯଦି ଏହିପରି ରାୟ ଦେଲେ, ତା'ହେଲେ ମୁଁ କହିବି ସେମାନଙ୍କୁ କାନ୍ଧରେ ବୋହି ଚାଲିଥିଲେ ମୁଁ ଆହୁରି ଦୁଃଖ ପାଇଥାଆନ୍ତି, ଆହୁରି ଲଜ୍ଜା ପାଇଥାଆନ୍ତି, ଆହୁରି ଅତଳ ତଳକୁ ତଳେଇ ଯାଇଥାଆନ୍ତି ।

: ତଥାପି ସେଥିରେ ଆପଣଙ୍କର ଗୌରବବୋଧ ଥାଆନ୍ତା ।

ଶ୍ୟାମାନନ୍ଦ ମାଲହୋତ୍ରା ବିଦ୍ରୂପ ସ୍ୱରରେ ମୋତେ କହିଲେ : ଆଜି ବି ମୋର ଗୌରବବୋଧ ଯଥେଷ୍ଟ ଅଛି ମିଷ୍ଟର ଦାସ । ମୋର ସ୍ତ୍ରୀ ତାଙ୍କର ଅଭିଜାତ୍ୟକୁ ବଜାୟ ରଖିବା ପାଇଁ ଝିଅକୁ କଲଗାର୍ଲରେ ପରିଣତ କରିଛନ୍ତି, ଝିଅ ମା'ଙ୍କର ଅଭିଳାଷ ପୂରଣ କରିବାକୁ ଯାଇ ଖୁଣୀ ଆସାମୀ ସାଜିଛି । ଆଉ କେତେଦିନ ପରେ କୋର୍ଟରେ ଯେତେବେଳେ କେସ୍ ଉଠିବ, ଖବରକାଗଜରେ ଯେତେବେଳେ ସେହି କେସ୍ କାହାଣୀ ପ୍ରଚାରିତ ହେବ, ସେତେବେଳେ ଲଳିତାର ବାପା ହିସାବରେ ଶ୍ୟାମାନନ୍ଦ ମାଲହୋତ୍ରା ଜନସମାଜରେ ଆଉ ମୁହଁ ଦେଖାଇପାରିବ ?

ଶ୍ୟାମାନନ୍ଦ ମାଲହୋତ୍ରାଙ୍କ ଅନ୍ତରର ବ୍ୟଥା ମୁଁ ଅନୁଭବ କଲି । କହିଲି : ସେମାନେ ତ ଆପଣଙ୍କ ପାଖରୁ ଅନେକ ଦିନରୁ ଦୂରେଇ ଯାଇଛନ୍ତି, ତା' ଛଡ଼ା ଜନସାଧାରଣଙ୍କର ଆଜି ଏତେ ସମୟ ନାହିଁ, ସେମାନେ କିଏ କାହା ପୁଅ, କାହା ଝିଅ କ'ଣ କଲା, ସେଇଆକୁ ଖୋଜି ଲୋଡ଼ି ଆସି ବାପା ମା'ଙ୍କର ନିନ୍ଦା ରଟନା କରିବେ ।

ଶ୍ୟାମାନନ୍ଦ ମାଲହୋତ୍ରା ଏଥର ଏକ ଦୀର୍ଘଶ୍ୱାସ ଛାଡ଼ି କହିଲେ : ଆପଣ ବାବା ହୋଇଛନ୍ତି କି ନାହିଁ ଜାଣି ନାହିଁ; କିନ୍ତୁ ମୋ ଭଳି ମନ୍ଦ ଭାଗ୍ୟ ନେଇ ଯେଉଁ ବାବାମାନେ ଏ ସଂସାରରେ ବଞ୍ଚିରହିଛନ୍ତି, ସେମାନଙ୍କର ବଞ୍ଚିରହିବା ଉଚିତ୍ ନୁହେଁ । ଅବଶ୍ୟ ଜୀବନର ମାୟା ଏତେ ସହଜରେ ତୁଟେଇବା ସମ୍ଭବ ନୁହେଁ; ହେଲେ ଏହିସବୁ ଜୀବନ ଯନ୍ତ୍ରଣା ଭୁଲିବା ପାଇଁ ମୋତେ ଆଜି ଆହୁରି ବହୁତ ତଳକୁ ଓହ୍ଲେଇ ଯିବାକୁ ହୋଇଛି । ଆପଣ ବିଶ୍ୱାସ କରି ପାରିବେ ?

ଶ୍ୟାମାନନ୍ଦ ମାଲହୋତ୍ରା ଉଠିଯାଇ ପାଖ ଆଲମାରିଟି ଖୋଲି ମୋତେ କହିଲେ : ଦେଖନ୍ତୁ ।

ମୁଁ ଆହୁରି ଆଶ୍ଚର୍ଯ୍ୟ ହୋଇ ଦେଖିଲି ଆଲମାରିଟି କେବଳ କେତେଗୁଡ଼ିଏ ବିଦେଶୀ ପାନୀୟରେ ପୂର୍ଣ୍ଣ ।

ଶ୍ୟାମାନନ୍ଦ ମାଲହୋତ୍ରା ଜୋର୍‌ରେ ହସିଉଠି କହିଲେ: ଏ କୋଠାଟି ମୋର ଥିଲା, ମୋ ସ୍ତ୍ରୀ, ମୋ ପିଲାଙ୍କ ମଙ୍ଗଳ ଚିନ୍ତା କରି କିଣିଥିଲି । ଶେଷ ଜୀବନଟା ସୁଖ ସମୃଦ୍ଧିରେ କଟାଇବା ପାଇଁ ଆଶାପୋଷଣ କରିଥିଲି । କିନ୍ତୁ.....ଶେଷ ଜୀବନଟାକୁ ମୋର ସୁଖ ସମୃଦ୍ଧିରେ ବଞ୍ଚାଇ ରଖିଛନ୍ତି ଏଇ ବୋତଲଗୁଡ଼ିକ । କୋଠା ଆଉ ମୋର ହୋଇ ନାହିଁ । ଆଜି ଋଣୀ ଯଦି କାହା ନିକଟରେ ମୁଁ ହୋଇଥାଏ, ତା'ହେଲେ ଏଇ ଜନିଓ୍ୱାକର, ହ୍ୱାଇଟ୍ ହର୍ସର ନିର୍ମାତାମାନଙ୍କ ପାଖରେ ।

ଶ୍ୟାମାନନ୍ଦ ମାଲହୋତ୍ରା ଆହୁରି ଜୋର୍‌ରେ ହୋ ହୋ ହୋଇ ହସି ଉଠିଥିଲେ ।

: ଇଓର ଅନର ! ଅପରାଧୀ ଯେତେବେଳେ ସୁସ୍ଥ ମସ୍ତିଷ୍କରେ, ସୁପରିକଳ୍ପିତ ଉପାୟରେ ଅପରାଧ କରେ, ସେତେବେଳେ ସେ ବହୁ ପୂର୍ବରୁ ଅପରାଧର ସମସ୍ତ ପ୍ରମାଣ ନିର୍ଭୁଲ ଭାବରେ ନିଶ୍ଚିହ୍ନ କରିବାର ବ୍ୟବସ୍ଥା କରିଥାଏ । ବିଶେଷତଃ ଏ କ୍ଷେତ୍ରରେ ଆମର ଅପରାଧୀ ଶିକ୍ଷିତା ବୁଦ୍ଧିମତୀ । ଲଳିତା ମାଲହୋତ୍ରା ଯେଉଁଦିନ ରାତିରେ ସନତ୍ ମଜୁମଦାରଙ୍କ ଘରେ ପ୍ରବେଶ କରି, ତାଙ୍କ ସହିତ ମଧୁର ଆଳାପ ଆରମ୍ଭ କରିଥିଲେ, ସେଦିନ ସେଇ ମୁହୂର୍ତ୍ତରେ ସନତ୍ ମଜୁମଦାରଙ୍କ ମନରେ ଲଳିତା ମାଲହୋତ୍ରାଙ୍କ ପ୍ରତି କୌଣସି ସନ୍ଦେହ ଜନ୍ମି ନଥିଲା । ନ ଜନ୍ମିବା ତ ସାଧାରଣ କଥା; କାରଣ ଏକ ସୁନ୍ଦରୀ ତରୁଣୀ, ଜଣେ ପ୍ରତିବେଶୀର ଘରକୁ ଯାଇ ବାର୍ତ୍ତାଳାପ କରିବା ଅତି ସ୍ୱାଭାବିକ । ବିଶେଷତଃ ସନତ୍ ମଜୁମଦାର ଜଣେ ତରୁଣ । ଆଖିରେ ସେତେବେଳେ ତାଙ୍କର ରଙ୍ଗିନ୍ ସ୍ୱପ୍ନ । ଲଳିତା ମାଲହୋତ୍ରାଙ୍କ ପରି ସୁନ୍ଦରୀ ଓ ମଧୁରଭାଷିଣୀକୁ ଏକାନ୍ତରେ ପାଇ କେଉଁ ତରୁଣ ପ୍ରାଣରେ ତରଙ୍ଗ ସୃଷ୍ଟି ନ ହେବ !

: ମୁଁ ପ୍ରତିବାଦ କରୁଛି ଧର୍ମାବତାର । ମୋର ବନ୍ଧୁ ସରକାରୀ ଓକିଲ ପଥହୁଡ଼ି, ଓକିଲ ଲଳିତା ମାଲହୋତ୍ରାଙ୍କ ଚରିତ୍ର ଉପରେ ଅଯଥା କଳଙ୍କରେଖା ଟାଣିବାକୁ ଯାଉଛନ୍ତି ।

: ଆପଣଙ୍କ ବକ୍ତବ୍ୟ ମୁଁ ପରେ ଶୁଣିବି ମିଷ୍ଟର ଦାସଗୁପ୍ତ । ବର୍ତ୍ତମାନ ମୋତେ ସରକାର ପକ୍ଷର ବକ୍ତବ୍ୟ ଶୁଣିବାକୁ ଦିଅନ୍ତୁ ।

: ମୁଁ ଦୁଃଖିତ ଧର୍ମାବତାର । ମିଷ୍ଟର ଦାସଗୁପ୍ତ କ୍ଷୁବ୍ଧ ଚିତ୍ତରେ ଆସନ ଗ୍ରହଣ କଲେ ।

ସମଗ୍ର ଅଦାଲତରେ କିପରି ଏକ ଚାପା ଗୁଞ୍ଜନ ଉଠିଥିଲା । ଓକିଲ, ମୁକ୍ତାର ଓ ଦର୍ଶକମାନଙ୍କ ଭିଡ଼ରେ ସରଗରମ ହୋଇଉଠିଥିଲା ଅଦାଲତ । ଅନେକ ଦିନ ହେବ ଏହି ଅଦାଲତରେ ଏପରି ଚାଞ୍ଚଲ୍ୟକର ମାମଲାର ଶୁଣାଣି ହୋଇ ନଥିଲା । ଏପରିକି ଅନ୍ୟାନ୍ୟ ଇଜଲାସର କର୍ମରତ ଓକିଲମାନେ ନିଜ ନିଜର ମାମଲା ମୁଲତବୀ ରଖି, ଆସି ହାଜିର ହୋଇଥିଲେ ଏଠାରେ । ଆଉ ଉତ୍ସାହୀ ଏହି ଜନମଣ୍ଡଳୀର କେନ୍ଦ୍ରବିନ୍ଦୁ ଯିଏ, ଲଳିତା ମାଲହୋତ୍ରା, ସିଏ ନୀରବରେ ଠିଆହୋଇଥିଲା ତଳକୁ ମୁହଁପୋତି, ଅଦାଲତର କାଠଗଡ଼ାରେ ଗୋଟିଏ କୋଣକୁ ।

ଲଳିତା ମାଲହୋତ୍ରା ମୁହଁଟେକି ଚାହିଁପାରୁ ନଥିଲା କାହାକୁ ।

ଦର୍ଶକ ମଣ୍ଡଳୀର ଗୁଞ୍ଜରଣ କ୍ରମଶଃ ବଢ଼ିଉଠୁଥିଲା ।

: ଅର୍ଡର, ଅର୍ଡର । ବିଚାରକଙ୍କର ଗମ୍ଭୀର କଣ୍ଠସ୍ୱରରେ ଅଦାଲତ କକ୍ଷ ସଚକିତ ହୋଇ ଉଠିଲା । ଗୁଞ୍ଜରଣ ସ୍ତବ୍ଧ ହୋଇଗଲା ।

ସରକାର ପକ୍ଷର ଓକିଲ ମିଷ୍ଟର ଦାସଗୁପ୍ତଙ୍କ ଆଡ଼କୁ ଚାହିଁ ଟିକିଏ ବିଦ୍ରୂପର ହସ ହସି ପୁଣି ଆରମ୍ଭ କଲେ : ଧର୍ମାବତାର, ମୁଁ ଯାହା କହୁଥିଲି, ଲଳିତା ମାଲହୋତ୍ରା ପ୍ରକୃତ ସୁନ୍ଦରୀ, କିନ୍ତୁ ତାଙ୍କର ସୌନ୍ଦର୍ଯ୍ୟ ସ୍ୱର୍ଗର ସୁଷମା ନୁହେଁ; ନରକର ସମ୍ପଦ । ଆଉ ସେହି ସମ୍ପଦ ହିଁ ଏହି ହତ୍ୟାକାଣ୍ଡର ମୂଳ କାରଣ । ମିସ୍ ମାଲହୋତ୍ରାଙ୍କୁ ସନ୍ଦେହ କରି ଗ୍ରେପ୍ତାର କରାହୋଇଥିଲେ ମଧ, ଏକଥା ସତ୍ୟ ନୁହେଁ ଯେ, ସେ ସନ୍ଦେହ ମିଥ୍ୟା, ଯଥା ସମୟରେ ମୁଁ ମୋର ପ୍ରମାଣ ପେଶ୍ କରିବି । ଆଉ ସେହି ପ୍ରମାଣ ପ୍ରମାଣିତ କରିବ ଯେ ସନତ୍ ମଜୁମଦାରର ହତ୍ୟାକାରିଣୀ ଲଳିତା ମାଲହୋତ୍ରା । ଧର୍ମାବତାର, ଯେଉଁ କାରଣରୁ ସୁନାର ଲଙ୍କା ଦଗ୍ଧ ହୋଇଥିଲା, ଟ୍ରୟ ନଗରୀ ଧ୍ୱଂସ ହୋଇଥିଲା ସେହି ଆଦି ଓ ଅକୃତ୍ରିମ ରୂପର ମୋହ ହିଁ ଆଜି ଆଉ ଗୋଟିଏ ପ୍ରାଣକୁ ନଷ୍ଟ କରିଛି । କିନ୍ତୁ ମହାକବି ବାଲ୍ମୀକିଙ୍କ କାଳ ସହିତ ଏ କାଳର ପାର୍ଥକ୍ୟ ଅନେକ । ସେଇଥି ପାଇଁ ସେ କାଳର ସୀତାଙ୍କ ସହିତ ଏ କାଳର ଲଳିତାର ପାର୍ଥକ୍ୟ ଅତି ସ୍ୱାଭାବିକ ।

ସରକାରୀ ଓକିଲ ଏତକ କହି ସାରି କିଛି ସମୟ ଚୁପ୍ ହେଲେ । ଟେବୁଲ୍ ଉପରେ ଥୁଆ ହୋଇଥିବା ଗ୍ଲାସରୁ ପାଣି ଢୋକେ ପିଇ ପୁଣି ଆରମ୍ଭ କଲେ : ଧର୍ମାମତାର, ଏହି ହତ୍ୟାକାଣ୍ଡର ମୂଳ ରହସ୍ୟ ଅନେକ ଗଭୀରରେ; ତେଣୁ ଏହାର ଉତ୍ସ ବାହାର କରିବାକୁ ହେଲେ ଧର୍ମାବତାରଙ୍କୁ ଟିକିଏ ଧୈର୍ଯ୍ୟ ଧାରଣ କରି ଗୋଟିଏ କାହାଣୀ ଶୁଣିବାକୁ ହେବ । ସାଧାରଣତଃ କାହାଣୀ କହିଲେ ଆମେ ଯାହା ବୁଝୁ, ଏ କାହାଣୀ ସେ କାହାଣୀ ନୁହେଁ । କାରଣ ସତ୍ୟ କାହାଣୀ କଳ୍ପିତ ମୁଖରୋଚକ ଗଳ୍ପ ନୁହେଁ । ଏକାହାଣୀ ଏକ ନିରାଟ ସତ୍ୟ ଘଟଣା । ତେବେ ଆପଣ ଏବଂ ଜୁରିମଣ୍ଡଳୀ ସେହି ସତ୍ୟ କାହାଣୀ ଶୁଣି ସ୍ୱୀକାର କରିବେ ଯେ ବାସ୍ତବ କଳ୍ପନାଠାରୁ ବି ଆହୁରି ରୋମାଞ୍ଚକର ହୋଇପାରେ । ମଣିଷ ମୋହରେ ପଡ଼ି

କେତେ ଛୋଟ, କେତେ ହେୟ, କେତେ ଘୃଣ୍ୟ ହୋଇପାରେ ଏ କାହାଣୀ ତାହାର ଏକ ଉଦାହରଣ ।

ସରକାରୀ ଓକିଲ ମୁହୂର୍ତ୍ତେ ନୀରବ ରହି, ଟିକିଏ ଗଳା ସଫା କରି ଦର୍ଶକ ମଣ୍ଡଳୀ ଆଡ଼େ ଚାହିଁଲେ । ସମସ୍ତେ ଯେପରି ଉଦ୍‌ବିଗ୍ନ ହୋଇ ଅପେକ୍ଷା କରିଛନ୍ତି ସରକାରୀ ଓକିଲଙ୍କ ମୁଖରୁ ଏକ ଅନାବିଷ୍କୃତ ତଥ୍ୟ ଶୁଣିବା ପାଇଁ ।

: ଇଓର ଅନର, ହୁଏତ ଅନେକଙ୍କର ଧାରଣା ହୋଇପାରେ ଏ ହତ୍ୟା ଯଦି ପ୍ରେମ ଘଟିତ ହୋଇଥାଏ, ତେବେ ସନତ୍ ମଜୁମଦାର ଓ ଲଳିତା ମାଲହୋତ୍ରା ଦୁହେଁ ତରୁଣ ତରୁଣୀ, ଦୁହିଁଙ୍କ ମଧ୍ୟରେ ପ୍ରେମ ଓ ଆନ୍ତରିକତା ସୃଷ୍ଟି ହେବା ଅସ୍ୱାଭାବିକ ନୁହେଁ; କିନ୍ତୁ ସ୍ୱାଭାବିକ ଯାହା, ତାହା ହେଉଛି ଲଳିତା ମାଲହୋତ୍ରାଙ୍କର ସନତ୍ ମଜୁମଦାରଙ୍କୁ ହତ୍ୟା କରିବା । କାହିଁକି ଏହି ବ୍ୟତିକ୍ରମ ?

କହିସାରି ସରକାରୀ ଓକିଲ ଟିକିଏ ନୀରବ ହୋଇଗଲେ । ତା' ପରେ ମିଷ୍ଟର ଦାସଗୁପ୍ତଙ୍କ ଆଡ଼େ ଥରେ କଣେଇ ଚାହିଁ ସ୍ମିତହସି କହିଲେ : ଧର୍ମ୍ମାବତାର, ସେଇଥି ପାଇଁ ମୁଁ ଆଗରୁ କହି ରଖିଛି ଏ ହତ୍ୟା ମୂଳରେ ପ୍ରେମ ନାହିଁ, ଆନ୍ତରିକତା ନାହିଁ, କିମ୍ବା ଭଲ ପାଇବା ନାହିଁ- ଯାହା ଅଛି ସବୁ ଅଭିନୟ; ଆଉ ଯାହା ସତ୍ୟ ତାହା ହେଉଛି ଘୃଣ୍ୟ ବିଶ୍ୱାସଘାତକତା । କେବଳ ସାମାନ୍ୟ ସ୍ୱାର୍ଥ ସିଦ୍ଧି ପାଇଁ ।

ଏ କାହାଣୀର ମୂଳସୂତ୍ର ଆବିଷ୍କାର କରିବାକୁ ହେଲେ, ଆମକୁ ଆଜିଠାରୁ ଦୁଇ ବର୍ଷ ପଛେଇ ଯିବାକୁ ହେବ । ଲଳିତା ମାଲହୋତ୍ରା ସେତେବେଳେ ସଦ୍ୟ ଆସିଥାଆନ୍ତି ସୂର୍ଯ୍ୟସେନ୍ ଷ୍ଟ୍ରୀଟ୍‌ର ସେହି କୋଠାଟିକୁ, ଯେଉଁ କୋଠାରେ ଏହି ହତ୍ୟାକାଣ୍ଡ ସଂଘଟିତ ହୋଇଛି । କିଛି ଦିନପରେ ସେହି କୋଠାର ତଳତାଲାକୁ ଆସିଲେ ପ୍ରଫେସର ଅରୁଣ ମଜୁମଦାର । ତାଙ୍କର ପୁତ୍ର କନ୍ୟା ସହ, ସେଇଠି ସେ ବସବାସ ଆରମ୍ଭ କରିଦେଲେ । ସନତ୍ ମଜୁମଦାର ପ୍ରଫେସର ମଜୁମଦାରଙ୍କର ବଡ଼ ପୁଅ ।

କିଛି ଦିନପରେ ଲଳିତା ସହିତ ଆଳାପ ହେଲା ସନତ୍ ମଜୁମଦାରଙ୍କର । ଆଳାପ କ୍ରମେ ମଧୁର ହେଲା- ଯାହା ହୋଇଥାଏ ତରୁଣ ତରୁଣୀଙ୍କ ମଧ୍ୟରେ । କେବଳ ପଦେ ମିଠାକଥା, ଗୋଟିଏ ମୁଗ୍ଧ ଚାହାଣି, ଟିକିଏ ସ୍ମିତହାସ୍ୟ, ଏହିପରି କଟିଗଲା ଅନେକ ଦିନ । ଏହି ଆନ୍ତରିକତାର ଶେଷ ପରିଣତି ସମ୍ବନ୍ଧରେ କେହି କିଛି ଭାବିପାରି ନଥିଲେ ।

କିନ୍ତୁ ଯେଉଁଦିନ ପ୍ରଥମେ ଭେଟ ହେଲା ଦୁହିଁଙ୍କର, ଇଉନିଭରସିଟି ଇନଷ୍ଟିଚ୍ୟୁଟ ହଲରେ, ତା'ର ଗୋଟିଏ ଛୋଟ ପ୍ରମାଣ ରହିଛି ମୋ ପାଖରେ । ମୁଁ ମହାମାନ୍ୟ ଅଦାଲତଙ୍କ ପାଖରେ ସନତ୍ ମଜୁମଦାରଙ୍କ ଲେଖା ଖଣ୍ଡିଏ ଚିଠି ପେସ୍ କରୁଛି -

'ପ୍ରିୟ.....

କ'ଣ ବୋଲି ତମୁକୁ ସମ୍ବୋଧନ କରିବି, ଭାଷା ଖୋଜି ପାଉନାହିଁ; କିନ୍ତୁ ଯେଉଁଦିନ ପ୍ରଥମେ ତମୁକୁ ଦେଖିଲି, ସେଇଦିନଠାରୁ ମୋର ସମସ୍ତ ଚେତନା ଶକ୍ତି ତମ ଉପରେ ଯେପରି ସ୍ତବ୍‌ଧ ହୋଇଗଲା । ବିଶ୍ୱବ୍ରହ୍ମାଣ୍ଡରୁ ମୋର ଦୃଷ୍ଟିଶକ୍ତି ଫେରାଇ ଆଣି ମୁଁ ତମ ଉପରେ ନିବଦ୍ଧ କଲି । ତମେ ହୁଏତ ବିଶ୍ୱାସ କରିପାରିବ ନାହିଁ । ଶୟନ, ସ୍ୱପନ, ଜାଗରଣ

ସବୁବେଳେ ମୁଁ ତମର ସ୍ୱପ୍ନ ଦେଖିଲି । ଦିନ ଭିତରେ ଥରେ ତମର ଦର୍ଶନ ନ ପାଇଲେ, ସେଦିନ ମୋର କୌଣସି ପଢ଼ାପଢ଼ି ହୋଇ ପାରୁନଥିଲା ।

ସେ କଥା ପରେ କହିଲେ ଚଳିବ । ଆଗାମୀ ରବିବାର ଆମ କଲେଜର ବାର୍ଷିକ ଉତ୍ସବ । ଇଉନିଭରସିଟି ଇନିଷ୍ଟିଚ୍ୟୁଟ ହଲରେ ଉତ୍ସବ ଅନୁଷ୍ଠିତ ହେବ । ଏଥି ସହିତ ନିମନ୍ତ୍ରଣ ପତ୍ର ପଠାଇଲି ତୁମ ପାଇଁ । ତୁମେ ନିଶ୍ଚୟ ଆସିବ । ମୁଁ ଗେଟ୍‌ରେ ଅପେକ୍ଷା କରିଥିବି ତୁମ ପାଇଁ । ସେଦିନ ମୋ ସହିତ ତିନି ଚାରିଘଣ୍ଟା କଟେଇବାକୁ ପ୍ରସ୍ତୁତ ହୋଇ ଆସିଥିବ । ସାଙ୍ଗହୋଇ ବୁଲିବା ଅନେକ ଆଡ଼େ । କଫି ପିଇବା କଫି ହାଉସ୍‌ରେ । ମୁକ୍ତ ଆକାଶ ତଳେ ବସି ବସି ଆକାଶର ଶୋଭା ଦେଖିବା, ଆଉ ମୁଁ ନିରୋଳାରେ ବସି ବସି ଦେଖିବି ତମର ମୁଖ ଦର୍ପଣରେ ମୋର ପ୍ରତିଚ୍ଛବି । ନିଶ୍ଚୟ ଆସିବ । ମୁଁ ଜାଣେ ମା' ତମ କଥା ଶୁଣନ୍ତି । ତାଙ୍କୁ ବୁଝେଇ ସୁଝେଇ ତମେ ଚାଲି ଆସିବ ।

ସରକାରୀ ଓକିଲ ଚିଠି ଖଣ୍ଡିକ ପଢ଼ିସାରି ପେସ୍କାର ହାତକୁ ଦେଲେ । ଅଦାଲତ କକ୍ଷ ପୁଣି ଗୁଞ୍ଜରିତ ହୋଇଉଠିଲା ।

ପେସ୍କାର ଚିଠି ଖଣ୍ଡିକ ବିଚାରକଙ୍କ ହାତକୁ ବଢ଼ାଇ ଦେଲେ । ବିଚାରକ ଚିଠି ଖଣ୍ଡିକ ଉପରେ ଥରେ ଆଖି ବୁଲେଇ ନେଇ ପଚାରିଲେ : ଲଳିତା ମାଲହୋତ୍ରା ! ଏ ଚିଠି ଖଣ୍ଡିକ ଦେଖି କୁହନ୍ତୁ ଏ ଖଣ୍ଡିକ ସନତ୍ ମଜୁମଦାର ଆପଣଙ୍କୁ ଲେଖିଥିଲେ କି ନାହିଁ ?

ବିଚାରକ ଚିଠିଖଣ୍ଡିକ ପୁଣି ପେସ୍କାରଙ୍କୁ ଦେଲେ । ପେସ୍କାର ଚିଠି ଖଣ୍ଡିକ ଧରି ଲଳିତା ମାଲହୋତ୍ରାଙ୍କ ପାଖକୁ ଆସୁଥିଲେ, କିନ୍ତୁ ଲଳିତା ତା' ପୂର୍ବରୁ ଠିଆହୋଇପଡ଼ି କହିଲା : ହଁ, ଧର୍ମାବତାର । ଏ ଚିଠି ଖଣ୍ଡିକ ମୋର ଏବଂ ସନତ୍ ମଜୁମଦାରଙ୍କ ଲେଖା ।

: ଆପଣ ନ ଦେଖି ସ୍ୱୀକାର କରୁଛନ୍ତି ?

: ହଁ ଧର୍ମାବତାର, ସେ ଚିଠିର ପ୍ରତିଟି ଛତ୍ର ଆଜି ବି ମୋର ମନେ ଅଛି । ଲଳିତା ଅକମ୍ପିତ କଣ୍ଠରେ ଉତ୍ତର ଦେଲା ।

: କାହିଁକି ? ଏ ଚିଠିରେ ପ୍ରତିଟି ଛତ୍ର ଆପଣଙ୍କର ମନେରହିବାର କାରଣ ?

ଲଳିତା କ'ଣ କହିବାକୁ ଯାଇ ହଠାତ୍ ଅଟକିଗଲା । ଥରେ ଚାହିଁଲା ବିଚାରକଙ୍କ ମୁହଁକୁ । ଆଉ ଥରେ ଜନ ସମୁଦ୍ର ଆଡ଼କୁ । ତା'ପରେ ମୁଖ ନତ କରି ଧୀରେ ଧୀରେ କହିଲା : ଏ ଚିଠି ମୋ ଜୀବନରେ ଏକ ବିଶେଷ ପରିବର୍ତ୍ତନ ଆଣିଥିଲା, ସେ ଘଟଣା ସହିତ ଏହି ହତ୍ୟା ମାମଲାର କୌଣସି ସମ୍ପର୍କ ନାହିଁ ।

ଅଦାଲତରେ ପୁଣି ଗୁଞ୍ଜରଣ ଉଠିଥିଲା ।

: ଅର୍ଡର, ଅର୍ଡର କହି ବିଚାରକ ନୀରବ ହେଲେ ।

ପେସ୍କାର ଚିଠି ଖଣ୍ଡିକ ନଥିଭୁକ୍ତ କଲେ ।

ସରକାରୀ ଓକିଲ ଗ୍ଲାସରୁ ଆଉ ଢୋକେ ପାଣି ପିଇ ପୁଣି ଆରମ୍ଭ କଲେ : ସେଇଦିନଠାରୁ ଏ କାହାଣୀର ଆରମ୍ଭ ।

ଲଳିତା ମାଲହୋତ୍ରା ସନତ ମଜୁମ୍‌ଦାରଙ୍କ ସହିତ ଧୀରେ ଧୀରେ ଏପରି ସମ୍ପର୍କ ଗଢ଼ି ତୋଳିଲେ ଯେ, ଯେପରି ଦୁହେଁ ମିଶି ଏକାତ୍ମା, ଅଭିନ୍ନ ହୃଦୟ ।

କିନ୍ତୁ ଅଭିଭାବକମାନେ ଏ ଦୁଇଜଣଙ୍କର ଏକାତ୍ମବୋଧର ସନ୍ଧାନ ପାଇ ନଥିଲେ ।

ସେହିପରି ଚାଲିଲା ଆହୁରି କିଛି ଦିନ । ଲଳିତା ମାଲହୋତ୍ରା ସନତ୍‌କୁ ମେଷଶାବକ କରିବା ପାଇଁ ବେଶି ସମୟ ଲାଗିଲା ନାହିଁ । କାରଣ ସନତ୍ ବାପାଙ୍କର କଡ଼ା ଶାସନ ଭିତରେ ରହି, ସ୍ନେହ ମମତାର ଉତ୍ସ ତା' ପ୍ରାଣରୁ ଶୁଖିଆସୁଥିଲା, ଲଳିତାର ସଙ୍ଗ ସୁଖ ତାକୁ ଯେପରି ଉଦ୍‌ବୁଦ୍ଧ କଲା, ଜାଗ୍ରତ କଲା । ତା' ତରୁଣ ପ୍ରାଣରେ ଜାଗି ଉଠିଲା ଏକ ନୂତନ ସ୍ୱପ୍ନ ।

କିନ୍ତୁ ଲଳିତା ମାଲହୋତ୍ରାଙ୍କର ଏ ସବୁ ଥିଲା ଅଭିନୟ । କେବଳ ଅଭିନୟ । ସନତ୍‌କୁ ନିଜର କରି ଘର ବାନ୍ଧିବାର ମୋହ କେବେ ଜାଗି ନଥିଲା ତାଙ୍କ ମନରେ ।

: ଆଇ ଅବ୍‌ଜେକ୍ଟ ଇଓର ଅନର । ମୋର ବନ୍ଧୁ ସରକାର ପକ୍ଷର ଓକିଲ, ମୋର ମକିଲ ନାମରେ ମିଥ୍ୟା ଦୋଷାରୋପ କରି ଚାଲିଛନ୍ତି । ସନତ୍ ମଜୁମଦାରଙ୍କର ଲିଖିତ ଏହି ଚିଠି ଖଣ୍ଡିକ ଏଠାରେ କ'ଣ ପ୍ରମାଣିତ କରୁଛି ଯେ, ଦୁହିଁଙ୍କର ପ୍ରେମ, ଆନ୍ତରିକତା ଗଢ଼ି ଉଠିଥିଲା ଜଣେ ଜଣକର ଜୀବନ ନଷ୍ଟ କରିବା ପାଇଁ ?

: ଆପଣଙ୍କ ବକ୍ତବ୍ୟ ମୁଁ ପରେ ଶୁଣିବି ମିଷ୍ଟର ଦାସଗୁପ୍ତ । ପ୍ରଥମେ ସରକାରୀ ପକ୍ଷର ବକ୍ତବ୍ୟ ଶେଷ ହେଉ ।

ମିଷ୍ଟର ଦାସଗୁପ୍ତ ପୁଣି ନିଜ ଆସନରେ ବସିପଡ଼ିଲେ ।

ସରକାର ପକ୍ଷର ଓକିଲ ମିଷ୍ଟର ଦାସଗୁପ୍ତ ଆଡ଼େ କଣେଇ ଚାହିଁ କିହଲେ : ନାରୀ ଚରିତ୍ର ! ଦେବତାମାନେ ଯାହା ଭିତରକୁ ପଶି ପାରି ନ ଥିଲେ, ଆଉ ଆମେ ତ ଛାର ମାନବ !! ଲଳିତା ମାଲହୋତ୍ରାଙ୍କ ହତ୍ୟାର ମୋଟିଭ୍ ସମ୍ବନ୍ଧରେ ମୁଁ ଏଥର କହିବି ।

ଲଳିତା ମାଲହୋତ୍ରା ମୃତ ସନତ୍ ମଜୁମଦାରଙ୍କୁ ଭଲ ପାଇବା ମୂଳରେ ଉଦ୍ଦେଶ୍ୟ ଯେ ନିଶ୍ଚୟ ଅନ୍ୟଥିଲା, ତାହା ତାଙ୍କର ପରବର୍ତ୍ତୀ କାଳର କାର୍ଯ୍ୟକଳାପକୁ ବିଶ୍ଳେଷଣ କଲେ ବେଶ୍ ବୁଝାଯିବ । ଦୁଇଜଣଙ୍କ ଭିତରେ ଦିନକୁ ଦିନ ସୌହାର୍ଦ୍ଦତା ଗଢ଼ି ଉଠିଥିଲା ବେଶ୍ ।

ବୋଧହୁଏ ଲଳିତା ମାଲହୋତ୍ରା ପ୍ରତି ସନତ୍ ମଜୁମଦାର ଗଭୀର ଆତ୍ମବିଶ୍ୱାସ ଜନ୍ମେଇବା ପାଇଁ ଲଳିତା ନିଜକୁ ତାଙ୍କ ପାଖରେ ମୁକ୍ତ କରି ଦେଇଥିଲେ । ତା'ର ପ୍ରମାଣ ଇଓର ଅନର, ସରକାର ପକ୍ଷର ଓକିଲବିଚାରଙ୍କ ମୁହଁକୁ ଚାହିଁ, ଖଣ୍ଡିଏ ଫଟୋଗ୍ରାଫ୍ ପେସ୍କାରଙ୍କ ହାତକୁ ବଢ଼ାଇଦେଲେ ।

ପେସ୍କାର ସେ ଖଣ୍ଡିକ ବିଚାରକଙ୍କ ସାମ୍ନାରେ ପେସ୍‌କଲେ ।

ବିଚାରକ ଦେଖିଲେ, ଗୋଟିଏ ଯୁଗଳ ଛବି । ତରୁଣୀଟି ଲଳିତା ମାଲହୋତ୍ରା, ଆଉ ତରୁଣଟି ?

ସରକାର ପକ୍ଷର ଓକିଲ କହିଲେ : ଏ ଯୁଗଳ ଫଟେଗ୍ରାଫ୍ ଖଣ୍ଡିକ ଲଳିତା ମାଲହୋତ୍ରା ଏବଂ ସନତ୍ ମଜୁମଦାରଙ୍କର । ଏ ଫଟୋ ଖଣ୍ଡିକ ଦେଖିଲେ ଦୁଇଜଣଙ୍କ ମଧ୍ୟରେ ଆନ୍ତରିକତାର ସାମାନ୍ୟତମ ଆଭାସ ପାଇ ପାରିବେ ଧର୍ମାବତାର ।

ବିଚାରପତି ଫଟୋ ଖଣ୍ଡିକ ଲଳିତା ମାଲହୋତ୍ରାଙ୍କୁ ଦେଖାଇ, ପୁରୁଷ ଚେହେରାଟି ସମ୍ବନ୍ଧରେ ସ୍ୱୀକାରୋକ୍ତି ଚାହିଁଲେ ।

ଏଥର କିନ୍ତୁ ଲଳିତା ଫଟୋ ଖଣ୍ଡିକ ହାତରେ ଧରି କିଛି ସମୟ ଚିନ୍ତା କରି ତା'ପରେ କହିଲା : ହଁ, ଏ ଫଟୋରେ ଅନ୍ୟ ଜଣକ ଯିଏ ଅଛନ୍ତି, ସିଏ ମୃତ ସନତ୍ ମଜୁମଦାର ।

ପେସ୍କାର ପୁଣି ଫଟୋଗ୍ରାଫ୍ ଖଣ୍ଡିକ ଫେରେଇ ଆଣି, ଏକ୍‌ଜିବିଟ୍ ନମ୍ବର-୨ କରି ନଥିଭୁକ୍ତ କଲେ ।

ଏଥର ସରକାରୀ ଓକିଲ କଣ୍ଠ ପରିଷ୍କାର କରି କହିଲେ : ଧର୍ମାବତାରଙ୍କ ଏତେବେଳଯାଏ ମୁଁ ଏକ ନିର୍ମଳ ଓ ବିଶ୍ୱସ୍ତ ପ୍ରେମ କାହାଣୀ ଶୁଣାଉଥିଲି । ଯାହା ସ୍ୱାଭାବିକ, ସାଧାରଣ ମଣିଷ ଜୀବନରେ ଘଟିଥାଏ; କିନ୍ତୁ ଏହା ପରେ ଯେଉଁ କାହାଣୀ ଶୁଣାଇବି, ତାହା ଅବିଶ୍ୱାସ୍ୟ, ହେଲେ ଧର୍ମାବତାରଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ସମସ୍ତ ପ୍ରମାଣ ଯୋଗାଇ ଦେବି ।

ଲଳିତା ମାଲହୋତ୍ରାଙ୍କ ଚରିତ୍ର ଧର୍ମାବତାରଙ୍କ ସମ୍ମୁଖରେ ଯେପରି ଭାବରେ ଏତେବେଳଯାଏ ଚିତ୍ରଣ କରାହୋଇଛି, ତାହା ତାଙ୍କ ଜୀବନର ଗୋଟିଏ ଦିଗ, କିନ୍ତୁ ଏହା ଛଡ଼ା ମିସ୍ ମାଲହୋତ୍ରାଙ୍କ ଜୀବନର ଅନ୍ୟ ଯେଉଁ ଦିଗଟି ଅଛି, ତାହା ଅତ୍ୟନ୍ତ ଭୟଙ୍କର, ସମାଜ ବିରୋଧୀମୂଳକ ।

ବର୍ତ୍ତମାନ ସେଇ ଦିଗକୁ ଦୃଷ୍ଟିପାତ କରା ହେଉ ।

ଧର୍ମାବତାର ! ଏତେ ବଡ଼ ଏହି କଲିକତା ସହରରେ, ଲକ୍ଷ ଲକ୍ଷ ମଣିଷଙ୍କ ମେଳରେ, କିଏ କିପରି ଭାବରେ ଜୀବିକା ନିର୍ବାହ କରି ଜୀବନ ଧାରଣ କରୁଛି ତାହା ଖୋଜି ବାହାର କରିବା ସମ୍ଭବ ନୁହେଁ । ଆମର ଏଇ କେସ୍‌ରେ, ଲଳିତା ମାଲହୋତ୍ରାଙ୍କ ଜୀବନ ଯାତ୍ରା ସମ୍ବନ୍ଧରେ ଆମକୁ ସମସ୍ତ ତଥ୍ୟ ସଂଗ୍ରହ କରିବାକୁ ପଡ଼ିଛି ।

ମିସ୍ ମାଲହୋତ୍ରା ସୂର୍ଯ୍ୟସେନ୍ ଷ୍ଟ୍ରିଟ୍‌ରେ ଯେଉଁ ଫ୍ଲାଟ୍‌ରେ ତାଙ୍କ ମା'ଙ୍କ ସହିତ ବସବାସ କରନ୍ତି, ସେହି ଫ୍ଲାଟ୍‌ଟିର ଭଡ଼ା ମାସକୁ ଦୁଇ ଶହ ଟଙ୍କାରୁ ଅଧିକ । ସେମାନଙ୍କର ଜୀବନ ଯାତ୍ରାର ମାନ ଯେକୌଣସି ଜଣେ ଦଶ ହଜାର ଟଙ୍କାର ଉପାର୍ଜନକ୍ଷମ ବ୍ୟକ୍ତିର ମାନ ସହିତ ସମାନ । ଲଳିତା ମାଲହୋତ୍ରାଙ୍କର ସେହି ସଂସାର ଚଳେ କିପରି ? ମାସକୁ ଦଶ ହଜାର ଟଙ୍କା ଆସେ କୁଆଡୁ ?

ଇଓର ଅନର୍, ଲଳିତା ମାଲହୋତ୍ରାଙ୍କର ବାପା ବଞ୍ଚିଛନ୍ତି ବୋଲି ଖବର ମିଳେ; କିନ୍ତୁ ସେ ପାଗଳ । ଏମାନଙ୍କୁ ଏକ ପଇସା ସାହାଯ୍ୟ କରିବାର ସାମର୍ଥ୍ୟ ତାଙ୍କର ନାହିଁ । ତଥାପି ଲଳିତା ମାଲହୋତ୍ରାଙ୍କ ସଂସାର ଥାଟ୍ ବଜାୟ ରଖି ଚଳିଆସୁଛି ବର୍ଷ ବର୍ଷ ଧରି । ଏହା ମୂଳରେ ନିଶ୍ଚୟ ଆଲ୍ଲାଦିନର ଆଶ୍ଚର୍ଯ୍ୟ ପ୍ରଦୀପ କାର୍ଯ୍ୟକରୁନାହିଁ; କିନ୍ତୁ କାହାରି ଇଙ୍ଗିତ, କାହାରି ସାହାଯ୍ୟରେ ଯେ ଲଳିତା ମାଲହୋତ୍ରାଙ୍କ ସଂସାର ଚଳୁଛି ଏହା ସ୍ୱତଃସିଦ୍ଧ କଥା ।

କ'ଣ ସେହି ଗୋପନ ଇଙ୍ଗିତ ? କିଏ ସେହି ଅଦୃଶ୍ୟ ଶକ୍ତି ?

ଇଓର ଅନର୍, ତା'ର ସମ୍ୟକ ପ୍ରମାଣ ଆପଣ ପାଇବେ ଏହି ଫଟୋଗ୍ରାଫ୍ ଖଣ୍ଡିକରୁ ।

ସରକାରୀ ପକ୍ଷର ଓକିଲ ଫାଇଲ୍‌ରୁ ଆଉ ଖଣ୍ଡିଏ ଫଟୋଗ୍ରାଫ୍ ବାହାର କରି ପେସ୍କାରଙ୍କ ହାତକୁ ବଢ଼ାଇଦେଲେ ।

ପେସ୍କାର ଫଟୋଗ୍ରାଫ୍ ଖଣ୍ଡିକ ବଢ଼ାଇଦେଲେ ବିଚାରପତିଙ୍କ ହାତକୁ ।

ଆଉ ଦୁଇଜଣ ଅପରିଚିତଙ୍କ ମେଳରେ ଲଳିତା ମାଲହୋତ୍ରା । ଟେବୁଲ ଉପରେ ମଦ ଗ୍ଲାସ । ସମସ୍ତଙ୍କ ହାତରେ ସିଗାରେଟ୍ । ପୁରୁଷ ଦୁଇଜଣଙ୍କର ଉତ୍ସୁକ ଚାହାଣି ଲଳିତା ମୁହଁ ଉପରେ ନିବଦ୍ଧ ।

ବିଚାରପତି ଫଟୋଗ୍ରାଫ୍ ଖଣ୍ଡିକ ଲଳିତା ପାଖକୁ ପଠାଇ ସ୍ୱୀକୃତି ନେଲେ ।

ସରକାରୀ ଓକିଲ କହିଲେ : ଧର୍ମାବତାର ଏହି ଫଟୋଗ୍ରାଫ୍ ସହିତ ଅନ୍ୟ ଯେଉଁ ଦୁଇଜଣ ପୁରୁଷ ଦେଖୁଛନ୍ତି, ସେହି ଦୁଇଜଣ ହେଉଛନ୍ତି ଏକ ଅପରାଧୀ ଦଳର ମୁଖ୍ୟ କର୍ତ୍ତା । ଲଳିତା ମାଲହୋତ୍ରା ସେହି ଦଳର କଣ୍ଢେଇ । ସେମାନେ ଯେପରି ନଚାନ୍ତି, ଲଳିତା ମାଲହୋତ୍ରା ସେହିପରି ନାଚନ୍ତି । ତାଙ୍କ ଜୀବନଯାତ୍ରାର ଅନ୍ୟ ଦିଗଟି ଉଦ୍‌ଘାଟନ କଲା ପରେ, ଆପଣ ଏବଂ ଜୁରି ମଣ୍ଡଳୀ ନିଶ୍ଚୟ ବିଶ୍ୱାସ କରିବେ ଯେ, ଲଳିତା ମାଲହୋତ୍ରା ନାନା ଅସାମାଜିକ କାମରେ ଲିପ୍ତ ରହି, ଦଳ ତରଫରୁ ମାସକୁ ପାଞ୍ଚ ଦଶ ହଜାର ଟଙ୍କା ଆୟ କରିବା ମୋଟେ କଷ୍ଟସାଧ ନୁହେଁ ।

: ଇଓର ଅନର୍, ଏଠାରେ ମୁଁ ପଦେ ନ କହି ରହିପାରୁନାହିଁ । କାରଣ ସରକାର ପକ୍ଷର ଓକିଲ ଆପଣଙ୍କୁ ଏକ ଭ୍ରମାତ୍ମକ ପଥରେ ଆଗେଇ ନେଇ ଯାଉଛନ୍ତି । ମୋ' ମକିଲଙ୍କ ଚରିତ୍ରରେ ଯଥେଷ୍ଟ କଳଙ୍କ ବୋଳି ଚାଲିଛନ୍ତି । ମିଷ୍ଟର ଦାସଗୁପ୍ତ ଟିକିଏ ନୀରବ ରହି ଆଉ କ'ଣ କହିବାକୁ ଯାଉଥିଲେ ।

କିନ୍ତୁ ବିଚାରପତି ହାତଦେଖାଇ ଇଙ୍ଗିତରେ ନୀରବ ରହିବାକୁ କହି କହିଲେ : ଆପଣଙ୍କ ପଏଣ୍ଟ ମୋର ମନେ ରହିବ ମିଷ୍ଟର ଦାସ୍‌ଗୁପ୍ତ, ପ୍ରଥମେ ସରକାର ପକ୍ଷର କଥା ଶେଷ ହୋଇଯାଉ, ତା'ପରେ ଆପଣଙ୍କ କଥା ମୁଁ ଧ୍ୟାନ ସହକାରେ ଶୁଣିବି ।

ସରକାର ପକ୍ଷର ଓକିଲ ଗଳା ଖଙ୍କାରି ପୁଣି ଆରମ୍ଭ କଲେ : ଏହି ଯେଉଁ ଅସାମାଜିକ ଦଳଟିରେ ଲଳିତା ମାଲହୋତ୍ରା ଯାଇ ଯୋଗଦେଇଥିଲେ, ସେହି ଦଳଟିର ଉଦ୍ଦେଶ୍ୟ ଅନ୍ୟ ଯାହା ହେଉ ପଛକେ, ଲଳିତା ମାଲହୋତ୍ରାଙ୍କର ସେ ଦଳରେ ଭୂମିକା ଥିଲା ସହରରୁ ଶିକ୍ଷିତ ଯୁବ ଶକ୍ତିକୁ ଆକର୍ଷଣ କରିନେଇ ସେହି ଦଳଭୁକ୍ତ କରାଇବା ।

ଲଳିତା ମାଲହୋତ୍ରା ତାଙ୍କର କର୍ତ୍ତବ୍ୟ ଠିକ୍‌ରୂପେ ପାଳନ କରି ଚାଲିଥିଲେ । କିନ୍ତୁ ତାଙ୍କର ଅସୁବିଧା ହୋଇଗଲା, ସନତ୍ ମଜୁମଦାରଙ୍କ କେସ୍‌ରେ ।

ସନତ୍ ମଜୁମଦାର ଲଳିତା ମାଲହୋତ୍ରାଙ୍କ ପ୍ରେମରେ ଏପରି ଅନ୍ଧ ହୋଇଯାଇଥିଲେ ଯେ, ଲଳିତାଙ୍କୁ ସେ ଅବିଶ୍ୱାସ କରିବାର ପ୍ରଶ୍ନ ନଥିଲା । ତେଣୁ ଦିନେ ସେ ସନତ୍ ମଜୁମଦାରଙ୍କୁ ସଙ୍ଗରେ ଧରି ନେଇ ଯାଇଥିଲେ ସେହି ଦଳ ଭିତରକୁ ।

ଦଳର ଅଧିନାୟକ ସନତ୍ ମଜୁମଦାରଙ୍କୁ ଦେଖି ଖୁସିହୋଇଗଲେ । ଶିକ୍ଷାଗତ ଯୋଗ୍ୟତା କଥା ଶୁଣି ଆହୁରି ମୁଗ୍ଧ ହେଲେ । ସେଦିନ ଖୁବ୍ ଖୁଆଇ ପିଆଇ, ପ୍ରତିଦିନ ସନ୍ଧ୍ୟାବେଳେ କ୍ଲବ୍‌କୁ ଆସିବା ପାଇଁ ଅଧିନାୟକ ସନତ୍‌କୁ ଅନୁରୋଧ କଲେ ।

ମଝିରେ ମଝିରେ ସନତ୍ ଆସିଲେ ଲଳିତା ସହିତ । କ୍ଲବରେ ଅନ୍ୟମାନଙ୍କ ଆଚରଣରେ ଯଦିଓ ବିସ୍ମିତ ହୋଇଥିଲେ ସନତ୍ ମଜୁମ୍‌ଦାର; କିନ୍ତୁ ଲଳିତା ତାଙ୍କୁ ବୁଝେଇ ଦେଇଥିଲେ, ଏସବୁ ଅଧୁନା ଅଭିଜାତର ଦଳ । ଟିକିଏ ଉଚ୍ଛୃଙ୍ଖଳ ହେବା କିଛି ଅସ୍ୱାଭାବିକ ନୁହେଁ, କିନ୍ତୁ ସେମାନେ କେହି ଆମର କିଛି ଅନିଷ୍ଟ କରିବେ ନାହିଁ ।

ଦିନେ ହଠାତ୍ ଦଳର ଅଧିନାୟକ ସନତ୍ ମଜୁମଦାରଙ୍କୁ ଏକା ଦେଖି ନିଜର ଅଫିସ୍ ଘରକୁ ଡାକିନେଲେ । ଏକ ଲୋଭନୀୟ ପ୍ରସ୍ତାବ ଦେଲେ ସନତ୍ ମଜୁମଦାରଙ୍କୁ ଡାକି ସଂଘାରେ ଚାକିରି ଦେବାକୁ ଚାହିଁଲେ । ସେ ତାଙ୍କୁ ରିପ୍ରେଜେଣ୍ଟେଟିଭ କରି ପଠାଇବେ ହଂକଂ ବ୍ରାଞ୍ଚକୁ । ସେଠି ଜଣେ ଶିକ୍ଷିତ ବିଶ୍ୱାସୀ ଲୋକ ଆବଶ୍ୟକ । ତେଣୁ ସେଇ ପୋଷ୍ଟଟି ପାଇଁ ସନତ୍ ମଜୁମଦାରଙ୍କୁ ସେ ମନେ ମନେ ସ୍ଥିର କରିଛନ୍ତି ।

ସନତ୍ ମଜୁମଦାର ସେଦିନ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେ କାହା ମୁହଁରୁ କି କଥା ଶୁଣୁଛନ୍ତି ?

ସନତ୍ ମଜୁମଦାର ତଥାପି ପ୍ରଶ୍ନ କରିଥିଲେ : ମୋତେ ସେଠାରେ ଯାଇ କ'ଣ କରିବାକୁ ହେବ ?

ଅଧିନାୟକ ହସି ହସି କହିଥିଲେ : ସେଠାରେ ତୁମକୁ କିଛି ଭିଡ଼ କାମ କରିବାକୁ ପଡ଼ିବ ନାହିଁ । ଆମର ସେଠାରେ ଗୋଟିଏ ଅଫିସ୍ ଅଛି, ସେହି ଅଫିସ୍ ଚାର୍ଯରେ ତୁମକୁ ରହିବାକୁ ହେବ । ବ୍ୟବସାୟ ସୂତ୍ରରେ ଯେଉଁମାନେ ସେଠାକୁ ଆସିବେ, ସେମାନଙ୍କ ସହିତ କ'ଣ କଥାବାର୍ତ୍ତା କରିବାକୁ ହେବ, ସେଠା ଅଫିସ୍‌ରେ ଥିବା ଆମର ଜଣେ କର୍ମଚାରୀ ତମକୁ ତାହା ଶିଖାଇଦେବ ଆଉ ଏ ଫଟୋଟି ରଖ । ଅଧିନାୟକ ସନତ୍ ହାତକୁ ଫଟୋ ଖଣ୍ଡେ ବଢ଼ାଇ ଦେଇ କହିଲେ, ଯେଉଁଦିନ ଏଇ ଲୋକଟି ଆସି ତମ ସମ୍ମୁଖରେ ଉପସ୍ଥିତ ହେବ, ସେଇଦିନ ସେଇ ମୁହୂର୍ତ୍ତରେ ଏଇ ପିସ୍ତଲରୁ ଗୁଳି ଛୁଟାଇ ତା' ବକ୍ଷରୁ ରକ୍ତ ନିଗାଡ଼ି ଦେବ ।

ସନତ୍ ମଜୁମଦାର ଅଧିନାୟକଙ୍କ ହାତରେ ଗୋଟାଏ ପିସ୍ତଲ ଦେଖି ଚିତ୍କାର କରି ଉଠିଥିଲେ । ଅନୁନୟ କରି କହିଥିଲେ, ମୁଁ ପାରିବି ନାହିଁ ସାର୍, ଏସବୁ କାମ ମୋ' ଦ୍ୱାରା ହେବ ନାହିଁ ।

ଅଧିନାୟକ ଏଥର ଚିତ୍କାର କରି ଉଠିଥିଲେ । କହିଥିଲେ : ତୁମକୁ ପାରିବାକୁ ହେବ ସନତ୍ ମଜୁମଦାର । ମଣିଷର ଅସାଧ୍ୟ କିଛି ନାହିଁ ଏ ମହୀମଣ୍ଡଳରେ । ତା'ଛଡ଼ା ମୋ ଆଦେଶ ପାଳନ ନ କରି ଏ ପୃଥିବୀରେ ଆଜିଯାଏ କେହି ତ୍ରାହି ପାଇନାହାନ୍ତି । ଏଇ ନିଅ ଏ ପିସ୍ତଲ, ରଖ ଏ ଫଟୋଗ୍ରାଫ୍ । ମୋର ଏହି ଆଦେଶ ହିଁ ଶେଷ ଆଦେଶ । ତୁମେ କାଲି ରାତିରେ ପ୍ରସ୍ତୁତ ହୋଇ ଥିବ । ଆମ ଲୋକ ଯାଇ ତମକୁ ଡାକି ଆଣିବ ।

ସେଦିନ କିନ୍ତୁ ସନତ୍ ମଜୁମଦାର ଗୋଟିଏ ଭୁଲ କରି ବସିଥିଲେ । ସେଇ ମୁହୂର୍ତ୍ତରେ ସେ ପ୍ରତିବାଦ କରି ଅଧିନାୟକଙ୍କୁ କହିଥିଲେ : ଆପଣ ଲୋକ ଚିହ୍ନିବାରେ ଭୁଲ କରିଛନ୍ତି, ଆଜିର ଏହି ସଭ୍ୟ ସମାଜରେ ମୋ'ପରି ଜଣେ ଆଲୋକପ୍ରାପ୍ତ ଲୋକଙ୍କୁ ଆପଣ କଳାବଜାରରେ ଲଗାଇପାରିବେ ନାହିଁ । ଲଗାଇଲେ ବି ଆପଣଙ୍କର ଭବିଷ୍ୟତ ମଙ୍ଗଳ ହେବ ନାହିଁ ।

ଅଧିନାୟକ ଆହୁରି ଜୋର୍‌ରେ ଚିତ୍କାର କରି ଉଠୁଥିଲେ । କିନ୍ତୁ ଠିକ୍ ସେତିକିବେଳେ ଘର ଭିତରେ ପ୍ରବେଶ କଲେ ଲଳିତା ମାଲହୋତ୍ରା । ଅଧିନାୟକଙ୍କର ଜ୍ୱଳନ୍ତ ଦୀପ୍ତି ଯେପରି

ହଠାତ୍ ଥମିଆସିଲା । ସେ ଧୀରେ ଧୀରେ ଉଠି ଘରୁ ବାହାରି ଯାଉ ଯାଉ କହିଥିଲେ : ମୋ ପ୍ରସ୍ତାବ ତମ ପାଇଁ ଲୋଭନୀୟ ପ୍ରସ୍ତାବ ମଜୁମଦାର । ପ୍ରଚୁର ଅର୍ଥ । ଏତେ ଅର୍ଥ ଉପାର୍ଜନର ଏପରି ସହଜପନ୍ଥା ଆଉ କିଛି ଖୋଜିପାଇବ ନାହିଁ ।

ଅଧିନାୟକ ଚାଲିଯାଇଥିଲେ ।

ଲଳିତା ସ୍ତବ୍ଧ । ସନତ୍ ଦେହରେ ହାତମାରି ଯେପରି ଦେହର ରକ୍ତ ସଞ୍ଚାଳିତ କରିଥିଲେ ।

ସେଦିନ ସେହି ରାତିରେ ଲଳିତା ମାଲହୋତ୍ରା ସନତ୍‌କୁ ସଙ୍ଗରେ ଧରି ଫେରିଯାଇଥିଲେ ଘରକୁ ।

ସେହି ରାତିର ଏ କାହାଣୀ ଧର୍ମାବତାର ! ସେଇଦିନ ରାତିରେ ସନତ୍ ମଜୁମଦାରକୁ ଲଳିତା ହାତରେ ପ୍ରାଣ ବିସର୍ଜନ ଦେବାକୁ ପଡ଼ିଥିଲା ।

ଇଓର ଅନର୍, ସେଇଦିନ ରାତିରେ, ଯେତେବେଳେ ଲଳିତା ମାଲହୋତ୍ରା ସନତ୍‌କୁ ଘରେ ପହୁଞ୍ଚାଇ ଦେଇ ଫେରିଯାଇଥିଲେ ତଥାକଥିତ ସେହି କ୍ଲବକୁ, ତାଙ୍କର ଅଧିନାୟକ ଲଳିତା ମାଲହୋତ୍ରାଙ୍କୁ ନିର୍ଦ୍ଦେଶ ଦେଇଥିଲେ, ଆଜି ରାତିରେ ଯେପରି ହେଉ ସନତ୍‌କୁ ଶେଷ କରିବାକୁ ହେବ, ନ ହେଲେ ଆମ ଦଳ ବିପଦର ସମ୍ମୁଖୀନ ହେବାର ସମ୍ଭାବନା ଅଛି ।

ସେଇ ମୁହୂର୍ତ୍ତରେ ଲଳିତା ମାଲହୋତ୍ରା କିଛି ଉତ୍କଟ ବିଷାକ୍ତ ପାଉଡର ଧରି ଫେରି ଆସିଥିଲେ ।

ଅର୍ଦ୍ଧ ରାତ୍ରିରେ, ଯେତେବେଳେ ସମସ୍ତେ ଶୋଇପଡ଼ିଥିଲେ, ଲଳିତା ପାଦ ଚିପି ଚିପି ଯାଇଥିଲେ ସନତ୍ ରୁମ୍‌କୁ । ସେତେବେଳଯାଏ ସନତ୍ ଆଖିରେ ନିଦ ଆସି ନଥିଲା । ସେ ବହି ଖଣ୍ଡିଏ ସାମ୍‌ନାରେ ମେଲାକରି ହୁଏତ ଚିନ୍ତା କରୁଥିଲେ ଘଟିଯାଇଥିବା ଘଟଣାଗୁଡ଼ିକୁ । ଲଳିତା ପ୍ରତି ମନ ତା'ର ଭରିଉଠୁଥିଲା ଘୃଣାରେ ।

ସେତିକିବେଳେ ଲଳିତା ପହଞ୍ଚିଲା ସନତ୍ ପାଖରେ । ସନତ୍ କିଛି କହିବା ପୂର୍ବରୁ ଲଳିତା କ୍ଷମାମାଗି ନେଇଥିଲା ଆଦର କରିଥିଲା । ଜୀବନରେ ଆଉ ଏପରି ଭୁଲ୍ ନ କରିବା ପାଇଁ ଶପଥ କରିଥିଲା ।

ତା'ପରେ ଧୀରେ ଧୀରେ ଆତ୍ମ ବିଶ୍ୱାସ ଫେରି ଆସିଥିଲା ସନତ୍‌ର ।

ସେଇ ମୁହୂର୍ତ୍ତରେ କେତେବେଳେ ସୁଯୋଗ ଉଣ୍ଡି ସନତ୍‌ର ଦୁଧ ଗ୍ଲାସରେ ଲଳିତା ଢାଳିଦେଇଥିଲେ କାଳକୁଟ ବିଷ। ଯାହା ଫଳରେ.......

: ଇଓର ଅନର । ସରକାର ପକ୍ଷର ଓକିଲଙ୍କର ମୋର ମକିଲ ବିରୋଧରେ ଏହା ସଂପୂର୍ଣ୍ଣ ଏକ କଳ୍ପିତ କାହାଣୀ । ଏ କାହାଣୀକୁ ଭିତ୍ତି କରି କୌଣସି ଗୁଇନ୍ଦା କାହାଣୀ ଲେଖା ଯାଇପାରେ, କିନ୍ତୁ ଅଦାଲତରେ, ଧର୍ମାବତାରଙ୍କ ସମ୍ମୁଖରେ ଏପରି ଏକ ଅବାସ୍ତବ କାହାଣୀ ନିଶ୍ଚୟ ଯେ ଭିତ୍ତିହୀନ, ମୁଁ ଆଶାକରୁଛି ଧର୍ବାବତାର ତାହା ସ୍ୱୀକାର କରିବେ ।

ବିଚାରପତି ପୁଣି ହାତ ହଲେଇ ମିଷ୍ଟର ଦାସଗୁପ୍ତଙ୍କୁ ବସିବାକୁ କହି କହିଲେ : ଆପଣଙ୍କ ପଏଣ୍ଟ ମୋର ମନେରହିଲା ।

ସରକାର ପକ୍ଷର ଓକିଲ ତା'ପରେ ଗମ୍ଭୀର ହୋଇ ଠିଆହୋଇ, କିଛି ସମୟ ଦର୍ଶକମଣ୍ଡଳୀ ଆଡ଼େ ଚାହିଁ ଫାଇଲରୁ ଆଉ ଖଣ୍ଡିଏ ଫଟୋଗ୍ରାଫ୍ ବାହାର କଲେ । କହିଲେ : ମୋର ବନ୍ଧୁ ମିଷ୍ଟର ଦାସଗୁପ୍ତ କହିଲେ, ଲଳିତା ମାଲହୋତ୍ରାଙ୍କ କାହାଣୀ କୌଣସି ଗୁଇନ୍ଦା କାହାଣୀ ହୋଇପାରେ । ମୁଁ ତାହା ସ୍ୱୀକାର କରୁଛି, କିନ୍ତୁ ଏ କାହାଣୀ ଗୁଇନ୍ଦା କାହାଣୀର କାନ କାଟି ଛାଡ଼ିଦେବା ଭଳି କାହାଣୀ । ଧର୍ମାବତାର, ଏ ଯେଉଁ ଫଟୋଗ୍ରାଫ୍ ଖଣ୍ଡିକ ଦେଖୁଛନ୍ତି ଏ ହେଉଛି ଲଳିତା ମାଲହୋତ୍ରାଙ୍କର ଫୁଟ୍‌ପ୍ରିଣ୍ଟ୍ । ସନତ୍ ମଜୁମଦାରଙ୍କର ଯେଉଁ ରାତ୍ରିରେ ମୃତ୍ୟୁ ହୁଏ, ସକାଳୁ ସନତ୍‌ର ଘରୁ ଯେଉଁ ଫୁଟପ୍ରିଣ୍ଟ୍ ମିଳିଥିଲା ଫୁଟ୍‌ପ୍ରିଣ୍ଟ୍ ବିଶେଷଜ୍ଞଙ୍କୁ ପଚାରିଥିଲେ ସତ୍ୟତା ସମ୍ବନ୍ଧରେ ।

ବିଶେଷଜ୍ଞ ସ୍ୱୀକାର କରିଥିଲେ ଯେ, ଏହି ଫୁଟ୍‌ପ୍ରିଣ୍ଟଟି ଲଳିତା ମାଲହୋତ୍ରାଙ୍କର । ସେ ପରୀକ୍ଷା କରି ଦେଖିଛନ୍ତି ।

ତା'ପରେ ବିଚାରପତି ଫଟୋଗ୍ରାଫ୍‌ଟି ବଢ଼ାଇ ଦେଇଥିଲେ ପେସ୍କାରଙ୍କ ହାତକୁ ।

ପେସ୍କାର ସେ ଖଣ୍ଡିକ ନଥିଭୁକ୍ତ କରିଥିଲେ ।

ଅଦାଲତରେ ସେତେବେଳେ ଅସମ୍ଭବ ଗୁଞ୍ଜରଣ ଉଠିଥିଲା । ଲଳିତା ମାଲହୋତ୍ରାଙ୍କ ବିରୋଧରେ ସରକାର ପକ୍ଷର ଓକିଲ ଯେଉଁ ଅକାଟ୍ୟ ପ୍ରମାଣ ସବୁ ସଂଗ୍ରହ କରିଛନ୍ତି, ସେଥିରୁ ଲଳିତା ମାଲହୋତ୍ରା ନିସ୍ତାର ପାଇବାର ବାଟ ନାହିଁ ।

ତା'ଛଡ଼ା ଏଭଳି ଚରିତ୍ର ସବୁ ଦେଶର କଳଙ୍କ ।

ସେମାନଙ୍କୁ ଉପଯୁକ୍ତ ଶାସ୍ତିହେବା ବାଞ୍ଛନୀୟ ।

ଏହିପରି ନାନା ପ୍ରକାର ଅଭିମତ ସହ ସମଗ୍ର କକ୍ଷରେ ଏକ ଗୁଞ୍ଜରଣ ଉଠି, କିପରି ଏକ ଅଦ୍ଭୁତ ବାତାବରଣ ସୃଷ୍ଟି ହୋଇଥିଲା ।

ବିଚାରପତି ଏସବୁ ଆଡ଼େ କାନ ନଦେଇ ନିଜ ମନକୁ କ'ଣ ସବୁ ଲେଖି ଚାଲିଥିଲେ ।

ତା'ପରେ ଏକ ସମୟରେ ଦର୍ଶକମଣ୍ଡଳୀ ଆଡ଼େ ଚାହିଁ ଚିତ୍କାର କରି ଉଠିଲେ : ଅର୍ଡର ଅର୍ଡର ।

ସମସ୍ତ ଗୁଞ୍ଜରଣ ସ୍ତବ୍ଧ ହୋଇଗଲା ।

ବିଚାରପତି ଚାରି ଆଡ଼କୁ ଥରେ ଚାହିଁଲେ । ଦୃଷ୍ଟି ନିବଦ୍ଧକଲେ ଲଳିତା ମାଲହୋତ୍ରା ଉପରେ ।

ତା'ପରେ ଉଠି ଠିଆହୋଇ, ଆସନ ତ୍ୟାଗ କରି ଚାଲିଗଲେ ।

ପେସ୍କାର ନଥିପତ୍ର ଦେଖି ଘୋଷଣା କଲେ : କାଲି ଦିନ ଏଗାରଟାଠାରୁ ପୁଣି ଏହି ମାମଲାର ଶୁଣାଣି ଆରମ୍ଭ ହେବ ।

: ଇଓର ଅନର ! କାଲି ମୋର ମହକିଲ ଲଳିତା ମାଲହୋତ୍ରାଙ୍କର ସମ୍ବନ୍ଧରେ ସରକାର ପକ୍ଷରୁ ଅନେକ କଥା ଶୁଣିଛନ୍ତି । ଲଳିତା ମାଲହୋତ୍ରା କିପରି ଅପରାଧପରାୟଣ ହୋଇ ସନତ୍ ମଜୁମଦାରଙ୍କୁ ହତ୍ୟା କରିଛନ୍ତି, ସବୁକଥା ମୋର ବନ୍ଧୁ ଆପଣଙ୍କ ସମ୍ମୁଖରେ କହିଛନ୍ତି ଏବଂ ଅପରାଧ ସମ୍ବଳିତ ବହୁ ତଥ୍ୟ ଅଦାଲତରେ ପେସ୍ କରିଛନ୍ତି । ଆଜି ମୋର ସେ ସବୁର ବିପକ୍ଷରେ ପ୍ରତିବାଦ କରିବାର କଥା । ଲଳିତା ମଲହୋତ୍ରାଙ୍କ ମୁକ୍ତି ପାଇଁ ସରକାରୀ ତଥ୍ୟ ବିରୋଧରେ ପ୍ରମାଣ ଉପସ୍ଥାପନ କରିବାର କଥା ।

କିନ୍ତୁ ଧର୍ମାବତାର, ମୁଁ ଆଜି ଆପଣଙ୍କ ସମ୍ମୁଖରେ ଏପରି ଏକ ତଥ୍ୟପୂର୍ଣ୍ଣ ଦଲିଲ ପେସ୍ କରିବି, ଯହିଁରୁ ଲଳିତା ମାଲହୋତ୍ରାଙ୍କ ଜନ୍ମ ରାତ୍ରିଠାରୁ, ସନତ୍ ମଜୁମଦାରଙ୍କ ହତ୍ୟା ରାତ୍ରି ପର୍ଯ୍ୟନ୍ତ ସବୁ କଥା ତହିଁରେ ଲିପିବଦ୍ଧ କରାହୋଇଛି ଏବଂ ସେ ଦଲିଲଟି ଅଦାଲତ ସମ୍ମୁଖରେ ଆଜି ଉପସ୍ଥାପନ କରିବା ପାଇଁ ନିର୍ଦ୍ଦେଶନାମା ରହିଛି । ସେ ଦଲିଲିଟି ପୋଲିସ୍ ଅଫିସର ମିଷ୍ଟର ଦେବନାଥଙ୍କ ତତ୍ତ୍ୱାବଧାନରେ ରହିଛି, ଆପଣ ଆଦେଶ କଲେ ସେ ଅଦାଲତରେ ପେସ୍ କରିବେ, ତା' ପରେ ମୁଁ ସେଇଟି ପଢ଼ି ଧର୍ମାବତାର, ଜୁରି ମହୋଦୟଗଣ ଏବଂ ସୁଧୀ ମଣ୍ଡଳୀଙ୍କୁ ଶୁଣାଇ ଦେବି । ତା'ପରେ ଧର୍ମାବତାର ଲଳିତା ମାଲହୋତ୍ରାଙ୍କ ସମ୍ବନ୍ଧରେ ରାୟ ଦେବେ ।

ଲଳିତା ମାଲହୋତ୍ରାଙ୍କ ପକ୍ଷର ଓକିଲ ମିଷ୍ଟର ଦାସଗୁପ୍ତଙ୍କର ବିଚାରପତିଙ୍କ ନିକଟରେ ଏହି ନିବେଦନ ଯେପରି ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା ।

ଗୁଞ୍ଜରଣ ଉଠିଥିଲା କକ୍ଷ ମଧ୍ୟରେ ।

ଅର୍ଡର, ଅର୍ଡର କହି ବିଚାରପତି ନୀରବ କରାଇ ଥିଲେ ଦର୍ଶକ ମଣ୍ଡଳୀଙ୍କୁ ।

ମିଷ୍ଟର ଦେବାନାଥ ବିଚାରପତିଙ୍କ ସାମ୍ନାରେ ପେସ୍ କରିଥିଲେ କେତେଖଣ୍ଡି ଲେଖା କାଗଜ ।

ବିଚାରପତି ପ୍ରଶ୍ନ କରିଥିଲେ : ଏ କାହା ହାତର ଲେଖା ?

ଦେବନାଥବାବୁ ଉତ୍ତର ଦେଇଥିଲେ : ଯମୁନା ଦେବୀଙ୍କର ।

ବିଚାରପତି ପ୍ରଶ୍ନ କରିଥିଲେ : ଯମୁନା ଦେବି କିଏ ?

ଦେବନାଥବାବୁ ଉତ୍ତର ଦେଇଥିଲେ : ଲଳିତା ମାଲୋହୋତ୍ରାଙ୍କ ମା'।

ବିଚାରପତି ପ୍ରଶ୍ନ କରିଥିଲେ : ଏହା ଯେ ଯମୁନା ଦେବୀଙ୍କ ହାତଲେଖା ଆପଣ ତା'ର ପ୍ରମାଣ ଦେଇପାରିବେ ? ଦେବନାଥବାବୁ କହିଥିଲେ : ପାରିବି ହଜୁର ।

ବିଚାରପତି ଲେଖାଗୁଡ଼ିକ ହାତକୁ ନେଇ ଦେଖିଲେ । ତା' ପରେ ମିଷ୍ଟର ଦାସଗୁପ୍ତଙ୍କୁ କହିଥିଲେ ପଢ଼ି ଶୁଣାଇବା ପାଇଁ ।

ମିଷ୍ଟର ଦାସଗୁପ୍ତ ଲେଖାଗୁଡ଼ିକ ଉପରେ ଥରେ କ୍ଷିପ୍ର ଚାହାଣି ବୁଲେଇ ନେଇ ପଢ଼ିବାକୁ ଆରମ୍ଭ କରିଥିଲେ : ଇଓର ଅନର !

ମୁଁ ଏ ଚିଠି ଲେଖିଲା ବେଳେ ମୋର ମସ୍ତିଷ୍କ ସଂପୂର୍ଣ୍ଣ ସୁସ୍ଥ ଅଛି । ମୁଁ ଯାହା ଲେଖୁଛି ସବୁ ସୁସ୍ଥ ମସ୍ତିଷ୍କରେ ଲେଖୁଛି । ଦୁନିଆରେ କାହାରି ପ୍ରତି ଆଜି ମୋର ଆକ୍ରୋଶ ନାହିଁ ।

ମୁଁ ଥିଲି ଏପରି ଏକ ପିତାଙ୍କର କନ୍ୟା, ଯିଏ ଏକଦା ଥିଲେ ବ୍ରିଟିଶ ବାହାଦୁରଙ୍କ ଘରେ ବଡ଼ ଚାକିରିଆ । ତେଣୁ ଆମ ଘରର ଚଳଣି ସବୁ ଥିଲା ପଶ୍ଚିମୀ ଢାଞ୍ଚାର । ଆମେ କେବଳ ସେମାନଙ୍କ ଚଳଣିର ଅନୁକରଣ ନାମରେ ଅନୁସରଣ କରୁଥିଲୁ । ତେଣୁ ଆମର ଚାଲିଚଳଣ, କଥାଭାଷା, ମିଜାଜ୍ ସବୁ ଥିଲା ଭିନ୍ନ ପ୍ରକାର । ଫଳରେ ଆମେ ଏ ଦେଶର କି ସେ ଦେଶର କାହାର ସଂସ୍କୃତି ସହିତ ଆମକୁ ମିଶାଇପାରୁ ନଥିଲା; କିନ୍ତୁ ଏ ଦେଶର ଲୋକମାନଙ୍କ ପ୍ରତି ଆମର ନଜର ଖୁବ୍ ହେୟ ଥିଲା । ଆମେ ମନେ ମନେ ଗର୍ବ ଓ ଗୌରବ ଅନୁଭବ କରୁଥିଲୁ ।

ମୋର ବିବାହ ଜଣକୁ ଲଭ୍ କରି । ତାଙ୍କର ସାମାଜିକ ଚଳଣି ପ୍ରତି ମୋର ଲକ୍ଷ୍ୟ ନଥିଲା । ଯାହା ଲକ୍ଷ୍ୟ ଥିଲା, ତାହା ହେଉଛି ତାଙ୍କର ପ୍ରଚୁର ଅର୍ଥ । ସେତେବେଳେ ମୁଁ ଭାବିଥିଲି କାଳକ୍ରମେ ମୁଁ ତାଙ୍କୁ ମୋରି ଜୀବନ ପଥର ପଥିକ କରିନେବି । ସେ ହୁଏତ ଭାବିଥିଲେ, ମୋତେ ତାଙ୍କ ଢ଼ାଞ୍ଚାର ଗଢ଼ିନେବେ । ସେ ତାଙ୍କ ମତରେ, ଆଉ ମୁଁ ମୋ ପଥରେ ଆଗେଇ ଚାଲିଥିଲୁ । ତାଙ୍କର ଘର ଆଡ଼େ ଚାହିଁବାକୁ ସମୟ ନଥିଲା । ମୋର ଆଧିପତ୍ୟ ଥିଲା ଆମ ସଂସାରରେ ।

ତା'ରି ଭିତରେ ବଡ଼ ହୋଇ ଉଠୁଥିଲା ଲଳିତା । ସବୁ ମୋରି ଶିକ୍ଷା ସଭ୍ୟତାର ଅନୁକରଣରେ ସେ ପୁଷ୍ଟ ହେଉଥିଲା ।

ଆମ ସଂସାର ବି ଚାଲିଥିଲା ଗୋଟାଏ ଅଦ୍ଭୁତ ଭାବରେ ।

ଆମେ କେହି କାହାର ଖବର ନେବାର ସମୟ ପାଉ ନଥିଲୁ ।

ଲଳିତାକୁ ଯେତେବେଳେ ଷୋ'ଳବର୍ଷ ହଠାତ୍ ଦିନେ ମୋର ସ୍ୱାମୀ କହିଲେ, ଲଳିତାର ବିବାହ ସେ ସ୍ଥିର କରି ସାରିଛନ୍ତି । ତାଙ୍କର ଜଣେ ପରିଚିତ ନୈଷ୍ଠିକ ବ୍ରାହ୍ମଣଙ୍କ ଘରେ । ପାତ୍ର ଯୋଗ୍ୟ । ବଂଶ ବୁନିଆଦିର ଗୌରବ ଅଛି । ଇତ୍ୟାଦି ଇତ୍ୟାଦି ।

ଏ ନେଇ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମତ ବିରୋଧ ହୋଇଥିଲା ସେଇ ପ୍ରଥମେ ।

ମୁଁ ଲଳିତାର ବିବାହରେ ଅମତ ହେଲି । ବଶେଷ କରି ଏତେ କମ୍ ବୟସରୁ ଲଳିତାର ବିବାହ ବିରୋଧରେ ମୁଁ ଝଡ଼ ଉଠାଇଲି । ସେ କିନ୍ତୁ ସ୍ଥିର ନିଶ୍ଚଳ । କଥା ଦେଇଛନ୍ତି ଯେତେବେଳେ, କଥା ସେ ରଖିବେ । ପୃଥିବୀ ପ୍ରଳୟ ହୋଇଗଲେ ବି ।

ଆମ ମା' ଝିଅଙ୍କର ବିରୋଧ ସତ୍ତ୍ୱେ, ଲଳିତାକୁ ସେ ବିବାହ ଦେଲେ । କିନ୍ତୁ ଲଳିତାର ଶିକ୍ଷା ଦୀକ୍ଷା ଯାହା, ସେଥିରେ ସେ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଚଳିପାରନ୍ତା କେତେଦିନ !!

ତଥାପି ଦୁଇ ତିନି ବର୍ଷ କୌଣସି ପ୍ରକାର କଟିଗଲା ।

ଲଳିତାର ଗୋଟିଏ ଝିଅ ବି ଜନ୍ମ ହେଲା । (ଯେଉଁ ଝିଅ ସେଲି, ଏବେ ବି ମୋ ପାଖରେ ଅଛି । କିନ୍ତୁ ଲଳିତାକୁ ସେ ମାଉସୀ ଡାକେ । ଅବଶ୍ୟ ମୁଁ ତାକୁ ସେପରି ଶିଖାଇଛି । ଲଳିତାକୁ କୁମାରୀ ବୋଲି ସମସ୍ତଙ୍କ ଆଗରେ ପରିଚିତ କରାଇଛି)

କେବଳ ଆମର ଅଧୁନା ସମାଜିକ ଚଳଣି, ମୋ ଭଳି କେତେକ ଅଧୁନା ଅଭିଜାତର ମୋହରେ ପଡ଼ି ନିଜର ତ ସର୍ବନାଶ କରୁଛନ୍ତି, ଉତ୍ତର ପୁରୁଷଙ୍କୁ ମଧ୍ୟ ହଳାହଳ ଭିତରେ ଛାଡ଼ିଯାଉଛନ୍ତି ।

କାଲି ମୁଁ ଧର୍ମାବତାରଙ୍କ ଅଦାଲତରେ ଉପସ୍ଥିତ ଥିଲି । ମୋର କନ୍ୟା ସନତ୍ ମଜୁମଦାଙ୍କ ହତ୍ୟା ଅପରାଧରେ ଅପରାଧିନୀ । ସେ କେଉଁପରି ଭାବରେ ଷଡ଼ଯନ୍ତ୍ର କରି, ସନତ୍ ମଜୁମଦାରଙ୍କୁ ହତ୍ୟା କରିଛି, ତା'ର ଏକ ବିଶ୍ୱାସଯୋଗ୍ୟ କାହାଣୀ ସରକାର ପକ୍ଷର ଓକିଲ ଅଦାଲତକୁ ଶୁଣାଇଛନ୍ତି । କେତେଗୁଡ଼ିଏ ପ୍ରମାଣ ମଧ୍ୟ ଅଦାଲତରେ ପେସ୍ କରିଛନ୍ତି । ସେହି ପ୍ରମାଣଗୁଡ଼ିକୁ ଖଣ୍ଡନ କରି ନ ପାରିଲେ, ଲଳିତା ମୁକ୍ତିପାଇବ ନାହିଁ, ଶାସ୍ତି ତା'ର ଅବଧାରିତ ।

ଅଦାଲତ ଏକ ଧର୍ମପୀଠ । କୌଣସି ଅବିଚାର ଯେପରି ଏଠାରେ ନ ହୁଏ, କୌଣସି ନିରପରାଧୀ ଯେପରି ଶାସ୍ତି ନ ପାଏ, ସେଥିପାଇଁ ଅଦାଲତରେ ସବୁ ପ୍ରକାର ବ୍ୟବସ୍ଥା କରାହୋଇଛି । ସେହି ଅନୁସାରେ ନିୟମ ପ୍ରଣୟନ ହୋଇଛି । ତଥାପି ମୁଁ ଦେଖୁଛି ଲଳିତା ବିରୋଧରେ ଯେଉଁ ଅକାଟ୍ୟ ପ୍ରମାଣ ସବୁ ସଂଗ୍ରହ କରାହୋଇଛି, ସେଥିରୁ ସେ ନିସ୍ତାର ପାଇବ ନାହିଁ ।

କିନ୍ତୁ ମୁଁ ଜାଣେ ଲଳିତା ସନତ୍‌କୁ ହତ୍ୟା କରି ନାହିଁ । ଆହୁରି ମଧ୍ୟ ଜାଣେ ଯେ ସନତ୍ ଆତ୍ମହତ୍ୟା କରିନାହିଁ, ଆହୁରି ମଧ୍ୟ ଜାଣେ ଯେ ସନତ୍‌କୁ କିଏ ହତ୍ୟା କରିଛି । କିନ୍ତୁ ମୁଁ ହତ୍ୟାକାରୀର ନାଁ ଆଦାଲତ ସାମନାରେ ପେସ୍ କଲେ କେହି ବିଶ୍ୱାସ କରିବେ ନାହିଁ; କାରଣ ହତ୍ୟାକାରୀ ବିରୁଦ୍ଧରେ କୌଣସି ପ୍ରମାଣ ମୋ ପାଖରେ ନାହିଁ ।

ସେ ଯା'ହେଉ, ଲଳିତା ଯେ ସନତ୍‌ର ହତ୍ୟାକାରୀ ସେଇଆକୁ ପ୍ରମାଣିତ କରେଇବାକୁ ଯାଇ, କାଲି ସରକାର ପକ୍ଷର ଓକିଲ ଯେଉଁ ଗଳ୍ପଟିର ଅବତାରଣା କରିଛନ୍ତି, ମୁଁ କେବଳ ତା'ରି ବିରୋଧରେ କିଛି କହି, ଲଳିତାର ସାମାଜିକ ଜୀବନ ଯାପନର ବାତାବରଣ ସମ୍ବନ୍ଧରେ କିଛି କହିବି ।

ସରକାର ପକ୍ଷର ଓକିଲ ଠିକ୍ କହିଥିଲେ ଯେ, ସନତ୍ ସହିତ ଲଳିତାର ପ୍ରେମ ନିଗୂଢ଼ ଭାବରେ ଗଢ଼ି ଉଠୁଛି । ଲଳିତା ସନତ୍ ମନରେ ଆସ୍ଥା ସ୍ଥାପନ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଛି ।

ଏସବୁ ସତ, ଏଥିରେ ମୁଁ ଏକମତ । କିନ୍ତୁ ସରକାର ଓକିଲଙ୍କର ଯାହା କଳ୍ପନା ପ୍ରସୁତ, ତାହା ହେଉଛି ସନତ୍ ବିରୋଧରେ ଲଳିତାର ଚକ୍ରାନ୍ତ । ଲଳିତା ସନତ୍ ବିରୋଧରେ କୌଣସି କଥା ସ୍ୱପ୍ନରେ ମଧ୍ୟ ଚିନ୍ତା କରି ପାରି ନ ଥିଲା । କାରଣ ଲଳିତା ମନ ପ୍ରାଣରେ ସନତ୍‌କୁ ଭଲପାଉଥିଲା । ତା' ଭଲ ପାଇବା ମୂଳରେ ଯେଉଁ ଉଦ୍ଦେଶ୍ୟ ଥିଲା, ତାହା ସନତ୍‌କୁ ବିପନ୍ନ କରିବା ପାଇଁ ନୁହେଁ; ସନତ୍ କୋଳରେ ମୁଣ୍ଡଗୁଞ୍ଜି ଚିର ଜୀବନ ଟିକଏ ଆଶ୍ରୟ ଲୋଡ଼ିବା ।

କିନ୍ତୁ ତାହା କାହିଁକି ସମ୍ଭବ ହେଲା ନାହିଁ ?

ମୁଁ ତା'ର ମା'। ଆଜି ବହୁ କଷ୍ଟରେ ମୁଁ ସତ୍ୟ ସ୍ୱୀକାର କରୁଛି ।

ଏହି ସତ୍ୟ ସ୍ୱୀକାର କରିବା ପୂର୍ବରୁ ସଂକ୍ଷେପରେ ମୁଁ ଆମ ପାରିବାରିକ ଜୀବନର କଥା ଦି'ପଦ ନ କହିଲେ ଚଳିବ ନାହିଁ ।

ତା'ପରେ ଲଳିତାପକ୍ଷରେ ଶାଶୂ ଶଶୁର, ଆତ୍ମୀୟ ପରିଜନପୂର୍ଣ୍ଣ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାର ରହିବ, ଦୁଇବେଳା ରୋଷେଇ କରିବା ମୋଟେ ସମ୍ଭବ ହେଲାନାହିଁ ।

ମୁଁ ଲଳିତାକୁ ଆଉ ସେମାନଙ୍କ ଘରକୁ ପଠାଇଲି ନାହିଁ । ଲଳିତାର ବାପା ବହୁ ଚେଷ୍ଟା କରିଥିଲେ, ଫଳରେ ତାଙ୍କ ମୋ ଭିତରେ ଏପରି ମତାନୈକ୍ୟ ହେଲା ଯେ, ମୁଁ ଲଳିତା ଓ ତା'ର ସନ୍ତାନକୁ ଧରି ଦୂରେଇ ଯିବାକୁ ବାଧ୍ୟ ହେଲି । ଯା' ଫଳରେ ଆମର ଜୀବନ ସ୍ରୋତ ଏକ ଭିନ୍ନମୁଖୀ ହୋଇ ବହି ଚାଲିଲା ।

ମୁଁ ଯେତେବେଳେ ମୋ ସ୍ୱାମୀଙ୍କ ଠାରୁ ଚିରଦିନ ପାଇଁ ସବୁ ସମ୍ପର୍କ ତୁଟେଇ ଦେଇ, ଲଳିତାକୁ ସଙ୍ଗରେ ଧରି ଘରୁ ଗୋଡ଼ କାଢ଼ି ବାହାରି ଆସିଲି, ସେତେବେଳେ ମୋ ନାଁରେ ଓ ଲଳିତା ନାଁରେ ବ୍ୟାଙ୍କରେ ଥିଲା ପ୍ରଚୁର ଅର୍ଥ ।

କିନ୍ତୁ........

ଭଗବାନ ହୁଏତ ଆମର ଅନ୍ୟାୟ ସହ୍ୟ କରି ପାରିଲେ ନାହିଁ । ତିନି ଚାରଟି ମାସ ପରେ ସେ ବ୍ୟାଙ୍କ୍ ଫେଲ୍ ହୋଇଗଲା । ଆଉ ଆମକୁ କରିଗଲା ପଥର ଭିକାରି ।

ତା'ପରେ ହତାଶାର ଏକ କରାଳ ମୂର୍ତ୍ତି ମୋ ଆଖି ଆଗରେ ଦିନ ରାତି ନୃତ୍ୟ କରିବାକୁ ଲାଗିଲା । କ'ଣ କରିବି, କୁଆଡ଼େ ଯିବି ? କିପରି ବଞ୍ଚାଇ ରଖିବି ମୋର ମାନ, ସମ୍ମାନ, ପ୍ରତିପତ୍ତି !

ସୁଖର ସାଥୀମାନେ ଆମକୁ ଛାଡ଼ି ଅଲଗା ହୋଇଗଲେ ।

ଲଳିତା ମୋ ମନର ଏହି ଦ୍ୱନ୍ଦ୍ୱ ବୁଝିପାରିଲା ।

କିନ୍ତୁ ସେ ବା କ'ଣ କରିପାରିବ ?

ଶେଷରେ ସେ ଗୋଟାଏ ଚାକିରି ଯୋଗାଡ଼ କରି ମୋତେ ଆସି ଜଣାଇଲା । ଚାକିରିକୁ ଗଲା ମଧ୍ୟ ମାସ କେଇଟି । ମାତ୍ର ସେତିକି ଟଙ୍କାରେ ଆମର ଚଳିବ କିପରି ? ସମୁଦ୍ରକୁ ଶଙ୍ଖେ ପାଣି !!

ଅବଶ୍ୟ ଆମେ ଯଦି ଅତି ସାଧାରଣ ଭାବରେ ଆମର ଜୀବନଯାତ୍ରା ନିର୍ବାହ କରିବାକୁ ଚେଷ୍ଟା କରି ଥାଆନ୍ତୁ, ତେବେ ଆମେ ଚଳିଯାଇଥାଆନ୍ତୁ କୌଣସି ପ୍ରକାର ।

କିନ୍ତୁ ମୋର ଅଭିଜାତ୍ୟ ମୋତେ ସବୁବେଳେ ଦଂଶନ କଲା । କଲିକତାରେ ଚତୁର୍ଦ୍ଦିଗରେ ଆମର ଯେଉଁ ବନ୍ଧୁ ବାନ୍ଧବ, ଆତ୍ମୀୟ ସ୍ୱଜନମାନେ ଭିଡ଼ କରି ରହିଛନ୍ତି, ସେମାନେ ଆମର ପତନ ଦେଖିଲେ ନିଶ୍ଚୟ ତାଳିମାରି ହସିବେ ।

ଅସମ୍ଭବ ! ସତ୍ୟନାରାୟଣ ମୁଖାର୍ଜୀଙ୍କ କନ୍ୟା ଏପରି ଆଖି ମିଟିକା ସହିବାକୁ ଜନ୍ମ ହୋଇ ନାହିଁ ।

ତେବେ ଅନ୍ୟ ପଥ କ'ଣ ?

ଧୀରେ ସମସ୍ତ ଗହଣା ନିଃଶେଷ ହେବାକୁ ଲାଗିଲା । ମୁଁ ଖାଲି ଶୋଇ ଶୋଇ ଆଖି ବୁଜି ଦିନକଟାଇ ଚାଲିଲି ।

କେବଳ ଅନ୍ଧକାର. ଚତର୍ଦ୍ଦିଗରେ ମହାକାଳର ଛାୟା ।

ଲଳିତା ଦିନେ ଆସି ମୋ ମୁଣ୍ଡ ପାଖରେ ବସି, ଆଉଁସି ଦେଇ କହିଲା : ଆଉ ତୁମକୁ ଚିନ୍ତା କରିବାକୁ ହେବ ନାହିଁ ମା', ମୁଁ ଗୋଟାଏ ଭଲ ଚାକିରୀ ପାଇଛି । ଆପାତତଃ ମାସକୁ ହଜାରେ ଟଙ୍କା ମିଳିବ । ପରେ ଅବଶ୍ୟ ଆହୁରି ଅଧିକ ଉପାର୍ଜନ କରିପାରିବି ।

ସେଦିନ ମୁଁ ସ୍ତବ୍ଧ ହୋଇ ଲଳିତା ମୁହଁକୁ ଚାହିଁଥିଲି ।

ତା'ର ବେଶଭୂଷାରେ ପରିବର୍ତ୍ତନ ହୋଇଛି । ମୁହଁରୁ ହତାଶାର ଛାୟା ଲିଭିଛି । ଆଖିରେ ଆଶାର ଦୀପ୍ତି ଫୁଟିଛି ।

ମୁଁ କେତେବେଳେଯାଏ ସେଦିନ ଲଳିତା ମୁହଁକୁ ଚାହିଁ ବସିଥିଲି ମୋର ମନେ ନାହିଁ । ତାକୁ ପଚାରି ପାରି ନଥିଲି କାର୍ଯ୍ୟର ଧାରାଟା କ'ଣ, କିଏ ତାକୁ ଏତେ ଟଙ୍କା ରୋଜଗାରର ପଥ ବତେଇଦେଲା ।

ପଚାରିବାକୁ ସାହସ କରି ପାରି ନଥିଲି । ଆମର ସେତେବେଳେ ଟଙ୍କାର ପ୍ରୟୋଜନ ଥିଲା ।

ମୁଁ ନୀରବରେ ଲଳିତାକୁ ମୋ କୋଳକୁ ଆଉଜାଇ ନେଇଥିଲି । ମୋ ଅଶ୍ରୁ ସେଦିନ ବାଧା ମାନି ନଥିଲା ।

କିଛି ସମୟ ପରେ ଲଳିତା ମୋତେ ଆଣି ପରିଚୟ କରାଇ ଦେଇଥିଲା ଜଣେ ଯୁବକ ସହିତ ।

ମୋତେ ହସି ହସି କହିଥିଲା : ଏଇ ମୋର ବସ୍, ଏଇ ମୋର ବନ୍ଧୁ ଏଇ ମୋର ସାହାଯ୍ୟ କର୍ତ୍ତା ।

ଯୁବକଟି ମୋର ପାଦଧୂଳି ନେଇ ହସିଥିଲା । କହିଥିଲା : ମିସ୍ ମାଲହୋତ୍ରା ଟିକିଏ ଅଧିକ କହି ପକାଉଛନ୍ତି । ଆପଣ ତାଙ୍କ କଥା ମୋଟେ ବିଶ୍ୱାସ କରିବେ ନାହିଁ ।

ସେଦିନ ସେହି ଯୁବକଟିର ବ୍ୟବସାୟ ସମ୍ବନ୍ଧରେ କୌଣସି ପ୍ରଶ୍ନ କରିବାକୁ ମଧ୍ୟ ମୋର ସାହସ ହୋଇ ନଥିଲା । ମୁଁ ଭୟ କରୁଥିଲି, କାଳେ ଯଦି ମୋର ରୁଚି ବିରୋଧ କାର୍ଯ୍ୟ କିଛି ହୋଇଥାଏ ! ସେଥିପାଇଁ ମୁଁ ନୀରବ ରହିଥିଲି; କାରଣ ଯେକୌଣସି ଉପାୟରେ ହେଉ, ଟଙ୍କାର ମୋର ପ୍ରୟୋଜନ ଥିଲା ।

ସେହିଦିନ ଠାରୁ ଲଳିତା ମୁହଁରେ ମୁଁ ହସ ଦେଖିଥିଲି, ନିଜେ ବି ମୁଁ ହସିଥିଲି । ଦୁଶ୍ଚିନ୍ତା ଧୀରେ ଧୀରେ ମୋ ମନରୁ ଦୂରେଇ ଯିବାକୁ ଲାଗିଲା ।

କିନ୍ତୁ ଲକ୍ଷ୍ୟ କଲି, ଲଳିତାର ପରିବର୍ତ୍ତନ ।

ବେଶ, ପୋଷାକ, ଆଚାର, ଆଚରଣରେ ସେ ଯେପରି ଆହୁରି ଆଧୁନିକା ହୋଇ ଉଠୁଛି; ଯେଉଁଟାକି ମୋ ଆଖିରେ ପୀଡ଼ା ସୃଷ୍ଟି କରିଥିଲା ।

ତଥାପି ମୁଁ ନୀରବ ରହିଥିଲି । କାରଣ ଟଙ୍କାର ମୋର ପ୍ରୟୋଜନ ଥିଲା । ଆତ୍ମୀୟସ୍ୱଜନଙ୍କ ସମ୍ମୁଖରେ ମୁଣ୍ଡଟେକି ଚାଲିବା ମୋ'ର ଆବଶ୍ୟକ ଥିଲା ।

ଧୀରେ ଧୀରେ ଲକ୍ଷ୍ୟ କଲି, ଲଳିତାର ଆହୁରି ପରିବର୍ତ୍ତନ ହୋଇଛି । କେଉଁଦିନ କେତେ ରାତିରେ ଘରକୁ ଫେରୁଛି, ତା'ର କିଛି ଧରାବନ୍ଧା ନିୟମ ନାହିଁ । କେଉଁଦିନ ଘରକୁ

ଫେରୁଛି, ମାତାଲ ହୋଇ, କେଉଁଦିନ ରାତିରେ ଫେରୁଛି ଗୀତ ଗାଇ ଗାଇ, ଆଉ କେଉଁଦିନ ଫେରୁଛି ଅର୍ଦ୍ଧ ଉଲଙ୍ଗ ହୋଇ ।

ତଥାପି ମୁଁ ନୀରବ ରହୁଥିଲି ।

ଆଢୁଆଳରେ ଥାଇ ଲଳିତାର ସମସ୍ତ ଆଚରଣ ଲକ୍ଷ୍ୟ କରି ମଧ, ମୁହଁ ଖୋଲି ପଦେ କିଛି ପଚାରି ପାରୁ ନଥିଲି । କାଳେ ଯଦି ମୋର ପ୍ରଶ୍ନ ଲଳିତା ମନରେ କୌଣସି ଭାବାନ୍ତର ସୃଷ୍ଟି କରେ ! ତା'ହେଲେ ଆମର ଅବସ୍ଥା ହେବ କ'ଣ ? ଆମର ଟଙ୍କାର ପ୍ରୟୋଜନ ଥିଲା ।

ଆହୁରି କେତେଦିନ ପରେ ଏକ ନୂଆ କଥା ଦେଖିଲି । ଦିନବେଳେ ଲଳିତାକୁ ଦେଖା କରିବା ପାଇଁ କେହି କେହି ଧନୀ ଯୁବକ ଆସି ଘରେ ଉପସ୍ଥିତ ହେଲେ ।

ଲଳିତା ସେମାନଙ୍କ ସଂଗରେ ମୋର ପରିଚୟ କରାଇ ଦେଉଥିଲା । କିଏ ଖଣି ମାଲିକର ପୁଅ, କିଏ ରାଜକୁମାର, ଆଉ କିଏ ଜମିଦାରର ତନୟ ।

ସେମାନେ ମୋତେ ଦେଖି ହାତଯୋଡ଼ି କେବଳ ଗୋଟିଏ ନମସ୍କାର କରୁଥିଲେ । ଜୋର୍ କରି ହସିବାକୁ ଚେଷ୍ଟା କରୁଥିଲେ । ତା'ପରେ ଡ୍ରଇଂ ରୁମ୍‌ରେ ବସି ଲଳିତା ସହିତ ଗଳ୍ପ କରୁଥିଲେ ।

ପ୍ରକୃତରେ ସେମାନେ କିଏ, କାହିଁକି ଆସୁଥିଲେ, ଲଳିତା ସହିତ ସେମାନଙ୍କର କ'ଣ ଆବଶ୍ୟକ ଥିଲା, ସେ କଥା ମଧ ମୁଁ ସାହସ କରି ଲଳିତାକୁ ପଚାରିପାରୁ ନଥିଲି ।

କିନ୍ତୁ ଲଳିତା ମୋତେ ବେଳେବେଳେ ସଫେଇ ଦେବାକୁ ଯାଇ କହୁଥିଲା, ମୁଁ ଯେଉଁ କମ୍ପାନୀରେ କାମ ପାଇଛି, ମୋର ଡେଜିଗ୍‌ନେସନ ହେଉଛି, ପବ୍ଲିକ୍ ରିଲେସନ୍ ଅଫିସର । ତେଣୁ କମ୍ପାନୀର ସ୍ୱାର୍ଥଦୃଷ୍ଟିରୁ ଏଇସବୁ ବଡ଼ବଡ଼ିଆମାନଙ୍କ ସହିତ ମୋତେ ମିଳାମିଶା କରିବାକୁ ପଡୁଛି । ଏମାନେ ଯେତେବେଳେ ବମ୍ବେ, ମାଡ୍ରାସ, ଗୁଜରାଟ, ଦୀଲ୍ଲୀ ଆଦି ବିଭିନ୍ନ ସ୍ଥାନରୁ ଆସନ୍ତି, କମ୍ପାନୀର ସ୍ୱାର୍ଥ ଦୃଷ୍ଟିରୁ, ବ୍ୟବସାୟର ପ୍ରସାର ପାଇଁ ଏମାନଙ୍କୁ ଏଣ୍ଟେରଟେନ୍ କରିବାକୁ ପଡ଼ିଥାଏ ।

ଲଳିତା ମୁହଁରୁ ମୁଁ ସବୁକଥା ଶୁଣେ, ତା' ମୁହଁର ହସ ଦେଖେ । ବାଟ ଭାଙ୍ଗି ଚାଲିଯାଏ ।

ମାସ ଶେଷରେ ଆଶାତୀତ ଟଙ୍କା ଆଣି ଲଳିତା ମୋ ହାତରେ ଧରେଇ ଦିଏ । ମୁଁ ବିସ୍ମିତ ହୋଇ ନୋଟ୍‌ଗୁଡ଼ାକ ଆଡ଼େ ଚାହେଁ । ଲଳିତା ମୁହଁ ଆଡ଼େ ଚାହିଁଲେ, ସେ ହସେ ! କହେ, ଏ ମାସରେ ଓଭର୍ ଟାଇମ୍ ବହୁତ ସମୟ ଖଟିବାକୁ ହୋଇଥିଲା; ତେଣୁ ସେହି ପରିମାଣରେ ଅଧିକ ଟଙ୍କା ମିଳିଛି ।

ଶେଷରେ ଦିନେ ସବୁ ଦେହସୁହା ହୋଇଗଲା ।

ମୋର ଜଡ଼ତା କଟିଗଲା ।

ମୁଁ ସ୍ଥାନ ପରିବର୍ତ୍ତନ କଥା ଚିନ୍ତା କଲି । କାରଣ ଯେଉଁଠି ଆମେ ଥିଲୁ ସେଠାକାର ପ୍ରତିବେଶୀ ମହଲ ଆମକୁ ଟିକିଏ ଭିନ୍ନ ଚକ୍ଷୁରେ ଦେଖିବାକୁ ଆରମ୍ଭ କରି ଦେଇଥିଲେ ।

ଆମେ ଘର ପାଇଲୁ ସୂର୍ଯ୍ୟସେନ୍ ଷ୍ଟ୍ରୀଟ୍‌ରେ, ଗୋଟିଏ ସ୍ୱୟଂପୂର୍ଣ୍ଣ ଫ୍ଲାଟ୍ । ପରିବାରରେ ଆମେ ଅଢ଼େଇ ଜଣ ।

ଧୀରେ ଧୀରେ ଦୁଶ୍ଚିନ୍ତା ଆଉ ଦୁର୍ଭାବନାଗୁଡ଼ାକ ମନରୁ ଦୂରେଇ ଯାଉଥିଲା । ମୁଁ ଏକ ସୁସ୍ଥ ପରିବେଶ ଗଠନର ଚିନ୍ତା କରୁଥିଲି ।

ଠିକ୍ ସେତିକିବେଳେ ମୁଁ ଅନୁଭବ କଲି, ଲଳିତା ଯେପରି ଦିନକୁ ଦିନ ଅନ୍ୟ କିପରି ହୋଇଯାଉଛି ।

ଆହୁରି ଲକ୍ଷ୍ୟ କଲି ରୋଜଗାର ତା'ର ମାସ ପରେ ମାସ କମି କମି ଆସୁଛି ।

ଅବଶ୍ୟ ମା' ହିସାବରେ ଏସବୁ ସମ୍ବନ୍ଧରେ ମୁହଁ ଖୋଲି କିଛି ପଚାରିହେଲା ନାହିଁ । କିନ୍ତୁ ଲଳିତାର ହଠାତ୍ ଏହିପରି ଏକ ପରିବର୍ତ୍ତନର କାରଣ ମୁଁ ଅନୁସନ୍ଧାନ କରିବାକୁ ବାଧ ହୋଇଥିଲି ।

ମୋର ଅନୁସନ୍ଧାନ ଯେତେବେଳେ ସଫଳ ହେଲା, ମୁଁ ଜାଣିପାରିଲି, ଲଳିତାର ଏହି ପରିବର୍ତ୍ତନର ମୂଳସୂତ୍ର ରହିଛି ଆମରି କୋଠାର ତଳ ତାଲାରେ । ପ୍ରଫେସର ମଜୁମଦାରଙ୍କ ପୁତ୍ର ସନତ୍ ସହିତ ଲଳିତାର ଆନ୍ତରିକତା ଗଢ଼ିଉଠିଛି ।

ଉଠୁ, ତା'ର ତ ପୁଣି ଭବିଷ୍ୟତ ଅଛି । ଗୋଟିଏ ଜାଗାରୁ ତ ତା'ର ବୈବାହିକ ଜୀବନରେ ମୁଁ ପୂର୍ଣ୍ଣଚ୍ଛେଦ ଟାଣିସାରିଛି । ପୁଣି ଯଦି ଲଳିତା ଆଗେଇ ପାରି ତା' ଜୀବନ ସଂସ୍ଥାନର ଏକ ସ୍ଥାୟୀ ବ୍ୟବସ୍ଥା କରିପାରେ, ମୁଁ ସେଥିରେ ବାଧା ସୃଷ୍ଟି କରିବି କାହିଁକି ?

କିଛିଦିନ ଚୁପ୍ ରହିଗଲି ।

କିନ୍ତୁ ଲକ୍ଷ୍ୟ କଲି, ଲଳିତା ଯେପରି ଭାବରେ ସନତ୍ ସହିତ ଆଚରଣ ଆରମ୍ଭ କରିଛି, ହୁଏତ ସେ ଧରିନେଇଛି ଯେ ସନତ୍ ତା'ର ବିବାହିତ ସ୍ୱାମୀ । ତେଣୁ ଲଳିତା ଜଣକର ବିବାହିତା ସ୍ତ୍ରୀ ହିସାବରେ ଯେପରି ଚଳିବା କଥା, ସେହିପରି ଚଳଣି ଆରମ୍ଭ କରି ଦେଇଛି ।

ଅବଶ୍ୟ ମା' ହିସାବରେ ଲଳିତାର ଏହି ଆଚରଣରେ ମୋର ସୁଖୀ ହେବା କଥା ।

କିନ୍ତୁ ମୋ ପରି ମା' ପକ୍ଷରେ ଲଳିତାର ଏହି ନୀତି ଗ୍ରହଣ କରିବା କ'ଣ ସମ୍ଭବ ?

ଧୀରେ ଧୀରେ ଆମ ସଂସାରରେ ଅନଟନ ଆରମ୍ଭ ହୋଇଗଲା ।

ଲଳିତାକୁ ସବୁବେଳେ ଘରେ ଶୋଇରହୁଥିବାର ଦେଖି ଦିନେ ମୁଁ ତାକୁ ପଚାରିଲି : ତୁ ଆଉ ଅଫିସ୍ ଯାଉନୁ, ସବୁବେଳେ ଘରେ ଶୋଇରହିଛୁ, ସଂସାର ଚଳିବ କିପରି ?

ଲଳିତା ସେଦିନ ହସି ହସି ମୋତେ କହିଥିଲା କିଛିଦିନ ପାଇଁ ଛୁଟିନେଇଛି । ତା'ପରେ କିଛି ସମୟ ଚିନ୍ତା କରି ମୋତେ ପଚାରିଥିଲା, ମୁଁ ଯଦି ଚାକିରିଟା ଛାଡ଼ିଦିଏ ?

ଠିକ୍ ସେଇ ମୁହୂର୍ତ୍ତରେ ଲଳିତାକୁ ମୁଁ କିଛି ଉତ୍ତର ଦେଇପାରି ନଥିଲି । ଫେରି ଯାଇଥିଲି ନିଜର ଶୟନ କକ୍ଷକୁ ।

ବହୁତ ଚିନ୍ତା ଭାବନା ପରେ ମୁଁ ଆଉ କିଛି ସମାଧାନରେ ପହଞ୍ଚିପାରିନଥିଲି ।

ଦିନେ ମୁଁ ଜାଣିପାରିଲି ଯେ, ଆରଦିନ ସକାଳୁ, ସନତ୍ ଆଉ ଲଳିତା କୋର୍ଟରେ ଯାଇ ରେଜିଷ୍ଟ୍ରି ବିବାହ କରିବେ ।

ଧର୍ମାବତାର !

ସରକାରୀ ଓକିଲ ଠିକ୍ କହିଛନ୍ତି, ଅପରାଧୀ ଯେତେବେଳେ ସୁସ୍ଥ ମସ୍ତିଷ୍କରେ ସୁପରିକଳ୍ପିତ ଉପାୟରେ ଅପରାଧ କରେ, ସେତେବେଳେ ସେ ଆଗରୁ ତାର ଅପରାଧର ସମସ୍ତ ପ୍ରମାଣ ନିର୍ଭୁଲ ଭାବରେ ନିଶ୍ଚିହ୍ନ କରିବାର ବ୍ୟବସ୍ଥା କରିନେଇ ଥାଏ । ବିଶେଷ କରି ଅପରାଧୀ ଯଦି ଶିକ୍ଷିତ ଓ ବୁଦ୍ଧିମାନ ହୋଇଥାଏ ।

ସରକାର ପକ୍ଷର ଓକିଲଙ୍କର ଏହି ଉକ୍ତିକୁ ମୁଁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଛି । ଏହା ସତ ଯେ ସନତ୍‌ର ହତ୍ୟାକରୀ ବୁଦ୍ଧିମାନ ଆଉ ଶିକ୍ଷିତ । ସନତ୍‌ର ହତ୍ୟା ଚକ୍ରାନ୍ତ ପୂର୍ବ ପରିକଳ୍ପିତ ଏବଂ ଅପରାଧୀ ଅପରାଧର ସମସ୍ତ ଚିହ୍ନ ନିଶ୍ଚିହ୍ନ କରିବା ପାଇଁ ପ୍ରାଣପଣେ ଚେଷ୍ଟା କରଛି ।

ଏସବୁ ପରେ ବି ସରକାର ପକ୍ଷର ଓକିଲ ସନତ୍‌ର ହତ୍ୟା ରହସ୍ୟ ସମ୍ବନ୍ଧରେ ଲଳିତାକୁ କେନ୍ଦ୍ର କରି ଯେଉଁ ଗଳ୍ପର ଅବତାରଣା କରିଛନ୍ତି, ତାହା ସଂପୂର୍ଣ୍ଣ ରୂପେ କପୋଳ କଳ୍ପିତ ।

ସନତ୍‌ର ହତ୍ୟାକାରୀ ଲଳିତା ନୁହେଁ ।

ସନତ୍‌ର ହତ୍ୟା ପର୍ବ ଶେଷହେବା ପରେ ଲଳିତା ଯାଇଥିଲା ସନତ୍ ପାଖକୁ । ସେ ଯାଇ ପାଇଥିଲା ସନତ୍‌ର ମୃତ ଦେହ ।

ହତ୍ୟାକାରୀ ବହୁ ପୂର୍ବରୁ ସନତ୍‌କୁ ହତ୍ୟାକରି ଅପରାଧର ସମସ୍ତ ଚିହ୍ନ ନିଶ୍ଚିହ୍ନ କରି ଚାଲିଯାଇଥିବାରୁ, ପୋଲିସ୍ କୁକୁର ଅସଲ ହତ୍ୟାକାରୀର କୌଣସି ଗନ୍ଧ ପର୍ଯ୍ୟନ୍ତ ପାଇଲେ ନାହିଁ; କିନ୍ତୁ ପରେ ଲଳିତା ସେ ଘରକୁ ଆସିଥିବାରୁ ଏବଂ ସନତ୍‌କୁ ଦୁଇ ହାତରେ ଜଡ଼େଇ ଧରି ଆଖିର ଲୁହରେ ବସୁଧା ତିନ୍ତେଇଥିବାରୁ, କୁକୁର ଲଳିତାର ଦେହ ଗନ୍ଧର ଘ୍ରାଣ ବାରି, ତାକୁ କାମୁଡ଼ି ଧରିଥିଲା । ଫୁଟପ୍ରିଣ୍ଟ ଏକ୍‌ସପର୍ଟ ଲଳିତାର ପଦଚିହ୍ନ ଆବିଷ୍କାର କଲେ ।

କିନ୍ତୁ ଧର୍ମାବତାର, ସନତ୍‌ର ସେହି ଘର ଭିତରୁ ଆଉ ଯୋଡ଼ିଏ ଟେନିସ୍ ଜୋତାର ଛାପ ମିଳିଥିଲା । କିନ୍ତୁ ପୋଲିସ୍ ବିଭାଗ ସେହି ପାଦଦୁଇଟିର କିଛି ସନ୍ଧାନ ନ ପାଇବାରୁ, ସେହି ପାଦ ଚିହ୍ନ ଯୋଡ଼ିକର କୌଣସି ପ୍ରଶ୍ନ ଉଠାଇଲେ ନାହିଁ ଅଦାଲତରେ ।

କିନ୍ତୁ ମୁଁ ଜାଣେ ସେ ପାଦ ଚିହ୍ନ ପ୍ରକୃତ ଅପରାଧୀର । ସରକାରୀ ଓକିଲଙ୍କ ଭାଷାରେ ଶିକ୍ଷିତ ଓ ଚତୁର ଅପରାଧୀର । ଯିଏ ସନତ୍ ମଜୁମଦାରର ଦୁଧ ଗ୍ଲାସରେ ବିଷ ମିଶାଇ ତାକୁ ହତ୍ୟା କରଥିଲା । ସେ ଆସାମୀର ସନ୍ଧାନ କେହି ପାଇନାହାନ୍ତି, କେବେ ହୁଏତ ପାଇବେ ନାହିଁ; କିନ୍ତୁ ନିରପରାଧିନୀ ଲଳିତା ଶାସ୍ତି ପାଇବ; ଏଇଆ ତ ଆଜିକାଲିର ଯୁଗ ଧର୍ମାବତାର ।

ହେଉ, ଏଥର ମୁଁ ଆଉ ଦି'ପଦ କଥା କହି ମୋର ବକ୍ତବ୍ୟ ଶେଷ କରିବାକୁ ଚାହେଁ ।

ତା'ପରେ ଅପରାଧୀକୁ ମୁଁ ଧର୍ମାବତାରଙ୍କ ଅଦାଲତକୁ ଟାଣି ଆଣିବି । ବିଶ୍ୱାସ କରିବା ନ କରିବା ହଜୁର ଆଉ ଜୁରିମାନଙ୍କ ଉପରେ ନିର୍ଭର କରିବ ।

ପୁଣି ମୁଁ ମୋ ପୂର୍ବ ପ୍ରସଙ୍ଗକୁ ଫେରି ଆସୁଛି । ଯେତେବେଳେ ମୁଁ ଜାଣିପାରିଲି ଯେ, ଲଳିତା ଆଉ ସନତ୍ ସ୍ଥିର ନିଶ୍ଚିନ୍ତ ଯେ, କାଲି କୋର୍ଟରେ ସେମାନଙ୍କର ବିବାହ ପର୍ବ ଶେଷ କରିବେ, ସେତେବେଳେ ମୋ ଆଖିରୁ ନିଆଁ ଝରିପଡ଼ିଲା । ଅସମ୍ଭବ ! ଲଳିତା ଯଦି ସନତ୍ ସହିତ ସଂସାର କରେ, କୁଳବୋହୂ ହୁଏ, ତା'ହେଲେ ମୋର ଅବସ୍ଥା କ'ଣ ହେବ ?

ସେତେବେଳେ ମୋ ମୁଣ୍ଡରେ ଗୋଟାଏ ଦୁଷ୍ଟ ବୁଦ୍ଧିଖେଳିଗଲା । ଏହାର ଏକମାତ୍ର ସମାଧାନ ହେଉଛି, ମୁଁ ଯଦି କୌଣସି ଉପାୟରେ ସନତ୍‌କୁ ଲଳିତାର ଗତି ପଥରୁ ଘୁଞ୍ଚେଇ ଦେଇପାରେ ।

ଏହାଛଡ଼ା ସୁନ୍ଦର ସୁନିର୍ବାଚିତ ପନ୍ଥା ଦ୍ୱିତୀୟ କିଛି ମୁଁ ଖୋଜିପାଇଲି ନାହିଁ ।

ସବୁ ସତର୍କତା ଅବଲମ୍ବନ କରି, ପରିକଳ୍ପିତ ପଥରେ ମୁଁ ଆଗେଇ ଗଲି ।

ମୋ ପାଖରେ ବହୁ ପୂର୍ବରୁ ମୁଁ କିଛି ଉତ୍କଟ ବିଷ ସଂଗ୍ରହ କରି ରଖିଥିଲି । ଅବଶ୍ୟ ମୋ ପରିବାରର ଦୁଃସମୟର ସାଥୀ କରିବା ପାଇଁ । ସେହି ବିଷରୁ କିଛି ଅଂଶ ଗୋଟିଏ କାଗଜ ପୁଡ଼ିଆରେ ଭରି ମୁଁ ଓହ୍ଲେଇ ଗଲି ତଳକୁ । ସନତ୍ ଘରକୁ । ହାତରେ ଗ୍ଲୋଭସ୍ ପିନ୍ଧିଥିଲି, ପାଦରେ ଟେନିସ୍ ସୁ ପିନ୍ଧିଥିଲି ।

ମୁଁ ଜାଣିଥିଲି ସନତ୍ ଚେଇଁ ରହି ପଢୁଥିବ, ଆଉ ମୁଁ ଜାଣିଥିଲି ତା' ଦୁଧଗ୍ଲାସଟା ଟେବୁଲ ଉପରେ ଥୁଆହୋଇଥିବ । ସନତ୍‌କୁ ଶୋଇବାର ପୂର୍ବ ମୁହୂର୍ତ୍ତରେ ଦୁଧ ଗ୍ଲାସକ ପିଇ ଶୋଇ ପଡ଼େ । ଏଇଟା ତା'ର ଅଭ୍ୟାସ ।

କିନ୍ତୁ ସନତ୍ ଘରେ ପଶି ଦେଖିଲି, ଟେବୁଲ୍ ଉପରେ ମୁଣ୍ଡ ରଖି ସେ ଢୁଳେଇ ପଡ଼ିଛି । ମୁଁ ଏତେ ଧୀର ପଦ ଚାଳି ଘରେ ପ୍ରବେଶ କରିଥିଲି ଯେ, ସନତ୍ କିଛି ବୁଝିପାରି ନଥିଲା । ଅତି ସହଜରେ ଦୁଧଗ୍ଲାସରେ ବିଷ ଚୂନାତକ ଢାଳି ଦେଇ ମୁଁ ଫେରିଆସିଥିଲି । କେହି ବୁଝି ପାରି ନଥିଲେ, ଜାଣିପାରି ନଥିଲେ ।

ମୁଁ ସଫଳ ହେଲି, ମୋର ପରିକଳ୍ପନା ସଫଳ ହେଲା । କିନ୍ତୁ ଲଳିତା ତା'ପରେ କେତେବେଳେ ଯେ ସନତ୍ ଘରେ ପଶି ହତ୍ୟାର କଳଙ୍କ ଟୀକା ନିଜ କପାଳକୁ ଟାଣି ଆଣିଲା, ପୋଲିସ୍ କୁକୁର ଲକି ଆଉ ମିତା ଲଳିତାକୁ ଧରିବା ପରେ ମୁଁ ବୁଝି ପାରିଥିଲି ।

ଧର୍ମାବତାର ଆଉ ଜୁରିବୃନ୍ଦ । ସନତ୍ ମଜୁମଦାର ହତ୍ୟାକରୀ କିଏ ଏବେ ଆପଣମାନେ ବୁଝି ପାରିଛନ୍ତି । ଯଦି ଅବିଶ୍ୱାସ ଜନ୍ମେ ତେବେ ଯେଉଁ ଟେନିସ୍ ସୁ ପିନ୍ଧି ମୁଁ ସନତ୍ ଘରକୁ ଯାଇଥିଲି, ଯାହାର ଫୁଟ୍‌ପ୍ରିଣ୍ଟ୍ ଏବେ ବି ପୋଲିସ୍ ବିଭାଗରେ ବିଦ୍ୟମାନ, ସେହି ଟେନିସ୍ ସୁ ହଳକ ମୁଁ ଆମର ଡ୍ରଇଂରୁମ୍‌ର ଆଲମାରି ଭିତରେ ରଖିଯାଇଛି । ଆପଣମାନେ ବିଶେଷଜ୍ଞଙ୍କ ଦ୍ୱାରା ଫୁଟ୍‌ପ୍ରିଣ୍ଟ୍ ସହିତ ତାକୁ ମିଳାଇ ନେବେ ।

ଆଉ ଏକ ଅକାଟ୍ୟ ପ୍ରମାଣ ମୁଁ ରଖିଯାଇଛି ଆପଣମାନଙ୍କ ପାଇଁ । ଯେଉଁ ଉତ୍କଟ ବିଷ ଚୂନାରେ ସନତ୍‌ର ରକ୍ତ ପାଣି ପାଟିଥିଲା, ତା'ର ନମୁନା ସରକାରଙ୍କ ପରୀକ୍ଷାଗାରରେ ଅଜି ଯାଏ ରହିଥିବ ।

ଠିକ୍ ସେଇ ବିଷର ଅବିକଳ ସନ୍ଧାନ ପାଇବେ ମୋର ପରିତ୍ୟକ୍ତ ଗ୍ଲାସରୁ । ତା'ହେଲେ ସନତ୍‌ର ହତ୍ୟାକାରୀ ସମ୍ବନ୍ଧରେ ଆଉ କୌଣସି ସନ୍ଦେହ ରହିବ ନାହିଁ, କାହାରି ମନରେ ।

ମୁଁ ଆଜି ଏଇ ମୁହୂର୍ତ୍ତରେ ଏ କଥା ମଧ୍ୟ ସ୍ୱୀକାର କରିଯାଉଛି, ଯେ ମୁଁ ସୁସ୍ଥ ମନରେ, ଧୀର ମସ୍ତିଷ୍କରେ ନିଜେ ମୁଁ ଆତ୍ମହତ୍ୟା କରୁଛି । ମୋର ଏହି ମୃତ୍ୟୁ ପାଇଁ ଅନ୍ୟ କେହି ଦାୟୀ ନୁହନ୍ତି । ଜୀବନ ସଂଗ୍ରାମରେ ମୁଁ ହାରିଯାଇଛି ।

ଆଉ ମୋର ବଞ୍ଚିରହିବା ଉଚିତ ନୁହେଁ ।

ଧର୍ମାବତାର ଲଳିତାର ବିହିତ ବିଚାର କରିବେ, ଏଇ ବିଶ୍ୱାସ ନେଇ ମୁଁ ଚାଲି ଯାଉଛି ।

ଯମୁନା ମାଲହୋତ୍ରା

ମିଷ୍ଟର ଦାସଗୁପ୍ତ କାଗଜତକ ପଢ଼ିସାରି ପେସ୍କାରଙ୍କ ହାତକୁ ବଢ଼ାଇ ଦେଇ, ରୁମାଲରେ ଆଖିପୋଛିଲେ ।

ଅଦାଲତ ଗୃହ ଯେପରି ଏକ ମୂକ ଆଗାରରେ ପରିଣତ ହୋଇଯାଇଥିଲା ।

ବିଚାରପତି କଲମ କାମୁଡ଼ି ବସିରହିଥିଲେ ।

ଜୁରିମାନେ ମୁହଁ ଚୁହାଁଚୁହିଁ ହେଉଥିଲେ ।

ସେଦିନ ସେଉଠୁ ଶୁଣାଣି ବନ୍ଦ ରହିଥିଲା ।

ସର୍ବଶେଷ ସଂବାଦ ହେଉଛି, ବିଚାରପତି ଲଳିତାକୁ ନିର୍ଦ୍ଦୋଷରେ ଖଲାସ କରି ଦେଇଥିଲେ ।



ସକାଳ ନଅଟା ।

ସତ୍ୟବ୍ରତ ମହାପାତ୍ର ଚେମ୍ବରରେ ବସି ଖବର କାଗଜ ଉପରେ ଆଖି ବୁଲାଉଥିଲେ ।

ରିସେପ୍‌ସନିଷ୍ଟ ନୀଳିମା ସେତିକିବେଳେ ଫୋନ୍‌ରେ ଜଣାଇଲା ଯେ, ସଂଜୀବ ରାଉତରାୟ ତାଙ୍କର ଦର୍ଶନ ପ୍ରାର୍ଥୀ ।

: କିଏ ସଂଜୀବ ରାଉତରାୟ ? ସତ୍ୟବ୍ରତ ପଚାରିଲେ ।

ନୀଳିମା କହିଲା : ଭଦ୍ରଲୋକ ଖୋର୍ଦ୍ଧାରେ ରୁହନ୍ତି । ତାଙ୍କର ପ୍ରୟୋଜନୀୟ କଥା ସେ ଆପଣଙ୍କୁ କହିବେ । ତେଣୁ...

: ଆଛା, ମୋର ଆପଏଣ୍ଟମେଣ୍ଟ ରେଜିଷ୍ଟରଟା ଦେଖିଲ । ବର୍ତ୍ତମାନ କାହାର ଆସିବାର ବା ମୁଁ କେଉଁଠିକି ଯିବାର ନାହିଁ ତ ?

ଅଳ୍ପ ସମୟ ପରେ ନୀଳିମା କହିଲା : ସାଢ଼େ ଦଶଟାରେ ଲାୟଲି ଆପଣଙ୍କ ସହିତ ଦେଖାକରିବ ।

: ଲାୟଲି ! ସେ ପୁଣି କିଏ ?

: ଲାୟଲି ଗୋଟିଏ ଝିଅର ନାମ । କାଲି ସନ୍ଧ୍ୟାବେଳେ ସେ ଫୋନ୍ କରିଥିଲା । ଆପଣ ନ ଥିଲେ । ମୁଁ ତା'ର ଆପଏଣ୍ଟମେଣ୍ଟ ସାଢ଼େ ଦଶଟା ବେଳକୁ କରିଛି ।

: ଉଦ୍ଦେଶ୍ୟ ?

: ମୋତେ କିଛି କହି ନାହିଁ

: ହୁଁ, ବେଶ୍ । ତା'ହେଲେ ମିଷ୍ଟର ରାଉତରାୟଙ୍କୁ ପଠାଇଦିଅ ।

ନୀଳିମା ରିସିଭରଟା ରଖିଦେଇ ବାହାରକୁ ଉଠିଗଲା । ସଂଜୀବ ରାଉତରାୟ ଗାଡ଼ି ଭିତରେ ବସି ସିଗାରେଟ୍ ଟାଣୁଥିଲା ।

ନୀଳିମା କହିଲା : ଆସନ୍ତୁ । ମିଷ୍ଟର ମହାପାତ୍ର ଚେମ୍ବରକୁ ଆସିଲେଣି ।

ସଂଜୀବ ରାଉତରାୟ ଦରଜା ଖୋଲି ବାହାରକୁ ବାହାରି ଆସିଲା । ଯୁବକ । ପରିଚ୍ଛନ୍ନ । ସୁନ୍ଦର ସ୍ୱାସ୍ଥ୍ୟ । ଆଧୁନିକ ରୁଚିସମ୍ପନ୍ନ ।

ସଂଜୀବ ରାଉତରାୟ ନୀଳିମା ପଛେ ପଛେ ସତ୍ୟବ୍ରତ ମହାପାତ୍ରଙ୍କ ଚେମ୍ବରରେ ପ୍ରବେଶ କଲା ।

ନମସ୍କାର ବିନିମୟ ପରେ ସତ୍ୟବ୍ରତ ଖବର କାଗଜ ଖଣ୍ଡିକ ଚାରିଭାଙ୍ଗ କରି ବାଁ ପାଖକୁ ରଖିଦେଇ ସଂଜୀବ ରାଉତରାୟ ଉପରେ ଥରେ ଆଖି ବୁଲେଇ ନେଇ କହିଲେ : କୁହନ୍ତୁ ମିଷ୍ଟର ରାଉତରାୟ, ମୁଁ ଆପଣଙ୍କର କି କାମରେ ଲାଗିପାରିବି ?

ସଂଜୀବ ରାଉତରାୟ କିଛି ଭୂମିକା ନ ଦେଇ ଆରମ୍ଭ କଲା, ମୋର ପିତୃବିୟୋଗ ଘଟିଛି ଆଜକୁ ମାତ୍ର ସତେଇଶ ଦିନ ହେବ । ଆମ ସଂସାରରେ ମୁଁ ଏକା । ମୋ ବଡ଼ ଭଉଣୀର ବିବାହ ଅନେକ ଦିନରୁ ହୋଇଯାଇଛି । ସେମାନେ ଆସାମରେ ରହନ୍ତି । ମାତୃ ବିୟୋଗ ଘଟିଥିଲା ପାଞ୍ଚବର୍ଷ ପୂର୍ବରୁ । ଆମ ଘରେ ମୁଁ, ଗୋଟିଏ ଚାକର ଆଉ ଗୋଟିଏ ପଞ୍ଜାବୀ ଦରବାନ । ସେମାନେ ସବୁ ଅନେକ ଦିନରୁ ଅଛନ୍ତି । ଇତି ପୂର୍ବରୁ ମୁଁ ମୋଟେ ଘରେ ରହୁ ନ ଥିଲି । ପଢ଼ାପଢ଼ି ଓ ବନ୍ଧୁ ବାନ୍ଧବମାନଙ୍କ ମେଳରେ ବାହାରେ ବାହାରେ ମୋର ଦିନ କଟିଯାଉଥିଲା । ବର୍ଷେ ଛ ମାସରେ ଥରେ ଅଧେ କେବେ ତୀର୍ଥଯାତ୍ରୀ ପରି ଘରକୁ ଆସି ବାପାଙ୍କ ପାଦଧୂଳି ମୁଣ୍ଡରେ ମାରି ପୁଣି ଫେରିଯାଉଥିଲି । କିନ୍ତୁ ବାପାଙ୍କ ମୃତ୍ୟୁ ପରେ ଏ କେତେ ଦିନହେବ ମୁଁ ଆମ ଖୋର୍ଦ୍ଧା ଘରେ ରହିଛି ।

: ବେଶ ତ, ଆପଣଙ୍କ ଘରେ ଆପଣ ରହିଛନ୍ତି । ଏଥିରେ ବୈଚିତ୍ର୍ୟ କିଛି ଥିଲା ପରି ତ ମୋର ମନେହେଉ ନାହିଁ ।

: ଛି ମିଷ୍ଟର ମହାପାତ୍ର । ତା' ନ ହେଲେ ମୁଁ ଆପଣଙ୍କ ପାଖକୁ ଧାଇଁଆସି ନ ଥା'ନ୍ତି । ମୋର ମନେହେଉଛି, ମୋ ପଛରେ ଯେପରି କିଏ ବା କେଉଁମାନେ ଏକ ଷଡଯନ୍ତ୍ର ରଚନା କରି ଚାଲିଛନ୍ତି ।

: ଆପଣଙ୍କର ହଠାତ୍ ଏପରି ମନେହେବାର କାରଣ କଅଣ ?

: ଅବଶ୍ୟ କାରଣ କେତେକଟା ମୋର ଅନୁମାନ । ବାପାଙ୍କ ବିୟୋଗ ଘଟିଛି ମାତ୍ର ସତେଇଶ ଦିନ ହେବ; କିନ୍ତୁ ବାପାଙ୍କର ଏକାଦଶ କର୍ମ ଆଦି ଶେଷ ପରେ, ଦ୍ୱାଦଶ ଦିନ ମୁଁ ଯେତେବେଳେ କ୍ଳାନ୍ତ ହୋଇ, ବହୁ ଦୁର୍ଭାବନାର ବୋଝ ମୁଣ୍ଡରେ ମୁଣ୍ଡେଇ ବାରଣ୍ଡାରେ ଆରାମ ଚେଆର ଉପରେ ବସି ଚିନ୍ତା କରୁଛି ସେତେବେଳେ ମିଲ୍‌ଖା ସିଂ ଆସି ମୋତେ କହିଲା : ଜଣେ ମାରୁଆଡ଼ି ଆପଣଙ୍କ ସହିତ ଦେଖାକରିବାକୁ ଆସିଛନ୍ତି ।

: ମାରୁଆଡ଼ି ? ମୁଁ ମିଲ୍‌ଖା ସିଂ ଆଡ଼େ ଚାହିଁ ସ୍ୱଗତୋକ୍ତି କଲି ।

: ଜୀ ହଜୁର । ତାଙ୍କ ନାଁ ନରୋତ୍ତମ ଅଗରବାଲା ।

ନରୋତ୍ତମ ଅଗରବାଲା ଆସିଲେ । ପେଟଟା ବଡ଼ । ମୁଣ୍ଡଟି ଛୋଟ । ଗୁଣ୍ଡୁଣୀ ହାତୀ ପରି ଚାଲି । ପିନ୍ଧାଟା ତଳେ ଲୋଟୁଛି । କଛାଟା ବାଁ ହାତରେ ମାରୁ ମାରୁ ଆସି ମୋ'

ସାମ୍ନାରେ ବସିପଡ଼ି କହିଲେ : ନମସ୍କାର ସଂଜୀବବାବୁ । ଆପଣ ମୋତେ ଚିହ୍ନି ପାରିବେ ନାହିଁ । ବାପାଙ୍କ ସହିତ ମୋର ଅନେକ ଦିନର ବନ୍ଧୁତା । ବାପା ଥିଲେ ଉତ୍ତମ ଲୋକ । ତାଙ୍କ ପରି ଲୋକ ଏ ଖଣ୍ଡମଣ୍ଡଳରେ ବିରଳ ।

ମୁଁ ନରୋତ୍ତମ ଅଗରବାଲାଙ୍କ ଉଦ୍ଦେଶ୍ୟ କିଛି ବୁଝିପାରିଲି ନାହିଁ କେବଳ ଚାହିଁଥିଲି ଆଉ ଶୁଣୁଥିଲି । ତାଙ୍କ କଥା ଶେଷ ହେଲା ।

ଅଣ୍ଟାରୁ ନାସ ବଟାଟି ବାହାର କରି ଟିପେ ନାସ ଶୁଙ୍ଘିଲେ, ମୋ'ଆଡକୁ ନାସ ବଟାଟି ବଢ଼ାଇବାରେ ତ୍ରୁଟି କରି ନ ଥିଲେ ।

ମୁଁ ବାରଣ କଲି ।

ଅଗରବାଲାଜୀ ନାସ ସୁଙ୍ଘିସାରି ଖୁବ୍ ଜୋରରେ ଦୁଇ ଚାରିଥର ଛିଙ୍କିଲେ । ନାକ ପରିଷ୍କାର କରିଆସିଲେ । ପୁଣି ଆସି ମୋ ସାମ୍ନାରେ ବସୁ ବସୁ କହିଲେ : ସଂଜୟ ବାବୁ, ଦୁନିଆର ନିୟମ ଏଇଆ । ମୁଁ ବି ଦିନେ ଚାଲିଯିବି । ଆପଣ ବି ଚାଲିଯିବେ । କିଛି ଚିରସ୍ଥାୟୀ ନୁହେଁ । କେବଳ କର୍ମ ହିଁ ମଣିଷକୁ ବଞ୍ଚେଇ ରଖିବ, ଯେପରି ଆପଣଙ୍କର ବାପା ।

ମୋତେ ଏହି ଅଗରବାଲାଙ୍କ ଦର୍ଶନ ତତ୍ତ୍ୱ ମୋଟେ ଭଲଲାଗୁ ନ ଥିଲା । ମୁଁ କହିଲି : ଆପଣ କାହିଁକି ଆସିଛନ୍ତି, ମୋ ସହିତ ଆପଣଙ୍କର କି କାମ ଅଛି ଶୀଘ୍ର ଶେଷ କରି ଯାଆନ୍ତୁ ତ !

ମୋର ଏହି ବିରକ୍ତି ବୋଧରେ ଅଗରବାଲାଜୀ ମୋଟେ ବିଚଳିତ ହେଲେ ନାହିଁ । ତାଙ୍କ ମୁହଁର ଭାବ ସାମାନ୍ୟ ଭାବରେ ବି ବଦଳିଲା ନାହିଁ । ସେ କହିଲେ : ମୁଁ କ'ଣ କହିବି ସଂଜୟବାବୁ । ଟଙ୍କା ମୁଁ ସଙ୍ଗରେ ଧରି ଆସିଛି । ଖାଲି ଆପଣ ପରିମାଣଟା କହିଲେ ହେଲା ।

: ଟଙ୍କା ? ମୁଁ ଆଶ୍ଚର୍ଯ୍ୟ ହୋଇ ଅଗରବାଲାଙ୍କ ମୁହଁକୁ ଚାହିଁଲି । ଅଗରବାଲା କିପରି ବିଷାକ୍ତ ହସ ଟିକେ ହସି କହିଲେ-

: ରଣଜିତ୍ ବାବୁ ଆପଣଙ୍କୁ କିଛି କହିଯାଇ ନାହାନ୍ତି ?

: କୋଉ କଥା ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

: ଆରେ ସଂଜୟବାବୁ ! ମୁଁ ଜାଣେ ବାପା ଆପଣଙ୍କୁ ସବୁ କଥା କହି ଯାଇଛନ୍ତି । ଲେଖାପଢ଼ି ବି ହେଇ ଯାଇଥିଲା । ଆପଣ ତାଙ୍କ ସିନ୍ଦୁକପତ୍ର ତଲାସ କଲେ ହୁଏତ ଲେଖାଟା କେଉଁଠି ବାହାରିବ ।

ଧୀରେ ଧୀରେ ମୋର ଧୈର୍ଯ୍ୟର ସୀମା ଟପିଯାଉଥିଲା । ମୁଁ ବିରକ୍ତ ହୋଇ କହିଲି,

: ଆପଣ ଆଚ୍ଛା ଲୋକ ତ ! କଥାଟା କ'ଣ କୁହନ୍ତୁ !

ଏଥର ଅଗରବାଲାଙ୍କର ପୁଣି ସେହିଭୂମିକା । ସେ ଅଣ୍ଟାରୁ କ'ଣ ଗୋଟାଏ ଖୋଲୁ ଖୋଲୁ କହିଲେ : ନା, ବର୍ତ୍ତମାନ ଆପଣଙ୍କ ମନମିଜାସ ଭଲ ନାହିଁ । ଆଜି ମୁଁ ଉଠୁଛି । ଆପଣ ଏଇ ଟଙ୍କା ତକ ରଖି ଥାଆନ୍ତୁ, ଦି'ଚାରିଦିନ ପରେ ଆସି ଫାଇନାଲ କରି ଦେଇଯିବି ।

ଅଗରବାଲା ଅଣ୍ଟାରେ ଗୁଡେଇଥିବା ଗୋଟାଏ ଲମ୍ବା ଥଳିଆ ବାହାର କରି ଟେବୁଲ ଉପରେ ରଖିଲେ ।

ଏଥର ମୁଁ ସତରେ ଧୈର୍ଯ୍ୟ ହରାଇଥିଲି । କାଳେ କ'ଣ ଗୋଟାଏ ଅଘଟଣ ଘଟିଯିବ ଭାବି ବହୁ କଷ୍ଟରେ ଆତ୍ମସମ୍ବରଣ କରି ଉଠି ଠିଆହେଲି । ଉଦ୍ଦେଶ୍ୟ ଘର ଭିତରକୁ ଚାଲିଯିବି ।

: କିନ୍ତୁ ଅଗରବାଲା ଏଥର କହିଲେ : ରଣଜିତ୍‌ବାବୁଙ୍କ ସଙ୍ଗରେ ତିରିଶ୍ ହଜାରରେ କଥା ଛିଣ୍ଡିଥିଲା, ମୁଁ ଅଧିକା ଆଉ ପାଞ୍ଚ ହଜାର ଦେଉଛି ।

: କିନ୍ତୁ କାହିଁକି ? ମୁଁ ଚିତ୍କାର କରି ଉଠିଥିଲି ।

ଅଗରବାଲା କହିଲେ : ଆପଣଙ୍କର ଏଇ କୋଠାଟା ମୋର କିଣିବାର କଥା । ସବୁ ଫାଇନାଲ ହୋଇ ଯାଇଥିଲା । ମୁଁ ଟଙ୍କା ଆଣିବାକୁ କଲିକତା ଯାଇଥିଲି । ଆସି ଶୁଣିଲି...

ସେଇ ମୁହୂର୍ତ୍ତରେ ଅଗରବାଲାଙ୍କ ମୁହଁରେ ମୁଁ ଗୋଟାଏ ଥାପଡ ବସେଇ ଥିଲି କି ନାହିଁ ମୋର ମନେ ନାହିଁ; କିନ୍ତୁ ମୁଁ ଘର ଭିତରକୁ ପଶିଯାଇ କବାଟ କିଳି ଦେଇଥିଲି । ଉତ୍ତେଜନାରେ ମୋର ସମସ୍ତ ଶରୀରଟା କମ୍ପୁଥିଲା ।

ସଂଜୀବ ନୀରବ ହୋଇଗଲା ।

: ତା'ପରେ ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

: ନରୋତ୍ତମ ଅଗରବାଲା କିନ୍ତୁ ଛାଡ଼ିବାର ପାତ୍ର ନୁହନ୍ତି । ସେ ପୁଣି ପରଦିନ ସକାଳୁ ଆସି ହାଜର ହୋଇଥିଲେ । ମୁଁ ସେତେବେଳକୁ ଜଳଖିଆ ଖାଇବସିଥିଲି ।

ମିଲ୍‌ଖା ସିଂକୁ କହିଲି ଡାକି ଦେବା ପାଇଁ ।

ଅଗରବାଲା ଆସିଲେ, ନାସ ଶୁଙ୍ଘି ଶୁଙ୍ଘି । ମିଜାଜ୍‌ଟା ସକାଳୁ ମୋର ଭଲ ଥିଲା । ସେ ଆସି ମୋ ସାମ୍‌ନାରେ ବସିଲେ ।

ମୁଁ କିଛି ଭୂମିକା ନ କରି କହିଲି : ବାପା ଆପଣଙ୍କ ସହିତ କ'ଣ କଥାବାର୍ତ୍ତା କରିଥିଲେ ମୋତେ ଜଣା ନାହିଁ ଅଗରବାଲାଜୀ; କିନ୍ତୁ ବାପାଙ୍କ ଅନ୍ତେ ସମ୍ପତ୍ତିର ମାଲିକ ମୁଁ । ତେଣୁ ମୋର ସିଦ୍ଧାନ୍ତ ହେଉଛି, କୋଠା ମୁଁ ବିକିବି ନାହିଁ ! ଆପଣ ଏଥର ଯାଇ ପାରନ୍ତି ।

ଅଗରବାଲା ମୁହୂର୍ତ୍ତେ ନୀରବ ରହି ହସି ହସି ଗଡ଼ିଗଲେ । କହିଲେ : ଆପଣ ପିଲାଲୋକ । କିଛି ଜାଣନ୍ତି ନାହିଁ, ବୁଝନ୍ତି ନାହିଁ । ସେଇଥି ପାଇଁ ଏତେ ଶୀଘ୍ର ସିଦ୍ଧାନ୍ତ କରିନେଲେ । କିନ୍ତୁ ସଂଜୟବାବୁ !

ଅଗରବାଲାଜୀ ଏଥର ଉଠିପଡ଼ି ମୋ କାନପାଖକୁ ମୁହଁ ଆଣି ଧୀରେ ଧୀରେ କହିଲେ : ଆପଣ ଭୁଲ୍ କରନ୍ତୁ ନାହିଁ ସଂଜୟବାବୁ । ଆପଣ ଏହାଠାରୁ ଆଉ ବେଶି କେଉଁଠୁ ପାଇବେ ନାହିଁ । ଖୋର୍ଦ୍ଧାପରି ଗୋଟାଏ ଟାଉନ୍‌ରେ ଏଇଭଳି ଗୋଟାଏ ଏକ୍‌ତାଲା କୋଠାକୁ କେହି ପଇଁତ୍ରିଶ ହଜାର ଦେବ ନାହିଁ ।

ମୁଁ ଚା' ପିଉ ପିଉ ନିର୍ବିକାର କଣ୍ଠରେ କହିଲି : ଟଙ୍କା ମୋର ଦରକାର ନାହିଁ ଅଗରବାଲାଜୀ । ଆପଣଙ୍କ ଆଶୀର୍ବାଦରୁ ବାପା ମୋ ପାଇଁ ଯାହା ରଖିଯାଇଛନ୍ତି, ସେଥିରେ ମୋର ଜୀବନ କାଳ କଟିଯିବ ।

ମୋ' କଥାଶୁଣି ଅଗରବାଲା ପ୍ରଥମେ ସ୍ତବ୍ଧ ହୋଇଯାଇଥିଲେ, ତା'ପରେ ନାସ ଶୁଙ୍ଘିଲେ । ଦୁଇ ତିନିଥର ଛିଙ୍କିସାରି ଜୋର କରି ମୁହଁରେ ହସ ଫୁଟାଇ କହିଲେ : ଦେଖନ୍ତୁ ସଂଜୟବାବୁ, କୋଠାଟା ଆପଣଙ୍କ ବାପା ବିକିବାର ସିଦ୍ଧାନ୍ତ କରିଥିଲେ ଯେତେବେଳେ ଆପଣ ନିଶ୍ଚୟ ସେ କଥା ଜାଣିଥିବେ । ଯଦି ଆପଣ ମନେ କରୁ ଥାଆନ୍ତି ଯେ, ଆପଣ ପଇଁତ୍ରିଶ ହଜାରରୁ ଆହୁରି ବେଶି ଟଙ୍କା ପାଇବେ, ତା'ହେଲେ ସେ କଥା ମୋତେ ଖୋଲି କୁହନ୍ତୁ । ଆଉ ଯଦି ଦି'ପାଞ୍ଚ ହଜାର ଲାଗେ, ମୁଁ ଦେବା ପାଇଁ ପ୍ରସ୍ତୁତ ଅଛି ।

ତଥାପି ମୁଁ ଶାନ୍ତ ସ୍ୱରରେ କହିଲି : ଆଚ୍ଛା ଅଗରବାଲାଜୀ ! ଆପଣଙ୍କର ଆମର ଏହି କୋଠାଟା କିଣିବାକୁ ଏତେ ଜିଦି କାହିଁକି ? ଖୋର୍ଦ୍ଧାରେ କ'ଣ ଆଉ କିଣିଲା ଭଳି କୋଠା ନାହିଁ ?

ଅଗରବାଲାଜୀ ହସି ହସି କହିଲେ : ଅଛି ସଂଜୟବାବୁ, ଅନେକ ଅଛି । ତେବେ ମଣିଷର ଗୋଟାଏ ପସନ୍ଦ, ଫେସିନେସନ । କେଜାଣି କାହିଁକି ମୋର ଏଇ କୋଠାଟା ଉପରେ କେମିତି ଗୋଟାଏ ମାୟା ଜମିଯାଇଛି ।

ମୁଁ କହିଲି : ଆପଣ ସେ ମାୟା ଫାୟା ପରିତ୍ୟାଗ କରି ବର୍ତ୍ତମାନ ସ୍ଥାନ ତ୍ୟାଗ କରନ୍ତୁ । ତା' ନ ହେଲେ ମୋତେ ମିଲ୍‌ଖା ସିଂଙ୍କୁ ଡାକିବାକୁ ହେବ ।

ଅଗରବାଲାଜୀ ସେଦିନ ବାଧ୍ୟ ହୋଇ ଉଠିଥିଲେ; କିନ୍ତୁ ଚାହାଣି ଆଉ ମୁହଁର ଭାବରୁ ମନେହୋଇଥିଲା, ସେ ପୁଣି ଆସିବେ ।

ପୁଣି ସଂଜୀବ ନୀରବ ହୋଇଥିଲା ।

: ଅଗରବାଲାଜୀ କ'ଣ ଆଉ ଆସିଥିଲେ ? ସତ୍ୟବ୍ରତ ପ୍ରଶ୍ନ କରିଥିଲେ ।

: ନା, ଅଗରବାଲାଜୀ ଆଉ ଆସି ନ ଥିଲେ । ତା'ପରେ ଆଠ ଦଶଦିନ ଆଉ କୌଣସି ଘଟଣା ଘଟି ନ ଥିଲା; କିନ୍ତୁ ଦୁଇଦିନ ପୂର୍ବରୁ ରାତିରେ ହଠାତ୍ ଏପରି ଏକ ଘଟଣା ଘଟିଲା, ଯାହା ପାଇଁ ମୁଁ ଖୁବ୍ ଚିନ୍ତିତ ହୋଇପଡ଼ିଛି ।

: ଯଥା ?

: ରାତି ସେତେବେଳକୁ ନିଶ୍ଚୟ ବାରଟାରୁ ବେଶି ହେବ । ମୁଁ ଶୋଇପଡ଼ିଥିଲି । ହଠାତ୍ ମୋର ମନେହେଲା, ଯେପରି ମୋର ଶ୍ୱାସରୁଦ୍ଧ ହୋଇ ଆସୁଛି । ମୁଁ ଉଠିବାକୁ ଚେଷ୍ଟା କଲି । କିନ୍ତୁ ଉଠିପାରିଲି ନାହିଁ । କଡ଼ଲେଉଟାଇବାକୁ ଚେଷ୍ଟା କଲି, ତା' ବି ପାରିଲି ନାହିଁ । ଅବଶ୍ୟ ସେତେବେଳେ ମୁଁ ସଂପୂର୍ଣ୍ଣ ସଚେତନ ନ ଥିଲି । ତନ୍ଦ୍ରାଘୋରରେ ହୁଏତ ମୁଁ ସ୍ୱପ୍ନାବିଷ୍ଟ ହୋଇ ପଡ଼ିଥିଲି । ପୁଣି ମୋର ସମଗ୍ର ଶକ୍ତି ନିୟୋଜିତ କରି ଯେତେବେଳେ ମୁଁ ଉଠି ପଡ଼ିବାକୁ ଚେଷ୍ଟାକଲି, ସେତେବେଳେ ଗୋକୁଳିର ପାଟିଶୁଣିଲି, ବାବୁ ରାତି ଅଧରେ କୁଆଡ଼େ ଯାଉଛନ୍ତି ?

ମୁଁ ଠିଆହୋଇପଡ଼ିଲି । ସେତେବେଳେ ମୁଁ ଶେଯରୁ ଉଠି ବାଡ଼ି ବଗିଚା ଆଡ଼େ ଚାଲି ଯାଉଥିଲି ।

ଗୋକୁଳି ମୋତେ ଧରି ଆଣି ପୁଣି ବିଛଣାରେ ଶୁଆଇଦେଲା ।

ପରଦିନ ସକାଳୁ ଆସୁ ଗୋକୁଳି ମୋର ନିଦ ଭଙ୍ଗେଇ କହିଲା, ମିଲ୍‌ଖାସିଂ କୁଆଡ଼େ ଚାଲି ଯାଇଛି ।

: ମାନେ ? ମୁଁ ବିବ୍ରତ ହୋଇ ଉଠିପଡ଼ିଥିଲି ।

ସତେରେ ମିଲ୍‌ଖା ସିଂ ତା' ଘରେ ନ ଥିଲା । ଚାରିଆଡ଼େ ଖୋଜାଖୋଜି କରି ଦେଖିଲୁ । ସେ ଆମର ଗୋଟାଏ ଅଦରକାରୀ ଘରେ, ହାତଗୋଡ଼ ବନ୍ଧା ଅବସ୍ଥାରେ ପଡ଼ିଛି । ତା' ମୁହଁରେ ବିଣ୍ଡାଏ ଲୁଗା ଭର୍ତ୍ତିହୋଇଛି ।

ମିଲ୍‌ଖାସିଂକୁ ବନ୍ଧନମୁକ୍ତ କରିବା ପରେ ସେ କହିଲେ : ହଠାତ୍ କିଏ ଦୁଇଜଣ ଲୋକ ଆସି ତାକୁ ପଛଆଡୁ ଆକ୍ରମଣ କଲେ । ତା'ପରେ ସେ କିଛି ବୁଝିପାରିବା ଆଗରୁ ତା'ର ଏହି ଦୁରବସ୍ଥା ହୋଇଛି ।

ମୁଁ ଭୀଷଣ ଚିନ୍ତିତ ହୋଇପଡିଲି । ମିଲ୍‌ଖାସିଂ କହିଲା, ସେ ଏଇ ଘର ପ୍ରାୟ ପାଞ୍ଚବର୍ଷରୁ ଅଧିକ ହେବ ପହରା ଦେଇ ଆସୁଛି; କିନ୍ତୁ ଏପରି ଦୁର୍ଘଟଣା ତା' ଜୀବନରେ ଏଇ ପ୍ରଥମ ।

ସେଦିନ ମୁଁ ମୋର କର୍ତ୍ତବ୍ୟ ସ୍ଥିର କରି ପାରିଲି ନାହିଁ ।

ପୋଲିସ୍‌ରେ ଖବର ଦେବି କି ନାହିଁ ବହୁ ଚିନ୍ତା ଭାବନା ପରେ ମୋର ଆପଣଙ୍କ କଥା ମନେ ପଡିଲା ।

ସଂଜୀବ ନୀରବ ରହିଲା, ସତ୍ୟବ୍ରତ ବି ।

କିଛି ସମୟ ପରେ ସଂଜୀବ ପୁଣି କହିଲା : କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ କ'ଣ ଜାଣନ୍ତି ମିଷ୍ଟର ମହାପାତ୍ର ? କାଲି ମୁଁ ମୋ' ବାପାଙ୍କ ଘର ଖୋଲି ଏଇ ରୂପା ବଟାଟି ତଳେ ପଡିଥିବାର ଦେଖିଲି ।

ସଂଜୀବ ଗୋଟିଏ ଛୋଟ ଆକୃତିର ରୂପାବଟା ସତ୍ୟବ୍ରତ ହାତକୁ ବଢ଼ାଇଦେଲା ।

: ଏବଂ ଏଇ ବଟାଟି ସହିତ ଆପଣ ପୂର୍ବରୁ ପରିଚିତ । ସତ୍ୟବ୍ରତ ବଟାଟି ହାତକୁ ନେଇ ସ୍ମିତହସି କହିଲା ।

: ହଁ, ସଂଜୀବ କହିଲା । ଏଇ ବଟାଟି ମୁଁ ନରୋତ୍ତମ ଅଗରବାଲାଙ୍କ ହାତରେ ଦେଖିଥିଲି । ଏବଂ ମୁଁ ଦୃଢ଼ ନିଶ୍ଚିତ ଯେ ଏଇଟା ତାଙ୍କରି ନାସବଟା ।

: ତା' ହେଲେ ଏହାର ଅର୍ଥ ହେଉଛି ନରୋତ୍ତମ ଅଗରବାଲା ସେଦିନ ରାତିରେ ସଦଳବଳେ ଆପଣଙ୍କ ଘରକୁ ଆସିଥିଲେ । ସେଇମାନେ ମିଲ୍‌ଖା ସିଂର ହାତଗୋଡ ବାନ୍ଧି ପକାଇ ଦେଇ ଆପଣଙ୍କର ସମସ୍ତ ଘରଗୁଡାକ ବୁଲି କ'ଣ ଖୋଜି ଥିଲେ । ତା'ପରେ ବ୍ୟର୍ଥ ହୋଇ ବା ସଫଳ ହୋଇ ଚାଲିଯାଇଛନ୍ତି । କେଉଁଟା ଠିକ୍ ?

ସଂଜୀବ କହିଲା : କିନ୍ତୁ ସେମାନେ ଆମ ଘରୁ କ'ଣ ଖୋଜୁଥିଲେ ?

: ସେ କଥା ଆପଣ ଜାଣନ୍ତି । ଯା' ହେଉ, ଆପଣଙ୍କ କଥା ମୁଁ ଶୁଣିଲି । ଏଥର ଆପଣ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ।

ସଂଜୀବ ସଜାଡ଼ି ହୋଇ ବସିଲା ।

: ଆପଣଙ୍କର ବାପାଙ୍କର ମୃତ୍ୟୁ ବେଳକୁ ବୟସ କେତେ ହୋଇ ଥିଲା ?

: ଏକାବନ ବର୍ଷ ।

: ଆପଣଙ୍କ ବାପାଙ୍କର ମୃତ୍ୟୁ ସ୍ୱାଭାବିକ ନା ଅସ୍ୱାଭାବିକ ?

: ଡାକ୍ତରଙ୍କ ମତରେ କରୋନାରି ଥମ୍ବୋସିସ୍‌ରେ ବାପା ହଠାତ୍ ଆକ୍ରାନ୍ତ ହୋଇ ପ୍ରଥମ ଷ୍ଟ୍ରୋକ୍‌ଟା ସହିପାରିଲେ ନାହିଁ

: ଡାକ୍ତରଙ୍କ ଉପରେ ଆପଣଙ୍କର ବିଶ୍ୱାସ ଅଛି ?

: ହଁ, ସେ ଆମର ଅନେକ ଦିନର ହାଉସ୍ ଫିଜିସିଆନ୍ । ବାପାଙ୍କର ବଂଧୁ ବି ।

: ଆପଣଙ୍କ ବାପାଙ୍କର ମୃତ୍ୟୁ ଯଦିଓ ଅସ୍ୱାଭାବିକ ନୁହେଁ; ତେବେ ଅକାଳ ବିୟୋଗ । କାରଣ ସେ ଜାଣି ନଥିଲେ ହଠାତ୍ ଏପରି ଭାବରେ ତାଙ୍କୁ ମୃତ୍ୟୁପାଖରେ ପରାଜୟ ସ୍ୱୀକାର କରିବାକୁ ହେବ । ଯା' ଫଳରେ ସେ ଆପଣଙ୍କୁ କୌଣସି ଖବର ଦେଇ ପାରି ନାହାନ୍ତି ।

: ତା' ଛଡା ବାପାଙ୍କର ବୟସ ତ ହୋଇ ନ ଥିଲା ।

: ହୁଁ, ତାଙ୍କର ମୃତ୍ୟୁ ଦିନ ଆପଣ ଥିଲେ କେଉଁଠି ?

: କଲିକତାରେ ।

: ବାପାଙ୍କ ସହିତ ଶେଷଦେଖା କେବେ ହୋଇଥିଲା ?

: ପ୍ରାୟ ଦୁଇମାସ ପୂର୍ବରୁ ।

ସତ୍ୟବ୍ରତ ନୀରବରେ କ'ଣ ଟିକିଏ ଚିନ୍ତା କରି କହିଲା : କ୍ଷମା କରିବେ ସଂଜୀବ ବାବୁ । ଏଥର ମୁଁ ଏପରି କେତୋଟି ପ୍ରଶ୍ନ କରିବି ଯେଉଁଗୁଡ଼ିକ ଆପଣଙ୍କର ପାରିବାରିକ । ଆଶାକରେ ଆପଣ ଉତ୍ତରଦେବାକୁ ଦ୍ୱିଧାବୋଧ କରିବେ ନାହିଁ ।

: ନା ନା, ଆପଣ ସେପରି କିଛି ମନେ ନ କରିବା ହିଁ ଭଲ । କାରଣ ଆପଣଙ୍କୁ ନିଜର ମନେ କରି ମୁଁ ଆସିଛି । ଆପଣ ଯାହାଇଚ୍ଛା ପଚାରି ପାରନ୍ତି ।

ସତ୍ୟବ୍ରତ ଗୋଟିଏ ଡଟ୍‌ପେନ୍‌ରେ ରଫ୍ ଖାତାଟା ଉପରେ ଚିତ୍ର ଆଙ୍କୁ ଆଙ୍କୁ କହିଲା : ଆପଣଙ୍କ ବାପାଙ୍କର ପେସା କ'ଣ ଥିଲା ?

: ଚାକିରି ।

: ମୃତ୍ୟୁର ପୂର୍ବ ଦିନ ପର୍ଯ୍ୟନ୍ତ ସେ କ'ଣ ଚାକିରି କରୁଥିଲେ ?

: ନା, ସେ ଚାକିରି ଛାଡ଼ିଲେଣି ପ୍ରାୟ ଚାରି ପାଞ୍ଚ ବର୍ଷ ହେବ ।

: କ'ଣ ରିଟାଏର୍ଡ୍ କରିଥିଲେ ନା ରେଜିଗ୍‌ନେସନ ଦେଇଥିଲେ ?

: ବୋଧହୁଏ ରେଜିଗ୍‌ନେସନ ।

: କେଉଁଠି ଚାକିରି କରୁଥିଲେ ?

: କଲିକତାରେ ଗୋଟାଏ ପ୍ରାଇଭେଟ ଫାର୍ମରେ ।

: ସେ ଫାର୍ମର ବ୍ୟବସାୟ କ'ଣ ଥିଲା ?

: କହିପାରିବି ନାହିଁ

: ରେଜିଗ୍‌ନେସନ କାହିଁକି ଦେଇଥିଲେ ?

: ମୁଁ ଠିକ୍ ଜାଣି ନାହିଁ । କାରଣ ବାପାଙ୍କର କର୍ମଜୀବନ ସହିତ ମୋର ମୋଟେ ପରିଚୟ ନ ଥିଲା । ମୁଁ ଯଦିଓ ସେତେବେଳେ କଲିକତାରେ ପଢୁଥିଲି; କିନ୍ତୁ ମୁଁ ହଷ୍ଟେଲରେ ରହୁଥିଲି ।

: କାହିଁକି ?

: ବାପାଙ୍କର ଗୋଟାଏ ଧାରଣା ଥିଲା ଯେ, ପିଲାମାନେ ହଷ୍ଟେଲରେ ରହି ପାଠ ପଢ଼ିଲେ ଭଲ ପଢ଼ନ୍ତି ।

: ହୁଁ । ସତ୍ୟବ୍ରତ କିଛି କାଳ ନୀରବ ହୋଇ ଚିନ୍ତାକଲେ । ତା'ପରେ ହଠାତ୍ ପ୍ରଶ୍ନ କଲେ, ଆଚ୍ଛା ମିଷ୍ଟର ରାଉତରାୟ, ଆପଣ କହିପାରିବେ ଆପଣଙ୍କର ବାପା ଏପରି କୌଣସି ମୂଲ୍ୟବାନ ପଦାର୍ଥ ଆପଣଙ୍କର ସେହି କୋଠାରେ ରଖିଚନ୍ତି, ଯାହା ପାଇଲେ ଅନ୍ୟ କେହି ଧନୀ ହୋଇପାରିବ ।

ସତ୍ୟବ୍ରତଙ୍କ କଥା ଶୁଣୁ ସଂଜୀବ ପ୍ରଥମେ ଅବାକ୍ ହୋଇଯାଇଥିଲା । ତା'ପରେ ଧୀରେ ଧୀରେ କହିଲା : ମୋ ଜାଣିବାରେ ସେପରି କିଛି ନାହିଁ ।

: ଆଉ ଆପଣ ସେଦିନ ଅଗରବାଲାଙ୍କୁ କହିଲେ ଯେ, ବାପା ମୋ ପାଇଁ ଯାହା ରଖି ଯାଇଛନ୍ତି, ସେଥିରେ ମୋର ଜୀବନ ହସିଖେଳି କଟିଯିବ । ସେଇ ଯାହା'ଟା କ'ଣ ?

ସଂଜୀବ ହସିଉଠି କହିଲା : ଓଃ, ଏଇ କଥା ! ସେ ଯାହାଟା ହେଉଛି ବ୍ୟାଙ୍କରେ ବାପାଙ୍କର ଚାଳିଶ ପଚାଶ ହଜାର ଟଙ୍କା ଅଛି, ଆଉ ଖୋର୍ଦ୍ଧା ଟାଉନ୍‌ରେ ଦୁଇ ତିନିଟା ଘର ଅଛି । ଭଡା ମାସକୁ ପ୍ରାୟ ଦୁଇ ତିନିଶହ ଟଙ୍କା ମିଳେ ।

ସତ୍ୟବ୍ରତ ମୁହଁଟା ସାମାନ୍ୟ ମଳିନ ହୋଇ ପଡିଲା । ସେ ପୁଣି ଟିକିଏ ଚିନ୍ତାକରି କହିଲେ : ହୁଏତ ଏପରି ତ ହୋଇପାରେ, ରଣଜିତ୍‌ବାବୁ ଆପଣଙ୍କ ସେହି ଘରେ କୌଣସି ସ୍ଥାନରେ ବହୁ ମୂଲ୍ୟବାନ ସମ୍ପତ୍ତି ଲୁଚାଇ ରଖିଛନ୍ତି, ଯେଉଁ ସମ୍ବାଦ ଆପଣ ଜାଣି ନାହାନ୍ତି ।

ସତ୍ୟବ୍ରତର ଏହି ଯୁକ୍ତିକୁ ସଂଜୀବ କିନ୍ତୁ ସମର୍ଥନ କଲାନାହିଁ କହିଲା : ଘର କହିଲେ ଆମର ଚାରିଟା । ସେ ଘର ଭିତରେ ଏପରି କୌଣସି ଗୁପ୍ତ ସ୍ଥାନ ନାହିଁ, ଯେଉଁଠି ବାପା ମଣିମାଣିକ୍ୟ ରଖିଗଲେ ଆଉ ମୁଁ ତା'ର ସନ୍ଧାନ ପାଇଲି ନାହିଁ ।

: ଆଚ୍ଛା, ଆପଣ ଯଦି ଧରିନିଅନ୍ତି ଯେ ଆପଣଙ୍କ ସମଗ୍ର ଘରେ ମାତ୍ର କେତୋଟି ଆଲମାରି, ଚେଆର, ଟେବୁଲ ଛଡା ଆଉ ଅଧିକ କିଛି ନାହିଁ, ତେବେ ସେଇ ମୂଲ୍ୟହୀନ ଖଟ ପଲଙ୍କକୁ ପହରା ଦେବାପାଇଁ ମିଲ୍‌ଖା ସିଂର କ'ଣ ପ୍ରୟୋଜନ ଥିଲା ?

ସଂଜୀବ ପୁଣି ହସିଉଠିଲା । କହିଲା : ଅବଶ୍ୟ ଆପଣଙ୍କ ପାଖରେ ମିଲ୍‌ଖା ସିଂ ଗୋଟାଏ ପଏଣ୍ଟ । କିନ୍ତୁ କ'ଣ ଜାଣନ୍ତି ମିଷ୍ଟର ମହାପାତ୍ର ? ବାପା ଖୁବ୍ ଖିଆଲୀ ଲୋକ ଥିଲେ । ଆପଣ ଯଦି କେବେ ଆସନ୍ତି ଆମ ଘରକୁ ତେବେ ଦେଖିବେ, କେତେ ଅଦରକାରୀ ଜିନିଷ ଉପରେ ସେ କିପରି ଗୁରୁତ୍ୱ ଦେଉଥିଲେ ।

ସତ୍ୟବ୍ରତ ଉତ୍ସାହିତ ହୋଇ ପ୍ରଶ୍ନକଲେ : ଯଥା ?

: ପ୍ରଥମତଃ ମିଲ୍‌ଖା ସିଂ । ତା'ର କୌଣସି ପ୍ରୟୋଜନ ନ ଥାଇ ସୁଦ୍ଧା ସେ ତାକୁ ପୋଷୁଥିଲେ ଏବଂ ମାସକୁ ଶହେ ଟଙ୍କା ଦରମା ଏବେ ବି ସେ ନେଉଛି । ଦ୍ୱିତୀୟରେ ଚାରିଟା କାଠ ମିସ୍ତ୍ରି, କିଛି କାମ ନ ଥାଇ ବି ସେମାନଙ୍କର ମାସିକ ବନ୍ଦୋବସ୍ତ ଥିଲା । କିଛି କାଠ କାମ ହେଉ ନ ହେଉ ମାସକୁ ସେମାନେ ପଚିଶ ଟଙ୍କା କରି ନେବେ, ଗତମାସ ପର୍ଯ୍ୟନ୍ତ ସେମାନେ ନେଇଛନ୍ତି । ଏ ମାସରେ ମୁଁ ଆଉ ସେମାନଙ୍କୁ ଟଙ୍କା ଦେବି ନାହିଁ ବୋଲି ସ୍ଥିର କରିଛି । ତା'ପରେ ପାରା ଆମ ଘରେ କେତେ ଯେ ଅଛନ୍ତି, ମୁଁ ସେଗୁଡାଙ୍କୁ ଗଣିପାରିବି ନାହିଁ ଗୋକୁଳିର ଅଧେ ସମୟଯାଏ ସେଇ ପାରାଙ୍କ ସେବାରେ । ଶାରୀ ଅଛନ୍ତି ଅଠରଟା । ଶୁଆ ଆଠ ଦଶଟା । ଏଇ ସବୁ ଅଦରକାରୀ ଜିନିଷ ନୁହେଁ ?

ସତ୍ୟବ୍ରତ ସଂଜୀବ ବର୍ଣ୍ଣିତ ଅଦରକାରୀ କଥାଗୁଡ଼ିକ ମନଯୋଗ ସହକାରେ ଶୁଣୁଥିଲେ । କହିଲେ : ଆଚ୍ଛା, ଆପଣଙ୍କ ଘରର ଟିକିଏ ବର୍ଣ୍ଣନା ଦିଅନ୍ତୁ ତ !

ସଂଜୀବ କହିଲା : ବର୍ଣ୍ଣନା ଆଉ କ'ଣ ଦେବି, ମେନ୍ ରୋଡ ଉପରେ ଆମର କୋଠାଟା । ପ୍ରଥମ ଘରଟା ଡ୍ରଇଁ ରୁମ୍ । ଗୋଟାଏ ସୋଫା ସେଟ୍ । ଦୁଇଟା କାଚ ଆଲମାରି, ଆଲମାରି ଭିତରେ କିଛି ବହି । କିଛି ସଂଗ୍ରହଣୀୟ କାରୁକାର୍ଯ୍ୟ, ଆଉ ଗୋଟାଏ ଆରାମ ଚେଆର ।

ତା' ପାଖ ଘରଟା ଗେଷ୍ଟରୁମ୍ କହିଲେ ଚଳେ । ଦୁଇଟା ଖଟ । ଗୋଟାଏ ଟେବୁଲ, ଚାରିଟା ଚେଆର ।

ଏ ଗଲା ଦାଣ୍ଡ ପାଖ ଦୁଇଟା ଘର । ପଛପାଖ ଘର ଦୁଇଟାରୁ, ଗୋଟାଏ ବାପାଙ୍କର ବେଡରୁମ୍ । ଅପେକ୍ଷାକୃତ ଲମ୍ବା । ସେଥିରେ ବୃହଦାକାର ପଲଙ୍କ । ଦୁଇଟା କାଠ ଆଲମାରି, ଗୋଟାଏ ଷ୍ଟିଲ ଆଲମାରି । ଗୋଟାଏ ସେକ୍ରେଟେରୀଏଟ୍ ଟେବୁଲ । ଛଅଟା ବେତବୁଣା କାଠ ଚେଆର । ଆଉ ଏଣୁ ତେଣୁ ଅନେକ ଘର କରଣା ଜିନିଷ । ଆଉ ତା' ପାଠ ଘରଟା ମୋର । ସେଥିରେ ଖଟ, ଆଲମାରି, ଟେବୁଲ, ଚେଆର ସବୁ ଅଛି ।

ଏହାଛଡା ବାଡ଼ିଆଡକୁ ଦୁଇ ତିନିଟା ଘର ଅଛି । ସେଗୁଡା ଟାଇଲ୍ ଘର । ଚାକର ବାକର ରୁହନ୍ତି । ପାରାମାନଙ୍କର ଗୋଟାଏ ଘର । ରୋଷେଇବାସ ହୁଏ ଗୋଟାଏ ଘରେ । ଅଦରକାରୀ ଜିନିଷପତ୍ର ବନ୍ଦ ହୋଇ ଗୋଟାଏ ଘରେ ପଡିଛି - ଇମିତି ସବୁ । ଆପଣ ବରଂ ମୋ ସଙ୍ଗରେ ଆସନ୍ତୁ ବୁଲି ଦେଖିଆସିବେ ।

: ଆଉ ମିଲ୍‌ଖା ସିଂର ଘରଟା ? ସତ୍ୟବ୍ରତ ପଚାରିଲେ ।

: ତା' ଘରଟା ଅବଶ୍ୟ ମେନ୍ ଗେଟ୍ ପାଖରେ । ଗୋଟିଏ ଛୋଟ ଘର ସେଠାରେ ତା' ପାଇଁ ପରେ ତିଆରି କରାହୋଇଛି । ସେ ଆମ ଘର ରୋଷେଇରୁ ଖାଏ; ଆଉ ସେଇ ଘରେ ଗୋଟାଏ ଫିତା ଖଟ ଉପରେ ସବୁବେଳେ ଗଡୁଥାଏ ।

: ହୁଁ, ଆପଣଙ୍କ ବର୍ଣ୍ଣନା ଅନୁସାରେ ଆପଣଙ୍କ ଘରେ କାଠ ଫର୍ଣ୍ଣିଚର ଖୁବ୍ ଗୁଡାଏ ଆଉ କାହିଁ, ସାଧାରଣ ଗୃହସ୍ଥର ଯାହାଥାଏ, ଆମ ଘରେ ସେଇଆ ଅଛି ।

: କିନ୍ତୁ ରଣଜିତ୍‌ବାବୁଙ୍କର ଏହି କାଠ ମିସ୍ତ୍ରିମାନଙ୍କୁ ପୋଷିବାର ତାତ୍ପର୍ଯ୍ୟ କିଛି ବୁଝି ପାରିଲି ନାହିଁ ସେମାନେ କ'ଣ କରନ୍ତି ?

: ଗୋକୁଳି କହୁଥିଲା ପ୍ରତି ମାସରେ ବାପା ପାରାଭାଡ଼ି ତିଆରି କରାଉଥିଲେ । ବାପା ଚାକିରୀ ଛାଡ଼ି ଆସିବା ପରେ ଆଉ ତ କିଛି ଧନ୍ଦା ନ ଥିଲା, ଖାଲି ବେକାର ତ ବସି ହେବ ନାହିଁ, ମୁଁ ଭାବୁଛି ସେଇଥିପାଇଁ ଏଇ ପାରା, ଶୁଆ, ଶାରୀ ନେଇ ସେ ସମୟ କଟାଉଥିଲେ ।

: ହଁ ଅସମ୍ଭବ ନୁହେଁ । ସତ୍ୟବ୍ରତ କହିଲେ । ପୃଥିବୀରେ କେତେ ଧରଣର ଖିଆଲୀ ଲୋକ ଯେ ଅଛନ୍ତି, ସମସ୍ତଙ୍କର ଇତିହାସ ଯଦି ଯୋଗାଡ଼ କରି ବସିବା, ତା'ହେଲେ ପାଗଳ ହେଇଯିବା । ଛାଡନ୍ତୁ ମୋର ଆଉ ଗୋଟାଏ ଦୁଇଟା ପ୍ରଶ୍ନ । ତା'ପରେ ମୁଁ ଆପଣଙ୍କୁ ଛାଡ଼ିଦେବି ।

: ପଚାରନ୍ତୁ ।

: ଆପଣଙ୍କ ଖୋର୍ଦ୍ଧାର ସେଇ ଯେଉଁ କୋଠାଟା, ସେଇଟା ରଣଜିତ୍‌ବାବୁଙ୍କ ଅମଳର ନା ତାଙ୍କ ପୈତୃକ ଅମଳର ?

: ନା ସେଇଟା ବାପା କିଣିଥିଲେ । ତେବେ ଆମର ଆଦି ଘର ଏଇ ଖୋର୍ଦ୍ଧାରେ, ଟିକିଏ ଭିତରକୁ । ସେ ଘରଟା ଭଡା ଲାଗିଛି ।

: ରଣଜିତ୍‌ବାବୁ ଏଇ କୋଠାଟା କେବେ କିଣିଲେ ?

: ପ୍ରାୟ ଦଶ ବାରବର୍ଷ ହେବ ।

: କୋଠାଟା କିଣିବା ପରେ ଯାହାଥିଲା ସେଇଆ ଅଛି ନା ରିମଡେଲିଂ କିଛି କରିଛନ୍ତି ?
: ଆଗଆଡ ଘର ଦୁଇଟା ବାପା ତିଆରି କରିଛନ୍ତି, ବାକି-ତକ ପୂର୍ବରୁ ଥିଲା । ଖାଲି ମରାମତି, ଚୂନ କାମ ଯାହା ଯେତେ ବେଳେ ଆବଶ୍ୟକ ସେ କରିଛନ୍ତି ।

ସତ୍ୟବ୍ରତ ଏଥର ନୀରବରେ କିଛି ସମୟ ଚିନ୍ତା କରି କହିଲେ,

: ତା' ହେଲେ ଆପଣଙ୍କର ଦୃଢ଼ ଧାରଣା ଯେ, ରଣଜିତ୍‌ବାବୁ କୋଠା ଭିତରେ କେଉଁଠି କିଛି ଅମୂଲ୍ୟ ସଂପଦ ଲୁଚାଇ ରଖି ନାହାନ୍ତି ।

: ମୁଁ ତ ସେହିପରି ଭାବୁଛି । ତା' ନ ହୋଇଥିଲେ ମୋ ଆଖିରେ ନିଶ୍ଚୟ ପଡି ଥାଆନ୍ତା ।

: ହୁଏତ ମାଟି ତଳେ କେଉଁଠି ଥାଇପାରେ ?

ସଂଜୀବ ପୁଣି ହସିଲା, କହିଲା : ଆପଣ କ'ଣ ଗୁଇନ୍ଦା ଗଳ୍ପ ଭଳି କହିଲେଣି । ନରୋତ୍ତମ ଅଗରବାଲା ତା' ହେଲେ ନିଶ୍ଚୟ କେଉଁଠୁ ଗୋଟାଏ ନକ୍‌ସା ପାଇଛନ୍ତି, ଯେଉଁ ନକ୍‌ସାରେ ଚିହ୍ନିତ ହୋଇଛି ଆମ କୋଠା ଭିତରେ କୌଣସି ଏକ ଗୋପନ ସ୍ଥାନରେ ଗରାଗରା ମୋହର ପୋତା ହୋଇ ରହିଛି । ଖାଲି ସେତିକି ନୁହେଁ; ଆମର ଯେଉଁଠି ଆଜି ଘର ହୋଇଛି, ସେଠି ଶହ ଶହ ବର୍ଷ ପୂର୍ବରୁ ଖୋର୍ଦ୍ଧାର କୌଣସି ଏକ ରାଜବଂଶର ନଅର ଥିଲା, ଏବଂ ସେଇ ଜାଗାଟା ଥିଲା ତାଙ୍କର ଖଜଣାଖାନା ।

: କିଛି ଅସମ୍ଭବ ନୁହେଁ, ସତ୍ୟବ୍ରତ ସ୍ମିତହସି କହିଲେ : ଆଚ୍ଛା ନରୋତ୍ତମ ଅଗରବାଲା କ'ଣ ସେଇଠିକାର ଅଧିବାସୀ ?

: ମୁଁ ଜାଣି ନାହିଁ, ସେଦିନ ମୁଁ ତାଙ୍କୁ ପ୍ରଥମ ଦେଖିଥିଲି ।

: ଆପଣ ତା' ହେଲେ....

ସତ୍ୟବ୍ରତର କଥା ଶେଷହେବା ପୂର୍ବରୁ ଫୋନ୍‌ଟା ବାଜିଉଠିଲା । ନୀଳିମା କହୁଥିଲା, ଲାୟଲି ପ୍ରାୟ ଦଶ ପନ୍ଦର ମିନିଟ୍ ହେବ ଅପେକ୍ଷା କରିଛି, ସେ କହୁଛି ଆପଣଙ୍କର ବେଶି ସମୟ ନଷ୍ଟ କରିବ ନାହିଁ ।

ସତ୍ୟବ୍ରତ ରିସିଭରଟା ସେହିପରି ଧରି ରଖି ସଂଜୀବକୁ ପଚାରିଲେ : ଆପଣଙ୍କର କ'ଣ ଅନ୍ୟ କେଉଁ ଆଡେ ଯିବାକୁ ଅଛି ?

: ନା, ସଂଜୀବ କହିଲା ।

: ହେଲେ ଟିକିଏ ଅପେକ୍ଷା କରନ୍ତୁ । ଜଣେ ଭଦ୍ରମହିଳା ଆସିଛନ୍ତି ତାଙ୍କର କ'ଣ ଟିକିଏ କାମ ଅଛି । ଶେଷ କରି ପୁଣି ଆମେ ଆଲୋଚନା କରିବା ।

ସଂଜୀବ କିଛି ଉତ୍ତର ଦେଲା ନାହିଁ ।

ସତ୍ୟବ୍ରତ ନୀଳିମାକୁ କହିଲେ, ଲାୟଲିକୁ ପଠାଇ ଦେବା ପାଇଁ ।

ତା' ପରେ ନୀରବତା । ବୋଧହୁଏ ସେଇ ନୀରବ ମୁହୂର୍ତ୍ତ କେଇଟିରେ ଦୁଇଜଣଙ୍କ ପ୍ରାଣରେ ଏକ ଅହେତୁକ କୌତୂହଳ ଜମିଉଠିଥିଲା । ହୁଏତ ଲାୟଲିକୁ ଦେଖିବା ପାଇଁ ଅଥବା ଲାୟଲିର ରହସ୍ୟମୟ ଜୀବନର ଇତିବୃତ୍ତି ଶୁଣିବା ପାଇଁ ।

ଲାୟଲି ଆସିଲା ।

ଲାୟଲିର ରୂପ, ଲାୟଲିର ବେଶ, ଲାୟଲିର ହସ...

ଲାୟଲି ନମସ୍କାର କରି ମୃଦୁହସି କହିଲା : ମୋ ନାଁ ଲାୟଲି ।

ସତ୍ୟବ୍ରତ କେତୋଟି ମୁହୂର୍ତ୍ତ ଅପଲକ ନୟନରେ ଚାହିଁ ରହିଲେ ଲାୟଲି ମୁହଁକୁ । ନା । ଲାୟଲି ଏଠି ହୁଏତ ଅପ୍ରତ୍ୟାଶିତ । ଏତେ ଉଗ୍ର ଆଧୁନିକା ଆମ ରାଜ୍ୟରେ କ୍ୱଚିତ ଆଖିରେ ପଡ଼େ । ଲାୟଲିର ବେଶପୋଷାକ ଜାପାନୀ ବାଳିକାମାନଙ୍କ ପରି । ମୁଖର ଗଠନଟା ବି ଅନେକାଂଶରେ ସେହିପରି । ରଙ୍ଗ ସଫା । ଲାୟଲି ଯେ ଜାପାନୀ କନ୍ୟା ନୁହେଁ କିଏ କହି ପାରିବ !

ସାମାନ୍ୟ ନୀରବତା ପରେ ସତ୍ୟବ୍ରତ ପଚାରିଲେ : ଖାଲି ଲାୟଲି କହିଲେ ନାଁ ଟା ତ ସଂପୂର୍ଣ୍ଣ ହେଲା ନାହିଁ ।

ଲାୟଲି ଏଥର ହସିଉଠିଲା । କହିଲା : ସେତିକିରୁ ଆପଣଙ୍କୁ ସବୁ ବୁଝିବାକୁ ହେବ । ଯୁଗ ସହିତ ତାଳ ମିଳେଇ ଚଳିବା ହେଉଛି ମଣିଷର ଧର୍ମ । ତା'ଛଡା ଆମେ ସବୁ ଏପରି ଗୋଟିଏ ଜାତିର ଝିଅ, ଆମ ନାଁ ପଛରେ ଟାଇଟଲ ଶୋଭାପାଏନି । ଖାଲି ଲାୟଲି କହିଲେ ଆପଣଙ୍କୁ କିଛି ଅସୁବିଧା ହେଉଛି ?

: ନା, ତେବେ ଲାୟଲି ଆଗରୁ ମିସ୍ ବା ମିସେସ୍ କିଛି ଗୋଟାଏ ନ ଯୋଡ଼ିଲେ ତାଳ ଭଙ୍ଗ ହେବ ଯେ !

: ଲାୟଲି ପୁଣି ହସିଉଠିଲା । କହିଲା : ଆପଣତ ବେଶ ରସିକ ମିଷ୍ଟର ମହାପାତ୍ର ! ମୁଁ ଏ କେତେମାସ କଟକକୁ ଆସି ଏକ ରକମ ଅଣନିଶ୍ୱାସୀ ହୋଇପଡିଥିଲି । ନା ଅଛି ସୋସାଇଟି, ନା ଅଛନ୍ତି ମନର ମଣିଷ, ନା ଅଛି ଏଞ୍ଜୟ କରିବାର କିଛି ଉପକରଣ ! ଏଠି ଜୀବନଟା ଯେପରି ଷ୍ଟାଣ୍ଡଷ୍ଟିଲ୍ ହୋଇପଡିଛି ।

ଏତେବେଳକେ ଲାୟଲି ସଂଜୀବ ମୁହଁକୁ ଚାହିଁଲା । ଚାରି ଆଖିର ମିଳନ ହେଲା । ମୁହୂର୍ତ୍ତକର ନୀରବତା, ତା'ପରେ ଲାୟଲି କହିଲା, : ଏକ୍ସକିଉଜ୍ ମି ଜେଣ୍ଟେଲ୍‌ମ୍ୟାନ୍, ଆପଣଙ୍କୁ ମୁଁ କେଉଁଠି ଦେଖିଲା ପରି ମନେହେଉଛି । ଆପଣଙ୍କର ମୋତେ ମନେପଡୁଛି ?

ସଂଜୀବ ଏତେ ବେଳଯାଏ ଲାୟଲିର ସୁନ୍ଦର ମୁହଁଟି ଆଡ଼େ ଚାହିଁ ହୁଏତ ଉପଭୋଗ କରୁଥିଲା । କିନ୍ତୁ ହଠାତ୍ ଲାୟଲିର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ କହି ଉଠିଲା : ମୋର ତ କାହିଁକି ମନେପଡୁନାହିଁ ମନେହେଉଛି ଆଜି ମୁଁ ଆପଣଙ୍କୁ ପ୍ରଥମେ ଦେଖିଲି ।

ଲାୟଲି ଭୂରୁ ନଚାଇ, ବାଁ ହାତର କାଣି ଆଙ୍ଗୁଠିଟି ପାଟିରେ ପୂରାଇ ଆଖି ବୁଜି ମୁହୂର୍ତ୍ତେ ଚିନ୍ତା କରି ପୁଣି କହିଲା : ନା, ନା, ମୁଁ କେଉଁଠି ଆପଣଙ୍କୁ ଦେଖିଛି ଜେଣ୍ଟେଲ୍‌ମ୍ୟାନ୍ । ଦିଲ୍ଲୀ, ବମ୍ବେ, ମାଡ୍ରାସ, କଲିକତା କେଉଁଠି ହେଲେ ଆପଣଙ୍କୁ ମୁଁ ଦେଖିଛି, ହୁଏତ କୌଣସି ପାର୍ଟିରେ, କୌଣସି ବାର୍‌ରେ, ଅଥବା...

ଲାୟଲି ନୀରବ ହୋଇ ପୁଣି ଆଖିବୁଜିଲା ।

ଏଥର ଆଖି ଖୋଲି ହାତରେ ଫୁଟକି ଫୁଟାଇ ଉଲ୍ଲସିତ ହୋଇ କହିଲା

: ମନେ ପଡିଛି ଏଥର । ହୋଟେଲ ଏମ୍ବାସି, କଲିକତା ୨୫ ଡ଼ିସେମ୍ବର । ଗତବର୍ଷ । ଏକ୍ସମାସ ରାତି ।

ସଂଜୀବର ହଠାତ୍ ମନେପଡିଗଲା ଗତ ବର୍ଷର ଏକ୍ସମାସ ରାତି କଥା । ଲାୟଲି ଠିକ କହିଛି । ସେ ଯାଇଥିଲା ତା'ର ଜଣେ ବଂଧୁ ସହିତ । ହୋଟେଲ ଏମ୍ବାସିରେ ସେ କଟାଇଥିଲା ପଚିଶ ଡ଼ିସେମ୍ବରର ଏକ ରୋମାଞ୍ଚକର ରାତି । ଅବଶ୍ୟ ସଂଜୀବ ଜୀବନରେ ସେ ରାତିଟି ସ୍ମରଣୀୟ । ସେଠି କେତେ ପୁଅ, କେତେ ଝିଅ ମେଳରେ ସେମାନଙ୍କ ପରି ସଂଜୀବ ବି ଅର୍ଦ୍ଧ ପାଗଳ ହୋଇ ନାଚି ଥିଲା । କିନ୍ତୁ ଲାୟଲି ! ହୁଏତ ଥିଲା ସେଠି, ହୁଏତ ସେ ବି ଯାଇଥିଲା ଉତ୍ସବ ମୁଖରିତ ରାତିଟିକୁ ମଧୁର କରିବା ପାଇଁ; କିନ୍ତୁ ଲାୟଲି ସହିତ ସେଦିନ ଏପରି କିଛି ଘନିଷ୍ଠ ସଂର୍କରେ ଆସି ନଥିଲା ସଂଜୀବ ଯେଉଁ ସ୍ମୃତି ତା'ର ଆଜି ବି ମନେ ରହିବ; ତଥାପି ସଂଜୀବ ଅସ୍ୱୀକାର କରି ପାରିଲା ନାହିଁ ୨୫ ଡ଼ିସେମ୍ବର ରାତିକୁ ।

ସଂଜୀବର ନୀରବତା ଲକ୍ଷ୍ୟକରି ଲାୟଲି ପୁଣି କହିଲା : ମନେ ପଡୁଛି ଆପଣଙ୍କର ? ଏବେ ବି ବର୍ଷେ ପୂର୍ଣ୍ଣ ହୋଇନି, ଅଥଚ...

ସଂଜୀବ କିଛି ଉତ୍ତର ଦେବା ପୂର୍ବରୁ ସତ୍ୟବ୍ରତ ଥରେ କାଶି ଉଠି କହିଲେ : ଶୁଣନ୍ତୁ ମିସ୍ ଲାୟଲି । ଆପଣ ଯଦି ମିଷ୍ଟର ରାଉତରାୟଙ୍କ ସହିତ ଆଳାପ କରିବାକୁ ଆସି ଥାଆନ୍ତି ତା'ହେଲେ ସେଇ କଥା କୁହନ୍ତୁ । ମୁଁ ଚେମ୍ବରରୁ ଚାଲି ଯାଉଛି । ତା' ନ ହେଲେ...

: ଏକ୍ସକିଉଜ୍ ମି ମିଷ୍ଟର ମହାପାତ୍ର ! ଲାୟଲି ସଂଜୀବ ଆଡୁ ମୁହଁବୁଲାଇ ଏଥର ସତ୍ୟବ୍ରତ ଆଡେ ଚାହିଁଲା । କଥା କ'ଣ କି ମୁଁ ଏଠାକୁ ଆସି ଖୁବ୍ ଅସ୍ୱସ୍ତିକର ପରିସ୍ଥିତି ଭିତରେ ପଡିଯାଇଛି । ଏ ସ୍ଥାନ, ଏ ପରିବେଶ ମୋତେ ମୋଟେ ଭଲଲାଗୁନାହିଁ । ଦୁଇ ବର୍ଷ ଦିଲ୍ଲୀରେ କଟାଇ, ବର୍ଷେ ବମ୍ବେରେ ରହି, ତିନିବର୍ଷ କଲିକତାରେ କଟାଇବା ପରେ କଟକ ପରି ଏକ ଛୋଟ ସହର ମୋ ଜୀବନ ଯାତ୍ରା ପକ୍ଷରେ କେତେ ଯେ ଅସ୍ୱସ୍ତିକର ହୋଇଥିବ ଆପଣ ବୁଝିପାରୁଥିବେ । ରୀତିମତ ମୁଁ ଅଣନିଶ୍ୱାସୀ ହୋଇପଡିଲିଣି । ମୋତେ ଆପଣ ସାହାଯ୍ୟ କରିବାକୁ ହେବ ।

ସତ୍ୟବ୍ରତ ବୋଧହୁଏ ଲାୟଲିର ଅସଲ ଉଦ୍ଦେଶ୍ୟଟା କିଛି ବୁଝିପାରୁ ନ ଥିଲେ । କହିଲେ, ହୋଟେଲ ଅମ୍ବର କାଣ୍ଟନମେଣ୍ଟ ରୋଡରେ ଓପନ୍ ହୋଇଥିବା କଥା ମୁଁ ଶୁଣିଛି । ଖବରକାଗଜର ବିବରଣୀରୁ ଯାହା ଜାଣିଲି ହୋଟେଲ ଅମ୍ବର ଗୋଟିଏ ପ୍ରଥମ ଶ୍ରେଣୀର ହୋଟେଲ । ଦିଲ୍ଲୀ, ବମ୍ବେ ଓ କଲିକତାର ଯେକୌଣସି ପ୍ରଥମ ଶ୍ରେଣୀର ହୋଟେଲ ସହିତ ସମାନ । ଆପଣ ସେଥିରେ ରିସେପ୍‌ସନିଷ୍ଟର କାମ ପାଇଛନ୍ତି, ଖୁସିହେବାର କଥା । ଏହିପରି ସବୁ ପ୍ରଥମ ଶ୍ରେଣୀର ହୋଟେଲଗୁଡ଼ିକରେ ରିସେପ୍‌ସନିଷ୍ଟର କାମ କେତେଜଣଙ୍କ ଭାଗ୍ୟରେ ଜୁଟିଥାଏ ?

: ସେଇଟା ଅବଶ୍ୟ ସତ କଥା । ତେବେ ଅସଲ ଘଟଣା କ'ଣ ଜାଣନ୍ତି ମିଷ୍ଟର ମହାପାତ୍ର ?

ଲାୟଲି ହଠାତ୍ ନୀରବ ହୋଇ ଯାଇ ସଂଜୀବଆଡେ ଚାହିଁଲା ।

ସତ୍ୟବ୍ରତ ଲାୟଲିର ଉଦ୍ଦେଶ୍ୟ ବୁଝିପାରି ସଂଜୀବକୁ ଉଦ୍ଦେଶ୍ୟ କରି କହିଲେ : ମିଷ୍ଟର ରାଉତରାୟ ଆପଣ ଟିକେ...

ସତ୍ୟବ୍ରତ କଥା ଶେଷକରିବା ପୂର୍ବରୁ ସଂଜୀବ ଉଠି ଠିଆହୋଇପଡିଥିଲା, କହିଲା : ନିଶ୍ଚୟ ନିଶ୍ଚୟ । ମୁଁ ବାହାରେ ଅପେକ୍ଷା କରୁଛି । ଆପଣଙ୍କ କଥା ଶେଷହୋଇଗଲେ ମୋତେ ଖବର ଦେବେ ।

ଲାୟଲି ଏଥର କହିଲା : 'ଅମ୍ବର'ର ମ୍ୟାନେଜରଙ୍କ ଆଚରଣ ମୋଟେ ଭଲ ନୁହେଁ । ସେ ଚାହୁଁଥିଲେ ତାଙ୍କର ଜଣେ ଆତ୍ମୀୟାଙ୍କୁ ରିସେପ୍‌ସନିଷ୍ଟ କରି ନିୟୋଗ କରିବା ପାଇଁ; କିନ୍ତୁ କର୍ତ୍ତୃପକ୍ଷ ତାଙ୍କ କଥା ଶୁଣିଲେ ନାହିଁ । ମୋତେ ନିଯୁକ୍ତି ଦେଲେ । ଏବେ ମ୍ୟାନେଜର ମୋତେ ମୋଟେ ସହିପାରୁ ନାହାନ୍ତି । ମୋ ଚରିତ୍ର ସମ୍ବନ୍ଧରେ ନାନା ପ୍ରକାର କାଳ୍ପନିକ କୁତ୍ସା କଥା କର୍ତ୍ତୃପକ୍ଷଙ୍କ କାନରେ ପହଞ୍ଚାଉଛନ୍ତି । ନିଜେ ସେ ଖୁବ୍ ଭଲ ମଣିଷ ବୋଲି ଦେଖେଇ ହେଉଛନ୍ତି । କର୍ତ୍ତୃପକ୍ଷ ଆଉ କର୍ମଚାରୀମାନଙ୍କ ପାଖରେ ତାଙ୍କର ଆଚରଣ ଏତେ ସାଦାସିଧା ଯେ, ଆପଣ ବାହାରୁ ଟିକିଏ ହେଲେ ତାଙ୍କ କୁତ୍ସିତ ମନୋବୃତ୍ତିର କଥା ଆଞ୍ଚ କରି ପାରିବେ ନାହିଁ । ଏପରି କେତୋଟି ଲୋକ ସେ ରଖିଛନ୍ତି, ଯେଉଁମାନେ ଦରକାର ହେଲେ ଖୁଣ୍ କରିବାକୁ ବି ପଛେଇବେ ନାହିଁ ।

: ଏ କ୍ଷେତ୍ରରେ ମୁଁ ଆପଣଙ୍କୁ କ'ଣ ସାହାଯ୍ୟ କରିପାରିବି ? ଏଇଟା ତ ଆପଣଙ୍କର ମାଲିକ ଆଉ କର୍ମଚାରୀଙ୍କ ଭିତରେ ବୁଝାମଣାର କଥା । ମୋର ଏଥିରେ ହସ୍ତକ୍ଷେପର ସୁଯୋଗ କାହିଁ ? ସତ୍ୟବ୍ରତ କହିଲେ ।

: ନା, ନା, ମୁଁ କେବଳ ମୋର ନିରାପତ୍ତା କଥା ଆପଣଙ୍କୁ କହିବାକୁ ଆସିଛି । ମିଷ୍ଟର କାପୁର ଏମିତି ଭଲଲୋକ । ପ୍ରଥମ ଶ୍ରେଣୀର ହୋଟେଲ ମ୍ୟାନେଜର ହିସାବରେ ତାଙ୍କର ସବୁ ପ୍ରକାର ଦକ୍ଷତା ଅଛି; କିନ୍ତୁ ସଇତାନୀ ବୁଦ୍ଧି ବି ତାଙ୍କ ପେଟ ଭିତରେ ସେତିକି ପୂରିରହିଛି । ବିଶେଷତଃ ମୋ ବିରୋଧରେ ତାଙ୍କର ଅଭିଯୋଗର ଶେଷ ନାହିଁ । ମୋଟ ଉପରେ ମୁଁ ଅମ୍ବରର ରିସେପ୍‌ସନିଷ୍ଟ ହୋଇ ରୁହେ, ଏହା ସେ ଚାହାନ୍ତି ନାହିଁ ।

: ବୁଝିଲି । ସେଇଟା ଏକ ପ୍ରକାର ଆପଣମାନଙ୍କର ଘରୋଇ ସମସ୍ୟା । ସେଥିପାଇଁ ମୁଁ କ'ଣ କରି ପାରିବି ? ସତ୍ୟବ୍ରତ କହିଲେ ।

: ମୁଁ କିନ୍ତୁ ଆଶଙ୍କା କରୁଛି ଅନ୍ୟ ପ୍ରକାର ।

: କେଉଁ ପ୍ରକାର ?

: ପ୍ରାଣ ହାନିର ।

ସତ୍ୟବ୍ରତଙ୍କ ଆଖି ଦୁଇଟା ମୁହୂର୍ତ୍ତକ ପାଇଁ ଚଞ୍ଚଳ ହୋଇଉଠିଲା । ତା'ପରେ ସେ ସ୍ଥିର କଣ୍ଠରେ କହିଲେ : ଏଥିପାଇଁ ଆପଣ ଥାନାରେ ଗୋଟାଏ ଡାଏରୀ ଦେଇପାରନ୍ତି ।

: ଲାଭ ?

: ସେ ଲାଭ-କ୍ଷତି କଥା ମୁଁ ତ ଆଉ ହିସାବ କରି ପାରିବି ନାହିଁ । ତା'ଛଡା ମିଷ୍ଟର କାପୁରଙ୍କ ସହିତ ମୋର ବି ପରିଚୟ ନାହିଁ । ଯଦି ଥାଆନ୍ତା ତେବେ ଆପଣଙ୍କ ପାଇଁ ସୁପାରିସ କରି ଦେଖିଥାଆନ୍ତି ।

: ସିଏତ ଅଲଗା କଥା; କିନ୍ତୁ ଏ ପରିସ୍ଥିତିରେ ଆପଣ ମୋତେ କିଛି ଆଡଭାଇସ୍ ଦେଇପାରନ୍ତି ?

: ଦେଖନ୍ତୁ ଏସବୁ ଆପଣଙ୍କର ଭୀଷଣ ବ୍ୟକ୍ତିଗତ ସମସ୍ୟା । ମୁଁ ଯଦି କୁହେ ଆପଣ ଅମ୍ବରରୁ ଚାକିରି ଛାଡ଼ି ଚାଲିଯାଆନ୍ତୁ, ଆପଣଙ୍କର ବୟସ ଅଳ୍ପ, ଦକ୍ଷତା ଅଛି, ଯୋଗ୍ୟତା ଅଛି । ଅନ୍ୟ କେଉଁଠି ପେଟ ପୋଷିବା ପାଇଁ ଚାକିରି ଯୋଗାଡ଼ କରି ନେଇ ପାରିବେ; କିନ୍ତୁ ଆପଣ କ'ଣ ମୋ ଆଡଭାଇସ୍ ମାନିବେ ?

ଲାୟଲି ହସି ହସି କହିଲା : ଏତ ଅତି ସହଜ କଥା । ଗୋଟିଏ ଛୋଟ ପିଲାକୁ ପଚାରିଲେ ସେ ବି ଏଇଆ କହିବ; ଆଉ ଆପଣଙ୍କ ପାଖକୁ ଧାଇଁ ଆସିବାର ସାର୍ଥକତା ରହିଲା କେଉଁଠି ?

: କିନ୍ତୁ ଏ କ୍ଷେତ୍ରରେ ଆପଣ କ'ଣ ଚାହାନ୍ତି ?

: ମୁଁ ଚାହେଁ ନାହିଁ ଅମ୍ବର ପରି ଗୋଟିଏ ଫାଷ୍ଟକ୍ଲାସ ହୋଟେଲରୁ ପ୍ରାଣଭୟରେ ଚାକିରି ଛାଡ଼ି ଚାଲିଯାଏ ।ପ୍ରାଣଟାକୁ ତ ପୁଣି ରକ୍ଷା କରିବାକୁ ହେବ । ସେଇଥି ପାଇଁ ଆପଣଙ୍କ ସହଯୋଗ ମଧ୍ୟ ଆବଶ୍ୟକ ।

: କିନ୍ତୁ ମୁଁ ତ....

: ଆପଣ ଖାଲି ମିଷ୍ଟର କାପୁରଙ୍କ ମୋଟିଭ୍ ସମ୍ବନ୍ଧରେ ଟିକିଏ ଅନୁସନ୍ଧାନ କରିବେ । ପ୍ରକୃତରେ ସେ ମୋ ସମ୍ବନ୍ଧରେ କ'ଣ କରିବାକୁ ଚାହାନ୍ତି, ମୋ ପ୍ରତି ତାଙ୍କର ମନୋଭାବ ବଦଳିବା ସମ୍ଭବ କି ନୁହେଁ; ଆପଣ କେବଳ ସେତିକି ଜାଣିପାରିଲେ ଯଥେଷ୍ଟ ହେବ ।

ସତ୍ୟବ୍ରତ ଲାୟଲିର ଅସହାୟ ଆଖି ଦୁଇଟା ଆଡେ ଚାହିଁଥିଲେ । ମୁହଁରେ ଫୁଟିଉଠିଥିଲା କିପରି ଏକ ବିଷାଦ କାଳିମା ।

ଲାୟଲି ଉଠିପଡିଲା, କହିଲା : ଆପଣ ମୋର ଏହି ଅପରିଚିତ ଜାଗାରେ ଏକମାତ୍ର ଆଶା ଭରସା । ଯଦି ମୋର ମୃତ୍ୟୁ ହୁଏ, ତେବେ ସେଥିପାଇଁ ଭଗବାନଙ୍କ ପାଖରେ ଆପଣଙ୍କୁ କୈଫିୟତ ଦେବାକୁ ପଡ଼ିବ । ମୁଁ ଆଜି ଉଠିଲି । ଏଣିକି ଯାହା କରିବାର କଥା ଆପଣ କରିବେ ।

ସତେରେ ଲାୟଲି ଉଠି ଚାଲିଗଲା ।

ସତ୍ୟବ୍ରତ ନୀରବରେ ତା' ଯିବା ପଥକୁ ଚାହିଁ ଚିନ୍ତା କରୁଥିଲେ, ଲାୟଲି । ତମ ପରି ଝିଅମାନେ ହିଁ ସମାଜର ଦୁଷ୍ଟବ୍ରଣ, ପୁଣି ତମ ପରି ଝିଅମାନେ ନ ଥିଲେ ସମାଜର ସ୍ୱପ୍ନ ଭାଙ୍ଗିଯିବ; କିନ୍ତୁ ତମ କଥା ସ୍ୱତନ୍ତ୍ର । ତମେ ଆଉ ଯାହା ହୁଅ ପଛେ ମୋ' ମନରେ ତମେ ଭାବାନ୍ତର ସୃଷ୍ଟି କରିଛ । ମୋ' ଆଖିରେ ତୁମେ ଆଖିଏ ସ୍ୱପ୍ନ ଭରିଦେଇଛି । ମୁଁ ତମ ପାଇଁ ନିଶ୍ଚୟ ଚେଷ୍ଟା କରିବି ।

ସତ୍ୟବ୍ରତର ଭାବନା ବାଧାପ୍ରାପ୍ତ ହେଲା ।

ସଂଜୀବ ରାଉତରାୟ ପୁଣି ଭିତରକୁ ଆସିଲା ।

ସତ୍ୟବ୍ରତ ପରିବେଶଟାକୁ ହାଲ୍କା କରିବା ପାଇଁ କହିଲେ : ଝିଅଟି ଆପଣଙ୍କୁ କିମିତି ଲାଗିଲା ?

: ଭଲ । ସଂଜୀବର ଏପରି ଏକ ସଂକ୍ଷିପ୍ତ ଉତ୍ତର କିନ୍ତୁ ସତ୍ୟବ୍ରତଙ୍କୁ ଖୁସିକରି ପାରିଲା ନାହିଁ । ଆଉ ବି ଲାୟଲି ସମ୍ବନ୍ଧରେ କିଛି ସେ କହିଲେ ନାହିଁ; ବରଂ ସଂଜୀବକୁ କହିଲେ, ଆପଣଙ୍କ କଥା ତ ସବୁ ଶୁଣିସାରିଛି । ମୋର ଇଚ୍ଛା ଥରେ ଯାଇ ଆପଣଙ୍କ ଘରଟା ଦେଖି ଆସିବି; କିନ୍ତୁ ଆଜି ଆଉ ସେଇଟା ସମ୍ଭବ ହେବ ନାହିଁ । କାଲି ସକାଳେ ଆପଣ ଘରେ ଥିବେ ତ ?

: ଆପଣ ଯଦି ଯାଆନ୍ତି ତା' ହେଲେ ନିଶ୍ଚୟ ରହିବି । ତା' ଛଡା ମୁଁ ବି ବିଶେଷ କୁଆଡ଼େ ଯାଏ ନାହିଁ ।

: ନା, ବର୍ତ୍ତମାନ ପରିସ୍ଥିତିରେ ଆପଣଙ୍କର ଘର ଛାଡ଼ି କୁଆଡ଼େ ବାହାରିଯିବା ଉଚିତ ନୁହେଁ । ତା' ହେଲେ ନରୋତ୍ତମ ଅଗରବାଲା ସମ୍ବନ୍ଧରେ ଆପଣ ବିଶେଷ କିଛି କହି ପାରିବେ ନାହିଁ । ଲୋକଟାକୁ ପାଇଥିଲେ ଭଲ ହୋଇଥାଆନ୍ତା ।

: ସେ ଆଉ ଥରେ ଯଦି ଆସେ ମୁଁ ତାକୁ ଅଟକାଇ ରଖି ଆପଣଙ୍କୁ ଖବର ଦେବି ।

: ଆପଣ ନିଶ୍ଚିନ୍ତ ରୁହନ୍ତୁ ଯେ ସେ ଆଉ ଆସିବ ନାହିଁ ।

: ତା' ହେଲେ...

: ବର୍ତ୍ତମାନ ଆପଣ ଆସିପାରନ୍ତି, ଏଥିପାଇଁ ଖୁବ୍ ଗୋଟାଏ ଚିନ୍ତା କରିବେ ନାହିଁ ।

: ପୋଲିସ୍‌ରେ ଖବର ଦେବି ?

: ନା, ଆପାତତଃ ଥାଉ । ମୁଁ କାଲି ଯାଇ ପରିବେଶ ଓ ପରିସ୍ଥିତିଟା ଦେଖି ଆସିବା ପରେ ଯାହା କରିବାକୁ ହେବ ଆପଣଙ୍କୁ କହିବି ।

ସଂଜୀବ ନମସ୍କାର କରି ଚେୟରରୁ ବାହାରି ଯାଉଥିଲା । ସତ୍ୟବ୍ରତ ପୁଣି ପଛରୁ ଡାକିଲେ : ମିଷ୍ଟର ରାଉତରାୟ !

ସଂଜୀବ ଫେରି ଆସି ଠିଆହେଲା ।

ସତ୍ୟବ୍ରତ ବସିବା ପାଇଁ ଇଂଗିତ ଦେଇ କହିଲେ : ଲାୟଲିକୁ ଆପଣଙ୍କର ମନେପଡ଼ିଲା ?

: ନା, ମନେ ପକେଇବାକୁ ବହୁତ ଚେଷ୍ଟାକଲି । ଗତ ବର୍ଷର ପଚିଶ ଡ଼ିସେମ୍ବରର ରାତିଟି ଏବେ ବି ମୋର ଝାପ୍‌ସା ଭାବରେ ମନେପଡ଼େ କିନ୍ତୁ ତା'ଭିତରୁ ଲାୟଲିକୁ ମୁଁ ଖୋଜିପାଉନାହିଁ ।

: ହୁଁ, ଲାୟଲି କିନ୍ତୁ ଆପଣଙ୍କୁ ଠିକ୍ ଚିହ୍ନିପାରିଲା । ସେଦିନ ସେ ହୁଏତ ବିଶେଷ ଭାବରେ ଲକ୍ଷ୍ୟ କରିଥିବ ।

: ହୁଏତ ସେଇଆ ।

: ଆଚ୍ଛା ସେଦିନ ରାତିରେ ହୋଟେଲ ଏମ୍ବାସିରେ କ'ଣ କିଛି ବିଶେଷ ପ୍ରୋଗ୍ରାମ ଥିଲା ?

: ନା, ଏକ୍‌ସମାସର ରାତି । ଖାଲି ପିଇ, ମାତାଲ ହେଇ ଅସଂଲଗ୍ନ ଭାବରେ ନାଚିବା ଯେପରି ସେଇଦିନର ଧର୍ମ । ମୁଁ ବି ଶେଷ ପର୍ଯ୍ୟନ୍ତ ଚେତନା ହରାଇ ବସିଥିଲି ।

: ହୁଁ । ଆଚ୍ଛା ! ଆପଣ ତା' ହେଲେ...

: ଆପଣ କ'ଣ ସତେରେ ମନେକରୁଛନ୍ତି ଆମ ଘର ଭିତରେ କୌଣସି ଗୁପ୍ତ ଧନ ବାପା ରଖି ଯାଇଛନ୍ତି ? ସଂଜୀବ ହଠାତ୍ ପ୍ରଶ୍ନ କଲା ।

: ଏ କ୍ଷେତ୍ରରେ ସେହିପରି ମନେକରିବା ସ୍ୱାଭାବିକ । ଆଚ୍ଛା କହିଲେ, ଆପଣଙ୍କର ସେ କୋଠାଟା ଇମିତି ସାଧାରଣ ଭାବରେ କେତେ ଟଙ୍କା ମୂଲ୍ୟ ହୋଇପାରେ ?

: ଖୁବ୍ ବେଶି ହେଲେ କୋଡ଼ିଏ ପଚିଶ ହଜାର ହେବ ।

: ତା'ହେଲେ ! ଜଣେ ଲୋକ ଆପଣଙ୍କୁ ଦଶହଜାର ଟଙ୍କା ଅଧିକା ଦେବାର ନିଶ୍ଚୟ ତ କିଛି କାରଣ ଥାଇପାରେ । ସେ ଯାହାହେଉ, ଆପଣ ସେ ବିଷୟରେ ଆଉ ବିଶେଷ ଚିନ୍ତା

କରନ୍ତୁ ନାହିଁ । ମୁଁ ନ କାଲି ଯାଉଛି, ଦେଖି ଆସେ । ତା'ପରେ ଯାହା କରିବାକୁ ହେବ ମୁଁ କହିବି ।

ସଂଜୀବ ପୁଣି ଉଠି ଠିଆହେଲା ।

ସତ୍ୟବ୍ରତ ବୋଧହୁଏ ଚିନ୍ତା ସାଗରରେ ଝାସଦେଲେ ।

ସଂଜୀବ ମନରେ ବି ଚିନ୍ତା ଭରିଯାଇଥିଲା । ସେହି ଚିନ୍ତା ଭିତରେ କିପରି ଏକ ରୋମାଞ୍ଚ ଥିଲା । ଯେଉଁ ନୈରାଶ୍ୟ ଭାବନେଇ ସେ ଆସିଥିଲା ସତ୍ୟବ୍ରତ ମହାପାତ୍ରଙ୍କ ପାଖକୁ, ଫେରିଲା ବେଳେ କିନ୍ତୁ କିପରି ଏକ ସ୍ୱପ୍ନବିଜଡ଼ିତ ରୋମାଞ୍ଚ ଜନ୍ମିଥିଲା ତା' ମନରେ ।

ସତ୍ୟବ୍ରତର ଚେମ୍ବରରୁ ବାହାରି, ପାହାଚ ପରେ ପାହାଚ ଅତିକ୍ରମ କଲାବେଳେ, ସଂଜୀବ ନିଜକୁ ମନେକରୁଥିଲା ଯେପରି ସେ ଏକ ଅଭିଯାତ୍ରୀ । ସେ ବାହାରିଛି ଏକ ଦୂରନ୍ତ ଅଭିଯାନରେ । ସେ ସଂଧାନ ପାଇଛି ସାତରାଜାର ଧନ ଭଣ୍ଡାର । ଏ ଅଭିଯାନରେ ତାକୁ ସଫଳ ହେବାକୁ ହିଁ ହେବ ।

ଅନ୍ୟମନସ୍କ ଭାବରେ ସେ ତା' ଗାଡ଼ିର ଦରଜା ଖୋଲିଲା ।

ପକେଟରୁ ଚାବି ଖୋଲି ଷ୍ଟାର୍ଟ ଦେଲା ।

କିନ୍ତୁ ପରମୁହୂର୍ତ୍ତରେ, ବାଁ ପାଖରେ କାହାର ସ୍ପର୍ଶ ପାଇଲା ସେ ? ଲାୟଲି ! ତମେ ମୋ ଗାଡ଼ିରେ ? ଆଖିର ଭାଷା ଠିକ୍ ଏଇଆ । ସମସ୍ତ ନୀରବତା ଭଙ୍ଗ କରି ଲାୟଲି ହସିଉଠିଲା ।

: ଆପଣ ଆଶ୍ଚର୍ଯ୍ୟ ହେଉଛନ୍ତି ମୋତେ ଦେଖି ? ଆପଣ ତ ଆମପରି ଝିଅମାନଙ୍କ ଚରିତ୍ର ସହିତ ପରିଚିତ । ଅଥଚ...

ସଂଜୀବ ହଠାତ୍ କିଛି ଉତ୍ତର ଦେଇପାରିଲା ନାହିଁ ।

ଲାୟଲି କିନ୍ତୁ ସଂଜୀବ ମନରେ ହଠାତ୍ ଏହିପରି ଏକ ଅବସ୍ଥା ସୃଷ୍ଟିକରି ଖୁବ୍ ହସୁଥିଲା । କହିଲା : ଆପଣ ମୋତେ ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କର ମୋଟେ ଅନିଷ୍ଟ କରିବି ନାହିଁ । ଆପଣଙ୍କ ଗାଡ଼ିରେ ଆସି ବସିଛି ନିଜର ମନେକରି । ଯଦି ପସନ୍ଦ ନ କରନ୍ତି ଓହ୍ଲେଇଯିବି ।

ଲାୟଲି ସଙ୍ଗେ ସଙ୍ଗେ ଓହ୍ଲେଇଯିବା ପାଇଁ ଗାଡ଼ିର ଦରଜା ଖୋଲିଲା ।

: ନା, ନା, ଆପଣ ବସନ୍ତୁ ମିସ୍ ଲାୟଲି । ମୁଁ ଅନ୍ୟ ଗୋଟାଏ ବିଷୟ ନେଇ ବିଶେଷ ଚିନ୍ତିତ ହୋଇପଡ଼ିଛି ତ ! ସେଇଥି ପାଇଁ...

ଲାୟଲି ପୁଣି ଗାଡ଼ିର ଦରଜା ବନ୍ଦ କଲା । ସଂଜୀବ ପାଖକୁ ଆଉ ଟିକିଏ ଘୁଞ୍ଚି ବସିଲା । କହିଲା : ମୁଁ ଭୁବନେଶ୍ୱର ଯିବି । ଯଦି ଆପଣ ଅସୁବିଧା ମନେ ନ କରନ୍ତି ମତେ ଟିକିଏ ଛାଡ଼ିଦେଇ ଯିବେ ।

: ଭୁବନେଶ୍ୱର କେଉଁଠିକି ? ଧୀରେ ଧୀରେ ସଂଜୀବର ଜଡତା ଘୁଞ୍ଚି ଯାଉଥିଲା ।

: ଏଆର ପୋର୍ଟ । ମୋର ଜଣେ ବାନ୍ଧବୀ ଆସିବାର ଥିଲା । ବୋଧହୁଏ ଆସି ପହଞ୍ଚି ସାରିଥିବ । ମୁଁ ତାକୁ ଆମ ହୋଟେଲକୁ ଆଣିବି ।

ସଂଜୀବ ଗାଡ଼ି ବ୍ୟାକ୍ କରି ରାଜରାସ୍ତା ଉପରକୁ ବାହାରିଯାଇଥିଲା । ଲାୟଲି କହିଲା : ଆଜି ହଠାତ୍ ଆସି ଆପଣଙ୍କୁ ଏଠାରେ ଭେଟିବି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।

: ବେଳେ ବେଳେ ଏହିପରି ବହୁ ଆକସ୍ମିକ ଘଟଣା ଘଟିଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ମିସ୍ ଲାୟଲି ।

: ମତେ ଖାଲି ଲାୟଲି କୁହନ୍ତି । ମିସ୍ କିମ୍ବା ମିସେସ୍ କେଉଁଟାକୁ ମୁଁ ସହିପାରେ ନାହିଁ । ବିଶେଷତଃ ଅନ୍ତରଙ୍ଗମାନଙ୍କ ମୁହଁରେ ସେଗୁଡ଼ା ମୋଟେ ଭଲ ଶୁଭେ ନାହିଁ

: ମୁଁ ଏହା ଭିତରେ ଆପଣଙ୍କର ଅନ୍ତରଙ୍ଗ ହୋଇ ଉଠିଲି କେତେବେଳେ ?

: ଏହା ଭିତରେ ନୁହେଁ, ବହୁ ପୂର୍ବରୁ । ଲାୟଲି ହସି ହସି କହିଲା । ଆପଣ ଜର୍ଜର ଅନ୍ତରଙ୍ଗ ଯେତେବେଳେ, ମୋର ଅନ୍ତରଙ୍ଗ ନ ହେବେ କାହିଁକି ? ଆପଣଙ୍କ ସମ୍ବନ୍ଧରେ ଜର୍ଜ ମୋତେ ବହୁତ କଥା କହିଥିଲା; କିନ୍ତୁ ସେ ଆଉ ସୁଯୋଗ ପାଇ ନ ଥିଲା ମୋତେ ପରିଚୟ କରାଇ ଦେବା ପାଇଁ । ଜର୍ଜ ଅବଶ୍ୟ ଆଜି ସ୍ୱର୍ଗରେ । କିନ୍ତୁ ତା' ପାଇଁ ମୋର...

ସଂଜୀବ ଦେଖିଲା ଲାୟଲିର ଆଖି ଛଳଛଳ ହୋଇଉଠିଛି ।

ଜର୍ଜ ପ୍ରକୃତରେ ଗୋଟିଏ ଭଲ ମଣିଷ ଥିଲା । ଅବଶ୍ୟ ସଂଜୀବ ଠାରୁ ସେ ଥିଲା ସିନିଅର; ତଥାପି ସଂଜୀବ ସହିତ ଥିଲା ତା'ର ଯଥେଷ୍ଟ ଅନ୍ତରଙ୍ଗତା । ଖୁବ୍ ବଡ଼ ଲୋକର ପିଲା ଥିଲା ଜର୍ଜ । ବାପାଙ୍କର କଲିକତାରେ ଚାରି ପାଞ୍ଚଟା କୋଠା । ବିରାଟ ବ୍ୟବସାୟ । ଜର୍ଜ ଥିଲା ସବୁ ଭାଇ ଭଉଣୀଙ୍କ ଠାରୁ ସାନ । ସେଇଥିପାଇଁ ବୋଧହୁଏ ପରିବାରରେ ଥିଲା ତା'ର ବେଶି ଆଦର ।

ସଂଜୀବକୁ ଜର୍ଜ ବେଳେ ବେଳେ ସଙ୍ଗରେ ଧରି ନାଇଟ୍ କ୍ଲବକୁ ଯାଏ । ହୋଟେଲ ବାର୍‌ରେ ବସି ନାଚ ଦେଖେ । ତା'ର ବିଭିନ୍ନ ବଂଧୁ ମହଲରେ ପରିଚିତ କରାଇ ଦିଏ । ଲାୟଲି ପରି ତା'ର ଯେ ଗୋଟିଏ ଗାର୍ଲ ଫ୍ରେଣ୍ଡ୍ ଥିଲା, ସେ କଥା ତ କେବେ କହି ନଥିଲା ଜର୍ଜ ! ଅବଶ୍ୟ ନାରୀ ଘଟିତ ବ୍ୟାପାରରେ ଜର୍ଜ ସଂଜୀବ ପାଖରେ ଖୁବ୍ କସସ୍ । ଖୁବ୍ ଅଳ୍ପ ଝିଅଙ୍କ ସଙ୍ଗରେ ଜର୍ଜ ପରିଚିତ କରାଇଛି ସଂଜୀବକୁ; କିନ୍ତୁ ବନ୍ଧୁ ମହଲରେ ଜର୍ଜର ସୁଖ୍ୟାତି କେବଳ ଝିଅମାନଙ୍କ ପାଇଁ । ଚେହେରାଟି ବି ସେହିପରି ଥିଲା ଜର୍ଜର ! ନାରୀ ମନ ହରଣ ପାଇଁ ତା' ହସ ଖଣ୍ଡିକ ଥିଲା ଆହୁରି ଆକର୍ଷକ ।

ଗତ ପଚିଶ ଡ଼ିସେମ୍ବର ରାତିରେ ସଂଜୀବ ତା'ରି ସହିତ ଯାଇଥିଲା ହୋଟେଲ ଏମ୍ବାସିକୁ । ସେହି ପଚିଶ ଡ଼ିସେମ୍ବର ପରେ ଆଉ ମାତ୍ର ଗୋଟିଏ ମାସ ବଞ୍ଚିଥିଲା ଜର୍ଜ । ଗୋଟାଏ ମଟର ଆକ୍‌ସିଡେଣ୍ଟରେ ଅତି କରୁଣ ଭାବରେ ମୃତ୍ୟୁ ହୋଇଥିଲା ତା'ର ।

ହଠାତ୍ ଆଜି ଲାୟଲି ଜର୍ଜ କଥା ମନେ ପକାଇ ଦେଇ ସଂଜୀବର ମନଟାକୁ ଫେରେଇ ନେଇଥିଲା ସେଇ ସବୁ ପୁରୁଣା ଦିନଗୁଡ଼ାକ ଆଡ଼କୁ । ବିଶେଷ କରି, ଜର୍ଜର ମୃତ୍ୟୁ ପୂର୍ବର ଶେଷ କରୁଣ କେତୋଟି ଘଣ୍ଟା ସଂଜୀବ ଆଖି ଆଗରେ ଭାସିଉଠିଥିଲା । ଉଃ, କି ଆକୁଳ ପ୍ରାର୍ଥନା ସେଦିନ ଜର୍ଜର । ମରିବାକୁ ସେ ଚାହେଁନାହିଁ ଏଇ ସୁନ୍ଦର ଭୁବନର ମୋହ ତୁଟାଇ ଅନ୍ୟ କେଉଁଠିକି ସେ ଯିବ ନାହିଁ ।

କିନ୍ତୁ କେହି ଶୁଣି ନ ଥିଲେ ତା'ର କାତର ପ୍ରାର୍ଥନା ।

ଶେଷରେ ଜର୍ଜର ଯନ୍ତ୍ରଣା କାତର ଦେହଟା ନିଶ୍ଚଳ ହୋଇଯାଇଥିଲା । ନର୍ସ ଆସି ଗୋଟିଏ ସଫା ଚଦର ଘୋଡେଇ ଦେଇ ଯାଇଥିଲା ।

ସଂଜୀବ ଫେରିଆସିଥିଲା । ଆଖିରେ ଲୁହ, ଆଉ ହୃଦୟରେ ହତାଶା ଧରି ।

କିନ୍ତୁ ଆଜି...

ସେହି ଦୀର୍ଘ ଦିନର ବ୍ୟବଧାନ ପରେ ବି ସଂଜୀବର ଆଖି ଦୁଇଟି ଅଶ୍ରୁଳ ହୋଇ ଉଠିଥିଲା । ଲାୟଲି ନିଜ ରୁମାଲଟାରେ ସଂଜୀବର ଆଖି ପୋଛି ଦେଇ କହିଲା : ପୁରୁଷ ପିଲାମାନେ କୌଣସି ଅବସ୍ଥାରେ କାନ୍ଦିବା ଉଚିତ ନୁହେଁ ।

ସଂଜୀବର ହୃଦୟଟା ସେତେବେଳେ ବ୍ୟଥାତୁର ହୋଇଉଠିଥିଲା । ସେ ଲାୟଲିକୁ କିଛି ଉତ୍ତର ଦେଇ ନପାରି ଆଗକୁ ଚାହିଁ ଗାଡ଼ି ଚଲାଇ ଯାଉଥିଲା ।

ଖୁବ୍ କିଛି ସମୟ ନୀରବତା ପରେ ଲାୟଲି କହିଲା : ଆପଣ ହୁଏତ ଜାଣି ନାହାନ୍ତି ମିଷ୍ଟର ରାଉତରାୟ । ଜର୍ଜ ମୃତ୍ୟୁରେ ମୋର ସବୁଠାରୁ ବେଶି କ୍ଷତି ହୋଇଛି ।

: କିପରି ?

ଲାୟଲି ତା' ଡାହାଣ ହାତର ଗୋଟିଏ ଆଙ୍ଗୁଳି ଦେଖାଇଲା ।

ସଂଜୀବ ଦେଖିଲା, ସେ ଆଙ୍ଗୁଳିରେ ଏକ ଉଜ୍ଜ୍ୱଳ ମୁଦ୍ରିକା ।

ଲାୟଲି ବ୍ୟଥିତ ସ୍ୱରରେ କହିଲା : ଜର୍ଜ ନିଜ ହାତରେ ପିନ୍ଧାଇ ଦେଇଥିଲା । ଏତେବେଳକୁ ଆମେ ହୁଏତ ଦାମ୍ପତ୍ୟ ଜୀବନ ଯାପନ କରୁଥାଆନ୍ତୁ ।

ସଂଜୀବ ଦେଖିଲା, ଲାୟଲି ଯେପରି ହତାଶ ହୋଇ ସୁଦୂର ପଥଆଡେ ଅନାଇ ରହିଚି ।

ସଂଜୀବ ସମବ୍ୟଥିତ ସ୍ୱରରେ କହିଲା : ଦୁନିଆରେ କାହାରି କ୍ଷତି କେହି ପୂରଣ କରିପାରେ ନାହିଁ । ନିଜ ମନକୁ କିନ୍ତୁ ସେହି କ୍ଷତିର ପରିପୂରକ ହିସାବରେ ସଜାଡ଼ି ନେବାକୁ ହୁଏ । ତା' ନ ହେଲେ ଦୁଃଖର ଶେଷ ହୁଏ ନାହିଁ ।

ତଥାପି ଲାୟଲି ନୀରବରେ ଦୂର ପଥଆଡେ ଚାହିଁବସିଥିଲା । କିଛି ସମୟ ପରେ ସେମାନେ ଭୁବନେଶ୍ୱରରେ ଆସି ପହଞ୍ଚିଯାଇଥିଲେ ।

ସଂଜୀବ କହିଲା : ଆପଣ କ'ଣ ଏୟାରପୋର୍ଟକୁ ଯିବେ ?

: ହଁ । ଲାୟଲି ଯେପରି ଚେତନା ଫେରିପାଇଲା । କହିଲା, : ଆପଣଙ୍କୁ ଅନେକ କଷ୍ଟ ଦେଲି ମିଷ୍ଟର ରାଉତରାୟ ।

ସଂଜୀବ ହସିଲା : ଆପଣ ସେମିତି କିଛି ଭାବିବା ଉଚିତ ନୁହେଁ । ତା'ଛଡା ମୁଁ ତ ଏଇବାଟେ ଆସିଥାଆନ୍ତି । ମୋ ଘର ଖୋର୍ଦ୍ଧାରେ । ମୋତେ ଆହୁରି ଅନେକ ଦୂର ଯିବାକୁ ହେବ ।

ଲାୟଲି ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କହିଲା : ଆପଣ ଦିନେ ଆସନ୍ତୁ ଆମ ହୋଟେଲ ଆଡେ । ମୋର ଏଠି କେହି ପରିଚିତ ନାହାନ୍ତି । ଦିନକୁ ଦିନ ଯେପରି ଶ୍ୱାସରୁଦ୍ଧ ହୋଇ ଆସୁଛି ।

ସଂଜୀବ କହିଲା : ନିଶ୍ଚୟ, ନିଶ୍ଚୟ । ମୁଁ ଦିନେ ଦି'ଦିନ ଛାଡ଼ି ଆପଣଙ୍କ ସହିତ ଦେଖା କରିବି ।

: ଆଉ ଆପଣଙ୍କୁ ଦେଖାକରିବାକୁ ହେଲେ ? ଲାୟଲି ପଚାରିଲା ।

: ମୋତେ ? ମୋର ଘର ଛଡା ଏଠି ଆଉ ଅନ୍ୟ କୌଣସି ଠିକଣା ନାହିଁ । ହଁ ତେବେ ମିଷ୍ଟର ମହାପାତ୍ରଙ୍କୁ ଫୋନ୍ କଲେ, ସେ ମୋର ଗତିବିଧି ସମ୍ବନ୍ଧରେ କିଛି କିଛି କହିପାରିବେ ।

ଲାୟଲି ଚାଲିଗଲା । ଏଆରଲାଇନ୍ ଅଫିସ୍‌ରେ ଅଦୃଶ୍ୟ ହେବାଯାଏ ସଂଜୀବ ଚାହିଁଥିଲା ସେଇଆଡ଼େ । ତା'ପରେ ସେ ଗାଡ଼ି ଚଳାଇ ବାହାରିଲା ନିଜର ଗୃହ ଅଭିମୁଖରେ ।

କିନ୍ତୁ ଲାୟଲି ଚାଲିଯିବା ପରେ ପୁଣି ଏକ ନୂଆ ଚିନ୍ତା ଆସି ବସାବାନ୍ଧିଲା ସଂଜୀବ ମନରେ ।

ଗୁପ୍ତ ଧନ !

ହଁ ଗୁପ୍ତ ଧନ ନିଶ୍ଚୟ କେଉଁଠି ଲୁଚି ରହିଛି ତା'ର ଘର ଭିତରେ । ହୁଏତ ବାପା ରଖି ନାହାନ୍ତି, ସା'ନ୍ତ ବାପା ବି ନ ରଖି ପାରିଥାଆନ୍ତି । କିନ୍ତୁ ସତରେ ଯଦି କେଉଁ ରାଜାଙ୍କର ଖଜାଞ୍ଚିଖାନା ହୋଇଥାଏ ଏଇ ଜାଗାଟା !

ଏ ଯେପରି ଭିନ୍ନ ଏକ ନିଶା ।

କ୍ରମେ କ୍ରମେ ସଂଜୀବର ସମସ୍ତ ଶରୀରରେ ସଂକ୍ରମିତ ହୋଇଉଠୁଥିଲା । ଫଳରେ ସଂଜୀବର ମନ ଭିତରେ ଭାସିଉଠୁଥିଲା ଏକ ଅକଳ୍ପନୀୟ ଛବି ।

ଗାଡ଼ିର ସ୍ପିଡ୍‌ବଢ଼ି ଯାଇଥିଲା ।

ସେ ଯେପରି ତା'ର ସେହି ପରିକଳ୍ପିତ କୁବେରପୁରୀରେ ପହଞ୍ଚିବାକୁ ବ୍ୟଗ୍ର ହୋଇ ଉଠିଥିଲା ।

ଏକ ସମୟରେ ଗାଡ଼ି ଠିଆହେଲା ଯାଇ ତାଙ୍କର କୋଠା ସାମ୍‌ନାରେ ।

ସଂଜୀବ ଏକ ପ୍ରକାର ଡେଇଁ ପଡ଼ିଲା ଗାଡ଼ି ଭିତରୁ ।

ଚିତ୍କାର କରି ଉଠିଲା : ମିଲ୍‌ଖା ସିଂ ?

ମିଲ୍‌ଖା ସିଂ ନ ଥିଲା ବୋଧହୁଏ ତା' ଘରଟି ଭିତରେ ।

ସେଇଥିପାଇଁ ଶୁଣି ପାରିଲା ନାହିଁ ସଂଜୀବର ଡାକ ।

କିଛି ଉତ୍ତର ନ ପାଇ ସଂଜୀବ ବିବ୍ରତ ହୋଇ ପଡ଼ିଲା । କିଛି ଅଘଟଣ ଘଟିଗଲା ନାହିଁ ତ ଆଉ ! କେହି ଆସି...

କିନ୍ତୁ ମିଲ୍‌ଖା ସିଂକୁ ବ୍ୟସ୍ତବିବ୍ରତ ହୋଇ ଛୁଟି ଆସୁଥିବାର ଦେଖି ସଂଜୀବ ଟିକିଏ ଆଶ୍ୱସ୍ତ ହେଲା ।

: କେହି ଆସିଥିଲେ ଆଉ ?

: ଜୀ ହଜୁର । ଜଣେ ସ୍ତ୍ରୀ ଲୋକ ଆସିଥିଲେ ଆପଣଙ୍କ ସହିତ ଦେଖାକରିବା ପାଇଁ ।

: ସ୍ତ୍ରୀଲୋକ ? ସେ ପୁଣି କିଏ ?

: ଗୋକୁଳି ସବୁ ଖବର ରଖିଛି । ଆପଣ ତାକୁ ପଚାରିଲେ ସେ କହିବ ।

ସଂଜୀବ ଗୋକୁଳିକୁ ଡାକି ଡାକି ଭିତରକୁ ପଶିଯାଉଥିଲା । ଗୋକୁଳି ସେତେବେଳକୁ ପାରାମାନଙ୍କୁ ଖୋଇବାରେ ବ୍ୟସ୍ତ ଥିଲା ।

ସଂଜୀବ ସେଠାରେ ପହଞ୍ଚିବା କ୍ଷଣି ଦୁଇ ଚାରିଟା ପାରା ଉଡ଼ି ଆସି ତା' ମୁଣ୍ଡ ଓ କାନ୍ଧ ଉପରେ ବସିପଡିଲେ ।

ସଂଜୀବ ବିରକ୍ତ ହୋଇ ଦୁଇ ହାତରେ ଧରି ସେଗୁଡାଙ୍କୁ ଦୂରକୁ ଛାଟି ଦେଇ କହିଲା,

: କିଏ ଆସିଥିଲା ଗୋକୁଳି ?

: ହଁ, ହଁ, ଆପଣ ଚାଲିଯିବା ପରେ ଜଣେ ସ୍ତ୍ରୀଲୋକ ଆସିଥିଲେ । ସେ ଆସି ବଡ଼ ବାବୁଙ୍କୁ ଖୋଜୁଥିଲେ ।

: କିଏ ସେ ସ୍ତ୍ରୀ ଲୋକ ?

: ନାଁ ଫାଁ କିଛି କହିଲେ ନାହିଁ । ସେ କହିଲେ ଯେ ବଡ଼ ବାବୁଙ୍କ ସଂଗରେ ତାଙ୍କର ଅନେକ ଦିନରୁ ପରିଚୟ । ସେ କୁଆଡ଼େ ଶୁଆ-ଶାରୀ ବିକା-କିଣା ବ୍ୟବସାୟ କରନ୍ତି । କଲିକତାରେ ତାଙ୍କର ଦୋକାନ । ବଡ଼ ବାବୁ ଅନେକ ଦିନରୁ କିଛି କିଣା କିଣି କରି ନଥିବାରୁ ସେ ଆସିଥିଲେ ଖବର ନେବାକୁ ।

: ତୁ ତାଙ୍କୁ କ'ଣ କହିଲୁ ? ସଂଜୀବ ପଚାରିଲା ।

: ମୁଁ ଆଉ କ'ଣ କହି ଥାଆନ୍ତି । ବଡ଼ବାବୁ ଆଉ ନାହାନ୍ତି ଜାଣି ସ୍ତ୍ରୀ ଲୋକଟି କାନ୍ଦି ପକାଇଲେ । ଅନେକ ବେଳଯାଏ ତୁ ତୁ ହେଲେ । ତା'ପରେ ତୁମକୁ ଖୋଜିଲେ । ଶେଷରେ ଯାଇ ଶୁଆ-ଶାରୀମାନଙ୍କୁ ଦେଖିଲେ । ସେମାନଙ୍କୁ ଗେଲ କଲେ । ସେମାନଙ୍କ ଭିତରୁ ଚାରି ପାଞ୍ଚଟାକୁ ବାଦ୍‌ଦେଇ କହିଲେ, ଏଗୁଡା ସବୁ ମୋଠାରୁ କିଣା ।

: ତା' ପରେ ?

: ତମ ସହିତ ଦେଖା କରିବା ପାଇଁ ଅନେକ ବେଳଯାଏ ଅପେକ୍ଷା କରିଥିଲେ ।

: ସ୍ତ୍ରୀଲୋକଟିର ବୟସ କେତେ ହେବ ?

: ଅନେକ । ଚାଳିଶିରୁ ବେଶି ହେବ ।

: ଆଉ କ'ଣ ସବୁ ଆମ ଘରେ ଦେଖିଲେ ?

: ନାଁ ଆଉ କିଛି ଦେଖି ନାହାନ୍ତି ।

: ବାପାଙ୍କ ଘରକୁ ଯାଇ ନ ଥିଲେ ?

: ନାଁ, ସେ ଆମ ବସିବା ଘରେ ବସିଥିଲେ । ଖାଲି ଶୁଆ-ଶାରୀମାନଙ୍କୁ ଦେଖିବା ପାଇଁ ଥରେ ଉଠି ଯାଇଥିଲେ ।

: ହୁଁ, ଆଉ ଆସିବେ କି ନାହିଁ କିଛି କହିଛନ୍ତି ?

: ସେ ପୁରୀ ଯାଇଛନ୍ତି । ସମ୍ଭବ ହେଲେ ଏଇବାଟେ ଫେରିବେ । ହଁ, ଆଉ ଗୋଟାଏ କଥା କହି ଯାଇଛନ୍ତି, ଯଦି ଆମ ଶୁଆ-ଶାରୀଗୁଡାକ ଆମେ ବିକିଦେବାକୁ ଚାହାନ୍ତି, ତା'ହେଲେ ତାଙ୍କୁ ଖବର ଦେଲେ ସେ ସବୁ କିଣିନେଇଯିବେ ।

: ଆଚ୍ଛା, ସଂଜୀବ ଯେପରି ଚିତ୍କାର କରି ଉଠିଲା । ବୁଝିଛି । ସବୁ ଷଡଯନ୍ତ୍ର । ଆମ ଏ ଘରୁ କାହାରିକୁ ମାଟି ଗୋଟିଏ ବି ବିକ୍ରିକରାହେବ ନାହିଁ; ଶୁଆ-ଶାରୀ ତ ଦୂରର କଥା । ମନେ ରଖିଥା ଗୋକୁଳ, ମୁଁ ନ ଥିବା ବେଳେ କେହି ଯଦି ଆସେ, ଆଉ ସେ ଯଦି ଆମ

ଘରକୁ କିଛି ନେବାକୁ ଚାହେଁ, ଅଥବା କେଉଁଠି କିଛି ଦେଖିବାକୁ ଚାହେଁ, ଖବରଦାର୍, ତମେ କେହି ଯେପରି ତାକୁ ଭିତରକୁ ନ ନିଅ । ଜାଣିଛୁ ଗୋକୁଳି ! ଆମ ଏଇ ଘରେ...

କ'ଣ କହିବାକୁ ଯାଇ ସଂଜୀବ ପୁଣି ନୀରବ ହୋଇଗଲା ।

ସେ ପ୍ରଥମେ ଯାଇ ରଣଜିତ୍‌ବାବୁଙ୍କ ଶୋଇବା ଘରଟା ଖୋଲିଲା । ଚାରିଆଡକୁ ଚାହିଁଲା । ତା' ପକ୍ଷରେ ଆଜି ଯେପରି ଏଗୁଡା ସବୁ ନୂତନ ରୂପ ପରିଗ୍ରହ କରିଛି । ପ୍ରତିଟି ଆସବାସପତ୍ର, ଟେବୁଲ ଡ୍ରୟାର, ପୁରୁଣା ଖାମ୍, ଗୋଟି ଗୋଟି କରି ସେ ଦେଖିବାକୁ ଲାଗିଲା ।

ଆଲମାରି ଖୋଲି ପୁରୁଣା ଫାଇଲ ଠାରୁ ଆରମ୍ଭ କରି, ଇସ୍ତ୍ରିକରା ପ୍ୟାଣ୍ଟର ଭାଙ୍ଗ ପର୍ଯ୍ୟନ୍ତ ଖୋଲି ଦେଖୁଥିଲା ।

ଗୋକୁଳି ଆସି ଖାଇବା ପାଇଁ ତିନି ଚାରିଥର ଡାକିଯାଇଥିଲା ମଧ୍ୟ ସଂଜୀବ ତାର' କଥା ଶୁଣି ବି ଶୁଣିପାରି ନ ଥିଲା ।

କିନ୍ତୁ କ'ଣ ? କାହିଁ ? କେଉଁଠି ?

ଗୋକୁଳ ପଛଆଡ଼େ ଠିଆହୋଇ ସଂଜୀବର କାର୍ଯ୍ୟକଳାପ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲା- ତା'ସାନବାବୁଙ୍କର ହଠାତ୍ ହେଲା କ'ଣ ?

ଗୋଟିଏ ଆଲମାରି ଦେଖା ଶେଷହବା ପରେ ସଂଜୀବ ପୁଣି ନୂତନ ଉତ୍ସାହରେ ଦ୍ୱିତୀୟ ଆଲମାରିଟା ଫିଟାଇବାକୁ ଯିବାବେଳେ, ଗୋକୁଳ ବାଧାଦେଲା । କହିଲା : ଆଗ ଖାଇସାର, ତା'ପରେ ଯାହା ଇଚ୍ଛା ତା' କରିବ ।

ସଂଜୀବ ଗୋକୁଳର କଥା ଶୁଣି ବୋଧହୁଏ କ୍ଷୁଧା ଅନୁଭବ କଲା ।

ହଁ, ପ୍ରଥମେ ତା'ର ଖାଇନେବା ଉଚିତ । ସବୁଗୁଡ଼ା ଖେଳେଇ ଦେଖିବା ପାଇଁ ବହୁତ ସମୟ ଲାଗିଯିବ ।

ସଂଜୀବ ଖାଇ ବସିଲା । କିନ୍ତୁ କ'ଣ ଖାଉଛି, କେଉଁ ତରକାରି ସ୍ୱାଦ କିପରି ହୋଇଛି, କିଛି ବୁଝିପାରୁ ନଥିଲା । କେବଳ ଗୋ-ଗ୍ରାସରେ ଗିଳି ଚାଲିଥିଲା । ହଠାତ ଖାଉ ଖାଉ ଅଟକି ଯାଇ କହିଲା: ଖବରଦାର ଗୋକୁଳ, ସେ ସ୍ତ୍ରୀଲୋକଟା ଆସିଲେ, ମୋତେ ନ ପଚାରି ଗୋଟିଏ ବି ଶୁଆ-ଶାରୀ ତାକୁ ବିକ୍ରି କରିବୁ ନାହିଁ ।

: ତମେ ପାଗଳ ହେଲ ସାନବାବୁ, ସ୍ତ୍ରୀଲୋକ ତ ସ୍ତ୍ରୀଲୋକ, ତମେ ମୋତେ ବିକ୍ରି କରିବାକୁ କହିଲେ ବି ତମ କଥା ଶୁଣିବି ନାହିଁ ।

: କ'ଣ କହିଲୁ ? ମୁଁ ବିକିବାକୁ ଚାହିଁଲେ ବି ବାଧା ଦେବୁ ?

: ଅଲବତ୍ । ବଡ଼ବାବୁ ସେମାନଙ୍କୁ ମୋ' ଜିମା ଦେଇଯାଇଛନ୍ତି । ବଡ଼ବାବୁ ବଞ୍ଚିଥିବା ବେଳେ ଏମାନଙ୍କ ମେଳରେ ବୁଲୁ ବୁଲୁ କେତେ ଯେ ଆନନ୍ଦ ପାଆନ୍ତି, ସେ କଥା ତୁମେ ଜାଣିବ କେଉଁଠୁ ? କହନ୍ତି, ମୋର ସିନା ଆଉ କିଛି ନାହିଁ ଗୋକୁଳ କିନ୍ତୁ ଏଇମାନେ ମୋର ଆନନ୍ଦ, ଆଉ ଏଇମାନେ ମୋର ସମ୍ପତ୍ତି । ମୋ' ଅନ୍ତେ ଯେପରି ଏମାନଙ୍କର ଅଯତ୍ନ ନ ହୁଏ, ଦେଖିବୁ ।

ଗୋକୁଳର କଥା ଶୁଣି ସଂଜୀବର ହାତ ଅଟକିଯାଇଥିଲା । କହିଲା: ବାପା ତା'ହେଲେ ଏମାନଙ୍କୁ ପ୍ରାଣଠାରୁ ଅଧିକ ଭଲପାଉଥିଲେ ?

: ନିଶ୍ଚୟ !

ଗୋକୁଳର ଦୃଢ଼କଣ୍ଠର ସ୍ୱର ଶୁଣି ସଂଜୀବ ବୋଧହୁଏ ନିରବ ହୋଇଯାଇଥିଲା: କିନ୍ତୁ ଗୁପ୍ତଧନ ସମ୍ବନ୍ଧରେ କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ନିଶ୍ଚୟ ଏହି ଘରର କେଉଁଠି ନା କେଉଁଠି ଲୁଚିରହିଛି । ଶେଷ ପର୍ଯ୍ୟନ୍ତ ଯଦି କୌଣସି ସୁବ୍ୟବସ୍ଥା କରି ନ ହୁଏ, ତା'ହେଲେ ନରୋତ୍ତମ ଅଗରବାଲା ସହିତ ସନ୍ଧି କରିବାକୁ ହେବ ।

କିନ୍ତୁ ନରୋତ୍ତମ ଅଗରବାଲାକୁ ସେ ପାଇବ କେଉଁଠୁ ?

ଗୋକୁଳ ଆସି କହିଲା : ଫେରେ କିଏ ସ୍ତ୍ରୀଲୋକ ଆସିଛି ସାନବାବୁ । ଏଥର ସେ ତୁମକୁ ଖୋଜୁଛି ।

: ପୁଣି ସ୍ତ୍ରୀଲୋକ ! କିଏ ?

: ଦେଖିବ ଯାଉନ, ମୁଁ ତାକୁ ଦାଣ୍ଡଘରେ ବସେଇ ଦେଇ ଆସିଚି । ଇଏ ଗୋଟିଏ ମେମ୍‌ସାହେବ ପରି ଦେଖାଯାଉଚି ।

: ମେମ୍ ସାହେବ ? ସଂଜୀବ ଆହୁରି ଚଞ୍ଚଳ ହୋଇଉଠିଲା ।

ଖାଇବା ତା'ର ସେତିକିରେ ଶେଷହେଲା । ସେ ଉଠି ଯାଇ, ହାତଧୋଇ ଟାୱେଲରେ ହାତ ପୋଛୁ ପୋଛୁ ଡ୍ରଇଂରୁମ୍ ଆଡ଼େ ଆଗେଇଗଲା ।

ଏ ଯେ ଅବିଶ୍ୱାସ୍ୟ । ଖୋଦ୍ ଲାୟଲି ଆସି ଉପସ୍ଥିତ ।

ଲାୟଲି ଚେୟାରରୁ ଉଠିପଡ଼ି ସଜୀବ ଆଡ଼କୁ ଆଗେଇ ଆସୁ ଆସୁ କହିଲା: ଆଖିକି ବିଶ୍ୱାସ କରି ପାରୁନାହାନ୍ତି, ନା ମିଷ୍ଟର ରାଉତରାୟ ? ମୁଁ ଏୟାରପୋର୍ଟରେ ଯାଇ ଦେଖିଲି ବାନ୍ଧବୀଟି ଆସି ନାହିଁ । କ'ଣ ଆଉ କରନ୍ତି ? ରିକ୍‌ସା କରି ଫେରିଲି ବସ୍‌ଷ୍ଟାଣ୍ଡକୁ । ଦେଖଲି ଖୋର୍ଦ୍ଧା ବସ୍‌ଟା ଠିଆହୋଇଛି । ଆଉ କିଛି ନଭାବି, ନ ବିଚାରି ଉଠିପଡ଼ିଲି । ଆପଣଙ୍କ ଘର ନ ପାଇଥିଲେ ପୁଣି ଫେରିଯାଇଥାଆନ୍ତି ! ବସ୍‌ରେ ବସି ଏଇ ସିଦ୍ଧାନ୍ତ କରିଥିଲି ।

ସଂଜୀବ ଲାୟଲିକୁ ଚେୟାରରେ ବସିବାକୁ କହି ପଚାରିଲେ, ଆପଣ ନିଶ୍ଚୟ ବାଟରେ କିଛି ଖାଇ ନାହାନ୍ତି !

: ନାଁ, ତେବେ ମୁଁ ହୋଟେଲରୁ ଆସିବା ସମୟରେ ପ୍ରଚୁର ଖାଇକରି ଆସିଛି । ବର୍ତ୍ତମାନ ଚା,କିମ୍ବା କଫି କପରେ ପ୍ରୟୋଜନ ସବୁଠାରୁ ବେଶି ।

ସଂଜୀବ ଲାୟଲି ଏପରି ହଠାତ୍ ଆର୍ବିର୍ଭାବରେ ବିସ୍ମୟ ପ୍ରକାଶ କଲା ନାହିଁ କିମ୍ବା ଆନନ୍ଦିତ ବି ହେଲା ନାହିଁ । ହୁଏତ ଅନ୍ୟ ସମୟ ହୋଇଥିଲେ, ଲାୟଲିକୁ ପାଇ ଘଣ୍ଟା କେତୋଟି ବେଶ୍ ଆରାମ୍‌ରେ କଟିଯାଇପାରିଥାଆନ୍ତା । କିନ୍ତୁ ଆଜି ତା' ହାତରେ ଅନେକ କାମ । ଏ ପର୍ଯ୍ୟନ୍ତ ବାପାଙ୍କ ଘରଟାର ଅନୁସନ୍ଧାନ ଶେଷ ହୋଇ ନାହିଁ । ତା'ପରେ ଆହୁରି ତିନିଟା ଘର ସବୁଠାରୁ ସମସ୍ୟା ହେଉଛି ମାଟିତଳ । ଆଜି ଭିତରେ ସେ ଯଦି ଗୁପ୍ତଧନର ସଂଧାନ ପାଇପାରନ୍ତା, ତା'ହେଲେ ସବୁଠାରୁ ଭଲହୁଅନ୍ତା । କାରଣ କାଲି ସତ୍ୟବ୍ରତ ମହାପାତ୍ର ଆସିବାର କଥା । ତାଙ୍କ ଆସିବା ପୂର୍ବରୁ ଯଦି.........

ଲାୟଲି ସଂଜୀବର ନୀରବତାରେ ଟିକିଏ ଅସ୍ୱସ୍ତି ବୋଧ କରୁଥିଲା । ମନେ ମନେ ଭାବୁଥିଲା, ସଂଜୀବ ହୁଏତ ତା'ର ଏଠାକୁ ଆସିବାଟାକୁ ପସନ୍ଦ କରିପାରି ନାହିଁ; ତଥାପି

ସେ କହିଲା: ମୁଁ ଯଦି ଆସି ଆପଣଙ୍କର ଚିନ୍ତାର କାରଣ ହୋଇପଡ଼ିଲି , ତା'ହେଲେ ମୁଁ ଉଠୁଛି ମିଷ୍ଟର ରାଉତରାୟ ।

ସଂଜୀବ ଚଞ୍ଚଳ ହୋଇ ଉଠିଲା ।

: ନା, ନା ମିସ୍ ଲାୟଲି । ଆପଣ ମୋର ମୋଟେ ଚିନ୍ତାର କାରଣ ନୁହଁନ୍ତି । ଚିନ୍ତାର କାରଣ ଗୋଟାଏ ଅଛି, ସେଇଟା ଅବ୍ୟକ୍ତ । ହଁ ଏଥର ଆପଣଙ୍କ କଥା କୁହନ୍ତୁ ।

ଲାୟଲି ହସିଲା । କହିଲା : ମୋ' କଥା ? ମୋ' କଥା କ'ଣ କହିବି ଆପଣଙ୍କୁ ?

: ତା' ହେଲେ ଜର୍ଜ କଥା କୁହନ୍ତୁ ।

: ଜର୍ଜ କଥା କହି ଖାଲି ଦୁଃଖ ପାଇବା ସାର ହେବ ମିଷ୍ଟର ରାଉତରାୟ; ବଂର ଆପଣ ମୋତେ ଆପଣଙ୍କ ପ୍ରେମିକାଟିର କଥା କୁହନ୍ତୁ । ଶୁଣୁ ଶୁଣୁ କିଛି ସମୟ କଟିଯିବ ।

: ମୋର ପ୍ରେମିକା ? ସଂଜୀବର ସ୍ୱରଟା କିପରି କର୍କଶ ଶୁଣାଗଲା ।

: ହଁ, ଆପଣଙ୍କର ପ୍ରେମିକା । ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ?

ସଂଜୀବ ବିଦ୍ରୂପର ହସ ହସି କହିଲା : ମୋର ପ୍ରେମିକା ବୋଧହୁଏ ଜନ୍ମ ହେଇ ନାହିଁ

: ହାଉ ଓ୍ୱାଣ୍ଡର ? ଲାୟଲି ମୁହଁରେ ସତରେ ବିସ୍ମୟ ଫୁଟିଉଠିଥିଲା ।

ସଂଜୀବ କହିଲା : ଆପଣ ମୋତେ ବିଶ୍ୱାସ କରନ୍ତୁ ମିସ୍ ଲାୟଲି । ମୋର କେହି ପ୍ରେମିକା ନାହାନ୍ତି କିମ୍ବା କେହି ଜୁଟିବେ ସେ ଆଶା ବି ନାହିଁ ।

: କିନ୍ତୁ ଆପଣଙ୍କର ବୟସ ତ କମ୍ ହୋଇ ନାହିଁ । ଆପଣଙ୍କର କ'ଣ ଆଗ୍ରହ ନାହିଁ ବିବାହ କରି ଘର ସଂସାର କରିବାକୁ ?

: ଆପଣ ଭୁଲିଯାଉଛନ୍ତି ମିସ୍ ଲାୟଲି । ଆମ ସମାଜରେ ପ୍ରେମ କରିବା ଆଉ ବିବାହ କରିବା ଦୁଇଟାଯାକ ସମାନ କଥା ନୁହେଁ । ପ୍ରେମିକା ନଥାଇ ବି ଗୃହିଣୀ ଆମେ ପାଇବାକୁ ବିଶେଷ ଅସୁବିଧା ହୁଏ ନାହିଁ ।

: ତା'ହେଲେ, ଆପଣ...

ଲାୟଲି ତା'ର ବକ୍ତବ୍ୟ ଶେଷ କରି ପାରିଲା ନାହିଁ ।

ସଂଜୀବ ଉତ୍ତର ଦେଲା : ଦୁଇଟାରୁ କେଉଁଟା ପାଇଁ ମୁଁ ବର୍ତ୍ତମାନ ବ୍ୟସ୍ତ ନୁହେଁ ମିସ୍ ଲାୟଲି । କାରଣ ମୋତେ ବର୍ତ୍ତମାନ ବାପାଙ୍କର ବହୁ ଅସଂପୂର୍ଣ୍ଣ କାମ ଶେଷକରିବାକୁ ହେବ । ତା'ପରେ ଯଦି ସୁଯୋଗ ପାଏ, ଦେଖିବି ଦୁଇଟାରୁ କେଉଁଟା ମୋ ପକ୍ଷରେ ଅନୁକୂଳ । ତା'ପରେ ଚିନ୍ତା କରିବି ଦୁଇଟାକୁ ମିଶାଇ ଗୋଟାଏ କରି ହୁଏ କି ନାହିଁ ।

ସଂଜୀବର କଥା ଶୁଣି ଲାୟଲିର ମନେହୋଇଥିଲା, ସେ ଯେପରି ଆସି ଏକ ଭିନ୍ନ ମଣିଷ ପାଖରେ ପହଞ୍ଚିଛି । ତା' ଜୀବନରେ ଆଜିଯାଏ ଯେତେ ପୁରୁଷ ଆସିଛନ୍ତି କାହାରି ମୁହଁରୁ ସେ ଏପରି ତଥ୍ୟ ଶୁଣି ନାହିଁ; ବରଂ ସେଇମାନେ ଲାୟଲିକୁ ପ୍ରେମିକା ରୂପେ ପାଇବା ପାଇଁ ବ୍ୟସ୍ତ ହୋଇ ଉଠିଛନ୍ତି; ଆଉ ସଂଜୀବ ରାଉତରାୟ...

ଲାୟଲି ମନେ ମନେ ଖୁବ୍ ହସିଥିଲା ।

ହୁଏତ ସଂଜୀବର ଏଇଟା ଛଦ୍ମ ଆବରଣ । ଭଲ ମଣିଷରୂପେ ଭଲେଇ ହେବା ପାଇଁ ଏପରି ତଥ୍ୟ ଗୋଟାଏ ଅସ୍ତ୍ର ହୋଇପାରେ । କିନ୍ତୁ ଲାୟଲି ପାଖରେ...

ପୁଣି ନୀରବତା ଭଙ୍ଗକଲା ଲାୟଲି । କହିଲା : ପିତା ମାତାଙ୍କର ଅପୂରଣୀୟ କାର୍ଯ୍ୟ ସଂପୂର୍ଣ୍ଣ କରିବା ସତ୍ ପୁତ୍ରର ଧର୍ମ; କିନ୍ତୁ ମୋର ଦୁଃଖ କ'ଣ ଜାଣନ୍ତି ମିଷ୍ଟର ରାଉତରାୟ ! ମୁଁ ସେ ସୁଯୋଗରୁ ସଂପୂର୍ଣ୍ଣ ବଞ୍ଚିତ ।

: କାହିଁକି ? ସଂଜୀବ ଚାହିଁଲା, ଲାୟଲି ଆଖି ଦୁଇଟା ଛଳ ଛଳ ହୋଇଉଠିଛି ।

ଆର୍ଦ୍ର କଣ୍ଠରେ ଲାୟଲି କହିଲା : ବାପା ମା'ଙ୍କର ମନର ଅପୂରଣୀୟ ଅଭିଳାଷ ସମ୍ବନ୍ଧରେ ମୁଁ କୌଣସି ସନ୍ଧାନ ପାଇପାରିଲି ନାହିଁ ।

: କିପରି ?

: ମୋତେ ଯେତେବେଳେ ପାଞ୍ଚବର୍ଷ, ସେତେବେଳେ ମା'କୁ ହରାଇ ଥିଲି, ଯେତେବେଳେ ବାରବର୍ଷ ସେତେବେଳେ ବାପା ମୋତେ ଛାଡ଼ି ଚାଲିଗଲେ ।

: ମାନେ ?

: ସେଇଟା ଆମ ସମାଜର କଥା । ମୁଁ ସେତେବେଳେ ହଷ୍ଟେଲରେ ରହି ପାଠ ପଢୁଥିଲି । ଏକ୍‌ସ ମାସ ଛୁଟିରେ ଯେତେବେଳେ ବାପାଙ୍କ ପାଖକୁ ଫେରି ଆସିଲି, ଦେଖିଲି ଆମ ଘରେ ଏକ ଅଚିହ୍ନା ପରିବାର ବାସ କରୁଛନ୍ତି । ଲ୍ୟାଣ୍ଡଲେଡିଙ୍କ ପାଖକୁ ଯାଇ ବୁଝିଲି ଯେ, ବାପା ପ୍ରାୟ ମାସେ ହେବ ସେଠାରୁ ଘର ଛାଡ଼ି ଚାଲିଗଲେଣି । କାରଣ ସେ ପୁଣି ବିବାହ କରିଛନ୍ତି । ଘର ଛାଡି କୁଆଡ଼େ ଯାଇଛନ୍ତି ଲ୍ୟାଣ୍ଡଲେଡ଼ି ସେ ସମ୍ବାଦ ମୋତେ ଦେଇ ପାରିଲେ ନାହିଁ ।

: ତା'ପରେ ? ସଂଜୀବ କଣ୍ଠରେ ବିସ୍ମୟ ଫୁଟିଉଠିଥିଲା ।

ଲାୟଲି କିଛି ସମୟ ଆଖିବୁଜି ନୀରବ ହୋଇଯାଇଥିଲା । ବୋଧହୁଏ ସଂଜୀବ ମନରେ ଉତ୍‌କଣ୍ଠା ଜଗାଇବା ପାଇଁ ।

: ତା'ପରେ ଆଉ କ'ଣ ? ହତାଶ ସ୍ୱରରେ କହିଲା ଲାୟଲି ମୁଁ ଆଉ ବାପାଙ୍କର ସଂଧାନ ପାଇଲି ନାହିଁ ।

: ଆପଣ ବଞ୍ଚିଲେ କେମିତି ?

: ସେଇଟା ଅବଶ୍ୟ ମୋ ଜୀବନର ଏକ ସିକ୍ରେଟ କଥା । ଜୀବନ ରହସ୍ୟ ସବୁବେଳେ ସମସ୍ତଙ୍କ ପାଖରେ କହିବା ନିରାପଦ ମଧ୍ୟ ନୁହେଁ । ଆଉ ମୋର ସେଇ ବାରରୁ ବାଇଶି-ଦଶଟି ବର୍ଷ । ଏତେ ନାଟକୀୟ ଉପାଦାନରେ ପୂର୍ଣ୍ଣ ଯେ, ଶୁଣିଲେ ଆପଣ ଅବିଭୂତ ହୋଇ ପଡ଼ିବେ । ଛାଡନ୍ତୁ । ଆପଣଙ୍କୁ ବିଶ୍ୱାସ କରିପାରିଲେ ସେ ରହସ୍ୟ ମୁଁ ଆଉ ଦିନେ କହିବି ଆପଣଙ୍କୁ । କିନ୍ତୁ ତଥାପି ମୁଁ ବଞ୍ଚିଛି ଏବଂ ମୋର ବିଶ୍ୱାସ ମୁଁ ସତ୍ ଏବଂ ମହତ୍ ଭାବରେ ବଞ୍ଚିଛି ।

ଲାୟଲିର ମୁହଁରେ ଯେପରି ଅଦ୍ଭୁତ ଏକ ଦୀପ୍ତି ଲକ୍ଷ୍ୟକଲା ସଂଜୀବ ।

: କିନ୍ତୁ ଆପଣ ଏହି ହୋଟେଲ ଜୀବନ ସହିତ କେତେ ବର୍ଷରୁ ସଂପୃକ୍ତ ?

ଲାୟଲି ହସିଲା । କହିଲା : ପ୍ରାୟ ଦଶବର୍ଷ ହୋଇଯିବ ।

: ତା' ହେଲେ ଆପଣଙ୍କର ବୟସ ବର୍ତ୍ତମାନ କେତେ ହେବ ?

: ମୋ ବୟସ ? ଲାୟଲି ଏଥର ଜୋରରେ ହସି ଉଠିଲା । କହିଲା, ଝିଅମାନଙ୍କୁ ବୟସ ପଚାରି ଆପଣ ଠିକ୍ ଉତ୍ତର ପାଇବେ ଭାବିଛନ୍ତି ? ମୁଁ କିନ୍ତୁ ବୟସ ଲୁଚାଇବି ନାହିଁ । ଆଚ୍ଛା ଆପଣ କହିଲେ, ମୋର ବୟସ କେତେ ହୋଇଥିବ ?

ସଂଜୀବର ମନ ଭିତରଟାକୁ ଯେଉଁ ଭାରି ପଥର ବୋଝଟା ଚାପିଧରିଥିଲା, ଲାୟଲି ବୋଧହୁଏ ଧୀରେ ଧୀରେ ତାକୁ ହାଲ୍‌କା କରି ଆଣୁଥିଲା । ଲାୟଲି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସଂଜୀବ ହସିଉଠିଲା । ବ୍ୟଙ୍ଗ ମିଶ୍ରିତ ସ୍ୱରରେ କହିଲା : ଝିଅମାନଙ୍କୁ ବୟସ ପଚାରି ଯେପରି ସଠିକ ଉତ୍ତର ମିଳେ ନାହିଁ, ଝିଅମାନଙ୍କ ମେକ୍‌ଅପର ଆବରଣ ଭେଦ କରି ସେହିପରି ସଠିକ ବୟସ ଖୋଜି ବାହାର କରିବା ମଧ୍ୟ ସହଜସାଧ୍ୟ ନୁହେଁ !

: ତଥାପି ? ଲାୟଲି ହସୁଥିଲା ।

: ଏଇ ଧରନ୍ତୁ ବାଇଶି ତେଇଶ ।

: ନା ଆଉ ଟିକିଏ ବେଶି । ଗତ କାଲି ପଚିଶ ପୂର୍ଣ୍ଣହେଲା । ଆଜିଠାରୁ ଛବିଶ ଆରମ୍ଭ ହୋଇଛି । ଆଜି ମୋର ବାର୍ଥ ଡେ । ସେଇଥି ପାଇଁ ଛୁଟିନେଇଛି ଦିନଟା ।

: କଂଗ୍ରାଚୁଲେସନ ! କହି ସଂଜୀବ ହସିଉଠି ହାତ ବଢ଼ାଇଦେଲା ଲାୟଲି ଆଡକୁ । ଲାୟଲି ହାତ ମିଳେଇଲା ।

: ତା' ହେଲେ ଆଜି ଆପଣଙ୍କ ବାର୍ଥ ଡେ'ରେ ମୋର ଆପଣଙ୍କୁ କିଛି ଉପହାର ଦେବା ଉଚିତ୍ ।

ଲାୟଲି ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା : ମୋ ମନର ସେଇ ସୌରଭ ଆଜି ମରିଯାଇଛି ମି: ରାଉତରାୟ । ମୁଁ ଜୀବନ-ଯୁଦ୍ଧରେ ପରାସ୍ତ ହୋଇଛି । ଏପରିକି ଜୀବନ ପାଖରେ ମୁଁ ଆଜି ଲୁଚି ଲୁଚି ବୁଲୁଛି । ତେଣୁ ବାର୍ଥ ଡେ' ପାଇଁ ମୋର ଆଜି ସାମାନ୍ୟ ଟିକିଏ ବି ଉତ୍ସାହ ନାହିଁ ।

: ତଥାପି ମିସ୍ ଲାୟଲି, ଆପଣଙ୍କ ବ୍ୟଥିତ ପ୍ରାଣରେ ସାମାନ୍ୟତମ ପ୍ରଲେପ ଲେପିବା ମୋର କ'ଣ କର୍ତ୍ତବ୍ୟ ନୁହେଁ ? ଆପଣ ଜର୍ଜର ଥିଲେ ବାଗ୍‌ଦତ୍ତା । ଜର୍ଜ ମୋର ଥିଲା ଅନ୍ତରଙ୍ଗ । ଆଜି ସବୁ ଜାଣି, ଆପଣଙ୍କ ପରିଚୟ ପାଇବା ପରେ ମୁଁ ନୀରବ ରହିଗଲେ ମୋର ଅପରାଧ ହେବ ।

ଲାୟଲି ତଳକୁ ମୁହଁପୋତି ନୀରବରେ ବସିଥିଲା । ଯେମିତି ଅଶେଷ ଦୁଃଖର ଢେଉ ଗୋଟିକ ପରେ ଗୋଟିଏ ତା' ଦେହରେ ପିଟି ହୋଇଯାଉଛି ।

ହାସ୍ୟମୟୀ ଲାୟଲି ମ୍ରିୟମାଣ ହୋଇପଡିଛି ।

ସଂଜୀବ ଜୀବନରେ କୌଣସି ତରୁଣୀର ଏତେ ସାନିଧ୍ୟ ବୋଧହୁଏ ଏହି ପ୍ରଥମ । ସେଇଥି ପାଇଁ ସେ ତରଳି ଯାଇଥିଲା ।

ଭୁଲିଯାଇଥିଲା ତା'ର ପୂର୍ବ ସଙ୍କଳ୍ପ କଥା ।

ଦୀର୍ଘକ୍ଷଣର ନୀରବତା ଭିତରେ ସଂଜୀବ କେବଳ ଚାହିଁଥିଲା ଲାୟଲିକୁ । ତା'ର ମନେ ହେଉଥିଲା ପ୍ରସ୍ଫୁଟିତ ଏକ ଆରକ୍ତ ଗୋଲାପ ଧୀରେ ଧୀରେ ଯେପରି ଶ୍ୱେତ ପାଲଟି ଯାଉଛି ।

ହୁଏତ ଆଉ କିଛି ସମୟ ପରେ ପାଖୁଡାଗୁଡିକ ମାଟିରେ ଝରିପଡ଼ିବ । ଅଥବା ବୃନ୍ତଚ୍ୟୁତ ହୋଇ ଖସିପଡିବ ତଳେ ।

ତା'ପରେ ଲାୟଲି ଏକ ଛାତିଫଟା ଦୀର୍ଘଶ୍ୱାସ ଛାଡ଼ି ଉଠିଠିଆହେଲା । ସେହିପରି ଜଡ଼ିତ କଣ୍ଠରେ କହିଲା : କ୍ଷମା କରିବେ ମିଷ୍ଟର ରାଉତରାୟ । ଆପଣଙ୍କୁ ଆସି ବିରକ୍ତ କଲି, କଷ୍ଟ ଦେଲି ମନରେ ।

ସଂଜୀବ ମଧ୍ୟ ସଙ୍ଗେ ସଙ୍ଗେ ଉଠିଠିଆହେଲା । କହିଲା : ଆପଣ ଟିକିଏ ଅପେକ୍ଷା କରନ୍ତୁ ।

: କିନ୍ତୁ ବେଳ ଯେ ଅନେକ ହୋଇଗଲାଣି । ବସ୍ କେତେବେଳେ ଛାଡେ କହି ପାରିବେ ?

ସଂଜୀବ କିନ୍ତୁ ସେତେବେଳକୁ ଘରଛାଡ଼ି ଚାଲିଯାଇଥିଲା ।

ଲାୟଲି ସ୍ତବ୍ଧ ହୋଇ ଠିଆହୋଇଥିଲା ସଂଜୀବର ଯିବାପଥକୁ ଚାହିଁ ।

ଯେତେବେଳେ ସଂଜୀବ ଫେରିଆସିଲା, ଲାୟଲି ଦେଖିଲା ସେ ବାହାରକୁ ଯିବା ପାଇଁ ପ୍ରସ୍ତୁତ ହୋଇ ଆସିଛି ।

: ଆପଣ କୁଆଡ଼େ ଯିବେ ? ଲାୟଲି ପଚାରିଲା ।

ସଂଜୀବ କିଛି ଉତ୍ତର ନ ଦେଇ ଲାୟଲିକୁ ଅନୁସରଣ କରିବା ପାଇଁ ଇଙ୍ଗିତ ଦେଇ ଆଗେଇଗଲା ।

ଗାଡ଼ିର ଦରଜା ଖୋଲି ଦେଇ ଇଙ୍ଗିତରେ ଲାୟଲିକୁ ଭିତରେ ବସିବା ପାଇଁ କହିଲା ।

ଗାଡ଼ି ଖୁବ୍ କିଛି ଦୂର ଆଗେଇ ଯିବା ପରେ ସଂଜୀବ ପଚାରିଲା : ଆପଣଙ୍କ ବାର୍ଥ ଡେ'ରେ ଆପଣ କେଉଁମାନଙ୍କୁ ନିମନ୍ତ୍ରଣ କରିଛନ୍ତି ?

ଲାୟଲି ବୋଧେ ପ୍ରଥମେ ପ୍ରଶ୍ନଟା ବୁଝିପାରିଲା ନାହିଁ । ତା'ପରେ କଣ୍ଠରେ ହତାଶା ଫୁଟାଇ କହିଲା : ଆପଣଙ୍କୁ କହୁଥିଲି ନା, ମୋର ଉତ୍ସାହ ସବୁ ଶେଷହୋଇଯାଇଛି । ଜର୍ଜ ମୋତେ ମୂକ କରି ଦେଇ ଚାଲିଯାଇଛି ।

: ଜର୍ଜ ସିନା ଚାଲିଗଲା, କିନ୍ତୁ ଆପଣଙ୍କ ଜୀବନଟା ତ ଜର୍ଜପରି ଏତେ ସଂକ୍ଷିପ୍ତ ନୁହେଁ ମିସ୍ ଲାୟଲି । ପଥ ଯେତେବେଳେ ଦୀର୍ଘ, ଆପଣଙ୍କୁ ଯେତେବେଳେ ସେହି ପଥ ଅତିକ୍ରମ କରିବାକୁ ହେବ, ସେତେବେଳେ ନୂତନ ଉଦ୍ୟମରେ ଆଗେଇବାକୁ ହେବ । ଚଲାପଥର ସଙ୍ଗୀମାନଙ୍କ ଭିତରୁ କିଏ କେଉଁଠି ପଥ ହରାଇଲା, ସେମାନଙ୍କୁ ଚାହିଁ ଅଟକି ଗଲେ ତ ଆପଣଙ୍କର ପଥ ଶେଷହେବ ନାହିଁ ?

ଲାୟଲି ଦେହ ମୁହଁରେ ଯେପରି ନବ ପଲ୍ଲବର ସମ୍ଭାବନା ଜାଗିଲା ।

ଲାୟଲି ଚାହିଁଲା ସଂଜୀବ ମୁହଁକୁ ।

ସଂଜୀବ ଚାହିଁଲା ଲାୟଲି ମୁହଁକୁ ।

ସଂଜୀବ ହସିଲା ।

କିନ୍ତୁ ଲାୟଲି ହସିପାରିଲା ନାହିଁ

ସଂଜୀବ ପଚାରିଲା : ଆପଣଙ୍କର ଏଠାରେ ବନ୍ଧୁମାନେ କିଏ କେଉଁଠି ଅଛନ୍ତି ?

ଲାୟଲି ମୁଣ୍ଡହଲାଇ ମନାକଲା ।

: ତଥାପି ଆପଣଙ୍କର ବାର୍ଥ ଡେ' ଉତ୍ସବ ପାଳନ କରିବାକୁ ହେବ । ସଂଜୀବ ଆଦେଶ ଦେବା ଭଙ୍ଗିରେ କହିଲା ।

ପୁଣି ଦୀର୍ଘ ନୀରବତା ।

ଲାୟଲି ବୁଝିପାରୁ ନଥିଲା ସଂଜୀବର ଉଦ୍ଦେଶ୍ୟ କ'ଣ ? ସେ ତାକୁ ଗାଡ଼ିରେ ବସାଇ କେଉଁଠାକୁ ନେଉଛି, କାହିଁକି ନେଉଛି ? କିନ୍ତୁ ତା' ମନରେ କୌଣସି ଶଙ୍କା ନ ଥିଲା ।

ଗାଡ଼ି ଆଗେଇଥିଲା । ବାଁ ପାଖରେ ଲାୟଲି । ସାମ୍ନାରେ ଲମ୍ବା ଦୀର୍ଘ ପଥ ।

: ଲାୟଲି ! ସଂଜୀବର କଣ୍ଠରେ ଧୀରେ ଆନ୍ତରିକତା ଫୁଟିଉଠୁଥିଲା ।

: ଉଁ ।

: ତମର ଜର୍ଜ ସହିତ କେତେ ଦିନର ପରିଚୟ ?

ଲାୟଲି ଚାହିଁଲା ସଂଜୀବକୁ । ତା' ଆଖି ଯୋଡାକ ରାଜପଥ ଉପରେ ।

: ଖୁବ୍ ବେଶି ଦିନର ନୁହେଁ । ଦୁଇ ବର୍ଷରୁ ଅଧିକ ହୋଇ ନଥିଲା ।

: ଦୁଇ ବର୍ଷ ଭିତରେ ତମେ ଜର୍ଜକୁ ଜୀବନ ସାଥୀ କରିବାକୁ ସ୍ଥିର କରି ନେଇଥିଲ ?

: ହଁ ।

: ଏତେ ଅଳ୍ପ ଦିନ ମଧ୍ୟରେ ତୁମେ ଜର୍ଜକୁ ଚିହ୍ନିପାରିଥିଲ ?

: କୌଣସି ଏକ ଲୋକକୁ ଚିହ୍ନିବା ପାଇଁ ଦୁଇଟି ବର୍ଷ ଯଥେଷ୍ଟ ମିଷ୍ଟର ରାଉତରାୟ ।

: ହୁଁ । ଆପଣ ତା' ହେଲେ କ'ଣ ସ୍ଥିର କରିଛନ୍ତି ?

: କୋଉ କଥା ?

: ଆଉ ବିବାହ କରିବେ ନାହିଁ ?

ଲାୟଲି କିଛି ଉତ୍ତର ଦେଲା ନାହିଁ ।

ସଂଜୀବ ସାମାନ୍ୟ ନୀରବତା ପରେ କହିଲା : ହୁଏତ ଜର୍ଜପରି ସାଥୀଟିଏ ପାଇବା ସହଜ ହେବ ନାହିଁ । କିନ୍ତୁ ତା' ବୋଲି...

: ଆପଣ ବର୍ତ୍ତମାନ ସେ ପ୍ରସଙ୍ଗ ନ ଉଠାଇଲେ ଚଳନ୍ତା ମିଷ୍ଟର ରାଉତରାୟ ।

ସଂଜୀବ ଦେଖିଲା, ଲାୟଲିର ମୁହଁରେ ବ୍ୟଥାର ଚିହ୍ନଫୁଟିଛି । ସଙ୍ଗେ ସଙ୍ଗେ ସେ ପ୍ରସଙ୍ଗ ବଦଳାଇଲା ।

: କାହାକୁ ଡାକିବା ଆପଣଙ୍କ ବାର୍ଥ ଡେ'ରେ ?

: ନା, ଆଜି ଆଉ କାହାରି ଆବଶ୍ୟକ ନାହିଁ । ଖାଲି ଆପଣ ଆଉ ମୁଁ । ନିରାଡମ୍ବର ଉତ୍ସବ ପାଳନ କରିବା, ମୋ ରୁମ୍‌ରେ ଭିତରୁ ବନ୍ଦ କରି । ଆପଣ କ'ଣ ମୋ ପାଇଁ ଏତେ ସମୟ ନଷ୍ଟ କରି ପାରିବେ ?

ଲାୟଲି ଆଖିରେ କାରୁଣ୍ୟ ଫୁଟିଉଠିଥିଲା ।

: ପାରିବି ଲାୟଲି । ତମର ଆଜି ବାର୍ଥ ଡେ'ଟିକୁ ସଫଳ କରିବା ପାଇଁ ମୁଁ ଯଥାସାଧ ଚେଷ୍ଟା କରିବି । କ'ଣ କ'ଣ ସବୁ କିଣିବାକୁ ହେବ କହିଲ ?

ଲାୟଲି ହସିଲା, କହିଲା : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ହୋଟେଲରେ ସବୁ ଅଛି । ମୋର ଏହି ନିରାଡମ୍ବର ଉତ୍ସବ ପାଳନ ପାଇଁ କେତୋଟି ମହମ୍‌ବତୀ, ଗୋଟିଏ କେକ୍ ଆଉ ଦୁଇ ବୋତଲ ହୁଇସ୍କି ହେଲେ ଯଥେଷ୍ଟ ହେବ ।

ସଂଜୀବ ଆଉ କିଛି ଉତ୍ତର ଦେଲା ନାହିଁ ।

ଗାଡ଼ିଚାଲିଥିଲା । ସଂଜୀବ ବୋଧହୁଏ ପ୍ରସ୍ତୁତ ହେଇ ଆସିଥିଲା ଲାୟଲିକୁ ଅମ୍ବରରେ ଛାଡ଼ି ଦେଇ ଯିବା ପାଇଁ; ହେଲେ ସେ କ'ଣ ଜାଣିଥିଲା ଆଜି ଲାୟଲିର ବାର୍ଥ ଡେ'ରେ ସେ ହେବ ଏକମାତ୍ର ନିମନ୍ତ୍ରିତ ଅନ୍ତରଙ୍ଗ ?

ସଂଜୀବ ମନେ ମନେ ଚିନ୍ତାକରୁଥିଲା, ଜୀବନର ଦୀର୍ଘ ପଥରେ ଧାଇଁ ଧାଇଁ ସେ ବି ଆଜି ବଡ଼ କ୍ଲାନ୍ତ ହୋଇପଡିଛି । ତା'ର ଦୁଃଖ, ସୁଖ ଶୁଣିବା ପାଇଁ ଜଣେ ବଂଧୁ ଦରକାର । ଲାୟଲି ଯଦି ସେହି ସ୍ଥାନଟା ଦଖଲ କରିପାରେ କ୍ଷତି କ'ଣ ?

ଲାୟଲି କହିଲା : ମୁଁ ବଡ଼ ଭାଗ୍ୟବାନ, ଆଜି ଆପଣଙ୍କ ଦର୍ଶନ ପାଇଲି ।

: ଭାଗ୍ୟବାନ ମୁଁ ବି କମ୍ ନୁହେଁ, ଆପଣଙ୍କ ପରି ଜଣେ ବାନ୍ଧବୀ ପାଇଲି ।

ଲାୟଲି ଆଉ ଟିକିଏ ସଂଜୀବ ପାଖକୁ ଘୁଞ୍ଚି ବସିଲା ।

ଦୁଇଜଣଙ୍କ ମନର ବିକ୍ଷିପ୍ତ ଭାବନା ଭିତର ଦେଇ ଗାଡ଼ି ଆଗେଇ ଚାଲିଥିଲା ।

ସେମାନେ ଯେତେବେଳେ ଯାଇ ଅମ୍ବରରେ ପହଞ୍ଚିଲେ, ସେତେବେଳକୁ ସଂଧ୍ୟା ନଇଁଆସୁଥିଲା ।

ଲାୟଲି ଗାଡ଼ିରୁ ଓହ୍ଲାଇ ସିଧା ଆଗେଇଗଲା ଅମ୍ବର ଭିତରକୁ । ପଛେ ପଛେ ସଂଜୀବ ।

ଦୋତାଲାରେ ଗୋଟିଏ କୋଠରି ଦୁଆରେ ଠିଆହୋଇ ଚାବି ଖୋଲିଲା ଲାୟଲି ।

ଏଇଠି ମୁଁ ରହେ । ଏଇ ରୁମ୍‌ଟି ମୋର ନିଜସ୍ୱ ।

ଦୁହେଁ ଭିତରକୁ ପଶିଲେ । ରୁମ୍‌ର ବତି ଜଳେଇଲା ଲାୟଲି ।

ବେଶ୍ ପ୍ରଶସ୍ତ ଗୋଟିଏ ଘର । ସୁନ୍ଦର ଭାବରେ ସଜ୍ଜିତ । ଆସବାବପତ୍ରର ଭିଡ଼ ନାହିଁ କିନ୍ତୁ ଯେଉଁ କେତୋଟି ଅଛି ସବୁତକ ପ୍ରୟୋଜନୀୟ, ଆଉ ସୁନ୍ଦର ।

ସଂଜୀବ ଗୋଟିଏ ସୋଫା ଉପରେ ବସିଲା ।

ଲାୟଲି କହିଲା : ମୋତେ ପାଞ୍ଚମିନିଟ୍ ପାଇଁ ଛୁଟି ଦିଅନ୍ତୁ ମିଷ୍ଟର ରାଉତରାୟ । ମୁଁ ଟିକିଏ ବାଥ୍‌ରୁମ୍‌ରୁ ଆସୁଛି ।

ଲାୟଲି ଚାଲିଗଲା, ସଂଜୀବ ଉଠି ଠିଆହେଲା । ମନଲୋଭା ଆସବାବପତ୍ରଗୁଡ଼ିକ ସଂଜୀବ ମନକୁ ଖୁବ୍ ଆକର୍ଷିତ କରିଥିଲା ।

ସେ ଗୋଟି ଗୋଟି କରି ଯାଇ ଦେଖିଲା ସବୁଗୁଡ଼ିକ । କିନ୍ତୁ କାଚ ଆଲମାରିଟି ପାଖରେ ପହଞ୍ଚି ସେ ଅବାକ୍ ହୋଇଗଲା । ଯେପରି ନାନା ଦେଶର କଣ୍ଢେଇର ଏକ ବିରାଟ ପ୍ରଦର୍ଶନୀ କରିଛି ଲାୟଲି ! ସମଗ୍ର ଆଲମାରିଟା କେବଳ କଣ୍ଢେଇରେ ଭର୍ତ୍ତି ।

ସଂଜୀବ ଖୋଲା ଆଲମାରିଟା । ବାହାର କଲା ଗୋଟିଏ କଣ୍ଢେଇ । କିନ୍ତୁ କଣ୍ଢେଇଟି ସଂଜୀବ ହାତକୁ ଆସିବାକ୍ଷଣି ଏକ ଅପୂର୍ବ ଝଙ୍କାର ସୃଷ୍ଟି କଲା ।

ସଂଜୀବ ସ୍ତବ୍ଧହୋଇଗଲା ମୁହୂର୍ତ୍ତେ । ତା'ପରେ କଣ୍ଢେଇଟିକୁ ରଖିଦେଲା ଯଥା ସ୍ଥାନରେ । ଆଉ କୌଣସିଟିରେ ହାତ ଦେବା ପାଇଁ ସେ ହୁଏତ ଭରସା କରିପାରୁ ନଥିଲା ।

କିନ୍ତୁ ପଛରୁ ସେ ଏକ କୋମଳ କଣ୍ଠସ୍ୱର ଶୁଣିଲା : ପ୍ରତିଟି କଣ୍ଢେଇରେ କିଛି କିଛି ମେକାନିଜିମ୍ ଅଛି ମିଷ୍ଟର ରାଉତରାୟ । ଏସବୁଗୁଡ଼ିକ କିନ୍ତୁ ମୋ ବାର୍ଥ ଡେ'ର ଉପହାର । ମୁଁ ସାଇତି ରଖିଛି ।

ସଂଜୀବ ବୁଲି ଅନେଇଲା ।

ସେ କାହାକୁ ଦେଖୁଛି ? ସେ ଲାୟଲି ତ ଏ ନୁହେଁ ?

ସ୍ଲିଭ୍‌ଲେସ୍ ବ୍ଲାଉଜ ସାଙ୍ଗକୁ ଲାଲ ପାଢ଼ିର ସିଲ୍‌କ ଶାଢ଼ୀଟି କିନ୍ତୁ ଅଦ୍ଭୁତ ମ୍ୟାଚ୍ କରିଛି ଲାୟଲିକୁ । ଆଉ ମୁହଁର ହସ ! ଆଖିର ଚାହାଣି !!

ଲାୟଲି କ'ଣ ବାଥ୍‌ରୁମ୍‌ରେ ତା'ର ଅତୀତର ସମସ୍ତ ଦୁଃଖ ଶୋକ ଧୋଇ ଦେଇ ଆସିଲା ମୁହୂର୍ତ୍ତକରେ ?

ଲାୟଲି କିନ୍ତୁ ହସି ହସି ଲାଗିଆସିଲା ସଂଜୀବ ପାଖକୁ ।

ଆଲମାରିରୁ ଦୁଇଟି କଣ୍ଢେଇ ବାହାର କରି କହିଲା : ଦେଖିବେ ଆସନ୍ତୁ ମିଷ୍ଟର ରାଉତରାୟ । ଗତବର୍ଷର ବାର୍ଥ ଡେ'ରେ ମୋତେ ଜର୍ଜ ଉପହାର ଦେଇଥିଲା । ସେ ମୋ ପାଇଁ ଏ ଯୋଡାକ ଜର୍ମାନରୁ ଅଣାଇଥିଲା ।

ଲାୟଲି କଣ୍ଢେଇ ଦୁଇଟିକୁ ଫ୍ଲୋର ଉପରେ ରଖିବା ପୂର୍ବରୁ କହିଲା : ଏମାନଙ୍କର ନୃତ୍ୟ ଦେଖିଲେ ଆପଣ ସ୍ତବ୍ଧ ହୋଇଯିବେ । ସେଦିନ ମୋ ବାର୍ଥ ଡେ'ରେ ଘର ଭର୍ତ୍ତି ବଂଧୁ ବାନ୍ଧବମାନେ ଅବାକ୍ ହୋଇଯାଇଥିଲେ ।

ଲାୟଲି କଣ୍ଢେଇ ଦୁଇଟିକୁ ଫ୍ଲୋର ଉପରେ ଥୋଇ, ଆଲମାରି ଡ୍ରୟାର ଖୋଲି, ଗୁଡାଏ ସରୁ ତାର ବାହାର କଲା ।

ତା'ପରେ କଲିଂବେଲ ଟିପି କହିଲା : କିଛି ନ ଖାଇଲେ ଆଉ ଚଳିବ ନାହିଁ ।

ବୟ ଆସି ଖାଦ୍ୟର ଅର୍ଡର ନେଇଗଲା ।

ଲାୟଲି ସେଇ ଲମ୍ବା ତାର ଦୁଇଟା କଣ୍ଢେଇ ଦୁଇଟିର ପଛପଟରେ ଜଏନ୍ କରୁ କରୁ କହିଲା : ଜର୍ଜ କିନ୍ତୁ ସୁନ୍ଦର ନଚେଇପାରୁଥିଲା ।

ତା'ପରେ ପ୍ଲଗ୍‌ଟା ଗୁଞ୍ଜିଦେଲା ସୁଇଚ ବୋର୍ଡରେ । ସଙ୍ଗେ ସଙ୍ଗେ ପୁଅ କଣ୍ଢେଇଟି ଓ ଝିଅ କଣ୍ଢେଇଟି ଯେପରି ଜୀବନ୍ୟାସ ପାଇଲେ ।

ଲାୟଲି ରେଗୁଲେଟର ଜାତୀୟ ଗୋଟିଏ ପଦାର୍ଥ ଧରି ବସିଲା ଟେବୁଲ ଉପରେ । ଗୋଲାକୃତି ହ୍ୟାଣ୍ଡେଲ ଜାତୀୟ ପଦାର୍ଥଟି ଆଗକୁ ପଛକୁ ବୁଲେଇବା ମାତ୍ରେ କଣ୍ଢେଇ ଦୁଇଟି ବଲ୍‌ଡାନ୍‌ସ ଆରମ୍ଭ କରିଦେଲେ ।

ସଂଜୀବ ସ୍ତବ୍ଧ ହୋଇ ଅନେଇ ଥିଲା ସେଇଆଡ଼େ ।

ଠିକ୍ ସେତିକିବେଳେ ।

ଅମ୍ବରର ମ୍ୟାନେଜର ମିଷ୍ଟର କାପୁରଙ୍କ ସାମ୍ନା ଟେବୁଲରେ ବସିଥିଲା ପାମେଲା । ସର୍ଟହ୍ୟାଣ୍ଡ ନୋଟ୍ ବହିଟି ମୁକୁଳା ହୋଇପଡିଥିଲା ଟେବୁଲ ଉପରେ । ପାମେଲା ପେନ୍‌ସିଲଟି କାମୁଡ଼ି ଚାହିଁଥିଲା ମିଷ୍ଟର କାପୁରଙ୍କ ମୁହଁକୁ ।

ମିଷ୍ଟର କାପୁର ସେହିକ୍ଷଣି ଧୂମାୟିତ କଫି କପ୍‌ଟି ଉଠାଇ ନେଉଥିଲେ ମୁହଁପାଖକୁ ।

ହଠାତ୍ ଦରଜା ଖୋଲିବାର ଏକ ଯାନ୍ତ୍ରିକ ଧ୍ୱନିରେ ମିଷ୍ଟର କାପୁର ଚାହିଁଲେ ଦୁଆର ଆଡ଼େ । ଜଣେ ଅପରିଚିତ ଯୁବକ । ଦରଜା ଦରଆଉଜା କରି ମିଷ୍ଟର କାପୁରଙ୍କ ସହିତ ଆଖି ମିଶିବା ସଙ୍ଗେ ସଙ୍ଗେ କହି ଉଠିଲେ : ମେ ଆଇ କମ୍ ଇନ୍ ?

ମିଷ୍ଟର କାପୁର କଫି କପ୍‌ଟି ମୁହଁପାଖରୁ ଲେଉଟାଇ ଆଣି ଡିସ୍ ଉପରେ ରଖୁ ରଖୁ କହିଲେ : ଓ ! ଇଏସ୍ ।

: କ୍ଷମା କରିବେ । ମୋ' ନା ସତ୍ୟବ୍ରତ ମହାପାତ୍ର । ମୁଁ ଜଣେ ପ୍ରାଇଭେଟ ଡିଟେକ୍‌ଟିଭ । ଅସମୟରେ ଆସି ଆପଣମାନଙ୍କୁ ବିରକ୍ତ କଲି ।

ସତ୍ୟବ୍ରତ ମହାପାତ୍ର ଆଗେଇ ଆସିଲେ ।

ମିଷ୍ଟର କାପୁର ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି କହିଲେ : ନା ନା, ବିରକ୍ତ ଆପଣ କରି ନାହାନ୍ତି । ଆପଣଙ୍କର ସବୁ ସମୟରେ ଏବଂ ଯେକୌଣସି ମୁହୂର୍ତ୍ତରେ ଅମ୍ଭରକୁ ଆସିବାର ଅଧିକାର ଅଛି ।

ସତ୍ୟବ୍ରତ ହାତ ବଢ଼ାଇଲେ ।

ମିଷ୍ଟର କାପୁର ଚେଆରରୁ ଉଠି କରମର୍ଦ୍ଦନ କରି, ବସିବା ପାଇଁ ଅନୁରୋଧ କଲେ ।

ସତ୍ୟବ୍ରତ ଚାହିଁଲେ ତରୁଣୀଟି ମୁହଁକୁ ।

ମିଷ୍ଟର କାପୁର କହିଲେ : ପାମେଲା । ଅମ୍ଭରର ଟାଇପିଷ୍ଟ ।

: ପାମେଲା ! ବେଶ୍ ମିଠା ନାଁଟି ତ !

ପାମେଲା ଅଳ୍ପ ହସିଲା । ନାଲ ଗାଲଟା ତା'ର ଆହୁରି ନାଲି ଦିଶିଲା ।

ମିଷ୍ଟର କାପୁର କହିଲେ : ତମେ ବର୍ତ୍ତମାନ ଆସିପାର ପାମେଲା, ମୁଁ ପୁଣି ଡାକି ପଠାଇବି । ଆଉ ଆପଣଙ୍କର ଚା' ନା କଫି ?

: ଯାହାହେଲେ ଚଳିବ । ସତ୍ୟବ୍ରତ ପାମେଲାର ପଦପାତ ଆଡେ ଚାହିଁ କହିଲେ ।

: ଏଥର କୁହନ୍ତୁ ମିଷ୍ଟର ମହାପାତ୍ର । ଆପଣଙ୍କ ନାଁ ଶୁଣି ନୁହେଁ, ଆପଣଙ୍କ ପ୍ରଫେସନ କଥା ଶୁଣିବା ପରଠାରୁ ମୋ ଛାତି ଭିତରଟା କିପରି କମ୍ପିଉଠିଲାଣି ।

ସତ୍ୟବ୍ରତ ଖୁବ୍ ଜୋର୍‌ରେ ହସି ଉଠିଲେ । କହିଲେ : ଆପଣ ପ୍ରଥମରୁ ମିଥ୍ୟାର ଆଶ୍ରୟ ନେବାକୁ ଚେଷ୍ଟା କରନ୍ତୁ ନାହିଁ ମିଷ୍ଟର କାପୁର । କାରଣ...

ସତ୍ୟବ୍ରତ ଲକ୍ଷ୍ୟ କଲେ, ମିଷ୍ଟର କାପୁରଙ୍କ ମୁହଁଟି ମଳିନ ପଡି ଆସୁଛି । କଣ୍ଠ ବି ଶୁଖିଲା ମନେହେଉଛି ।

ମିଥ୍ୟା ତ ମୁଁ କିଛି କହି ନାହିଁ ମିଷ୍ଟର ମହାପାତ୍ର ।

: ଆପଣ ଜଣେ ଅଭିଜ୍ଞ ମ୍ୟାନେଜର । କଲିକତା ଓ ବମ୍ବେରେ ଏହାଠାରୁ ବଡ଼ ବଡ଼ ହୋଟେଲ ଚଳେଇ ଆସିଛନ୍ତି । ଆଉ ସେଇ ସବୁ ହୋଟେଲରେ ଗୋଟାଏ ଦୁଇଟା କରି ଖୁଣ୍ ଜଖମ ଯେ ନ ହୋଇଛି, ସେକଥା ଆପଣ ଅସ୍ୱୀକାର କରିପାରିବେ ନାହିଁ; ତଥାପି ଆପଣ ନିର୍ଭୟରେ ସେସବୁ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ଆଉ ଆଜି, କଟକ ପରି ଜାଗାରେ, ମୋପରି ଏକ ନିରୀହ ଲୋକକୁ ଦେଖି ଆପଣଙ୍କ ଛାତିଟା କମ୍ପିଉଠୁଛି । ଏକଥା ଆଉ କେହି ବିଶ୍ୱାସ କରୁ ପଛେ ମୁଁ କିନ୍ତୁ ପାରିବି ନାହିଁ ।

ମିଷ୍ଟର କାପୁର ଏଥର ପ୍ରାଣଖୋଲି ହସିଲେ ।

ସତ୍ୟବ୍ରତ କହିଲେ : କଫି ପିଇଦିଅନ୍ତୁ । ଥଣ୍ଡା ହୋଇ ଯାଉଛି ।

ମିଷ୍ଟର କାପୁର ସତେ ଯେପରି କଫି ପିଇବା କଥା ଭୁଲି ଯାଇଥିଲେ । ସଙ୍ଗେ ସଙ୍ଗେ କପ୍‌ଟା ଉଠାଇ ଢ଼କ ଢ଼କ କରି ଏକାଥରକେ ସବୁଯାକ ପିଇଦେଲେ । ରୁମାଲ୍‌ରେ ମୁହଁ ପୋଛି କହିଲେ : ଏଥର ଆପଣଙ୍କ କଥା କୁହନ୍ତୁ ।

: ଆପଣଙ୍କର ଭୟ କରିବାର କିଛି କାରଣ ନାହିଁ ମିଷ୍ଟର କାପୁର ! ମୁଁ ଇମିତି ଆସିଛି, ଖାଲି ଟିକିଏ ବୁଲି ଦେଖିବା ପାଇଁ । ଆମ କଟକ ସହରରେ ଏତେବଡ଼ ଗୋଟାଏ ହୋଟେଲ ପ୍ରତିଷ୍ଠିତ ହେଲା; ଅଥଚ ଦେଖା ହୋଇପାରିଲା ନାହିଁ, ଏଇଟା ତ ଉଚିତ ନୁହେଁ ।

ମିଷ୍ଟର କାପୁର କିନ୍ତୁ ସତ୍ୟବ୍ରତଙ୍କର ଏଇ ସଫେଇକୁ ବୋଧହୁଏ ବିଶ୍ୱାସ କରି ପାରୁ ନ ଥିଲେ । କହିଲେ : ସେ ତ ଆମର ସୌଭାଗ୍ୟର କଥା । ଅମ୍ବର ଆପଣମାନଙ୍କ ପରି ମହାପୁରୁଷମାନଙ୍କ ପଦଧୂଳି ପାଇଲେ ଧନ୍ୟହେବ । କିନ୍ତୁ....

ସତ୍ୟବ୍ରତ ମିଷ୍ଟର କାପୁରଙ୍କ କିନ୍ତୁର ଅର୍ଥ ବୁଝିପାରିଥିଲେ । କହିଲେ : ପାମେଲା ପରି ଝିଅ ଆପଣଙ୍କ ଅମ୍ବରରେ କେତୋଟି ଅଛନ୍ତି ?

ମିଷ୍ଟର କାପୁରଙ୍କ ଆଖିପତା ଦୁଇ ଚାରି ଥର କମ୍ପିଉଠିଲା । କୁଣ୍ଠିତ କଣ୍ଠରେ କହିଲେ : ଅଛନ୍ତି ଦୁଇ ଚାରି ଜଣ ।

: ହୁଁ । ଲାୟଲି ଅମ୍ବରର....

: ରିସେପ୍‌ସନିଷ୍ଟ୍ । ଖୁବ୍ ଦ୍ରୁତକଣ୍ଠରେ ମିଷ୍ଟର କାପୁର ଯେପରି ପଦ ପୂରଣ କଲେ ।

: ଲାୟଲି ଆପଣଙ୍କୁ କିପରି ଲାଗେ ?

: ବେଶ୍, ମନ୍ଦ ନୁହେଁ । ଆମ ଅମ୍ବରରେ ଯେଉଁ କେତୋଟି ଝିଅ ଅଛନ୍ତି, ସେମାନେ ଉଗ୍ର ଆଧୁନିକା ହେଲେ ମଧ ଖୁବ୍ ଭଦ୍ର । ମୁଁ ସେମାନଙ୍କ ଉପରେ ସନ୍ତୁଷ୍ଟ; କିନ୍ତୁ ଲାୟଲିକୁ ଆପଣ ଚିହ୍ନିଲେ କିପରି ? ମିଷ୍ଟର କାପୁରଙ୍କ ମୁହଁରେ ଏକ ବିରାଟ ପ୍ରଶ୍ନବାଚୀ ଫୁଟିଉଠିଥିଲା ।

: ଆଜି ଦେଖାହୋଇଥିଲା । ସେ ନିମନ୍ତ୍ରଣ କରିଥିଲା ଆସିବା ପାଇଁ; କିନ୍ତୁ ରିସେପ୍‌ସନ୍ କାଉଣ୍ଟରରେ ତ ତାକୁ ଦେଖିଲି ନାହିଁ ?

: ନା, ସେ ଆଜି ଛୁଟିନେଇଛି । ବାହାରକୁ ଯାଇଥିଲା । ରୁହନ୍ତୁ ଫେରିଲାଣି କି ନାହିଁ ଦେଖୁଛି । ମିଷ୍ଟର କାପୁର କଲିଂବେଲ୍ ଟିପିବାକୁ ଯାଉଥିଲେ । ସତ୍ୟବ୍ରତ ବାଧାଦେଲା : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ; ଠିକ୍ ଯେ ମୁଁ ଲାୟଲିର ନିମନ୍ତ୍ରଣ ରକ୍ଷା କରିବାକୁ ଆସିଛି ତା' ନୁହେଁ । ହଁ ଆଉ ଗୋଟାଏ କଥା ମିଷ୍ଟର କାପୁର, ଆପଣ ଲାୟଲି ଆଗରେ ମୋର ପ୍ରକୃତ ପରିଚୟଟା କହିବେ ନାହିଁ ସେ ମୋ ନାଁ ଜାଣିଛି । କିନ୍ତୁ ପ୍ରଫେସନ ସମ୍ବନ୍ଧରେ...

: ଆପଣ କିନ୍ତୁ ମିଥ୍ୟା କଥା କହୁଛନ୍ତି ମିଷ୍ଟର ମହାପାତ୍ର । ମୋର ମନେହେଉଛି ଆପଣ କେବଳ ଅମ୍ବରକୁ ଆସିନାହାନ୍ତି ପରିଦର୍ଶନ ପାଇଁ, ଅଥବା ଅମ୍ବରକୁ ଆସିନାହାନ୍ତି ଲାୟଲିର ନିମନ୍ତ୍ରଣ ରକ୍ଷା କରିବା ପାଇଁ । ଆପଣ ଆସିଛନ୍ତି...

ମିଷ୍ଟର କାପୁର କଥା ଅସମ୍ପୂର୍ଣ୍ଣ ରଖି ସତ୍ୟବ୍ରତଙ୍କୁ ଅର୍ଥପୂର୍ଣ୍ଣ ହସ ଆଡେ ଅନେଇ ରହିଲେ ।

କିନ୍ତୁ ସତ୍ୟବ୍ରତ ମିଷ୍ଟର କାପୁରଙ୍କ ପ୍ରାଣରେ ସଂଘାତ ସୃଷ୍ଟି କରିବା ପାଇଁ ଆହୁରି କୁଟିଳ ହସ ହସି କହିଲେ : ଆପଣ ମୋତେ ବିଶ୍ୱାସ କରନ୍ତୁ ମିଷ୍ଟର କାପୁର । ମୁଁ କୌଣସି ପ୍ରକାର କୁମତଲବ ଧରି ଏଠାକୁ ଆସିନ ାହିଁ ।

କଫି ଟ୍ରେ'ଧରି ବୟ ଭିତରକୁ ପଶିଲା ।

ମିଷ୍ଟର କାପୁର କହିଲେ : ଲାୟଲି ଫେରିଛି ରମଜାନ ?

ରମଯାନ ମୁଣ୍ଡହଲାଇ କହିଲା : ଜୀ ହଜୁର ।

ସତ୍ୟବ୍ରତ ଟିକିଏ ନୀରବ ରହି ପୁଣି କହିଲେ : ଲାୟଲିର ଚରିତ୍ର ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ମିଷ୍ଟର କାପୁର ଉତ୍‌କଣ୍ଠିତ ସ୍ୱରରେ ପ୍ରଶ୍ନକଲେ, ଚରିତ୍ରମାନେ ? ସତ୍ୟବ୍ରତ ହୋ ହୋ ହୋଇ ହସିଉଠି କହିଲେ : ମୁଁ ଗୋଟିଏ ଝିଅର ଚରିତ୍ର ସମ୍ବନ୍ଧରେ ଜଣେ ଅଭିଜ୍ଞ ହୋଟେଲ ମ୍ୟାନେଜରଙ୍କୁ ପ୍ରଶ୍ନ କରୁଛି; ଅଥଚ ଝିଅମାନଙ୍କର ଚରିତ୍ରର ଅର୍ଥ ପୁଣି ମୋତେ ବିଶ୍ଳେଷଣ କରି ଆପଣଙ୍କୁ ବୁଝାଇଦେବାକୁ ହେବ ।

ମିଷ୍ଟର କାପୁର ବି ଟିକିଏ ଦବିଗଲେ । ଧୀର ଗଳାରେ କହିଲେ : ଆମ ହୋଟେଲର ଅନ୍ୟ ସବୁ ଝିଅମାନଙ୍କ ଅପେକ୍ଷା ମୋତେ ଲାୟଲିକୁ ବେଶି ଭଲଲାଗେ । କାରଣ ଜୀବନ ଧାରଣର ମାନ ତା'ର ଅନ୍ୟ ଝିଅମାନଙ୍କ ଅପେକ୍ଷା ଉନ୍ନତ । ସେ ବଞ୍ଚିବାକୁ ଚାହେଁ ଏବଂ ସତ୍ ଓ ମହତ୍ ଭାବରେ ବଞ୍ଚିବାକୁ ଚାହେଁ । କାର୍ଯ୍ୟ କରିବାରେ ତା'ର ବି ଗୋଟାଏ ନିଷ୍ଠା ଅଛି । କର୍ତ୍ତବ୍ୟରେ ସେ କେବେ ଅବହେଳା କରେ ନାହିଁ । ସେଇଥି ପାଇଁ ମୋତେ ତାକୁ ବେଶି ଭଲ ଲାଗେ ।

: ଆଉ ପାମେଲା ? ସତ୍ୟବ୍ରତ ପୁଣି ପ୍ରଶ୍ନ କଲେ ।

: ପାମେଲା ବି ମନ୍ଦ ଝିଅ ନୁହେଁ । କିନ୍ତୁ ଜୀବନ ପାଇଁ ତା'ର କିଛି ଦରଦ ବୋଧ ନାହିଁ । ଦୁଷ୍କର୍ମ ପାଇଁ ସେ କେବେ ଅନୁଶୋଚନା କରେ ନାହିଁ । ବର୍ତ୍ତମାନକୁ ନେଇ ସେ ମସ୍‌ଗୁଲ ରହିବାକୁ ଚାହେଁ । ସତ କହିଲେ ମିଷ୍ଟର ମହାପାତ୍ର, ହୋଟେଲରେ ଆମର ଏତେ କର୍ମଚାରୀ ଥାଉ ଥାଉ ଏଇ ଦୁଇଟି ଝିଅଙ୍କ ସମ୍ବନ୍ଧରେ ଆପଣ କାହିଁକି ଜାଣିବାକୁ ଆଗ୍ରହୀ ?

: ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ ମିଷ୍ଟର କାପୁର । ମୁଁ ଧୀରେ ଧୀରେ ସମସ୍ତଙ୍କ ସମ୍ବନ୍ଧରେ ଆପଣଙ୍କୁ ପ୍ରଶ୍ନ କରିବି । ସମସ୍ତଙ୍କ ଚରିତ୍ର ମୋ ଡାଇରୀରେ ଲେଖିରଖିବି । ଏପରିକି ଆପଣ ବି ବାଦ୍‌ଯିବେ ନାହିଁ ।

: କିନ୍ତୁ କାହିଁକି ?

ଏଇ କାହିଁକିର ଅର୍ଥ ଅତି ସହଜ ମିଷ୍ଟର କାପୁର । ଆଜି ନ ହେଲେ ବି ଦି' ମାସ ପରେ ବା ବର୍ଷକ ପରେ ତ ମୋତେ ଏଇମାନଙ୍କ ଚରିତ୍ର ସମ୍ବନ୍ଧରେ ଅନୁସନ୍ଧାନ ପାଇଁ ଆସିବାକୁ ପଡ଼ିବ !

: ମୁଁ ବୁଝିପାରୁନାହିଁ ମିଷ୍ଟର ମହାପାତ୍ର ।

: ଆପଣ ସବୁକଥା ଟିକିଏ ଡେରିରେ ବୁଝନ୍ତି ମନେହେଉଛି । ମୋର କହିବାର ଅର୍ଥ ହେଉଛି ଆପଣଙ୍କର ଏହି ହୋଟେଲ ଅମ୍ବରରେ ଦିନେ ନା ଦିନେ ହୁଏତ ମର୍ଡର, ନତୁବା

କିଡନାପିଙ୍ଗ୍, କିମ୍ବା ସ୍ମଗଲିଂ କିଛି ନା କିଛି ତ ଗୋଟାଏ ଘଟଣା ଘଟିବ । ସେତେବେଳେ ତ ମୋତେ ଅନୁସନ୍ଧାନ କରିବା ପାଇଁ ଆସିବାକୁ ପଡ଼ିବ ।

: ଓ ହୋ, ଏଇକଥା ! ମିଷ୍ଟର କପୁର ହୋ ହୋ ହୋଇ ହସିବାରେ ଲାଗିଲେ । ତାଙ୍କ ଆଖି ଆଗରୁ ଯେପରି ସମସ୍ତ କୁହେଳି ଅପସରିଗଲା ।

ସତ୍ୟବ୍ରତ କହିଲେ : ମୋର ଗୋଟିଏ ଅନୁରୋଧ ଆପଣଙ୍କ ନିକଟରେ ।

: ଆହା, ଅନୁରୋଧ କାହିଁକି ମିଷ୍ଟର ମହାପାତ୍ର, ଆଦେଶ ଦିଅନ୍ତୁ ।

: ମୁଁ ଏଇ ମୁହୂର୍ତ୍ତଠାରୁ ଦୁଇଘଣ୍ଟା ଏହି ହୋଟେଲରେ ରହିବି ଏବଂ ମୋର ଗତିବିଧି ସ୍ୱାଧୀନ ହେବ । ଆଶାକରୁଛି ଆପଣ ମୋତେ ଏତିକି ସ୍ୱାଧୀନତା ଦେବେ ।

: ନିଶ୍ଚୟ, ନିଶ୍ଚୟ ମିଷ୍ଟର ମହାପାତ୍ର; କିନ୍ତୁ ସମସ୍ୟା କ'ଣ ଜାଣନ୍ତି ? ଜଣେ ଜଣେ ବୋର୍ଡର ଏପରି ସାଘାଂତିକ ଧରଣର ଥାଆନ୍ତି ଯେ, ଆପଣ ସେମାନଙ୍କ ସହିତ କଥାବାର୍ତ୍ତା କରିବା ସହଜ ହେବ ନାହିଁ । ସେମାନଙ୍କୁ ବିରକ୍ତ କଲେ ମୋ' ପାଖରେ ଆସି ରିପୋର୍ଟ କରିବେ । ମିଷ୍ଟର କାପୁରଙ୍କ ଗଳା କମ୍ପିଉଠିଥିଲା ।

ସତ୍ୟବ୍ରତ କହିଲେ : ଆପଣ ସେଥିପାଇଁ ମୋଟେ ଚିନ୍ତା କରନ୍ତୁ ନାହିଁ । ମୁଁ ଆପଣଙ୍କର କୌଣସି ବୋର୍ଡରର ଅସୁବିଧା ହେବା ଭଳି କାମ କିଛି କରିବି ନାହିଁ । କେବଳ ହୋଟେଲଟା ସବୁଆଡ ବୁଲି ଦେଖିବି, ହୋଟେଲର କର୍ମଚାରୀମାନଙ୍କ ସହିତ ଦି' କଥା ହେବି । ହୁଏତ କୌଣସି ବୋର୍ଡର ସହିତ କଥାବାର୍ତ୍ତା କରିବାକୁ ପ୍ରୟୋଜନ ହୋଇ ନ ପାରେ ।

: ତା' ହେଲେ ଆପଣଙ୍କ ସହିତ ଜଣେ ଲୋକ ଦେଉଛି, ସେ ଆପଣଙ୍କୁ ସବୁ ବୁଲେଇ ଦେଖେଇ ଦେବ ।

: ନା, ସେଇଠି ମୋର ଆପତ୍ତି । ଅବଶ୍ୟ ଆପଣ ଯଦି ମନେକରୁଥାଆନ୍ତି ଯେ, ହୋଟେଲ ଭିତରେ ମୋର ଅବାଧ ଗତି ଆପଣଙ୍କ ବ୍ୟବସାୟ ପକ୍ଷରେ ସ୍ୱାସ୍ଥ୍ୟକର ନୁହେଁ, ତା'ହେଲେ ମୁଁ ବାଧ କରିବି ନାହିଁ ।

: ନା, ନା ମିଷ୍ଟର ମହାପାତ୍ର; ମୋର ସେପରି ମନେ କରିବାର କିଛି ନାହିଁ । ଆପଣ ଏଇ ମୁହୂର୍ତ୍ତରେ ନିଜ ଇଚ୍ଛାରେ ଯୁଆଡ଼େ ଇଚ୍ଛା ଯାଇପାରନ୍ତି, ଦେଖିପାରନ୍ତି । ଆପଣ ବନ୍ଧୁ ଭାବରେ ଆସିଛନ୍ତି ଯେତେବେଳେ...

ସତ୍ୟବ୍ରତ ସେଇ ମୁହୂର୍ତ୍ତରେ ଉଠି ଠିଆହୋଇପଡିଥିଲେ ଏବଂ ମିଷ୍ଟର କାପୁରଙ୍କ ଶେଷ କଥା ପଦକ ଶୁଣିବା ପୂର୍ବରୁ ଘରୁ ବାହାରି ଚାଲିଯାଇଥିଲେ ।

ମ୍ୟାନେଜରଙ୍କ ଘରୁ ବାହାରି ସେ ଆଗେଇ ଯାଉଥିଲେ । ଦୁଇ ପାଖରେ ଘର । ସବୁ ଘରଗୁଡ଼ିକର ଦୁଆର ବନ୍ଦ । ଉପରେ ପିତଳରେ ରୁମ୍ ନମ୍ବର ଲେଖା ହୋଇଛି ।

ଦୁଇ ତିନିଟି ରୁମ୍ ଛାଡ଼ି । ଆଗେଇ ଯିବାପରେ ଶୁଣିଲେ, ପାଖ ଘରେ ଟାଇପ୍ ରାଇଟରର ଶବ୍ଦ । କିଏ ଯେପରି ଦ୍ରୁତ ଟାଇପ୍ କରି ଚାଲିଛି ।

ପାମେଲା ହୋଇଥିବ ବୋଧେ ।

ସତ୍ୟବ୍ରତ ସେଇ ରୁମ୍‌ର ଦରଜାଟି ଠେଲିଦେଇ ଦେଖିଲେ, ସାମ୍‌ନାରେ ଗୋଟିଏ ଛୋଟ ଟେବୁଲ ଉପରେ ପାମେଲା ଟାଇପ୍ କରି ଚାଲିଛି ।

ଛୋଟ ଗୋଟିଏ ବେଡ୍, ଆଲମାରି, ଚେଆର ଟେବୁଲ । ବୋଧହୁଏ ପାମେଲା ଏଇଠି ରୁହେ ଆଉ ଏଇଟା ବି ତା'ର ଅଫିସ ।

ସାମ୍ନାରେ ସତ୍ୟବ୍ରତଙ୍କୁ ଦେଖି ପାମେଲା ଉଠି ଠିଆହେଲା । ଅଳ୍ପ ହସିଲା ।

ସତ୍ୟବ୍ରତ କହିଲେ : ମିଷ୍ଟର କାପୁରଙ୍କଠାରୁ ଆପଣଙ୍କର ପ୍ରଶଂସା ଶୁଣିଲି । ଆପଣ ଖୁବ୍ କର୍ମଠ । ଅମ୍ବରରେ ଆପଣଙ୍କର ଭବିଷ୍ୟତ ଉଜ୍ଜ୍ୱଳ ।

ପାମେଲା କିଛି ଉତ୍ତରଦେଲା ନାହିଁ, କେବଳ ହସୁଥିଲା ।

: ଆପଣ କଟକ ଆସିବା ପୂର୍ବରୁ କେଉଁଠି ଥିଲେ ?

: କେଉଁଠି ଥିବି ବୋଲି ଆପଣଙ୍କର ଅନୁମାନ ?

: ଦିଲ୍ଲୀ, ବମ୍ବେ ବା କଲିକତାର କେଉଁଠି ଗୋଟାଏ ଜାଗାରେ ହେବ ।

ପାମେଲା ହସିଉଠିଲା । କହିଲା : ଆପଣ ହାରିଗଲେ । ମୁଁ ଏଇ କଟକରେ ଥିଲି । ମୋର ଜନ୍ମ କଟକରେ, ମୁଁ ବଢ଼ିଛି ବି ଏଇ କଟକରେ ।

ସତ୍ୟବ୍ରତ ମୁହୂର୍ତ୍ତେ ଚାହିଁଲେ ପାମେଲା ମୁହଁକୁ । ସେ ଯେପରି ନୂଆ କରି ଆଉ ଥରେ ଦେଖିଲେ ପାମେଲାକୁ ।

: ହୁଁ, ଶୁଣି ଖୁସି ହେଲି । ମିଷ୍ଟର କାପୁରଙ୍କ ସହିତ ଆପଣଙ୍କର ପରିଚୟ ନିଶ୍ଚୟ ଅନେକ ଦିନର ।

ପାମେଲା ପୁଣି ହସିଉଠିଲା । କହିଲା : ଏଥର ବି ଆପଣ ଭୁଲ୍‌କଲେ । ମିଷ୍ଟର କାପୁରଙ୍କ ସହିତ ନୁହେଁ; ମିଷ୍ଟର ତାଲୁକଦାରଙ୍କ ସହିତ ମୋର ପରିଚୟ ଅନେକ ଦିନର ।

: ମିଷ୍ଟର ତାଲୁକଦାର କ'ଣ ଅମ୍ବରର ମାଲିକ ?

: ପୁଣି ଆପଣ ଭୁଲ୍‌କଲେ । ମିଷ୍ଟର ତାଲୁକଦାର ଅମ୍ବରର ମାଲିକ ନୁହନ୍ତି, ସେ ମିଷ୍ଟର କାପୁରଙ୍କ ବଂଧୁ ।

ସତ୍ୟବ୍ରତ ପାମେଲା ପାଖରେ ଟିକିଏ ଲଜ୍ଜିତ ହୋଇ ପଡ଼ିଥିଲେ । ରୁମ୍‌ରୁ ପଦାକୁ ବାହାରି ଯାଉ ଯାଉ କହିଲେ : ଆପଣ ଏଥର ମିଷ୍ଟର କାପୁରଙ୍କ ଚିଠି ଟାଇପ୍ କରନ୍ତୁ ।

: ଚିଠିଟା ମିଷ୍ଟର କାପୁରଙ୍କର ନୁହେଁ । ଚିଠିଟା.........

: କାହାର ? ସତ୍ୟବ୍ରତ ବୁଲିପଡ଼ି ପ୍ରଶ୍ନ କଲେ । ସ୍ୱରଟା ଅସ୍ୱାଭବିକ ମନେ ହେଉଥିଲା ।

ପାମେଲା ସେହିପରି ହସି ହସି କହିଲା : ସୋନିଆ ଜଏନ୍‌ଙ୍କର । ସେଇଟା ହୋଟେଲର ବୋର୍ଡ଼ର ।

ସତ୍ୟବ୍ରତ ଆଉ କିଛି ନକହି, ପାମେଲା ଆଡ଼େ ଏକ ତୀବ୍ର କଟାକ୍ଷ ହାଣି ରୁମ୍‌ରୁ ବାହାରି ଚାଲିଗଲା । ବାହାରେ ରମଜାନ୍ ସହିତ ଧକ୍‌କା ହୋଇଗଲା । ରମ୍‌ଜାନ ହାତରୁ କଫି ପଟ୍ ସମେତ ଟ୍ରେ'ଟା ତଳେ ଖସି ପଡ଼ିଲା । ସତ୍ୟବ୍ରତ ନିଜେ ନଇଁପଡ଼ି କପ୍ ଡ଼ିସ୍ ଗୁଡ଼ିକ ଗୋଟେଇ ଦେଉଥିଲେ । କଫି ପଟ୍‌ରୁ କଫି ସବୁ ଢ଼ଳି ହୋଇଯାଇଥିଲା । କେବଳ ସୁଗର ପଟ୍‌ଟା ଭଙ୍ଗିଯାଇଥିଲା ।

ରମଜାନ୍ ସତ୍ୟବ୍ରତଙ୍କ ବ୍ୟସ୍ତତା ଦେଖି କହିଲା : ଆପଣ ଯାଆନ୍ତୁ । ମୁଁ ଆଉଥରେ କଫି କରି ନେଇଯିବି ।

ସତ୍ୟବ୍ରତ ଉଠି ଠିଆହୋଇ ପକେଟରୁ ମନି ବ୍ୟାଗ୍ ବାହାର କରି ରମଜାନ୍‌କୁ କିଛି ପଇସା ଦେବାପାଇଁ ଉଦ୍ୟତ ହେଉଥିବା ବେଳେ ଦେଖିଲେ, ପାମେଲା ଦରଜା ଆଡ଼େଇ ଠିଆହୋଇଛି । ସେ କହିଲା : ଆପଣ ପୁଣି ଭୁଲ କରୁଛନ୍ତି ମିଷ୍ଟର ମହାପାତ୍ର, ଆମ ହୋଟେଲରେ କେହି ବକ୍‌ସିସ ନିଅନ୍ତି ନାହିଁ ।

ରମଜାନ୍ ସତ୍ୟବ୍ରତଙ୍କ ହାତରୁ ଦୁଇ ଟଙ୍କିଆ ନୋଟ ଖଣ୍ଡିକ ଆଡ଼େ ଓ ପାମେଲାର ମୁହଁ ଆଡ଼େ ଚାହିଁ ଚାହିଁ, ହସି ହସି, ପଛେଇ ପଛେଇ ଚାଲିଯାଉଥିଲା ।

ସତ୍ୟବ୍ରତ ରମଜାନ୍ ଆଡ଼େ ଆଖି ଫେରାଇ ପାମେଲା ଆଡ଼କୁ ଚାହିଁଲା ବେଳକୁ ଦେଖିଲେ ଦରଜାଟା ଧିରେ ଧିରେ ବନ୍ଦ ହୋଇ ଯାଉଛି ।

ସେ ଆଉ ମୁହୂର୍ତ୍ତେ ଠିଆ ନ ହୋଇ ଦ୍ରୁତ ପଦଚାଲି ଶିଡ଼ିରେ ଚଢ଼ି ଉପରକୁ ଉଠିଗଲା । ଉପରେ ଘରଗୁଡ଼ିକ ବି ସବୁ ବନ୍ଦ ଥିଲା ।

କେଉଁ ଘରେ ବୋର୍ଡ଼ର ଅଛନ୍ତି, କେଉଁ ଘରେ ନାହାନ୍ତି , ସତ୍ୟବ୍ରତର ଜାଣିବା ଉପାୟ ନଥିଲା । ଏଥର ସତ୍ୟବ୍ରତ ଆଉ କୌଣସି ଘର ଦୁଆର ନକ୍ ନକରି  ଛାତ ଉପରକୁ ଉଠି ଚାଲିଗଲେ ।

ଛାତ ଉପରେ ମଧ୍ୟ ଦୁଇ ତିନିଟି ଘର । ସେଥିରୁ ଗୋଟିଏ ଘର ଭିତରେ ଆଲୁଅ ଜଳୁଥିଲା ଏବଂ ମାଉଥ୍ ଅର୍ଗେନ୍‌ରେ ସ୍ୱର ଭାସି ଆସୁଥିଲା ।

ସତ୍ୟବ୍ରତ ପାଦେ ପାଦେ କରି ଆଗେଇ ଚାଲିଲା ।

ଦରଜା ବନ୍ଦ ଥିଲା । କିନ୍ତୁ ଖୋଲାଝରକାବାଟେ ସତ୍ୟବ୍ରତ ଦେଖିଲେ, ଗୋଟିଏ ଲୋକ ତାଙ୍କ ବିପରୀତ ଦିଗକୁ ମୁହଁ କରି ଶୋଇ ଶୋଇ ମାଉଥ୍ ଅର୍ଗେନ୍ ବଜାଉଛି । ଛାତ ଉପରେ ଆଉ ଅନ୍ୟ ଲୋକ କେହି ନାହାଁନ୍ତି ।

ସତ୍ୟବ୍ରତ ଦରଜାରେ ନକ୍ କଲେ ।

: କିଏ ?

ଲୋକଟି ବୁଲିପଡ଼ି  ସତ୍ୟବ୍ରତ ଆଡ଼େ ଚାହିଁଲା ।

: ଟିକିଏ ଦରଜା ଖୋଲିବେ ? ସତ୍ୟବ୍ରତ କହିଲେ ।

ଲୋକଟି ଦରଜା ଖୋଲି ବହାରକୁ ବାହାରି ଆସିଲା : ଆପଣ ରାଜେଶକୁ ଖୋଜୁଛନ୍ତି ?

: ହଁ ।

: ସେତ ଡ଼ିଉଟିରେ ଅଛି । ମୁଁ ତାର ବଂଧୁ । କିଛି ଜରୁରୀ କାମଥିଲା ?

ସତ୍ୟବ୍ରତ କହିଲେ : ଆପଣଙ୍କ ନାଁ ?

: ମୋ' ନାଁ ମଦନମୋହନ । ମୋର ବିଶେଷ କିଛି ପରିଚୟ ନାହିଁ ।

ସତ୍ୟବ୍ରତ ପାଖ ଘରଗୁଡ଼ିକ ହାତଦେଖେଇ ପଚାରିଲେ, : ଏଠି କେଉଁ ମାନେ ରୁହନ୍ତି ?

: ଏଇ ହୋଟେଲର କର୍ମଚାରୀମାନେ ।

: ହୁଁ , ଆପଣ ତା' ହେଲେ ରାଜେଶର ବନ୍ଧୁ । କେତେ ଦିନ ହେବ ଏଠି ଅଛନ୍ତି ?

: ଏଇ ଦି' ଦିନ ହେବ ଆସିଛି । ତେବେ ରହିବି କିଛିଦିନ ।

: କାହିଁକି ?

: ରାଜେଶ ମୋ' ପାଇଁ ଏଠି କାମର ଚେଷ୍ଟା କରୁଛି । ଯଦି ହୋଇଯାଏ ତେବେ ରହିଯିବି ।

: କ'ଣ ଏଇ ଅମ୍ବରରେ ?

: ହଁ , କିନ୍ତୁ ଆପଣ .......

: ମୁଁ , ମୁଁ ମିଷ୍ଟର କାପୁରଙ୍କ ଲୋକ । ହେଟେଲ ବୁଲି ଦେଖିବାକୁ ଆସିଛି ।

: ଓଃ : ମଦନମୋହନ ଟିକିଏ ନୀରବ ହୋଇ ଯାଇ ବିନୀତ ସ୍ୱରରେ କହିଲା : ଆପଣ ତା' ହେଲେ ମୋ ପାଇଁ ଟିକିଏ ମିଷ୍ଟର କାପୁରଙ୍କୁ କୁହନ୍ତେ ନାହିଁ ?

: ଆପଣ କି କାମ କରିବାକୁ ଚାହାନ୍ତି ?

ମଦନମୋହନ ମାଉଥ୍ ଅର୍ଗାନ୍‌ଟି ହାତରେ ଧରିଥିଲା । ସେଇଟିକୁ ଦେଖାଇ କହିଲା, ଏହା ଛଡା ବି ମୋତେ ପିଆନୋ ବଜାଇ ଆସେ ।

: ରାଜେଶ କ'ଣ ବଜାନ୍ତି ? ସତ୍ୟବ୍ରତ ପ୍ରଶ୍ନକଲେ ।

: ରାଜେଶ ମିଉଜିସିଆନ ନୁହେଁ, ଷ୍ଟୋର କିପର୍ । ଅମ୍ବରର ଭଣ୍ଡାର ଘରର ମାଲିକ ସିଏ । ଭାରି ଭଲ ମଣିଷ ।

: ଆଚ୍ଛା, ମୁଁ ଆପଣଙ୍କ କଥା ମିଷ୍ଟର କାପୁରଙ୍କୁ କହିବି ।

ମଦନମୋହନ ଆଗେଇ ଆସି, ସତ୍ୟବ୍ରତଙ୍କ ହାତ ଧରି ପକାଇ କହିଲା : ପ୍ଲିଜ୍, ଆପଣ ଚାକିରିଟା କରେଇ ଦେଲେ ମୁଁ ବଞ୍ଚିଯିବି ସାର୍ ।

ସତ୍ୟବ୍ରତ କିଛି ଉତ୍ତର ନ ଦେଇ ଧୀରେ ଧୀରେ ଛାତ ଉପରୁ ପୁଣି ତଳକୁ ଓହ୍ଲେଇ ଆସିଲେ ।

କିନ୍ତୁ ସେ ଯେଉଁଥିପାଇଁ ଆସିଥିଲେ ଅମ୍ବରକୁ, ସେ କଥା ତ ଏତେବେଳଯାଏ ବୁଝା ହୋଇପାରିଲା ନାହିଁ

ମିଷ୍ଟର କାପୁରଙ୍କୁ ତ ସେପରି ଖରାପ ଲୋକ ବୋଲି ମନେ ହେଉ ନାହିଁ ।

ଲାୟଲି ସମ୍ବନ୍ଧରେ ତ ତାଙ୍କର କୌଣସି ଅଭିଯୋଗ ନାହିଁ ।

ତା'ହେଲେ ?

ସତ୍ୟବ୍ରତ ଶୁଣିଲେ ବାଁ ପାଖର ୧୯ ନମ୍ବର ରୁମ୍‌ରୁ ଉଚ୍ଛ୍ୱସିତ ହାସ୍ୟଧ୍ୱନି ଭାସିଆସୁଛି । ଦରଜା ଦରମୁକୁଳା ହୋଇଛି ।

ସତ୍ୟବ୍ରତ କିଛି ନ ବିଚାରି ଭିତରକୁ ପଶିଗଲେ ।

ଜଣେ ପୃଥୁଳାକାୟା ମହିଳା ସୋଫା ଉପରେ ବସି ପ୍ରାଣଖୋଲି ହସୁଛନ୍ତି ।

ସାମ୍‌ନାରେ ଯିଏ ଠିଆହୋଇଛି, ସିଏ ବୋଧହୁଏ ହୋଟେଲର ଜଣେ କର୍ମଚାରୀ ।

ସତ୍ୟବ୍ରତଙ୍କୁ ସାମ୍‌ନାରେ ଦେଖି ହଠାତ୍ ମହିଳାଙ୍କର ହସ ବନ୍ଦହୋଇଗଲା ।

: କାହାକୁ ଖୋଜୁଛନ୍ତି ? ସଙ୍ଗେ ସଙ୍ଗେ ସେ ପ୍ରଶ୍ନ କଲେ ।

ଜଡ଼ସଡ଼ ହୋଇ ଠିଆହୋଇଥିଲା ହୋଟେଲ କର୍ମଚାରୀଟି ମଧ୍ୟ ଯେପରି ସଚେତନ ହୋଇ ଉଠିଲା ।

: ମୁଁ, ଏଇ ବାଟେ ଯାଇଥିଲି । ଆପଣଙ୍କ ହସ ଶୁଣି ଭିତରକୁ ପଶିଆସିଲି । ସତ୍ୟବ୍ରତ କହିଲେ ।

: ମାନେ, ଆପଣ କ'ଣ ମନେକରିଛନ୍ତି ? ଭଦ୍ରମହିଳାଙ୍କର କଣ୍ଠସ୍ୱର ଟିକିଏ ଉତ୍ତ୍ୟକ୍ତ ଶୁଣାଯାଉଥିଲା । ଆପଣ କ'ଣ ମନେ କରିଛନ୍ତି ଆପଣଙ୍କ ହୋଟେଲରେ ରହିବାକୁ ହେଲେ ପାଟି ବନ୍ଦ କରି ଦୁଆର କିଳି ବସିବାକୁ ହେବ । ସେ ପାଠ ପଢିବ ନାହିଁ ଧନମଣି । ଆମେ ପଇସା ଦେଉଛୁ ଯେତେବେଳେ ଯାହା ଇଚ୍ଛା ତା' କରିବୁ । ବାହାର, ବାହାର ମୋ ଘରୁ ।

ଭଦ୍ରମହିଳା ତାଙ୍କର ବିପୁଳ ଶରୀରଟିକୁ ଉଠାଇ ସତ୍ୟବ୍ରତଙ୍କ ଆଡେ ମାଡ଼ିଆସିଲେ । ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ; କିନ୍ତୁ ହୋଟେଲ କର୍ମଚାରୀଟି ଇଙ୍ଗିତରେ ଜଣାଇ ଦେଲା ଯେ, ଭଦ୍ରମହିଳାଙ୍କର ଟିକିଏ ମୁଣ୍ଡ ଦୋଷ ଅଛି । ତେଣୁ ସେ ଆଉ କିଛି ନ କହି ନୀରବରେ ବାହାରିଗଲେ ।

ପୁଣି ଭିତରୁ ହାସ୍ୟରୋଳ ଭାସିଆସିଲା ।

ନା, ଆଉ ନୁହେଁ; ବରଂ ସେ ଲାୟଲି ସଙ୍ଗରେ ଥରେ ଦେଖାକରି ଫେରିଯିବେ ।

ସେ ଫେରିଯାଉଥିଲେ ମଧ୍ୟ ।

କିନ୍ତୁ ହଠାତ୍...

ଝଣ୍ ଝଣ୍ ହୋଇ କାଚ ଗ୍ଲାସଟା ତାଙ୍କ ଗୋଡ଼ ପାଖରେ ପଡ଼ି ଭାଙ୍ଗିଗଲା । ବାଁ ପାଖ ୯ ନମ୍ବର ରୁମ୍‌ର ଦୁଆରଟା ଖୋଲା । ନିଶ୍ଚୟ ସେଇ ଘର ଭିତରୁ କେହି ବାହାରକୁ ଫୋପାଡ଼ିଛି ।

ସତ୍ୟବ୍ରତ ଭିତରକୁ ପଶିବେ କି ନାହିଁ ବହୁତ ଚିନ୍ତା କରି, ଧୀର ପାଦଚାଳି ପଶିଲେ । କିନ୍ତୁ କିଏ କାହିଁ ? ସୋଫା, ବେଡ୍, ସବୁ ଖାଲିପଡିଛି । ଘର ଭିତରେ ଲାଇଟ୍ ଜଳୁଛି । ଭିତରକୁ ବୋଧହୁଏ ଆଉ ଗୋଟାଏ ରୁମ୍ ଅଛି । ହଁ, ଭିତରୁ ଗୁଣୁ ଗୁଣୁ କଣ୍ଠ ଶୁଭୁଛି କାହାର ।

ସତ୍ୟବ୍ରତ ଦରଜାଟା ଆସ୍ତେ ଖୋଲିଲେ ।

ସେଇଟା ବାଥ୍‌ରୁମ୍ । ବାଥ୍‌ଟବ୍ ଭିତରେ ଜଣେ ଉଲଗ୍ନ ତରୁଣୀ । କେବଳ ମୁହଁଟି ପଦାକୁ ଦିଶଛି । ଦେହର ଅନ୍ୟ ସବୁ ଅଂଶ ବାଥ୍ ଟବ୍ ଭିତରେ । ସେ ଗୁଣୁ ଗୁଣୁ ଗୀତ ଗାଉଛି ।

ସତ୍ୟବ୍ରତ ଭୀଷଣ ଲଜ୍ୟା ଭିତରେ ପଡି ଯାଇଥିଲେ । କେହି ଯଦି ବାହାରୁ ଦେଖେ କ'ଣ ଭାବିବ ! ସେ ଆଉ ମୁହୂର୍ତ୍ତେ ବିଳମ୍ବ ନ କରି ବାହାରି ଆସୁଥିଲେ । କିନ୍ତୁ ଧରା ପଡିଗଲେ ପାମେଲା ଆଖିରେ । ପାମେଲା ଗୋଟିଏ ଟାଇପ୍ କରା କାଗଜ ଧରି ଭିତରକୁ ପଶୁଥିଲା ।

ସତ୍ୟବ୍ରତ ନିଜକୁ ଲଜ୍ଜାମୁକ୍ତ କରିବା ପାଇଁ ଚଞ୍ଚଳ କଣ୍ଠରେ କହିଲେ : ସୋନିଆ ଜଏନ୍ ବର୍ତ୍ତମାନ ବାଥ୍ ରୁମ୍‌କୁ ଗଲେ ।

ପାମେଲା ସେଠାରେ ସତ୍ୟବ୍ରତଙ୍କୁ ଦେଖି ଠିଆ ହୋଇପଡିଥିଲା । ସତ୍ୟବ୍ରତଙ୍କର ବିଚଳିତ ଭାବ ଦେଖି ଅଳ୍ପ ହସି କହିଲା : ପୁଣି ଆପଣ ଭୁଲ୍ କଲେ ସାର୍ ! ଏ ରୁମ୍‌ରେ ଲୋଲିତା ସିକ୍‌ଦାର ରୁହନ୍ତି ।

: ଓଃ ! ତା'ହେଲେ...

: ସୋନିଆ ଜଏନ୍ ୧୭ ନମ୍ବର ରୁମ୍‌ରେ ରୁହନ୍ତି । ଉପର ତାଲାରେ ।

ସତ୍ୟବ୍ରତ ନୀରବରେ ସେଠାରୁ ଖସିଗଲେ । ଏହା ତାଙ୍କ ପକ୍ଷରେ ପରାଜୟ ନିଶ୍ଚୟ । ପାମେଲା ପାଖରେ ନିଜେ ସେ ବହୁତ ଛୋଟ ହୋଇ ଯାଇଥିଲେ ।

ଏଥର ସତ୍ୟବ୍ରତ ସିଧା ଯାଇ ରିସେପସନ କାଉଣ୍ଟରରେ ପହଞ୍ଚିଲେ ।

ତଳେ କ୍ରମଶଃ ଲୋକ ଗହଳି ବଢୁଥିଲା ।

ରିସେପ୍‌ସନ କାଉଣ୍ଟରରେ ଯେଉଁ ଭଦ୍ରଲୋକ ଜଣକ ଥିଲେ ତାଙ୍କ ନା ସାମୁଏଲ ଦାସ । ବୟସ୍କ ଭଦ୍ରଲୋକ । ମୁଣ୍ଡରେ ବାଳ ନାହିଁ; କିନ୍ତୁ ଭଦ୍ରଲୋକ ବେଶ୍ ସୁସ୍ଥ ସବଳ । ଚେହେରାଟିର ଶ୍ରୀ ଅଛି । ଗମ୍ଭୀର । ମିଷ୍ଟଭାଷୀ ।

ସତ୍ୟବ୍ରତଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ : ହୋଟେଲର କର୍ମଚାରୀମାନଙ୍କ ସମ୍ବନ୍ଧରେ ମୋର ବିଶେଷ ଧାରଣା ନାହିଁ । କାରଣ ମୋର ଏଠାରେ ଆପଏଣ୍ଟମେଣ୍ଟ ହୋଇଛି ମାତ୍ର ମାସେ ହେବ । ତା'ଛଡା ହୋଟେଲରେ ମୁଁ ରୁହେ ନାହିଁ । କାମ ଶେଷ ହୋଇଗଲେ, ଘରକୁ ଚାଲିଯାଏ ।

: ଆପଣଙ୍କ ଘରଟା ?

: ପିଟିନ୍ ସାହିରେ ।

: ଆପଣ କ'ଣ ହୋଟେଲର କୌଣସି କର୍ମଚାରୀଙ୍କୁ ଚିହ୍ନନ୍ତି ନାହିଁ ?

: ନା, ନା । ଚିହ୍ନେନା କହିଲେ ଭୁଲ୍ ହେବ । ପ୍ରତିଟି କର୍ମଚାରୀ ଓ ପ୍ରତିଟି ବୋର୍ଡରଙ୍କ ସହିତ ଚିହ୍ନା ନ ରହିଲେ, ମୋର ଏହି ଚାକିରି ରହିବ ନାହିଁ ଯେ । ତେବେ ଅସଲ କଥା ହେଉଛି, କାହାରି ସହିତ ଆନ୍ତରିକତା ନାହିଁ ।

: ମିଷ୍ଟର କାପୁର କେମିତିକା ଲୋକ ?

: ବେଶ୍ ଭଲ । ହୋଟେଲ ମ୍ୟାନେଜର ହିସାବରେ ସେ ଉପଯୁକ୍ତ ।

: ଆଚ୍ଛା, ଅମ୍ବରର ମାଲିକ କିଏ ?

: ମୋ ମନରେ ବି ସେଇ ପ୍ରଶ୍ନ ଦିନେ ଉଠିଥିଲା । ମୁଁ କେତେ ଜଣ କର୍ମଚାରୀଙ୍କ ସହିତ ଏ ସମ୍ବନ୍ଧରେ ଆଳାପ କରିଥିଲି; କିନ୍ତୁ କାହାରି କଥା କାହାରି ସହିତ ମିଶିଲା ନାହିଁ । ତେବେ ସବୁ ମିଶେଇ ମୋର ଯାହା ମନେହେଲା ଏ ହୋଟେଲର ମାଲିକ ଜଣେ କେହି ନୁହେଁ ।

: ହୁଁ, ଆପଣ ଲାୟଲିକୁ ଚିହ୍ନି ଥିବେ ?

: ହଁ, ହଁ, ଲାୟଲି ସହିତ ମୋର ଟିକିଏ ବେଶି ଘନିଷ୍ଠତା; କାରଣ ସେ ମୋର ସହଯୋଗୀ । ଆମ ଦୁଇଜଣଙ୍କର ସମାନ କାମ ।

: ଲାୟଲି ଆପଣଙ୍କୁ କେମିତି ଲାଗେ ?

: ମନ୍ଦ ନୁହେଁ । ଅନ୍ୟାନ୍ୟ ଝିଅମାନଙ୍କ ଅପେକ୍ଷା ଲାୟଲି ବରଂ ମୋତେ ଭଲ ଲାଗେ ।

: କିନ୍ତୁ ମୁଁ ଶୁଣିଲି ମିଷ୍ଟର କାପୁର ଲାୟଲି ଉପରେ ସନ୍ତୁଷ୍ଟ ନୁହନ୍ତି ।

ସାମୁଏଲ ଦାସ କିଛି ସମୟ ନୀରବ ରହି, ଫୋନ୍‌ରେ ଜଣକୁ ଉତ୍ତର ଦେଇସାରି କହିଲେ ।

: ମୁଁ ତ ଆପଣଙ୍କୁ ଆଗରୁ କହିଛି ସାର୍, ହୋଟେଲର ଇଣ୍ଟରନାଲ ଆଫେଆର୍ସ ସମ୍ବନ୍ଧରେ ମୋତେ ବିଶେଷ କିଛି ଜଣାନାହିଁ । ତେଣୁ...

: ଆଚ୍ଛା ମିଷ୍ଟର ଦାସ ! ଆପଣଙ୍କ ଆପଏଣ୍ଟମେଣ୍ଟ ଏଠାରେ ହେଲା କିପରି ?

: ପ୍ରପର ଚାନାଲରେ ।

: ମାନେ ?

: ଖବର କାଗଜରେ ବିଜ୍ଞାପନ ବାହାରିଥିଲା । ମୁଁ ଆପଲାଇ କରିଥିଲି । ଇଣ୍ଟରଭିଉ ଦେଇଥିଲି । ତା'ପରେ ଜଏନିଂ ଲେଟର ପାଇଲି ।

: ଅନ୍ୟ କେହି ଇଣ୍ଟରଭିଉ ଦେଇ ନ ଥିଲେ ?

: ଅନେକ । ତେବେ ମୋର ପୂର୍ବ ଅଭିଜ୍ଞତା ମୋତେ ସହାୟ ହେଲା । ମୁଁ ବମ୍ବେର ଗୋଟାଏ ବଡ଼ ହୋଟେଲରେ ପାଞ୍ଚବର୍ଷ ଏଇ କାମ କରିଥିଲି ।

: ହୁଁ, ଆପଣ ପାମେଲାକୁ ଚିହ୍ନନ୍ତି ?

: ନିଶ୍ଚୟ, ସେ ଅମରର ଟାଇପିଷ୍ଟ ।

: ସେ ଆମ କଟକର ଝିଅ ?

: ହୋଇଥିବ । ତା' ସହିତ ମୋର ବିଶେଷ ପରିଚୟ ନାହିଁ । ପୁଣି ଟେଲିଫୋନ୍ ଆସିଲା । ସାମୁଏଲ୍ ଦାସ ଉତ୍ତର ଦେଇ ସାରି କହିଲେ : ଆଉ କ'ଣ ପଚାରନ୍ତୁ ମିଷ୍ଟର ମହାପାତ୍ର । ଏହାପରେ ଆଉ ଉତ୍ତର ଦେବାର ସୁଯୋଗ ପାଇବି ନାହିଁ । ରାତି ଯେତେ ଘନେଇ ଆସିବ, ଲୋକ ସେତେ ବଢ଼ିବେ ।

: ଆଚ୍ଛା, ଆପଣଙ୍କ ଏଇ ହୋଟେଲରେ କେବେ କିଛି ବିଶେଷ ପ୍ରୋଗ୍ରାମ ହୁଏ ନାହିଁ ?

: ନା, ଆଜିଯାଏ କିଛି ହୋଇ ନାହିଁ ତେବେ ମିଷ୍ଟର କାପୁର ଚେଷ୍ଟା କରୁଛନ୍ତି । ଆଗାମୀ ସପ୍ତାହଠାରୁ ବୋଧହୁଏ ଗୋଟାଏ ନାଚ ପ୍ରୋଗ୍ରାମ ହେବ ।

: ନାଚ, ମାନେ ?

: ଏଇ ବଡ଼ ବଡ଼ ହୋଟେଲରେ ଯେପରି ହୁଏ ।

: କାବାରେ ଡାନ୍ସ ନୁହେଁ ତ ?

ସାମୁଏଲ ଦାସ ହସିଲେ । କହିଲେ : ସେ ସବୁ ଆମର ଟପ୍ ସିକ୍ରେଟ କଥା ସାର୍ । ବାହାରେ ଆମେ ଡିକ୍ଲାର କରିପାରିବୁ ନାହିଁ । ତେବେ...

ସତ୍ୟବ୍ରତ ସାମୁଏଲ ଦାସଙ୍କ ଇଂଗିତ ବୁଝିପାରିଲେ । ବୋଧହୁଏ ସେ ସମ୍ବନ୍ଧରେ ଆଉ ଅଧିକ ପ୍ରଶ୍ନ କରିବାକୁ ଇଚ୍ଛା ନ ଥିଲା ।

ଉଠି ଠିଆହେଲେ : ଅଶେଷ ଧନ୍ୟବାଦ ମିଷ୍ଟର ଦାସ । ଆପଣଙ୍କୁ ଅନେକ ବିରକ୍ତ କଲି । ଦୟାକରି ଲାୟଲି ରୁମ୍‌ଟା ଟିକିଏ ଦେଖେଇ ଦେବେ ?

ସାମୁଏଲ ଦାସ ଉଠୁଥିଲେ । କିନ୍ତୁ ପୁଣି ଗୋଟାଏ ଫୋନ୍ ଆସିବାରୁ ସେ ବସିପଡ଼ି ହାତ ଦେଖାଇ କହିଲେ : ଉପରେ ।

ସତ୍ୟବ୍ରତ ଅପେକ୍ଷା ନ କରି ଆଗେଇ ଗଲେ ଲାୟଲି ରୁମକୁ ।

ଭିତରୁ କବାଟ ବନ୍ଦ ହୋଇଥିଲା ।

ସତ୍ୟବ୍ରତ ନକ୍ କଲେ ।

ଥରେ, ଦି'ଥର, ତିନିଥର ।

କବାଟ ଖୋଲିଲା ଲାୟଲି । କିନ୍ତୁ ତା'ର ଅଥୟ ପାଦ ଓ ବିଚିତ୍ର ଚାହାଣି ଆଡ଼େ ଚାହିଁ ସତ୍ୟବ୍ରତ ସ୍ତବ୍ଧ ହୋଇଗଲେ ।

ଲାୟଲି କବାଟ ଖୋଲି ଥରିଲା କଣ୍ଠରେ ପଚାରିଲା : କାହାକୁ ଖୋଜୁଛନ୍ତି ?

ସତ୍ୟବ୍ରତ ଲାୟଲିର ଅପ୍ରାକୃତିକ ଅବସ୍ଥାର କଥା ବୁଝିପାରିଲେ । ନା ଆଉ କୌଣସି ପ୍ରଶ୍ନ ନୁହେଁ । ସେ ବାଟଭାଙ୍ଗି ଚାଲିଆସିଲେ ।

ପଛରୁ ଧଡ୍‌କରି କବାଟ ବନ୍ଦ ହେବାର ଶବ୍ଦ ବି ତାଙ୍କ କାନରେ ବାଜିଲା ।

ସାମୁଏଲ ଦାସ ପଚାରିଲେ : ଲାୟଲି ସହିତ ଦେଖାହେଲା ନାହିଁ ?

ସାମୁଏଲ ଦାସ କ'ଣ କହିବାକୁ ଯାଉଥିଲେ । ମାତ୍ର କାଉଣ୍ଟର ପାଖକୁ ଜଣେ ଭଦ୍ର ମହିଳା ଆସି ପଚାରିଲେ : ସୋନିଆ ଜଏନ୍ କେତେ ନମ୍ବରରେ ରୁହନ୍ତି ?

: ଆପଣ କେଉଁଠୁ ଆସିଛନ୍ତି ?

: ସେ ମୋର ବଂଧୁ । ମୋ ନାଁ କହିଲେ ସେ ଚିହ୍ନିବେ ।

ସାମୁଏଲ ଦାସଙ୍କ ସହିତ ଭଦ୍ର ମହିଳାଙ୍କର କଥାବାର୍ତ୍ତା ହେଉଥିବା ବେଳେ ସତ୍ୟବ୍ରତ ସେଠାରୁ ଦୂରେଇ ଗଲେ ।

ନା, ଆଉ ନୁହେଁ । ମିଷ୍ଟର କାପୁରଙ୍କ ସହିତ ଶେଷ ଦେଖା କରି ସେ ଏଠାରୁ ଫେରିଯିବେ । ମିଷ୍ଟର କାପୁରଙ୍କ ବିରୋଧରେ ଲାୟଲିର ଅଭିଯୋଗ ମୂଳରେ କୌଣସି ବଳିଷ୍ଠ ଭିତ୍ତି ଥିବାପରି ମନେ ହେଉନାହିଁ ।

: ମେ ଆଇ କମ୍ ଇନ୍ ? ଦୁଆର ଠେଲି ସତ୍ୟବ୍ରତ ମ୍ୟାନେଜରଙ୍କ ଅଫିସ୍ ରୁମ୍ ଭିତରକୁ ପଶିଲେ ।

ମିଷ୍ଟର କାପୁର ନୀରବରେ ବସି ଚୁରୁଟ୍ ଟାଣୁଥିଲେ ।

ଉଚ୍ଛ୍ୱସିତ କଣ୍ଠରେ କହିଲେ : ଆସନ୍ତୁ ମିଷ୍ଟର ମହାପାତ୍ର । ଆଶା କରୁଛି ଆପଣଙ୍କର ଆମ ହୋଟେଲ ବିରୋଧରେ କୌଣସି ଅଭିଯୋଗ ନାହିଁ ।

: ଆପାତତଃ ଆପଣଙ୍କ ଅନୁମାନ ସତ୍ୟ ।

: ଚା' ନା କଫି ?

: ନା, ଆଉ କିଛି ନୁହେଁ । ଅଶେଷ ଧନ୍ୟବାଦ । ଆଜି ଅନେକ ରାତି ହେଲାଣି । ଆଉ ଦିନେ ଆସିବି ।

ମିଷ୍ଟର କାପୁର ଠିଆ ହୋଇ ସତ୍ୟବ୍ରତଙ୍କ ସହିତ କରମର୍ଦ୍ଦନ କଲେ ।

ଠିକ୍ ଘଣ୍ଟା ଘଣ୍ଟା ପରି ସତ୍ୟବ୍ରତର ଜୀବନଯାତ୍ରା । ଟିକିଏ ଆଳସ୍ୟ ନାହିଁ, ସାମାନ୍ୟ ଗଫଲତି ନାହିଁ । କର୍ତ୍ତବ୍ୟ ଯେପରି ତାଙ୍କର ଏକମାତ୍ର ଧର୍ମ ।

କଣ୍ଟାଏ କଣ୍ଟାଏ ଆଠଟାବେଳେ ସତ୍ୟବ୍ରତ ପହଞ୍ଚିଲେ ଖୋର୍ଦ୍ଧାରେ ।

କିନ୍ତୁ ସଂଜୀବ ଯେ ଘରେ ନାହିଁ !

ଗୋକୁଳି କହିଲା : କାଲିଠୁ ସାନବାବୁ କେହି ଜଣେ ମେମ୍‌ସାହେବ ସଙ୍ଗରେ କୁଆଡ଼େ ଯାଇଛନ୍ତି ଯେ, ଆଜିଯାଏ ଫେରି ନାହାନ୍ତି ।

ମେମ୍ ସାହେବ ନାଁ ଶୁଣି ସତ୍ୟବ୍ରତ ପ୍ରଥମେ ଚମକି ଉଠିଥିଲେ । ଗୋକୁଳିକୁ ପଚାରିଲେ : ଯେଉଁ ମେମ୍‌ସାହେବ ସହିତ ତମ ସାନବାବୁ କାଲି ଯାଇଛନ୍ତି, ସେ ମେମ୍‌ସାହେବ କ'ଣ ମଝିରେ ମଝିରେ ଆସନ୍ତି ?

ଗୋକୁଳି ମୁଣ୍ଡ ହଲେଇ ମନାକଲା । କହିଲା : ଆମ ସାନ ବାବୁଙ୍କର ଦିନକୁ ଦିନ ଯେପରି ମତିଭ୍ରମ ଘଟୁଛି ।

: ଆଚ୍ଛା ଗୋକୁଳି, ମୁଁ ଆସିଥିଲି ତମର ଏଇ କୋଠାଟା ବୁଲି ଦେଖିବା ପାଇଁ । କାଲି ତମ ସାନବାବୁ...

ଗୋକୁଳି ସତ୍ୟବ୍ରତଙ୍କ କଥା ଶେଷହେବାକୁ ନ ଦେଇ ଚିତ୍କାର କରି ଉଠିଲା । କହିଲା,

: ଆପଣ ଆଉ ଯାହା କୁହନ୍ତୁ ପଛେ, ଘରଦ୍ୱାର ବୁଲେଇ ମୁଁ ଦେଖେଇ ପାରିବି ନାହିଁ । ସାନବାବୁଙ୍କର ହୁକୁମ୍ ନାହିଁ ।

: ଆଚ୍ଛା, ଆଚ୍ଛା ଠିକ୍ ଅଛି । ତମର ଯେତେବେଳେ ନିୟମ ନାହିଁ, ମୁଁ ମୋଟେ ନିୟମ ଭଙ୍ଗ କରିବି ନାହିଁ । ତମେ ବ୍ୟସ୍ତହୁଅନାହିଁ ।

: ନାଁ ବାବୁ, ମତେ ଏଗୁଡା ସବୁ କିଛି ଭଲଲାଗୁ ନାହିଁ । ବଡ଼ ବାବୁ ଦେହ ଛାଡ଼ିବା ଦିନଠାରୁ ଏଠୁ ଯେମିତି ଲକ୍ଷ୍ମୀ ଛାଡ଼ିଗଲେଣି । କିଏ ଆସି କହୁଛି, କୋଠା କିଣିବି, କିଏ କହୁଛି ଶୁଆ-ଶାରୀ କିଣିବି । ତମେ ପୁଣି ଆସିଛ କ'ଣ କିଣିବା ପାଇଁ ଭଗବାନ ଜାଣନ୍ତି ।

: ନା ନା, ମୁଁ କିଛି କିଣିବାକୁ ଆସିନାହିଁ ଗୋକୁଳି । ତମ ବାବୁ ଯାଇଥିଲେ । ମତେ କହି ଆସିଥିଲେ ଆସିବା ପାଇଁ । ସେଇଥିପାଇଁ ମୁଁ ଆସିଛି ।

: କିନ୍ତୁ ସାନବାବୁ ଯାଇ କୁଆଡ଼େ ଯେ ରହିଲେ, ମୁଁ କିଛି ବୁଝିପାରୁନାହିଁ । ମୋର ବେଶି ଡର ସେଇ ଡାଆଣୀ ମେମ୍‌ସାହବଟାକୁ । ସିଏ ଯଦି ଫୁସୁଲେଇ...

ଗୋକୁଳିର କଥା ଶେଷ ହେଲା ନାହିଁ । ବାହାରେ ଗାଡ଼ିର ଶବ୍ଦ ଶୁଣି ସେ ଛୁଟି ପଳାଇଲା । ପଛେ ପଛେ ସତ୍ୟବ୍ରତ ବି ଗଲେ ।

ହଁ ସଂଜୀବ ଫେରିଛି । କିନ୍ତୁ...

ଆରେ, ଲାୟଲି ଯେ, ସଂଜୀବ ପଛେ ପଛେ ଲାୟଲି ଗାଡ଼ିରୁ ଓହ୍ଲାଇଲା ।

ସତ୍ୟବ୍ରତକୁ ସାମନାରେ ଦେଖି ଦୁଇଜଣ ଉଚ୍ଛ୍ୱସିତ ଆନନ୍ଦରେ ପ୍ରାୟ ସମସ୍ୱରରେ କହି ଉଠିଲେ: ଗୁଡ୍‌ମର୍ଣ୍ଣି ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ ପ୍ରତ୍ୟାଭିବାଦନ ଜଣାଇ କହିଲେ : ମୁଁ କିନ୍ତୁ ଏପରି ଆଶା କରି ନଥିଲି ।

: ମାନେ ? ପୁଣି ଦୁଇଜଣ ସମସ୍ୱରରେ ପ୍ରଶ୍ନକଲେ ।

: ଏଇ, ମାନେ ଆପଣ ଘରେ ନ ଥିବେ । ମିସ୍ ଲାୟଲିଙ୍କୁ ଆପଣଙ୍କ ଏଠାରେ ଭେଟିବି ।

ସଂଜୀବ ସେହିପରି ଉତ୍ସାହିତ କଣ୍ଠରେ କହିଲା : କିନ୍ତୁ ଘଟଣାଟା ଅନ୍ୟ ପ୍ରକାର ଘଟିଗଲା ମିଷ୍ଟର ମହାପାତ୍ର । ଆପଣଙ୍କ ଠାରୁ କାଲି ବିଦାୟ ନେଇ ଆସିବା ପରେ, ଲାୟଲି ମୋ ଗାଡ଼ିରେ ଭୁବନେଶ୍ୱର ଆସିଲା । କଥା ପ୍ରସଙ୍ଗରେ ମୁଁ ଜାଣିଲି ଯେ, ଲାୟଲି ମୋର ଏକ

ଅନ୍ତରଙ୍ଗ ବନ୍ଧୁର ଅନ୍ତରଙ୍ଗ;  କିନ୍ତୁ ମୋର ସେହି ବନ୍ଧୁ ଜଣକ ଏହା ଭିତରେ ସ୍ୱର୍ଗାରୋହଣ କରିଛନ୍ତି । ତେଣୁ ଲାୟଲିର ମନର ଅବସ୍ଥା କଥା ଟିକିଏ ଚିନ୍ତା କଲେ ! ଆପଣ ମୋ' ଅବସ୍ଥାରେ ପଡିଥିଲେ ବୋଧହୁଏ ମୋରି ପରି କର୍ତ୍ତବ୍ୟ ପାଳନରେ ବାଧ ହୋଇଥାଆନ୍ତେ ।

: ନିଶ୍ଚୟ, ନିଶ୍ଚୟ । ପରସ୍ପରକୁ ସାହାଯ୍ୟ କରିବା ହିଁ ତ ମଣିଷର ଧର୍ମ । ତା' ନହେଲେ ଆମର ଆଜି ଏହି ସମାଜ ବ୍ୟବସ୍ଥା କାହିଁକି ?

: ଲାୟଲି ମୁହଁରୁ ଶୁଣିଲି ତା'ର କାଲି ଜନ୍ମଦିନ । ସଂଜୀବ କହି ଚାଲିଗଲା । ସେ ଯେପରି ଏକା ନିଶ୍ୱାସକରେ ସବୁ କଥା ଶେଷ କରି ଦେବାକୁ ଚାହେଁ;  ଅଥଚ ଏ ବର୍ଷ ତା'ର ଜନ୍ମଦିନର ଉତ୍ସବ ପାଳନ କରିବାକୁ ତା'ର ଅନ୍ତରଙ୍ଗ ହୋଇ କେହି ନାହିଁ । ଲାୟଲି ଆଖିର ଲୁହ ମୁଁ ସହି ପାରିଲି ନାହିଁ ମିଷ୍ଟର ମହାପାତ୍ର । ଲାୟଲି ସଙ୍ଗରେ ଫେରିଗଲି ଅମ୍ବରକୁ ।

: ଆପଣ ତା'ହେଲେ କାଲି ରାତିରେ ଅମ୍ବରରେ ଥିଲେ ? ସତ୍ୟବ୍ରତ ପ୍ରଶ୍ନ କଲେ ।

: ହଁ ମିଷ୍ଟର ମହାପାତ୍ର । ଇଚ୍ଛା ନ ଥିଲା ରାତିଟା ସେଠାରେ କଟାଇବା ପାଇଁ । କିନ୍ତୁ ଲାୟଲି ବାଧ କଲା । ମୁଁ ତା' ଅନୁରୋଧ ଏଡେଇ ପାରିଲି ନାହିଁ ।

ସଂଜୀବ କଥା କହିଲାବେଳେ କଣେଇ କଣେଇ ଲାୟଲି ମୁହଁକୁ ଚାହୁଁଥିଲା ।

ଲାୟଲି ଅଳ୍ପ ଅଳ୍ପ ହସୁଥିଲା ।

ସଂଜୀବର କଥା ଶେଷ ହେବାମାତ୍ରେ ଲାୟଲି ସତ୍ୟବତ୍ର ଆଡକୁ ଚାହିଁ କହିଲା : ଆପଣ କିନ୍ତୁ କାଲି ଅମ୍ବରକୁ ଗଲେ ନାହିଁ ?

: ଯାଇଥିଲି । ସତ୍ୟବ୍ରତଙ୍କର ସଂକ୍ଷିପ୍ତ ଉତ୍ତର ।

: ଯାଇଥିଲେ ? କିନ୍ତୁ ମୋ ରୁମ୍‌କୁ...

: ଯାଇଥିଲି । ପୁଣି ସେହି ସଂକ୍ଷିପ୍ତ ଉତ୍ତର ।

: କେତେବେଳେ ? ଲାୟଲି ସଂଜୀବ ମୁହଁକୁ ଚାହିଁ କହିଲା, ସଂଜୀବ ତ ଥିଲେ ମୋ ରୁମ୍‌ରେ । ଆପଣ ଯାଇଥିଲେ ସେ ବି ଆପଣଙ୍କୁ ଦେଖିଥାଆନ୍ତେ ।

: ହଁ ମିଷ୍ଟର ମହାପାତ୍ର । ମୁଁ ଲାୟଲି ରୁମ୍‌ରେ ପ୍ରଥମରୁ ଥିଲି । ଆମେ କଣ୍ଢେଇ ନଚେଇଲୁ । କେକ୍ ଖାଇଲୁ । ଗ୍ରାମୋଫୋନ୍ ବଜାଇଲୁ । ତାସ୍ ଖେଳିଲୁ । ସାରା ରାତିଟା ତ କଟାଇଲୁ ଚେଇଁ ଚେଇଁ । ଆପଣ ଯାଇଥିଲେ କିନ୍ତୁ ଆହୁରି ଜମିଥାଆନ୍ତା ।

ସତ୍ୟବ୍ରତ ସ୍ମିତ ହସିଲେ । ଆଉ କିଛି ଉତ୍ତର ଦେଲେ ନାହିଁ ।

ଲାୟଲି ସେହିପରି ହସି ହସି କହିଲା : ଗୁଇନ୍ଦା ଲୋକ ତ ! ଭାବିଥିଲେ କାଳେ କଥାଟା ଲାଗିଯିବ ।

ସତ୍ୟବ୍ରତ ଏଥର ବି କଥାଟାକୁ ଗୋଳେଇଦେଲା ପରି ହସିଲେ । ଏତେବେଳକେ ବୋଧହୁଏ ସଂଜୀବର ଧ୍ୟାନ ଭଙ୍ଗହେଲା । ସେ ଚିତ୍କାର କରି ଉଠିଲା : ମିଲ୍‌ଖା ସିଂ ?

ମିଲ୍ ଖାସିଂ ବଦଳରେ ଉପସ୍ଥିତ ହେଲା ଆସି ଗୋକୁଳି ।

: କାଲି ମୋର ଯିବା ପରଠାରୁ ଆଜି ଏତେବେଳଯାଏ କେହି ଆସିଥିଲା ?

: ନା ।

: ଆଉ କିଛି ଖବର ଅଛି ?

: ନାଁ ।

ଗୋକୁଳିର ଏହି ସଂକ୍ଷିପ୍ତ ଉତ୍ତର ସଂଜୀବକୁ କିନ୍ତୁ ଭଲ ଲାଗୁ ନଥିଲା । ନିଶ୍ଚୟ କିଛି ଗୋଟାଏ ଘଟିଛି । ଗୋକୁଳି ରାଗି ନ ଗଲେ କେବେ ସେ ଏତେ କମ୍ କଥା କହେ ନାହିଁ ।

ସଂଜୀବ ଭାବିଲା ଗୋକୁଳିକୁ ଏଥିପାଇଁ ପରେ ବୁଝାଇଲେ ଚଳିବ । ତା' ରାଗର କାରଣଟା ଅନ୍ଦେ ବହୁତେ ବୁଝିପାରିଥିଲା ସଂଜୀବ; କିନ୍ତୁ ଗୋକୁଳିର ଏକା ଧ୍ୟାନରେ ଲାୟଲି ଆଡକୁ ଅନେଇ ଠିଆ ହୋଇ ରହିବାଟା ଭଲ ଲାଗୁ ନଥିଲା ।

: ଟା' ଜଳଖିଆର କିଛି ଆୟୋଜନ କରିବୁ ଯା' ଗୋକୁଳି । ଆମ ସମସ୍ତଙ୍କ ପେଟରେ ଭୋକ ।

ଗୋକୁଳି ସିନା କିଛି ଉତ୍ତର ଦେଲାନାହିଁ ; କିନ୍ତୁ ରକ୍ତଚାଉଳ ଚୋବେଇଲା ପରି ସେ ଘରୁ ବାହାରି ଚାଲିଗଲା ।

ସଂଜୀବ କହିଲା : ଏଥର ଆପଣ କାମ ଆରମ୍ଭ କରି ଦିଅନ୍ତୁ ମିଷ୍ଟର ମହାପାତ୍ର । ଆଉ ଡେରି କରି ଲାଭ କ'ଣ ? ମୁଁ ଦି'ପହରକୁ ଟିକିଏ ବାହାରକୁ ଯିବି ।

: କ'ଣ ବିଶେଷ କିଛି ପ୍ରୋଗ୍ରାମରେ ?

ସଂଜୀବ ଲାୟଲି ଆଡେ ଚାହିଁ ହସିଲା ।

ସତ୍ୟବ୍ରତ କହିଲେ : ମୁଁ ଆପଣଙ୍କୁ ଆଗରୁ କହିଛି, ଏ ସମୟରେ ଆପଣଙ୍କର ଘର ଛାଡ଼ି ବାହାରେ ରହିବା ଉଚିତ ନୁହେଁ ।

: ନା ନା, ମୁଁ କୁଆଡ଼େ ରହିବି ନାହିଁ । ଆଜି ଫେରିଆସିବି, ନିଶ୍ଚୟ ଫେରି ଆସିବି । କାଲି ବି ଫେରି ଆସିଥାଆନ୍ତି; କିନ୍ତୁ ଲାୟଲିର ଅନୁରୋଧ ଏଡେଇ ଦେଇପାରିଲି ନାହିଁ ।

ସତ୍ୟବ୍ରତ ଉଠିଲେ । ତାଙ୍କ ପଛେ ପଛେ ସଂଜୀବ ଉଠୁଥିଲା । ସଂଜୀବ ପଛେ ପଛେ ସଙ୍ଗେ ସଙ୍ଗେ ହୁଏତ ଲାୟଲି ଉଠିଥାଆନ୍ତା । ସତ୍ୟବ୍ରତ କହିଉଠିଲେ : ଆପଣଙ୍କର ମୋ ସହିତ କିଛି ପ୍ରୟୋଜନ ନାହିଁ । ଦରକାର ହେଲେ ପଚାରି ବୁଝିବି; ନ ହେଲେ ଗୋକୁଳି ହାତରେ ଡାକି ପଠାଇବି ।

ସଂଜୀବ ପୁଣି ଉଠିବା ଜାଗାରୁ ବସିପଡ଼ିଲା । ମନ କିନ୍ତୁ ତା'ର ଚାହୁଁ ନଥିଲା, ସେ ଲାୟଲି ପାଖରେ ବସି ରହି ଜୀବନର ଏକ ପରମ ସୌଭାଗ୍ୟ ହରାଉ । ଏତେବେଳଯାଏ ଘଟଣାଟା ସେ ଲାୟଲିକୁ କହି ନ ଥିଲା । ଅବଶ୍ୟ କହି ଦେବା ପାଇଁ ଅନେକଥର ଇଚ୍ଛା କରି ବି, ବହୁ କଷ୍ଟରେ ନିଜକୁ ସମ୍ବରଣ କରି ନେଇଥିଲା ।

ସଂଜୀବର ମନେହେଉଥିଲା, ଲାୟଲି ସେପରି ମାରାତ୍ମକ ଝିଅ ନୁହେଁ । ଏକା ଦିନକେ ସେ ଲାୟଲିକୁ ଚିହ୍ନି ନେଇଛି । ଲାୟଲି ହୁଏତ ଜୀବନ ଗଠନ ପାଇଁ ସୁସ୍ଥ ପରିବେଶ ପାଇଥିଲେ, ହୋଟେଲର କଳଙ୍କଟିକା ଆଜି ତା' କପାଳରେ ଲାଗି ନଥାନ୍ତା ।

ସତ୍ୟବ୍ରତ ଚାଲିଯାଇଥିଲେ । ଚାଲିଯାଇଥିଲେ ଅନ୍ୟ ଘରଗୁଡ଼ିକ ଆଡ଼େ । ଗୋକୁଳି ତାଙ୍କୁ ଗୋଟିକ ପରେ ଗୋଟିଏ ଘର ଦେଖାଇ ଦେଉଥିଲା ।

ସତ୍ୟବ୍ରତ ପ୍ରତିଟି ଘରର ଆସବାବପତ୍ର ଅତି ସାବଧାନତା ସହକାରେ ଲକ୍ଷ୍ୟ କରି ଚାଲିଥିଲେ; ହେଲେ କୌଣସି ଆଲମାରି ଟେବୁଲ ଡ୍ରୟାର ଖୋଲି ଭିତର ପଦାର୍ଥଗୁଡ଼ିକ ଦେଖିବା ପାଇଁ ତାଙ୍କର ବିଶେଷ ଆଗ୍ରହ ନ ଥିଲା ।

ଏ ଆଡର ଘରଗୁଡ଼ିକ ଦେଖିସାରିବା ପରେ, ସେ ଗଲେ ସେଇ ଟାଲି ଘର ଆଡ଼େ । ପାରା ଭାଡ଼ି, ଶୁଆ-ଶାରୀଙ୍କ ପଞ୍ଜୁରୀ । ପରିତ୍ୟକ୍ତ ଗୋଦାମ ଘରର ପ୍ରତିଟି ଆସବାବପତ୍ର । ସବୁ ସେ ତନ୍ନ ତନ୍ନ କରି ଦେଖିଲେ । ସେହି ପରିତ୍ୟକ୍ତ ଗୋଦାମ ଘରେ ଗୋଟାଏ ସିଲଭର କଡେଇ ଓ ଗୋଟାଏ କୋଇଲା ଚୁଲା ତାଙ୍କର ଦୃଷ୍ଟି ଆକର୍ଷଣକଲା ।

ସେ ଦୁଇଟାକୁ ବାହାରକୁ ବାହାର କରି ଗୋକୁଳିକୁ କହିଲେ, : ଏଥିରେ କ'ଣ ହୁଏ ?

: ମୁଁ କହିପାରିବି ନାହିଁ ଆଜ୍ଞା । ମୁଁ ଆସିଲା ଦିନଠାରୁ ଏଗୁଡା ଏଇ ଘରେ ପଡିଥିବାର ଦେଖିଛି ।

: ହୁଁ, ସତ୍ୟବ୍ରତ କହିଲେ, ମିଲ୍‌ଖା ସିଂ ସେଦିନ ରାତିରେ ଏଇ ଘରେ ହାତଗୋଡ ବନ୍ଧା ହୋଇ ପଡିଥିଲା ?

: ଆଜ୍ଞା ଆପଣ ଜାଣିଲେ କିପରି ? ଗୋକୁଳି ଆଖିରେ ବିସ୍ମୟ ଫୁଟିଉଠିଥିଲା ।

: ହଁ, ମୁଁ ଜାଣେ । ଆମକୁ ଏହାସବୁ ଜାଣିବାକୁ ହୋଇଥାଏ ।

: ଆପଣ କ'ଣ ପୋଲିସ୍ ଲୋକ ?

ସତ୍ୟବ୍ରତ କିଛି ନ କହି କେବଳ ନୀରବରେ ହସିଲେ ।

ଗୋକୁଳି ସଙ୍ଗେ ସଙ୍ଗେ ସତ୍ୟବ୍ରତର ଗୋଡତଳେ ଲୋଟିପଡ଼ି କହିଲା : ଅପରାଧ କ୍ଷମା କରିବେ ଆଜ୍ଞା । ମୋତେ ଆଗରୁ ପରିଚୟ ଦେଇଥିଲେ ମୁଁ ସବୁ ବୁଲେଇ ଦେଖେଇ ଦେଇ ଥାଆନ୍ତି ।

: ଏଇକ୍ଷିଣା ବି ସମୟ ଅଛି ଗୋକୁଳି । ଆଚ୍ଛା, ତମେ କହିଲ, ତମ ବଡ଼ବାବୁ ଏତେ ପାରା କାହିଁକି ପୋଷିଥିଲେ ? ସତ୍ୟବ୍ରତ ପାରାଭାଡ଼ି ପାଖରେ ଠିଆହୋଇ ପ୍ରଶ୍ନ କଲେ ।

: ଭାରି ଖିଆଲି ଲୋକଥିଲେ ଆଜ୍ଞା ବଡ଼ବାବୁ । ଏଇ ପାରା ଗୋଟା ଗୋଟା ସେ ଦୁଇଶ ତିନି ଲେଖା ଦେଇ କିଣିଛନ୍ତି । ବେଳେବେଳେ ବିକିଛନ୍ତି ବି ଚାରିଶ ପାଞ୍ଚଶ ଟଙ୍କାରେ । ମୁଁ କିଛି ବୁଝିପାରେ ନା ଆଜ୍ଞା । ଲୋକେ ଆସନ୍ତି, ପାରା ଦେଇ ଯାଆନ୍ତି, ଟଙ୍କା ନେଇ ଯାଆନ୍ତି । ଆଉ କେହି କେହି ଟଙ୍କା ଦେଇ ପାରା କିଣି ନିଅନ୍ତି ।

: ଆଚ୍ଛା ରଣଜିତ୍‌ବାବୁ ବଞ୍ଚିଥିବାର କେତେଦିନ ପୂର୍ବରୁ ସେ ଶେଷ ପାରା କିଣା-ବିକା କରିଥିଲେ ?

: ମରିବାର ପନ୍ଦର ଦିନ ପୂର୍ବରୁ ତ ସେ ଏଇ ପାରାଟା କିଣିଥିଲେ । ଗୋକୁଳି ଗୋଟିଏ ପାରାକୁ ହାତ ଦେଖାଇ କହିଦେଲା ।

ସତ୍ୟବ୍ରତ ପାରାଭାଡ଼ିରୁ ସେଇ ପାରାଟିକୁ ବାହାର କଲେ, ଧଳା ଫର ଫର ତା' ଦେହଟା । ବେଶ ସୁସ୍ଥ ସବଳ । ସତ୍ୟବ୍ରତ ହାତକୁ ଆସି ଘୁମୁରା ଆରମ୍ଭ କରିଦେଲା ।

ସତ୍ୟବ୍ରତ ପାରାଟିକୁ ବୁଲେଇ ଚଲେଇ ଦେଖିଲେ । ଜୀବନ ଅଛି ପାରା ଦେହରେ । କୌଣସି କୃତ୍ରିମତା ନାହିଁ । ସନ୍ଦେହର ସାମାନ୍ୟତମ ଅବକାଶ ବି ନାହିଁ ।

ତା'ହେଲେ ?

ସତ୍ୟବ୍ରତ ଶୁଆ, ଶାରୀମାନଙ୍କ ପଞ୍ଜୁରି ପାଖରେ ଯାଇ ଠିଆହେଲେ । ଶାରୀଟାଏ କହି ଉଠିଲା : ରାଧେ, କୃଷ୍ଣ, କୃଷ୍ଣ କୃଷ୍ଣ । ରାଧେ ରାଧେ ।

ପଞ୍ଜୁରୀ ପରେ ପଞ୍ଜୁରୀ ଅତିକ୍ରମ କରି ସବୁ ଶୁଆ, ଶାରୀମାନଙ୍କୁ ଦେଖିଲେ ।

: ଆଚ୍ଛା ଗୋକୁଳି !

: ଆଜ୍ଞା !

: ରଣଜିତ୍‌ବାବୁ ବଞ୍ଚିଥିବା ବେଳେ ତାଙ୍କ ପାଖକୁ କ'ଣ ବହୁତ ଲୋକ ଆସୁଥିଲେ ?

: ନା, ଖୁବ୍ କମ୍ ଲୋକ ଆସନ୍ତି । ହୁଏତ ମାସେ ପନ୍ଦର ଦିନରେ କେହି ଜଣେ ଆସନ୍ତି କି ନାହିଁ ସନ୍ଦେହ ।

: ଯେଉଁମାନେ ଆସନ୍ତି ସେମାନେ ସବୁ କ'ଣ ସ୍ଥାନୀୟ ଲୋକ ?

: ପ୍ରାୟ । ଖାଲି ପାରା ବିକାକିଣା କରିବା ପାଇଁ ଯିଏ ଆସନ୍ତି, ସେମାନେ ବାହାରର ।

: ରଣଜିତ୍‌ବାବୁ ରୋଜ ସକାଳୁ ବିଛଣାରୁ ଉଠି ପୁଣି ବିଛଣାରେ ଶୋଇବା ଯାଏ କ'ଣ କରନ୍ତି ?

: କ'ଣ କରିବେ ଆଉ ? ଏଇ ଶୁଆ, ଶାରୀ, ପାରା ଆଉ ବଗିଚା । ଏଇଗୁଡା ଦେଖୁ ଦେଖୁ ତାଙ୍କର ସମୟ ଶେଷ ହୋଇଯାଏ  କିନ୍ତୁ ସନ୍ଧ୍ୟା ହେବା ମାତ୍ରକେ ସେ ଆଉ କୁଆଡ଼େ ବାହାରନ୍ତି ନାହିଁ କିମ୍ବା କାହାରିକୁ ଦେଖାକରନ୍ତି ନାହିଁ ।

: ତା'ହେଲେ ସନ୍ଧ୍ୟା ବେଳେ କ'ଣ କରନ୍ତି ?

: ସନ୍ଧ୍ୟା ହେବା ମାତ୍ରକେ ତାଙ୍କ ଘରେ ଶୋଉ ଶୋଉପଡ଼ନ୍ତି ।

: ହୁଁ, ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତାକରି କହିଲେ : ତା'ହେଲେ ସନ୍ଧ୍ୟା ପରେ ଆଉ ସେ କୁଆଡ଼େ ବାହାରନ୍ତି ନାହିଁ ।

: ନା ।

: ଆଚ୍ଛା, ଚାଲିଲ ତାଙ୍କ ଶୋଇବା ଘର ଭିତରକୁ ଆଉଥରେ ଯିବା ।

ସତ୍ୟବ୍ରତ ପଛେ ପଛେ ଗୋକୁଳି ଆସି ଘର ଖୋଲିଦେଲା ।

ସେଇ ଆଲମାରି, ଚେଆର, ଟେବୁଲ, ପଲଙ୍କ,  ଅନ୍ୟାନ୍ୟ ଆସବାବପତ୍ର ।

ସତ୍ୟବ୍ରତ କହିଲେ : ତମ ସାନବାବୁଙ୍କୁ ଟିକେ ଡାକିଦିଅ; କିନ୍ତୁ ମେମ୍‌ସାହେବ ଯେପରି ନ ଆସନ୍ତି ।

ଗୋକୁଳି ଘରୁ ବାହାରି ଚାଲିଗଲା ।

କିଛି ସମୟ ପରେ ସଂଜୀବ ଆସି କହିଲା : ମୋତେ ଡାକି ପଠାଇଲେ ?

: ହଁ, ଆପଣ କ'ଣ ଏଇ ଘରୁ ନରୋତ୍ତମ ଅଗରବାଲାଙ୍କ ନାସବଟା ପାଇଥିଲେ ?

: ହଁ, ଏଇ ଘରୁ ଆଉ ଏଇ ଜାଗାରୁ । ସଂଜୀବ ଆଙ୍ଗୁଳି ସଂକେତରେ ଜାଗାଟା ଦେଖେଇ ଦେଲା ।

: ଆଲମାରି ଚାବି ଅଛି ଆପଣଙ୍କ ପାଖରେ ?

ସଂଜୀବ ଆଲମାରି ଖୋଲୁ ଖୋଲୁ କହିଲା : ସେପରି କିଛି ମୂଲ୍ୟବାନ ପଦାର୍ଥ ଆଲମାରୀ ଭିତରେ ନାହିଁ; ମୁଁ ତନ୍ନ ତନ୍ନ କରି ଦେଖିଥିଲି ।

ସତ୍ୟବ୍ରତ ଆଲମାରି ଭିତରୁ ଗୋଟାଏ ଫାଇଲ୍ ଟାଣୁ ଟାଣୁ କହିଲେ : ଆପଣ କ'ଣ ଲାୟଲିକୁ ଗୁପ୍ତଧନ ଖବର କିଛି କହିଛନ୍ତି ?

ସଂଜୀବ ହସିବାକୁ ଚେଷ୍ଟାକରି କହିଲା : ନା କହି ନାହିଁ, ତେବେ କହିଲେ ବିଶେଷ କିଛି କ୍ଷତି ହେବ ନାହିଁ । ଲାୟଲି ଖୁବ୍ ଭଲ ଝିଅ ।

: ଦିନକର ପରିଚୟରେ ମଣିଷ ଚିହ୍ନି ହୁଏ ନାହିଁ ସଂଜୀବବାବୁ । ମୋ' ମତରେ ଆପାତତଃ ଲାୟଲିକୁ ଏ ସବୁର ଆଭାସ ନ ଦେବା ହିଁ ଭଲ ।

ସତ୍ୟବ୍ରତ ଫାଇଲ୍ ଭିତରୁ ଗୋଟିଏ ଖାମ୍ ବାହାର କରୁଥିଲେ । ସଂଜୀବ କହିଲା : ସେଇଟା ଗୋଟାଏ ଇନ୍‌ସିଓରାନ୍‌ସ୍ ପଲିସି । ମୁଁ ଜାଣି ନଥିଲି । କାଲି କାଗଜପତ୍ର ଖେଳଉ ଖେଳଉ ବାହାରିଲା ।

: କେତେ ଟଙ୍କାର ?

: ପନ୍ଦର ହଜାର ।

ସତ୍ୟବ୍ରତ ତଥାପି ପଲିସିଟା ଖୋଲି କ'ଣ ଦେଖିଲେ ।

ପକେଟରୁ ଟିପା ଖାତା ବାହାର କରି କ'ଣ ଟିପିଲେ ।

: କ୍ଲେମ୍ ପାଇଁ ଆପ୍ଲାଇ କଲେଣି ?

: ନା ।

: ଶୀଘ୍ର ଅନ୍ତତଃ ରଣଜିତ୍ ବାବୁଙ୍କ ମୃତ୍ୟୁ ସଂବାଦଟା ଜଣାଇ ଦିଅନ୍ତୁ; ନହେଲେ ଟଙ୍କା ପାଇବାକୁ ଅସୁବିଧା ହେବ । ଡାକ୍ତରଙ୍କ ଡେଥ୍ ସାର୍ଟିଫିକେଟଟା ସମ୍ଭାଳି ରଖିଥିବେ ।

ଆଉ ଗୋଟାଏ ଦୁଇଟା ପଦାର୍ଥ ଏପାଖ ସେପାଖ କରି ଦେଖିବା ପରେ ସତ୍ୟବ୍ରତ ଆଲମାରିଟା ବନ୍ଦ କରିଦେଲେ ।

ତା'ପରେ ଚେଆର, ଟେବୁଲ, ପଲଙ୍କ ସବୁ ଆଉ ଥରେ ଭଲ ଭାବରେ ପରୀକ୍ଷା କଲେ । କାନ୍ଥରେ ଟିପା ମାରିଦେଖିଲେ । ଚଟାଣରେ କାନ ପାରି କ'ଣ ଶୁଣିଲେ । କହିଲେ,

ବାପାଙ୍କର ମୃତ୍ୟୁ ବେଳକୁ ବ୍ୟାଙ୍କରେ କେତେ ଟଙ୍କା ଥିଲା ?

: ମୁଁ ତାଙ୍କ ଆଲମାରିରୁ ତିନୋଟି ବ୍ୟାଙ୍କର ପାସ୍ ବହି ପାଇଥିଲି । ଗୋଟିଏ ବ୍ୟାଙ୍କରେ ଅଛି ତିରିଶ ହଜାର, ଆଉ ଗୋଟିକରେ ଦଶ ହଜାର, ଆଉ ଗୋଟିକରେ ସାତହଜାର କେତେ ଶହ ।

: ଅନ୍ୟ କିଛି, ଅଳଙ୍କାରପତ୍ର ?

: ମା'ଙ୍କର ଗହଣା ଚାଳିଶ ପଚାଶ ଭରି ସୁନା ହେବ । ମୁଁ ସେସବୁ ସେଫ୍ ଡ଼ିପୋଜିଟ୍ ଭଲ୍‌ଟରେ ରଖିଦେଇଛି ।

: ଭଲ କରିଛନ୍ତି ।

: ଆଚ୍ଛା, ରଣଜିତ୍ ବାବୁ ଯେ ଏତେଗୁଡିଏ ଟଙ୍କା ବ୍ୟାଙ୍କରେ ରଖିଯାଇଥିଲେ, ତାଙ୍କର ଇନ୍‌କମର ସୋର୍ସ କେବଳ ଚାକିରି ଥିଲା ନା ଅନ୍ୟ କିଛି ?

: ମୁଁ ତ ଆଗରୁ ଆପଣଙ୍କୁ ସବୁକଥା କହିଛି । ବାପାଙ୍କର କର୍ମ ଜୀବନ ସମ୍ବନ୍ଧରେ ମୋର ମୋଟେ କିଛି ଧାରଣା ନାହିଁ ।

: ହୁଁ, ଆପଣ ତା'ହେଲେ ଆଜି ଦି'ପହରେ ରହୁ ନାହାନ୍ତି ?

: ନା ।

: ଲାୟଲି ସଙ୍ଗରେ ଅମ୍ବରକୁ ଯିବେ ?

ସଂଜୀବ ମୁଣ୍ଡହଲେଇ ସମ୍ମତି ଜଣେଇଲା ।

: ଫେରିଲା ବେଳେ ଟିକେ ମୋ ବାଟ ହୋଇ ଆସିବେ ।

ସତ୍ୟବ୍ରତର ସ୍ୱର ଗମ୍ଭୀର ଶୁଣାଯାଉଥିଲା ।

: କ'ଣ ବିଶେଷ କିଛି ପ୍ରୟୋଜନ ଅଛି ?

: ଅଛି; କିନ୍ତୁ ଆଉ ଗୋଟାଏ କଥା ସଂଜୀବ ବାବୁ, ଆପଣଙ୍କୁ ଟିକିଏ ସାବଧାନତା ସହକାରେ ଚଳାଚଳ ହେବାକୁ ହେବ । ଖାଲି ମିଲ୍‌ଖା ସିଂ ଆଉ ଗୋକୁଳି ଆପଣଙ୍କ ଗୁପ୍ତଧନ ରକ୍ଷା କରି ପାରିବେ ନାହିଁ ।

: ଆପଣ କ'ଣ ଭାବୁଛନ୍ତି ସତେରେ କିଛି ଗୁପ୍ତଧନ ଅଛି ଆମ ଘର ଭିତରେ ? ସଂଜୀବ ଅତ୍ୟନ୍ତ ଆଗ୍ରହ ସହକାରେ ପ୍ରଶ୍ନକଲା ।

: ହୁଏତ କିଛି ଅଛି; କିନ୍ତୁ ସେଇଟା କି ଆକାରରେ ଅଛି ମୁଁ ଏତେବେଳଯାଏ ସ୍ଥିର କରି ପାରୁ ନାହିଁ । ଆହୁରି କିଛି ଘଟଣା ନ ଘଟିବାଯାଏ, ହୁଏତ ତାହା ସ୍ଥିର କରି ହେବ ନାହିଁ ।

: ଆଉ କିଛି ଘଟଣା ମାନେ ?

: ପୁଣି ନରୋତ୍ତମ ଅଗରବାଲା ଆସିବେ ଗୋପନରେ । ଆମକୁ ବି ଗୋପନରେ ତାଙ୍କୁ ଅନୁସରଣ କରିବାକୁ ପଡ଼ିବ । ଆଉ ତା'ପରେ...

ହଠାତ୍ ସତ୍ୟବ୍ରତ ଅଟକି ଗଲେ । ସେ ଦେଖିଲେ ବାହାରେ ଲାୟଲି ଦରଜା ସେପାଖରେ ବୋଧହୁଏ ଠିଆହୋଇଛି । ତା' ସ୍କାର୍ଟଟା ଦିଶୁଛି ଅଳ୍ପ ଅଳ୍ପ ।

ସତ୍ୟବ୍ରତ ବାହାରକୁ ଯାଇ ଦେଖିଲେ ତାଙ୍କ ଅନୁମାନ ସତ୍ୟ । ଲାୟଲି ଗୋଟିଏ ଶାରୀ ପଞ୍ଜୁରୀ ପାଖରେ ଠିଆହୋଇଛି, ପଞ୍ଜୁରିଟିକୁ ହଲାଉଚି ।

: ଆପଣଙ୍କର କାମ ଶେଷହୋଇଛି ମିଷ୍ଟର ମହାପାତ୍ର ? ଲାୟଲି ପଚାରିଲା ।

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ହୋଇ କହିଲେ : ମୋର ଏଠି ଆଉ କାମ କ'ଣ ? ଆସିଥିଲି, ଚାଲିଯିବି ।

ସଂଜୀବ ଆଗେଇ ଆସି କହିଲା : ମୁଁ ଆପଣଙ୍କ ପାଖକୁ କେତେବେଳେ ଗଲେ ଚଳିବ ?

ଚାରିଟା ପାଞ୍ଚଟା ବେଳକୁ ଆସନ୍ତୁ ଆଜି କିନ୍ତୁ ଥରେ ନିଶ୍ଚୟ ଆସିବା ଦରକାର ।

ସତ୍ୟବ୍ରତ ଯେପରି ମନେ ମନେ କ'ଣ ହିସାବ କରୁଥିଲେ । କହିଲେ : ଠିକ୍ ଅଛି, ମୁଁ ଲାୟଲିକୁ ଛାଡ଼ି ପାଞ୍ଚଟା ଛ'ଟା ବେଳକୁ ଫେରିଲା ବେଳେ ଆପଣଙ୍କ ବାଟ ହୋଇ ଆସିବି ।

ସତ୍ୟବ୍ରତ ଆଉ କିଛି ଉତ୍ତର ନ ଦେଇ ନୀରବରେ ଆଗେଇ ଯାଉଥିଲେ ।

ଲାୟଲି କିନ୍ତୁ ସତ୍ୟବ୍ରତ ପଛେ ପଛେ ଚାଲିଥିଲା ।

: ମୋତେ କିଛି କହିବେ ? ସତ୍ୟବ୍ରତ ତାଙ୍କ ଗାଡ଼ିର ଦରଜା ଖୋଲୁ ଖୋଲୁ ପଚାରିଲେ ।

: ମୋ ସମ୍ବନ୍ଧରେ କିଛି ଖବର ନେଇଥିଲେ ? ଲାୟଲି ନୀରସ କଣ୍ଠରେ ପଚାରିଲା ।

କାଲି ଅମ୍ବରକୁ ଯାଇଥିଲି । ମିଷ୍ଟର କାପୁର କିନ୍ତୁ ଖରାପ ଲୋକ ନୁହନ୍ତି । ସେ ଯେ ଆପଣଙ୍କୁ ବିପଦରେ ପକାଇବାକୁ ଚେଷ୍ଟା କରୁଛନ୍ତି, ସେପରି କିଛି ତ ଆଭାସ ତାଙ୍କଠାରୁ ପାଇଲି ନାହିଁ ।

: ତା'ହେଲେ ସେଠାରେ ମୋ ନିରାପତ୍ତା ସମ୍ବନ୍ଧରେ ଆପଣ ନିଶ୍ଚିନ୍ତ ।

ସତ୍ୟବ୍ରତ ଗାଡ଼ିର ଦରଜା ଖୋଲି ଭିତରେ ବସୁ ବସୁ କହିଲେ : ଏତେ ଶୀଘ୍ର ମୁଁ ଆପଣଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇପାରିବି ନାହିଁ । ସେଦିନ ହୋଟେଲରେ ମାତ୍ର କେତେ ଜଣଙ୍କ ସହିତ ଦେଖାହୋଇଛି । ଆହୁରି ଥରେ ଦି'ଥର ଯାଇ ମୋତେ ସମସ୍ତଙ୍କୁ ବିଶ୍ଳେଷଣ କରିବାକୁ ହେବ ।

: ତା'ହେଲେ ଆପାତତଃ ମୁଁ ନିଶ୍ଚିନ୍ତ ତ ?

: ଆଚ୍ଛା, ଅମ୍ବରର ଲୋକମାନଙ୍କ ସମ୍ବନ୍ଧରେ ଆପଣଙ୍କୁ କେତୋଟି ପ୍ରଶ୍ନ ମୁଁ ପଚାରିବି । ଧରନ୍ତୁ ଆପଣଙ୍କର ଧାରଣା ଯେ ମିଷ୍ଟର କାପୁର ବାହାରେ ଖୁବ୍ ଭଲଲୋକ; କିନ୍ତୁ ସଇତାନି ବୁଦ୍ଧି ତାଙ୍କର ପ୍ରଚୁର । ଯଦି ଆପଣଙ୍କ କଥା ସତ୍ୟ ହୋଇଥାଏ, ସେ ଯଦି କୌଣସି ଦୁଷ୍କର୍ମ କରିବାକୁ ଚାହାନ୍ତି, ତେବେ ସେ ନିଶ୍ଚୟ ଆଗେଇ ଯିବେ ନାହିଁ । ତାଙ୍କର ସହଯୋଗୀମାନେ ତାହା ସମ୍ପନ୍ନ କରିବେ ।

: ମୁଁ ତ ସେଇକଥା ଆପଣଙ୍କୁ କହିଥିଲି ।

: ଆପଣ ତାଙ୍କର ସହଯୋଗୀମାନଙ୍କୁ ଚିହ୍ନନ୍ତି ?

ଲାୟଲି ଟିକିଏ ଚିନ୍ତା କଲା : ଅନ୍ତ କେତେଜଣଙ୍କ ନାଁ ମୁଁ କହିପାରେ ।

: କେଉଁମାନେ ?

: ସେମାନେ ସମସ୍ତେ ଅମ୍ବରର କର୍ମଚାରୀ । ଏକରେ, ଆଦେଶ । ଦୁଇରେ, ସାମୁଏଲ ଦାସ, ତିନ୍‌ରେ ରମ୍‌ଜାନ । ଚାରିରେ ପାମେଲା, ପାଞ୍ଚରେ...

: ଥାଉ, ଥାଉ । ମୁଁ ଦେଖୁଛି ଆପଣ ହୋଟେଲର ସମସ୍ତ କର୍ମଚାରୀମାନଙ୍କ ମିଷ୍ଟର କାପୁରଙ୍କ ସହଯୋଗୀ ତାଲିକାରେ ରଖିଛନ୍ତି । ସେପରି ସନ୍ଦେହ କଲେ ହୁଏ ନାହିଁ । ଆଚ୍ଛା, ମୁଁ ଆପଣଙ୍କ ପାଇଁ ଚେଷ୍ଟା କରୁଛି । ଆପଣ ହୋଟେଲକୁ ଫେରିବେ ନାହିଁ ?

: ଫେରିବି ଟିକିଏ ଡେରିରେ ।

: ହଠାତ୍ ଏପରି ବ୍ୟତିକ୍ରମ କାହିଁକି ?

ଲାୟଲି ହସିଲା । ସମସ୍ତ ମୁହଁରେ ଖୁସିର ଲାବଣ୍ୟ ଚହଟି ଉଠିଲା । କିନ୍ତୁ କିଛି ଉତ୍ତର ଦେଇପାରିଲା ନାହିଁ; ବରଂ ଲଜ୍ଜାରେ ଆଖି ଦୁଇଟି ଯେପରି ତଳକୁ ନଇଁପଡ଼ିଲା ।

ସତ୍ୟବ୍ରତ ଲାୟଲିର ଉଦ୍ଦେଶ୍ୟଟା ବୁଝିଲେ । ସେ ସଂଜୀବକୁ ଯାତ୍ରାପଥରେ ପାଇ ଆପଣାର କରିବାକୁ ଚେଷ୍ଟା କରୁଛି; କିନ୍ତୁ ଏତେ ଶୀଘ୍ର ଏହି ପରିଣତି ଦୁଇ ଜଣଙ୍କ ମଧ୍ୟରୁ କାହାପକ୍ଷରେ ଶୁଭ ଆଉ କାହା ପକ୍ଷରେ ଅଶୁଭ ସତ୍ୟବ୍ରତ ଠିକ୍ ତୁଳନା କରି ପାରିଲେ ନାହିଁ ।

ସଂଜୀବ ଆଗେଇ ଆସୁଥିଲା ।

ସତ୍ୟବ୍ରତ ଗାଡ଼ିର ଷ୍ଟାର୍ଟ ଦେଉଥିଲେ ।

ସଂଜୀବ କହିଲା : ମୁଁ ଠିକ୍ ସାଢ଼େ ପାଞ୍ଚଟାରୁ ଛଅଟା ଭିତରେ ଆପଣଙ୍କ ଇନ୍ଦ୍ରଜାଲରେ ପହଞ୍ଚିବି ।

ସତ୍ୟବ୍ରତ ମନେ ମନେ ହସିଲେ ।

ପ୍ରେମ ମଣିଷକୁ ଅନ୍ଧ କରିଦିଏ ହେଲେ ଲାୟଲିର ସାନିଧ ପାଇଲେ ଏକା ସଂଜୀବ କାହିଁକି, ହୁଏତ ସତ୍ୟବ୍ରତ ମହାପାତ୍ର ମଧ ବାଟ ଭୁଲିଯିବି ।

ଘଟଣାଟା ଟିକିଏ ଅସ୍ୱାଭାବିକ ମନେହେଉଥିଲା ସତ୍ୟବ୍ରତଙ୍କୁ ।

ରଣଜିତ୍‌ବାବୁ ଚାକିରି କରୁଥିଲେ । ଅବଶ୍ୟ ଚାକିରିର ସଂଜ୍ଞା ସମ୍ବନ୍ଧରେ ସତ୍ୟବ୍ରତ ଏ ପର୍ଯ୍ୟନ୍ତ ଅନ୍ଧକାରେ; ତଥାପି ସେ ଯେଉଁ ଚାକିରି ହେଉ, ତାଙ୍କର ଚାକିରି କାଳ ଭିତରେ ସେ କୋଠା କିଣିଛନ୍ତି । ପଚାଶ ହଜାର ଟଙ୍କା ବ୍ୟାଙ୍କରେ ରଖିଛନ୍ତି । ପନ୍ଦର ହଜାର ଟଙ୍କାରେ ଇନ୍‌ସିଓରେନସ କରିଛନ୍ତି । ତା'ଛଡା ପାଞ୍ଚ ବର୍ଷ ହେବ ଚାକିରୀ ଛାଡ଼ି, ନିଜେ ପାଞ୍ଚଟା ଚାକର ରଖି, ପଶୁ-ପକ୍ଷୀଙ୍କ ମେଳରେ ଆନନ୍ଦରେ ସମୟ କଟାଇଛନ୍ତି । ଖାଲି ସେତିକି ନୁହେଁ; ସଂଜୀବକୁ ମଧ ପ୍ରତି ମାସରେ ଚାରି ପାଞ୍ଚଶହ ଟଙ୍କା ପଢ଼ା ଖର୍ଚ୍ଚ ବାବଦରେ ଯୋଗାଇଛନ୍ତି ।

ନିଶ୍ଚୟ ଘଟଣାଟା ଟିକିଏ ଅସ୍ୱାଭାବିକ ।

ତା'ପରେ ପୁଣି ନରୋତ୍ତମ ଅଗରବାଲା ଘଟଣାଟାକୁ ଆହୁରି ଜଟିଳ କରି ଦେଇଛି । ଯଦି ଏହାକୁ ଖୁବ୍ ଗଭୀର ଭାବରେ ଅନୁସନ୍ଧାନ କରା ନ ଯିବ, ହୁଏତ ଏହାର ପ୍ରକୃତ ତଥ୍ୟ ଆବିଷ୍କାର ମୋଟେ ସମ୍ଭବ ହେବ ନାହିଁ । ସତରେ କ'ଣ ରଣଜିତ୍ ରାଉତରାୟ କିଛି ଗୁପ୍ତ ଧନର ଅଧିକାରୀ ଥିଲେ ?

ସ୍ଥାନୀୟ କୌଣସି ଲୋକଙ୍କଠାରୁ ଖବର ନେବା ଅପେକ୍ଷା, ସତ୍ୟବ୍ରତ ମନେକଲେ ପ୍ରଥମେ ଥାନାରେ ଯାଇ ଏ ସମ୍ବନ୍ଧରେ ଅନୁସନ୍ଧାନ କରିବା ଉଚିତ । ଯଦି ଏହା ଭିତରେ ରଣଜିତ୍‌ବାବୁଙ୍କୁ କେନ୍ଦ୍ର କରି କୌଣସି ଅଘଟଣ ଘଟିଥାଏ, ତେବେ ଥାନା ଖାତାରେ ନିଶ୍ଚୟ ଲିପିବଦ୍ଧ ହୋଇଥିବ ।

ଥାନାର ଭାରପ୍ରାପ୍ତ ଅଫିସର ଅଧିରାଜ ମୋହନ ଅଧିକାରୀ ।

ସତ୍ୟବ୍ରତଙ୍କ କାର୍ଡ ପାଇ ମଧ ସିଧା ସେ ମନା କରିଦେଲେ ।

ବର୍ତ୍ତମାନ ଦେଖାହୋଇପାରିବ ନାହିଁ ।

ସତ୍ୟବ୍ରତ କନେଷ୍ଟବଲଟିକୁ ପଚାରିଲେ : କେତେବେଳଯାଏ ଅପେକ୍ଷା କଲେ ଦେଖାହେବ ?

: ସେ କଥା ତ ମୁଁ ପଚାରି ନାହିଁ ଆଜ୍ଞା । ପଚାରି ଆସିବି ?

: ହଁ ପଚାରି ଆସ । ମୋର ଖୁବ୍ ଦରକାର ।

କନେଷ୍ଟବଲଟି ଚାଲିଯାଇଥିଲା । ଥାନା ବାରଣ୍ଡା ଉପରେ ପଡିଥିବା ଗୋଟିଏ ବେଞ୍ଚ ଉପରେ ସତ୍ୟବ୍ରତ ବସି ଦୂର ପାହାଡ଼ ଆଡ଼େ ଚାହିଁଥିଲେ ।

ଦୂରରୁ ଯେପରି କାହାର ବିରକ୍ତ କଣ୍ଠସ୍ୱର ଶୁଣାଯାଉଥିଲା : ମୁଁ କହିଛି ବର୍ତ୍ତମାନ ଦେଖା ହେବ ନାହିଁ । ତେଣୁ ଦେଖା ହୋଇପାରିବ ନାହିଁ । ଗଭର୍ଣ୍ଣର ଆସିଲେ ବି ଅଧିରାଜ ମୋହନ ଅଧିକାରୀର ଏକକଥା ।

ସତ୍ୟବ୍ରତ ମହାପାତ୍ର ଉଠି ଠିଆହୋଇପଡିଲେ । କାରଣ ତାଙ୍କ ସମ୍ମୁଖରେ ସ୍ୱୟଂ...

: ମୁଁ ଥରେ କହିଛି ତ ବର୍ତ୍ତମାନ ମୋ ସହିତ ଦେଖାହୋଇପାରିବ ନାହିଁ; ତଥାପି ଆପଣ ମୋତେ ବିରକ୍ତ କରିବାକୁ ବସି ରହିଲେ ।

କଣ୍ଠର ସ୍ୱର ଆଉ କହିବାର ଭାଷାରୁ ସତ୍ୟବ୍ରତ ବୁଝିପାରିଥିଲେ, ଭଦ୍ରଲୋକ ସ୍ୱୟଂ ଥାନାର ଅଧିକର୍ତ୍ତା ।

: ଆଜ୍ଞା, ସତ୍ୟବ୍ରତ ବିନୀତ ଭଙ୍ଗୀରେ କହିଲେ, ଦେଖାକରିବା ପାଇଁ ମୁଁ ମୋଟେ ବ୍ୟସ୍ତ ନୁହେଁ, ଖାଲି କେତୋଟି ଦରକାରୀ କଥା ହେବା ପାଇଁ ମୁଁ କଟକରୁ ଆପଣଙ୍କ ପାଖକୁ ଧାଇଁ ଆସିଛି ।

: ଓଃ, ଆପଣ କଟକରୁ ଆସିଛନ୍ତି ? କାହିଁ କନେଷ୍ଟବଲଟା ତ ମୋତେ ସେ କଥା କିଛି କହିଲା ନାହିଁ । ସେ ସଙ୍ଗେ ସଙ୍ଗେ କନେଷ୍ଟବଲର ନାଁ ଧରି ଚିତ୍କାର କରି ଉଠିଲେ ।

କନେଷ୍ଟବଲଟି ଛୁଟି ଆସି ସାଲ୍ୟୁଟ୍ ବଜାଇ ସାମ୍ନାରେ ଠିଆହେଲା ।

: କିରେ ସାହେବ ଯେ କଟକରୁ ଆସିଛନ୍ତି ସେ କଥା ତ ମତେ କହିଲୁ ନାହିଁ ।

: କିନ୍ତୁ ସାର୍...

କନେଷ୍ଟବଲଟିକୁ କଥା କହିବାକୁ ନ ଦେଇ ସେ ସେହିପରି ଚିତ୍କାର କରି କହିଲେ : ତତେ ଅଙ୍ଗୁର ଫଳ ପିତା ଲାଗିଲାଣି । ଶଳାକୁ ଢ଼େଙ୍କାନାଳ ପଠାଇ ଦେବି ଯେ ମଜା ନିକିଳି ଯିବ ।

ସଙ୍ଗେ ସଙ୍ଗେ ଅଧିକାରୀ ମହାଶୟ ମାର୍ଚ୍ଚିଂ କରି ଥାନା ଭିତରକୁ ପଶିଗଲେ ।

ସତ୍ୟବ୍ରତ ହାଁ କରି ତାଙ୍କ ଯିବା ପଥକୁ ଚାହିଁଥିଲେ ।

କନେଷ୍ଟବଲଟି କହିଲା : ଆପଣ ତାଙ୍କ ପଛେ ଚାଲିଯାଆନ୍ତୁ ସାର୍ ।

ସତକୁ ସତ ସତ୍ୟବ୍ରତ ଅଧିରାଜ ମୋହନଙ୍କ ପଛେ ପଛେ ଯାଇ ଅଫିସ୍ ଭିତରେ ପଶିଲେ ।

: ଆପଣ ଟିକିଏ ଅପେକ୍ଷା କରନ୍ତୁ ମିଷ୍ଟର ମହାପାତ୍ର ! ମୁଁ ପ୍ରଥମେ ସେ କନେଷ୍ଟବଲଟାର ବଦଳି ଅର୍ଡର ଲେଖିସାରେ ।

: କିନ୍ତୁ...

: ନା, ଏଥିରେ କିନ୍ତୁ ଫିନ୍ତୁ କିଛି ନାହିଁ । ତଳିଆ କର୍ମଚାରୀମାନଙ୍କୁ ଠିକ୍‌ଭାବରେ ଶାସନ ନ କଲେ ସେମାନେ ଦିନେ ମୁଣ୍ଡ ଉପରକୁ ଉଠିଯିବେ । ତା'ଛଡା ଅଧିରାଜ ମୋହନ ଅଧିକାରୀଙ୍କର ଏକ୍ କଥା । ଏହା ସମସ୍ତେ ଜାଣନ୍ତି । ଆପଣ ବି ଜାଣିବେ ।

: କିନ୍ତୁ ଭିଜିଟିଂ କାର୍ଡରେ ତ ମୋର ନାମ ଠିକଣା ସବୁ ଲେଖାଥିଲା ।

: ଥିଲା ? ଅଧିକାରୀ ମହାଶୟ କାର୍ଡ ଖଣ୍ଡିକ ଟେବୁଲ ଉପରୁ ଆଉ ଥରେ ଉଠାଇ ନେଇ ପଢ଼ିଲେ । ନାମ, ଠିକଣା, ପ୍ରଫେସନ । ଥରେ । ଦି'ଥର । ତିନି ଥର ।

ହସିଉଠିଲେ ଜୋର୍‌ରେ ! ଠିଆ ହୋଇପଡିଲେ ଚେଆର ଛାଡ଼ି । ଆଗେଇ ଆସି ଦୁଇ ହାତରେ ସତ୍ୟବ୍ରତ ମହାପାତ୍ରଙ୍କୁ ଜାବୁଡ଼ି ଧରି କହିଲେ, ଓଃ ଆପଣ ସେହି କ୍ରିମିନଲୋଜିଷ୍ଟ ସତ୍ୟବ୍ରତ ମହାପାତ୍ର !! କଂଗ୍ରାଚୁଲେସନ୍ । ଡୋଣ୍ଟ ମାଇଣ୍ଡ୍ ମିଷ୍ଟର ମହାପାତ୍ର, କାର୍ଡଟା ମୁଁ ଭଲଭାବରେ ପଢ଼ି ନ ଥିଲି ।

ସତ୍ୟବ୍ରତ ଲକ୍ଷ୍ୟ କଲେ ଅଧିରାଜ ମୋହନ ଅଧିକାରୀ ଜାତିରେ ପୋଲିସ୍ ହେଲେ ମଧ, ମେଜାଜ୍‌ରେ ମିଲିଟାରୀ । ବୟସ ହୋଇଛି । ମୁଣ୍ଡରେ ପାନିଆ ବୁଲାଇବାର ସୁଯୋଗ ନାହିଁ; କିନ୍ତୁ ପୋଷାକ କଡା ଇସ୍ତିକରା । କେଉଁଠି ଟିକିଏ ହେଲେ ଭାଙ୍ଗ ପଡିନାହିଁ । ଚାଲିରେ ଶିଥିଳତା ନାହିଁ । ଟୋନ୍ ବି କମାଣ୍ଡିଂ ।

ସତ୍ୟବ୍ରତକୁ ଚେଆର ଦେଖାଇ, ନିଜେ ସେ ବସିଲେ । ଡ୍ରୟାର ଟାଣି ଗୋଟାଏ ଚୁରୁଟ୍ ବାହାର କଲେ । ପଛ ପାଖଟା ଦାନ୍ତରେ କାମୁଡ଼ି ଛିଣ୍ଡାଇ ଦେଲେ । ଦିଆସିଲି ଜଳାଇ, ଦୁଇ ତିନିଥର ଟାଣି, ଜୋର୍‌ରେ ଥରେ ଧୂଆଁ ଛାଡ଼ି କହିଲେ-

: ମୁଁ ଆପଣଙ୍କୁ ଦେଖି ଖୁବ୍ ଖୁସିହେଲି ମିଷ୍ଟର ମହାପାତ୍ର । ଆପଣଙ୍କର ସୁନାମ ବେଳେ ବେଳେ ଖବରକାଗଜରୁ ପଢ଼ିବାକୁପାଏ । କିନ୍ତୁ ଆପଣ ଏତେ ୟଙ୍ଗ୍ ମୁଁ ମୋଟେ ଭାବିପାରି ନ ଥିଲି । ଆପଣଙ୍କର ଏଇ ବୟସରେ ଆମେ ତ ଏ ଲାଇନ୍‌ରେ ଗଜମୂର୍ଖ ।

ସତ୍ୟବ୍ରତ କହିଲେ : ଆପଣ ମୋର ଅଯଥା ପ୍ରଶଂସା କରୁଛନ୍ତି ସାର୍ । ମୁଁ ବା ଏ ଲାଇନ୍‌ର କ'ଣ ବୁଝେ ? କେବଳ ଆପଣମାନଙ୍କ ପରି ବିଜ୍ଞ ଅଫିସରମାନଙ୍କ ସହଯୋଗରେ, ମୋର ସଫଳ କର୍ମ ଜୀବନ । ନହେଲେ...

: ଦ୍ୟାଟସ୍ ରାଇଟ୍ ୟଙ୍ଗମ୍ୟାନ । ଆପଣ ଠିକ୍ କହିଛନ୍ତି; ତଥାପି ଆପଣଙ୍କର ବୁଦ୍ଧିମତ୍ତାର ପ୍ରଶଂସା କରିବାକୁ ହେବ । ଆମେ ତ ସବୁ ହେଲୁ କୂପମଣ୍ଡୁକ । ଆପଣଙ୍କ ପରି ଆମର ସ୍କୋପ୍ କାହିଁ ? ଏ ଲାଇନ୍‌ରେ ବହୁ ଜିନିଅସ୍ କେବଳ ଥାନାର ଡାଇରୀ ଲେଖି ଲେଖି ଜୀବନ ଶେଷ କଲେ । ମୋରି କଥା ଦେଖୁ ନାହାନ୍ତି । ମୁଁ ଏଇ ଥାନାରେ ପଡ଼ିରହିଛି ପ୍ରାୟ ଦଶ ବର୍ଷ ହେବ । ଏଠି କ୍ରିମିନଲୋଜି ରିସର୍ଚ୍ଚ ପାଇଁ ସୁଯୋଗ କାହିଁ ?

ସତ୍ୟବ୍ରତ ଟିକିଏ ଦୁଃଖ ପ୍ରକାଶ କରି କହିଲେ : ଏଥିପାଇଁ ଅବଶ୍ୟ ଉଚ୍ଚ କର୍ତ୍ତୃପକ୍ଷ ଦାୟୀ । ଅନେକାଂଶରେ ସରକାର ମଧ । କାରଣ ସେ ଜିନିଅସ୍‌ମାନଙ୍କୁ ବାଛି ବାଛି ବହୁ ବଡ଼ ବଡ଼ କାମରେ ଲଗାଇ ପାରନ୍ତେ । ଫରେନ୍‌କୁ ପଠାଇ ଟ୍ରେନ୍‌ଡ କରି ଆଣି ରାଜ୍ୟରେ ଅପରାଧ ବିନାଶର ଗୋଟାଏ ଯୋଜନା କରି ପାରନ୍ତେ; କିନ୍ତୁ କିଏ ସେଥିପାଇଁ ମୁଣ୍ଡ ଖେଳାଉଛି ? ନିଜର ଆସନ ଆଉ ନିଜର ଚାକିରି ଠିକ୍‌ରଖିବା ପାଇଁ ଉପର ମହଲରେ ତ ପ୍ରତିଯୋଗିତା ଚାଲିଛି । ଦେଶ କଥା ଭାବିବାକୁ ବେଳ କାହିଁ ସେମାନଙ୍କର !!

: ଇଉ ଆର୍ ରାଇଟ୍ ୟଙ୍ଗମ୍ୟାନ୍ । ଆପଣ ଠିକ୍ କଥା କହିଛନ୍ତି । ମୁଁ ଏ ସମ୍ବନ୍ଧରେ କର୍ତ୍ତୃପକ୍ଷଙ୍କୁ ଏକ ସ୍ମାରକଲିପି ପଠାଇବି ।

ଏହା ଭିତରେ ଅଧିରାଜ ମୋହନଙ୍କର ଚୁରୁଟ୍‌ଟି ଲିଭି ଯାଇଥିଲା । ସେ ପୁଣି ଥରେ ଦିଆସିଲି ଜଳାଇ ଚୁରୁଟ୍ ଲଗାଇଲେ ।

ସତ୍ୟବ୍ରତ କହିଲେ : ଆପଣ ତା'ହେଲେ ଏଇ ଥାନାରେ ଦଶ ବର୍ଷ ହେବ ଅଛନ୍ତି ।

: ରାଇଟ୍ ।

: କିନ୍ତୁ ମୁଁ ଆସିଥିଲି...

: ସିଓର, ଆପଣ ମୋ ପାଖକୁ ଆସିଥିଲେ କୌଣସି ପ୍ରୟୋଜନରେ । ମୁଁ ଶୁଣିବାକୁ ପ୍ରସ୍ତୁତ ଅଛି ମିଷ୍ଟର ମହାପାତ୍ର । ଇଉ ପ୍ଲିଜ୍ ବିଗନ ଦେ...

ଅଧିରାଜ ମୋହନ ଅଧିକାରୀ ତାଙ୍କ ମୁହଁର କଥା ଅସମାପ୍ତ ରଖି ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ।

: ଆପଣ ରଣଜିତ୍ ରାଉତରାୟଙ୍କୁ ଚିହ୍ନନ୍ତି ? ସତ୍ୟବ୍ରତ ମହାପାତ୍ର କୌଣସି ଭୂମିକା ନ କରି ସିଧା ସଳଖ ପଚାରିଲେ ।

: ରଣଜିତ୍ ରାଉତରାୟ ? କିଏ ! ରଣଜିତ୍ ରାଉତରାୟ ? ଅଧିକାରୀ ମହାଶୟ ଟାଙ୍ଗରା ମୁଣ୍ଡରେ ଥରେ ହାତବୁଲେଇ ସ୍ୱପ୍ନରୁ ଉଠିଲା ପରି କହିଲେ, ଓଃ ଦ୍ୟାଟ୍ ବାର୍ଡ-ମ୍ୟାଡ ମ୍ୟାନ୍ ?

: ବାର୍ଡ ମ୍ୟାଡ ମାନେ ? ସତ୍ୟବ୍ରତ ପ୍ରଥମେ କିଛି ବୁଝିପାରିଲେ ନାହିଁ

: ଆରେ ସେଇ ପକ୍ଷୀ ପାଗଳ ଲୋକଟା ତ ! ଯିଏ ଶହ ଶହ ପକ୍ଷୀ ପାଳି ସେଇମାନଙ୍କ ପାଇଁ ପାଗଳ ହୋଇ, ଶେଷରେ...

: ହଁ ସେଇ ରଣଜିତ୍ ରାଉତରାୟଙ୍କ କଥା ମୁଁ ଆପଣଙ୍କୁ ପଚାରୁଛି ।

: ସେ ତ ଅନେକ ଦିନରୁ ମରିସାରିଲେଣି ।

: ମୁଁ ଜାଣେ । ସେଇ ଲୋକଟି ସମ୍ବନ୍ଧରେ ଆପଣଙ୍କଠାରୁ କିଛି ଜାଣିବାକୁ ଆସିଛି ।

: ମ୍ୟାଡ୍ । ପାଗଳ, ଲୋକଟା ବଦ୍ଧପାଗଳ । ମୁଁ ତାକୁ କହୁଥିଲି ବାର୍ଡ-ମ୍ୟାଡ । ତା' ଘରେ ଦେଖିବେ ଯାଆନ୍ତୁ ଏବେ ବି ଶହ ଶହ ପକ୍ଷୀ ଥିବେ । ଲୋକଟା ଗୋଟାଏ ଭଲ ଚାକିରି କରୁଥିଲା । ଶେଷକୁ ଚାକିରି ପର୍ଯ୍ୟନ୍ତ ଛାଡ଼ି ଆସି ସେଇ ପକ୍ଷୀମାନଙ୍କ ପଛରେ ବସି ରହିଲା ।

: ଆପଣଙ୍କର ତାଙ୍କ ସହିତ କିପରି ସଂପର୍କ ଥିଲା ?

: ଭଲ । ଲୋକଟା ମଝିରେ ମଝିରେ ଆମକୁ ଡାକି ଭୋଜି ଖୁଆଏ । ଆକାଶରେ ପାରା ଉଡାଇ ସେମାନଙ୍କର ପ୍ରତିଯୋଗିତା ଦେଖାଏ । ସେଇଥିରେ ତା'ର ଆନନ୍ଦ ।

: ଆଉ ବିଶେଷ କିଛି ତାଙ୍କ ସମ୍ବନ୍ଧରେ ଆପଣ ଜାଣି ନାହାନ୍ତି ?

ବିଶେଷ କିଛି ମାନେ ?

: ଏଇ ଧରନ୍ତୁ କୌଣସି ଘଟଣା, ଦୁର୍ଘଟଣା...

ଅଧିରାଜ ମୋହନ ଅଧିକାରୀ ପୁଣି ତାଙ୍କ ଚନ୍ଦା ମୁଣ୍ଡରେ ହାତବୁଲେଇ ସ୍ୱପ୍ନରୁ ଉଠିଲା ପରି କହିଲେ : ଘଟଣା ତ କିଛି ଘଟିଥିଲା ପରି ମୋର ମନେପଡୁ ନାହିଁ । କିନ୍ତୁ ଦୁର୍ଘଟଣା ଗୋଟାଏ ଘଟିଥିଲା ।

: ଦୁର୍ଘଟଣା ! ସତ୍ୟବ୍ରତ ଯେପରି ଚମକି ଉଠିଲେ ।

: ହଁ ଦୁର୍ଘଟଣା ତାକୁ କୁହାଯାଇପାରେ । ବୋଧହୁଏ ପାଞ୍ଚ ଛଅ ବର୍ଷ ତଳର କଥା । ରେକର୍ଡ ଖୋଜିଲେ କିଛି ମିଳିବ ନାହିଁ ଥାନାରୁ । ମୁଁ ଜାଣି ଶୁଣି କିଛି ରେକର୍ଡ କରି ନାହିଁ । ରଣଜିତ୍ ରାଉତରାୟଙ୍କର ଗୋଟିଏ ପୁରୁଣା ଚାକର ଆତ୍ମହତ୍ୟା କରିଥିଲା, ତାଙ୍କରି ବାଡ଼ିଆଡ ଆମ୍ବ ଗଛରେ ଗଳାରେ ଦଉଡ଼ି ଲଗେଇ ।

: କାହିଁକି ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

: ଘଟଣାଟା ମୋର ଠିକ୍ ମନେ ନାହିଁ । ତେବେ ସେଦିନ ସକାଳୁ ଆସି ରଣଜିତ୍ ରାଉତରାୟ ମୋତେ କହିଲେ ସେହି ଦୁର୍ଘଟଣା କଥା । ମୁଁ ନିଜେ ଯାଇ ତଦନ୍ତ କଲି ।

ଚାକରଟାର ବୟସ ବି ଢ଼େର ହୋଇଯାଇଥିଲା । ଆତ୍ମହତ୍ୟା ସମ୍ବନ୍ଧରେ ରଣଜିତ୍ ରାଉତରାୟ ବୋଧହୁଏ କହିଥିଲେ, ଚାକରଟାର କ'ଣ ଗୋଟାଏ ପେଟ ବେମାରି ଥିଲା । ବେଳେବେଳେ ସେ ବାହାରିଲେ ଲୋକଟା ମୃତ୍ୟୁ ଯନ୍ତ୍ରଣା ଅନୁଭବ କରେ । ବୋଧହୁଏ ସେଇ ଯନ୍ତ୍ରଣା ସହି ନ ପାରି ସେ ଦଉଡ଼ି ଲଗେଇ ଦେଇଥିଲା ।

: ଆପଣ ଲାସ୍‌ର ପୋଷ୍ଟମର୍ଟମ କରାଇଥିଲେ ?

ଅଧିରାଜ ମୋହନ ଅଧିକାରୀ ଅବଜ୍ଞାର ହସ ହସି କହିଲେ : ଗୋଟାଏ ଚାକର ପାଇଁ ପୁଣି ପୋଷ୍ଟମର୍ଟମ କରାଇ ଥାଆନ୍ତି ? ତା'ଛଡା ରଣଜିତ୍ ବିଚରା ବ୍ୟସ୍ତ ହୋଇପଡିଥିଲେ । ମୁଁ ବି ଦେଖିଲି କେସ୍‌ଟାର ବ୍ୟାକ୍ ଗ୍ରାଉଣ୍ଡ କିଛି ଷ୍ଟ୍ରଂ ନାହିଁ । ସଙ୍ଗେ ସଙ୍ଗେ ଲାସ୍ ପୋଡ଼ି ଦେବା ପାଇଁ ନିର୍ଦ୍ଦେଶ ଦେଇଦେଲି ।

: ହୁଁ, ତା'ପରେ ? ସତ୍ୟବ୍ରତ ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି ପ୍ରଶ୍ନ କଲେ ।

: ତା'ପରେ ସେଠାରେ ଆଉ କିଛି ଘଟଣା ବା ଦୁର୍ଘଟଣା ଘଟି ନାହିଁ, ଘଟିଥିଲେ ବି ମୋ ନଜରକୁ ଆସି ନାହିଁ ।

ଆଉ ସ୍ୱୟଂ ରଣଜିତ୍‌ବାବୁଙ୍କ ମୃତ୍ୟୁଟା ଆତ୍ମହତ୍ୟା ବା ହତ୍ୟା ନୁହେଁ ତ ?

: ନୋ ନୋ ନୋ, ଅଧିରାଜ ମୋହନ ଅଧିକାରୀ ଯେପରି ଚିତ୍କାର କରି ଉଠିଲେ । ମୁଁ ନିଜେ ଯାଇ ଦେଖିଥିଲି, ଡକ୍‌ଟର କାନୁନ୍‌ଗୋ ତାଙ୍କର ହାଉସ ଫିଜିସିଆନ୍ । ସେ ମୃତ୍ୟୁ ପୂର୍ବରୁ ସେଠାରେ ଉପସ୍ଥିତ ଥିଲେ । ଡକ୍‌ଟର କାନୁନ୍‌ଗୋ ସାର୍ଟିଫିକେଟ ମଧ୍ୟ ଦେଇଛନ୍ତି । ରଣଜିତ୍ ରାଉତରାୟଙ୍କର କରୋନାରୀ ଥମ୍ବୋସିସ୍‌ରେ ମୃତ୍ୟୁ ହୋଇଛି ।

: ତଥାପି ଆପଣ କ'ଣ ଆଉ ପୋଷ୍ଟମର୍ଟମ କରାଇଥିଲେ ?

: ସେଠି ଆଉ ପୋଷ୍ଟମର୍ଟମର ପ୍ରଶ୍ନ ଉଠୁଚି କେଉଁଠି ? ଡକ୍‌ଟର କାନୁନଗୋ ସ୍ୱଟ୍‌ରେ, ନିଜେ ସେ ସରକାରୀ ଡକ୍‌ଟର ।

: ହୁଁ, ସତ୍ୟବ୍ରତ ମହାପାତ୍ର ଟିକିଏ ଚିନ୍ତାକରି କହିଲେ : ତା' ପରେ ଆପଣ ଆଉ ରଣଜିତ୍‌ବାବୁଙ୍କ ଘର ଆଡ଼େ ଯାଇଥିଲେ ?

ହଁ, ତାଙ୍କର ଏକାଦଶ ଦିନ ଯାଇଥିଲି । କିନ୍ତୁ ପୃଥିବୀରେ ଏତେ ଲୋକ ଥାଉଁ ଥାଉଁ ହଠାତ୍ ଆପଣ ରଣଜିତ୍ ରାଉତରାୟଙ୍କ ସମ୍ବନ୍ଧରେ ଗବେଷଣା ଆରମ୍ଭ କରି ଦେଲେ କାହିଁକି ? କ'ଣ କିଛି ଘଟିଛି ନା କଅଣ ?

: ଅବଶ୍ୟ ଏପର୍ଯ୍ୟନ୍ତ କିଛି ଘଟି ନାହିଁ, ତେବେ ଗୋଟାଏ କିଛି ଘଟିବାକୁ ଯାଉଛି ।

: ମାନେ ?

: ମୁଁ ପରେ ଆପଣଙ୍କୁ ଜଣାଇବି । ବର୍ତ୍ତମାନ ରଣଜିତ୍‌ବାବୁଙ୍କ ସମ୍ବନ୍ଧରେ ମୁଁ ଆଉ କିଛି ଅଧିକ ଆପଣଙ୍କଠାରୁ ଜାଣିବାକୁ ଚାହେଁ ।

: ଯଥା ?

ତାଙ୍କର ଚାକରବାକର, ଚାଲିଚଳଣ, ପଇସାପତ୍ର, ରୋଜଗାର । ଏସବୁ ସମ୍ବନ୍ଧରେ ଆପଣ ଯଦି କିଛି ଜାଣିଥାଆନ୍ତି, ଜଣାଇଲେ ମୋ ଉଦ୍ଦେଶ୍ୟ ସାଧନ ପାଇଁ ବହୁତ ସହାୟକ ହୁଅନ୍ତା ।

ଅଧିରାଜ ମୋହନ ଅଧିକାରୀ ବୋଧହୁଏ ଟିକିଏ ଚିନ୍ତିତ ହୋଇପଡିଥିଲେ । ତାଙ୍କ ଚୁରୁଟରୁ ଆଉ ଧୂଆଁ ବାହାରୁ ନଥିଲା । ଚନ୍ଦା ମୁଣ୍ଡରେ ହାତବୁଲାଉ ବୁଲାଉ କହିଲେ : ଖୁବ୍ ଡ଼ିଟେଲସ ତାଙ୍କ ସମ୍ବନ୍ଧରେ ମୁଁ କିଛି ଜାଣି ନାହିଁ। ତେବେ ଯେତେଥର ମୁଁ ତାଙ୍କ ଘରକୁ ଯାଇଛି ଦେଖିଛି ତିନି ଚାରିଟା ଚାକରବାକର, କେବେ କେବେ ଦୁଇ ତିନିଟା କାଠ ମିସ୍ତ୍ରି କାମରେ ବ୍ୟସ୍ତଥା'ନ୍ତି ।

: ଆଉ ମିଲ୍‌ଖା ସିଂ ?

: ସେ ଏଇ ତିନି ଚାରି ବର୍ଷ ହେବ ରହିଛି । ତା' ସମ୍ବନ୍ଧରେ ମୁଁ ଦିନେ ରଣଜିତ୍‌ବାବୁଙ୍କୁ ପ୍ରଶ୍ନ କରିଥିଲି । ସେ ହସି ହସି କହିଥିଲେ : ବିଚରା ମୋତେ ଆସି ଧରିଲା । ତିନି କୁଳରେ ତା'ର କେହି ନାହିଁ। ତା'ଛଡା ମତେ ବି ଏତେ ବଡ଼ ଘରଟାରେ ଏକା ରହିବାକୁ ଭଲ ଲାଗିଲା ନାହିଁ ।

: ଆପଣ ଆଉ କିଛି ପଚାରି ନ ଥିଲେ ?

: କିଛି ଆବଶ୍ୟକ ମନେ ହୋଇ ନ ଥିଲା ।

: ହୁଁ, ସତ୍ୟବ୍ରତ ସେହିପରି ଚିନ୍ତିତ ମନରେ ଉଠି ଠିଆହେଲେ । କହିଲେ : ଆପଣଙ୍କୁ ଆସି ବିରକ୍ତ କରିଗଲି ସାର୍, କ୍ଷମା କରିବେ ।

ସତ୍ୟବ୍ରତ ମହାପାତ୍ରଙ୍କ ପଛେ ପଛେ ଅଧିରାଜ ମୋହନ ଅଧିକାରୀ ଆଗେଇ ଆସିଥିଲେ । କହିଲେ, ପୁଣି ଆସିବେ ମିଷ୍ଟର ମହାପାତ୍ର ।

: ନିଶ୍ଚୟ ନିଶ୍ଚୟ । ରଣଜିତ୍ ରାଉତରାୟଙ୍କ ବାର୍ଡ ରହସ୍ୟ ଉଦ୍‌ଘାଟନ କରିବାକୁ ହେଲେ ଆପଣଙ୍କ ସହଯୋଗ ମୋର ପ୍ରୟୋଜନ ହେବ ।

: ବାର୍ଡ ରହସ୍ୟ ! ମାନେ ? ଅଧିରାଜ ମୋହନ ଅଧିକାରୀ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲେ ।

ସତ୍ୟବ୍ରତ ମହାପାତ୍ର ହସି ହସି କହିଲେ : ଆପଣ ତ ଲୋକଟିକୁ 'ବାର୍ଡ-ମ୍ୟାନ' ଆଖ୍ୟା ଦେଇ ନିଶ୍ଚିନ୍ତ ହୋଇଗଲେ; କିନ୍ତୁ ପ୍ରକୃତରେ ଯଦି ରଣଜିତ୍‌ବାବୁଙ୍କୁ ଡାକ୍ତର 'ମ୍ୟାଡ' ସାର୍ଟିଫିକେଟ ଦେଇଥାଆନ୍ତେ, ତେବେ ଆମଭଳି ଅନୁସନ୍ଧିତ୍ସୁମାନେ ବି ଚୁପ୍ ହୋଇ ଯାଇଥାଆନ୍ତେ; କିନ୍ତୁ ରଣଜିତ୍‌ବାବୁ ତ ପ୍ରକୃତରେ 'ମ୍ୟାଡ୍' ନ ଥିଲେ । ତା'ହେଲେ ଦୁନିଆରେ ଏତେ ପଦାର୍ଥ ଥାଉ ଥାଉ ସେ ଗୁଡ଼ିଏ 'ବାର୍ଡ଼'ଙ୍କ ପଛରେ ତାଙ୍କ ସମଗ୍ର ଜୀବନ କଟାଇଦେବାକୁ କାହିଁକି ଅଣ୍ଟା ଭିଡ଼ିଥିଲେ ? ଟିକିଏ ତଳେଇ କରି ଚିନ୍ତା କଲେ ଏହାକୁ ଏକ ରହସ୍ୟ ଆଖ୍ୟା ଦିଆଯାଇପାରିବ ନାହିଁ କି ?

: ନିଶ୍ଚୟ, ନିଶ୍ଚୟ । ଇଉ ଆର କାରେକ୍ଟ ।

:କିନ୍ତୁ ଏଇ ରହସ୍ୟ ଉଦ୍‌ଘାଟନ କରିବାକୁ ହେଲେ ଆପଣଙ୍କୁ ମୋତେ ପୂର୍ଣ୍ଣପ୍ରାଣରେ ସହଯୋଗ କରିବାକୁ ହେବ ।

: ମୁଁ କହିଛି ଯେତେବେଳେ, ସାହାଯ୍ୟ କରିବି ମିଷ୍ଟର ମହାପାତ୍ର, ଅଧିରାଜ ମୋହନ ଅଧିକାରୀର ଏକ୍ କଥା ।

ସତ୍ୟବ୍ରତ ମହାପାତ୍ର ହାତବଢ଼ାଇଲେ ।

ଅଧିରାଜ ମୋହନ ଅଧିକାରୀ ହ୍ୟାଣ୍ଡସେକ୍ କଲେ ।

ସତ୍ୟବ୍ରତ ମହାପାତ୍ରଙ୍କ ଗାଡ଼ି ଧୀରେ ଥାନା ଭିତରୁ ବାହାରକୁ ଚାଲିଯାଉଥିଲା ।

ଆଶ୍ଚର୍ଯ୍ୟ ମଣିଷର ମନ ।

ଆହୁରି ଆଶ୍ଚର୍ଯ୍ୟ ତା'ର କର୍ମଧାରା ।

ସତ୍ୟବ୍ରତ ଚିନ୍ତାକରି ପାରୁ ନଥିଲା । ମାତ୍ର ଦିନକର ପରିଚୟ ଲାୟଲି ସହିତ; ଅଥଚ ମନେହେଉଚି ସେଇ ଦିନକ ଭିତରେ ସଂଜୀବ ଯେପରି ନିଜକୁ ବିକିଦେଇଛି । ବହୁଦିନ, ବହୁ ଯୁଗର ଯେପରି ପରିଚୟ ଥିଲା ଦୁହିଁଙ୍କ ଭିତରେ । ଅଥବା ଗତ ଜନ୍ମରେ ଯେଉଁଠୁ ଶେଷ ହେଇଥିଲା ଦୁହିଁଙ୍କର ପରିଚୟ, ଏ ଜନ୍ମରେ ଠିକ୍ ସେଉଠୁ ଆରମ୍ଭ ହୋଇଛି ।

କିନ୍ତୁ ଏହି ପରିଚୟ, ଏହି ସୌହାର୍ଦ୍ଧ୍ୟ ମୂଳରେ କୌଣସି ରହସ୍ୟ ନାହିଁ ତ?

ନା, ନା ତାହା କିପରି ସମ୍ଭବ ? ଲାୟଲି ଆସିଥିଲା ଭିନ୍ନ ଉଦ୍ଦେଶ୍ୟ ନେଇ, ସଂଜୀବ ଆସିଥିଲା ଅନ୍ୟ ଉଦ୍ଦେଶ୍ୟରେ । ଦୁଇଜଣଙ୍କର ଦେଖାହେଲା ସେଇଠି । ଅବଶ୍ୟ ଲାୟଲି ପୂର୍ବ ପରିଚିତିର ଜେର୍ ଟାଣିଥିଲା, ସଂଜୀବ ଅସ୍ୱୀକାର କରିଥିଲା; ତଥାପି ବନ୍ଧୁତା ବଢ଼ି ଉଠିଲା ଦୁଇଜଣଙ୍କ ମଧ୍ୟରେ । ରକେଟ୍ ଗତିରେ ।

କିନ୍ତୁ ବର୍ତ୍ତମାନ ସେମାନେ ଦୁଇଜଣଯାକ ତାଙ୍କର ମୂଳ ସମସ୍ୟାଠାରୁ ଯେପରି ଦୂରେଇ ଯିବାକୁ ଚାହିଁଲେଣି । ବର୍ତ୍ତମାନ ମନେହେଉଛି ଯେପରି ଦୁଇଜଣଯାକ ସତ୍ୟବ୍ରତ ଚେମ୍ବରକୁ ଯାଇଥିଲେ ପରସ୍ପରକୁ ଚିହ୍ନିବା ପାଇଁ ।

ଛାଡ଼ । ବୟସର ତ ପୁଣି ଗୋଟିଏ ଗୁଣ ଅଛି । ସତ୍ୟବ୍ରତ ଇନ୍ଦ୍ରଜାଲରେ ପହଞ୍ଚିଲା ବେଳକୁ ପ୍ରାୟ ବାରଟା ବାଜିଯାଇଥିଲା ।

ନୀଳିମା କହିଲା : ଉପରେ ସବ୍ୟସାଚୀବାବୁ ଅପେକ୍ଷା କରିଛନ୍ତି ।

: ଆଉ କିଛି ଖବର ?

: ନା, ଜରୁରୀ କିଛି ନାହିଁ; ଯାହା ଚିଠିପତ୍ର ଆସିଥିଲା ଉପରେ ରଖିଦେଇ ଆସିଛି ।

ସତ୍ୟବ୍ରତ ଚାବି ରିଙ୍ଗଟା ବୁଲାଉ ବୁଲାଉ କ୍ଷିପ୍ରଗତିରେ ଉପରକୁ ଉଠିଯାଇଥିଲା । ଚେମ୍ବର୍‌ର ଦରଜା ଖୋଲି ଦେଖିଲେ, ସବ୍ୟସାଚୀ ଦାସ ଟେବୁଲ୍ ଉପରେ ମୁଣ୍ଡ ରଖି ଆରାମ୍‌ରେ ଶୋଇଯାଇଛନ୍ତି ।

ଅନ୍ୟ ସମୟ ହୋଇଥିଲେ, ସତ୍ୟବ୍ରତ ନାନା ପ୍ରକାର କୌଶଳ ପ୍ରୟୋଗ କରି ସବ୍ୟସାଚୀକୁ ବିରକ୍ତ କରି ଥାଆନ୍ତେ, କିନ୍ତୁ ଆଜି ସେ ଦେହରେ ହାତମାରି ଡ଼ାକିଲେ -

: ସବ୍ୟ ?

ସବ୍ୟସାଚୀ ସେଇ ଗୋଟିଏ ଡ଼ାକରେ ଉଠିବସିଲେ ।

ସତ୍ୟବ୍ରତ ନିଜର ଆସନ ଉପରେ ବସୁ ବସୁ ପକେଟ୍‌ରୁ ଟିପା ଖାତାଟା ବାହାର କରି କହିଲେ: ତୋର ଆଜି କଲିକତା ଯିବାକୁ ହେବ।

:ହଠାତ୍?

: ଗୋଟିଏ ଜରୁରୀ କାମରେ । ସତ୍ୟବ୍ରତ ଟିପାଖାତାରୁ ଗୋଟିଏ ଠିକଣା ବାହାର କରି କହିଲେ, ହେଇ ଦେଖ୍ । କମ୍ପାନୀ ନାମ ହେଉଛି ଏସିଆ ଟ୍ରେଡ଼ିଂ କମ୍ପାନୀ । କ୍ଲାଇଭ୍ ବିଲ୍ଡ଼ିଂ, ନେତାଜୀ ସୁଭାଷ ରୋଡ୍, କଲିକତା ।

: ହଁ ଦେଖିଲି । ତା'ପରେ ?

: ଏଇ କମ୍ପାନୀରେ ବୋଧହୁଏ ରଣଜିତ ରାଉତରାୟ ଚାକିରି କରୁଥିଲେ ।

: କିପରି ଜାଣିଲୁ ?

: ତାଙ୍କର ଗୋଟିଏ ଇନ୍‌ସିଓରେନ୍‌ସ ପଲିସି ଅଛି । ସେଇ ପଲିସିରୁ ଏଇ ଠିକଣା ପାଇଲି ।

: ହେଲା, ଏସିଆ ଟ୍ରେଡ଼ିଂ କମ୍ପାନୀରେ ରଣଜିତ ରାଉତରାୟ ଚାକିରି କରୁଥିଲେ । ମୁଁ ଯାଇ ସେଠାରେ କଣ କରିବି ?

: ତୋର କରିବାର ଅନେକ କଥା ଅଛି । ନୋଟ୍ ବହି ବାହାର କର ।

ସବ୍ୟସାଚୀ ନୋଟ୍ ବହି ବାହାର କରି ପୃଷ୍ଠା ଓଲଟାଇଲେ ।

: ଏକ୍‌ରେ, ଲେଖ-ଏସିଆ ଟ୍ରେଡ଼ିଂ କମ୍ପାନୀରେ ରଣଜିତ୍ ରାଉତରାୟ ନାମକ କେହି ଲୋକ କେବେ କାମ କରୁଥିଲେ କି ନାହିଁ ।

ଦୁଇରେ -ଯଦି କାମ କରୁଥିଲେ, କାହିଁକି ଛାଡ଼ିଲେ ଓ କେବେ ଛାଡ଼ିଲେ ?

ତିନିରେ - ସେଠି ତାଙ୍କର ଦରମା କେତେ ଥିଲା । ଅନ୍ୟ କୌଣସି ଆୟର ସୋର୍ସ ଥିଲା କି ନାହିଁ ?

ଚାରିରେ - ଏସିଆ ଟ୍ରେଡ଼ିଂ କମ୍ପାନୀର ବ୍ୟବସାୟ କ'ଣ ? ଆଉ ସେହି ବ୍ୟବସାୟ ଭାରତ ଭିତରେ ସୀମିତ ନା ଦରିଆ ସେପାରିଯାଏ ବିସ୍ତୃତ ?

ପାଞ୍ଚରେ - ଯଦି ସମ୍ଭବ ହୁଏ ରଣଜିତ୍ ରାଉତରାୟ କେଉଁଠି ରହୁଥିଲେ । ସେଠାରେ ତାଙ୍କର ଲୋକପ୍ରିୟତା, ବଂଧୁବାନ୍ଧବ, ଅନ୍ୟାନ୍ୟ କର୍ମଧାରା ସବୁର ଟିକିନିଖି ଖବର ମୋତେ ଆଣି ଦେବାକୁ ହେବ ଏବଂ ସେ ଖବର ଖୁବ୍ କମ୍ ଦିନ ଭିତରେ ମୋର ଆବଶ୍ୟକ ।

ସବ୍ୟସାଚୀ ନିଜର ଟିପାଖାତାଟି ବନ୍ଦ କରି ମୁହୂର୍ତ୍ତେ ନୀରବରେ ସତ୍ୟବ୍ରତ ମୁହଁକୁ ଚାହିଁ ରହିଲେ : ଓକେ ବସ୍ । ଏହାପରେ ?

: ନା, ଅନ୍ୟ କିଛି ନିର୍ଦ୍ଦେଶ ଆପାତତଃ ନାହିଁ । କ'ଣ ଆଜି ଯାଉଛୁ ତ ?

: ଖୁବ୍ ଗୋଟାଏ ଇଚ୍ଛା ନାହିଁ ବନ୍ଧୁ । କିନ୍ତୁ ତୁ କହୁଛୁ ଯେତେବେଳେ କଥା ତ ରଖିବାକୁ ହେବ । କିନ୍ତୁ ଗୋଟାଏ ସର୍ତ୍ତ ।

: ପୁଣି ସର୍ତ୍ତ କ'ଣରେ ?

: ମୋତେ ଏଥର 'କାବାରେ' ନାଚ ଦେଖାଇବାକୁ ହେବ ।

ସତ୍ୟବ୍ରତ ହୋ ହୋ ହୋଇ ହସିଉଠି । କହିଲେ : ଦିନକୁ ଦିନ ବୟସ କମି ଆସୁଛି ଦେଖୁଛି । ଘରକୁ ଏଇ ସଂବାଦଟା ପଠଇ ଦେବି ?

ସବ୍ୟସାଚୀ ଗମ୍ଭୀର ହୋଇ ବସିଥିଲେ । କହିଲେ : ପ୍ରୟୋଜନଟା ତୋର, ପୁଣି ବଡି ଜରୁରୀ । ମୋର କଛି କହିବାର ନାହିଁ ।

: କିନ୍ତୁ କଲିକତାରେ ଯେଉଁ ଗୋଟାଏ ଦୁଇଟା ହୋଟେଲ୍‌ରେ ସେ ନାଚ ହୁଏ, ସେଠାକୁ ଯିବା ତ ବିପଦ; କାରଣ ପ୍ରଥମତଃ ସେ ନାଚ ବେଆଇନି । ଦ୍ୱିତୀୟରେ ଯେଉଁ ଦର୍ଶକମାନଙ୍କ ପାଇଁ ସେ ନାଚ ହୁଏ, ହୋଟେଲ୍‌ର କର୍ତ୍ତୃପକ୍ଷମାନଙ୍କର ସେହି ଦର୍ଶକମାନେ ଖୁବ୍ ବିଶ୍ୱାସୀ ତୋର ସେହିସବୁ ନାଚ ଭିତରକୁ ପ୍ରବେଶାଧିକାର ଯେ କେତେ ଦୂର ସମ୍ଭବ ହେବ ମୁଁ ଏଠି ବସି କହିପାରିବି କେମିତି !

:ସେ କଥା ମୁଁ କିଛି ଶୁଣିବି ନାହିଁ । ମୁଁ ଏତିକି ଜବାବ ଦେଇପାରେ ଯେ, ନାଚ ଦେଖିବା ପାଇଁ ଯଦି କିଛି ବିପଦର ସମ୍ମୁଖୀନ ହେବାକୁ ହୁଏ, ତେବେ ସେଇଟା ମୋ ରିସ୍କ । ଆଉ ଅନ୍ୟ ସମସ୍ତ ଦାୟିତ୍ୱ ତୋର ।

ସତ୍ୟବ୍ରତ ଲକ୍ଷ୍ୟକଲେ, ସବ୍ୟସାଚୀ ପରିହାସ କରି କହୁ ନାହିଁ । ପ୍ରକୃତରେ କାବାରେ ନାଚ ଦେଖିବା ପାଇଁ ସେ ଖୁବ୍ ଆଗ୍ରହୀ ।

: ହୁଁ, ଠିକ୍ ଅଛି । ମିଷ୍ଟର ମଜୁମ୍‌ଦାରଙ୍କ ନିକଟକୁ ତୋ' ହାତରେ ଖଣ୍ଡେ ଚିଠି ଦେବି । ତୁ ତାଙ୍କୁ ଭେଟିବୁ । ସେ ସବୁ ବ୍ୟବସ୍ଥା କରିଦେବେ ।

ସବ୍ୟସାଚୀ ହଠାତ୍ ଆନନ୍ଦରେ ନାଚି ଉଠି କହିଲେ : ତା' ହେଲେ ମୁଁ ପ୍ରସ୍ତୁତି ଶେଷ କରି ଆସେ ବନ୍ଧୁ । ନୀଳିମାକୁ କହ, ଗୋଟିଏ ରିଜରଭେସନ କରି ରଖିବ । ମୁଁ ସଂଧ୍ୟାବେଳକୁ ଆସି ଆଉ ଯାହା ଆବଶ୍ୟକ ତଥ୍ୟ ତୋଠାରୁ ଜାଣି ଯିବି ।

ଦିଆଲ ଘଡ଼ିରେ ଛଅଟା ବାଜୁଥିଲା । ସଂଧ୍ୟା ।

ଚେମ୍ବରର ଦରଜା ଠେଲି ଭିତରେ ପ୍ରବେଶ କଲେ ସବ୍ୟସାଚୀ ଦାସ ।

ସତ୍ୟବ୍ରତ ଟେଲିଫୋନ ରିସିଭରଟା କାନ୍ଧ ଉପରେ ଥୋଇ କାହା ସହିତ କଥାବାର୍ତ୍ତା ହେଉଥିଲେ । ସବ୍ୟସାଚୀକୁ ଦେଖି ଇଙ୍ଗିତରେ ବସିବାକୁ କହିଲେ ।

ନୀରବତାର କେତୋଟି ମୁହୂର୍ତ୍ତ ମାତ୍ର । ତା'ପରେ ରିସିଭରଟା ଟେଲିଫୋନ ଯନ୍ତ୍ର ଉପରେ ଥୋଇ ଦେଇ ସତ୍ୟବ୍ରତ ଗୋଟିଏ ଦିର୍ଘଶ୍ୱାସ ତ୍ୟାଗ କଲେ ।

: କିରେ, ହଠାତ୍ ଦିର୍ଘଶ୍ୱାସ କାହିଁକି ?

: ପ୍ରେମର ପରିଣିତି କଥା ଚିନ୍ତା କରୁଚି ।

ସବ୍ୟସାଚୀ ହୋ ହୋ ହୋଇ ହସିଉଠି କହିଲା : ପ୍ରେମ, ତୁ ଆଉ ତା' ପରିଣିତି ! ହସେଇଲୁ ସତ୍ୟ । ପଥରକୁ ଚିପୁଡ଼ିଲେ ବି ହୁଏତ କେବେ ଥରେ ପାଣି ବାହାରି ପଡ଼ିବ, ଆଉ ତୁ.....

ସବ୍ୟସାଚୀ ପୁଣି ହସିଉଠିଲେ ।

: ଆରେ ମୋ କଥା ମୁଁ ଭାବୁନାହିଁ, ମୁଁ ଭାବୁଛି ସଂଜୀବ ଓ ଲାୟଲି କଥା । ସେମାନେ ଏତେବେଳଯାଏ ହୋଟେଲ୍‌ରୁ ଫେରି ନାହାନ୍ତି; ଅଥଚ ସଂଜୀବର ଆଜି ମୋ' ସହିତ ଆପଏଣ୍ଟମେଣ୍ଟ ଥିଲା ।

: ମୁଁ ଆସିଛି ମିଷ୍ଟର ମହାପାତ୍ର । ଠିକ୍ ସେତିକିବେଳେ କାହାର କଣ୍ଠସ୍ୱର ଶୁଣି ଦୁଇ ଜଣଯାକ ଦେଖିଲେ, ସଂଜୀବ ଦୁଆର ଠେଲି ଭିତରକୁ ପଶୁଛି ।

ସବ୍ୟସାଚୀ କହିଲେ : ତୋର କ୍ଲାଏଣ୍ଟ୍ ଆସିଗଲେଣି । ତୁ ଏଥର କଥାବାର୍ତ୍ତା କର । ମୁଁ ବାହାରିଲି ।

:ଆଚ୍ଛା, ମୁଁ ତୋର ସଫଳତା କାମନା କରୁଛି ।

ସବ୍ୟସାଚୀ ଯେଉଁ ଚେୟାରଟି ଛାଡ଼ି ଚାଲିଗଲେ, ସଂଜୀବ ସେଇ ଚେୟାରଟି ଅଧିକାର କରି ବସୁ ବସୁ କହିଲା : ଟିକିଏ ଡ଼େରିହୋଇଗଲା ବୋଧହୁଏ ।

: ନା ଡ଼େରି ନୁହେଁ ଯେ କିନ୍ତୁ ରୀତିନୀତି ତ ବିଶେଷ ସୁବିଧା ମନେହେଉନାହିଁ । ଅମ୍ଭରକୁ ଫୋନ୍ କରିଥିଲି, ଲାୟଲି ଏପର୍ଯ୍ୟନ୍ତ ଫେରି ନାହିଁ ।

ସଂଜୀବ ସ୍ମିତହସି କହିଲା : ଆପଣ ଆମ ଘରୁ ଚାଲି ଆସିବା ପରେ ଆମେ କଟକ ଫେରିଆସୁଥିଲୁ କିନ୍ତୁ ଲାୟଲି କହିଲା, ଟିକିଏ ସମୁଦ୍ର ଢ଼େଉ ଦେଖିବା ପାଇଁ ।

: ହୁଁ, ସଂଗେ ସଂଗେ ଗାଡ଼ିର ଚକ ସେଉଠୁ ପୁରୀ ଆଡକୁ ମୋହିଁଲା । ବେଶ୍, ଭଲକଥା, ମୋର ଆପତ୍ତି କରିବାର କିଛି ନାହିଁ; କିନ୍ତୁ ଯାହା ସହିତ ଏତେ ଅନ୍ତରଙ୍ଗତା, ପ୍ରଥମେ ତାକୁ ଚିହ୍ନିବାକୁ ଚେଷ୍ଟା କରନ୍ତୁ ।

: ନା, ଲାୟଲି ଖୁବ୍ ଭଲଝିଅ ।

: ଏଇ ଦୁଇ ଦିନର ପରିଚୟରେ ଆପଣ ତାକୁ ଚିହ୍ନିନେଲେ ?

: ମୋର ବଂଧୁ ଜର୍ଜର ସେ ଥିଲା ବାନ୍ଧବୀ । ଜର୍ଜକୁ ଆପଣ ଦେଖି ନାହାନ୍ତି । ତା'ର ସ୍ପେକୁଲେସନ କେବେ ରଙ୍ଗ ହୁଏ ନାହିଁ । ତେଣୁ ଲାୟଲିକୁ ଚିହ୍ନିବା ପାଇଁ ମୋର ଆଉ ବର୍ଷ ବର୍ଷର ପରୀକ୍ଷା ନିରୀକ୍ଷା ଆବଶ୍ୟକ ନାହିଁ ।

: ତା'ହେଲେ ପ୍ରଥମ ଦର୍ଶନରେ ଆପଣ କ'ଣ ଲାୟଲିକୁ ଏଙ୍ଗେଜ୍ କରିଦେଲେ ? ସତ୍ୟବ୍ରତ ସ୍ମିତହସି କହିଲେ ।

ସଂଜୀବ ଅଳ୍ପ ହସି, ଅନ୍ୟ ଆଡକୁ ମୁହଁ ବୁଲେଇ ବାଁରେଇ ହେଲାପରି କହିଲା : ଆପଣ ଯାହା ଭାବନ୍ତୁ ପଛେ, ଲାୟଲି କିନ୍ତୁ ଖୁବ୍ ଭଲ ଝିଅ । ସତ୍ ଆଉ ମହତ୍ ପଥରେ ଆଗେଇବା ପାଇଁ ଦୁନିଆର ବହୁ ପ୍ରଲୋଭନ ସେ ଏଡେଇ ଆସିଛି । ତା'ର ଜୀବନଧାରଣର କାହାଣୀ ଶୁଣିଲେ ଆପଣଙ୍କ ଆଖିରେ ଲୁହ ଜକେଇ ଆସିବ ।

: ହୁଁ, ଦୁନିଆରେ ଲାୟଲି ପରି ବହୁ ଝିଅ ଅଛନ୍ତି ସଂଜୀବବାବୁ । ଜୀବନକୁ ସୁସ୍ଥ ଆଉ ସୁନ୍ଦର ଭାବରେ ଗଢ଼ିବା ପାଇଁ ସମସ୍ତଙ୍କର ଇଚ୍ଛା; କିନ୍ତୁ ପରିବେଶ ଆଉ ପରିସ୍ଥିତି ସମସ୍ତଙ୍କ ମତର ଅନୁକୂଳ ହୁଏନାହିଁ । ଛାଡନ୍ତୁ । ଆପଣଙ୍କୁ ଯେଉଁଥି ପାଇଁ ଡାକିଥିଲି, ସେଇ କଥା କେତୋଟି ଶୁଣି ସାରିବା ପରେ ମୁଁ ଆପଣଙ୍କୁ ଛାଡ଼ିଦେବି । ବେଶି ସମୟ ଅଟକାଇବି ନାହିଁ । ଆଜି ଆଉ କିଛି ନାଇଟ୍ ପ୍ରୋଗ୍ରାମ ଅଛି ବୋଧେ ?

: ନା, ଖାଲି ଲାୟଲିକୁ ହୋଟେଲରେ ପହୁଞ୍ଚାଇଦେଲେ ମୋର ଛୁଟି । ମୁଁ ସିଧା ଘରକୁ ପଳାଇବି ।

: ଲାୟଲି ତା'ହେଲେ...

: ତଳେ ଗାଡ଼ିରେ ଅପେକ୍ଷା କରିଛି । ଏଠି କ'ଣ ଖୁବ୍ ଡେରି ହେବ ? ତା'ହେଲେ ମୁଁ ତାକୁ ହୋଟେଲରେ ଛାଡ଼ି ଦେଇ ଆସନ୍ତି !

ସତ୍ୟବ୍ରତ ମୁହୂର୍ତ୍ତେ କ'ଣ ଚିନ୍ତା କରି କହିଲେ : ନା ନା, ମୁଁ ସଙ୍ଗେ ସଙ୍ଗେ ଆପଣଙ୍କୁ ଛାଡ଼ିଦେଉଛି । ଖାଲି ଦୁଇ ଚାରିଟା ପ୍ରଶ୍ନ ।

: କ'ଣ ପଚାରନ୍ତୁ ।

ସତ୍ୟବ୍ରତ ଚେଆରରୁ ଉଠି ଠିଆହେଲେ । ଝରକା ପାଖକୁ ଯାଇ ଚାହିଁଲେ ବାହାରକୁ । ତଳେ ଲନ୍‌ରେ ସଂଜୀବର ମଟର ଗାଡ଼ିଟା ଥୁଆହୋଇଛି ।

: ଆଚ୍ଛା, ଆପଣଙ୍କର ନିଶ୍ଚୟ ମନେଥିବ ଗୋକୁଳି ଆଉ ମିଲଖା ସିଂ ପୂର୍ବରୁ ଆପଣଙ୍କ ଘରେ ଅନ୍ୟ କେହି ଚାକର ଥିଲେ ?

: ନଟକକା । ସେ ଆମ ଘରେ ଅନେକ ପୁରୁଣା ଲୋକ । ଘର ମଣିଷ ଭଳି । ଆମେ କେହି ତାଙ୍କୁ ଚାକର ବୋଲି ଭାବିନାହିଁ । ସେଇ ତ ମୋତେ କୋଳେଇ କାଖେଇ ମଣିଷ କରିଥିଲେ ।

: ସେ କୁଆଡ଼େ ଗଲେ ?

: ବୟସ ଅନେକ ହୋଇଥିଲା । ମୁଁ ଥରେ କଲିକତାରୁ ଫେରି ଶୁଣିଲି ନଟକକା ଆଉ ନାହାନ୍ତି । ଦୁଇ ତିନିମାସ ହେଲା ମରିଯାଇଛନ୍ତି ।

: କିମିତି ମଲା, କି ରୋଗରେ ? କିଛି ବୁଝିଥିଲେ ?

: ନା, ପ୍ରୟୋଜନ ମନେକରି ନ ଥିଲି; କିନ୍ତୁ ହଠାତ୍ ନଟକକା ପ୍ରଶ୍ନ କାହିଁକି ? ସେତେବେଳେ ଆଉ ଜଣେ ବି ଆମ ଘରେ ଥିଲା, ଗୋରୁଗାଇ ଦେଖାଚାହାଁ କରେ, ବାହାରର କାମଦାମ କରେ, ତା' ନାଁଟା ରଥିଆ, ଖୁବ୍ ସୁନ୍ଦର ସ୍ୱାସ୍ଥ୍ୟ ।

: ତା'ର କ'ଣ ହେଲା ? ଆପଣ କ'ଣ ଆଉ ଥରେ ଫେରି ତା'ର ମୃତ୍ୟୁ ସଂବାଦ ଶୁଣିଲେ ନା କ'ଣ ?

ସଂଜୀବ ହସି ହସି କହିଲା : ନା, ତା'ର ମୃତ୍ୟୁ ସଂବାଦ ନୁହେଁ ଶୁଣିଲି ସେ ଚାକିରି ଛାଡ଼ି ଚାଲିଯାଇଛି ।

: ତା' ପରେ ?

: ତା'ପରେ ଆଉ କ'ଣ ? ଏଇ ଗୋକୁଳି ଆଉ ମିଲିଖା ସିଂ ଅଛନ୍ତି ।

: ହୁଁ, ଆଚ୍ଛା, ଆପଣ ଏଥର ଯାଆନ୍ତୁ । ଆପାତତଃ ଆଉ କୌଣସି ପ୍ରଶ୍ନ ନାହିଁ । ସତ୍ୟବ୍ରତ ଏକ ଦୃଷ୍ଟିରେ ତଳ ଲନ୍ ଆଡ଼େ ଚାହିଁଥିଲେ ।

ସଂଜୀବ ସତ୍ୟବ୍ରତଠାରୁ ମୁକ୍ତି ପାଇ ଉଠିବାକୁ ଉଦ୍ୟତ ହେଉଥିଲା । ସତ୍ୟବ୍ରତ ବୁଲିପଡ଼ି ସଂଜୀବକୁ ଚାହିଁ ପଚାରିଲେ ଗାଡ଼ି ଭିତରେ ଗୋଟାଏ ପଞ୍ଜୁରି ଥିବା ପରି ମନେହେଉଛି ।

: ହଁ, ହଁ, ଗୋଟାଏ ପଞ୍ଜୁରି । ଲାୟଲି ଆମ ଘରୁ ଗୋଟିଏ ଶାରୀ ଆଣିଛି ।

: ଶାରୀ ? ଲାୟଲିର ଶାରୀ କ'ଣ ହେବ ?

: ଲାୟଲି କହିଲା, ଶୁଆ, ଶାରୀଗୁଡ଼ିକ ତାକୁ କୁଆଡ଼େ ଭାରି ଭଲ ଲାଗୁଛନ୍ତି । ସେଥିରୁ ଗୋଟିଏ ନେଇ ତା' ରୁମ୍‌ରେ ରଖିବାକୁ ଭାରି ଇଚ୍ଛା ।

: ହୁଁ, ତା'ପରେ ଆପଣ ମୁଠା ଫିଟେଇଦେଲେ ।

: କ'ଣ ହେବ ସେଗୁଡ଼ା ? ଏତେ ଶୁଆ-ଶାରୀ, ପାରାପଲ କିଏ ସେଗୁଡା ସମ୍ଭାଳିବ ? ଧୀରେ ଧୀରେ ସବୁଯାକ ମୁଁ ବାଣ୍ଟିଦେବି; ନ ହେଲେ ଦିନେ ସବୁଯାକ ଉଡେଇଦେବି ।

ସତ୍ୟବ୍ରତ ଆଉ କିଛି କହିଲେ ନାହିଁ । ନୀରବରେ ଆଖିବୁଜି ଚିନ୍ତା କରିବାକୁ ଲାଗିଲେ ।

ସଂଜୀବ ନମସ୍କାର ଜଣାଇ ଉଠିଯାଇଥିଲା ।

ସତ୍ୟବ୍ରତ ଜାଣିପାରିଥିଲେ, ଆଉ ବୁଝି ପାରିଥିଲେ ସଂଜୀବ ମନର ଉତ୍କଣ୍ଠା ।

କିନ୍ତୁ...

ଏହି ଘଟଣାର ଚାରିଦିନ ପରର କଥା । ଏହି ଚାରିଟି ଦିନରେ ଉଲ୍ଲେଖଯୋଗ୍ୟ ଘଟଣା ଆଉ କିଛି ଘଟି ନଥିଲା ।

ରାତି ସେତେବେଳକୁ ବୋଧହୁଏ ଦୁଇଟା ହେବ । ସତ୍ୟବ୍ରତ ଖୁବ୍ ନିଦରେ ଶୋଇ ପଡିଥିଲେ; କିନ୍ତୁ ଟେଲିଫୋନ୍‌ଟା ବାଜିଚାଲିଥିଲା ।

ସତ୍ୟବ୍ରତ ଶୋଇବା ବେଳେ ଟେଲିଫୋନ୍‌ଟା ଶେଯପାଖରେ ରଖି ଶୁଅନ୍ତି ।

ଏକ ସମୟରେ ନିଦ ଭାଙ୍ଗିଗଲା ସତ୍ୟବ୍ରତଙ୍କର ।

: ହ୍ୟାଲୋ ? ନିଦ ମଳମଳ ଆଖିରେ ସେ ରିସିଭରଟା ଉଠାଇଲେ ।

ଅପର ପ୍ରାନ୍ତରୁ ଏକ ଆକୁଳ ନାରୀ କଣ୍ଠର ସ୍ୱର ।

: ମୁଁ ଲାୟଲି କହୁଛି । ଆପଣ ଶୀଘ୍ର ହୋଟେଲକୁ ଚାଲିଆସନ୍ତୁ । ମୁଁ ବଡ଼ ବିପଦରେ ପଡିଛି । ଯେକୌଣସି ମୁହୂର୍ତ୍ତରେ...

ସତ୍ୟବ୍ରତ ଆଉ କିଛି ଶୁଣିପାରିଲେ ନାହିଁ । ଆଖିରୁ ତାଙ୍କର ନିଦ ଛାଡ଼ିଯାଇଥିଲା । ହ୍ୟାଲୋ, ହ୍ୟାଲୋ କହି ଦୁଇ ଚାରି ଥର ସେ ଅପର ପ୍ରାନ୍ତ ସହିତ ଯୋଗସୂତ୍ର ସ୍ଥାପନ କରିବାକୁ ଚେଷ୍ଟାକଲେ; କିନ୍ତୁ ଲାୟଲି କିଛି ଉତ୍ତର ଦେଲାନାହିଁ । ତଥାପି ସତ୍ୟବ୍ରତ ରିସିଭରଟା କାନରେ ଦେଇଥିଲେ । ତାଙ୍କର ମନେହେଉଥିଲା ଯେପରି ଲାୟଲି ଟେଲିଫୋନ୍ ରିସିଭରଟା ଧରି ଏଯାଏ ଠିଆହୋଇଛି ।

କିନ୍ତୁ କାହିଁ ? ହ୍ୟାଲୋ ହ୍ୟାଲୋ କରି ପାଞ୍ଚ ମିନିଟ୍‌ଯାଏ ସତ୍ୟବ୍ରତ କିଛି ଉତ୍ତର ପାଇଲେ ନାହିଁ ।

ତା'ହେଲେ ? ଲାୟଲି କ'ଣ କୌଣସି ବିପଦର ସମ୍ମୁଖୀନ ହେଲା ? ଲାୟଲି ଟେଲିଫୋନ୍ କରୁଥିବା ଅବସ୍ଥାରେ କେହି କ'ଣ ଆସି ତା' ମୁହଁ ବନ୍ଦ କରିଦେଲା ?

ଶେଷରେ ସତ୍ୟବ୍ରତ ରିସିଭରଟା ଟେଲିଫୋନ୍ ଯନ୍ତ୍ର ଉପରେ ଥୋଇଦେଲେ ।

ଅଳ୍ପ ସମୟ ପରେ ପୁଣି ରିଙ୍ଗହେଲା ।

: ହ୍ୟାଲୋ ? କିଏ ମିଷ୍ଟର କାପୁର ? ସତ୍ୟବ୍ରତ ରିସିଭର କାନରେ ଦେଇ ପଚାରିଲେ ।

: ହଁ, ହଁ, ମୁଁ କାପୁର କହୁଛି ।

: ଲାୟଲି ଖୁଣ୍ ହେଇଛି ନିଶ୍ଚୟ । ସତ୍ୟବ୍ରତଙ୍କର ପ୍ରଶ୍ନ ।

: ଆପଣ ଏସବୁ ଜାଣିଲେ କିପରି ମିଷ୍ଟର ମହାପାତ୍ର ? ଅପର ପ୍ରାନ୍ତରୁ ମିଷ୍ଟର କାପୁରଙ୍କର ବିଚଳିତ କଣ୍ଠସ୍ୱର ଶୁଣାଯାଉଥିଲା ।

ସତ୍ୟବ୍ରତ ତାଙ୍କ ପ୍ରଶ୍ନକୁ ଏଡେଇ ଯାଇକହିଲେ : ମୋର କ'ଣ ହୋଟେଲକୁ ଯିବା ପ୍ରୟୋଜନ ହେବ ମିଷ୍ଟର କାପୁର ?

: ଆସିବେ ନାହିଁ ? ମୋର ଏପରି ଅସହାୟ ଅବସ୍ଥାରେ...

: ପୋଲିସ୍‌କୁ ଶୀଘ୍ର ଖବର ଦିଅନ୍ତୁ । ମୁଁ ସଙ୍ଗେ ସଙ୍ଗେ ଯାଉଛି ।

ସତ୍ୟବ୍ରତ ରାତ୍ରି ପୋଷାକଟା ପାଲଟୁ ପାଲଟୁ ଚିନ୍ତା କରୁଥିଲେ, ଲାୟଲିର ସନ୍ଦେହଟା ଏତେ ଶୀଘ୍ର ସତ୍ୟରେ ପରିଣତ ହେବ, ସେ ମୋଟେ ଆଶା କରି ନ ଥିଲେ । ସେଇଥି ପାଇଁ ଲାୟଲିର ନିରାପତ୍ତା ସମ୍ବନ୍ଧରେ କିଛି ସେ ଚିନ୍ତା କରିପାରି ନ ଥିଲେ । ବର୍ତ୍ତମାନ ଲାୟଲିର ମୃତ୍ୟୁ ପାଇଁ କେହି ଯଦି ତାଙ୍କୁ ଦାୟୀକରେ, ତେବେ ସେ ଅସ୍ୱୀକାର କରିପାରିବେ ନାହିଁ ।

ସମୟ ନଷ୍ଟ ନ କରି ଯଥା ସମ୍ଭବ ଶୀଘ୍ର ସତ୍ୟବ୍ରତ ଯାଇ ଅମ୍ବର ହୋଟେଲରେ ପହଞ୍ଚି ଗଲେ । ଅମ୍ବରର ସଦର ଫାଟକରେ ତାଙ୍କୁ ଅପେକ୍ଷା କରି ଠିଆ ହୋଇଥିଲେ ମିଷ୍ଟର କାପୁର ଆଉ ରମଜାନ । ଆଶ୍ଚର୍ଯ୍ୟ ହୋଇ ସତ୍ୟବ୍ରତ ହୋଟେଲ ଭିତରକୁ ପଶିଲେ । ମାତ୍ର କେତେ ମିନିଟ୍ ଆଗରୁ ହୋଟେଲରେ ଗୋଟାଏ ଖୁଣ୍ ହୋଇଯାଇଛି, ଅଥଚ...

ମିଷ୍ଟର କାପୁର ସତ୍ୟବ୍ରତ ମହାପାତ୍ରଙ୍କ ମନୋଭାବ ବୁଝିପାରି କହିଲେ : କେହି ଜାଣି ନାହାନ୍ତି । ଅଧିକ ରାତି ହୋଇଥିବାରୁ ସମସ୍ତେ ନିଜ ନିଜ ଘରେ ଶୋଇଛନ୍ତି, ମୁଁ କାହାରିକୁ ଉଠାଇ ବର୍ତ୍ତମାନ ଗୋଟାଏ ଆତଙ୍କ ସୃଷ୍ଟି କରିବା ପାଇଁ ପ୍ରସ୍ତୁତ ନୁହେଁ ।

ସତ୍ୟବ୍ରତ ନୀରବରେ ସବୁ ଶୁଣି ଶୁଣି ମିଷ୍ଟର କାପୁରଙ୍କ ପଛେ ପଛେ ଆଗେଇଥିଲେ । ରିସେପ୍‌ସନ କାଉଣ୍ଟର ପାଖରେ ଠିଆହୋଇ ମିଷ୍ଟର କାପୁର କହିଲେ : ମତେ ଯେତେବେଳେ ରମଜାନ୍ ଡାକିଲା ମୁଁ ପ୍ରଥମେ ଆସି ଦେଖିଲି, ଏଇ ଟେଲିଫୋନ୍‌ର ରିସିଭରଟା ଇମିତି ଝୁଲୁଚି । ରିସିଭରଟା କିପରି ଝୁଲୁଥିଲା ଦେଖାଇଦେଲେ ।

ତା'ପରେ ସେମାନେ ପଶିଲେ ରିସେପ୍‌ସନ କାଉଣ୍ଟର ପାଖରେ ଥିବା ଗୋଟାଏ ବାଥ୍‌ରୁମ୍ ଭିତରକୁ । ସତ୍ୟବ୍ରତ ଦେଖିଲେ, ଶଙ୍ଖ ମଲମଲ ପଥର ଉପରେ ଲାୟଲିର ଶଙ୍ଖ ଧବଳ ଦେହଟା ନିସ୍ତେଜ ହୋଇ ପଡିଛି ।

: ଆହା ବିଚାରୀ ! ସତ୍ୟବ୍ରତ ଲାୟଲି ପାଖକୁ ଆଗେଇ ଯାଇ ନୀରବ ହୋଇଗଲେ । ଲାୟଲି ଉପରକୁ ମୁହଁକରି ଶୋଇଥିଲା । ଆଖି ଯୋଡାକରେ ଏକ ବିସ୍ମୟଭାବ ପ୍ରକାଶ ପାଇଥିଲା । ମୁହଁଟା କିପରି ଅପ୍ରାକୃତିକ ମନେହେଉଥିଲା । ଲାୟଲିକୁ ଯେ ଶ୍ୱାସରୁଦ୍ଧ କରାହୋଇ ହତ୍ୟା କରାହୋଇଛି, ସତ୍ୟବ୍ରତ ବୁଝିପାରିଥିଲେ ।

ଲାୟଲି ଉପରୁ ଆଖି ଫେରାଇ ମିଷ୍ଟର କାପୁରଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ : ଲାୟଲିର ମୃତ୍ୟୁ ସଂବାଦ ପ୍ରଥମେ କିଏ ଆପଣଙ୍କୁ ଦେଲା ?

: ରମଜାନ ।

ସତ୍ୟବ୍ରତ ଚାହିଁଲେ ରମ୍‌ଯାନ ମୁହଁକୁ ।

: ଜୀ ହଜୁର । ରମଜାନ ହାତ ମଳି କହିଲା ।

: ତମେ ଲାୟଲିର ମୃତଦେହ କେତେବେଳେ ଦେଖିଲ ?

ରମଜାନ କାନ୍ଦିଲା ସ୍ୱରରେ କହିଲା : ଆଉ ଟିକିଏ ଆଗରୁ ମୁଁ ଯଦି ଉଠିପଡିଥାଆନ୍ତି, ତା' ହେଲେ ଲାୟଲି ମେମ୍ ସାହେବକୁ ମରିବାକୁ ହୋଇ ନ ଥାନ୍ତା । ମୁଁ ଏଇ ଶିଡ଼ି ଉପରେ ହଜୁର । ତଳକୁ ଓହ୍ଲାଉ ଓହ୍ଲାଉ ଦେଖିଲି, କିଏ ଜଣେ କଳା ପୋଷାକ ପିନ୍ଧିଥିବା ଲୋକ, ଲାୟଲି ମେମ୍‌ସାହେବର ଗଳା ଚିପି ଧରି ବାଥ୍‌ରୁମ୍ ଆଡକୁ ଟାଣି ଟାଣି ନେଉଛି । ପ୍ରଥମେ ମୁଁ ଘଟଣାଟା ବୁଝିପାରି ନ ଥିଲି । ତଥାପି ଛୁଟିଗଲି ବାଥ୍‌ରୁମ୍ ଭିତରକୁ; କିନ୍ତୁ କିଛି କରି ପାରିଲି ନାହିଁ । ସେହି କଳାପୋଷାକ ପିନ୍ଧିଥିବା ଲୋକଟା ଲାୟଲି ମେମ୍‌ସାହେବକୁ ବାଥ୍‌ରୁମ୍ ଭିତରେ ଶୁଆଇ ଦେଇ ବାହାରି ଆସୁଥିଲା । ମୁଁ ଲୋକଟାକୁ ଧରିବାକୁ ଚେଷ୍ଟା କରିବା ଆଗରୁ ସେ ମୋ ପେଟରେ ଏତେ ଜୋର୍ ଘୁସିଟାଏ ମାରିଲା ଯେ, ମୁଁ ସଙ୍ଗେ ସଙ୍ଗେ ତଳେ କଚାଡ଼ି ହୋଇପଡିଲି । ତା'ପରେ ନିଜକୁ ସମ୍ଭାଳି ଉଠି ଦେଖିଲାବେଳକୁ ଲୋକଟା କୁଆଡ଼େ ଅଦୃଶ୍ୟ ହୋଇଯାଇଛି ।

ରମ୍‌ଜାନ ନୀରବ ହେଲା ।

: ତା'ପରେ ତମେ କ'ଣ କଲ ?

: ମୁଁ ସଙ୍ଗେ ସଙ୍ଗେ ଯାଇ କାପୁର ସାହେବଙ୍କୁ ଡାକିଲି । ସେ ଛୁଟିଆସିଲେ । ଆମେ ଦୁଇଜଣଯାକ ଆସି ଲାୟଲି ମେମ୍ ସାହେବକୁ ଏହିପରି ଅବସ୍ଥାରେ ଦେଖିଲୁ ।

: ତା'ପରେ ? ସତ୍ୟବ୍ରତ ଏଥର ମିଷ୍ଟର କାପୁରଙ୍କ ମୁହଁକୁ ଅନାଇଲେ ।

: ମୁଁ ଆଉ କାହାରିକୁ ଘଟଣାଟା ନ ଜଣାଇ, ବାଥ୍‌ରୁମ୍ ଦୁଆରଟା ବନ୍ଦ କରି ଦେଇ ଆପଣଙ୍କ ନିକଟକୁ ଫୋନ୍ କଲି । ମିଷ୍ଟର କାପୁର କହିଲେ ।

: ହୁଁ, ଆଚ୍ଛା ରମଜାନ୍, ଯେଉଁ ଲୋକଟି କଳା ପୋଷାକ ପିନ୍ଧି ଥିଲା, ସେ ଏହି ହୋଟେଲ ଭିତରୁ କିଏ ହୋଇପାରେ ବୋଲି ତମର ଧାରଣା ?

: ନା, ହଜୁର । ମୁଁ ତା'ର ଚେହେରା ଦେଖିପାରି ନାହିଁ ।

: ତଥାପି ଉଚ୍ଚତାରେ, ଆକାର ପ୍ରକାରରେ...

ରମଜାନ ଅଙ୍ଗ ଅଙ୍ଗ ହୋଇ ମିଷ୍ଟର କାପୁରଙ୍କ ଆଡକୁ ଚାହିଁଲା । ସତ୍ୟବ୍ରତ ସେ ପ୍ରସଙ୍ଗକୁ ଏଡେଇ ଯାଇ ପୁଣି ପଚାରିଲେ : ତମେ ଏତେ ରାତିରେ କାହିଁକି ଉଠିଥିଲ ?

: ମୁଁ ସେଇ ବାଥ୍‌ରୁମକୁ ଯିବା ପାଇଁ ଉଠିଥିଲି ହଜୁର ।

: ହୁଁ ତା'ହେଲେ...

ସତ୍ୟବ୍ରତର କଥା ଶେଷହେଲା ନାହିଁ । ବାହାରେ ଗାଡ଼ି ଅଟକିବାର ଶବ୍ଦ ଶୁଣି ମିଷ୍ଟର କାପୁର କହିଲେ : ପୋଲିସ୍ ଲରି ଆସିଲା ବୋଧେ ! ସେ ସେଇ ଆଡକୁ ଆଗେଇ ଗଲେ ।

ସତ୍ୟବ୍ରତ ସେଠାରେ ଆଉ ଅପେକ୍ଷା ନକରି ସିଧା ଉପରକୁ ଉଠିଗଲେ ଲାୟଲି ରୁମକୁ । ଦୁଆରଠେଲି ଭିତରକୁ ପଶିଲେ । ଧୀର ନୀଳ ଆଲୋକର ବନ୍ୟା ।

ସତ୍ୟବ୍ରତ ମେନ୍ ଲାଇଟ୍‌ଟା ଜଳାଇ, ଦେଖିଲେ । ମନେହେଲା ଆସବାବପତ୍ର ସବୁ ଠିକ୍ ଅଛି । ଅନ୍ୟ କେହି ରୁମ୍‌ରେ ପଶି କିଛି ଘଣ୍ଟାଚକଟା କରି ନାହିଁ । ସତ୍ୟବ୍ରତ କୌଣସି ବସ୍ତୁକୁ ସ୍ପର୍ଶ ନ କରି କେବଳ ଆଖି ବୁଲାଇ ଯାଉଥିଲେ । ତାଙ୍କ ପାଦଟା ହଠାତ୍ ଏକ ନରମ ବସ୍ତୁ ଉପରେ ପଡ଼ିବା ଭଳି ମନେହେଲା । ସେ ଦେଖିଲେ, ପାଦତଳେ ଗୋଟାଏ ଶାରୀ ।

ତାଙ୍କର ସମଗ୍ର ଶରୀରଟା ରୋମାଞ୍ଚିତ ହୋଇଉଠିଲା ।

ଏଇ ଶାରୀଟିକୁ ଲାୟଲି ନିଶ୍ଚୟ ଆଣିଥିଲା ସଂଜୀବଠାରୁ । କିନ୍ତୁ ଶାରୀଟାକୁ ମାରି ଏଠାରେ କିଏ ପକାଇଯାଇଛି ? ପଞ୍ଜୁରିଟା ବା ଗଲା କୁଆଡ଼େ ?

ସତ୍ୟବ୍ରତଙ୍କ ଭାବନା ଶେଷ ହେଲା ନାହିଁ । ସେ ବାହାରେ ଭାରି ଜୋତାର ଶବ୍ଦ ଶୁଣିବାକୁ ପାଇଲେ, ବୋଧହୁଏ ପୋଲିସ୍ ଅଫିସର ଲାୟଲି ଘରକୁ ଆସୁଛନ୍ତି ।

ସତ୍ୟବ୍ରତ କ୍ଷିପ୍ରହସ୍ତରେ ଶାରୀଟାକୁ ତଳୁ ଉଠାଇ ଝରକା ବାଟେ ବାହାରକୁ ଫିଙ୍ଗି ଦେଲେ ।

ପୋଲିସ୍ ଅଫିସର ନୀଳମଣି ସାମନ୍ତରାୟ ସତ୍ୟବ୍ରତଙ୍କୁ ଦେଖି ଆନନ୍ଦରେ ଚିତ୍କାର କରି ଉଠିଲେ । କହିଲେ : ଅବଶ୍ୟ ମିଷ୍ଟର କାପୁରଙ୍କ ମୁହଁରୁ ଆପଣ ଆସିଥିବା କଥା ମୁଁ ଶୁଣିଲି । ତା'ପରେ, କ'ଣ ମନେ ହେଉଛି ?

ସତ୍ୟବ୍ରତ କହିଲେ : ମୁଁ ତ ମାତ୍ର ଆପଣଙ୍କ ଆସିବାର ପାଞ୍ଚ ମିନିଟ୍ ପୂର୍ବରୁ ଆସିଛି । ତେବେ ଲାୟଲିକୁ ଦେଖି ମନେ ହେଲା, କେହି ତା'ର ଶ୍ୱାସରୁଦ୍ଧ କରି ତାକୁ ହତ୍ୟା କରିଛି । ଯା'ହେଉ, ମୋର ଧାରଣା ହତ୍ୟାକାରୀ ନିଶ୍ଚୟ ଏଇ ହୋଟେଲ ଭିତରେ କେଉଁଠି ଆତ୍ମଗୋପନ କରି ରହିଛି । ପ୍ରଥମେ ଆପଣ କଡ଼ା ପହରାର ବ୍ୟବସ୍ଥା କରନ୍ତୁ । ତା'ପରେ ସମସ୍ତ ବୋର୍ଡର ଓ କର୍ମଚାରୀମାନଙ୍କୁ ଏକତ୍ର କରନ୍ତୁ । ମୁଁ ଟିକିଏ ସ୍ୱତନ୍ତ୍ର ଭାବରେ କେତେକ ସ୍ଥାନ ବୁଲି ଦେଖିଆସୁଛି ।

ତା'ପରେ ହୋଟେଲ ଅମ୍ବରରେ ଆଲୋଡ଼ନ ସୃଷ୍ଟି ହୋଇଗଲା । ଗୋଟିକ ପରେ ଗୋଟିଏ ରୁମ୍‌ରେ ନକ୍ କରି କର୍ମଚାରୀ ଓ ବୋର୍ଡରମାନଙ୍କୁ ଉଠାଇବାକୁ ପଡ଼ିଲା । ସମସ୍ତେ ନିଦ ମଳମଳ ଆଖିରେ ଉଠି, କବାଟ ଖୋଲି, ସାମ୍ନାରେ ପୋଲିସ୍‌କୁ ଦେଖି ଅବାକ୍ ହୋଇ ଯାଉଥିଲେ ।

ପ୍ରଥମେ ନୀଳମଣି ସାମନ୍ତରାୟ ଗୋଟିଏ ଲିଷ୍ଟ ତିଆରି କଲେ ।

ସେହିଦିନ ରାତିରେ ଅମ୍ବରରେ ମୋଟ୍ ୨୧ ଜଣଙ୍କ ନାମ ତାଲିକା କରାହେଲା ।

ହୋଟେଲର କର୍ମଚାରୀ, ମିଷ୍ଟର କାପୁରଙ୍କୁ ଲଗାଇ ୧୪ ଜଣ । ଅବଶ୍ୟ ଲାୟଲିର ନାଁ ସେ ଲିଷ୍ଟ ଭିତରେ ନ ଥିଲା । ଆଉ ବୋର୍ଡର ଥିଲେ ୭ ଜଣ ।

ବୋର୍ଡରମାନଙ୍କ ମଧ୍ୟରୁ ୩ ଜଣ ମହିଳା, ୩ ଜଣ ପୁରୁଷ ଓ ଗୋଟିଏ ବାଳକ, ବୟସ ୭/୮ ହେବ ।

ନୀଳମଣି ସାମନ୍ତରାୟ ଏହିସବୁ ଲିଷ୍ଟ ଶେଷ କରି, ଜଣ ଜଣ କରି ସମସ୍ତଙ୍କୁ ଉଠାଇଲା ବେଳେ ମିଷ୍ଟର କାପୁର ତାଙ୍କ ସଙ୍ଗେ ସଙ୍ଗେ ଚାଲିଥିଲେ । ସତ୍ୟବ୍ରତ କିନ୍ତୁ ପହଞ୍ଚିଥିଲେ ଯାଇ ମିଷ୍ଟର କାପୁରଙ୍କ ଶୋଇବା ଘରେ । ସେ କ୍ଷିପ୍ରହସ୍ତରେ ମିଷ୍ଟର କାପୁରଙ୍କ ରୁମ୍‌ର କାଗଜପତ୍ର ଗୋଟିକ ପରେ ଗୋଟିଏ ଦେଖି ଚାଲିଥିଲେ । ଅବଶ୍ୟ ଯେଉଁଗୁଡ଼ିକ ବାହାରେ ଥିଲା । ଦୁଇଟା ଷ୍ଟିଲ୍ ଆଲମାରି ଥିଲା ମିଷ୍ଟର କାପୁରଙ୍କ ରୁମ୍‌ରେ; କିନ୍ତୁ ଦୁଇଟିଯାକରେ ତାଲା ପଡ଼ିଥିଲା । ସତ୍ୟବ୍ରତ ସେହି ଆଲମାରି ଦୁଇଟି ଖୋଲିବାକୁ ମୋଟେ ଚେଷ୍ଟା ନ କରି, ଘରର ଉହାଡ଼ିଆ ଜାଗାଗୁଡ଼ିକୁ ଦେଖୁଥିଲେ ।

ଦୁଇ ଆଲମାରି ସନ୍ଧିର ଏକ ଅନ୍ଧାରୁଆ ଜାଗାରେ ହାତକୁ ବୁଲାଇ ସେ ସ୍ତବ୍ଧ ହୋଇଗଲେ । କଳା କନାରେ ଆବୃତ ଗୋଟାଏ ପଦାର୍ଥ । ବାହାରକୁ ଆଣି ଦେଖିଲେ, ଗୋଟାଏ ଲୁହା ପଞ୍ଜୁରି । ପଞ୍ଜୁରି ଉପରେ ଯେଉଁ କଳା କନାଟା ଘୋଡାହୋଇଥିଲା, ସେଇଟା ବୋରଖା ଜାତୀୟ ଗୋଟାଏ ପୋଷାକ ।

ହଠାତ୍ ସତ୍ୟବ୍ରତଙ୍କ ଦେହରେ ଯେପରି ବିଦ୍ୟୁତ ପ୍ରବାହ ଖେଳିଗଲା ।

ତା'ହେଲେ ? ଶାରୀକୁ ମୃତ ଅବସ୍ଥାରେ ସେ ପାଇଲେ ଲାୟଲି ଘରୁ । ଆଉ ଶାରୀର ପଞ୍ଜୁରି ଆସି ମିଷ୍ଟର କାପୁରଙ୍କ ଶୋଇବା ଘରେ । ପୁଣି ପଞ୍ଜୁରି ଉପରେ ଏକ ଆଲଖାଲା । ଆଉ ରମଜାନ କହୁଥିଲା କଳା ପୋଷାକ ପିନ୍ଧିଥିବା ଜଣେ ଲୋକକୁ ସେ ଦେଖିଛି ଲାୟଲିର ଗଳା ଚିପିଧରି ବାଥ୍ରୁମ୍‌କୁ ଟାଣି ଟାଣି ନେଉଥିଲା ।

ଚମତ୍କାର ସଂଯୋଗ !

ସତ୍ୟବ୍ରତ ମନେ ମନେ ଉଲ୍ଲସିତ ହୋଇଉଠିଥିଲେ । ପଞ୍ଜୁରିଟାକୁ ଭଲଭାବରେ ପରୀକ୍ଷା କରି ଦେଖିବା ପାଇଁ ଯାଇ ବାହାରେ ଜୋତାର ଶବ୍ଦ ଶୁଣି ପୁଣି କ୍ଷିପ୍ରହସ୍ତରେ ପଞ୍ଜୁରିଟାକୁ ଯଥା ସ୍ଥାନରେ ରଖିଦେଇ ରୁମ୍‌ରୁ ବାହାରି ଆସୁଥିଲେ; କିନ୍ତୁ ଗୋଡରେ କ'ଣ ଗୋଟାଏ ବାଜିବାରୁ ସେ ନଇଁପଡ଼ି ସେଟିକୁ ତଳୁ ଉଠାଇ ଆଣିବା ବେଳକୁ ରୁମ୍‌ର ଦରଜା ଖୋଲିଗଲା । ସତ୍ୟବ୍ରତ ଚଞ୍ଚଳ ସେଇ ପଦାର୍ଥଟା ପକେଟରେ ରଖିଦେଲେ ।

ମିଷ୍ଟର କାପୁର ବୋଧହୁଏ ମୋଟେ ଏହା ଆଶା କରି ନଥିଲେ ।

ସେ ସତ୍ୟବ୍ରତଙ୍କୁ ତାଙ୍କ ଶୋଇବା ଘରେ ଦେଖି, ଭୂତଦେଖିଲା ପରି ଦୁଇ ପାହୁଣ୍ଡ ପଛକୁ ଘୁଞ୍ଚିଯାଇ, ଆତ୍ମସମ୍ବରଣ କରି ଶୁଖିଲା କଣ୍ଠରେ କହିଲେ : ମିଷ୍ଟର ସାମନ୍ତରାୟ ଆପଣଙ୍କୁ ଡାକୁଛନ୍ତି ।

ସତ୍ୟବ୍ରତ ମିଷ୍ଟର କାପୁରଙ୍କ ରକ୍ତହୀନ ମୁଖମଣ୍ଡଳ ଆଡେ ମୁହୂର୍ତ୍ତେ ଅନାଇ ରହି ସ୍ମିତହସି କହିଲେ : ଏଇଟା ଆପଣଙ୍କ ରହିବା ଘର, ମୁଁ ଜାଣି ନ ଥିଲି ହଠାତ୍ ପଶିଆସିଥିଲି ।

ମିଷ୍ଟର କାପୁର କିଛି କହିଲେ ନାହିଁ ।

ସତ୍ୟବ୍ରତଙ୍କ ପଛେ ପଛେ ସେ ବି ତଳ ତାଲାର ହଲ୍ ଘରେ ଯାଇ ଗୋଟିଏ ଖାଲି ଚେଆର ଉପରେ ବସିପଡ଼ିଲେ ।

ସତ୍ୟବ୍ରତ ଠିଆ ହୋଇ ଦେଖିଲେ, ହଲ୍‌ଘରେ ବାଇଶ ତେଇଶଟି ଚେଆର ଗୋଲାକୃତି ଭାବରେ ସଜାହୋଇ ରହିଛି । ସେଥି ଭିତରୁ ପ୍ରାୟ ଚଉଦ ପନ୍ଦରଟି ଚେଆର ଅଧିକୃତ ହୋଇସାରିଛି । ଆଉ ଦୁଇଜଣ ଲୋକ ଚେଆରକୁ ଆଉଜି ଠିଆ ହୋଇଛନ୍ତି । ସେମାନେ ହୋଟେଲର ତଳିଆ କର୍ମଚାରୀ ହେବେ ହୁଏତ । କିନ୍ତୁ ସମସ୍ତଙ୍କ ମୁହଁରେ ବିସ୍ମୟ !

ସତ୍ୟବ୍ରତ ସମସ୍ତଙ୍କ ଉପରେ ଆଖିବୁଲାଇ ଆଣି ନୀଳମଣି ସାମନ୍ତରାୟଙ୍କ ମୁହଁକୁ ଚାହିଁ ପଚାରିଲେ : ସମୁଦାୟ ଏତିକି ଲୋକ ଅଛନ୍ତି ହୋଟେଲରେ ?

: ନା, ଆହୁରି ଚାରି ପାଞ୍ଚଜଣ ଆସି ନାହାନ୍ତି । ସେମାନେ ଆସୁଛନ୍ତି । ଲୋକ ପଠାଇଛି ଡାକିବା ପାଇଁ । ମିଷ୍ଟର କାପୁର ଉତ୍ତର ଦେଲେ ।

: ପାମେଲା ?

: ପ୍ରେଜେଣ୍ଟ ସାର୍ । ପଛଆଡୁ ପାମେଲାର କଣ୍ଠସ୍ୱର ଶୁଣାଗଲା । ସେ ସେଇ ମୁହୂର୍ତ୍ତରେ ଉପସ୍ଥିତ ହୋଇ ଗୋଟିଏ ଚେଆର ଅଧିକାର କରୁଥିଲା ।

ସତ୍ୟବ୍ରତ ପାମେଲା ମୁହଁକୁ ଚାହିଁ ସ୍ମିତ ହସିଲେ । ପୁଣି ନୀଳମଣି ସାମନ୍ତରାୟଙ୍କ ଆଡ଼େ ବୁଲି ଅନେଇ କହିଲେ : ମିଷ୍ଟର କାପୁର ଖୁବ୍ ଡରିଯାଇଛନ୍ତି ।

ମିଷ୍ଟର କାପୁର ଟିକିଏ ହସିବାକୁ ଚେଷ୍ଟା କରି କହିଲେ : ନା ମିଷ୍ଟର ମହାପାତ୍ର । ମୋର ଡରିବାର କିଛି କାରଣ ନ ଥିଲେ ବି ଏପରି ଏକ ଅପ୍ରୀତିକର ପରିସ୍ଥିତି କଥା ମୁଁ ମୋଟେ ସ୍ୱପ୍ନରେ ଭାବି ନ ଥିଲି ।

: ହୁଁ । ସତ୍ୟବ୍ରତ ପୁଣି ବୁଲି ଚାହିଁଲେ ପାମେଲା ମୁହଁକୁ । କହିଲେ, ଲାୟଲି ପରେ ରିସେପ୍‌ସନିଷ୍ଟର ଚାନ୍‌ସ ନିଶ୍ଚୟ ମିସ୍ ପାମେଲାଙ୍କର ।

: ନା, ନା ମିଷ୍ଟର ମହାପାତ୍ର । ପାମେଲା ସିଟ୍‌ରୁ ଉଠିପଡ଼ି ପ୍ରତିବାଦ କଣ୍ଠରେ କହିଲା : ପୁଣି ଆପଣ ଭୁଲ୍ କରୁଛନ୍ତି । ଲାୟଲି ପରେ ଚାନ୍‌ସଟା ସାନିର ।

: ସାନି ?

: ହଁ ସାନିର । ଏଇ ତ ସାନି ଆସୁଛି ।

ସତ୍ୟବ୍ରତ ଦେଖିଲେ ନାଇଟ୍ ଡ୍ରେସ୍ ପିନ୍ଧି ହାଇ ମାରି ମାରି ଗୋଟିଏ ଝିଅ ଶିଡ଼ିରୁ ତଳକୁ ଓହ୍ଲେଇ ଆସୁଛି । ଗୋଡର ଗତି ଶିଥିଳ । ଅଙ୍ଗର ଆବରଣ ଅସଂଯତ । ହଠାତ୍ ସେ ସାମ୍‌ନାରେ ଏତେ ଲୋକଙ୍କୁ ଦେଖି ବୋଧହୁଏ ଟିକିଏ ବିଚଳିତ ହୋଇପଡିଥିଲା । ତଥାପି ସେହିପରି ଆଳସ୍ୟ ପାଦରେ ଚାଲି ଆସି ପାମେଲା ପାଖରେ ଗୋଟିଏ ଖାଲି ସିଟ୍ ଅଧିକାର କରି ବସିଲା ।

ସତ୍ୟବ୍ରତ ମିଷ୍ଟର କାପୁରଙ୍କ ଆଡେ ଚାହିଁ ପଚାରିଲେ : ବର୍ତ୍ତମାନ ସାନିର ଡେଜିଗ୍‌ନେସନ ?

ମିଷ୍ଟର କାପୁର କ'ଣ ଉତ୍ତର ଦେବା ପୂର୍ବରୁ ନୀଳମଣି ସାମନ୍ତରାୟ କହିଲେ : ଏଥର ସମସ୍ତେ ଆସିଗଲେ । କାମ ଆରମ୍ଭ କରିବାକୁ ହେବ ।

ସତ୍ୟବ୍ରତ ଦେଖିଲେ, ଚାରି ପାଞ୍ଚଜଣଙ୍କୁ ଛାଡ଼ିଦେଲେ ଅନ୍ୟମାନେ ସମସ୍ତେ ଚେଆରରେ ବସିଛନ୍ତି । ଯେଉଁ ଚାରି ପାଞ୍ଚଜଣ ଛିଡ଼ା ହୋଇଛନ୍ତି, ସେମାନେ ହୋଟେଲର ତଳିଆ କର୍ମଚାରୀ ।

ନୀଳମଣି ସାମନ୍ତରାୟ ସେମାନଙ୍କୁ ମଧ୍ୟ ଗୋଟିଏ ଗୋଟିଏ ଚେଆର ଅଧିକାର କରି ବସିବାକୁ କହିଲେ ।

ସେମାନେ କୁଣ୍ଠିତ ହୋଇ ଚେଆର ଉପରେ ବସିଲେ ।

ସତ୍ୟବ୍ରତ ସମସ୍ତଙ୍କ ଉପରେ ଥରେ ଆଖି ବୁଲାଇ ନେଇ, ମିଷ୍ଟର କାପୁରଙ୍କ ମୁହଁକୁ ଚାହିଁ ପଚାରିଲେ : ଆଜି ରାତିରେ ହୋଟେଲରେ ମୋଟ୍ ଏତିକି ଲୋକ ଥିଲେ ?

: ହଁ ।

: ଆପଣ ତା'ହେଲେ କାମ ଆରମ୍ଭ କରନ୍ତୁ । ସତ୍ୟବ୍ରତ ମହାପାତ୍ର ନୀଳମଣି ସାମନ୍ତରାୟଙ୍କୁ କହିଲେ ଆଉ ନିଜେ ସେ ଉଠି ଠିଆହେଲେ । ପାଦେ ପାଦେ କରି ଆଗେଇବାକୁ ଆରମ୍ଭ କଲେ ।

ନୀଳମଣି ସାମନ୍ତରାୟ ଉଠି ଠିଆହୋଇ ଗଳା ସଫା କରି ଆରମ୍ଭ କଲେ -

: ଆପଣମାନେ ଯେଉଁମାନେ ଆସି ଏଇ ହଲ୍ ଘରେ ବସିଛନ୍ତି, ସେମାନଙ୍କ ମଧ୍ୟରୁ ହୁଏତ ଅନେକ ଜାଣନ୍ତି ନାହିଁ, ସେମାନଙ୍କୁ କାହିଁକି ଏଠାକୁ ଡକା ହୋଇଛି ।

ନୀଳମଣି ସାମନ୍ତରାୟ ସମସ୍ତଙ୍କ ଆତଙ୍କିତ ମୁଖମଣ୍ଡଳ ଆଡ଼େ ଚାହିଁ ମୁହୂର୍ତ୍ତେ ନୀରବ ରହିଲେ ।

ସତ୍ୟବ୍ରତ ମଧ ଅଳ୍ପ ଦୂରରେ ଯାଇ ଠିଆ ହୋଇ ସମସ୍ତଙ୍କ ଆଡ଼େ ଚାହିଁଥିଲେ ।

ନୀଳମଣି ସାମନ୍ତରାୟ ପୁଣି ଆରମ୍ଭ କଲେ : ଆଜି ଆପଣଙ୍କର ଏହି ହୋଟେଲରେ, ମାତ୍ର ଦେଢ଼ଘଣ୍ଟା ବା ଦୁଇଘଣ୍ଟା ପୂର୍ବରୁ, ଏପରି ଏକ ଅପ୍ରୀତିକର ଘଟଣା ଘଟିଛି, ଯାହା ଶୁଣିଲେ ଆପଣମାନେ ବିଚଳିତ ହୋଇଉଠିବେ ।

ପୁଣି ସାମାନ୍ୟ ନୀରବତା ।

ନୀଳମଣି ସାମନ୍ତରାୟ ଉଠିଗଲେ ରିସେପ୍‌ସନ କାଉଣ୍ଟର ପାଖକୁ । ସେଇଠୁ ବଜ୍ର ଗମ୍ଭୀର କଣ୍ଠରେ କହିଲେ : ଦୁଇଘଣ୍ଟା ପୂର୍ବରୁ ଏଇଠି, ଏଇ କାଉଣ୍ଟରରେ ଲାୟଲି ଖୁଣ୍ ହୋଇଛି ।

ଖୁଣ୍...!....ଖୁଣ୍...? ଖୁଣ....!?

ଗୋଟାଏ ଅପୂର୍ବ ଗୁଞ୍ଜରଣ ଖେଳିଗଲା ହଲ୍ ଭିତରେ । ସମସ୍ତେ ସମସ୍ତଙ୍କ ମୁହଁକୁ ଚାହିଁଲେ । ବିସ୍ମୟ, ଆତଙ୍କ ଆହୁରି ବଢ଼ିଗଲା ।

ନୀଳମଣି ସାମନ୍ତରାୟଙ୍କର ପୁଣି ସେହି ବଜ୍ରଗମ୍ଭୀର କଣ୍ଠ ଶୁଣାଗଲା : ଖାଲି ଖୁଣ୍ ନୁହେଁ, ଆପଣମାନେ ଶୁଣିଲେ ଆହୁରି ଆଶ୍ଚର୍ଯ୍ୟ ହେବେ ଯେ, ଆପଣମାନଙ୍କ ଏହି ୨୧ ଜଣଙ୍କ ଭିତରେ ସେହି ଖୁଣୀ ଲୁଚି ରହିଛି ।

ସେହି ମୁହୂର୍ତ୍ତରେ ସମସ୍ତେ ସମସ୍ତଙ୍କ ମୁହଁକୁ ଚାହିଁଲେ ସନ୍ଦେହ ଦୃଷ୍ଟିରେ ।

ସତ୍ୟବ୍ରତ ମହାପାତ୍ର ପାମେଲା ପାଖକୁ ଆଗେଇ ଯାଇ କହିଲେ : ଏ ଖୁଣ୍ ସଂବାଦ ଆପଣ କିନ୍ତୁ ପୂର୍ବରୁ ଜାଣିଥିଲେ ?

ପାମେଲା ସିଟ୍‌ରୁ ଉଠିପଡ଼ି ସଙ୍ଗେ ସଙ୍ଗେ କହିଲା : ସମ୍ବାଦଟା ଆଗରୁ ଜାଣିଥିଲା ରମ୍‌ଜାନ । ମୋତେ ନିଦରୁ ଉଠାଇ ସେଇ ପ୍ରଥମେ କହିଥିଲା ଲାୟଲିର ମୃତ୍ୟୁ କଥା ।

ସତ୍ୟବ୍ରତ ସ୍ମିତହସି ଠିଆହୋଇଥିଲେ ।

ନୀଳମଣି ସାମନ୍ତରାୟ ପୁଣି କହିଲେ : ଅବଶ୍ୟ ଏହା ଅତ୍ୟନ୍ତ ଦୁଃଖର କଥା । ମଣିଷର ମନବୁଝିବା ଯେତିକି ଦୁରୂହ କଥା, ମଣିଷର କାର୍ଯ୍ୟକଳାପ ଅନୁସନ୍ଧାନ କରି ପ୍ରକୃତ ତଥ୍ୟ ଆବିଷ୍କାର କରିବା ସେତିକି କଠିନ ସମସ୍ୟା ।

ଲାୟଲି ଖୁଣ୍ ହୋଇଛି । ଲାୟଲିର ଲାସ୍‌ଟା ଏବେ ବି ପଡିରହିଛି ଏଇ ବାଥ୍‌ରୁମ୍ ଭିତରେ । ଦୁଇଘଣ୍ଟା ପୂର୍ବରୁ ଯେଉଁ ଚଳମାନ ମଣିଷଟି ମୁହଁରେ ଯେଉଁମାନେ ହସ ଦେଖିଥିଲେ, ସେ ହସ ଆଉ ଫୁଟିବ ନାହିଁ କେବେ; କିନ୍ତୁ ମଣିଷ ମନରେ କାହିଁକି ଏତେ ନୃଶଂସତା ।

ମୋର ଏହି ପ୍ରଶ୍ନର ଉତ୍ତର ଅବଶ୍ୟ ମୁଁ ଏଠାରୁ ପାଇବି ନାହିଁ । ଜଣେ ପୋଲିସ୍ ଅଫିସର ହିସାବରେ ମୋର ଏ ପ୍ରଶ୍ନ ମଧ୍ୟ ଅବାନ୍ତର; ତଥାପି ମୁଁ ସମସ୍ତଙ୍କୁ ଏହି ପ୍ରଶ୍ନ କରୁଛି । ଭଗବାନଙ୍କ ସୃଷ୍ଟିକୁ ଏପରି ଭାବରେ ଧ୍ୱଂସ କରିବାର କି ଅଧିକାର ଅଛି ଆମର ?

ହଁ, ବର୍ତ୍ତମାନ ଅସଲ ସମସ୍ୟାର ସମାଧାନ ପଥରେ ଆମକୁ ଆଗେଇବାକୁ ହେବ । ଲାୟଲି ଖୁଣ୍ ହୋଇଛି । ଏଇ ହୋଟେଲରେ ଲାୟଲିକୁ ଲଗାଇ ଆଜି ରାତିରେ ଆପଣମାନଙ୍କ ସଂଖ୍ୟା ଥିଲା ବାଇଶ୍ । ବର୍ତ୍ତମାନ ସେହି ସଂଖ୍ୟା ଏକୋଇଶ୍‌ରେ ପଡିଛି । ଆଉ ଆମର ସନ୍ଦେହ, ଏଇ ଏକୋଇଶ ଜଣ ମଧ୍ୟରୁ କେହି ଜଣେ ଲାୟଲିର ହତ୍ୟାକାରୀ । ତା'ହେଲେ କିଏ ସେହି ଜଣକ ?

ନୀଳମଣି ସାମନ୍ତରାୟ ମୁହୂର୍ତ୍ତେ ନୀରବ ରହି ଥରେ ସମସ୍ତଙ୍କ ମୁହଁକୁ ଚାହିଁଲେ । କେବଳ ନୀରବତା ।

: ମୁଁ ଜାଣେ, ଆପଣମାନଙ୍କ ଭିତରୁ କେହି ଆତ୍ମସମର୍ପଣ କରିବେ ନାହିଁ । ଆମକୁ ହତ୍ୟାକାରୀକୁ ଖୋଜି ବାହାର କରିବାକୁ ପଡ଼ିବ । ଗୋଟାଏ କଥା ମନେ ରଖନ୍ତୁ, ଆପଣମାନଙ୍କ ସଂଖ୍ୟା ଖୁବ୍ ଅଳ୍ପ, ମାତ୍ର ଏକୋଇଶ । ହତ୍ୟାର ପରିସର ବି ସଂକ୍ଷିପ୍ତ; ତେଣୁ ଆମକୁ ଫାଙ୍କିଦେବା ସହଜ ହେବ ନାହିଁ । କିମ୍ବା ଆପଣମାନଙ୍କ ଭିତରୁ ହତ୍ୟାକାରୀକୁ ଖୋଜି ବାହାର କରିବାକୁ ବେଶି ସମୟ ଲାଗିବ ନାହିଁ । ନୀଳମଣି ସାମନ୍ତରାୟ ପୁଣି ନୀରବ ହେଲେ ।

ପରସ୍ପର ପରସ୍ପରର ମୁହଁକୁ ଚାହିଁଲେ ।

ନୀଳମଣି ସାମନ୍ତରାୟ ଏଥର ଖାତା କଲମ ବାହାର କରି, ଧାଡ଼ି ହୋଇ ବସିଥିବା ଲୋକମାନଙ୍କ ମଧ୍ୟରୁ ପ୍ରଥମ ଜଣକୁ ପ୍ରଶ୍ନ କଲେ ।

: ଆପଣଙ୍କ ନାଁ ?

: ରାଜେଶ ।

: ରାଜେଶ କ'ଣ ?

: ପେସା ?

ଅମ୍ବରର ଷ୍ଟୋରକିପର୍ ।

: କାଲି ଆପଣ ଲାୟଲିକୁ ଶେଷଥର ପାଇଁ କେତେବେଳେ ଦେଖିଥିଲେ ?

: ରାତି ଦଶଟା ବେଳେ ।

: ସେତେବେଳେ ଲାୟଲି କ'ଣ କରୁଥିଲା ?

: ମୋ ପାଖକୁ ଷ୍ଟୋର୍‌କୁ ଆସିଥିଲା ।

: କାହିଁକି ?

: ଦୁଇଟି ମୂଲ୍ୟବାନ ଡ଼ିନର ସେଟ୍ ମାଗିବାକୁ ।

: ହଠାତ୍, ଲାୟଲିର ଡିନର ସେଟ୍ କ'ଣ ପ୍ରୟୋଜନ ଥିଲା ?

: ତା'ର ଦୁଇଜଣ ଗେଷ୍ଟ ଆସିଥିଲେ ।

: ହୋଟେଲର ଡ଼ିନର ସେଟ୍‌ରେ କ'ଣ ସେମାନଙ୍କୁ ଖାଦ୍ୟ ପରିବେଷଣ କରାଯାଇ ପାରିନଥାନ୍ତା ?

: ପାରିଥାଆନ୍ତା; କିନ୍ତୁ ଲାୟଲିର ବୋଧହୁଏ ସେମାନେ ଖୁବ୍ ଅନ୍ତରଙ୍ଗ ଥିଲେ, ଅଥବା...

: ଆପଣ ଡ଼ିନର ସେଟ୍ ଦେଇଥିଲେ ?

: ଇଏସ୍ ସାର୍ ।

: ତା'ପରେ ଆପଣ ଲାୟଲିକୁ ଦେଖି ନାହାନ୍ତି ?

: ନା ।

: ହୁଁ, ଆଚ୍ଛା ଲାୟଲିର କାଲି ଯେ ଦୁଇଜଣ ଗେଷ୍ଟ ଆସିଥିଲେ, ସେମାନଙ୍କୁ ପରିବେଷଣ କରିବା ପାଇଁ କିଏ ଯାଇଥିଲା ?

: ମୁଁ ହଜୁର । ଗୋଟିଏ ଲୋକ ଉଠି ଠିଆହେଲା ।

: ତୁମ ନା ?

: ଶାମସୁଦ୍ଦିନ ।

: ପେସା ।

: ଅମ୍ବରର ବୟ ।

: ଲାୟଲିର ଯେଉଁ ଗେଷ୍ଟ ଦୁଇଜଣ ଆସିଥିଲେ, ସେମାନେ କିଏ ?

: ମୁଁ ସେମାନଙ୍କ ନାଁ ଜାଣି ନାହିଁ ହଜୁର ।

: ଆଗରୁ କେବେ ଲାୟଲି ଘରେ ସେମାନଙ୍କୁ ଦେଖିଥିଲ ?

: ଜଣକୁ ଦେଖିଥିଲି ।

: କେତେବେଳେ ସେମାନଙ୍କର ଖିଆପିଆ ଶେଷହେଲା ?

: ପ୍ରାୟ ରାତି ଏଗାରଟାରେ ।

: ଖିଆପିଆ ସାରି ଗେଷ୍ଟ ଦୁଇଜଣ କେତେବେଳେଯାଏ ଥିଲେ ?

: ବେଶି ବେଳଯାଏ ନ ଥିଲେ ହଜୁର । ମୋତେ ବକ୍‌ସିସ୍ ଦେଇ ପ୍ରାୟ ସାଢ଼େ ଏଗାରଟା ସୁଦ୍ଧା ସେମାନେ ଚାଲିଯାଇଥିଲେ ।

: ତା'ପରେ ତୁମେ ଲାୟଲିକୁ ଦେଖି ନ ଥିଲ ?

: ନା, ହଜୁର । ମୁଁ ଆଉ ତାଙ୍କ ରୁମ୍‌କୁ ଯାଇ ନଥିଲି ।

: ହୁଁ । ତମେ ଯାଅ । ଆପଣ ? ନୀଳମଣି ସାମନ୍ତରାୟ ଆଉଜଣକୁ ଆଙ୍ଗୁଳି ସଂକେତ କଲେ ।

: ମୋ' ନା ସୋନିଆ ଜଏନ୍ । ପେସା, ଦେଶଭ୍ରମଣ ।

: ଆପଣ ଅମ୍ବରରେ କେତେ ଦିନ ହେବ ଅଛନ୍ତି ?

: ଆଜିକୁ ଲଗାଇ ସାତଦିନ ।

: ଆପଣ ଲାୟଲିକୁ ଚିହ୍ନନ୍ତି ?

: ଏଇ ରିସେପ୍‌ସନ କାଉଣ୍ଟରରେ ଅନେକ ଥର ଦେଖିଛି ।

: ଲାୟଲି ସହିତ ଆପଣଙ୍କର ଆଳାପ ନ ଥିଲା ?

: ନା ।

: ଲାୟଲିର ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ପ୍ରେମଘଟିତ କିଛି ହୋଇପାରେ ।

: ହଠାତ୍ ଆପଣଙ୍କର ଏପରି ଧାରଣା ହେବାର କାରଣ ?

: ଝିଅମାନଙ୍କର ଏଇ ବୟସରେ ସଚରାଚର ଏହିପରି ଘଟିଥାଏ ।

: ଆପଣ କାଲି ରାତିରେ କେତେବେଳ ଯାଏ ଚେଇଁ ଥିଲେ ?

: ଆଠଟା ଯାଏ ।

: ମାନେ ? ରାତି ଆଠଟାରେ ଆପଣ ଶୋଇପଡିଥିଲେ ?

: ସେଇଟା ମୋର ସବୁଦିନର ଅଭ୍ୟାସ ।

: ଆପଣଙ୍କ ସହିତ ଆପଣଙ୍କ ରୁମ୍‌ରେ ଆଉ କିଏ ରୁହନ୍ତି ?

: କେହି ନୁହେଁ ।

: ଆପଣ ତା'ହେଲେ....

: ହଁ ମୁଁ ଏକା । ଏକା ଏକା ମୁଁ ସମଗ୍ର ଭାରତବର୍ଷ ବୁଲି ଆସିଲିଣି । ଏହାପରେ ୟୁରୋପ ଯିବି । ତା'ପରେ ଆମେରିକା ତା'ପରେ...

ନୀଳମଣି ସାମନ୍ତରାୟ ସୋନିଆ ଜଏନକୁ ଇଂଗିତରେ ନୀରବ ରହିବାକୁ କହିଲେ । ଆଉ ଜଣକ ପାଖକୁ ଆଗେଇ ଯାଇ ପଚାରିଲେ : ଆପଣଙ୍କ ନାଁ ?

: ଆନନ୍ଦ ଉପାଧ୍ୟାୟ ।

: ପେସା ?

: ବ୍ୟବସାୟ ।

: ଆପଣ ଅମ୍ବରରେ କେତେଦିନ ହେବ ଅଛନ୍ତି ?

: ଆଜିକୁ ଲଗାଇ ତିନିଦିନ ।

: ଆପଣ ଏକା ?

: ନା, ମୋର ସ୍ତ୍ରୀ ଆଉ ଶାଳୀ ସଙ୍ଗରେ ଅଛନ୍ତି । ଆନନ୍ଦ ଉପାଧ୍ୟାୟ ଆଙ୍ଗୁଳି ସଂକେତରେ ଦୁଇଜଣଙ୍କୁ ଦେଖାଇଦେଲେ ।

: ଆପଣ ଲାୟଲିକୁ ଚିହ୍ନନ୍ତି ?

: ହଁ, ରିସେପ୍‌ସନ କାଉଣ୍ଟରରେ ଦେଖିଛି ।

: ଆଜି ରାତିରେ ଆପଣ ହୋଟେଲକୁ କେତେବେଳେ ଫେରିଥିଲେ ?

: ପ୍ରାୟ ସାଢ଼େ ବାରଟା ହେବ ।

: ଏତେବେଳଯାଏ କ'ଣ କରୁଥିଲେ ?

: ସିନେମା ଯାଇଥିଲୁ ।

: ଫେରିଲାବେଳେ ଲାୟଲିକୁ ଦେଖିଥିଲେ ?

: ହଁ, ଲାୟଲି ରିସେପ୍‌ସନ କାଉଣ୍ଟରରେ ବସି ଫୋନ୍‌ରେ କାହା ସହିତ ହସି ହସି କଥାବାର୍ତ୍ତା ହେଉଥିଲା ।

: ଆପଣଙ୍କୁ ଦେଖି କିଛି କହିଲା ନାହିଁ ?

: ନା, ଆମ ଆଡ଼େ ବି ଚାହିଁଲା ନାହିଁ ।

: ତା'ପରେ, ଆଉ ଥରେ କେତେବେଳେ ଦେଖିଥିଲେ ?

: ନା, ଆଉ ମୁଁ ଦେଖି ନାହିଁ ।

: ହୁଁ, ଆପଣ ?

: ମୋ ନାଁ ପାମେଲା । ପେସା, ଟାଇପିଷ୍ଟ । ବୟସ ୨୧ । ଲମ୍ବା ୫ ଫୁଟ୍ ୬ ଇଞ୍ଚ ।

ପାମେଲା ଏକା ନିଶ୍ୱାସକେ କହି ଚାଲିଗଲା ।

ନୀଳମଣି ସାମନ୍ତରାୟ ପାମେଲାର ଔଦ୍ଧତ୍ୟ ବୋଧହୁଏ ଲକ୍ଷ୍ୟ କରୁଥିଲେ । ପଚାରିଲେ-

: ଆଉ ଓଜନ ?

: ୪୫ କେଜି ।

: ବୟସ ଆଉ ହାଇଟ୍ ଅନୁସାରେ ଓଏଟ୍‌ଟା ଟିକିଏ କମିଗଲା ନାହିଁ କି ? ନୀଳମଣି ସାମନ୍ତରାୟଙ୍କ କଣ୍ଠରେ ପରିହାସ ଫୁଟିଥିଲା ।

: ଫିଗରଟା ସୁନ୍ଦର କରି ରଖିବାକୁ ହେଲେ ଓଜନ କମେଇବାକୁ ହୋଇଥାଏ । ପାମେଲା ସହଜ କଣ୍ଠରେ ଉତ୍ତର ଦେଲା ।

: ହୁଁ, ଲାୟଲିକୁ ଆପଣ କେତେ ଦିନରୁ ଚିହ୍ନନ୍ତି ? ଏଥର ପୋଲିସ୍ ଅଫିସରଙ୍କ କଣ୍ଠ ଗମ୍ଭୀର ହୋଇ ଉଠିଥିଲା ।

: ଅନେକ ଦିନରୁ ।

: ଲାୟଲିର ହତ୍ୟାକାରୀ ରୂପେ ଆପଣ କାହାକୁ ସନ୍ଦେହ କରୁଛନ୍ତି ?

: ଲାୟଲିକୁ ।

: ମାନେ ?

: ଲାୟଲି ତ ଆତ୍ମହତ୍ୟା କରି ପାରିଥାଏ ?

: କାରଣ ?

: ସୁନ୍ଦରୀ ରୂପସୀମାନଙ୍କର ଆତ୍ମହତ୍ୟାର କାରଣ ଆପଣ ଜଣେ ପୋଲିସ୍ ଅଫିସର ହୋଇ ପଚାରି ନ ଥିଲେ କହି ଥାଆନ୍ତି ।

: ହୁଁ, ଆଚ୍ଛା, ଆପଣଙ୍କର ଲାୟଲି ସହିତ ସମ୍ବନ୍ଧଟା ଥିଲା କି ପ୍ରକାରର ?

: ଆପଣ ଭୁଲ୍ କରୁଛନ୍ତି ସାର୍ । ଜଣେ ସୁନ୍ଦରୀ ରୂପସୀର ଆଉ ଜଣେ...

ମିଷ୍ଟର ସାମନ୍ତରାୟ ଚିତ୍କାର କରି ଉଠିଲେ : ମୁଁ ଯାହା ପ୍ରଶ୍ନ କରୁଛି ଆପଣ କେବଳ ଉତ୍ତର ଦିଅନ୍ତୁ ।

ପାମେଲା ତୀକ୍ଷ୍ଣ ଦୃଷ୍ଟିରେ ଥରେ ଅନେଇ ଦେଇ କହିଲା : ଭଲ ।

: କାଲି ଲାୟଲି ପାଖକୁ ତା'ର ଯେଉଁ ବନ୍ଧୁ ଦୁଇଜଣ ଆସିଥିଲେ, ଆପଣ ସେମାନଙ୍କୁ ଚିହ୍ନନ୍ତି ?

: ନା ।

: ଆପଣ ସେମାନଙ୍କୁ ଦେଖିଥିଲେ ?

: ନା ।

: ଲାୟଲିକୁ ଆପଣ ଗତକାଲି ଶେଷଥର ପାଇଁ କେତେବେଳେ ଦେଖିଥିଲେ ?

: ଦେଖି ନାହିଁ ।

: ମାନେ ?

: ଦେଖି ନାହିଁ ।

: ଲାୟଲି ସହିତ କାଲି ଆପଣଙ୍କର ମୋଟେ ଦେଖା ହୋଇ ନାହିଁ ।

: ନା ।

: ଆଚ୍ଛା ।

: ଆପଣଙ୍କ ନାଁ ? ନୀଳମଣି ସାମନ୍ତରାୟ ପାମେଲା ଉପରୁ ତାଙ୍କର କ୍ରୂର ଦୃଷ୍ଟିଟି ଫେରେଇ ନେଇ ଆଉ ଜଣକ ଉପରେ ନିବଦ୍ଧ କଲେ ।

: ମୋ ନାଁ ଆଇ.ଜେକବ୍ ।

: ପେସା ?

: ଅମ୍ବରର କ୍ୟାସିଅର ।

: ଲାୟଲିକୁ ଚିହ୍ନନ୍ତି ?

: ଚିହ୍ନେ ।

: ତା'ର ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର କିଛି ବକ୍ତବ୍ୟ ଅଛି ?

: ଅଛି । ଆପଣ ଯଦି ଅନୁମତି ଦିଅନ୍ତି, ମୁଁ ଗୋଟିଏ ଘଟଣାର ବିବୃତ କରିବି ।

: କୁହନ୍ତୁ ।

ମିଷ୍ଟର ଆଇ. ଜେକବ୍ କହିଲେ : ଲାୟଲି କାଲି ରିସେପ୍‌ସନ କାଉଣ୍ଟରରେ ପ୍ରାୟ ରାତି ନଅଟା ଯାଏ ବସିଥିଲା । ଅମ୍ବରର କ୍ୟାସ କାଉଣ୍ଟରଟା ଠିକ୍ ରିସେପ୍‌ସନ କାଉଣ୍ଟର ସାମ୍ନାକୁ ହୋଇଥିବାରୁ, ରିସେପ୍‌ସନ କାଉଣ୍ଟରରେ ଯିଏ ବସେ ମୁଁ ସବୁ ଦେଖିପାରେ । କାଲି ରାତି ନଅଟା ବାଜିବାର ଚାରି ପାଞ୍ଚ ମିନିଟ୍ ପୂର୍ବରୁ ଦୁଇଜଣ ଭଦ୍ରଲୋକ ଆସିଲେ । ଲାୟଲି ସେମାନଙ୍କୁ ଦେଖି ଉଲ୍ଲସିତ ଆନନ୍ଦରେ ଯେପରି ନାଚି ଉଠିଲା । ତା'ପରେ ସେ କାଉଣ୍ଟରରୁ ଉଠି ସେମାନଙ୍କୁ ସଙ୍ଗରେ ନେଇ ବୋଧହୁଏ ଉପରକୁ ଚାଲିଯାଇଥିଲା ।

ହୋଟେଲର ଗୋଟାଏ ଜରୁରୀ ଇନ୍‌ଫରମେସନ ସମ୍ବନ୍ଧରେ ଜାଣିବା ପାଇଁ ମୁଁ ପ୍ରାୟ ଦଶଟାବେଳେ ଥରେ ଲାୟଲି ରୁମ୍‌କୁ ଯାଇଥିଲି । ସେତେବେଳେ ଲାୟଲିକୁ ଖୁବ୍ ବିଚଳିତ ହୋଇପଡିଥିବାର ମୋ'ର ମନେହୋଇଥିଲା । ଆଉ ସେ ଦୁଇଜଣ ଆଗନ୍ତୁକଙ୍କ ମଧ୍ୟରୁ ଜଣେ ଠିଆ ହୋଇ ବୋଧହୁଏ ଲାୟଲିକୁ କୌଣସି ପ୍ରକାର ଅପମାନିତ ବା ଗାଳି ଗୁଲଜ କରିଥିଲେ । ମୁଁ ଘର ଭିତରେ ପଶିବା ପରେ ମଧ୍ୟ ସେହି ଆଗନ୍ତୁକ ଜଣକ ସେହିପରି ରକ୍ତଚକ୍ଷୁରେ ଲାୟଲି ଆଡେ ଅନାଇ ଠିଆହୋଇଥିଲେ ।

ମୋତେ ହଠାତ୍ ରୁମ୍ ଭିତରେ ଦେଖି ଲାୟଲି ଚେଆର ଛାଡ଼ି ମୋ ପାଖକୁ ଆଗେଇ ଆସିଲା । ରୁମ୍‌ରୁ ବାହାରି ଆସି ମୋ' ସହିତ କଥାବାର୍ତ୍ତା କରି ପୁଣି ଫେରିଗଲା । ଆଇ.ଜେକବ୍ ଏତକ କହି ନୀରବ ହେଲେ ।

: ତା' ପରେ ?

: ତା'ପରେ ଆଉ ମୁଁ କିଛି ଜାଣି ନାହିଁ । କିନ୍ତୁ ସେମାନେ ଯେତେବେଳେ ରାତି ଏଗାରଟା କି ସାଢ଼େ ଏଗାରଟାରେ ଲାୟଲି ଘରୁ ଚାଲିଗଲେ, ଲାୟଲି ସେମାନଙ୍କ ପଛେ ପଛେ ଆସିଥିଲା; କିନ୍ତୁ ସେ ଦୁଇଜଣଙ୍କ ମଧ୍ୟରୁ କେହି ପ୍ରକୃତିସ୍ଥ ଥିଲାପରି ମନେ ହେଉ ନ ଥିଲା ।

: ଲାୟଲି ସେମାନଙ୍କୁ ଛାଡ଼ି ଦେଇ ଆସି କ'ଣ କଲା ?

: ରିସେପ୍‌ସନ କାଉଣ୍ଟରରେ ବସିଲା । ଅବଶ୍ୟ ମୁଁ ମୋ' କାଉଣ୍ଟର ବନ୍ଦ କଲି ଠିକ୍ ସାଢ଼େ ଏଗାରଟାରେ । କେତେକ ହିସାବପତ୍ର ବାକିଥିବାରୁ ସେଦିନ ମୋର ଟିକିଏ ଡେରି ହୋଇଥିଲା । କାଉଣ୍ଟର ବନ୍ଦ କରି ମୁଁ ଲାୟଲି ପାଖକୁ ଆସିଥିଲି । ସେହି ଆଗନ୍ତୁକ ଦୁଇଜଣଙ୍କର ପରିଚୟ ପଚାରିଥିଲି । ଲାୟଲି କହିଥିଲା, ସେମାନେ ତା'ର ବନ୍ଧୁ ।

ଲାୟଲି ଆଉ ବିଶେଷ କିଛି କହିବାକୁ ପ୍ରସ୍ତୁତ ନ ଥିବାରୁ ମୁଁ ବି ସେମାନଙ୍କ ସମ୍ବନ୍ଧରେ ଜାଣିବା ପାଇଁ ଆଉ ଆଗ୍ରହ ପ୍ରକାଶ କରି ନଥିଲି । ତା'ଛଡା ମୁଁ ସେତେବେଳେ ଭୀଷଣ ଟାୟାଡ୍ ହୋଇପଡିଥିଲି । ରୁମ୍‌କୁ ଫେରିଯାଇଥିଲି ।

: ତା'ପରେ ଆଉ ଆପଣ ଲାୟଲିକୁ ଦେଖି ନ ଥିଲେ ।

: ହଁ, ଦେଖିଥିଲି । ରାତି ସେତେବେଳକୁ ବାରଟା ହେବ । ସିଗାରେଟ୍ ପକେଟଟା ମୋ ଡ୍ରୟାରରେ ଛାଡ଼ିଦେଇ ଯାଇଥିବାରୁ ମୋତେ ପୁଣି ତଳକୁ ଆସିବାକୁ ହୋଇଥିଲା ।

: ସେତେବେଳେ ଲାୟଲି କ'ଣ କରୁଥିଲା ?

: ରିସେପ୍‌ସନ କାଉଣ୍ଟରରେ ବସି କାହାକୁ ଫୋନ୍ କରୁଥିଲା ।

: ଆପଣଙ୍କୁ ଦେଖି କିଛି କହିଲା ନାହିଁ ?

: ନା ।

: ସେତେବେଳେ କ'ଣ ହଲରେ ଆଉ କେହି ବାହାରର ଲୋକ ଥିଲେ ?

: ନା, ସବୁ ଚେଆର, ଟେବୁଲ ଖାଲିପଡ଼ିଥିଲା ।

: ତା'ହେଲେ ଲାୟଲି ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ମୁଁ ଭାବୁଛି ସେହି ଆଗନ୍ତୁକ ଦୁଇଜଣଙ୍କ ମଧ୍ୟରୁ କେହି ଜଣେ ଆସି...

ହଠାତ୍ ଦୂରରୁ ମାଉଥ୍ ଅର୍ଗାନର ସ୍ୱର ଶୁଣି ସମସ୍ତେ ସେଇ ଆଡ଼େ ଚାହିଁଲେ । ସତ୍ୟବ୍ରତ ମହାପାତ୍ର ବେସୁରା ତାଳରେ ମାଉଥ୍ ଅର୍ଗାନଟା ବଜାଉ ବଜାଉ ଶିଡ଼ିରୁ ତଳକୁ ଓହ୍ଲେଇ ଆସୁଥିଲେ ।

ନୀଳମଣି ସାମନ୍ତରାୟ କହିଲେ : ଆପଣ ! ଦେଖୁଛି ସିରିଅସ୍‌ଲି ଏ କେସ୍‌ଟା ସମ୍ବନ୍ଧରେ କିଛି ଚିନ୍ତା କରୁ ନାହାନ୍ତି ।

ସତ୍ୟବ୍ରତ ମହାପାତ୍ର ମାଉଥ୍ ଅର୍ଗାନ୍‌ଟା ପାଟିରୁ ବାହାର କରି ସ୍ମିତହସି କହିଲେ : ଆପଣ ଥାଉ ଥାଉ ମୋର ଆପାତତଃ ସିରିଅସ୍‌ଲି ଚିନ୍ତା କରିବାର କିଛି ନାହିଁ । କ'ଣ ଆପଣଙ୍କ କାମ ଶେଷହୋଇଛି ?

: ନା, ଆହୁରି ଅନେକ ବାକି । ଆପଣଙ୍କର କାହାରିକୁ କିଛି ପଚାରିବାର ନାହିଁ ?

: ଲାଭ କ'ଣ ? କେହି କ'ଣ ନିଜର ଦୋଷ ସ୍ୱୀକାର କରିବେ ?

: ନ କଲେ ବି ନିୟମ ଅନୁସାରେ ସମସ୍ତଙ୍କୁ ଜେରା କରିବାକୁ ପଡିବ ।

: ଆପଣ ପ୍ରାରମ୍ଭିକ କାମ ଶେଷ କରି ଯିବେ । ମୋ'ର ଟିକେ ଅନ୍ୟ କାମ ଅଛି, ଆପଣଙ୍କ ସହିତ ଦଶଟା ଏଗାରଟା ବେଳକୁ ଥାନାରେ ଦେଖାକରିବି । ହଁ, ଆଉ ଗୋଟାଏ କଥା । ଆଜି ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି, ସେମାନଙ୍କୁ କାହାରିକୁ ହୋଟେଲ ବାହାରକୁ କୁଆଡ଼େ ଯିବାର ଅନୁମତି ଦେବେ ନାହିଁ । ତା'ପରେ ବିନୀତଭାବରେ ସମସ୍ତଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ସେ କହିଲେ, ଅନ୍ତତଃ ଆଜି ଦିନଟା ସମସ୍ତଙ୍କୁ ଟିକିଏ କଷ୍ଟ ସ୍ୱୀକାର କରିବାକୁ ହେବ ।

ହାତଘଡ଼ିକୁ ଚାହିଁଲେ ।

ଛଅଟା ବାଜିଯାଇଥିଲା ।

ପୋଲିସ୍ ଅଫିସର ପୁଣି ଆରମ୍ଭ କଲେ : ଆପଣଙ୍କ ନାମ ?

: ସାନି କରତାର ।

: ପେସା ?

: ଆପାତତଃ କିଛି ନାହିଁ ।

: ଆପଣ ଅମ୍ବରରେ କ'ଣ କରନ୍ତି ?

: ମୁଁ ମିଷ୍ଟର କାପୁରଙ୍କର ଗେଷ୍ଟ ।

: ଆପଣଙ୍କର ଲକ୍ଷ୍ୟ ?

: ଏୟାର ହୋଷ୍ଟେସ ଟ୍ରେନିଂରେ ଯିବା ପାଇଁ ଚେଷ୍ଟା କରୁଛି ।

: ମିଷ୍ଟର କାପୁର କ'ଣ ଆପଣଙ୍କର ଆତ୍ମୀୟ ?

ସାନି ନୀରବ ରହିଲା ।

: ଆପଣ ଲାୟଲିକୁ ଚିହ୍ନନ୍ତି ?

: ହଁ ।

: ତା' ସହିତ ଆପଣଙ୍କର କେତେଦିନର ପରିଚୟ ?

: ଏଠାକୁ ଆସିବା ଦିନଠାରୁ ।

: କେତେଦିନ ହେବ ଆପଣ ଆସିଲେଣି ?

: ପ୍ରାୟ ପନ୍ଦର ଦିନ ହେବ ।

: ଲାୟଲି ସହିତ ଆପଣଙ୍କ ଶେଷ କଥାବାର୍ତ୍ତା କେତେବେଳେ ହୋଇଥିଲା ?

: ବୋଧହୁଏ ତିନିଦିନ ପୂର୍ବରୁ ।

: କାଲି ଆପଣ ଲାୟଲିକୁ ଦେଖି ନ ଥିଲେ ?

: ଦେଖିଥିଲି, ରିସେପ୍‌ସନ କାଉଣ୍ଟରରେ । କିଛି କଥାବାର୍ତ୍ତା ହୋଇ ନାହିଁ ।

: କାଲି ଅମ୍ବରରେ ଏଇ ଯେଉଁ ଦୁର୍ଘଟଣା ଘଟିଲା, ଆପଣ କେତେବେଳେ ଜାଣିଲେ ?

: ଏଇଠାକୁ ଆସି ପ୍ରଥମେ ଆପଣଙ୍କ ମୁହଁରୁ ଶୁଣିଲି ।

: ଏଠିକୁ ଆସିବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଆପଣ କ'ଣ କରୁଥିଲେ ?

: ଶୋଇଥିଲି ।

: ଆପଣ ତା' ହେଲେ ଲାୟଲିର ମୃତ୍ୟୁ ସମ୍ବନ୍ଧରେ ଏଠାକୁ ଆସିବା ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ କିଛି ଜାଣି ନ ଥିଲେ ?

: ନା ।

ଠିକ୍ ସେତିକିବେଳେ ମିଷ୍ଟର କାପୁର ଆଗେଇ ଆସି କହିଲେ : ମୁଁ ଟିକିଏ ଆସୁଛି ସାର୍ । ଏଇ ପାଞ୍ଚ ମିନିଟ୍ ଭିତରେ ଫେରି ଆସିବି ।

ମିଷ୍ଟର କାପୁର ନିଜ ରୁମ୍ ଭିତରେ ପ୍ରବେଶ କରିବାର ଅଳ୍ପ ସମୟ ପରେ, ସତ୍ୟବ୍ରତ ମହାପାତ୍ର ଦରଜା ଖୋଲି ଭିତରେ ପଶିଲେ ।

ମିଷ୍ଟର କାପୁର ବୋଧହୁଏ ଏପରି ଏକ ପରିସ୍ଥିତି ପାଇଁ ପ୍ରସ୍ତୁତ ନଥିଲେ । ସେ ଯେପରି ହଠାତ୍ କ'ଣ ଲୁଚେଇ ପକେଇବାର ଚେଷ୍ଟା କରି ସତ୍ୟବ୍ରତ ମହାପାତ୍ରଙ୍କ ଆଖିରେ ଧରା ପଡ଼ିଗଲେ । ଶାନ୍ତ ସ୍ୱରରେ କହିଲେ : ଏହା ମୋ ମୁଣ୍ଡରେ ଏକ ଅକାଳ ଚଡକ ମିଷ୍ଟର ମହାପାତ୍ର । ମୁଁ କିଛି ବୁଝିପାରୁ ନାହିଁ ।

ସତ୍ୟବ୍ରତ ଗୋଟାଏ ଚେଆର ଟାଣି ମିଷ୍ଟର କାପୁରଙ୍କ ସାମ୍ନାରେ ବସୁ ବସୁ କହିଲେ -

: ଆପଣ ଟିକିଏ ଚେଷ୍ଟାକଲେ ବୁଝିପାରିବେ । ଲାୟଲିର ହତ୍ୟା ପାଇଁ ଯେ ଆଗରୁ ଏକ ଚକ୍ରାନ୍ତ କରାହେଉଥିଲା, ଲାୟଲି ତାହା ବୁଝିପାରିଥିଲା ।

: ମାନେ ?

: ହଁ, ଲାୟଲି ତା'ର ଆଭାସ ପାଇ ମୋ ପାଖକୁ ଯାଇଥିଲା । ମୋ'ର ଅନୁମାନ ଆପଣ ମଧ...

: ନା, ନା ମିଷ୍ଟର ମହାପାତ୍ର ! ଆପଣ ବିଶ୍ୱାସ କରନ୍ତୁ, ମୁଁ ସେ ସମ୍ବନ୍ଧରେ ମୋଟେ କିଛି ଜାଣି ନାହିଁ । ଜାଣିଥିଲେ ଲାୟଲିକୁ ରକ୍ଷାକରିବାକୁ ଆପ୍ରାଣ ଚେଷ୍ଟା କରିଥାଆନ୍ତି ।

: କିନ୍ତୁ ଆପଣ ଅମ୍ବରର ଜଣେ ଅଭିଜ୍ଞ ମ୍ୟାନେଜର ହିସାବରେ ଲାୟଲିର ଏହି ବିପନ୍ନ ଅବସ୍ଥା କଥା ଜାଣିବା ଉଚିତ ଥିଲା ।

: ଲାୟଲି ଆପଣଙ୍କ ପାଖରେ ତା' ବିପନ୍ନ ଅବସ୍ଥା କଥା ବର୍ଣ୍ଣନା କରିଥିଲା ?

: ସେଇଥି ପାଇଁ ତ ମୁଁ ସେଦିନ ରାତିରେ ଆସିଥିଲି ଆପଣଙ୍କ ନିକଟକୁ ।

: ଆପଣ ତ ମୋତେ ସେ ସମ୍ବନ୍ଧରେ କିଛି ସୂଚନା ଦେଇ ନଥିଲେ ?

: ସେଦିନ ସୂଚନା ଦେବାଭଳି କିଛି ଖୋଜି ପାଇ ନ ଥିଲି । ତା'ଛଡା ମୁଁ ଭାବି ନଥିଲି ଏତେ ଶୀଘ୍ର ଏ ନାଟକରେ ଯବନିକା ପଡିଯିବ !

: ମୁଁ ଆପଣଙ୍କ କଥା ଠିକ୍ ବୁଝିପାରୁ ନାହିଁ ମିଷ୍ଟର ମହାପାତ୍ର ।

: ଆପଣ ସବୁ ବୁଝି ଯଦି କିଛି ନ ବୁଝିବାର ବାହାନା କରନ୍ତି, ତେବେ ଆପଣଙ୍କୁ କେହି ବୁଝାଇପାରିବ ନାହିଁ ।

: ମାନେ ?

ସତ୍ୟବ୍ରତ ଧୀରେ ଧୀରେ ଉଠି ଠିଆହେଲେ । କହିଲେ, ଆପଣ କାଲି ରାତିରେ ଲାୟଲି ରୁମ୍‌କୁ ଯାଇ ନଥିଲେ ?

: ମୁଁ ? ନା, ମିଷ୍ଟର ମହାପାତ୍ର, ମୁଁ କେବେ କୌଣସି କର୍ମଚାରୀମାନଙ୍କ ରୁମ୍‌କୁ ଯାଏନାହିଁ ।

: ସେଇଟା ହୁଏତ ଆପଣଙ୍କ ସମ୍ମାନ ବଜାୟ ରଖିବା ପାଇଁ । କିନ୍ତୁ କୌଣସି ବିଶେଷ କାରଣରୁ ଆପଣ ତ ଯାଇପାରିଥାଆନ୍ତି ।

: ଆପଣ କ'ଣ କହିବାକୁ ଚାହୁଁଛନ୍ତି ପରିଷ୍କାର କୁହନ୍ତୁ ମିଷ୍ଟର ମହାପାତ୍ର । ମୁଁ ଠିକ୍, ଆପଣଙ୍କ ରହସ୍ୟମୟ ଇଙ୍ଗିତର ଅର୍ଥ ବୁଝିପାରୁ ନାହିଁ । ମିଷ୍ଟର କାପୁରଙ୍କ କଣ୍ଠସ୍ୱର ବିଚଳିତ ମନେହେଉଥିଲା ।

: ଲାୟଲି ରୁମ୍‌ରେ ଗୋଟିଏ ଶାରୀ ଥିଲା, ଆପଣ ଜାଣନ୍ତି ?

: ଶାରୀ ?

: ହଁ, ଶାରୀ । ସେଇ ଶାରୀର ପଞ୍ଜୁରିଟା ଆପଣଙ୍କ ରୁମ୍‌କୁ କିପରି ଆସିଲା ମୁଁ ବୁଝିପାରୁ ନାହିଁ ।

: ମୋ ରୁମ୍‌ରେ ଶାରୀ-ପଞ୍ଜୁରି ? ମିଷ୍ଟର ମହାପାତ୍ର, ମୁଁ ଦେଖୁଛି ମୋ'ଠାରୁ ଆପଣ ଅଧିକ ପରିମାଣରେ ସନ୍ତୁଳା ହରାଇଛନ୍ତି ।

ମିଷ୍ଟର କାପୁରଙ୍କ ଉତ୍ତର ଶୁଣି ସତ୍ୟବ୍ରତ ହସିଲେ । କହିଲେ : ଆପଣ ସବୁ ଅସ୍ୱୀକାର କଲେ ଚଳିବ ନାହିଁ ! ମିଷ୍ଟର କାପୁର । ପଞ୍ଜୁରିଟା ଏ ପର୍ଯ୍ୟନ୍ତ ବି ଆପଣଙ୍କ ରୁମ୍‌ରେ ଅଛି । ମୁଁ ଦେଖେଇ ଦେଉଛି ।

ସତ୍ୟବ୍ରତ ଦୁଇ ଆଲମାରି ସନ୍ଧିର ମଝି ଅନ୍ଧାରୁଆ ଜାଗାଟିରେ ହାତବୁଲାଇ ଚମକି ଉଠିଲେ । ତା'ହେଲେ... ?

ମିଷ୍ଟର କାପୁର ହସିବାକୁ ଚେଷ୍ଟା କରି କହିଲେ : ଆପଣ ଟିକିଏ ସୁସ୍ଥ ମସ୍ତିଷ୍କରେ ଚିନ୍ତା କରି କୁହନ୍ତୁ ମିଷ୍ଟର ମହାପାତ୍ର । ମୋ ରୁମ୍‌ରେ ଆପଣ ଶାରୀ ପଞ୍ଜୁରି ଖୋଜିଲେ ଲୋକହସା ହେବେ ।

ସତ୍ୟବ୍ରତ ଅବାକ୍ ହୋଇଯାଇଥିଲେ । କାରଣ ପ୍ରକୃତରେ ସେଠାରେ ଶାରୀ ପଞ୍ଜୁରି ନ ଥିଲା ।

ସତ୍ୟବ୍ରତ ନୀରବରେ କିଛି ସମୟ ଠିଆହୋଇ, ମିଷ୍ଟର କାପୁରଙ୍କ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଘରୁ ବାହାରି ଯାଉ ଯାଉ କହିଲେ : ଆଜି ଆସୁଛି । ପୁଣି ଦେଖାହେବ ।

ସତ୍ୟବ୍ରତ ଅମ୍ବରରୁ ବାହାରି ଆସି ସିଧା ଯାଇ କାର୍‌ରେ ବସିଲେ ।

ତାଙ୍କର କାର୍ଯ୍ୟଧାରା ସବୁ ଯେପରି ବିଶୃଙ୍ଖଳ ହୋଇପଡିଥିଲା । କେଉଁଟା ତାଙ୍କର ପ୍ରଥମ କର୍ତ୍ତବ୍ୟ ସେ ଠିକ୍ ଚିନ୍ତା କରିପାରୁ ନ ଥିଲେ ।

କିନ୍ତୁ ବର୍ତ୍ତମାନ ବୋଧହୁଏ ସବୁଠାରୁ ପ୍ରୟୋଜନ କାମ ହେଉଛି, ସଂଜୀବ ଘରେ ଥିବା ଗୁପ୍ତଧନ ରକ୍ଷା କରିବା । ସେ ଯଦିଓ ସ୍ପଷ୍ଟ ଧାରଣା କରି ପାରି ନ ଥିଲେ, କିନ୍ତୁ ତାଙ୍କର ମନେହୋଇଥିଲା ଯେ ସଂଜୀବର ସେହି ଗୁପ୍ତଧନକୁ କେନ୍ଦ୍ର କରି ଏସବୁ ଅଘଟଣର ସୂତ୍ରପାତ ।

ସେଥି ପାଇଁ ଗାଡ଼ି ତାଙ୍କର ଖୋର୍ଦ୍ଧା ଅଭିମୁଖରେ ଆଗେଇ ଚାଲିଥିଲା ।

କିନ୍ତୁ ଲାୟଲିର ହତ୍ୟା ସମ୍ବନ୍ଧରେ ସେ ମହା ସମସ୍ୟାରେ ପଡିଯାଇଥିଲେ ।

ଲାୟଲି ରିପୋର୍ଟ ଯଦି ସତ୍ୟ ହୋଇଥାଏ, ମିଷ୍ଟର କାପୁର ଯଦି ତା' ଉପରେ ଅସନ୍ତୁଷ୍ଟ ହୋଇ, ସାନିକୁ ତା' ଚାକିରି ଦେବା ପାଇଁ ଚକ୍ରାନ୍ତ କରି ହତ୍ୟା କରି ଥାଆନ୍ତି, ତା'ହେଲେ ସେଠାରେ ଗୁପ୍ତଧନର ଗୁପ୍ତ ରହସ୍ୟର କୌଣସି ସମ୍ପର୍କ ନାହିଁ । ଆଉ ଯଦି ଗୁପ୍ତଧନର ସଂଧାନୀ ରୂପେ ଲାୟଲିକୁ ସଂଜୀବ ପଛରେ ନିଯୁକ୍ତ କରାହୋଇଥାଏ, ତେବେ ଲାୟଲିକୁ ହତ୍ୟା କରିବା ମୋଟେ ପ୍ରୟୋଜନ ନ ଥିଲା ।

ତା'ହେଲେ ?

ଲାୟଲି ଯେଉଁଦିନ ଇନ୍ଦ୍ରଜାଲକୁ ସତ୍ୟବ୍ରତ ମହାପାତ୍ରଙ୍କ ନିକଟକୁ ଯାଇଥିଲା, ସେ କ'ଣ ଜାଣିଥିଲା ସେଠାକୁ ସଂଜୀବ ଆସିବ ବୋଲି ? ତା'ଛଡା ଦିନକ ଆଗରୁ ତ ଲାୟଲି ନୀଳିମା ସହିତ ଆପଏଣ୍ଟମେଣ୍ଟ କରି ରଖିଥିଲା । ସେତେବେଳେ ସେ ନିଶ୍ଚୟ ଜାଣି ନଥିଲା ସଂଜୀବ ସତ୍ୟବ୍ରତ ଘରକୁ ଆସିବ ।

ତେବେ ....

ଏ ହତ୍ୟାର ମୂଳ ଉଦ୍ଦେଶ୍ୟ କ'ଣ ଏବଂ କେଉଁଠି ?

ଏକ ସମୟରେ ଗାଡ଼ିଯାଇ ଖୋର୍ଦ୍ଧା ପୋଲିସ୍ ଷ୍ଟେସନରେ ପହଞ୍ଚିଲା ।

ଅଧିରାଜ ମୋହନ ଅଧିକାରୀ ଖବର ପାଇ ସଙ୍ଗେ ସଙ୍ଗେ ଆଗେଇ ଆସି କରମର୍ଦ୍ଦନ କଲେ ।

ସତ୍ୟବ୍ରତ କହିଲେ : ଆଜି ମୋତେ ଟିକିଏ ସାହାଯ୍ୟ କରିବାକୁ ହେବ ।

: ସିଓର । ଅଧିରାଜ ମୋହନ ଅଧିକାରୀର ଏକ୍ କଥା । କେତେଜଣ କନେଷ୍ଟବଲ ଆବଶ୍ୟକ ?

: ବର୍ତ୍ତମାନ କନେଷ୍ଟବଲ ଆବଶ୍ୟକ ନାହିଁ । ଆପଣଙ୍କୁ ମୋ ସହିତ ଟିକିଏ ସ୍ପଟକୁ ଯିବାକୁ ହେବ ।

: ଆଚ୍ଛା, ଆଚ୍ଛା, ମିନିଟିଏ ଅପେକ୍ଷା କରନ୍ତୁ । ମୁଁ ସଙ୍ଗେ ସଙ୍ଗେ ଆସୁଛି ।

ମିନିଟିଏ ବି ଅତିବାହିତ ହେଲା ନାହିଁ । ଅଧିରାଜ ମୋହନ ଅଧିକାରୀ ମାର୍ଚ୍ଚିଂ କରି କରି ଆଗେଇ ଆସିଲେ ।

ସତ୍ୟବ୍ରତ ଦରଜା ଫିଟେଇଦେଲେ ଗାଡ଼ିର ।

କହିଲେ : ମୁଁ ଆପଣଙ୍କୁ କେଉଁଠିକି ନେଇଯାଉଛି ନିଶ୍ଚୟ ବୁଝିପାରୁଥିବେ ।

: ସିଓର । ସେଇ ବାର୍ଡ ହାଉସ୍‌କୁ ତ ?

: ମୁଁ କିନ୍ତୁ ଆପଣଙ୍କର ସେହି 'ବାର୍ଡ ହାଉସ୍'କୁ 'ଜୁଏଲ୍ ହାଉସ୍'ରେ ନାମାନ୍ତରିତ କରିବାକୁ ଚାହେଁ ।

: ମାନେ ?

ସତ୍ୟବ୍ରତ ସ୍ମିତହସି କହିଲେ : ଆପଣମାନେ ଆଜିଯାଏ ଯେଉଁଠି 'ବାର୍ଡ' ଦେଖି ଆସିଲେ, ମୁଁ ସେଇଠି 'ଜୁଏଲ୍‌ର'ର ଗନ୍ଧ ପାଇଛି ।

ଅଧିରାଜ ମୋହନ ଅଧିକାରୀ ସତ୍ୟବ୍ରତ ମୁହଁକୁ କିପରି ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁଲେ ।

: ହଁ ସାର୍, ଆପଣ ବିଶ୍ୱାସ କରନ୍ତୁ । ଆମେ ସେଠାରୁ ଫେରି ଆସିବା ପରେ ଆପଣଙ୍କର ପ୍ରଥମ କର୍ତ୍ତବ୍ୟ ହେବ ତଥା କଥିତ 'ବାର୍ଡ ହାଉସ୍'କୁ ଘେରାଉ କରି ରଖିବା । ଖୁବ୍ ସତର୍କତା ଅବଲମ୍ବନ କରିବାକୁ ହେବ । ଯେପରି ବାହାରର କୌଣସି ଲୋକ ଭିତରେ ପଶିବାର ସୁବିଧା ବା ସୁଯୋଗ ନ ପାଏ ।

: ଓ୍ୱଣ୍ଡର !!

: ହଁ ଓ୍ୱଣ୍ଡର ମିଷ୍ଟର ଅଧିକାରୀ । ଏତେଦିନଯାଏ ଯାହା ଅନାଦୃତ ହୋଇ ପଡିରହିଥିଲା, ଆଜି ରଣଜିତ୍ ରାଉତରାୟଙ୍କ ମୃତ୍ୟୁ ପରେ ତାହା ଆବିଷ୍କୃତ ହେବାକୁ ଯାଉଛି । ଆମ ସରକାରଙ୍କର ଏହି ଦୁର୍ଦ୍ଦିନରେ ଆଶାକରୁଛି ରଣଜିତ୍‌ବାବୁଙ୍କ 'ଜୁଏଲ ହାଉସ୍'ଟି ଯଥେଷ୍ଟ ସହାୟକ ହେବ ।

ଅଧିରାଜ ମୋହନ ଅଧିକାରୀ ସତ୍ୟବ୍ରତଙ୍କ କଥା ଉପରେ ମୋଟେ ଆସ୍ଥା ସ୍ଥାପନ କରିପାରୁ ନ ଥିଲେ ବୋଧହୁଏ ।

ଗାଡ଼ି ଯେତେବେଳେ ଯାଇ ସଂଜୀବର ଘର ଦୁଆରେ ଠିଆହେଲା, ସତ୍ୟବ୍ରତ ଦେଖିଲେ ମେନ ଗେଟଟି ବନ୍ଦ ହୋଇଛି ।

କାରଣ କ'ଣ ? ସେ ଚିତ୍କାର କରି ଡାକିଲେ : ମିଲ୍‌ଖା ସିଂ ?

କିନ୍ତୁ କିଛି ଉତ୍ତର ପାଇଲେ ନାହିଁ । ଥରେ, ଦି'ଥର ତିନିଥର, ଅନେକ ଥର ଡାକିଲେ, କେହି କିଛି ଉତ୍ତର ଦେଲେ ନାହିଁ ।

ଶେଷରେ ଅଧିରାଜ ମୋହନ ଅଧିକାରୀ ଗେଟ୍‌ରେ ଜୋର୍ ଆଘାତ କରି ଆହୁରି ବଡ଼ ପାଟିରେ ଚିତ୍କାର କରି ଡାକିଲେ ।

ପ୍ରାୟ ପନ୍ଦର ମିନିଟ୍ ପରେ ଦରଜା ଖୋଲିଗଲା ।

ମିଲ୍‌ଖା ସିଂ ଦରଜା ଖୋଲିଥିଲା ।

କିନ୍ତୁ ସତ୍ୟବ୍ରତ ମହାପାତ୍ର ହଠାତ୍ ମିଲ୍‌ଖା ସିଂକୁ ଚିହ୍ନିପାରିଲେ ନାହିଁ । ତା'ର ଯଦି ସେହି ଦାଢ଼ି ଆଉ ପଗଡ଼ି ନ ଥା'ନ୍ତା, ସତ୍ୟବ୍ରତ ସତରେ ଚିହ୍ନିପାରି ନ ଥାନ୍ତେ; କାରଣ ମିଲ୍‌ଖା ସିଂର ସେଇ ଦାଢ଼ି ଆଉ ପଗଡ଼ିକୁ ଛାଡ଼ିଦେଲେ ଦେହର ଅନ୍ୟ ସମସ୍ତ ଅଂଶ କାଦୁଅରେ ବୁଡ଼ି ରହିଥିଲା ।

: ତୁମର ଏ କି ଅବସ୍ଥା ମିଲ୍‌ଖା ସିଂ ? ସତ୍ୟବ୍ରତ ପଚାରିଲେ ।

ମିଲ୍‌ଖା ସିଂ କିଛି ଉତ୍ତର ନ ଦେଇ ଖାଲି ଥରେ ହସିଲା । ତା'ପରେ ମେନ୍ ଗେଟ୍‌ଟା ପୁଣି ବନ୍ଦ କରି କର୍ତ୍ତବ୍ୟସ୍ଥଳକୁ ଆଗେଇଗଲା ।

ସତ୍ୟବ୍ରତ ଭିତରେ ପଶି ଦେଖିଲେ ଘର, ବଗିଚା ଚାରିଆଡ଼େ ମାଟି ଖୋଳା ହୋଇଛି । ବୋଧହୁଏ ଏପର୍ଯ୍ୟନ୍ତ ମାଟିଖୋଳା ଚାଲିଛି ।

ଅଧିରାଜ ମୋହନ ଅଧିକାରୀ ଆଶ୍ଚର୍ଯ୍ୟ ହୋଇ ସତ୍ୟବ୍ରତ ମୁହଁକୁ ଚାହିଁଲେ ।

ସତ୍ୟବ୍ରତ କହିଲେ : ଏହା ଆବିଷ୍କାରର ନିଶା ମିଷ୍ଟର ଅଧିକାରୀ । ସଂଜୀବ ବୋଧହୁଏ ଜୁଏଲର ଆବିଷ୍କାର ପାଇଁ ପାଗଳ ହୋଇଉଠିଛି । ସେଇଥିପାଇଁ ମାଟିଖୋଳା ଚାଲିଛି ।

ସତ୍ୟବ୍ରତ ଯାଇ ଦେଖିଲେ, ସଂଜୀବ ନିଜେ କୋଡ଼ି କୋଦାଳ ଧରି ମାଟି ତାଡ଼ିବାରେ ଲାଗିଛି । ଗୋକୁଳି, ମିଲ୍‌ଖା ସିଂ ଆଉ ସଂଜୟ । ଏହି ତିନିଜଣଙ୍କ ଛଡା ଅନ୍ୟ କେହି ଉପସ୍ଥିତ ନାହାନ୍ତି ସେଠାରେ । ସଂଜୀବ ବୋଧହୁଏ ଗୋପନରେ କାର୍ଯ୍ୟୋଦ୍ଧାର ପାଇଁ ଏହି ପନ୍ଥା ଅନୁସରଣ କରି ଚାଲିଛି ।

ସଂଜୀବ ସତ୍ୟବ୍ରତଙ୍କୁ ଦେଖିବାକ୍ଷଣି ମାଟି ତଳୁ ଉଠିଆସିଲା । ଅଳ୍ପ ହସି କହିଲା : ଯେଉଁ କାମ ଆପଣଙ୍କୁ କରେଇବାକୁ ପଡ଼ିଥାଆନ୍ତା, ତାହା ମୁଁ ଆଗରୁ ଶେଷ କରି ଦେବାକୁ ଚାହେଁ ।

ସତ୍ୟବ୍ରତ ହସିଲେ । କହିଲେ : ଆପଣ ଭୁଲ କରୁଛନ୍ତି ସଂଜୀବବାବୁ । ଏପରି ଅନିର୍ଦ୍ଦିଷ୍ଟ ଭାବରେ ଖୋଜିଲେ ଆପଣ କୌଣସି ଦିନ ସେହି ମଣି ମାଣିକର ସନ୍ଧାନ ପାଇବେ ନାହିଁ ।

: କିନ୍ତୁ ଆପଣ କହୁଥିଲେ ଯେ, ଆମ ଏଇ ଏରିଆ ଭିତରେ ଗୁପ୍ତଧନ କେଉଁଠି ଲୁଚି ରହିଛି । ସଂଜୀବ ଆକୁଳ ଆଖିରେ ଚାହିଁଲା ।

: ହଁ, କହିଥିଲି, ଏବେ ବି କହୁଛି । କିନ୍ତୁ ଆପଣ ଭୁଲ୍ କରୁଛନ୍ତି ସଂଜୀବବାବୁ । ସେ ଧନ ଆବିଷ୍କୃତ ହେଲେ ବି ତାହା ଆଉ ଆପଣଙ୍କର ହୋଇପାରିବ ନାହିଁ । ସେ ଧନର ମାଲିକ ହେବେ ସରକାର ।

ସଂଜୀବ ଦେଖିଲା ଅଧିରାଜ ମୋହନ ଅଧିକାରୀ ତା'ରି ଆଡେ ଏକ ଦୃଷ୍ଟିରେ ଅନାଇ ରହିଛନ୍ତି ।

ସଂଜୀବ କହିଲା : ଆପଣମାନେ ଆସନ୍ତୁ ସାର୍ । ଡ୍ରଇଂ ରୁମ୍ ଭଲ ଅଛି । ଏ ପର୍ଯ୍ୟନ୍ତ ମୁଁ ଡ୍ରଇଂ ରୁମ୍‌ଟା ଖୋଲି ନାହିଁ ।

: କିନ୍ତୁ ସଂଜୀବବାବୁ, ମୁଁ ଆଜି ଆଉ ବେଶି ସମୟ ନଷ୍ଟ କରି ପାରିବି ନାହିଁ । କେବଳ ଦୁଇ ଚାରିଟା ପ୍ରଶ୍ନ ପଚାରି ଚାଲିଯିବି ।

: ପଚାରନ୍ତୁ ।

: ଆଚ୍ଛା, ନରୋତ୍ତମ ଅଗରବାଲା ଆପଣଙ୍କ ନିକଟକୁ ଘର କିଣିବାକୁ ଆସିବା ପରେ, ଆପଣ ପୋଲିସ୍‌ରେ ଖବର  ନ ଦେଇ ମୋ ପାଖକୁ କାହିଁକି ଯାଇଥିଲେ ? ଯଦି ଯାଇଥିଲେ, ନିଜ ଇଚ୍ଛାରେ ନା କେହି ଆପଣଙ୍କୁ ଉପଦେଶ ଦେଇଥିଲା ?

ସଂଜୀବ ଟିକିଏ ଚିନ୍ତା କରି କହିଲା : ଠିକ୍ ମୋ ଇଚ୍ଛାରେ ମୁଁ ଆପଣଙ୍କ ନିକଟକୁ ଯାଇ ନାହିଁ । ମୋର ଜଣେ ବନ୍ଧୁ ଆପଣଙ୍କ ନିକଟକୁ ଯିବା ପାଇଁ ପରାମର୍ଶ ଦେଇଥିଲେ ।

: ହୁଁ, ସେଇକଥା କୁହନ୍ତୁ, ସତ୍ୟବ୍ରତ ଯେପରି ଅଥଳ ସମୁଦ୍ରରେ ଥଳ ପାଇଲେ । କହିଲେ, ସେଇ ବନ୍ଧୁଟି ଆପଣଙ୍କର କେଉଁଠି ରୁହନ୍ତି ।

: ସେ ଭୁବନେଶ୍ୱରରେ ଚାକିରି କରନ୍ତି । ଓଡ଼ିଶା ଗଭର୍ଣ୍ଣମେଣ୍ଟ ଏମ୍ପ୍ଲୟୀ ।

: ଆପଣ କ'ଣ ତାଙ୍କ ଆଗରେ ନରୋତ୍ତମ ଅଗରବାଲାଙ୍କ କଥା କହିଥିଲେ ?

: ହଁ,ଆମେ କଥାବାର୍ତ୍ତା ହୋଇଥିଲୁ । ସେ ମୋର ଖୁବ୍ ଅନ୍ତରଙ୍ଗ ବନ୍ଧୁ । ତା'ପାଖରେ କିଛି ଲୁଚେଇବାର କାରଣ ନ ଥିଲା । ସେଇ ମୋତେ ପ୍ରଥମେ ଆପଣଙ୍କ କଥା କହିଥିଲା ।

: ବୁଝିଲି, ତେବେ କଥାବାର୍ତ୍ତା ଆପଣ କେଉଁଠି ଓ କେଉଁଦିନ ହୋଇଥିଲେ ? ଆପଣଙ୍କ କଥାବାର୍ତ୍ତା ଅନ୍ୟ କେହି ଶୁଣିବାର କିଛି ଚାନ୍ସ ଥିଲା ?

ସଂଜୀବ ଆଉଥରେ ଆଖିବୁଜି ଚିନ୍ତା କରି କହିଲା : କଥାବାର୍ତ୍ତା ଆମେ ରାଜମହଲ ହୋଟେଲରେ ବସି ହୋଇଥିଲୁ । ମୋ'ର ମନେପଡୁଛି ଆମର ଆଗ ଓ ପଛ ବେଞ୍ଚରେ ଅନ୍ୟଲୋକ ଥିଲେ । ସେମାନେ ଯେ ଆମ କଥା ଶୁଣିପାରି ନ ଥିବେ, ତାହା ମୁଁ ଜୋର୍ ଦେଇ କହିପାରିବି ନାହିଁ ।

: ଆଚ୍ଛା ଆପଣ କଥାବାର୍ତ୍ତା ହେବାର କେଇଦିନ ପରେ ମୋ ପାଖକୁ ଯାଇଥିଲେ ?

: ଦିନକ ପରେ ।

: ତା'ମାନେ ଯେଉଁଦିନ କଥାବାର୍ତ୍ତା ହେଲେ, ତା' ପରଦିନ ମୋ ପାଖକୁ ଯାଇଥିଲେ ?

: ହଁ ।

: ଆପଣ କ'ଣ ସେଇଠି ସିଦ୍ଧାନ୍ତ କରିଥିଲେ ପରଦିନ ମୋ ପାଖକୁ ଯିବା ପାଇଁ ?

: ହଁ ।

: କାହିଁକି ସେଇଦିନ ଗଲେ ନାହିଁ ?

: ସେଦିନ ବୋଧହୁଏ ରବିବାର ଥିଲା । ବଂଧୁ, ବଂଧୁପତ୍ନୀ ଆଉ ମୁଁ ସମସ୍ତେ ମିଶି ପୁରୀ ବାହାରିଥିଲୁ ।

: ହୁଁ, ଆଚ୍ଛା, ସେଇ ରବିବାର ଦିନ କେତେଟା ବେଳେ ଆପଣମାନେ ରାଜମହଲରେ ବସି କଥାବାର୍ତ୍ତା ହେଉଥିଲେ ?

: ସକାଳେ । ବୋଧହୁଏ ନଅଟା ଦଶଟା ହେବ ।

: ଆପଣଙ୍କ ଆଗ ପଛ ଟେବୁଲରେ କେଉଁମାନେ ବସିଥିଲେ, ଆପଣ ମନେ ପକାଇ ପାରିବେ ?

: ଅସମ୍ଭବ । ସେମାନଙ୍କ ଭିତରୁ କେହି ମୋର ପରିଚିତ ନ ଥିଲେ । ତେବେ ସେମାନଙ୍କ ଭିତରୁ କାହାକୁ ସାମ୍ନାସାମ୍ନି ଦେଖିଲେ, ହୁଏତ ଚିହ୍ନିପାରିବି ।

: କୌଣସି ସ୍ତ୍ରୀଲୋକ ?

: ନାଁ, ମୋର ବଂଧୁ-ପତ୍ନୀଙ୍କୁ ଛାଡ଼ିଦେଲେ, ସେତେବେଳେ ତଳ ହଲ୍‌ରେ ଆଉ କେହି ସ୍ତ୍ରୀଲୋକ ଥିବା ପରି ମନେହେଉ୍ ନାହିଁ ।

: ଆପଣ ନରୋତ୍ତମ ଅଗରବାଲାଙ୍କ କଥା କହି ସାରିବା ପରେ ସେ ଆପଣଙ୍କୁ ପରାମର୍ଶ ଦେଲେ ମୋ ସହିତ ଦେଖା କରିବା ପାଇଁ ?

: ହଁ ।

: ଆପଣ କ'ଣ କହିଲେ ?

: କଥାଟା ମୋ ମନକୁ ପାଇଲା । ମୁଁ କହିଲି, ତା'ହେଲେ କାଲି ସକାଳେ ଦେଖା କରିବି ।

: ତା' ପରେ ?

: ତା'ପରେ ଆମେ ପୁରୀ ଚାଲିଯାଇଥିଲୁ ।

: ଆଉ ଆପଣଙ୍କର ସେଇ ବଂଧୁଟି ?

: ଅଛନ୍ତି । ଦୁଇଦିନ ପୂର୍ବରୁ ଥରେ ଆସିଥିଲେ ।

: ତାଙ୍କ ସହିତ କେଉଁଠି ଦେଖାହେବ ?

: ଇଉନିଟ୍ ଥ୍ରୀରେ ତାଙ୍କର ବସା । କହିବେ ଯଦି ଆପଣଙ୍କୁ ସଂଗରେ ନେଇଯିବି ।

ଏମାନେ କଥାବାର୍ତ୍ତା ହେବାବେଳେ ଅଧିରାଜ ମୋହନ ଅଧିକାରୀ କିନ୍ତୁ ସେଠାରେ ନ ଥିଲେ । ସେ ଉଠିଯାଇଥିଲେ ଯେପରି କାହାର ସନ୍ଧାନରେ ।

ସାମାନ୍ୟ ନୀରବତା ପରେ ସଂଜୀବ କହିଲା : ବୋଧହୁଏ ଆମର ପଣ୍ଡଶ୍ରମ ହେଉଛି । ଗୁପ୍ତଧନ ତା'ହେଲେ ବାପା ଆଉ ରଖିଗଲେ କେଉଁଠି ?

: ଆପଣ ସେ ଆଶା ଛାଡନ୍ତୁ ସଂଜୀବ ବାବୁ । ତା'ଛଡା ଆପଣଙ୍କର ଯାହା ପାଇଁ ଏତେ ପରିଶ୍ରମ, ସେ ଆଉ ନାହିଁ ।

: ମାନେ ?

: ଲାୟଲି କାଲି ରାତିରେ ଖୁଣ୍ ହୋଇଛି ।

: ଲାୟଲି ଖୁଣ୍ ହୋଇଛି ? ସଂଜୀବ ଯେପରି ଚିତ୍କାର କରି ଉଠିଲା । ସେ ଠିଆ ହୋଇ ପଡିଲା । ମୁହଁର ଭାବ ପରିବର୍ତ୍ତନ ହୋଇଗଲା । ସମଗ୍ର ଅବୟବ ତା'ର କମ୍ପିବାକୁ ଲାଗିଲା ।

ସତ୍ୟବ୍ରତ ଉଠିଯାଇ ସଂଜୀବର ବାହୁ ଦୁଇଟା ଧରି ସୋଫା ଉପରେ ବସାଇଦେଲେ । କହିଲେ : ଆପଣ ଶାନ୍ତ ହୁଅନ୍ତୁ ସଂଜୀବବାବୁ । ଲାୟଲି ଆପଣଙ୍କୁ ଭଲ ପାଇବା ପାଇଁ ଆସି ନ ଥିଲା, ଆସିଥିଲା ଉଦ୍ଦେଶ୍ୟ ସାଧାନ କରିବା ପାଇଁ । ତା' କାମ ଶେଷ ହୋଇ ଯାଇଛି । ସେଇଥି ପାଇଁ ତାକୁ ପୃଥିବୀରୁ ବିଦାୟ କରି ଦିଆହେଲା ।

ସଂଜୀବ ଜଡ଼ିତ କଣ୍ଠରେ କହିଲା : ଆପଣ ଯାହା କୁହନ୍ତୁ ମିଷ୍ଟର ମହାପାତ୍ର, ଲାୟଲି କିନ୍ତୁ ମୋ ପାଖରେ ଛଳନା କରୁ ନଥିଲା । ମୋତେ ତା' ଅନ୍ତରର କଥା କହିଥିଲା । ତା' ଜୀବନ ଧାରଣର ଇତିବୃତ୍ତି କହିଥିଲା । ଲାୟଲି ପରି ଏତେ ସରଳ ଆଉ ଏତେ ଆପଣାର ଝିଅ ସହଜରେ ଆଖିରେ ପଡ଼େ ନାହିଁ ।

ସତ୍ୟବ୍ରତ ପ୍ରସଙ୍ଗ ବଦଳାଇ କହିଲେ : ଆପଣଙ୍କ ବାଡ଼ି ବଗିଚାରେ ନିଶ୍ଚୟ କେଉଁଠି ଗୋଟାଏ କୂଅ ଥିଲା ?

ସତେ ତ ! ସଂଜୀବର ଅନ୍ତର ଭିତରଟା ହଠାତ୍ ଯେପରି ଦୋହଲି ଉଠିଲା । ଏ ପର୍ଯ୍ୟନ୍ତ ତ ସେ ତାଙ୍କର ପରିତ୍ୟକ୍ତ କୂଅଟାର କଥା ଚିନ୍ତା କରି ନାହିଁ । ବାପା ନିଶ୍ଚୟ ସେଇ କୂଅ ଭିତରେ ଗୁପ୍ତଧନ ସାଇତି ରଖିଯାଇଛନ୍ତି । କିନ୍ତୁ, ଲାୟଲିର ମୃତ୍ୟୁ ସଂବାଦ ପାଇବା ପରଠାରୁ ସଂଜୀବର ସମସ୍ତ ପ୍ରକାର ଉତ୍ସାହ ହଜିଯାଇଥିଲା । ତା'ହେଲେ କାହା ପାଇଁ ଆଉ ଏତେ ଦୁଶ୍ଚିନ୍ତା, କାହା ସଂଗରେ ସୁଖନୀଡ ରଚନାର ପରିକଳ୍ପନା ?

ସତ୍ୟବ୍ରତ କିନ୍ତୁ ଉତ୍ତର ପାଇଁ ପ୍ରତୀକ୍ଷା କରିଥିଲେ ।

ସଂଜୀବ କିଛି ସମୟ ପରେ ଆତ୍ମସ୍ଥ ହୋଇ କହିଲା : ହଁ, କୂଅ ଗୋଟାଏ ପାରା ଘରର ସେପାଖକୁ ଥିଲା । ବର୍ତ୍ତମାନ ବୋଧହୁଏ ତା' ଉପରେ କଣ୍ଟାଝଟା ମାଡ଼ି ସେଇଟାକୁ ଲୁଚେଇ ଦେଇଛି । କାହିଁ ମୋ ଆଖିରେ ତ ପଡିନାହିଁ ଅନେକ ଦିନରୁ !

ସତ୍ୟବ୍ରତ ଉଠି ଠିଆହେଲେ । ସଂଜୀବ ତାଙ୍କ ପଛେ ପଛେ ଉଠିଲା ।

ପାରାଘର ସେପାଖରେ ଯେଉଁଠି କୂଅର ସୂଚନା ଦେଲା ସଂଜୀବ, ସେଠି କେବଳ କଣ୍ଟା ଝଟାର ଗୋଟିଏ ଛୋଟ ଜଙ୍ଗଲ ଛଡା ଅନ୍ୟ କିଛି ଦେଖାଯାଉ ନଥିଲା ।

ଅଧିରାଜ ମୋହନ ଅଧିକାରୀ ମିଲିଟାରୀ ମେଜାଜ୍‌ରେ ବୁଲି ବୁଲି ପକ୍ଷୀମାନଙ୍କୁ ଦେଖୁଥିଲେ । ଶୁଆ, ଶାରୀ, ପାରା, ପ୍ରତ୍ୟେକଙ୍କ ପଞ୍ଜୁରି ପାଖରେ ଠିଆହୋଇ, ବହୁବର୍ଷ ପରେ ଯେପରି ସେମାନଙ୍କୁ ଚିହ୍ନିବାକୁ ଚେଷ୍ଟା କରୁଥିଲେ ।

ସତ୍ୟବ୍ରତଙ୍କ ଆହ୍ୱାନରେ ମାର୍ଚ୍ଚିଂଭଂଗୀରେ ଆଗେଇ ଆସି କହିଲେ : ମୋର ମନେ ହେଉଛି, ବାର୍ଡସ୍ ଅନେକ କମିଯାଇଛନ୍ତି । ମୁଁ ଯେତେବେଳେ ଆସିଥିଲି, ସେତେବେଳେ ଆହୁରି ବିଭିନ୍ନ ଜାତିର ଅଧିକ ବାର୍ଡ ଥିଲେ ।

ସତ୍ୟବ୍ରତ ତାଙ୍କ କଥାରେ କାନ ନ ଦେଇ କହିଲେ : ଶୁଣନ୍ତୁ ସାର୍ । ଏଇ ଯେଉଁ ଜଙ୍ଗଲିଆ ଜାଗାଟା ଦେଖୁଛନ୍ତି, ଏଠାରେ ଗୋଟାଏ କୂଅ ଅଛି ।

: ରାଇଟ୍ । ଅଧିରାଜ ମୋହନ ଅଧିକାରୀ ଉତ୍ତରରେ କହିଲେ ।

: ଆପଣ ଲୋକ ଲଗାଇ ସେଇ ଜଙ୍ଗଲଟା କାଟି କୂଅଟା ଆବିଷ୍କାର କରିବେ ।

: ରାଇଟ୍ ।

: କୂଅଟା ପରିଷ୍କାର କରି ଦେଖିବେ ପୋତିହୋଇ ପଡିଛି କି ନାହିଁ । ଯଦି ପୋତିହୋଇ ପଡିଥିବ ତେବେ ପଙ୍କ ଖୋଳାଇ ତା' ଭିତରୁ ଗୁପ୍ତଧନର ସଂଧାନ କରିବେ ।

: ରାଇଟ୍ । ତା'ପରେ ?

: ଆଉ ସଂଜୀବବାବୁଙ୍କର କୋଠା ଚାରିପଟେ ପୋଲିସ୍ ପହରା ବସାଇ ଦେବେ । ଏଇ ମୁହୂର୍ତ୍ତଠାରୁ । କେହି ଯେପରି ଭିତରେ ପ୍ରବେଶ କରି ନ ପାରେ ।

: ରାଇଟ୍ ।

ତା'ପରେ ସତ୍ୟବ୍ରତ ଏପାଖ ସେପାଖ ହୋଇ ଯାଇ ଗୋଟାଏ ଶାରୀ ପାଖରେ ପହଞ୍ଚିଲେ । ଶାରୀଟି ପଞ୍ଜୁରୀ ଭିତରେ ଏପାଖ ସେପାଖ ଡେଇଁ ବୋଧହୁଏ ମୁକ୍ତିର ପଥ ଖୋଜୁଛି ।

ସତ୍ୟବ୍ରତ ସଂଜୀବକୁ ପାଖକୁ ଡାକି କହିଲେ : ମୋତେ ଏଇ ଶାରୀଟିକୁ ଦିନକ ପାଇଁ ଦେବାକୁ ହେବ ।

: ଦିନକ ପାଇଁ କାହିଁକି ? ସଂଜୀବ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା ।

: ମୁଁ ଜଣେ ପକ୍ଷୀ ବିଶେଷଜ୍ଞଙ୍କୁ ଡାକିଛି । ସେ ଆଜି ଚାରିଟା ବେଳକୁ ଇନ୍ଦ୍ରଜାଲକୁ ଆସିଲେ । ଏ ଶାରୀ କେଉଁ ଜାତିର ତାଙ୍କୁ ଦେଇ ପରୀକ୍ଷା କରାଇବି ।

: ତା' ଦ୍ୱାରା ଲାଭ କ'ଣ ହେବ ?

: ସେ କଥା କାଲି ଶୁଣିବେ । ବର୍ତ୍ତମାନ ଆପଣ ମନ ଭିତରେ ଆଉ କୌଣସି ଦୁଶ୍ଚିନ୍ତା ନ ରଖି ସୁସ୍ଥ ଭାବରେ କାମ କରନ୍ତୁ ।

: କିନ୍ତୁ ମିଷ୍ଟର ମହାପାତ୍ର... ସଂଜୀବ ଏକ ଛାତିଫଟା ଦୀର୍ଘଶ୍ୱାସ ପକାଇ ନୀରବ ହୋଇଗଲା ।

: ମୁଁ ଆପଣଙ୍କ ମନର ଅବସ୍ଥା ବୁଝିଛି ସଂଜୀବ ବାବୁ । କିନ୍ତୁ କିଛି ଉପାୟ ନାହିଁ । ହୁଏତ ଆମେ ଗୁପ୍ତଧନ ଖୋଜି ପାଇବା, ହେଲେ ଲାୟଲି ଆଉ ଫେରିବ ନାହିଁ । ଆପଣ ତ ପିଲା ନୁହନ୍ତି !

ସଂଜୀବ କୌଣସି ଉତ୍ତର ଦେଲା ନାହିଁ । ସେ ନୀରବରେ ତଳକୁ ମୁହଁପୋତି ଠିଆ ହୋଇଥିଲା ।

ସତ୍ୟବ୍ରତ ତା' ପିଠିରେ ହାତ ଥାପୁଡେଇ କହିଲେ : ଦୁଶ୍ଚିନ୍ତା ତ୍ୟାଗ କରନ୍ତୁ ସଂଜୀବବାବୁ । ମଣିଷ ଜୀବନ ଦୁଃଖ ସୁଖର ଲୁଚକାଳି ଖେଳ । ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ । ଏହାର ବ୍ୟତିକ୍ରମ ମଣିଷର ସାଧ ନୁହେଁ ।

: କିନ୍ତୁ ଲାୟଲିକୁ କିଏ କାହିଁକି ହତ୍ୟା କଲା ? ସେ କାହାର କି ଦୋଷ କରିଥିଲା ? ସଂଜୀବ ଜଡ଼ିତ କଣ୍ଠରେ ପଚାରିଲା ।

ସତ୍ୟବ୍ରତ ସ୍ମିତହସି କହିଲେ : ଦୁନିଆଟାକୁ ଆପଣ ଯେତେ ସହଜ ଭାବୁଛନ୍ତି, ତାହା କିନ୍ତୁ ସେତେ ସହଜ ନୁହେଁ ସଂଜୀବବାବୁ । ଲାୟଲିର ମୃତ୍ୟୁ ପାଇଁ ଆପଣ ଯେତିକି ବ୍ୟଥିତ, ହୁଏତ ଲାୟଲିର ମୃତ୍ୟୁରେ ଆଉ ଜଣେ ସେତିକି ପୁଲକିତ । ଆପଣ ଅଶ୍ରୁ ବିସର୍ଜନ କଲାବେଳେ ଆର ଜଣକ ହାସ୍ୟରୋଳରେ ଗଗନ ଫଟାଇଥିବ । ଲାୟଲିର ହତ୍ୟା ମଧ ଉଦ୍ଦେଶ୍ୟପୂର୍ଣ୍ଣ ଏବଂ ମୁଁ ଯଦି କୁହେ ତାହା ଆପଣଙ୍କ ଗୁପ୍ତଧନକୁ କେନ୍ଦ୍ର କରି ?

: ଆମ ଗୁପ୍ତଧନକୁ କେନ୍ଦ୍ର କରି ? ସଂଜୀବ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

: ହଁ, ମୋର ଅନୁମାନ ସେଇଆ । ହୁଏତ ଲାୟଲି ଥିଲା ନରୋତ୍ତମ ଅଗରବାଲାଙ୍କ ସିକ୍ରେଟ୍ ଏଜେଣ୍ଟ । ସେ ନିଯୁକ୍ତ ହୋଇଥିଲା ଆପଣଙ୍କ ଘରୁ ଗୁପ୍ତ ଧନର ସନ୍ଧାନ କରିବା ପାଇଁ ।

: ଏପରି ଅନୁମାନ କିନ୍ତୁ ଲାୟଲି ପକ୍ଷରେ ପଯୁଜ୍ୟ ନୁହେଁ ମିଷ୍ଟର ମହାପାତ୍ର । ମୁଁ କହିବି ଆପଣ ତା'ହେଲେ ଜୋର୍ କରି ଲାୟଲି ମୁଣ୍ଡରେ କଳଙ୍କ ବୋଳିବାକୁ ଚାହାନ୍ତି ।

ସତ୍ୟବ୍ରତ ସଂଜୀବ ମୁହଁରୁ ଏପରି କଥା ଶୁଣି ମନେ ମନେ ହସିଲେ, କହିଲେ : ହୁଏତ ମୋ'ର ଅନୁମାନ ମିଥ୍ୟା ହୋଇପାରେ; କିନ୍ତୁ ଏଇଟା ସତ ଯେ, ଲାୟଲି କେବେ ଆପଣଙ୍କୁ ଭଲ ପାଇ ଆପଣଙ୍କ ସହିତ ଘର ସଂସାର ବାନ୍ଧିବାକୁ ଆସି ନ ଥିଲା ।

ସଂଜୀବ କେବଳ ଆକୁଳ ଆଖିରେ ଚାହିଁଲା ସତ୍ୟବ୍ରତର ମୁହଁକୁ; ଆଉ କୌଣସି ଉତ୍ତର ଦେଇପାରିଲା ନାହିଁ ।

ସତ୍ୟବ୍ରତ ଇନ୍ଦ୍ରଜାଲରେ ପହଞ୍ଚିବା ବେଳକୁ ପ୍ରାୟ ଏଗାରଟା ବାଜିଯାଇଥିଲା ।

ଓଃ ! ରାତି ଦୁଇଟାରୁ ଉଠି ଏପର୍ଯ୍ୟନ୍ତ ଏକା ଭାବରେ କାମ କରି ଆଉ ଭଲ ଲାଗୁ ନ ଥିଲା । ଲନ୍‌ରେ ଗାଡ଼ିଟା ଠିଆ କରି, ସେ ଓହ୍ଲେଇ ଗଲେ ।

ନୀଳିମା ଆଗେଇ ଆସିଥିଲା ।

ସତ୍ୟବ୍ରତ କହିଲେ : ଖବର କ'ଣ ?

: ସବ୍ୟସାଚୀବାବୁ ଫେରି ଆସିଛନ୍ତି ।

: କୁଆଡ଼େ ଗଲା ?

: ଏଇକ୍ଷିଣା ଆସିବେ, କହି ଯାଇଛନ୍ତି ।

: ଆଉ ?

: ନୀଳମଣି ସାମନ୍ତରାୟ ଫୋନ୍ କରିଥିଲେ । ଆପଣ ପହଞ୍ଚିବା ମାତ୍ରକେ ତାଙ୍କୁ ଫୋନ୍ କରିବାକୁ କହିଛନ୍ତି ।

: ଠିକ୍ ଅଛି । ତମେ ଗୋଟାଏ କାମ କରିବ । ଗାଡ଼ି ଭିତରେ ଗୋଟାଏ ଶାରୀ ପଞ୍ଜୁରି ଅଛି । ସେଇଟାକୁ ମୋ' ଚେମ୍ବରକୁ ପଠାଇଦେବ ।

ସତ୍ୟବ୍ରତ ଏତିକି କହିସାରି ଉପରକୁ ଉଠି ଚାଲିଗଲେ । ବର୍ତ୍ତମାନ ତାଙ୍କୁ ଦାନ୍ତ ଘସିବାକୁ ହେବ, ଗାଧୋଇବାକୁ ହେବ । ସକାଳର ସବୁ ନିତ୍ୟକର୍ମ ବାକି ପଡିଛି । ସେ ଲୁଗାପଟା ପାଲ୍‌ଟି ପକାଇ ସିଧା ସଳଖ ବାଥ୍‌ରୁମ୍ ଭିତରେ ପଶିଲେ ।

ନୀଳିମା ଗାଡ଼ି ଭିତରୁ ଶାରୀ ପଞ୍ଜୁରିଟିକୁ ଉଠାଇ ଆଣି ଭାବିଥିଲା, ନିଜେ ନେଇ ସତ୍ୟବ୍ରତଙ୍କ ଚେମ୍ବରରେ ଟଙ୍ଗାଇ ଦେଇଆସିବ । କିନ୍ତୁ ତା' ପକ୍ଷରେ ସେହି ଲୁହା ପଞ୍ଜୁରିଟା ଧରି ଉପରକୁ ଉଠିବା ସମ୍ଭବ ନୁହେଁ । ତା'ର ରିସେପ୍‌ସନ ରୁମ୍‌ରେ ଗୋଟାଏ ରଡ୍‌ରେ ପଞ୍ଜୁରିଟି ଟଙ୍ଗାଇ ଦେଇ ଶାରୀଟି ଆଡ଼େ ଅନାଇ ରହିଲା ।

ଶାରୀଟି ପଞ୍ଜୁରିର ଏପାଖ ସେପାଖ ହୋଇ ନାଚୁଥିଲା । ବେଳେ ବେଳେ ନୀଳିମା ଆଡ଼େ ଚାହିଁ ରାବି ଉଠୁଥିଲା ।

ନୀଳିମା ଉଠିଯାଇଥିଲା ଶାରୀ-ପଞ୍ଜୁରି ପାଖକୁ ।

ପଛଆଡୁ ସବ୍ୟସାଚୀର କଣ୍ଠସ୍ୱର ଶୁଣାଗଲା : ତମ ବସ୍ ଫେରିଲେଣି ?

: ହଁ ଏଇ ଅଳ୍ପ ସମୟ ହେବ ଫେରିଲେ ।

: ଏ ସଉକ୍ ପୁଣି କେବେଠୁ ? ସତ୍ୟବ୍ରତ ଶାରୀ-ପଞ୍ଜୁରି ଆଡ଼େ ହାତ ବଢ଼ାଇ ପଚାରିଲେ ।

: ଆଜି ଆଣିଛନ୍ତି ।

: ବାଃ, ଦିନକୁ ଦିନ 'ହବି'ତ ବଢ଼ିଚାଲିଚି ତମ ବସ୍‌ଙ୍କର ।

ସବ୍ୟସାଚୀ ଉପରକୁ ଉଠିଯାଉଥିଲେ ।

ଚେମ୍ବରର ଦରଜା ଖୋଲି ସବ୍ୟସାଚୀ ଶୂନ୍ୟ ଚେଆର ଦେଖି, ଅନ୍ୟ ଘର ଆଡ଼େ ମୁହାଁଇଲେ ।

ସତ୍ୟବ୍ରତ ଗାଧୋଇ ଆସି ପୋଷାକ ବଦଳାଉଥିଲେ । ସବ୍ୟସାଚୀକୁ ଦେଖି କୁଣ୍ଠାଇ ପକାଇ କହିଲେ : ମୁଁ ତୋରି ପ୍ରତୀକ୍ଷାରେ ବସିଛି ସବ୍ୟ । ତୋରି ରିପୋର୍ଟ ଉପରେ ମୋର ଡ଼ିସିସନ ନିର୍ଭର କରୁଛି ।

ସବ୍ୟସାଚୀ କହିଲେ : ମୋ ରିପୋର୍ଟ ଉପରେ ଯଦି ତୋ' ଡ଼ିସିସନ ନିର୍ଭର କରୁଥାଏ, ତେବେ ତୋତେ ନିରାଶହେବାକୁ ପଡିବ ନାହିଁ । ଏସିଆ ଟ୍ରେଡିଂ କମ୍ପାନୀକୁ ମୁଁ ଯାଇ ପ୍ରଥମେ ତାଙ୍କ ମ୍ୟାନେଜରଙ୍କ ସହିତ ଦେଖାକରିଥିଲି । ଭଦ୍ରଲୋକ ଖୁବ୍ ଅମାୟିକ ମନେ ହୋଇଥିଲେ:

କିନ୍ତୁ ରଣଜିତ୍ ରାଉତରାୟଙ୍କ ନାମ ଶୁଣିବାକ୍ଷଣି ତାଙ୍କର ଚେହେରାଟା ସଂପୂର୍ଣ୍ଣ ବଦଳିଗଲା । ମୋ'ର ମନେହେଲା, ସେ ମୋତେ ଅବିଶ୍ୱାସ ଦୃଷ୍ଟିରେ ଚାହୁଁଛନ୍ତି ।

ଦିନକ ପରେ ଆସି ଅନ୍ୟାନ୍ୟ ଖବର ବୁଝିଯିବା ପାଇଁ ସେ ମୋତେ କହିଲେ ।

କିନ୍ତୁ ପରଦିନ ଯିବାବେଳକୁ କେହି ମୋ' ସହିତ ସହଯୋଗ କଲେ ନାହିଁ ।

ତଥାପି ମୁଁ ନିରାଶ ହେଲି ନାହିଁ । ସେହି କମ୍ପାନୀରେ ଜଣେ ବୁଢ଼ା ଓଡ଼ିଆ କର୍ମଚାରୀ ଥିଲେ । ସେ ମୋର ପରିଚୟ ପାଇ ମୋତେ ଯଥେଷ୍ଟ ସାହାଯ୍ୟ କଲେ । ତୁ ଯେଉଁ ପାଞ୍ଚଦଫା ବିବରଣୀ ମୋତେ ଜାଣି ଆସିବା ପାଇଁ କହିଥିଲୁ, ହେଇ ନେ । ସବ୍ୟସାଚୀ ପକେଟରୁ ଗୋଟିଏ କାଗଜ ବାହାର କରି ବଢ଼ାଇଦେଲା ।

ଏକରେ - ଏସିଆ ଟ୍ରେଡିଂ କମ୍ପାନୀରେ ରଣଜିତ୍ ରାଉତରାୟ ନାମରେ ଜଣେ ଓଡ଼ିଆ ଲୋକ ଦଶ ବର୍ଷ ଚାକିରି କରିଥିଲେ ।

ଦୁଇରେ - ୧୯୬୧ ମସିହା ମାର୍ଚ୍ଚ ମାସରେ ସେ ଚାକିରି ଛାଡ଼ିଦେଲେ । ତାଙ୍କ ଚାକିରି ଛାଡ଼ିବା ସମ୍ପର୍କରେ ବିଭିନ୍ନ ମତ ଶୁଣିଲି । କମ୍ପାନୀର ମାଲିକ ସହିତ ମନୋମାଳିନ୍ୟ ହେବାରୁ ରଣଜିତ୍ ସାମନ୍ତରାୟ ନିଜେ ଚାକିରୀ ଛାଡ଼ିଦେଲେ । ଅନ୍ୟ ଏକ ମତରେ, ଚାକିରୀରୁ ତାଙ୍କୁ ଡିସ୍‌ମିସ୍ କରାହୋଇଥିଲା । ପୁଣି ଶୁଣିଲି, କମ୍ପାନୀର ବହୁ ଟଙ୍କା ସେ ଆତ୍ମସାଦ୍ କରି ନିଜେ ଘରେ ଯାଇ ଚୁପ୍‌ଚାପ୍ ବସିଗଲେ । ଏଥିରୁ କେଉଁଟା ଠିକ୍ ଜାଣିବାର କିଛି ଉପାୟ ନାହିଁ ।

ତିନ୍‌ରେ - ଏସିଆ ଟ୍ରେଡିଂ କମ୍ପାନୀର ସେ ଥିଲେ ପଦସ୍ଥ ରିପ୍ରେଜେଣ୍ଟେଟିଭ । ଅଫିସ୍ ଓ ଫିଲ୍‌ଡ ଉଭୟ ଜାଗାରେ ତାଙ୍କୁ କାମ କରିବାକୁ ହେଉଥିଲା । ମାସକୁ ସେ ଦରମା ପାଉଥିଲେ ୭୫୫ ଟଙ୍କା । ଅନ୍ୟାନ୍ୟ ଆୟର ଯଥେଷ୍ଟ ସୋର୍ସ ଥିଲା । ତେବେ ମାସକୁ ତାହାର ପରିମାଣ ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ ।

ଚାରିରେ - ଏସିଆ ଟ୍ରେଡିଂ କମ୍ପାନୀର ବ୍ୟବସାୟ ଯେ କ'ଣ ନୁହେଁ କହି ହେବ ନାହିଁ । ତେବେ ତାଙ୍କର ମୁଖ୍ୟ ବ୍ୟବସାୟ 'ଏକ୍‌ସପୋର୍ଟ' 'ଇମ୍‌ପୋର୍ଟ' । ତେଣୁ ବ୍ୟବସାୟ ଯେ ଦରିଆ ସେପାରିଯାଏ ବିସ୍ତୃତ ଥିଲା, ସହଜରେ ଅନୁମେୟ ।

ପାଞ୍ଚରେ - ରଣଜିତ୍ ରାଉତରାୟ ପାର୍କଷ୍ଟ୍ରୀଟ୍ ଅଞ୍ଚଳରେ ଗୋଟିଏ ଫ୍ଲାଟ୍ ଭଡା ନେଇ ରହୁଥିଲେ । ସେ ଫ୍ଲାଟ୍‌ର ଭଡା ଥିଲା ମାସକୁ ତିନିଶହ ଟଙ୍କା । ଏବେ ସେ ଫ୍ଲାଟ୍‌ଟିରେ ଜଣେ ପଞ୍ଜାବୀ ଇଂଜିନିୟର ବାସ କରନ୍ତି । ରଣଜିତ୍‌ବାବୁ ଛାଡ଼ିବା ପରେ ପରେ ଭଦ୍ରଲୋକ ଫ୍ଲାଟ୍‌ଟିରେ ଅଛନ୍ତି । ତାଙ୍କ ପାଖରେ ଯେଉଁ ଚାକରଟି ଅଛି, ସେ ରଣଜିତ୍‌ବାବୁଙ୍କ ପାଖରେ ଶେଷ ତିନି ବର୍ଷ ଚାକିରୀ କରିଥିଲା । ତା' କହିବା ଅନୁସାରେ ରଣଜିତ୍‌ବାବୁ ସେ ଅଞ୍ଚଳରେ ଜଣେ ସ୍ୱନାମଧନ୍ୟ ଲୋକ ଥିଲେ । ବହୁ ଦାନଧ୍ୟାନ କରୁଥିଲେ । ସେଇଥି ପାଇଁ ତାଙ୍କ ଘରେ କଲିକତାର ବିଭିନ୍ନ ଅନୁଷ୍ଠାନଗୁଡ଼ିକ ପକ୍ଷରୁ କର୍ମକର୍ତ୍ତାମାନେ ଆସି ସବୁବେଳେ ଭିଡ଼ ଲଗେଇ ରହୁଥିଲେ ।

ସତ୍ୟବ୍ରତ ସବ୍ୟସାଚୀର ରିପୋର୍ଟଟି ପାଠ ଶେଷ କରି ଆଶାୟୀ ଆଖିରେ ଅନାଇଲେ । ଯାହାର ଅର୍ଥ ଖାଲି ଏଇ ଲେଖା ଏତକ ନା ଆଉ କିଛି ଅଛି ?

ସବ୍ୟସାଚୀ ଟିକିଏ ନୀରବ ରହି ଅଳ୍ପ ହସି କହିଲେ : ଏହାଛଡା ଆହୁରି ଗୋଟାଏ ଖବର ଅଛି ସତ୍ୟ; ଯାହା ଶୁଣିଲେ ତୁ ସ୍ତବ୍ଧ ହୋଇଯିବୁ। ନିଜ କାନକୁ ବିଶ୍ୱାସ କରି ପାରୁବୁ ନାହିଁ। ମୁଁ ବି ପାରି ନ ଥିଲି।

ସତ୍ୟବ୍ରତ ସେହିପରି ଆଶାୟୀ ଆଖିରେ ଅନାଇ ରହି କହିଲେ : ମୁଁ ସେଇ ଖବରଟା ଜାଣିବା ପାଇଁ ତୋତେ କଲିକତା ପଠାଇଥିଲି ସବ୍ୟ। ଏସିଆ ଟ୍ରେଡିଂ କମ୍ପାନୀର ବହୁ ମୂଲ୍ୟବାନ ସମ୍ପଦ ନିଶ୍ଚୟ ରଣଜିତ୍‌ବାବୁ ହାତପଇଠ କରି ଖସିଆସିଛନ୍ତି।

: ତୁ କିପରି ଜାଣିଲୁ ? ସବ୍ୟସାଚୀଙ୍କ କଣ୍ଠରେ ବିସ୍ମୟ ଫୁଟିଉଠିଲା।

ସତ୍ୟବ୍ରତ ଉଦ୍‌ବିଗ୍ନ ହୋଇ ଉଠିଥିଲେ। କହିଲେ : ସେ କଥା ମୁଁ ପରେ କହିବି। ଆଗ କହ, ସମ୍ପଦଟା କ'ଣ ?

: ସୁନା। ସବ୍ୟସାଚୀ ସହଜ କଣ୍ଠରେ କହିଲେ।

ସତ୍ୟବ୍ରତ ସବ୍ୟସାଚୀକୁ କୁଣ୍ଢାଇ ଧରି ନାଚିଯାଇ କହିଲେ : ଠିକ୍ ମୋ' ଅନୁମାନ ସହିତ ମିଶିଯାଇଛି ସବ୍ୟ। ପରିମାଣ ସମ୍ବନ୍ଧରେ କିଛି ଖବରପାଇଛୁ ?

: ପରିମାଣ କଥା ସେ କହିପାରିଲା ନାହିଁ। କିନ୍ତୁ ପରିମାଣ ବହୁତ। ଏସିଆ ଟ୍ରେଡିଂ କମ୍ପାନୀର ମୁଖ୍ୟ ବ୍ୟବସାୟ ହେଉଛି ସ୍ମଗଲିଂ। ରଣଜିତ୍‌ବାବୁ ଥିଲେ ମାଲିକର ଖୁବ୍ ବିଶ୍ୱସ୍ତ କର୍ମଚାରୀ। ସେଇଥି ପାଇଁ ଖୁବ୍ ଦରକାରୀ ଓ ଗୋପନ ସ୍ଥାନଗୁଡ଼ିକୁ ମାଲିକ ରଣଜିତ୍‌ବାବୁଙ୍କୁ ପଠାଉଥିଲେ। ସେହିପରି ଏକ ସୁଯୋଗରେ ରଣଜିତ୍‌ବାବୁ ହାତ ଚିକ୍କଣେଇ ଖସି ଚାଲିଗଲେ। ଏସିଆ ଟ୍ରେଡିଂ କମ୍ପାନୀର ମାଲିକ କିଛି କରିପାରିଲେ ନାହିଁ; ସବୁ ତ ଚୋରା କାରବାର, ଆଇନତଃ କରିବାର କିଛି ବାଟ ନାହିଁ; କିନ୍ତୁ ଶୁଣିଲି, ଏସିଆ ଟ୍ରେଡିଂ କମ୍ପାନୀର ମାଲିକ ସେଇଦିନୁ ରଣଜିତ୍‌ବାବୁଙ୍କ ପଛରେ ଲାଗିଛନ୍ତି; ହେଲେ ସେହି ଗୁପ୍ତ ସମ୍ପଦର ଉଦ୍ଧାର କରିବା ତାଙ୍କ ପକ୍ଷରେ ସମ୍ଭବ ହେଉ ନାହିଁ।

: ହୁଁ, ସତ୍ୟବ୍ରତ ଗମ୍ଭୀର ହୋଇ ବସି କ'ଣ ଚିନ୍ତା କଲେ।

ସବ୍ୟସାଚୀ କହିଲେ : ମୁଁ ତା'ହେଲେ ଆସୁଛି ସତ୍ୟ। ଆଶା କରୁଛି ତୁ ଏଥର ଡ଼ିସିସନ ନେଇପାରିବୁ।

ତଥାପି ସତ୍ୟବ୍ରତ କିଛି ଉତ୍ତର ଦେଲେ ନାହିଁ।

ସବ୍ୟସାଚୀ ଉଠି ଠିଆହେଲେ। ବାହାରକୁ ବାହାରିଯିବାକୁ ଉଦ୍ୟତ ହେବା ମୁହୂର୍ତ୍ତରେ ସତ୍ୟବ୍ରତ କହିଲେ : ତା'ହେଲେ ରଣଜିତ୍ ରାଉତରାୟ ଏସିଆ ଟ୍ରେଡିଂ କମ୍ପାନୀରୁ ଚାକିରି ଛାଡ଼ିଲେଣି ୧୯୬୧ ମସିହାରୁ। ଛଅ ବର୍ଷ ହେଲା। ଏଇ ଛଅ ବର୍ଷ ଭିତରେ... ଆଚ୍ଛା ସବ୍ୟ ଆଉ ଗୋଟାଏ ପ୍ରଶ୍ନ ! ରଣଜିତ୍ ବାବୁ ଏସିଆ ଟ୍ରେଡିଂ କମ୍ପାନୀରୁ ସୁନାବାର୍‌ଗୁଡ଼ିକ ଧପେଇ ଆଣିବା ପରେ, ମାଲିକ ନିଶ୍ଚୟ ଅନେକ ଦିନଯାଏ ଜାଣିପାରି ନ ଥିଲେ।

: ହଁ, ସେ ଗୋଟାଏ ପଏଣ୍ଟ। ସବ୍ୟସାଚୀ କହିଲେ, ରଣଜିତ୍ ରାଉତରାୟ ଏସିଆ ଟ୍ରେଡିଂ କମ୍ପାନୀରୁ ସେହି ସୁନାବାରଗୁଡ଼ିକ ହସ୍ତଗତ କରିବାର ବହୁଦିନ ପରେ ଯାଇ ଘଟଣାଟା ଜଣାଗଲା। ପ୍ରାୟ ବର୍ଷକ ପରେ। ଏସିଆ ଟ୍ରେଡିଂର ଗୋଟାଏ ଅଣ୍ଡର ଗ୍ରାଉଣ୍ଡ ଷ୍ଟୋର ଅଛି। ସେହି ଷ୍ଟୋରରେ ମୂଲ୍ୟବାନ ସ୍ମଗଲିଂ ପଦାର୍ଥ ସବୁ ଜମାହୋଇ ରୁହେ। ସେ ଚାବି

ରୁହେ ସ୍ୱୟଂ ମାଲିକଙ୍କ ପାଖରେ; କିନ୍ତୁ ରଣଜିତ୍‌ବାବୁଙ୍କ ହାତରେ ଅଣ୍ଡର ଗ୍ରାଉଣ୍ଡ ଷ୍ଟୋରର ଚାର୍ଯଥାଏ । ବେଳେବେଳେ ମାଲିକ ଚାବିପତ୍ର ରଣଜିତ୍‌ବାବୁଙ୍କୁ ଦେଇ ଜିନିଷପତ୍ର ନେବା ଆଣିବା କରନ୍ତି । ସେହି ନେବା ଆଣିବା ଭିତରେ ରଣଜିତ୍‌ବାବୁ କେବେ ଓ କିପରି ଭାବରେ ସେହି ସୁନାବାର୍‌ଗୁଡ଼ିକୁ ସ୍ଥାନାନ୍ତର କଲେ, ସେକଥା କେହି ବୁଝିପାରି ନାହାନ୍ତି । ଯେତେବେଳେ ପ୍ରୟୋଜନ ହେଲା, ସେତେବେଳକୁ ରଣଜିତ୍‌ବାବୁ ଏସିଆ ଟ୍ରେଡିଂ କମ୍ପାନୀରୁ ଚାକିରି ଛଅମାସ ହେବ ଛାଡ଼ିସାରିଥିଲେ । ତା' ପୂର୍ବରୁ ସେ ଛୁଟି ନେଇଥିଲେ ଛଅମାସ ।

: ତା'ପରେ ? ସତ୍ୟବ୍ରତ ଉତ୍ସାହିତ ହୋଇ ପଚାରିଲେ ।

: ତା'ପରେ ଆଉ କ'ଣ ? ତା'ପରେ ଯାହା ଘଟଣା ସେଗୁଡା ତୁ ଜାଣିବା କଥା !

: ହୁର୍‌ରେ ! ସତ୍ୟବ୍ରତ ମହାପାତ୍ର ଆନନ୍ଦରେ ଚିତ୍କାର କରି ଉଠିଲେ । ଆଉ ବାକି ରହିଲା ଅଳ୍ପ କେତୋଟି ଅନୁସନ୍ଧାନ । ତତେ ଏଇ ମୁହୂର୍ତ୍ତରେ ଟିକିଏ ଭୁବନେଶ୍ୱର ଯିବାକୁହେବ ।

: ହଠାତ୍ ଭୁବନେଶ୍ୱର କାହିଁକି ?

: ଏକ ଜରୁରୀ କାମରେ । ଆଜି ମୁଁ ଏଇ ଲାୟଲି ହତ୍ୟା ରହସ୍ୟର ଯବନିକା ଟାଣିବାକୁ ଚାହେଁ । ତୁ ଯାଇ ରାଜମହଲ ହୋଟେଲର ୫ ନମ୍ବର ରୁମ୍‌ରେ ଗତ ସାତ ଆଠ ଦିନ ହେବ କିଏ ରହୁଛି, ତା'ର ଡିଟେଲ୍‌ସ୍ ଜାଣି ଆସିବୁ । ରୁମ୍ ଖୋଲି ଭଲ ଭାବରେ ଅନୁସନ୍ଧାନ କରି, ଦରକାରୀ କାଗଜପତ୍ର ଯାହା ପାଇବୁ ସବୁ ଘେନି ଆସିବୁ ।

: ୫ ନମ୍ବର ରୁମ୍‌ରେ ଲୋକଟି ଯଦି ଥାଏ ?

: ନା, ସେ ନଥିବ । ଗତ ଦୁଇଦିନ ହେବ ସେ ରୁମ୍‌ରେ ନାହିଁ । ମୁଁ ଭଲକରି ଜାଣିଛି ।

: ଓକେ ବସ୍, କହି ସବ୍ୟସାଚୀ ଉଠି ଠିଆହେଲେ ।

: ସତ୍ୟବ୍ରତ ରୁମ୍‌ର ଚାରି ଆଡକୁ ଚାହିଁ କହିଲେ : ନୀଳିମା ପଞ୍ଜୁରିଟା କେଉଠି ରଖିଲା ?

: ଶାରୀ ପଞ୍ଜୁରିତ ! ତଳେ ଅଛି । ତୋର ଦେଖୁଛି ନୂଆ ନୂଆ ହବି ସବୁ ଦିନ ପରେ ଦିନ ଗଜାମାରିଉଠୁଛି !

ସତ୍ୟବ୍ରତ ସ୍ମିତହସି କହିଲେ : ଘର-ସଂସାର ନାହିଁ, ପିଲା-କବିଲା ନାହାନ୍ତି । ସମୟ ଗୁଡା କଟିବ କିପରି ? ଗୋଟାଏ ତ କିଛି କରିବାକୁ ପଡ଼ିବ । ଆଚ୍ଛା, ତୁ ଯିବୁଟି ନୀଳିମାକୁ କହିବୁ ପଞ୍ଜୁରିଟା ଉପରକୁ ପଠାଇଦେବ ।

ସବ୍ୟସାଚୀ ଆଉ କିଛି ନ କହି ଚାଲିଗଲେ ।

ସତ୍ୟବ୍ରତ ନୀରବରେ ବସି ଚିନ୍ତା କରିବାକୁ ଲାଗିଲେ । କିଏ ହତ୍ୟାକାରୀ ? ତା'ଛଡା ଲାୟଲିକୁ ହତ୍ୟା କରିବାର ମୋଟିଭ୍ କ'ଣ ? ମିଷ୍ଟର କାପୁର...ପାମେଲା...ସାନ....ଜେକବ୍, ରାଜେଶ...ରମ୍‌ଯାନ ଆଉ, ଆଉ ? ସାମୁଏଲ ଦାସ... ଏବଂ...

ହଠାତ୍ ସତ୍ୟବ୍ରତଙ୍କ ଭାବନା ଅଟକି ଗଲା । ସାମୁଏଲ୍ ଦାସ୍ କିନ୍ତୁ ସ୍କଟ୍‌ରେ ନାହାନ୍ତି । ସେ ତ ଅମ୍ବରରେ ରୁହନ୍ତି ନାହିଁ । ତେଣୁ ଲାୟଲି ହତ୍ୟାଦିନ ରାତିରେ ୨୧ ଜଣଙ୍କ ମେଳରେ ତାଙ୍କୁ ଦେଖାଯାଇ ନାହିଁ । କିନ୍ତୁ ତାଙ୍କର କ'ଣ ଲାୟଲି ହତ୍ୟା ରହସ୍ୟ ମୂଳରେ କୌଣସି ଭୂମିକା ନାହିଁ ?

ସତ୍ୟବ୍ରତ ଡଟ୍‌ପେନ୍‌ଟାଏ ଧରି, ଗୋଟାଏ ରଫ୍ କାଗଜ ଉପରେ ନାଁଗୁଡ଼ା ଲେଖିଲେ। ହୋଟେଲର କର୍ମଚାରୀ ୧୪ ଜଣଙ୍କ ନାମ, ତା'ପରେ ସାମୁଏଲ ଦାସଙ୍କ ନାମ ଏବଂ ଗୋଟି ଗୋଟି କରି ବୋର୍ଡରମାନଙ୍କ ନାମ। ମୋଟ୍‌ରେ ୨୨ ଜଣ, ପୁଣି ଯୁକ୍ତ କଲେ ସଂଜୀବର ନାମଟା। ମୋଟ୍ ହେଲା ୨୩ ଜଣ। ଆଉ ଆଇ ଜେକବ କହୁଥିଲେ, ସେଦିନ ରାତିରେ ଲାୟଲିର ୨ ଜଣ ଗେଷ୍ଟ ଆସିଥିଲେ। ୨୩୨ନା ?? ସେ ଅପରିଚିତ ଦୁଇ ଜଣଙ୍କୁ ଏଠାରେ ଯୁକ୍ତ କରି କିଛି ଲାଭ ନାହିଁ। ସେ ଦୁଇଟା କାଟି ଦେଲେ। ଆଉ ରହିଲେ ୨୩ ଜଣ। ୨୩ ଜଣଙ୍କ ଭିତରୁ ତଳଆଡ଼ୁ ନାଁ ଗୁଡ଼ାକ କାଟି ଦେଇ ଆସିଲେ। ସୋନିଆ ଜଏନ୍ ? ସେଇଠି କଲମଟା ଟିକିଏ ଅଟକି ଗଲା। ନା, ସେଇଟା ବି ଫାଲ୍‌ତୁ। ତାକୁ ସନ୍ଦେହ କରିବାର କିଛି ନାହିଁ। ସେ ନାଁଟା ବି କାଟି ଦେଲେ। ଆଉ ରହିଲେ ୧୫ ଜଣ। ସେମାନଙ୍କ ଭିତରୁ ସାନି କରତାର୍ ଆଉ ମଦନମୋହନ ଦୁଇଜଣ ଗେଷ୍ଟ। କିନ୍ତୁ ସାନି କରତାର, ପାମେଲା ବା ଆଉ ଯେଉଁ ଝିଅମାନେ ଅଛନ୍ତି, ସେମାନେ ନିଶ୍ଚୟ ଲାୟଲିର ହତ୍ୟାକାରୀ ନୁହନ୍ତି। କାରଣ କୌଣସି ଗୋଟିଏ ଝିଅ ପକ୍ଷରେ ଆଉ ଜଣେ ଝିଅର ଶ୍ୱାସରୁଦ୍ଧ କରି ହତ୍ୟା କରିବା ସହଜ ନୁହେଁ। ତେଣୁ....

ସତ୍ୟବ୍ରତ କଲମଟା ବାଗେଇ ଧରି ଝିଅମାନଙ୍କ ନାମଗୁଡ଼ାକ ଲିଷ୍ଟରୁ କାଟି ଦେବାକୁ ଯାଉଥିଲେ। ହଠାତ୍ ଜୋର୍‌ରେ ଗୋଟାଏ ଶବ୍ଦ ଶୁଣି ଏବଂ ସଂଗେ ସଂଗେ ଏକ କରୁଣ ଚିତ୍କାରରେ ତାଙ୍କ ଧ୍ୟାନ ଭଂଗହେଲା। ସେ ଚାହିଁ ଦେଖିଲେ, ସାମନାରେ ନୀଳିମା, ତା ହାତରୁ ଶାରୀ ପଞ୍ଜୁରିଟା ଖସି ପଡ଼ିଛି ଏବଂ ସେ ଗୋଡରେ ଆଘାତ ପାଇ ଏକ କରୁଣ ଚିତ୍କାର କରି ତଳେ ବସିପଡ଼ିଛି।

ସତ୍ୟବ୍ରତ ଉଠି ଯାଇ ନୀଳିମାକୁ ତଳୁ ଉଠାଇଲେ। ପଞ୍ଜୁରିଟାର ଏକାଂଶ ନୀଳିମା ଗୋଡର ଗୋଟିଏ ଆଙ୍ଗୁଳି ଉପରେ ପଡ଼ିଯାଇଥିବାରୁ ସେ ଚିତ୍କାର କରି ଉଠିଥିଲା; କିନ୍ତୁ ହଠାତ୍ ସତ୍ୟବ୍ରତ ମହାପାତ୍ର ଚିତ୍କାରକରି ଉଠିଲେ କାହିଁକି ? ନୀଳିମା ସତ୍ୟବ୍ରତଙ୍କ ଚିତ୍କାର ଶୁଣି ସ୍ତବ୍ଧ ହୋଇ ଯାଇଥିଲା।

ସତ୍ୟବ୍ରତ ନଇଁପଡ଼ି ପଞ୍ଜୁରିଟିକୁ ଉଠାଇଲେ। ପଞ୍ଜୁରିଟି ତଳେ ପଡ଼ିଯାଇ ଏକାଂଶ ଭାଙ୍ଗିଯାଇଥିଲା। ଆଉ ସେଇ ଭଗ୍ନାଂଶ ଭିତରୁ ଏକ ଉଜ୍ଜ୍ୱଳ ବସ୍ତୁ ତାଙ୍କ ଆଖିରେ ସାଫଲ୍ୟର ଦୀପ୍ତି ଫୁଟାଇଥିଲା। ସେ ପଞ୍ଜୁରିଟିକୁ ଟେବୁଲ ଉପରେ ଥୋଇ ଦେଖିଲେ, ହଁ, ତାଙ୍କ ଅନୁମାନ ସତ୍ୟ। ପଞ୍ଜୁରି ତଳର ଗୋଲାକୃତି ଅଂଶଟି କାଠରେ ତିଆରି। ସତ୍ୟବ୍ରତ ସଙ୍ଗେ ସଙ୍ଗେ ଶାରୀଟିକୁ ପଞ୍ଜୁରିରୁ ବାହାର କରିଦେଲେ। ପଞ୍ଜୁରି ତଳର ସେହି କୋଲାକୃତି କାଠ ଅଂଶତକ ପରୀକ୍ଷା କରି ଦେଖିଲେ। ଦୁଇଟି ଗୋଲାକୃତି କାଠ ଖଣ୍ଡ, ମଝିଟା ଫମ୍ପା ଏବଂ ସେଇ ଫମ୍ପା ଅଂଶ ଭିତରଟାରେ ସୁନା ତରଳା ହୋଇ ଢ଼ଳାହୋଇଛି।

ସାଫଲ୍ୟର ଆନନ୍ଦରେ ସତ୍ୟବ୍ରତ ନାଚିଯାଇଥିଲେ। ସେ ଭୁଲିଯାଇଥିଲେ ତାଙ୍କ ସାମ୍‌ନାରେ ନୀଳିମା ଠିଆହୋଇଛି। ଏ ଯେ ତାଙ୍କର ଅସମ୍ଭବ ସାଫଲ୍ୟ। ତା'ହେଲେ ରଣଜିତ୍ ରାଉତରାୟଙ୍କ ବୁଦ୍ଧିକୁ ତାରିଫ୍ କରିବାକୁ ହେବ। ମୋଟ୍‌ରେ ତାଙ୍କ ଘରେ କେତୋଟି ପଞ୍ଜୁରୀ ଅଛି ? ଶୁଆ, ଶାରୀ ମିଶି କେତେ ଅଛନ୍ତି ? ଆଉ ସେଇ ପାରାଭାଡ଼ି ? ପାରା ଭାଡ଼ିରେ

କ’ଣ କୌଣସି ନିର୍ମାଣ କୌଶଳ ଅଛି ? ପାରାଭାଡ଼ି ଭିତରେ କ’ଣ ଏହିପରି ସୁନା ତରଳା ହୋଇ ଢ଼ଳାହୋଇଛି ?

ସତ୍ୟବ୍ରତଙ୍କର ମନେପଡ଼ିଲା, ସେ ଅନୁସନ୍ଧାନ କଲାବେଳେ, ରଣଜିତ୍ ରାଉତରାୟ ଘର ଭିତରେ ଅଦରକାରୀ ଜିନିଷ ପତ୍ର ମଧ୍ୟରେ ଏକ ସିଲ୍‌ଭର କଡେଇ ଓ ଗୋଟାଏ କୋଇଲା ଚୁଲି ଦେଖିଥିଲେ । ଗୋକୁଳ ସେ ଦୁଇଟିର ପ୍ରୟୋଜନ ନିଷ୍ପ୍ରୟୋଜନ ସମ୍ବନ୍ଧରେ କିଛି ଉତ୍ତର ଦେଇପାରି ନଥିଲା । ଏତେବେଳେ ସତ୍ୟବ୍ରତ ସେହି ଅଦରକାରୀ ଜିନିଷ ଦୁଇଟିର ମହତ୍ତ୍ୱ ଉପଲବ୍ଧି କରିଥିଲେ ।

ତା’ହେଲେ ବର୍ତ୍ତମାନ ତାଙ୍କର କର୍ତ୍ତବ୍ୟ ?

ନିଜକୁ ସେ ସଂଯତ କରିବାକୁ ଚେଷ୍ଟା କରି, ଗୋଲାକୃତି ସୁନା ପାତ ଖଣ୍ଡିକ ଉଠାଇ ହାତରେ ଓଜନଟା ଅନୁମାନ କରିବାକୁ ଚେଷ୍ଟା କଲେ । ପ୍ରାୟ ଏକ କିଲୋ ହେବ ।

ତା’ହେଲେ ରଣଜିତ୍ ରାଉତରାୟ କେତେ କିଲୋ ସୁନା ଲୁଚାଇ ରଖିଚନ୍ତି ତାଙ୍କର ଚିଡ଼ିଆଖାନା ଭିତରେ ?

ହଠାତ୍ ବାହାରେ ଦରଜାରେ ନକ୍ ହେବାର ଶବ୍ଦ ଶୁଣି ସତ୍ୟବ୍ରତଙ୍କର ଧ୍ୟାନଭଂଗ ହେଲା । ନୀଳିମା ଦରଜା ଖୋଲି ଦେବାକୁ ଆଗେଇ ଯାଉଥିଲା; କିନ୍ତୁ ସତ୍ୟବ୍ରତ ଇଂଗିତରେ ବାରଣ କଲେ । କ୍ଷିପ୍ରହସ୍ତରେ ସୁନା ଖଣ୍ଡିକ ଡ୍ରୟାରରେ ଭରିଦେଇ ପଞ୍ଜୁରିଟା ଗୋଟାଏ ଉହାଡ଼ିଆ ସ୍ଥାନରେ ଥୋଇଦେଇ, ନୀଳିମାକୁ ଦରଜା ଖୋଲିବାକୁ କହିଲେ ।

: ଆସନ୍ତୁ ଆସନ୍ତୁ ମିଷ୍ଟର ସାମନ୍ତରାୟ ।

ପୋଲିସ୍ ଇନିସ୍‌ପେକ୍‌ଟର ନୀଳମଣି ସାମନ୍ତରାୟ ଭିତରେ ପ୍ରବେଶ କଲେ । ନୀଳିମା ଛୋଟେଇ ଛୋଟେଇ ଘରୁ ବାହାରିଗଲା ।

ନୀଳମଣି ସାମନ୍ତରାୟ ଗୋଟିଏ ଚେଆର ଅଧିକାର କରି ବସୁ ବସୁ କହିଲେ : ତା’ପରେ ଖବର କ’ଣ କୁହନ୍ତୁ ।

ସତ୍ୟବ୍ରତଙ୍କ ମନ କିନ୍ତୁ ଅନ୍ୟ ରାଜ୍ୟରେ ବିଚରଣ କରୁଥିଲା । ସେ କହିଲେ : ଅନୁସନ୍ଧାନର ଧାରାରୁ ଆପଣଙ୍କର କ’ଣ ମନେହେଲା ?

ନୀଳମଣି ସାମନ୍ତରାୟ ଟିକିଏ ଚିନ୍ତାକରି କହିଲେ : ମିଷ୍ଟର କାପୁର କିନ୍ତୁ ଖୁବ୍ ଚତୁର ଲୋକ । ତାଙ୍କର ଆଚରଣ, ତାଙ୍କର କଥାବାର୍ତ୍ତା, ତାଙ୍କର ଜମାନବନ୍ଦୀ, ସବୁ ମିଶି ମୋ ମନରେ କିପରି ଏକ...

: ମୋର ବି ଧାରଣା ସେଇଆ ମିଷ୍ଟର ସାମନ୍ତରାୟ । ସତ୍ୟବ୍ରତ କହିଲେ ।

: କିନ୍ତୁ ତାଙ୍କର ସ୍ୱାର୍ଥ ?

: ସ୍ୱାର୍ଥ ଅନେକ ଥାଇପାରେ ମିଷ୍ଟର ସାମନ୍ତରାୟ । ପ୍ରଥମତଃ ଅମ୍ବରରେ ଲାୟଲିର ନିଯୁକ୍ତିକୁ ସେ ସମର୍ଥନ କରି ନଥିଲେ । ତା’ଛଡା ମଣିଷର ମନ ଗହ୍ୱରରେ ସ୍ୱାର୍ଥର ରୂପ ଯେ କେତେବେଳେ କେଉଁ ଆକାର ପରିଗ୍ରହ କରେ... ଛାଡନ୍ତୁ । ମୁଁ ଭାବୁଛି ଦୁଇ ତିନିଦିନ ମଧ୍ୟରେ ଏହାର ଗୋଟାଏ ସମାଧାନ କରିପାରିବି ।

: ଦୁଇ ତିନିଦିନ ? ନୀଳମଣି ସାମନ୍ତରାୟ ଯେପରି ଚମକି ଉଠିଲେ । କହିଲେ, ଲୋକଗୁଡାଙ୍କୁ ଅମ୍ବରରେ ମୁଁ ଏକପ୍ରକାର ନଜରବନ୍ଦୀ କରି ରଖି ଆସିଛି । ସେହିପରି ଭାବରେ ସେମାନଙ୍କୁ ତ ଦୁଇ ତିନିଦିନ ଅଟକାଇ ରଖିହେବ ନାହିଁ । ଆମକୁ ଏ ସମ୍ବନ୍ଧରେ ଶୀଘ୍ର ଗୋଟାଏ ସିଦ୍ଧାନ୍ତ ଗ୍ରହଣ କରିବାକୁ ପଡିବ ।

: କିନ୍ତୁ ...

ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ, ହଠାତ୍ ଟେଲିଫୋନ୍‌ଟା ବାଜିଉଠିଲା । ସତ୍ୟବ୍ରତ ରିସିଭର ଉଠାଇ କହିଲେ : ହ୍ୟାଲୋ ?

ନୀଳିମା କହିଲା : ଖୋର୍ଦ୍ଧାରୁ ଟ୍ରଙ୍କ୍ କଲ ଆସିଛି । ଆପଣ କଥା କୁହନ୍ତୁ ।

: ହ୍ୟାଲୋ ? ମୁଁ ସତ୍ୟବ୍ରତ ମହାପାତ୍ର କହୁଛି ।

: ମୁଁ ଅଧିରାଜ ମୋହନ ଅଧିକାରୀ କହୁଛି । ଶୁଣନ୍ତୁ ମିଷ୍ଟର ମହାପାତ୍ର । ଆପଣ ଯେଉଁ ଅଦରକାରୀ କୂଅଟା ଭିତରୁ ଗୁପ୍ତଧନର ସନ୍ଧାନ କରିବାକୁ କହିଥିଲେ, ସେ କୂଅଟା ଭିତରୁ କ'ଣ ବାହାରିଲା ଜାଣନ୍ତି ?

: ଗୋଟିଏ କଙ୍କାଳ ନିଶ୍ଚୟ ! ସତ୍ୟବ୍ରତ ଅତି ସହଜ ସ୍ୱରରେ ଉତ୍ତର ଦେଲେ ।

: ରାଇଟ୍ । କିନ୍ତୁ ଆପଣ ଜାଣିଲେ କିପରି ?

: ମୁଁ ସେହିପରି ଅନୁମାନ କରିଥିଲି ଏବଂ ସେ କଙ୍କାଳଟା ରଣଜିତ୍ ରାଉତରାୟଙ୍କର ଅନ୍ୟ ଏକ ଚାକର 'ରଥିଆ'ର ।

: ଓ୍ୱଣ୍ଡର । କିନ୍ତୁ ଆପଣ...

: ହଁ, ମୁଁ ଅନେକ କଥା ଜାଣେ ମିଷ୍ଟର ଅଧିକାରୀ । ହତ୍ୟାକାରୀକୁ ଏବଂ ହତ୍ୟାର କାରଣ ସବୁ ମୁଁ ଜାଣିପାରିଛି ଏବଂ ସେସବୁ ଖୋର୍ଦ୍ଧାରେ ଆପଣଙ୍କ ରାଜତ୍ୱ କାଳରେ ଘଟିଛି । ଯଦି ଆପଣଙ୍କର ସବୁ ଜାଣିବାକୁ ଆଗ୍ରହ, ଆପଣ ଆଜି ରାତି ଆଠଟା ବେଳକୁ ହୋଟେଲ ଅମ୍ବର, କ୍ୟାଣ୍ଟନମେଣ୍ଟ ରୋଡ, କଟକଠାକୁ ଆସିବେ ।

: କିନ୍ତୁ ମିଷ୍ଟର ମହାପାତ୍ର...

: ନା, ବର୍ତ୍ତମାନ ମୁଁ ଆପଣଙ୍କର କୌଣସି ପ୍ରଶ୍ନର ଉତ୍ତର ଦେଇପାରିବି ନାହିଁ । ଶୁଣନ୍ତୁ, ରଣଜିତ୍ ରାଉତରାୟଙ୍କ କୋଠାରେ ପ୍ରହରାର ବ୍ୟବସ୍ଥା କଡା କଡି ଭାବରେ କରିଛନ୍ତି ତ ? ସେଠାରେ ବହୁ ମୂଲ୍ୟର ଜାତୀୟ ସଂପଦ ରହିଛି । କର୍ତ୍ତବ୍ୟରେ ତ୍ରୁଟି ହେଲେ ଆପଣଙ୍କୁ କିନ୍ତୁ କୈଫିୟତ ଦେବାକୁ ପଡ଼ିବ ।

: ମୋ କର୍ତ୍ତବ୍ୟ ସମ୍ବନ୍ଧରେ ଆପଣଙ୍କ ଠାରୁ ମୁଁ ଅଧିକ ସେଚେତନ ମିଷ୍ଟର ମହାପାତ୍ର । ସେ ଦିଗରୁ ଆପଣ ନିଶ୍ଚିନ୍ତ ରହିପାରନ୍ତି ।

: ଧନ୍ୟବାଦ । ଆପଣ ତା'ହେଲେ ରାତି ଆଠଟାରେ ହୋଟେଲ ଅମ୍ବରକୁ ଆସୁଛନ୍ତି ?

: ସିଓର ।

ସତ୍ୟବ୍ରତ ରିସିଭରଟା ରଖିଦେଇ କହିଲେ : ହୋଟେଲ ଅମ୍ବର ସମ୍ବନ୍ଧରେ ଆପଣ ତା'ହେଲେ ଶୀଘ୍ର ଗୋଟାଏ ସିଦ୍ଧାନ୍ତ ଗ୍ରହଣ କରିବାକୁ କହୁଛନ୍ତି, ନା ମିଷ୍ଟର ସାମନ୍ତରାୟ ?

: ହଁ, କାରଣ ଲୋକମାନେ...

: ତା'ହେଲେ ଆଜି ରାତି ଆଠଟା ବେଳକୁ ଆଉଥରେ ସମସ୍ତଙ୍କୁ ଅମ୍ବରର ହଲ ଭିତରେ ଏକତ୍ର କରନ୍ତୁ; କିନ୍ତୁ ସେତେବେଳେ ସେଠାରେ ଯେପରି ବାହାରର କୌଣସି ଲୋକ ନ ରୁହନ୍ତି । ହଁ, ଆପଣଙ୍କ ଲିଷ୍ଟର ୨୧ ଜଣଙ୍କ ଭିତରେ ଆଉ ଜଣକୁ ଯୋଗ କରିବେ, ସାମୁଏଲ୍ ଦାସ । ସେ ବି ଜଣେ ଅମ୍ବରର କର୍ମଚାରୀ ।

ଘଡ଼ିରେ ଠିକ୍ କଣ୍ଟାଏ କଣ୍ଟାଏ ଆଠଟା ବାଜିଲା ବେଳକୁ ସତ୍ୟବ୍ରତ ମହାପାତ୍ର ଅମ୍ବରର ହଲ୍ ଭିତରେ ପ୍ରବେଶ କଲେ । ତାଙ୍କ ସଙ୍ଗରେ ଥିଲେ ସବ୍ୟସାଚୀ ଦାସ ।

ସତ୍ୟବ୍ରତ ଦେଖିଲେ ହଲ୍ ଘର ଭିତରେ ଡ଼ିମ୍ବାକୃତି ଆକାରରେ ସମସ୍ତେ ବସିଛନ୍ତି । ଅଧିରାଜ ମୋହନ ଅଧିକାରୀ ମଧ୍ୟ ଆସି ଉପସ୍ଥିତ ହୋଇଛନ୍ତି । ସବୁ ଚେଆର ପୂର୍ଣ୍ଣ । କେବଳ ଖାଲି ଅଛି ଗୋଟିଏ ଚେଆର । ସେଇଟା ବୋଧହୁଏ ସତ୍ୟବ୍ରତଙ୍କ ପାଇଁ ରଖାଯାଇଥିଲା ।

କିନ୍ତୁ ସବ୍ୟସାଚୀ ଦାସଙ୍କୁ ଦେଖି ମିଷ୍ଟର କାପୁର ଟିକିଏ ଚଞ୍ଚଳ ହୋଇଉଠିଥିଲେ । ସତ୍ୟବ୍ରତ ଖାଲି ଚେଆରଟିରେ ସବ୍ୟସାଚୀଙ୍କୁ ବସିବାକୁ କହି, ମିଷ୍ଟର କାପୁରଙ୍କ ଉଦ୍ଦେଶ୍ୟରେ କହିଲେ : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋର ବର୍ତ୍ତମାନ ଚେଆର ଆବଶ୍ୟକ ହେବ ନାହିଁ ।

ନୀଳମଣି ସାମନ୍ତରାୟ ନିଜେ ଆସନରୁ ଉଠିପଡି, ସତ୍ୟବ୍ରତଙ୍କୁ ବସିବାକୁ ଅନୁରୋଧ କଲେ; କିନ୍ତୁ ସତ୍ୟବ୍ରତ ସାମନ୍ତରାୟଙ୍କୁ ଜୋର୍ କରି ଚେଆରରେ ବସାଇ ଦେଇ ଆରମ୍ଭ କଲେ -

: ଆପଣମାନେ ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି, ସମସ୍ତେ ଜାଣନ୍ତି ଯେ କାହିଁକି ଓ କେଉଁ କାରଣରୁ ଆପଣମାନେ ଏଠାରେ ବସିରହିଛନ୍ତି । ଲାୟଲି ଖୁଣ୍ ହୋଇଛି । ଲାୟଲି ଥିଲା ଏହି ହୋଟେଲର ରିସେପ୍‌ସନିଷ୍ଟ । ଆଉ ଆପଣମାନେ ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି, ଆପଣମାନେ ସମସ୍ତେ ସେଦିନ ରାତିରେ ଏହି ହୋଟେଲରେ ଥିଲେ । କେବଳ ନ ଥିଲେ ସାମୁଏଲ୍ ଦାସ । ବର୍ତ୍ତମାନ ପୋଲିସ୍ ପକ୍ଷରୁ ସନ୍ଦେହ ଯେ, ଆପଣମାନଙ୍କ ମଧ୍ୟରୁ କେହି ଜଣେ ଲାୟଲିକୁ ହତ୍ୟା କରିଛି; କିନ୍ତୁ କିଏ ସେହି ହତ୍ୟାକାରୀ ?

ସତ୍ୟବ୍ରତ ପ୍ରଶ୍ନଟି ପଚାରି ଦେଇ ଥରେ ସମସ୍ତଙ୍କ ମୁହଁଆଡ଼େ ଚାହିଁଗଲେ । କାହାରି ମୁହଁରେ ଭାଷା ନାହିଁ ।

ପୁଣି କହିଲେ : ମୁଁ ଜାଣେ, ଆପଣମାନଙ୍କ ସଙ୍ଗରେ ସେହି ହତ୍ୟାକାରୀ ଜଣକ ବସି ରହିଥିଲେ ମଧ୍ୟ, ସେ ଆତ୍ମ ସମର୍ପଣ କରିବେ ନାହିଁ । ତେଣୁ ଏ କ୍ଷେତ୍ରରେ ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେବ, ସେହି ଜଣକୁ ଚିହ୍ନଟ କରିବା ।

ଏ ତ ଗଲା ଲାୟଲି ହତ୍ୟା ରହସ୍ୟ । ଏହି ଲାୟଲି ହତ୍ୟା ରହସ୍ୟ ସଙ୍ଗରେ ଜଡ଼ିତ ହୋଇ ଆଉ ଗୋଟିଏ ଘଟଣା ଅଛି, ଯେଉଁଟାକି ଲାୟଲି ଜାଣିଥିଲା, ଆଉ ଜାଣିଛି ଲାୟଲିର ହତ୍ୟାକାରୀ । ତା'ଛଡା ମୁଁ ବି ଜାଣିଛି କିଛି । ବର୍ତ୍ତମାନ ଆପଣମାନଙ୍କୁ ମୁଁ ସେଇ ଘଟଣାଟି, ନା, ନା ଘଟଣା ନୁହେଁ ତ- ସେଇ କାହାଣୀଟି କହିବି । ଆପଣମାନେ ମନଯୋଗ ଦେଇ ଶୁଣନ୍ତୁ, ତା'ପରେ ଆମେ ଲାୟଲିର ହତ୍ୟାକାରୀକୁ ଖୋଜିବା ।

ସତ୍ୟବ୍ରତ ଟିକିଏ ନୀରବ ରହି, ଆଉ ଥରେ ସମସ୍ତଙ୍କ ମୁହଁ ଉପରେ ଆଖିବୁଲାଇ ଆଣି କହିଲେ, ସୁଦୂର କଲିକତାରେ ଏସିଆ ଟ୍ରେଡିଂ କମ୍ପାନୀ ନାମରେ, ନେତାଜୀ ସୁଭାସ ରୋଡର, କ୍ଲାଇଭ୍ ବିଲ୍ଡିଂରେ ଏକ ବ୍ୟବସାୟ ପ୍ରତିଷ୍ଠାନ ଅଛି । ତା'ର ପ୍ରଧାନ ବ୍ୟବସାୟ ହେଲା ଇମ୍‌ପୋର୍ଟ, ଏକ୍‌ସପୋର୍ଟ । ସେହି କମ୍ପାନୀରେ ଆମ ଓଡ଼ିଶା ପ୍ରଦେଶର ଜଣେ ଲୋକ ଚାକିରି କରୁଥିଲେ । ତାଙ୍କ ନାମ ରଣଜିତ୍ ରାଉତରାୟ, ଘର ଖୋର୍ଦ୍ଧା ଟାଉନ୍‌ରେ । ନିଜର ଦୁଇ ତିନିଟା କୋଠା ଅଛି ।

ରଣଜିତ୍ ରାଉତରାୟ ଏସିଆ ଟ୍ରେଡିଂ କମ୍ପାନୀର ଏକ ସମ୍ମାନିତ ପଦରେ ଅଧିଷ୍ଠିତ ଥିଲେ ଏବଂ ଯଥେଷ୍ଟ ଦରମା ମଧ୍ୟ ପାଉଥିଲେ; କିନ୍ତୁ କେଜାଣି କାହିଁକି ହଠାତ୍ ସେ ଚାକିରିରୁ ବିଦାୟ ନେଇ ଓଡ଼ିଶାକୁ ଫେରି ଆସିଲେ ଏବଂ ଖୋର୍ଦ୍ଧାରେ ତାଙ୍କ ନିଜ କୋଠାରେ ବସବାସ ଆରମ୍ଭ କଲେ । କିଛିଦିନ ପରେ ଦେଖାଗଲା ଭଦ୍ରଲୋକଙ୍କର ପକ୍ଷୀ ପାଳନ ଗୋଟାଏ ହବି ହୋଇଉଠିଛି । ସେ ବହୁ ଶୁଆ, ଶାରୀ ବିଭିନ୍ନ ଜାତିର ଆଣି ପୋଷିଲେ ଏବଂ ସେଇମାନଙ୍କ ପଛରେ ତାଙ୍କର ଅବସର ସମୟତମ ଅତିବାହିତ କଲେ ।

ତାଙ୍କର ଏହି ପକ୍ଷୀପାଳନ ନିଶା କ୍ରମେ ବଢ଼ିଲା, ସେ ପଲ ପଲ ପାରା ବି ଆଣି ପୋଷିଲେ । ସେମାନଙ୍କୁ ଆକାଶରେ ଉଡାଇ ଆନନ୍ଦ ଉପଭୋଗ କଲେ । ବୋଧହୁଏ ତାଙ୍କର ଦିନଗୁଡ଼ିକ ଭଲରେ କଟିଯାଉଥିଲା । ହଠାତ୍ କିଛିଦିନ ତଳେ ରଣଜିତ୍ ରାଉତରାୟଙ୍କର ଏକମାତ୍ର ସନ୍ତାନ ସଂଜୀବ ରାଉତରାୟ ମୋତେ ଆସି କହିଲେ ଯେ, ତାଙ୍କ ବାପାଙ୍କର ଅକାଳ ବିୟୋଗ ଘଟିଛି ।

ଅବଶ୍ୟ ସଂଜୀବ ରାଉତରାୟଙ୍କ ବାପାଙ୍କର ଅକାଳ ବିୟୋଗରେ ଆପଣଙ୍କର ବା ମୋର କୌଣସି କ୍ଷତିବୃଦ୍ଧି ହେବାର କଥା ନୁହେଁ; କିନ୍ତୁ ଆଶ୍ଚର୍ଯ୍ୟର କଥା ରଣଜିତ୍ ରାଉତରାୟ ନିଜେ ମରି ଆମ ସମସ୍ତଙ୍କୁ ମହା ସମସ୍ୟାରେ ପକାଇ ଦେଇ ଯାଇଛନ୍ତି । ଆପଣମାନଙ୍କ ଭିତରୁ ଅନେକଙ୍କ ମନରେ ହୁଏତ ପ୍ରଶ୍ନ ଉଠିପାରେ, କିପରି ?

ମୋର ଅନୁରାଧ, ଆପଣମାନେ ଟିକିଏ ଧୈର୍ଯ୍ୟଧରି ବସି ରହିଲେ ସେହି 'କିପରି'ର ଉତ୍ତର ପାଇପାରିବେ । ଯାହାହଉ ପୁଣି ମୁଁ ପୂର୍ବ ପ୍ରସଙ୍ଗକୁ ଫେରିଯାଉଛି ।

ହଁ, ସଂଜୀବ ରାଉତରାୟ କହିଲେ ଯେ, ତାଙ୍କ ବାପାଙ୍କର ଅକାଳ ବିୟୋଗ ଘଟିବାର ମାତ୍ର କେତୋଟି ଦିନ ଅତିବାହିତ ହୋଇଛି କି ନାହିଁ ନରୋତ୍ତମ ଅଗରବାଲା ନାମରେ ଜଣେ ମାରବାଡ଼ି ତାଙ୍କ ପାଖରେ ଆସି ପହଞ୍ଚିଛନ୍ତି । ସେ ବାଧ୍ୟ କରୁଛନ୍ତି, ସେହି କୋଠାଟି ତାଙ୍କୁ ବିକ୍ରୟ କରିବା ପାଇଁ ଏବଂ କହୁଛନ୍ତି, ଏହି କୋଠା ତାଙ୍କୁ ବିକ୍ରି କରିବା ପାଇଁ ରଣଜିତ୍‌ବାବୁ ସବୁ ଠିକ୍ କରିଥିଲେ । ଦରଦାମ ମଧ୍ୟ ହୋଇଯାଇଥିଲା । ଅଗରବାଲା ଟଙ୍କା ଆଣିବାକୁ କଲିକତା ଯାଇଥିଲେ । ଫେରିଆସି ଶୁଣିଲେ, ରଣଜିତ୍‌ବାବୁଙ୍କର ମୃତ୍ୟୁ ହୋଇଛି ।

ସଂଜୀବ, ଅଗରବାଲାଙ୍କର ସେହି ପ୍ରସ୍ତାବରେ ସମ୍ମତ ହୋଇ ନଥିଲା ।

କିନ୍ତୁ ଅଗରବାଲା ତାଙ୍କୁ ବାଧ୍ୟ କରିଥିଲେ ଏପରିକି କୋଠାର ଉଚିତ ମୂଲ୍ୟ ଅପେକ୍ଷା ଆହୁରି ଆଠ ଦଶ ହଜାର ଟଙ୍କା ଅଧିକ ଦେବାକୁ ଚାହିଁଥିଲେ ।

ତଥାପି ସଂଜୀବ ରାଜି ହୋଇ ନଥିଲା ।

ତା'ର କିଛିଦିନ ପରେ ଜଣାଗଲା ଯେ, ରାତ୍ରିର ଅନ୍ଧକାରେ ନରୋତ୍ତମ ଅଗରବାଲା ଲୁଚି ଲୁଚି ସଂଜୀବର କୋଠା ଭିତରେ ପଶିଥିଲେ ଏବଂ କ'ଣ ସବୁ ଖୋଜାଖୋଜି କରି ଦେଖିଥିଲେ ।

ଏହି ଘଟଣା ପରେ ସଂଜୀବ ଆଶ୍ଚର୍ଯ୍ୟ ହୋଇଥିଲା ଏବଂ ନରୋତ୍ତମ ଅଗରବାଲାଙ୍କ ରହସ୍ୟଜନକ ଗତିବିଧି ସମ୍ବନ୍ଧରେ ତା' ମନରେ କୌତୂହଳ ଜାତ ହୋଇଥିଲା । ସେ ତା'ପରେ ଛୁଟିଆସିଥିଲା ମୋ ପାଖକୁ ।

କିନ୍ତୁ ସବୁଠାରୁ ମଜାର କଥା ହେଉଛି, ଯେଉଁଦିନ ସଂଜୀବ ମୋ ପାଖକୁ ଆସିଥିଲା, ଠିକ୍ ସେଇ ମୁହୂର୍ତ୍ତରେ ଲାୟଲି ବି ଆସି ଉପସ୍ଥିତ ହୋଇଥିଲା ମୋ ଚେମ୍ବରରେ । ସେ ପୁଣି ଦିନକ ଆଗରୁ ଆପଏଣ୍ଟମେଣ୍ଟ କରିଥିଲା । ମୋରି ଚେମ୍ବରରେ, ମୋରି ଟେବୁଲ ଉପରେ ଲାୟଲି ଗତବର୍ଷର କୌଣସି ଏକ ଉତ୍ସବର ଜୋର ଟାଣି ସଂଜୀବକୁ କହିଥିଲା: ସେ ସେଇ ଉତ୍ସବ ଅନୁଷ୍ଠାନରେ ତାକୁ ଦେଖିଛି । ସଂଜୀବ ପ୍ରଥମେ ଅସ୍ୱୀକାର କରିଥିଲା । ପରେ କିନ୍ତୁ ସଂଜୀବ ସହିତ ଲାୟଲିର ଭାବ ଜମିଉଠିଥିଲା ଅସମ୍ଭବ ଭାବରେ ।

ସେଦିନ କିନ୍ତୁ ଘଟଣାଟାକୁ ମୁଁ ଗୁରୁତ୍ୱ ଦେଇ ନ ଥିଲି । ମୁଁ ଭାବିଥିଲି ମୋ ଚେମ୍ବରରେ ସଂଜୀବ ସହିତ ଲାୟଲିର ଭେଟ ଆକସ୍ମିକ; କିନ୍ତୁ ପରେ ଜାଣିପାରିଲି ଯେ ସେଇଟା ଲାୟଲିର ପୂର୍ବ ପରିକଳ୍ପିତ । ଏପରିକି ଲାୟଲି ଜାଣିଥିଲା ସଂଜୀବ ମୋ ଚେମ୍ବରକୁ କେତେଟା ବେଳେ ଆସିବ । ଠିକ୍ ସେତିକିବେଳେ ଲାୟଲିର ମୋ' ଚେମ୍ବରରେ ଆବିର୍ଭାବ କାଳେ ମୋ' ମନରେ ସନ୍ଦେହ ଉଦ୍ରେକ କରିପାରେ, ସେଥିପାଇଁ ଲାୟଲି ପୂର୍ବ ଦିନରୁ ଆପଏଣ୍ଟମେଣ୍ଟ୍ କରି ରଖିଥିଲା ।

ଏଠାରେ ଆଉ ଗୋଟିଏ କଥା କହି ରଖିବା ଆବଶ୍ୟକ । ଲାୟଲି ଏଠାରେ ଜଣକ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା ଏବଂ ସେହି ପରିଚାଳକଙ୍କୁ ଆମେ ବର୍ତ୍ତମାନଠାରୁ ରିଙ୍ଗ୍‌ମାଷ୍ଟର ନାମ ଦେବା । ସେହି ରିଙ୍ଗ୍‌ମାଷ୍ଟର ମହାଶୟ ଆମର ଆଜି ଏହି ଆସରରେ ଉପସ୍ଥିତ ଅଛନ୍ତି ଏବଂ ତାଙ୍କ ନାମରେ ଭୁବନେଶ୍ୱରରେ ରାଜମହଲ ହୋଟେଲରେ ଆଉ ଗୋଟିଏ ରୁମ୍ ରିଜର୍ଭ ଅଛି । ସେ ସେଠାରେ ରହି, କଟକ ଓ ଖୋର୍ଦ୍ଧାର ମଝି ଜାଗାରେ ବସି ନାଟକଟିକୁ ପରିଚାଳନା କରୁଛନ୍ତି ।

ସେହି ରିଙ୍ଗ୍ ମାଷ୍ଟର ଜଣକ କିଏ ଓ କେଉଁ ଘଟଣାକୁ କିପରି ଭାବରେ ପରିଚାଳନା କରୁଥିଲେ, ସେଇ କଥା ଏଥର ମୁଁ ଆପଣମାନଙ୍କୁ କହିବି ।

ପୁଣି ଆମେମାନେ ଆଉଥରେ ଚାଲନ୍ତୁ କଲିକତାରେ ଅବସ୍ଥିତ ସେହି ଏସିଆ ଟ୍ରେଡିଂ କମ୍ପାନୀକୁ । ଆଇନ୍ ଆଖିରେ କମ୍ପାନୀର କାରବାର ଥିଲା ସିନା ଏକ୍ସପୋର୍ଟ ଇମ୍‌ପୋର୍ଟ, କିନ୍ତୁ ଅନ୍ଧକାରରେ, ଆଇନ୍‌ର ଅଲକ୍ଷ୍ୟରେ କମ୍ପାନୀର ଯେଉଁ ମୁଖ୍ୟ ବ୍ୟବସାୟ ଥିଲା, ତାହା ହେଉଛି ସ୍ମଗଲିଂ । କମ୍ପାନୀର ମାଲିକଙ୍କର କିନ୍ତୁ ଅତି ବିଶ୍ୱାସୀ ଥିଲେ ରଣଜିତ୍ ରାଉତରାୟ । ସେଥିପାଇଁ କମ୍ପାନୀ ତରଫରୁ ସେ ରିପ୍ରେଜେଣ୍ଟ୍ କରୁଥିଲେ ବିଭିନ୍ନ ଦେଶରେ । ସେମାନେ ଅନ୍ୟ ଦେଶମାନଙ୍କର ସୁନା ସଂଗ୍ରହ କରି ଭାରତରେ ଚଢ଼ାଦାମରେ ବିକ୍ରୟ କରୁଥିଲେ ।

ବେଶ୍ ଚାଲିଥିଲା । ଏସିଆ ଟ୍ରେଡିଂ କମ୍ପାନୀ । ମାଲିକଙ୍କର କୋଠା ପରେ କୋଠା ହୁଏତ ପିଟା ହେଉଥିଲା ଭାରତର ବିଭିନ୍ନ ବନ୍ଦରରେ ।

କିନ୍ତୁ ହଠାତ୍ ଦିନେ...

ଏ ଯେ ଅବିଶ୍ୱାସ୍ୟ । ଏସିଆ ଟ୍ରେଡିଂ କମ୍ପାନୀର ମାଲିକ ଯେତେବେଳେ ହିସାବ କରି ଦେଖିଲେ, ରଣଜିତ୍ ରାଉତରାୟ ତା'ର ବହୁଦିନ ପୂର୍ବରୁ ବହୁ ପରିମାଣର ସୁନା ହାତପଇଠ କରି ଓଡ଼ିଶାକୁ ଚାଲିଆସିଛନ୍ତି ।

ଆଉ ଉପାୟ କିଛି ନାହିଁ ।

ଦିନର ଆଲୋକରେ ଆଇନ ସମ୍ମତ ଭାବରେ ରଣଜିତ୍ ରାଉତରାୟ ବିରୋଧରେ କରିବାର ମଧ୍ୟ କିଛି ନାହିଁ ।

କେବଳ କୌଶଳ, ଯଦି କୌଣସି ଉପାୟରେ ଏସିଆ ଟ୍ରେଡିଂ କମ୍ପାନୀର ସେଇ ହୃତ ସମ୍ପଦର ସନ୍ଧାନ କରାଯାଇପାରେ ।

କିନ୍ତୁ ବର୍ଷ ବର୍ଷ କଟିଗଲା । ଏସିଆ ଟ୍ରେଡିଂ କମ୍ପାନୀର ମାଲିକ ସେହି ହୃତ ସମ୍ପଦର ସନ୍ଧାନ ପାଇଲେ ନାହିଁ ।

ଏହା ଭିତରେ ରଣଜିତ୍ ରାଉତରାୟଙ୍କର ମୃତ୍ୟୁ ଘଟିଲା ।

ତା'ହେଲେ ଉପାୟ ?

ଏସିଆ ଟ୍ରେଡିଂ କମ୍ପାନୀର ମାଲିକ ଜାଣିଥିଲେ, ରଣଜିତ୍ ରାଉତରାୟ ସେହି ସମ୍ପଦ କୌଣସି ଏକ ଗୁପ୍ତସ୍ଥାନରେ ଲୁଚାଇ ରଖିଛନ୍ତି । ସେଇଥି ପାଇଁ ତାଙ୍କ ମୃତ୍ୟୁ ପରେ ସେ ତାଙ୍କର କୋଠାଟିକୁ ଅଦର ଦରରେ କିଣି ନେବା ପାଇଁ ନରୋତ୍ତମ ଅଗରବାଲାଙ୍କ ମାଧ୍ୟମରେ ଚେଷ୍ଟା କରିଥିଲେ ।

କିନ୍ତୁ ବ୍ୟର୍ଥ ହେଲେ ଚଳିବ କିପରି ?

ତାଙ୍କର ରିପ୍ରେଜେଣ୍ଟେଟିଭ ଉପାୟ ପରେ ଉପାୟ ଉଦ୍ଭାବନ କରି ଚାଲିଥିଲେ । ଶେଷରେ ସେ ହୁଏତ ସ୍ଥିର କରିନେଲେ, ଏଥର ସଂଜୀବକୁ ଫାନ୍ଦରେ ପକାଇବାକୁ ହେବ । ତା'ହେଲେ ତାଙ୍କ ଉଦ୍ଦେଶ୍ୟ ସାଧନରେ ବାଧା ବିପଦ କିଛି ରହିବ ନାହିଁ ।

ତା'ହେଲେ ପଥ ?

ସଂଜୀବ ଯୁବକ । ଯୌବନର ପ୍ରଥମ ପାହାଚ ଆଜି ବି ଅତିକ୍ରମ କରି ନାହିଁ । ତେଣୁ ସଂଜୀବକୁ ଲକ୍ଷ୍ୟଭ୍ରଷ୍ଟ କରିବା ମୋଟେ ସମସ୍ୟା ନୁହେଁ । ତା'ଛଡା ସଂଜୀବ କଲିକତାରେ ମଣିଷ ହୋଇଛି । କ୍ଲବ, ହୋଟେଲକୁ ତା'ର ଅବାଧ ଯାତାୟାତ ଥିଲା । ଖାଲି ଅଳ୍ପ ଟିକିଏ ପାଷ୍ଟ ହିଷ୍ଟ୍ରି ଯୋଗାଡ କରି ପାରିଲେ, ବାଜିମାତ୍ ଏବଂ ଆମ ରିଙ୍ଗମାଷ୍ଟର ବାଜିମାତ୍ କରିଥିଲେ ମଧ୍ୟ ।

ଲାୟଲି ବି ଟ୍ରେନ୍ଡ ଝିଅ । ଆଖିର ଲୁହ ଆଉ ବୁକୁର କୋହରେ ସଂଜୀବକୁ ଏତେ ପାଖକୁ ଟାଣିଆଣିଥିଲା ଯେ, ଆମମାନଙ୍କ ଆଖିରେ ବି ଧୂଳିଛାଟି ସେମାନେ କାମ ହାସଲ କରି ଖସିଯାଇଥିଲେ ଜାଣନ୍ତୁ ।

କିନ୍ତୁ ଲୋଭ ମଣିଷର ସର୍ବନାଶ କରେ ।

ସେହି ଲୋଭର ଶିକାର ହେଲେ ଆମର ରିଙ୍ଗମାଷ୍ଟର । ଫଳରେ ଲାୟଲିକୁ ହତ୍ୟାକରି, ବାଟର କଣ୍ଟା ଘୁଞ୍ଚାଇବାକୁ ଯାଇ ନିଜ ଗୋଡରେ କଣ୍ଟା ଫୁଟାଇ ବସିଲେ ।

ବର୍ତ୍ତମାନ ଆମ ସମସ୍ତଙ୍କୁ ଆଉଥରେ ଫେରିଯିବାକୁ ହେବ, ରଣଜିତ୍ ବାବୁଙ୍କର ଖୋର୍ଦ୍ଧାର ସେଇ କୋଠାଟି ଭିତରକୁ ।

ରଣଜିତ୍ ରାଉତରାୟ ଏସିଆ ଟ୍ରେଡିଂ କମ୍ପାନୀରୁ ଯେତେବେଳେ ଚାକିରି ଛାଡ଼ି ଆସିଲେ, ସେତେବେଳେ ସେ ବହୁ ସୁନା ଧରି ଚାଲି ଆସିଥିଲେ । ମୋର ଧାରଣା  ବିଦେଶରୁ ଯେଉଁସବୁ ମାଲ୍ ବୁକ୍‌ହେଉଥିଲା ଏସିଆ ଟ୍ରେଡିଂ କମ୍ପାନୀ ନାମରେ, ସେହି ସବୁ ମାଲ୍ ଭିତରେ କିଛି କିଛି ସୁନା ଚାଲିଆସୁଥିଲା ଭାରତବର୍ଷକୁ । ରଣଜିତ୍‌ବାବୁ ବିଦେଶରେ ଥିବାବେଳେ ହୁଏତ ସେହିପରି କେତୋଟି ମାଲ୍ ବୁକ୍ କରି ଦେଇଥିଲେ, ତାଙ୍କ ନାମରେ ତାଙ୍କ ଓଡ଼ିଶାର ଘର ଠିକଣାରେ ।

ମାଲ୍ ତ ଠିକ୍ ସମୟରେ ପହଞ୍ଚିଗଲା । ରଣଜିତ୍ ରାଉତରାୟ ମଧ ଛୁଟି ନେଇ ଚାଲି ଆସିଲେ; କିନ୍ତୁ ସମସ୍ୟା ହେଲା ରଣଜିତ୍‌ବାବୁ ଏତେ ପରିମାଣରେ ସେହି ଚୋରା ସୁନା ଲୁଚାଇ ରଖିବେ କେଉଁଠି ?

ବହୁ ଭାବିଚିନ୍ତି ସେ ଏକ ସୂକ୍ଷ୍ମ ବୁଦ୍ଧି ଆବିଷ୍କାର କଲେ । ଶୁଆ, ଶାରୀଙ୍କ ପଞ୍ଜୁରୀ ତଳେ, ସେହି କୋଲାକୃତି ସ୍ଥାନଟି ନିଜେ ମିସ୍ତ୍ରୀ ଲଗାଇ କାଠରେ ତିଆରି କଲେ ଏବଂ ଭିତରଟା ଫମ୍ପା ରଖିଲେ । ସୁନା ତରଳାଇ ତା'ରି ଭିତରେ ଢ଼ାଳିଲେ । ଚମତ୍କାର କୌଶଳ । କାହାରି ସନ୍ଦେହ କରିବାର ବି ଅବକାଶ ରହିଲା ନାହିଁ;  ଅଥଚ ଶୁଆ-ଶାରୀମାନଙ୍କ ପଞ୍ଜୁରିଗୁଡାକ ସର୍ବ ସମକ୍ଷରେ ଝୁଲିରହିଲା ।

କିନ୍ତୁ ରଣଜିତ୍ ରାଉତରାୟଙ୍କର ସେହି କାର୍ଯ୍ୟରେ ଅସୁବିଧା ହେଲା ଗୋଟାଏ- ସେଇଟା ହେଉଛି ରଣଜିତ୍‌ବାବୁଙ୍କର ତତ୍କାଳୀନ ଚାକର ଦୁଇଜଣ ନଟ ଓ ରଥିଆ, ତାଙ୍କର ସହଯୋଗୀ ଥିଲେ । ମାନେ ରଣଜିତ୍‌ବାବୁ ରାତ୍ରିର ଅନ୍ଧକାରେ ଯେତେବେଳେ ସୁନା ତରଳାଇ ପଞ୍ଜୁରି ଭିତରେ ଢ଼ାଳୁଥିଲେ, ଏହି ଚାକର ଦୁଇଜଣ ତାଙ୍କୁ ସାହାଯ୍ୟ କରୁଥିଲେ ।

ଯେତେବେଳେ କାମ ଶେଷହେଲା, ରଣଜିତ୍‌ବାବୁ ଚିନ୍ତା କଲେ, ଏ ଦୁଇଜଣଙ୍କୁ ପଥରୁ ନ ଘୁଞ୍ଚାଇଲେ ଦିନେ ସେ ଧରାପଡିଯିବେ । ଅବଶ୍ୟ ନଟର ବୟସ ହୋଇଥିଲା । ତାକୁ ସେ ହତ୍ୟା କରି ତା' ବେକରେ ଦଉଡ଼ି ଲଗାଇ ଗଛରେ ଝୁଲାଇ ଦେଇଥିଲେ । ପୋଲିସ୍ ଷ୍ଟେସନରେ ଜଣାଇଲେ ନଟ ଆତ୍ମହତ୍ୟା କରିଛି । ଆଉ ରଥିଆକୁ ହତ୍ୟା କରି କୂଅ ଭିତରେ ଫିଙ୍ଗିଦେଇଥିଲେ; ଯାହାର କଙ୍କାଳ ମିଷ୍ଟର ଅଧିକାରୀ ଆଜି ଖୋଜି ପାଇଛନ୍ତି ।

ଇଏତ ଗଲା ରଣଜିତ୍ ରାଉତରାୟଙ୍କ କଥା ।

ଏଥର ଆମେ ପୁଣି ଆମ ପ୍ରସଙ୍ଗକୁ ଫେରି ଆସିବା । ଆମର ରିଙ୍ଗ୍ ମାଷ୍ଟର, ମାନେ ଏସିଆ ଟ୍ରେଡିଂ କମ୍ପାନୀର ମାଲିକଙ୍କର ଏଜେଣ୍ଟ, ବୋଧହୁଏ ବହୁତ ଡେରିରେ ବୁଝିଲେ ଯେ, ରଣଜିତ୍‌ବାବୁଙ୍କର ଏହି ଶୁଆ, ଶାରୀ ପାଳନ ଭିତରେ କିଛି ଗୋଟାଏ ରହସ୍ୟ ଅଛି । ତେଣୁ ସେ ହୁଏତ ଲାୟଲିକୁ ଅନୁରୋଧ କଲେ, ସଂଜୀବ ପାଖରୁ ଗୋଟିଏ ଶାରୀ ମାଗି ଆଣିବା ପାଇଁ ।

ଲାୟଲି ଆଦେଶ ପାଳନ କଲା ।

କାଲି ରାତିରେ ସେଇ ଶାରୀ ପଞ୍ଜୁରି ଲାୟଲି ରୁମ୍‌ରେ ପରୀକ୍ଷା କରୁ କରୁ, ହୁଏତ ଲାୟଲି ସାମ୍‌ନାରେ ପଞ୍ଜୁରିର ଗୁପ୍ତ ରହସ୍ୟ ଉଦ୍‌ଘାଟିତ ହୋଇ ପଡିଲା; ଅର୍ଥାତ୍ ପଞ୍ଜୁରିର ଗୋଲାକୃତି ସ୍ଥାନଟାର କାଠ ଖୋଳ ଭିତରେ ଯେ ସୁନା ଲୁଚିରହିଛି, ଆବିଷ୍କାର କରି ଲାୟଲି ଓ ରିଙ୍ଗମାଷ୍ଟର ଦୁହେଁ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ହୁଏତ ଦୁହିଁଙ୍କ ମୁହଁରେ ସାଫଲ୍ୟର ହସ ଫୁଟିଉଠିଥିଲା ।

କିନ୍ତୁ...

ସତ୍ୟବ୍ରତ ଟିକିଏ ନୀରବ ରହି ସମସ୍ତଙ୍କ ମୁହଁକୁ ଥରେ ଚାହିଁଗଲେ । ସମସ୍ତେ ବିସ୍ମୟ ବିସ୍ଫାରିତ ନେତ୍ରରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଥିଲେ ।

: ହଁ, ଲୋଭ ମଣିଷର ସର୍ବନାଶ କରେ । ସତ୍ୟବ୍ରତ ପୁଣି ଆରମ୍ଭ କଲେ । ଆମର ରିଙ୍ଗ୍‌ମାଷ୍ଟର ଗୁପ୍ତଧନର ଆବିଷ୍କାର ପରେ ନିଜ କୋଠରୀକୁ ହୁଏତ ଫେରିଯାଇଥିଲେ । ସେ ହୁଏତ ମନେ ମନେ ଭାବିଥିଲେ ଏହି ବହୁମୂଲ୍ୟ ସମ୍ପତ୍ତିର ସଂଧାନ ପାଇଛନ୍ତି ସେ ଆଉ ଲାୟଲି । କିନ୍ତୁ ଯଦି ଏକା ସନ୍ଧାନଟା ପାଇଥାଆନ୍ତେ... ହୁଏତ ଏସିଆ ଟ୍ରେଡିଂ କମ୍ପାନୀର ମାଲିକଙ୍କୁ ଫାଙ୍କି ଦେଇହୁଅନ୍ତା, କିନ୍ତୁ ମଝିରେ ଯେ ଲାୟଲି ରହିଗଲା ।

ଲାୟଲି ! ଲାୟଲି !!

ଶେଷରେ ତାଙ୍କର ଅଗାଧ ଐଶ୍ୱର୍ଯ୍ୟର ଅଧିକାରୀ ହେବା ମୂଳରେ ଜଣେ ଝିଅ ପ୍ରତିବନ୍ଧକ ହୋଇ ଠିଆହେବ !

ହାତ ତାଙ୍କର ମୁଠା ମୁଠା ହୋଇ ଆସିଲା ।

ଆଖିରେ ଜାଗିଲା ରକ୍ତର ନିଶା ।

ନା, ଲାୟଲିକୁ ସେ ବାଟରୁ ଘୁଞ୍ଚାଇ ଦେବେ । ଅତି ସହଜରେ ରାତିର ଅନ୍ଧକାର ଭିତରେ ସବୁକାମ ଶେଷହୋଇଯିବ, କେହି ଜାଣିବେ ନାହିଁ, କେହି ଦେଖିବେ ନାହିଁ ।

ଲାୟଲି ହୁଏତ ରିଙ୍ଗ୍‌ମାଷ୍ଟରଙ୍କର ଏହି ମନୋଭାବର ପରିଚୟ ପାଇଗଲା କିମ୍ବା କେଜାଣି କାହିଁକି ତା' ମନରେ କିଛି ସନ୍ଦେହ ଜାଗିଲା । ହୁଏତ ସେ ଭାବିଲା ତା' ଜୀବନ ଆଉ ନିରାପଦ ନୁହେଁ । ସେ ଯେତେବେଳେ ଏହି ସିଦ୍ଧାନ୍ତରେ ଉପନୀତ ହେଲା, ସଙ୍ଗେ ସଙ୍ଗେ ତା' ରୁମ୍‌ରୁ ଉଠିଯାଇ ରିସେପ୍‌ସନ କାଉଣ୍ଟରରୁ ମୋ' ପାଖକୁ ଫୋନ୍ କଲା । ସେତେବେଳକୁ ଅନେକ ଡେରି ହୋଇଯାଇଥିଲା । ମୁଁ କେବଳ ଲାୟଲିର ଜଡ଼ିତ କଣ୍ଠର କେଇପଦ କଥା ଶୁଣିଥିଲି । ତା'ପରେ ଦୀର୍ଘ ନୀରବତା । ଲାୟଲି ଠିକ୍ ମୋତେ ଫୋନ୍ କରିବା ମୁହୂର୍ତ୍ତରେ ଆମ ରିଙ୍ଗମାଷ୍ଟରଙ୍କ ଶିକାର ହୋଇଥିଲା ।

ତା'ପରେ ମୁଁ ଆସିଲି ହୋଟେଲ ଅମ୍ବରକୁ ।

ଲାୟଲିର ମୃତ ଦେହ ଦେଖିଲି ।

ରମ୍‌ଜାନ ମୁହଁରୁ ଶୁଣିଲି, ଜଣେ କଳାପୋଷାକ ପରିହିତ ଲୋକ ଲାୟଲିର ଗଳା ଚିପିଧରି ବାଥ୍‌ରୁମ୍ ଆଡକୁ ଟାଣି ଟାଣି ନେଉଥିବାର ସେ ଦେଖିଛି ।

କଳାପୋଷାକ !

ମୁଁ କଳାପୋଷାକ ଖୋଜିବାକୁ ଯାଇ, ଲାୟଲି ରୁମ୍‌ରେ ଦେଖିଲି ଶାରୀଟି ମରିପଡିଛି, କିନ୍ତୁ ପଞ୍ଜୁରି ?

ତା'ପରେ କଳାପୋଷାକ ଓ ପଞ୍ଜୁରି ଦୁଇଟିଯାକ ଖୋଜିବାକୁ ବାହାରି ପଡିଲି ।

ସତ୍ୟବ୍ରତ ମହାପାତ୍ର ଟିକିଏ ନୀରବ ହୋଇ ପୁଣି କହିଲେ, ଆପଣମାନେ ଶୁଣିଲେ ଖୁସିହେବେ ଯେ, ମୁଁ ପଞ୍ଜୁରି ଆଉ କଳା ପୋଷାକ ଦୁଇଟିଯାକ ପାଇଲି ଗୋଟିଏ ଜାଗାରୁ ।

ସମସ୍ତଙ୍କର ଉତ୍‌କଣ୍ଠା ଚରମରେ ପହଞ୍ଚିଥିଲା, ବୋଧହୁଏ ଏକା ସଂଗରେ ସମସ୍ତେ ପ୍ରଶ୍ନ କରି ଉଠିଲେ : କେଉଁଠୁ ପାଇଲେ ?

: ପାଇଲି ମିଷ୍ଟର କାପୁରଙ୍କ ରୁମ୍‌ରୁ । ସତ୍ୟବ୍ରତ ମହାପାତ୍ର ବଜ୍ରଗମ୍ଭୀର କଣ୍ଠରେ କହିଲେ ।

ମିଷ୍ଟର କାପୁର, ମିଷ୍ଟର କାପୁର ତା'ହେଲେ..... ? ପୋଲିସ୍ ଅଫିସର ନୀଳମଣି ସାମନ୍ତରାୟ ଉଠି ଠିଆହୋଇପଡିଲେ ।

ସତ୍ୟବ୍ରତ ତାଙ୍କୁ ଚେଆର ଉପରେ ବସାଇ ଦେଇ କହିଲେ, : ନା, ମିଷ୍ଟର କାପୁର ଲାୟଲିର ହତ୍ୟାକାରୀ ନୁହନ୍ତି । କିନ୍ତୁ ଲାୟଲିର ହତ୍ୟାକାରୀ ମିଷ୍ଟର କାପୁରଙ୍କ ମୁଣ୍ଡରେ ଅଠା ବୋଳିବା ପାଇଁ, ଏଇ ଦୁଇଟି ପଦାର୍ଥ ତାଙ୍କ ଘରେ ଲୁଚାଇ ରଖି ଆସିଥିଲା । ସେଥିରେ ବି ସେ ସଫଳତା ଅର୍ଜନ କରିଥିଲା; କିନ୍ତୁ ସେ ମିଷ୍ଟର କାପୁରଙ୍କ ଘରୁ ବାହାରି ଆସିବା ବେଳେ ନିଜେ ଏହି ପଦାର୍ଥଟି ଛାଡ଼ିଦେଇ ଆସିଥିଲା ।

ସତ୍ୟବ୍ରତ ମହାପାତ୍ର ପକେଟରୁ ଗୋଟାଏ ମାଉଥ ଅର୍ଗାନ୍ ବାହାର କରି ପୁଣି ବେସୁରା ରାଗରେ ବଜାଇବାକୁ ଆରମ୍ଭ କରିଦେଲେ ।

କିନ୍ତୁ ଏ କ'ଣ ?

ଅଧିରାଜ ମୋହନ ଅଧିକା ତାଙ୍କ ପାଖରେ ବସିଥିବା ଲୋକଟାକୁ ହଠାତ୍ ଦୁଇ ହାତରେ ଜାବୁଡ଼ି ଧରିଲେ କାହିଁକି ?

ସମସ୍ତଙ୍କ ଆଖି ଯାଇ ସେଇଠି ପଡିଲା ।

ନୀଳମଣି ସାମନ୍ତରାୟ ମଧ୍ୟ ସେଠାକୁ ଉଠିଗଲେ ।

ଅଧିରାଜ ମୋହନ ଅଧିକାରୀ କହିଲେ : ଲୋକଟାର ପକେଟରେ ପିସ୍ତଲ ଅଛି । ସେ ଧୀରେ ଧୀରେ ବାହାର କରୁଥିଲା । ମୁଁ ଜାବୁଡ଼ି ଧରିଲି ।

ପିସ୍ତଲ !

ସତକୁ ସତ ଲୋକଟାର ପକେଟ ସର୍ଚ୍ଚ କଲାରୁ ଗୋଟାଏ ପିସ୍ତଲ ବାହାରିଲା ।

କିନ୍ତୁ ଲୋକଟା କିଏ ?

ମିଷ୍ଟର କାପୁର କହିଲେ : ତାଙ୍କ ନା ମଦନମୋହନ । ସେ ରାଜେଶର ଗେଷ୍ଟ, ଅମ୍ବରରେ ଚାକିରି ପ୍ରାର୍ଥୀ ।

ସତ୍ୟବ୍ରତ ସ୍ମିତହସି କହିଲେ : ଆଉ ଏଇ ମାଉଥ ଅର୍ଗାନ୍‌ଟି ମଧ୍ୟ ସେଇ ମଦନମୋହନଙ୍କର । ସେ ଶାରୀ ପଞ୍ଜୁରି ଆଉ କଳା ପୋଷାକ ମିଷ୍ଟର କାପୁରଙ୍କ ରୁମ୍‌ରେ ରଖି ଆସିବାବେଳେ, ମାଉଥ୍ ଅର୍ଗାନଟି ଭୁଲ୍‌ରେ ସେଠାରେ ଛାଡ଼ିଆସିଥିଲେ ।





ସାହିତ୍ୟଜଗତର ଭିନ୍ନ ଉଚ୍ଚାରଣ :

# କୃଷ୍ଣଚରଣ

ଓଡ଼ିଆସାହିତ୍ୟର ଏକ ଦୁର୍ବଳତମ ବିଭାଗ ହେଲା, ରହସ୍ୟ-ଉପନ୍ୟାସ । ପ୍ରତିବେଶୀ ବଙ୍ଗଳା ସାହିତ୍ୟରେ ଶରଦିନ୍ଦୁ ବନ୍ଦୋପାଧ୍ୟାୟ, ନୀହାର ରଂଜନ ଗୁପ୍ତା, ଶଙ୍କର, ସତ୍ୟଜିତ୍ ରାୟ ପ୍ରମୁଖ ବରେଣ୍ୟ ସାହିତ୍ୟିକ ରହସ୍ୟ-ଉପନ୍ୟାସ ରଚନା କରି ବଙ୍ଗଳାସାହିତ୍ୟକୁ ସମୃଦ୍ଧ କରିଥିଲାବେଳେ ଓଡ଼ିଆସାହିତ୍ୟରେ ଏ ବିଭାଗଟି ଅତ୍ୟନ୍ତ ଉପେକ୍ଷିତ ହୋଇରହିଥିଲା । ହେଲେ ରହସ୍ୟ-ଉପନ୍ୟାସର ପାଠକ ଯେ ଓଡ଼ିଶାରେ ନଥିଲେ ତା' ନୁହେଁ । ଓଡ଼ିଆ ପାଠକଗୋଷ୍ଠୀ ସେତେବେଳେ ମୁଖ୍ୟତଃ ହିନ୍ଦୀ, ବଙ୍ଗଳା ବା ଇଂରାଜୀ ରହସ୍ୟ ଉପନ୍ୟାସ ପାଠ କରି ତୃଷା ନିବାରଣ କରୁଥିଲେ । ସେତେବେଳେ କଲିକତା ନିବାସୀ ଶ୍ରୀଯୁକ୍ତ କସ୍ତୁରିଚରଣ ଦାସ ହିଁ ଓଡ଼ିଆସାହିତ୍ୟର ଏଭଳି ଏକ ଉପକ୍ଷିତ ବିଭାଗକୁ ସମୃଦ୍ଧ କରିଥିଲେ ନିଜ ରଚନାଦ୍ୱାରା । ସେ ଅନୁଭବ କରିଥିଲେ, ରହସ୍ୟ ଉପନ୍ୟାସର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି ସାହିତ୍ୟରେ ଏବଂ ସମାଜରେ ମଧ୍ୟ । ତେଣୁ ସେ ଜୋର୍ ଦେଇ କହନ୍ତି, "ଆପଣ ଯେକୌଣସି ପବ୍ଲିକ୍ ଲାଇବ୍ରେରୀରେ ଇସ୍ୟୁ ରେଜିଷ୍ଟର ଖୋଲି ଦେଖନ୍ତୁ ଗୋଟେ ଭଲ ରହସ୍ୟ-ଉପନ୍ୟାସ, ଅନ୍ୟ ପୁସ୍ତକଠାରୁ ଯଥେଷ୍ଟ ଅଧିକ ଥର ଇସ୍ୟୁ ହୋଇଛି । ରହସ୍ୟ ଉପନ୍ୟାସର ଲୋକପ୍ରିୟତା କ'ଣ ଏହାର ପ୍ରମାଣ ନୁହେଁ ?" ଓଡ଼ିଆ ସାହିତ୍ୟର ଏହି ଅବହେଳିତ ଦିଗଟିକୁ ଯିଏ ପ୍ରତିବେଶୀ ରାଜ୍ୟରେ ରହି ତା'ର ରଚନା, ପ୍ରକାଶନ, ପ୍ରଚାର, ପ୍ରସାର ଏବଂ ଲୋକପ୍ରିୟତା ଦିଗରେ ସଜାଗତା ସୃଷ୍ଟି କରିପାରିଥିଲେ, ସେ ହେଉଛନ୍ତି ପ୍ରବାଦପୁରୁଷ 'କସ୍ତୁରିଚରଣ ଦାସ' । ଏକାଧାରରେ ସେ ଲେଖକ, ପ୍ରକାଶକ, ମୁଦ୍ରକ, ସଂପାଦକ ଏବଂ ବିତରକ । ସବୁଠି ସଫଳତା ତାଙ୍କୁ ଛୁଇଁ ଛୁଇଁ ଯାଇଛି । ନିଜ ପରିବାରକୁ ନେଇ ଅତ୍ୟନ୍ତ ଖୁସି ଏବଂ ସୁଖୀ ମଣିଷଟିଏ ସେ । ମାନବିକତାର ସମସ୍ତ ଆବେଦନର ବାସ୍ତବ ପୂଜାରୀ, ପ୍ରତିକୂଳ ସ୍ରୋତରେ ବି ନଉକା

ବାହିବାରେ ସେ ସଫଳ ନାଉରି । ଓଡ଼ିଆ ରହସ୍ୟ-ଉପନ୍ୟାସର ଭିନ୍ନ ଏକ ଉଚ୍ଚାରଣ; ସେ କଣ୍ଟୁରିଚରଣ ।

ତତ୍‌କାଳୀନ ଗଳ୍ପଜଗତର ଜଣେ ସ୍ୱନାମଧନ୍ୟ ଗଳ୍ପକାର, 'ଦୈନିକ ଆଶା', 'ସହକାର', 'ଶଙ୍ଖ', 'ଚତୁରଙ୍ଗ', 'ବୀଣା' ପ୍ରଭୃତି ପତ୍ରିକାର ନିୟମିତ ଲେଖକ । ଶିଶୁ ପତ୍ରିକା 'ମୋ ଦେଶ'ର ଗୀତିକାର । ବମ୍ବେରୁ ପ୍ରକାଶିତ 'କୁଙ୍କୁମ' ପତ୍ରିକାର ପୁରସ୍କୃତ ଗାଳ୍ପିକ ଥିଲେ ସେ । ପରବର୍ତ୍ତୀ କାଳରେ ତାଙ୍କ ଗଳ୍ପସବୁ ସଙ୍କଳିତ 'ଧୂଳିର ଧରଣୀ' ସଙ୍କଳନରେ । ପ୍ରଥମ ରହସ୍ୟ-ଉପନ୍ୟାସ ସି.ଆଇ.ଡ଼ି (୧୯୫୧) ତାଙ୍କୁ ଅଜସ୍ର ଲୋକପ୍ରିୟତା ଆଣି ଦେଇଥିଲା । ରୋମାଣ୍ଟିକ ଉପନ୍ୟାସ 'ଦାଗ, ଗ୍ରାମ୍ୟଜୀବନର ଚିତ୍ର ଓ ଚରିତ୍ର ସମ୍ବଳିତ ସାମାଜିକ ଉପନ୍ୟାସ 'ଜନ୍ମମାଟି' ପଞ୍ଚମ-ଷଷ୍ଠ ଦଶକରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ସି.ଆଇ.ଡ଼ି ପରେ ପରେ 'ରକ୍ତତାଣ୍ଡବ', 'ଚିତ୍ରାଙ୍ଗଦାର ଆତ୍ମହତ୍ୟା', 'ନିଶିଗନ୍ଧା', 'କପଟପଶା', 'ଛାୟାସଙ୍ଗିନୀ', 'ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ', 'ଜାପାନୀ ଖେଳନା', 'ନିଶିମୃଗୟା', 'କିଏ କାନ୍ଦେ' ପ୍ରଭୃତି ଭିନ୍ନ ରସ, ଭିନ୍ନ ରୂପ, ଭିନ୍ନ ସ୍ୱାଦର ଅସଂଖ୍ୟ ରହସ୍ୟ-ଉପନ୍ୟାସ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଜଣେ ଲେଖକ ଭାବରେ ତାଙ୍କର ପ୍ରାୟ ସତୁରିରୁ ଊର୍ଦ୍ଧ୍ୱ ଉପନ୍ୟାସ, ଜଣେ ପ୍ରକାଶକ ଭାବରେ ତାଙ୍କର ରାଜଶ୍ରୀ ପକେଟ ବୁକ୍ସ, ଜଣେ ମୁଦ୍ରାକର ଭାବରେ ତାଙ୍କର କଳିଙ୍ଗ ମୁଦ୍ରଣୀ, ଜଣେ ସଂପାଦକ ଭାବରେ 'ଆସନ୍ତାକାଲି', 'ନବରବି', 'କଳନା', 'ତରଙ୍ଗ', 'ସମାବେଶ' ପ୍ରଭୃତି ପତ୍ରିକାର ସଂପାଦନା ତାଙ୍କୁ ନିଶ୍ଚିତ ଅମର ତଥା ଅବିସ୍ମରଣୀୟ କରିରଖିବ । ବେସରକାରୀ ବିଦେଶୀ ସଂସ୍ଥାରୁ ଚାକିରି ଜୀବନ ଆରମ୍ଭ କରି ସ୍ୱାଧୀନତା ପରେ ଭାରତୀୟ ଜୀବନ ବୀମାରେ କିରାଣୀ ଜୀବନ ତାଙ୍କର ପେସା ଥିଲା, କିନ୍ତୁ ନିଶା ଥିଲା ସାହିତ୍ୟ । ସାଧାରଣ ଶିକ୍ଷାଗତ ଯୋଗ୍ୟତାରୁ ବହୁ ଊର୍ଦ୍ଧ୍ୱରେ ତାଙ୍କର ସାହିତ୍ୟ ରଚନା ଓ ସାହିତ୍ୟ ପରିଚାଳନା । ସାମ୍ପ୍ରତିକ ସମୟର ବହୁ ବିଶିଷ୍ଟ ସାହିତ୍ୟିକ ତାଙ୍କ କଲମ ମୁନର ସିପାହି । ସାହିତ୍ୟ ପାଇଁ ବହୁ ଆର୍ଥିକ କ୍ଷତି ସହିବାଠାରୁ ଆରମ୍ଭ କରି ହରାଇଛନ୍ତି ବହୁତ କିଛି । ହେଲେ ପାଇଛନ୍ତି ବି ବହୁତ କିଛି ଅତୀତର ମଧୁର ସ୍ମୃତି, କାର୍ଯ୍ୟଦକ୍ଷତା, କର୍ମପ୍ରବଣତା ତାଙ୍କୁ ଏବେ ବି ଉତ୍ସାହିତ କରେ, ପ୍ରଗଳ୍‌ଭ କରାଏ, ଉଦ୍‌ଭାସିତ କରାଏ, ବଂଚିବାକୁ ଶିଖାଇଦିଏ । ପ୍ରକୃତ ସାହିତ୍ୟିକର ଜୀବନଟିଏ ଜିଅନ୍ତି ସିଏ ତାଙ୍କ ସ୍ତ୍ରୀ ତଥା ଗାଳ୍ପିକା/ଔପନ୍ୟାସିକା କଳ୍ପନା କୁମାରୀଙ୍କ ସହ । ସଦାଚଂଚଳ, କୋଳାହଳମୟ କଲିକତା ମହାନାଗରୀର ବାଲିଗଞ୍ଜ ପ୍ଲେସ୍‌ସ୍ଥିତ ତାଙ୍କ ନିଜ ବାସଭବନରେ ତାଙ୍କୁ ଭେଟିଥିଲେ ଡକ୍ଟର ମିହିର କୁମାର ସାହୁ । ତାଙ୍କୁ ପଚାରିଥିଲେ ଅନେକ ପ୍ରଶ୍ନ । ସେଥିରୁ କତିପୟ ପ୍ରଶ୍ନର ଉତ୍ତର ଏଠାରେ ପାଠକସମାଜଙ୍କ ଗୋଚରାର୍ଥେ ସ୍ଥାନିତ ।

କେମିତି ଓ କାହିଁକି ଆସିଲେ କଲିକତା ? ପ୍ରଥମ ପର୍ଯ୍ୟାୟର ସାହିତ୍ୟିକ ଜୀବନ କେମିତି ଥିଲା ?

ମୋ ଭିଣୋଇ ଥିଲେ 'ନର୍ଥ ବ୍ରିଟିଶ୍ ଏଣ୍ଡ ମର୍କାଣ୍ଟାଇଲ୍ ଇନ୍‌ସ୍ୟୁରାନ୍‌ସ କମ୍ପାନୀର ବିଲଡ଼ିଂ ମେନେଜର୍, ମାନେ କେୟାର୍ ଟେକର୍ । ମୋ ପେଟେ ପୋଷିବା ପାଇଁ ସେ ମୋତେ ଆଣିଥିଲେ । ସେତେବେଳେ ବହୁ ଓଡ଼ିଆ ପ୍ରାୟ ପେଟପାଟଣା ପାଇଁ ଆସୁଥିଲେ କଲିକତା । ସେମାନେ ରହିଯାଉଥିଲେ । ଆଉ ଯେଉଁମାନେ ବ୍ୟବସାୟ ଧନ୍ଦାରେ ଆସୁଥିଲେ, ସେମାନେ ଯିବା-ଆସିବା କରୁଥିଲେ । ମୋ ଭିଣୋଇ ଆଣି ସେହି କମ୍ପାନୀରେ ଶହେ ଟଙ୍କା ଦରମାରେ ରଖିଦେଲେ । ସେ କମ୍ପାନୀ ସେତେବେଳେ ଥିଲା 'କ୍ଲାଇବ୍ ଷ୍ଟ୍ରୀଟ୍'ରେ, ବର୍ତ୍ତମାନର ନାଁ ନେତାଜୀ ସୁବାସ ଚନ୍ଦ୍ର ବୋଷ ରୋଡ । ସେତେବେଳେ କଲିକତା ଏତେ କୋଳାହଳମୟ ନଥିଲା । ପ୍ରତିଦିନ ସକାଳୁ ରାସ୍ତାସବୁ ଧୁଆ ଯାଉଥିଲା । ସୁନ୍ଦର ପରିଷ୍କାର କଲିକତାକୁ ମୁଁ ଦେଖିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଖିଦୀରପୁରରେ ବୋମା ପଡ଼ିଥିବାର ମୁଁ ନିଜେ ଆଖିରେ ଦେଖିଛି । ସେଇଠି ଥିଲାବେଳେ ଲେଖାଲେଖି ଆରମ୍ଭ ହେଲା । ମୋର ପ୍ରଥମ ଗଳ୍ପ ରମେଶଚନ୍ଦ୍ର ମହାନ୍ତିଙ୍କ ସମ୍ପାଦିତ କଟକରୁ ପ୍ରକାଶିତ 'ଦୈନିକ ଆଶା'ରେ ପ୍ରକାଶିତ ହୋଇଥିଲା । ତା'ପରେ ନିୟମିତ ଲେଖା ପ୍ରକାଶ ପାଇଲା 'ଶଙ୍ଖ', 'ଚତୁରଙ୍ଗ', 'ବୀଣା' ଇତ୍ୟାଦି ପତ୍ରପତ୍ରିକାରେ । ସେତେବେଳେ ବମ୍ବେରୁ ପ୍ରକାଶିତ ଓଡ଼ିଆ ପତ୍ରିକା 'କୁଙ୍କୁମ' ମୋତେ ପୁରସ୍କୃତ ମଧ୍ୟ କରିଥିଲା । ବୀରକିଶୋର ଦାସଙ୍କ ସମ୍ପାଦିତ 'ମୋ ଦେଶ' ପତ୍ରିକାରେ ଦୁଇ ଚାରୋଟି ଶିଶୁଲେଖା ପ୍ରକାଶ ପାଇଛି ତାଙ୍କ ଅନୁରୋଧରୁ । ସେତେବେଳେ ଚନ୍ଦ୍ରମଣି ଦାସ କିଛି କିଛି ରହସ୍ୟ-ରୋମାଞ୍ଚ ଉପନ୍ୟାସ ଲେଖୁଥିଲେ । ମୁଁ ଅନୁଭବ କଲି, ରହସ୍ୟ ଉପନ୍ୟାସର ଏକ ସ୍ୱତନ୍ତ୍ର ଏବଂ ଏକ ବୃହତ ପାଠକଗୋଷ୍ଠୀ ରହିଛନ୍ତି । ପ୍ରଥମ ରହସ୍ୟ-ଉପନ୍ୟାସ ଲେଖିଲି ୧୯୫୧ରେ 'ସି.ଆଇ.ଡ଼ି' । ସ୍ୱାଧୀନତା ପରେ ବ୍ରିଟିଶ କମ୍ପାନୀ 'ଭାରତୀୟ ଜୀବନବୀମା' (ଏଲ୍.ଆଇ.ସି) ହୋଇଗଲା । ମୋ ଚାକିରି ରହିଥାଏ । ସେତେବେଳେ ଏଲ୍.ଆଇ.ସିର ବାପାମାଆ କେହି ନଥାନ୍ତି । ଯେତେବେଳେ ଯାଅ ଚଳିବ ନଗଲେ ବି ଚଳିବ । ବହୁତ ସମୟ ପାଏ । ସାହିତ୍ୟ ମୋତେ ଧରିଲା ତ ଧରିଲା । ରହସ୍ୟ-ଉପନ୍ୟାସର ପାଠକ ଗୋଷ୍ଠୀ ହିଁ ମୋତେ ଟାଣିନେଇଗଲେ ସେହି ରହସ୍ୟଜଗତକୁ । ମୋ କଲମ ଧାଇଁଲା ରହସ୍ୟ ଉପନ୍ୟାସ ଲେଖିବା ଦିଗରେ । କିଛି ଉପନ୍ୟାସର ପାଣ୍ଡୁଲିପି ଧରି କଟକର ପ୍ରକାଶକଙ୍କ ଦ୍ୱାରସ୍ଥ ହେଲି ଓ ଅପଦସ୍ତ ହୋଇ ଫେରିଲି । ସେଇଠୁ 'କଳିଙ୍ଗ ମୁଦ୍ରଣୀ'ର ସୃଷ୍ଟି । ମୋ ଲେଖା ମୁଁ ଛପାଇବି, ମୋ ପ୍ରେସ୍‌ରେ । ମୋ ପ୍ରଥମ ଉପନ୍ୟାସ ସି.ଆଇ.ଡ଼ିର ପ୍ରଚ୍ଛଦ ଶିଳ୍ପୀ ଥିଲେ ବିଖ୍ୟାତ ଚିତ୍ରଶିଳ୍ପୀ 'ଗୋପାଳ କାନୁନ୍‌ଗୋ' । ମୁଁ କଟକ ଯାଇ ତାଙ୍କୁ କାହାଣୀଟି କହିଦିଏ, ସେ ପ୍ରଚ୍ଛଦ ଆଙ୍କିକି ପଠାଇଦିଅନ୍ତି । ପରବର୍ତ୍ତୀ ବହୁ ଉପନ୍ୟାସର ପ୍ରଚ୍ଛଦଶିଳ୍ପୀ କଲିକତାର ଜୀବନ୍ ସେନ୍ ଓ ମନିସ୍ ସେନ୍ । ସେମାନଙ୍କୁ ମୁଁ ଆଇଡିଆ ଦେଉଥିଲି, ସେମାନେ ଆଙ୍କୁଥିଲେ ।

ପତ୍ରିକା ସମ୍ପାଦନା କେବେଠୁଁ ଓ କେଉଁ ପରିବେଶରେ ?

ପ୍ରଥମେ 'ଆସନ୍ତାକାଲି', ତା'ପରେ 'ସମାବେଶ', 'କଳନା', 'ତରଙ୍ଗ' ଓ ତା'ପରେ 'ନବରବି'ର ସମ୍ପାଦନାଜଗତ ସହିତ ବିଭିନ୍ନ ସମୟରେ ଜଡ଼ିତ ଥିଲି ।

ପ୍ରଥମେ ତେବେ 'ଆସନ୍ତାକାଲି' କଥା ।

ଉତ୍କଳ ସମ୍ମିଳନୀର କଲିକତା ଅଧିବେଶନରୁ 'ଆସନ୍ତାକାଲି'ର ଜନ୍ମ । ଏ ଆସନ୍ତାକାଲି ନାଁ ଦେଇଥିଲେ ଡଃ କୁଞ୍ଜବିହାରୀ ଦାଶ । ମୋତେ ଏ ନାଁଟା ଭାରି ଭଲ ଲାଗିଥିଲା । ମୁଁ, ଯଦୁନାଥ ଦାଶମହାପାତ୍ର, ହୃଦାନନ୍ଦ ମଲ୍ଲିକ ଓ ରାମଚନ୍ଦ୍ର ହରିଚନ୍ଦନ ମିଶି ପ୍ରଥମେ ଦାସ ପ୍ରିଣ୍ଟିଂ ଓ୍ୱାର୍କ୍ସରୁ ଦୁଇ ତିନୋଟି ସଂଖ୍ୟା ବାହାର କଲୁ । ରାମଚନ୍ଦ୍ର ହରିଚନ୍ଦନ ଜ୍ୟୋତିଷୀ ଥିଲେ । ତାଙ୍କର ପାତିରାମ ପରିଜାଙ୍କ ସହ ଭଲ ସମ୍ପର୍କ ଥିଲା । ପାତିରାମ ପରିଜା ସେତେବେଳେ କଲିକତାର ବଡ଼ଲୋକ । ସମ୍ପତ୍ତି ମଧ୍ୟ ପ୍ରଚୁର ଥିଲା । ତାଙ୍କର ବ୍ୟବସାୟ (କୋଣାର୍କ କେମିକାଲ୍‌ସର ସ୍ନୋ, ପାଉଡର, ତେଲ ଇତ୍ୟାଦି) ଖୁବ୍ ଭଲ ଚାଲିଥିଲା । ତାଙ୍କ କୋଣାର୍କ ପ୍ରେସରେ 'ଆସନ୍ତାକାଲି' ଛପା ହେବାର ବ୍ୟବସ୍ଥା ହେଲା । 'ଆସନ୍ତାକାଲି' ପାଇଁ ମୋର ସବୁ ସମୟ, ଶ୍ରମ ଦାନ କରିବା ଏକମାତ୍ର ଲକ୍ଷ୍ୟ ଥିଲା । ସମୟ ଅନୁସାରେ ଏହାର ମୁଦ୍ରଣ ଓ ପ୍ରକାଶନ ଦେଖିବା ଏକମାତ୍ର ଉଦ୍ଦେଶ୍ୟ ଥିଲା । ଭଲ ଲେଖା, ନୂଆଁ ଲେଖା, ନୂଆନୂଆ ଲେଖକମାନଙ୍କୁ ଖୋଜିବାରେ ମୋର ସମୟ ଯାଉଥିଲା । ପ୍ରେସ୍‌ରେ ରାତିଦିନ ଅନିଦ୍ରା ରହି ମୁଁ ମୁଦ୍ରଣ ଓ ତା'ର ପରିପାଟୀ ସବୁ ଦେଖୁଥିଲି । ୧୯୫୭-୫୮ ମସିହାର କେଉଁ ଓଡ଼ିଆ ପତ୍ରିକାର ପ୍ରସାର ପ୍ରାୟ ୧୨ ହଜାର ହୋଇଥିଲା କହିଲେ ବିଶ୍ୱାସ କରିବେ ତ ? ପାତିରାମବାବୁ ତାଙ୍କ ସାନଭାଇ ଯଦୁମଣି ପରିଜାଙ୍କୁ ଏହାର ପ୍ରକାଶନା ଓ ପରିଚାଳନା ଦାୟିତ୍ୱ ଦେଇଥିଲେ । ସେ ମହାଶୟ ହଠାତ୍ ଆମ 'କାହାର ସମ୍ମତି ନନେଇ ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ଆଣି ସଂପାଦକ କରିଦେଲେ ଏବଂ ତାଙ୍କ ନାଁରେ ଅସନ୍ତାକାଲି ଛପାଇଲେ । ସେଇଠୁ ଆମେସବୁ ଘୋର ଅଭିମାନରେ ଆସନ୍ତାକାଲି ଛାଡ଼ିଲୁ । ପରେ ଶୁଣିଲି ଯେଉଁଠି ମୁଁ ଗୋଟିଏ ପଇସା ପାରିଶ୍ରମିକ ନେଉନଥିଲି ସେ ଶ୍ୟାମସୁନ୍ଦରବାବୁଙ୍କୁ ଦରମା ଦେଉଥିଲେ । ପାଞ୍ଚ ବର୍ଷର ଅକ୍ଲାନ୍ତ ପରିଶ୍ରମ ଏମିତିରେ ମାଟି ହୋଇଗଲା ଏବଂ ଦୁଃଖ ଲାଗିଲା ଦୁଇ/ତିନି ବର୍ଷ ପରେ 'ଆସନ୍ତାକାଲି' ମଧ୍ୟ ବନ୍ଦ ହୋଇଗଲା । ସେହି ଦୁଃଖକୁ ଲାଘବ କରିବା ପାଇଁ ଜଗଦୀଶ ପାଣିଙ୍କ ସହ ମିଶି 'ସମାବେଶ' ସମ୍ପାଦନା ସହ ପ୍ରାୟ ୫ ବର୍ଷ, 'କଳନା' ଓ 'ତରଙ୍ଗ' ମୁଁ ନିଜେ ପ୍ରାୟ ତିନି-ଚାରି ବର୍ଷ ବାହାର କରିଥିଲି । 'କଳନା' ଖୁବ୍ ଭଲ ଚାଲିଥିଲା । ସମୟ କ୍ରମେ ଆର୍ଥିକ କ୍ଷତି ହିଁ ପତ୍ରିକାର ମେରୁଦଣ୍ଡକୁ ଭାଙ୍ଗିଦେଲା । ବନ୍ଦ ରହିଲା ପ୍ରକାଶନ ।

'ଆସନ୍ତାକାଲି', 'କଳନା' ଓ 'ତରଙ୍ଗ' କଥା ପରେ 'ନବରବି' ?

'ଆସନ୍ତାକାଲି' ବନ୍ଦ ହୋଇଯିବା ପରେ ପାତିରାମବାବୁଙ୍କ ବଡ଼ କଷ୍ଟ ହୋଇଥିଲା । ଦୁଇଭାଇଙ୍କର ସଂପତ୍ତିଗତ ବିବାଦ ନେଇ ସେ ଆଉ କିଛି କରିପାରୁନଥିଲେ । କିନ୍ତୁ ଓଡ଼ିଆ ପତ୍ରିକା ପ୍ରକାଶନ, ପ୍ରସାରଣର ଆଲୋକିତ ଦିଗଟିକୁ ସେ ଭୁଲିପାରୁନଥିଲେ । ଦିନେ ମୋତେ ହଠାତ୍ ଡକରା ଆସିଲା ତାଙ୍କଠୁଁ । ସେତେବେଳକୁ ମୁଁ ମୋର 'କଳିଙ୍ଗ ମୁଦ୍ରଣୀ' କରି ରାଜଶ୍ରୀ ପକେଟ୍ ବୁକ୍‌ର ଉପନ୍ୟାସ ପ୍ରକାଶନ ଆରମ୍ଭ କରିସାରିଥିଲି । ସେଇଠି 'କଳନା' ମଧ୍ୟ ମୁଦ୍ରିତ ହେଉଥିଲା । 'କଳିଙ୍ଗ ମୁଦ୍ରଣୀ'ର ଚାରି / ପାଞ୍ଚ ଜଣ କର୍ମଚାରୀଙ୍କ

ଦରମା ଖର୍ଚ୍ଚ ତୁଲେଇବାରେ ରାଜଶ୍ରୀ ପକେଟ୍ ବୁକ୍ସର ଭୂମିକା ଅବର୍ଣ୍ଣନୀୟ । ମୋର 'କିଏ କାନ୍ଦେ' ରାଜଶ୍ରୀ ପକେଟ ବୁକ୍ସରୁ ପ୍ରକାଶିତ ହୋଇ ଅସନ୍ତ୍ର ଲୋକପ୍ରିୟତା ହାସଲ କଲା । ତା'ପରେ 'ସେଇ ଝିଅଟି', 'ବିଚିତ୍ର ବର୍ଣ୍ଣା', ବିଭୂତି ପଟ୍ଟନାୟକଙ୍କର 'ନଦୀ ସମୁଦ୍ର', 'ନିଃସଙ୍ଗ ନକ୍ଷତ୍ର', 'ନାଗଫେଣୀ', କଳ୍ପନା କୁମାରୀ ଦେବୀ ଓ ମିହିର କୁମାର ମହାନ୍ତିଙ୍କ ଉପନ୍ୟାସ, ଉମାଶଙ୍କର ପଣ୍ଡାଙ୍କର ଅନୁବାଦ ଉପନ୍ୟାସସବୁ ପ୍ରକାଶ ପାଇଲା । ପାଠକମାନେ ଏତେ ବେଶୀ ଉତ୍ସାହିତ କଲେ, ଆପଣ ବିଶ୍ୱାସ କରିବେନି । କମ୍ ଦାମ୍‌ରେ ଏସବୁ ଜନପ୍ରିୟ ଉପନ୍ୟାସ ସେମାନଙ୍କ ପାଖରେ ପହଞ୍ଚାଇବା ରାଜଶ୍ରୀ ପକେଟ୍ ବୁକ୍ସର ଧର୍ମ ହୋଇଗଲା । ଗୋଟିଏ ଦିନରେ ପ୍ରାୟ ଚାରି ହଜାର କପି ଆମ ଏଜେଣ୍ଟମାନେ ନେଉଥିଲେ । ଆମ ପ୍ରେସ୍ ସେତେବେଳେ ସବୁବେଳେ ଚଳଚଞ୍ଚଳ ରହୁଥିଲା ଏହି ରାଜଶ୍ରୀ ପକେଟ ବୁକ୍ସ ପାଇଁ । ଆମେ ପ୍ରାୟ ୧୦୦ ପାଖାପାଖି ଉପନ୍ୟାସ ଛାପିଛୁ । ଗୋଟିଏ ମୁଦ୍ରଣ ଶିଳ୍ପ ପାଇଁ ଏବଂ ଗୋଟିଏ ପ୍ରକାଶନୀ ସଂସ୍ଥା ପାଇଁ ଏହା କ'ଣ ସଫଳତା ନୁହେଁ ? ମୋର ଏତେ ସବୁ ବ୍ୟସ୍ତତା ସତ୍ତ୍ୱେ ମୁଁ ପାତିରାମ ବାବୁଙ୍କୁ ଦେଖା କଲି । ସେ ମୋତେ ଅନୁରୋଧ କଲେ 'ନବରବି'ର ପ୍ରକାଶନ ପାଇଁ । କହିଲେ, 'କଣ୍ଡୁରିବାବୁ, 'ନବରବି'କୁ ଏବିତି କରନ୍ତୁ ଯେ ଓଡ଼ିଶାର ଘରେ ଘରେ ଏ ପତ୍ରିକା ପହଞ୍ଚିବ । ଖୁବ୍ କମ୍ ଦାମରେ ଲୋକେ ସାହିତ୍ୟ ପତ୍ରିକା କିଣି ପଢ଼ିବେ' । ମୋତେ ଦରମା ଦେବାକୁ ପ୍ରସ୍ତାବ ରଖିଲେ ।

ମୁଁ କହିଲି, ''ମୁଁ ଦରମା ନେବିନାହିଁ, ମୋ ନାଁ କେଉଁଠି ରହିବ ନାହିଁ, ତେବେ ଯାଇ ମୁଁ 'ନବରବି' ବୁଝିବି ।'' ମୁଁ ପ୍ରସ୍ତାବ ରଖିଲି, ଆପଣ ମୋତେ ଦରମା ନଦେଇ, ଲେଖକମାନଙ୍କୁ ସେମାନଙ୍କର ସମ୍ମାନସୂଚକ-ପାରିଶ୍ରମିକ ଅର୍ଥ ଆକାରରେ ଦିଅନ୍ତୁ । ମୋ ପ୍ରସ୍ତାବରେ ସେତେବେଳେ 'ନବରବି'ର ଲେଖକମାନଙ୍କୁ ପାରିଶ୍ରମିକ ଦିଆଯାଉଥିଲା । 'ନବରବି'ର ସଂପାଦନା ଓ ପ୍ରକାଶନରେ ମୋତେ ସବୁଠୁ ବେଶି ସାହାଯ୍ୟ ଓ ସହଯୋଗ କରୁଥିଲେ ବିଭୂତି ପଟ୍ଟନାୟକ । କହିବାକୁ ଗଲେ ତାଙ୍କର ଅନାବିଳ ସହଯୋଗ 'ନବରବି'କୁ ଆଲୋକିତ କରିଥିଲା । ପ୍ରାୟ ସାତ ବର୍ଷ ସଫଳତାର ଶିଡ଼ି ଚଢ଼ିଚାଲିଥିଲା 'ନବରବି' । ତାଙ୍କ ପୁଅ ରବୀନ୍ଦ୍ର କୁମାର ପରିଜାଙ୍କ ନାଁ ସଂପାଦକ ଭାବରେ ପ୍ରକାଶ ପାଉଥିଲା । ଆର୍ଥିକ ଅନଟନରୁ ବନ୍ଦ ହୋଇଗଲା 'ନବରବି' । ପରବର୍ତ୍ତୀ ସମୟରେ ମୁଁ ଚାହିଁଥିଲି ତା'ର ସମ୍ପୂର୍ଣ୍ଣ ଦାୟିତ୍ୱ ନେଇ କଲିକତାରୁ 'ନବରବି' ପ୍ରକାଶ କରିବି । ମୁଁ ପ୍ରକାଶନା ଓ ସମ୍ପାଦନା ଦାୟିତ୍ୱ ନେବାପାଇଁ ଚେଷ୍ଟା କରିଥିଲି । ହେଲାନି । ଅନେକ କାଳ ବନ୍ଦ ରହିବା ପରେ ତାଙ୍କ ନାତୁଣୀ ସନ୍ଧ୍ୟା ମହାନ୍ତିଙ୍କ ସମ୍ପାଦନାରେ ଏବେ ଭୁବନେଶ୍ୱରରୁ ପ୍ରକାଶ ପାଉଛି 'ନବରବି' ।

'ଆସନ୍ତାକାଲି'ରୁ 'ନବରବି' ପର୍ଯ୍ୟନ୍ତ ୨୦/୨୨ ବର୍ଷ ପତ୍ରିକା ସଂପାଦନା । ଏ ସମୟର କିଛି ମଧୁର ସ୍ମୃତି ଏବଂ କିଛି ତିକ୍ତ ଅନୁଭୂତି ?

ଓଃ ତିକ୍ତ ଅନୁଭୂତି ବୋଧେ ସବୁ କହିସାରିଲିଣି । ହଁ ଆଉ ଗୋଟେ କଥା ମନେ ପଡୁଛି । ସଚ୍ଚି ରାଉତରାୟ ପଠେଇଥିଲେ ଏକ କବିତା, ସେଇଟା ମୁଁ ଛାପିନଥିଲି ।

କମ୍ୟୁନିଜିମ୍ ଉପରେ ଟିକିଏ ବିବଦମାନ ବିଷୟ ଥିଲା । ସେ କିନ୍ତୁ ଏମିତି ଚିଠିଟିଏ ଲେଖିଲେ, ମୁଁ ମର୍ମାହତ ହେଲି । ମୋତେ ନାନା ଭର୍ତ୍ସନା କରିଥିଲେ ସେ ଚିଠିରେ । 'ତମେ ତମ ବନ୍ଧୁବାନ୍ଧବ ଯାହା ଲେଖିଲେ ଛାପିବ, ତମ ସ୍ତ୍ରୀଙ୍କର ଛାପିବ, ଶାଳୀଙ୍କର ଛାପିବ..' । ଏମିତି ନାନା କଥା ଲେଖି ମୋତେ ଗାଳିଗୁଲଜ କରିଥିଲେ ।

ମଧୁର ସ୍ମୃତି ତ ବହୁତ । ଓଡ଼ିଶାର ଗୋଟେ ବୃହତ୍ତର ଲେଖକ ଗୋଷ୍ଠୀଙ୍କ ସହ ମୋର ମଧୁର ସଂପର୍କ ଥିଲା । ବିଭୂତିବାବୁ (ଡକ୍ଟର ବିଭୂତି ପଟ୍ଟନାୟକ)ଙ୍କ ଭଳି ବିଖ୍ୟାତ ଲେଖକଙ୍କ ସହ ଏଯାବତ୍ ସେ ସଂପର୍କ ବଜାୟ ରହିଛି । ତାଙ୍କ ପ୍ରଥମ ଗଳ୍ପ ମୁଁ 'ଆସନ୍ତାକାଲି'ରେ ଛାପିଥିଲି ବୋଲି ସେ ନିଜେ ସ୍ୱୀକାର କରିବା କିଛି କମ୍ କଥା ନୁହେଁ । ପୁଣି ଶୁଣିଛି, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକ ଶ୍ରୀଯୁକ୍ତ ରାମଚନ୍ଦ୍ର ବେହେରା ମଧ୍ୟ ଏଭଳି ସ୍ୱୀକାରୋକ୍ତି ଦେଇଛନ୍ତି ଏକ ସାକ୍ଷାତକାରରେ । ସେ ଭଦ୍ରଲୋକଙ୍କ ସହ ମୋର ଦେଖା ସାକ୍ଷାତ ହେଲା ଏଇ କିଛି ମାସ ତଳେ । ବୁଝନ୍ତୁ, ଏଟା କ'ଣ କମ୍ ବଡ଼ କଥା । କେତେବଡ଼ ପ୍ରାପ୍ୟ ମୋର ସତରେ !

ମନେପଡୁଛି ଗୋଟିଏ ପୂଜା ସଂଖ୍ୟା 'ନବରବି' ପାଇଁ ଗୋପୀନାଥ ମହାନ୍ତିଙ୍କ ସହ କଥା ହୋଇଥିଲା, ସେ ଉପନ୍ୟାସଟିଏ ଦେବେ । ମୁଁ କଲିକତାରୁ ତାଙ୍କ ଭୁବନେଶ୍ୱର ଘରକୁ ଗଲି ଉପନ୍ୟାସ ଆଣିବା ପାଇଁ । ସକାଳୁ ସକାଳୁ ପହଞ୍ଚିଗଲି । ସେ ତାଙ୍କ ବଗିଚାରେ କ'ଣ କାମ କରୁଥିଲେ । ମୋତେ ଡାକିଲେ, କହିଲେ ଦାଣ୍ଡ ଘରେ ବସ, ଚା' ପିଅ, ମୁଁ ଯାଉଛି । ସେଇଠୁ ଆସି ସାତ/ଆଠ ପୃଷ୍ଠା ଲେଖା ଦେଲେ । ମୁଁ କହିଲି, ଉପନ୍ୟାସ କାହିଁ? ସେ କହିଲେ, ଆଜି ସାତ/ଆଠ ପୃଷ୍ଠା ନିଅ, ଆଉ ଥରେ ଆସ, ମୁଁ ପୂରାଟା ଦେଇଦେବି । ମୁଁ ପୁଣି ତା' ପର ଶନିବାର ଗଲି । ସେ ପୁଣି ପନ୍ଦର/କୋଡ଼ିଏ ପୃଷ୍ଠା ଦେଲେ । ମନେଅଛି, ତାଙ୍କର 'ପାହାନ୍ତା' ଉପନ୍ୟାସ ପାଇଁ ମୁଁ ପ୍ରାୟ ପ୍ରତି ଶନିବାର କଲିକତାରୁ ଭୁବନେଶ୍ୱର ଯାଇ ୪/୫ ଥରରେ ଉପନ୍ୟାସଟିଏ ଆଣି ଛପାଇଥିଲି । କି ନିଶା ଲାଗିଥିଲା ସତରେ ! ଗୋପୀନାଥ ମହାନ୍ତିଙ୍କ ଆକର୍ଷଣୀୟ କଥା ଆଉ ତାଙ୍କ ଉପନ୍ୟାସ ଛାପିବାର ମୋହ ହିଁ ମୋତେ ଟାଣି ନେଉଥିଲା ତାଙ୍କ ପାଖକୁ ।

ଆଉ ଗୋଟେ କଥା କହୁଛି-

ମୁଁ ଥରେ ମୋର ଆଇ.ଟି ରିଟର୍ନ ଠିକ୍ ସମୟରେ ଦାଖଲ କରିପାରିନଥିବାରୁ ଲେଟ୍‌ଫାଇନ୍ ପାଇଁ ଜୋରିମାନା ଦେବାକୁ ଚଠି ପାଇଲି । ଜୋରିମାନା ଦେବାକୁ ମନ ହେଲାନି ଏ ସାମାନ୍ୟ ଭୁଲ୍ ପାଇଁ । ତେଣୁ ମୋର ଓକିଲ ହାତରେ ଗୋଟେ ଦରଖାସ୍ତ ପଠାଇଲି ଆୟକର ବିଭାଗକୁ । ମୋ ଓକିଲ ଯେଉଁ ଆୟକର ଡେପୁଟି କମିଶନରଙ୍କ ପାଖକୁ ମୋ ଦରଖାସ୍ତ ନେଇଗଲେ, ସେ ତାଙ୍କୁ ପଚାରିଲେ, 'କସ୍ତୁରିଚରଣ ଦାସ କ'ଣ ଜଣେ ଓଡ଼ିଆ ?'' ମୋ ଓକିଲ ହଁ କଲା । ତା'ପରେ ଦିନେ ମୋ ଓକିଲ ସାଙ୍ଗରେ ସେ ମୋ ପାଖରେ ଆସି ହାଜର । ମୁଁ ସେତେବେଳେ ପ୍ରୁଫ୍ ଦେଖୁଥିଲି । ମୁଁ ତାଙ୍କୁ ଚିହ୍ନିବି

କେମିତି ? ସେ ହଠାତ୍ ନିଜ ପରିଚୟ ଦେଇ ଓଡ଼ିଆରେ କହିଲେ, 'ଆଜ୍ଞା ଆପଣ କ'ଣ କଣ୍ଟୁରିଚରଣ ଦାସ, ରହସ୍ୟ-ରୋମାଞ୍ଚଭରା ଉପନ୍ୟାସର ଜର୍ନକ ?'

ମୁଁ ହଁ କଲି । ସେ କହିଲେ, 'ମୋର ସବୁ ସ୍ୱପ୍ନ ମିଥ୍ୟା ହୋଇଗଲା । ମୁଁ ଭାବିଥିଲି ଆପଣ ଜଣେ ମୋଟାଲୋକ ହୋଇଥିବେ । ଲମ୍ୱା ଏବଂ ପାଚିଲା ଦାଢ଼ି ଥିବ । ପାଇପ୍ ଟାଣୁଥିବେ । ଡିଟେକ୍‌ଟିଭ୍ ଉପନ୍ୟାସର ନାୟକ ଭଳି ଚେହେରା ହୋଇଥିବ ।'

ମୁଁ ତାଙ୍କ କଥା ଶୁଣି ହସିଉଠିଲି । ସେ ବି ହସି ହସି ବେଦମ୍ ହେଲେ । ଜୋରିମାନା ଛାଡ କରିଦେଲେ, କଣ୍ଟୁରିଚରଣ ଦାସଙ୍କୁ ନୁହେଁ, ଲେଖକ କଣ୍ଟୁରି ଚରଣ ଦାସଙ୍କୁ ।

ମନେଅଛି, ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର ପ୍ରାୟ କବିତା ପଠାନ୍ତି । ମୋତେ ଥରେ ଲେଖିଥିଲେ-

''ଆସନ୍ତାକାଲିର, ହେ ପ୍ରିୟ ସଂପାଦକ
କେତେ ଛପାଇଛ କବିର କବିତାତକ
ଛପାଇବ ପୁଣି ପଠାଉଛି ଆଜି ଯାହା
ତମ କୁଶଳକୁ କଲିକତା କାଳୀ ସାହା ।''
ଜାଣେନି ମୋ କୁଶଳକୁ କଲିକତା କାଳୀ ସାହା ହୋଇଛନ୍ତି ନା ନାହିଁ ।

ବର୍ତ୍ତମାନର ଜୀବନ ଓ ଭବିଷ୍ୟତ ସ୍ୱପ୍ନ ?

ବର୍ତ୍ତମାନର ଜୀବନ ମୋର ବେଶ୍ ଆନନ୍ଦମୟ । ଅନେକଦିନୁ ଲେଖାଲେଖି ଛାଡ଼ି ଦେଇଛି । ହେଲେ ପଢ଼ାପଢ଼ି ଛାଡ଼ିନି । ମୋ ସ୍ତ୍ରୀ ଓ ମୁଁ ପ୍ରତ୍ୟେକ ଦିନ ପ୍ରଚୁର ପଢ଼ାପଢ଼ କରୁ । ମଝିରେ ମଝିରେ ଆପଣମାନଙ୍କ ପ୍ରେରଣା, ଉତ୍ସାହ, କଥାବାର୍ତ୍ତା ମୋ ଲେଖକୀୟ ଜୀବନକୁ ପୁଣି ପଲ୍ଲବିତ କରୁଛି । ତେଣୁ ମୁଁ ପୁଣି ଲେଖିଲିଣି । ଭାବୁଛି ଆହୁରି କିଛି ଗଳ୍ପ ଉପନ୍ୟାସ ଲେଖିବି । ମୋ ପରିବାର କହିଲେ ଦୁଇ ଝିଅ ଓ ସ୍ତ୍ରୀ କଳ୍ପନା କୁମାରୀ । ସେ ମୋର ପ୍ରାଣସଙ୍ଗିନୀ ଏବଂ ସମଧର୍ମା । ନିଜେ ବହୁତ ଭଲ ଗଳ୍ପ ଲେଖିଛନ୍ତି ଏବଂ ଲେଖୁଛନ୍ତି । ମୋ ବଡ଼ଝିଅ ସାବର୍ଣ୍ଣୀ (ବାବାଇ) ବଙ୍ଗଳା ଓ ଓଡ଼ିଆ 'ସାନନ୍ଦା' ପତ୍ରିକାର ପ୍ରମୁଖ କାର୍ଯ୍ୟକର୍ତ୍ତ୍ରୀ । ସାନଝିଅ, କ୍ୱାଇଁ ସେମାନଙ୍କ ପିଲାପିଲି ନେଇ ବମ୍ବେରେ । ବଡ଼କ୍ୱାଇଁ ମିଡ଼ିଆ ଓ ଆଡ୍ ବ୍ୟବସାୟରେ ବ୍ୟସ୍ତ ଏଇ କଲିକତାରେ । ସ୍ୱପ୍ନ ସେମିତି କିଛି ନାହିଁ, ହେଲେ-

ସାହିତ୍ୟର ଫୁଲ ଫୁଟୁ - ଏ ସମାଜ ବଗିଚାଟା ସାରା
ଓଡ଼ିଆ ସାହିତ୍ୟ ହେଉ ରୂପରସଛନ୍ଦରେ ନିଆରା ।
ଆମେତୁହେଁ ସହଯାତ୍ରୀ... ସର୍ଜନାର ପଥରେ ପଥିକ
ଯାତ୍ରାର ସାଫଲ୍ୟ ଭରୁ ଆତ୍ମୀୟଙ୍କ ଆତ୍ମାରେ ପୁଲକ ।





ଲେଖକଙ୍କର ଅନ୍ୟାନ୍ୟ ଏକତ୍ରିକା :

ଶ୍ରେଷ୍ଠ ରହସ୍ୟ ଉପନ୍ୟାସ

୫ ରୋମାଞ୍ଚ

ଏବଂ ଚକ୍ରବ୍ୟୂହ

ଲାଲଚକ୍ର

ରଙ୍ଗ ବଦଳାଏ

ଘନକୁହୁଡ଼ି



'ଗୁଂଜନ'ରେ ଅଛି ସ୍ପଂଦନ-ସାହିତ୍ୟକାର ଶ୍ରୀ କସ୍ତୁରିଚରଣ ଦାସଙ୍କ ସୃଜନସତ୍ତାର ପାଂଚଟି ଚୁଂବନର ଚିହ୍ନ : 'ଅନ୍ଧକାରେ ଏକା' - 'ଇନ୍ଦ୍ରନୀଳ' - 'ଜଳତରଙ୍ଗ' - 'ଲଳିତା ସଂବାଦ' - 'ଲାୟଲି ଗୋଟିଏ ଝିଅର ନାମ' । ଏସବୁ ଉପନ୍ୟାସୋପମ ଅପୂର୍ବ କୃତି ଅନେକ ଆଗରୁ ହାସଲ କରିସାରିଛି ଅଜସ୍ର ସଂସ୍କରଣର ଈର୍ଷଣୀୟ ଭାଗ୍ୟ ! ଓଡ଼ିଶା ବାହାରେ ରହିଆସିଥିବା ଏହି ଅଜାତଶତ୍ରୁ ମଣିଷ ସବୁ ବର୍ଗର ଓଡ଼ିଆ ପାଠକଙ୍କ ପ୍ରିୟଲେଖକ - କାହିଁ କେଉଁକାଳୁ - ୧୯୫୧ ରୁ ଏଯାବତ । ଭଲଲାଗେ ତାଂକ ଭାଷାର ଭଂଗିମା, ବିଷୟର ବିନ୍ୟାସ ।

ବାଲିଗଂଜରେ ବିତୁଛି ଜୀବନ ଓ ସୃଜନର ସଂଜବେଳ । ସାବଲୀଳ ସାଂସାରିକତା ମଧ୍ୟରେ ଏବେ ବି ଶବ୍ଦମୟ ତାଂକ ସାରସ୍ୱତ ସର୍ଜନାର ସ୍ୱଚ୍ଛଂଦ ସ୍ୱର ।





ISBN 978-93-81756-02-7
9 789381 756027

₹ 350/-

ପ୍ରଚ୍ଛଦ ସୌଜନ୍ୟ : ମନୀଷ ଅରୋରା